DHULIMATIR SANTHA

By Gopinath Mohanty

Publishers : Vidyapuri, Cuttack

First Edition 1985

ପ୍ରଥମ ପ୍ରକାଶ ଅଗଷ୍ଟ, ୧୯୮୫

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
କେନ୍ଦ୍ରେସ ପ୍ରିଣ୍ଟର୍ସ
ବାଖରାବାଦ, କଟକ

ମୂଲ୍ୟ — ଟ ୬୫-୦୦
ସାଧା ବନ୍ଧେଇ ଟ ୭୦-୦୦

# ଭୂମିକା

"ଧୂଳିମାଟିର ସନ୍ଥ" ସ୍ୱନାମଧନ୍ୟ ୰ ଗୋପବନ୍ଧୁ ଚୌଧୁରୀଙ୍କ କର୍ମମୟ ଜୀବନର କାହାଣୀ । ୧୯୨୧ ଶେଷରେ ସେ କଂଗ୍ରେସରେ ଯୋଗଦେବା ଠାରୁ ୧୯୫୮ ଅପ୍ରେଲ ୨୯ ତାରିଖରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଜୀବନ ଓ କାର୍ଯ୍ୟ ଏହାର ପରିସରଭୁକ୍ତ ।

ଓଡ଼ିଶାରେ କଟକ ଜିଲାରେ ଗୋଟିଏ ପ୍ରାଚୀନ, ସମ୍ଭ୍ରାନ୍ତ, ଧନୀ ଜମିଦାର ପରିବାରରେ ସେ ଜନ୍ମ ହୋଇଥିଲେ । ତାଙ୍କ ପିତା ୰ ରାୟବାହାଦୁର ଗୋକୁଳାନନ୍ଦ ଚୌଧୁରୀ ମଧ୍ୟ ଖ୍ୟାତନାମା ଥିଲେ । ଊନବିଂଶ ଶତାବ୍ଦୀର ପରାର୍ଦ୍ଧରେ ଅତି ଅଳ୍ପସଂଖ୍ୟକ ଓଡ଼ିଆ ଆଇନଜୀବୀ ବାହାରିଥିଲେ, ସେତେବେଳେ ସେ ବି.ଏଲ୍. ପାଶ୍ କରି କଟକରେ ଓକାଲତି କରୁଥିଲେ ଓ ତହିଁରେ ବିପୁଳ ଧନ ଓ ପ୍ରତିଷ୍ଠା ଅର୍ଜନ କରିଥିଲେ । "ଉତ୍କଳ ସମ୍ମିଳନୀ" ଆରମ୍ଭ ହେବା ପୂର୍ବରୁ ସେ ଓଡ଼ିଆମାନଙ୍କର ଜଣେ ନେତା ଥିଲେ ଓ ସେତେବେଳେ ଓଡ଼ିଆ ଭାଷା ଓ ଓଡ଼ିଆଙ୍କ ସ୍ୱାର୍ଥ ବିରୁଦ୍ଧରେ ଯେଉଁ ଆନ୍ଦୋଳନ ଚାଲିଥିଲା ତାହା ବିରୁଦ୍ଧରେ ଓଡ଼ିଆମାନଙ୍କୁ ସଂଗଠିତ କରୁଥିଲେ । କଟକରେ ତାଙ୍କର ଘର ସେ ବିଷୟରେ ବାରମ୍ବାର ଆଲୋଚନା ପାଇଁ ଗୋଟିଏ ପ୍ରଧାନ କେନ୍ଦ୍ର ହୋଇଥିଲା । ୧୯୦୩ରୁ ୧୯୦୭ ଯାଏ 'ଉତ୍କଳ ସମ୍ମିଳନୀ' କାର୍ଯ୍ୟରେ ତାହାର ପ୍ରତିଷ୍ଠାତା ପ୍ରାତଃସ୍ମରଣୀୟ ୰ ମଧୁବାବୁଙ୍କର ସେ ଦକ୍ଷିଣହସ୍ତ ହୋଇଥିଲେ, କିନ୍ତୁ ୧୯୦୮ରେ ଦୁହିଁଙ୍କର ମନାନ୍ତର ହେଲା ଓ ସେ ୰ ମଧୁବାବୁଙ୍କଠାରୁ ଅଲଗା ହୋଇ 'Orissa Peoples' Association' ଗଠନ କଲେ । ୧୯୦୮ରୁ ୧୯୧୫ରେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେ କଟକ ଜିଲ୍ଲାବୋର୍ଡର ଭାଇସ୍ ଚେଆରମ୍ୟାନ୍ ଥିଲେ ।

୰ ଗୋପବନ୍ଧୁ ଚୌଧୁରୀ କୃତୀ ଛାତ୍ର ଥିଲେ । ସେ କଲିକତା ବିଶ୍ୱ-ବିଦ୍ୟାଳୟରୁ ଏମ୍. ଏ. ଓ ପ୍ରାରମ୍ଭିକ ଆଇନ୍ ପରୀକ୍ଷା ପାଶ୍ କଲେ । ପ୍ରାରମ୍ଭିକ ଆଇନ୍ ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇଥିଲେ । ୧୯୦୭ରେ ସେ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଚାକିରିରେ ଯୋଗ ଦେଲେ । ଜଣେ ସୁଦକ୍ଷ, କର୍ମଠ, ହୃଦୟବାନ୍, ନ୍ୟାୟପରାୟଣ, ଅତି ସଚ୍ଚୋଟ କର୍ମଚାରୀ ବୋଲି ତାଙ୍କ ନାମ ବ୍ୟାପିଲା,

କିନ୍ତୁ ମୂଳରୁ ସେ ସ୍ୱଦେଶପ୍ରେମୀ ଥିଲେ ଓ ଚାକିରିରେ ଆଉ ବାନ୍ଧି ହୋଇ ନ ରହି ସ୍ୱାଧୀନତା ଆନ୍ଦୋଳନରେ ଓ ଜନସେବାରେ ଆତ୍ମୋତ୍ସର୍ଗ କରିବାକୁ ତାଙ୍କର ମନ ଡାକିଲା । ୧୯୨୧ ଶେଷ ଆଡ଼କୁ ସେ ଚାକିରିରୁ ଇସ୍ତଫା ଦେଲେ ।

ତାଙ୍କ ବଂଶର ଆଦିବୃତ୍ତାନ୍ତଠାରୁ ତାଙ୍କ ଜୀବନର ସେହି ନୂଆ ମୋଡ଼ ପର୍ଯ୍ୟନ୍ତ ବର୍ଣ୍ଣନା କରି ଓ ତାହାପରେ ସଂକ୍ଷେପରେ ତାଙ୍କର ସମୁଦାୟ ଜୀବନ ଓ କାର୍ଯ୍ୟର ପରିଚୟ ଦେଇ ତାଙ୍କ ମୃତ୍ୟୁ ପରେ ମୁଁ ଲେଖିଲି "ଦୀପଂଜ୍ୟୋତି" । ୧୯୬୧ରୁ '୬୩ ଭିତରେ ତାହା ସଂପୂର୍ଣ୍ଣ ହୋଇଥିଲା ଓ ୬ ଆଚାର୍ଯ୍ୟ ବିନୋବାଜୀଙ୍କ 'ଅଭିମତ' ସହିତ ୧୯୬୪ରେ ପ୍ରକାଶିତ ହୋଇଥିଲା ।

ବାକି ରହିଥିଲା ସେ ଚାକିରି ଛାଡ଼ିବା ଉତ୍ତାରୁ ସଂସାରରୁ ବିଦାୟ ନେବା ପର୍ଯ୍ୟନ୍ତ ତାଙ୍କ କର୍ମମୟ ଜୀବନର କାହାଣୀ, ଯେଉଁଥିପାଇଁ ସେ ନମସ୍ୟ ହେଲେ, ପ୍ରାତଃସ୍ମରଣୀୟ ହେଲେ, ଏ ଯୁଗରେ ଏ ଦେଶର ଇତିହାସର ଜଣେ ମହାନ୍ ନାୟକ ହେଲେ । ୧୯୭୧ରେ ତାହା ଲେଖିବାକୁ ଆରମ୍ଭ କରିଥିଲି ଓ ୧୯୭୬ରେ ସଂପୂର୍ଣ୍ଣ କଲି । କିନ୍ତୁ ସେତିକିରେ ସେ କାର୍ଯ୍ୟ ସମାପ୍ତ ହେଲା ନାହିଁ । ଶ୍ରୀ ମନମୋହନ ଚୌଧୁରୀ ତହିଁରେ କିଛି ନୂଆ ଉପାଦାନ ଖୋଜି କେତେକ ସ୍ଥାନରେ କିଛି କିଛି ପରିବର୍ତ୍ତନ କରିବାକୁ ପରାମର୍ଶ ଦେଲେ । କିନ୍ତୁ ସେଭଳି ଉପାଦାନ ତାଙ୍କଠି ବା ମୋଠି ନ ଥିଲା, କିମ୍ବା ମିଳିବାର ସମ୍ଭାବନା ନ ଥିଲା । ଶ୍ରୀ ଶରତ୍ ଚନ୍ଦ୍ର ମହାରଣା କେତେଜଣଙ୍କୁ ଚିଠି ଲେଖି, ପୁଣି ବିଜ୍ଞାପନ ଛପାଇ ଓ ନିଜେ କେତେ ସ୍ଥାନକୁ ଯାଇ କିଛି ବଳକା ଉପାଦାନ ସଂଗ୍ରହ କରି ମତେ ଦେଲେ । ସେଥିପାଇଁ ବର୍ଷ ବର୍ଷ ଲାଗିଗଲା । ନୂଆ ଉପାଦାନ ମିଳିଗଲେ ଥରେ ଲେଖି ସାରିଥିବା କେତେକ ପରିଚ୍ଛେଦକୁ ବା ତାର ଅଂଶବିଶେଷକୁ ପୁଣି ଆଉଥରେ ନୂଆ କରି ଲେଖୁଥାଏ, ତା'ପରେ ସମଗ୍ର ପାଣ୍ଡୁଲିପିକୁ ଛପାଯୋଗ୍ୟ କରି ଆଉ ଥରେ ନିଜେ ଉତାରିଲି । ୧୯୮୨ ଫେବୃଆରୀରେ ପାଣ୍ଡୁଲିପିଟି ପ୍ରକାଶ କରିବା ପାଇଁ "ବିଦ୍ୟାପୁରୀ" (କଟକ)କୁ ଦେଲି । ଛପା ସରିଲେ ପରେ ମଧ୍ୟ ଆଉ କେତୋଟି ପରିଚ୍ଛେଦ ଲେଖି ଯୋଖିବା ଅପରିହାର୍ଯ୍ୟ ବୋଲି ଭାବିଲି, ସେପରି କରିବାକୁ ଆହୁରି ବେଳ ଲାଗିଲା । ଏଥିରେ ୬ ଗୋପବାବୁଙ୍କର ଓ ତାଙ୍କ ସହିତ ସଂପୃକ୍ତ ଥିବା ଅନ୍ୟ କାହାର ଫଟୋ ଅଛି, ସେଗୁଡିକ ଖୋଜି ସଂଗ୍ରହ କରିବାକୁ ବର୍ଷ ବର୍ଷ ଲାଗିଗଲା । ଉପାଦାନ ମିଳିବାରେ ବିଳମ୍ବ ହିଁ ଏ ଜୀବନୀ ଲେଖିବା ଓ ପ୍ରକାଶ କରିବାରେ ବହୁବର୍ଷ ବିତିଯିବାର ପ୍ରଧାନ କାରଣ । ଯାହା ଉପାଦାନ ମିଳିଛି ସେତକ ଏକା ସମୟରେ ମିଳି ନାହିଁ କି ଏକାଠି ମିଳି ନାହିଁ । ୧୯୬୦ରୁ ଜନସାଧାରଣଙ୍କୁ ଅନୁରୋଧ ଜଣା ହୋଇ ଆସୁଥିଲା ଯେ ୬ ଗୋପବାବୁଙ୍କ ସମ୍ପର୍କରେ ଆସି ତାଙ୍କ ବିଷୟରେ ବ୍ୟକ୍ତିଗତ ଅନୁଭୂତି ଥିଲେ, ସେମାନେ ତାହା କଟକ ବାଖରାବାଦରେ ଥିବା ଉତ୍କଳ ଗାନ୍ଧୀ ସ୍ମାରକନିଧିର

ସମ୍ପାଦକ ଶ୍ରୀ ଫକୀର ମିଶ୍ରଙ୍କୁ ବା କଟକ ଓଡ଼ିଶା ଆସାହାଉସ୍ଥ ଗାନ୍ଧୀ ସାହିତ୍ୟ ପ୍ରକାଶନ ବିଭାଗର ସମ୍ପାଦକ ଶ୍ରୀ ଶରତ୍ ଚନ୍ଦ୍ର ମହାରଣାଙ୍କୁ ବା ଭୁବନେଶ୍ୱରରେ ମୋ ଠିକଣାକୁ ତାହା ଲେଖି ପଠାନ୍ତୁ ବା ଅନ୍ୟ ଉପାୟରେ ଜଣାନ୍ତୁ । ଏହି ମର୍ମରେ ଖବର କାଗଜରେ ବିଜ୍ଞାପନ ଦିଆଗଲା, କେତେ ଲୋକଙ୍କୁ ଶରତବାବୁ ଚିଠି ଲେଖିଲେ ଓ କେତେ ଲୋକଙ୍କୁ ସାକ୍ଷାତ୍ କରାଗଲା । ୧୯୭୬ ଅପ୍ରେଲରେ ଏହି ମର୍ମରେ ଶ୍ରୀ ଫକୀର ମିଶ୍ର ଗୋଟିଏ ବିଜ୍ଞାପନ ପତ୍ର ବି ଛପାଇ ନାନା ସ୍ଥାନକୁ ପଠାଇଲେ । ଏତେ ଚେଷ୍ଟା ସତ୍ତ୍ୱେ ଉପାଦାନ ପାଇବାକୁ ଯେତେବେଳେ ଏତେ ଡେରି ହେଲା, ଏ ବିଳମ୍ବ ଅପରିହାର୍ଯ୍ୟ ବୋଲି ମୁଁ ଭାବୁଛି ।

ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ୧୯୫୬ରୁ ମୋର ବ୍ୟକ୍ତିଗତ ପରିଚୟ ଥିଲା । ସେହି ସମୟରୁ ମଧ୍ୟ ଅନେକ ଅନ୍ୟାନ୍ୟ ସର୍ବୋଦୟ କର୍ମୀଙ୍କ ସଙ୍ଗେ ମୋର ପରିଚୟ । ୰ ଗୋପବନ୍ଧୁ ଚୌଧୁରୀଙ୍କ ମା' ମୋ ବାପାଙ୍କର ମାମୁଁଝିଅ ଭଉଣୀ ଓ ତାଙ୍କ ମାମୁଁଘର ବେଣ୍ଟକାର ଆମ ଗାଁ ନାଗବାଲିର ନଈ ଆରପାରି । ତେଣୁ ତାଙ୍କ ବଂଶ ପରମ୍ପରା ଆଦି ବିଷୟରେ ମୁଁ ପିଲାଦିନୁ ଜାଣିଥିଲି, ଆଉ କିଛି ମଧ୍ୟ ସଂଗ୍ରହ କଲି । ୧୯୩୦ରୁ ୧୯୩୬ ଯାଏ ମୁଁ କଟକରେ କଲେଜ ଛାତ୍ର । ୧୯୩୧ରେ ଜେଲ ଫେରନ୍ତା କଂଗ୍ରେସ ନେତାମାନଙ୍କୁ କଟକ ଷ୍ଟେସନରେ ଯେଉଁ ସମ୍ବର୍ଦ୍ଧନା ଦିଆଗଲା ଓ ତାହାପରେ ବିଶାଳ ପଟୁଆରରେ ସେମାନଙ୍କୁ ସହର ଭିତରକୁ ନିଆଗଲା, ଅନ୍ୟାନ୍ୟ ଛାତ୍ରମାନଙ୍କ ସହିତ ସେଠି ମୁଁ ଉପସ୍ଥିତ ଥିଲି ଓ ତାଙ୍କୁ ଯେପରି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଗଲା ତାହା ଦେଖିଥିଲି । ଅନେକ ସମୟରେ ମୁଁ ଛୁଟିରେ ମୋର ବଡ଼ ମହିଁଆଁ ଭାଇ ଶ୍ରୀ ଯଦୁନାଥ ମହାନ୍ତିଙ୍କ ପାଖକୁ ଯାଉଥିଲି । ସେହି କେତେବର୍ଷ ସେ ଆଗ ବାଲିକୁଦା ପାଖ ଇଚ୍ଛାପୁରରେ ଓ ପରେ ଜଗତସିଂହପୁରରେ ପି. ଡବ୍ଲୁ. ଡି.ରେ ଓଭରସିଅର ହୋଇ ଅବସ୍ଥାପିତ ହୋଇଥିଲେ । ସେତେବେଳେ ୰ ଗୋପବାବୁଙ୍କ ବିଷୟରେ, ତାଙ୍କ ପରିବାର ବିଷୟରେ, ଅଳକାଶ୍ରମ ବିଷୟରେ ଓ କଂଗ୍ରେସ କର୍ମୀ ଓ କାର୍ଯ୍ୟ ବିଷୟରେ କିଛି କିଛି ଜାଣୁଥିଲି, ତାଙ୍କର ଅନେକ ଅନୁଗାମୀଙ୍କ ସହିତ ପରିଚିତ ହୋଇଥିଲି । ୧୯୩୪ରେ ମହାତ୍ମା ଗାନ୍ଧୀଙ୍କ ହରିଜନ ପଦଯାତ୍ରା ବେଳେ ଯେତେ-ବେଳେ ପଦଯାତ୍ରୀ ଦଳ ପୁରୀରୁ କଟକ ଆସୁଥାନ୍ତି, ସେମାନଙ୍କୁ ସମ୍ବର୍ଦ୍ଧନା ଓ ପ୍ରଣତି ଜଣାଇବାକୁ ବହୁ ଛାତ୍ର କଟକରୁ ଛୁଟିଥାନ୍ତି, ସେମାନଙ୍କ ସହିତ ମୁଁ ବି ଯାଇଥିଲି, ତେଲେଙ୍ଗାପେଣ୍ଠ ପାଖେ ପଦଯାତ୍ରୀ ଦଳକୁ ଭେଟିଥିଲି, ତହିଁରେ ୰ ଗୋପବାବୁ ମଧ୍ୟ ଥିଲେ । ୧୯୩୮ରେ ଚାକିରି ଆରମ୍ଭ କରି ୧୯୩୯ରେ ମୁଁ ଯାଜପୁରରେ 'ଆର୍ଡ଼ ଅଫିସର' ଥିଲି । ସେହିବର୍ଷ ସେ ଅଞ୍ଚଳରେ ଭୀଷଣ ବନ୍ୟା ହୋଇଥାଏ । ବନ୍ୟା ସାହାଯ୍ୟ କାର୍ଯ୍ୟରେ ଗସ୍ତରେ ଯାଇ ମୁଁ ବରିରେ ଦୁଇ ତିନିଦିନ ରହିଥିଲି । ସେତେ-ବେଳେ ୰ ଗୋପବନ୍ଧୁ ଚୌଧୁରୀଙ୍କ ବରି ଆଶ୍ରମକୁ ଯାଇଥିଲି ଓ ତାଙ୍କ ସଙ୍ଗେ

ଆଲୋଚନା କରିଥିଲି । ୧୯୫୨ କି ୧୯୫୩ରେ ସେ ପଦଯାତ୍ରା କରି ଆସି ଆନ୍ଧ୍ର ପ୍ରଦେଶ ଦେଇ କୋରାପୁଟ ଜିଲ୍ଲାର ରାୟଗଡ଼ା ସବ୍‌ଡିଭିଜନରେ ଓଡ଼ିଶା ସୀମାସ୍ଥ 'ଜଟିକି' ଗ୍ରାମରେ ପହଞ୍ଚିଲେ । ମୁଁ ସେତେବେଳେ ରାୟଗଡ଼ା ଏସ୍.ଡି.ଓ. । ତାଙ୍କୁ ସେଠି ସମ୍ବର୍ଦ୍ଧନା ଜଣାଇଲି ଓ ସେ ମୋ ସହିତ ରାୟଗଡ଼ା ଆସିଲେ । ମୋର ଅନୁରୋଧ ରକ୍ଷା କରି ଆମ ବସାରେ ଦିନେ ଦି'ଦିନ ରହିଥିଲେ । ତାହାପରେ ଆଉ ଥରେ ଦି'ଥର ଆସିଥିଲେ, ମୁଁ ପୁରୀରେ ଥିଲାବେଳେ (୧୯୫୪-୫୬) ଓ ଭୁବନେଶ୍ୱର ଆସିଲା ପରେ ମଧ୍ୟ (୧୯୫୬) ମୋ ପାଖକୁ କେବେ କେବେ ଆସିଛନ୍ତି । ସେ ମୋ ସ୍ତ୍ରୀ ଶ୍ରୀମତୀ ଆଦରମଣି ଦେବୀଙ୍କୁ ଓ ଆମ ପିଲାମାନଙ୍କୁ ଖୁବ୍ ସ୍ନେହ କରୁଥିଲେ ଓ ନାନା ଉପଦେଶ ଦେଉଥିଲେ । ତାଙ୍କରି ଉଦ୍ୟମରେ ମୋର ଯୋଡ଼ିଏ ଆଦିବାସୀ ଭାଷା ପୁସ୍ତକ 'କୁଭିକନ୍ଧ ଭାଷା' ଓ 'ଗଦବା ଭାଷା' ପରିଚୟ ୧୯୫୬ରେ 'ଅଖିଳ ଭାରତ ସର୍ବସେବା ସଂଘ—ଓ୍ୱାର୍ଦ୍ଧା'ଙ୍କ ଦ୍ୱାରା ପ୍ରକାଶିତ ହେଲା, ନ ହେଲେ ଛପା ହୋଇପାରୁ ନ ଥିଲା । ମୁଁ କୁଭିକନ୍ଧ ଭାଷାରେ ଓଡ଼ିଆ ଅକ୍ଷରରେ 'କୁଭିକନ୍ଧ ବର୍ଣ୍ଣବୋଧ' ଲେଖିଥିଲି । ଓଡ଼ିଆ ଭାଷା ନ ଜାଣିଥିବା ଅତି ଅନୁନ୍ନତ ଆଦିବାସୀ ଅଞ୍ଚଳରେ ପୁଅଝିଅଙ୍କୁ ଓଡ଼ିଆରେ ପ୍ରାଥମିକ ଶିକ୍ଷା ଦେଲାବେଳେ କେତେ ଅସୁବିଧା ହୁଏ ତାହା ମୁଁ ଜାଣିଥିଲି । ମୋର ମତ ଥିଲା ଯେ ଅନ୍ତତଃ ଶିକ୍ଷା ଆରମ୍ଭ ଦିନଠାରୁ ଦୁଇବର୍ଷ ପର୍ଯ୍ୟନ୍ତ ସେମାନଙ୍କୁ ଓଡ଼ିଆ ଅକ୍ଷରରେ ତାଙ୍କ ନିଜ ଭାଷାରେ ଲେଖା ଉପଯୁକ୍ତ ପାଠ୍ୟପୁସ୍ତକ ପଢ଼ିବାକୁ ଶିଖାଇଲେ ସେମାନେ ଆଗ୍ରହରେ ଓଡ଼ିଆ ଅକ୍ଷର ଶିଖିବେ, ଅକ୍ଷର ମାଧ୍ୟମରେ ନିଜ ଭାବ ପ୍ରକାଶ କରିପାରିବେ, ପାଠପଢ଼ାରେ ମନ ଦେବେ, ତହିଁରୁ ଉପକାର ପାଇବେ ଓ କ୍ରମେ କ୍ରମେ ଓଡ଼ିଆ ଭାଷା ବି ଶିଖିଯିବେ । ସେପରି ନ ହେବାରୁ ସେସବୁ ଅଞ୍ଚଳରେ ଅନେକ ଆଦିବାସୀ ପିଲା ଢେଙ୍ଗା ହେବା ପର୍ଯ୍ୟନ୍ତ 'ଅ' 'ଆ' ଶ୍ରେଣୀରେ ବସି ରହନ୍ତି ବା ପଢ଼ା ଛାଡ଼ନ୍ତି । ଭାରତ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇ ଅତୀତରେ ଅନେକ କମିଟି ମଧ୍ୟ ସେହି ମତ ଦେଇଥିଲେ ଓ ଅନେକ ବିଶିଷ୍ଟ ନୃତତ୍ତ୍ୱବିତ୍‌ଙ୍କର ସେହି ମତ ଥିଲା । ୰ ଗୋପବନ୍ଧୁ ଚୌଧୁରୀ ଆଦିବାସୀଗତପ୍ରାଣ ଥିଲେ, ସେ ମଧ୍ୟ ଏ ବିଷୟରେ ମୋ ମତକୁ ସମର୍ଥନ କଲେ, ମୋ ପାଣ୍ଡୁଲିପିଟି ଦେଖିଲେ, ତାକୁ ପ୍ରକାଶ କରାଇବେ ବୋଲି ନେଇଯାଇ ସେଥିରେ ଯେଉଁସବୁ ଚିତ୍ର ଦେବାକୁ ମୁଁ ଚାହିଁଥିଲି ତା ପାଇଁ ଚିତ୍ର ଅଙ୍କାଇ ବ୍ଲକ୍‌ଗୁଡ଼ିଏ କରାଇଲେ । ଏହି ଅବସ୍ଥାରେ ସରକାରଙ୍କ ଆଦିବାସୀ ବିଭାଗ ସମ୍ବାଦ ପାଇ ପାଣ୍ଡୁଲିପିଟି ଛାପିବାକୁ ଆଗ୍ରହ ଦେଖାଇଲେ ଓ ୰ ଗୋପବାବୁଙ୍କୁ ଅନୁରୋଧ ଜଣାଇଲେ । ସେ ପାଣ୍ଡୁଲିପିଟି ମତେ ଫେରାଇଦେଲେ ଓ ତାହା ଆଦିବାସୀ ବିଭାଗକୁ ପଠାଗଲା । ତହିଁର ଦେଢ଼ବର୍ଷ ପରେ ତାଙ୍କ ତିରୋଧାନ ହେଲା । ଏଣେ, ଓଡ଼ିଶା ସରକାରଙ୍କ ଆଦିବାସୀ ବିଭାଗ କିଛିକାଳ ପରେ ତାଙ୍କ ମତ ବଦଳାଇଲେ ଓ

ପାଣ୍ଡୁଲିପିଟି ଅପ୍ରକାଶିତ ହୋଇ ରହିଗଲା । ୧୯୫୫ରେ ସେ ମତେ କହିଲେ ଯେ ପରମେଶ୍ୱରଙ୍କ ଗୁଣ ଗାନ କରି ତାଙ୍କୁ ସ୍ତୁତି କରିବା ପାଇଁ, ଜନସମାଜର ନୈତିକ ଉନ୍ନତି ସାଧନ ପାଇଁ, ନାନା ସଦ୍‌ଗୁଣ ଶିକ୍ଷା ଦେବା ପାଇଁ, ଭୂଦାନ-ଦର୍ଶନ ସରଳ ଭାବେ ବୁଝାଇବା ପାଇଁ ଓ ମଦନିଶାର କୁଫଳ ବୁଝାଇ ତା ବିରୁଦ୍ଧରେ ପ୍ରଚାର କରିବା ପାଇଁ କନ୍ଧ ଭାଷାରେ ଗୀତ ରଚନା କଲେ ବଡ଼ ଉପକାର ହୁଅନ୍ତା । ସକାଳ ସନ୍ଧ୍ୟାରେ ଗ୍ରାମମାନଙ୍କରେ ସମବେତ ପ୍ରାର୍ଥନା ବେଳେ କନ୍ଧ ପିଲାଏ ତାକୁ ଗାଆନ୍ତେ ଓ ଗାଁରେ ପର୍ବ ଉତ୍ସବ ନାଚ ଗୀତ ବେଳେ ଯେତେବେଳେ କନ୍ଧ ସ୍ତ୍ରୀ ପୁରୁଷ ଏକାଠି ଗୀତ ବୋଲନ୍ତି ସେତେବେଳେ ଗାଁର ସମସ୍ତେ ତାକୁ ବୋଲନ୍ତେ । କୁଇ-କନ୍ଧମାନଙ୍କ ଭିତରେ ପ୍ରଚଳିତ ସ୍ତୋତ୍ର ଓ ସଙ୍ଗୀତମାନଙ୍କ ସ୍ୱର ଓ ଛନ୍ଦରେ ପକାଇ ସେପରି ପାଞ୍ଚଟି ଗୀତ ରଚନା କଲି ଓ କନ୍ଧଗୀତ ଉପରୁ ପ୍ରତି ଗୀତର ଆକ୍ଷରିକ ଓଡ଼ିଆ ଅନୁବାଦ ବି ଦେଲି । ସେହି ଗୀତ ସଂକଳନର ନାମ ଦେଲି "କୁଇ ଲୋକୁରି ନେହି ପଣରି" (କନ୍ଧ ଲୋକମାନଙ୍କ ପାଇଁ ଉତ୍ତମ ସଙ୍ଗୀତ) ଓ ମୋ ନାଁ ଦେଲି "ପ୍ରାସ୍ତାବଣ ଗୋପୀ କୁଭେସି" । ୰ ଗୋପବାବୁ ତାକୁ ଖୁବ୍ ଆଦର କଲେ, ୧୯୫୭ରେ 'ଉତ୍କଳ ଖାଦି ମଣ୍ଡଳ'ଙ୍କ ଦ୍ୱାରା ପ୍ରକାଶ କରାଇଲେ ଓ କନ୍ଧଗ୍ରାମମାନଙ୍କରେ ସର୍ବୋଦୟ କର୍ମୀମାନଙ୍କ ଦ୍ୱାରା ପ୍ରଚାର କରାଇ ନାନା ଗ୍ରାମରେ ବାଳକ ବାଳିକାଙ୍କ ଦ୍ୱାରା ଦୈନନ୍ଦିନ ସମବେତ ପ୍ରାର୍ଥନା ବେଳେ ଓ ପର୍ବ ଉତ୍ସବବେଳେ ସ୍ତ୍ରୀ ପୁରୁଷ ସମସ୍ତିଙ୍କ ଦ୍ୱାରା ବୋଲାଉଥିଲେ ।

୧୯୫୫ ଓ ୧୯୫୭ରେ ସେ ମୋ ପାଖକୁ କେତେଅର ଚିଠି ଲେଖିଥିଲେ । ତହିଁରୁ ପାଞ୍ଚଖଣ୍ଡି ଚିଠି ମୁଁ ସାଇତି ରଖିଥିଲି । ଏ ପୁସ୍ତକରେ ତାଙ୍କ ହସ୍ତାକ୍ଷରର ନମୁନାସ୍ୱରୂପ ତାର ଫଟୋ ଛପା ହୋଇଛି । ୧୯୫୫ରେ ମୁଁ ପୁରୀ ଜିଲ୍ଲାବୋର୍ଡ଼ର ଦାୟିତ୍ୱରେ ଥିବା ବେଳେ ପୁରୀରେ ତାଳବଣିଆଁରେ ସର୍ବସେବା ସଂଘର ବୈଠକ ଓ ତାହାପରେ ଅ: ଭା: ସର୍ବୋଦୟ ସମ୍ମିଳନୀ ବସିଥିଲା । ଭାରତର ଚାରିଆଡ଼ୁ ଲୋକ ଆସିଥିଲେ । ୰ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ସେଠି ଅନେକ ସମୟରେ ମୋର ଦେଖା ହେଉଥିଲା ଓ ଅନେକ ସଭାରେ ଦର୍ଶକଭାବେ ମୁଁ ଉପସ୍ଥିତ ଥିଲି । ତାହା ପୂର୍ବରୁ ଓ ପରେ ୰ ଆଚାର୍ଯ୍ୟ ବିନୋବାଙ୍କ ପଦଯାତ୍ରା ଭ୍ରମଣର କେତେକ ଅଂଶରେ ମୁଁ ଯୋଗ ଦେଇଥିଲି । ୰ ବିନୋବାଙ୍କର ପୁରୀଜିଲ୍ଲା ବେରୁନିଆପଡ଼ା ରହଣି ବେଳେ ସେଠି ସେ ଗୋଟିଏ ସାହିତ୍ୟିକ ଆଲୋଚନା କରାଇଥିଲେ, ତହିଁରେ ମୁଁ ଅଂଶ ନେଇଥିଲି, ୰ ଗୋପବାବୁ ସେଠାରେ ମଧ୍ୟ ଉପସ୍ଥିତ ଥିଲେ । ୰ ବିନୋବା ସାହିତ୍ୟ, ଦର୍ଶନ ଆଦିରେ ବିଚକ୍ଷଣ ଜ୍ଞାନୀ ଥିଲେ ଓ ସେହି ସଭାରେ ସେ ସାହିତ୍ୟର ଲକ୍ଷ୍ୟ, ଉପାଦାନ, ଶିଳ୍ପ ଆଦି ବିଷୟରେ ଓ ସାହିତ୍ୟିକଙ୍କ ଗୁଣ ଓ ଆଦର୍ଶ ବିଷୟରେ ଗୁଣ୍ଡେ ଗୁଣ୍ଡେ ଗୋଟିଏ ଚିନ୍ତାଶୀଳ ବକ୍ତୃତା ଦେଇଥିଲେ । ପଟ୍ଟେ 'କବିର ଗୁଣ' ବୋଲି

ଗୋଟିଏ ପୁସ୍ତିକା ହୋଇ ସେ ଆଲୋଚନା ସର୍ବୋଦୟ ପ୍ରକାଶନୀ ଦ୍ୱାରା ପ୍ରକାଶିତ ହୋଇଛି । ୧୯୫୭ରୁ ୧୯୫୮ରେ ତାଙ୍କ ତିରୋଧାନ ପର୍ଯ୍ୟନ୍ତ ୰ ଗୋପବନ୍ଧୁ ଚୌଧୁରୀ କଟକ ଖୋରଆବାଡ଼ିସ୍ଥ ସର୍ବୋଦୟ ଆଶ୍ରମରେ ରହୁଥିଲେ, ସେ ବେଳେ ବେଳେ ମୋ ପାଖକୁ (ଭୁବନେଶ୍ୱରସ୍ଥ ମୋର ସରକାରୀ ବସାକୁ) ଆସୁଥିଲେ ଓ ମୁଁ କଟକ ଗଲେ ତାଙ୍କ ପାଖକୁ ଯାଉଥିଲି । ଏହିପରି ତାଙ୍କ ସହିତ ଛ'ସାତ ବର୍ଷର ପ୍ରତ୍ୟକ୍ଷ ପରିଚୟ ଯୋଗୁ ତାଙ୍କ ଜୀବନୀ ଲେଖିବା ପାଇଁ ମୋ ପାଖେ ଯତ୍‌ସାମାନ୍ୟ ଉପାଦାନ, ତା'ପରେ ତାଙ୍କ ମୃତ୍ୟୁ ପରେ ଯେତେବେଳେ ତାଙ୍କ ଜୀବନୀ ଲେଖିବି ବୋଲି ସ୍ଥିର କଲି, ବିଭିନ୍ନ ଲୋକଙ୍କୁ ଭେଟି ପଚରାଉଚରା କରି ଆହୁରି ଉପାଦାନ ସଂଗ୍ରହ କଲି । ସେପରି କେତେକଙ୍କ ନାମ ବିଶେଷଭାବେ ଉଲ୍ଲେଖଯୋଗ୍ୟ ଭାବି ନିମ୍ନରେ ଲେଖୁଅଛି—

| ବିଷୟ | ତଥ୍ୟ ଯୋଗାଇଥିବା ବ୍ୟକ୍ତିଙ୍କ ନାମ |
|---|---|
| ୰ ଗୋପବାବୁଙ୍କ ପୂର୍ବପୁରୁଷ ଗଦେଇ ଚୌଧୁରୀଙ୍କ ବିଷୟରେ କିମ୍ବଦନ୍ତୀ | ଜଗତ୍‌ସିଂହପୁରର ଜଣେ ବ୍ରାହ୍ମଣ ଭଦ୍ରବ୍ୟକ୍ତି ଶ୍ରୀ ବାସୁଦେବ ମହାପାତ୍ର; 'ଗଦେଇ'ଙ୍କ ସମ୍ପର୍କରେ ଥିବା କିମ୍ବଦନ୍ତୀରେ ତାଙ୍କ ପୂର୍ବପୁରୁଷ ପଣ୍ଡିତ ମହାପାତ୍ରଙ୍କ ନାମ ମଧ୍ୟ ଉଚ୍ଚାରିତ ହୁଏ । |
| ୰ ଗୋପବାବୁଙ୍କ ବଂଶଗତ ସାମାଜିକ ଶ୍ରେଣୀ ବଂଶାନୁକ୍ରମ, ବନ୍ଧୁବାନ୍ଧବ ଆଦି | ୰ କବି ବାଳକୃଷ୍ଣ ପଟ୍ଟନାୟକ, ମୋର ଜ୍ୟେଷ୍ଠ-ଭ୍ରାତା ୰ ଗିରିଧାରୀ ମହାନ୍ତି, ଅରଡ଼ାପଦାର ପ୍ରାଚୀନ ଜମିଦାର ବଂଶର ୰ ମଦନମୋହନ ମହାପାତ୍ର (ମୋର ଭିଣେଇ) ଓ ୰ ରାମଚନ୍ଦ୍ର ମହାପାତ୍ର (ସୁନବାବୁ), ବିଖ୍ୟାତ ହେଡ଼ମାଷ୍ଟର ୰ ଶ୍ରୀକୃଷ୍ଣ ମହାନ୍ତି (ମୋର 'ଟିକା ଭାଇ') ଶ୍ରୀଚରଣ ମହାନ୍ତି (ଦଳୁ), ଏକଦା ବରିଷ୍ଠ ଆଇନଜୀବୀ ଓ ସମାଜସେବକ ୰ ବିଚକ୍ଷାନନ୍ଦ ଦାସ (ସ୍ୱାମୀଜୀ) |
| ୰ ଗୋପବାବୁଙ୍କ ପିଲାଦିନ | ୰ ଗିରିଧାରୀ ମହାନ୍ତି, ୰ ସ୍ୱାମୀଜୀ, ୰ ଶ୍ରୀକୃଷ୍ଣ ମହାନ୍ତି ଓ ୰ ଗୋପବାବୁଙ୍କ ଭଉଣୀ ୰ ବେଙ୍ଗ ଅପା |

| ବିଷୟ | ତଥ୍ୟ ଯୋଗାଇଥିବା ବ୍ୟକ୍ତିଙ୍କ ନାମ |
| --- | --- |
| ୰ ଗୋପବାବୁଙ୍କ କଲେଜ-ପଢ଼ୁଆ ଜୀବନ | ୰ ଶ୍ରୀକୃଷ୍ଣ ମହାନ୍ତି, ୰ ବିରୂପାକ୍ଷ କର (ଯାଜପୁରର ଆଡ଼ଭୋକେଟ୍), ୰ ସାଧୁ ଚରଣ ମହାନ୍ତି (ଅବସରପ୍ରାପ୍ତ ଜିଲାଜଜ୍), ଭୂଦାନ ପ୍ରେମୀ |
| ୰ ଗୋପବାବୁଙ୍କ ସ୍କୁଲର ଜୀବନ | ୰ ସାଧୁ ଚରଣ ମହାନ୍ତି ଓ ତାଙ୍କ ପୁତ୍ର ଶ୍ରୀ ଲକ୍ଷ୍ମୀକାନ୍ତ ମହାନ୍ତି (ଟିମବାବୁ) |
| ୧୯୨୧ରୁ ୧୯୪୧ ଯାଏ ୰ ଗୋପବାବୁଙ୍କ ଜୀବନ ବିଷୟରେ | ଶ୍ରୀ ଅଲେଖ ପ୍ରସାଦ ଦାସ |
| ଉତ୍କଳ ସମ୍ମିଳନୀ ଓ ୰ ଗୋପବାବୁ | ମୋ ପୁତ୍ରବଧୂ ଡକ୍ଟର ଶ୍ରୀମତୀ ନିବେଦିତା ମହାନ୍ତି |
| ବରି ଅଞ୍ଚଳରେ ୰ ଗୋପବାବୁଙ୍କ ହରିଜନ କାମ | ଶ୍ରୀ ବୃନ୍ଦାବନ ତ୍ରିପାଠୀ (ସ୍ୱେ' ହରିଜନ ବନ୍ଧୁ ହେଲେ, ସମ୍ଭବତଃ ଏ ଦିଗରେ ବ୍ରାହ୍ମଣ ସମାଜରେ ସର୍ବପ୍ରଥମେ) |
| ବରିରେ ବିବିଧ ରଚନାତ୍ମକ କାର୍ଯ୍ୟ, ତାହାପରେ ଜେଲ ଜୀବନ | ଶ୍ରୀ ଶୁକଦେବ ସାହୁ (ଆଦିବାସୀ ବିଭାଗ ଅଧୀନସ୍ଥ ବଇଡ଼ା 'ଆଶ୍ରମ ସ୍କୁଲ'ରେ ଶିକ୍ଷକ) |
| ବରିରେ କର୍ମକେନ୍ଦ୍ର କରିଥିଲା ବେଳେ ୰ ଗୋପବାବୁଙ୍କ ଜୀବନ | ବୀରବଲ୍ଲଭପୁରର ଶ୍ରୀ ଫକୀର ମିଶ୍ର (ସର୍ବୋଦୟ କର୍ମୀ), କୁଜଙ୍ଗର ଶ୍ରୀ ନାରାୟଣ ବୀରବର ସାମନ୍ତ |
| ୧୯୨୧ରୁ ୧୯୪୧ ଯାଏ ୰ ଗୋପବାବୁଙ୍କ ବିଷୟରେ ବ୍ୟକ୍ତିଗତ ଅନୁଭୂତି, ବିଶେଷତଃ ଅଲକାଶ୍ରମ, କଂଗ୍ରେସ, ଖଦୀକାର୍ଯ୍ୟ ଓ ବରି ଆଶ୍ରମ କଥା | ଶ୍ରୀ ଅଲେଖ ପ୍ରସାଦ ଦାସ |
| ୧୯୫୦, ଅ: ଭା: ସର୍ବୋଦୟ ସମ୍ମିଳନୀରେ ସାଜସଜ୍ଜା | ଶିଳ୍ପୀ ଶ୍ରୀ ଜଗନ୍ନାଥ ଦାସ |

ନାନା ସମୟରେ ନାନା ବ୍ୟକ୍ତିଙ୍କ ସଙ୍ଗେ କଥୋପକଥନ ବେଳେ ମୁଁ କିଛି କିଛି ତଥ୍ୟ ପାଇଛି, ସେମାନେ ଅସଂଖ୍ୟ, ସେ ସମସ୍ତଙ୍କ ନାମ ମନେ ନାହିଁ । ଆହୁରି ଅନେକେ ଅଛନ୍ତି, ସେମାନେ ଯାହା ଯାହା କହିଲେ ତାଙ୍କ ପୂର୍ବରୁ ଅନ୍ୟମାନେ ମତେ ସେହି ତଥ୍ୟ ଯୋଗାଇ ସାରିଥିଲେ । ସେମାନଙ୍କ ନାମ ମଧ୍ୟ ଟିପି ନାହିଁ ।

ଶ୍ରୀ ମନମୋହନ ଚୌଧୁରୀ (ବୁଲୁବାବୁ), ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା, ଯାମାତା ଶ୍ରୀ ଶରତ୍ ଚନ୍ଦ୍ର ମହାରଣା, ତାଙ୍କ ଅନୁଗାମୀ ଓ ସହକର୍ମୀ ଶ୍ରୀ ଗଙ୍ଗାଧର ମିଶ୍ର ଓ ଶ୍ରୀ ରଘୁନାଥ ପଟ୍ଟନାୟକଙ୍କ ସାହାଯ୍ୟ ଏ ଜୀବନୀ ପ୍ରସ୍ତୁତ ପାଇଁ ବିଶେଷଭାବେ ଉଲ୍ଲେଖଯୋଗ୍ୟ । ଶ୍ରୀ ମନମୋହନ ଚୌଧୁରୀ ତାଙ୍କ ନିଜ ସ୍ମରଣ ଓ ଅଭିଜ୍ଞତାରୁ ଲେଖାଟିଏ ଲେଖି ମତେ ଦେଇଥିଲେ, ଯାହା ଫୁଲ୍‌ସ୍କେପ୍ ଆକାରରେ ହାତଲେଖା ପୃ ୩୯୨ର ସେହି ଲେଖାଟି, ତହିଁରୁ ଯାହା ଯାହା ଏଥିରେ କାର୍ଯ୍ୟରେ ଲଗିବ ଭାବିଲି ତାହା ମୁଁ ବ୍ୟବହାର କଲି । ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ଙ୍କ ଫୁଲସ୍କେପ ଆକାରରେ ୪୧ ପୃଷ୍ଠାର ଲେଖାଟିଏ ଲେଖି ମତେ ଦେଇଥିଲେ । ସେ ଲେଖାଯୋଗୁଁ ପଢ଼ି ୭ ଗୋପବନ୍ଧୁ ଚୌଧୁରୀଙ୍କ କର୍ମମୟ ଜୀବନର ବିବିଧ ଘଟନାକୁ ଓ ବିଭିନ୍ନ ସମୟରେ ସେ ଯାହା ଯାହା କାର୍ଯ୍ୟ କରିଗଲେ ବା ଯେଉଁ ରଚନାତ୍ମକ କାର୍ଯ୍ୟ ସହିତ ସମ୍ପର୍କିତ ହେଲେ, ସେ ସବୁକୁ ଆଗ ପଛ ଅନୁସାରେ ଧାରାବାହିକ ଭାବେ ସଜାଇ ଥୋଇ ମୁଁ ଗୋଟିଏ ତାଲିକା କରି ପାରିଲି । ତାହାପରେ ସେହି ତାଲିକାର ପ୍ରତ୍ୟେକ ବିଷୟରେ ତଥ୍ୟ ଆହରଣ କରିବାକୁ ଚେଷ୍ଟା କଲି । ଶ୍ରୀ ମନମୋହନ ଚୌଧୁରୀ ଓ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ଯେଉଁ ହାତଲେଖା ଯୋଗୁଁ ମତେ ଦେଇଥିଲେ ତହିଁରେ ତ ନାନା ଉପାଦେୟ ତଥ୍ୟ ଥିଲା, କିନ୍ତୁ ସବୁ ନ ଥିଲା ଓ ଆହୁରି କିଛି ମିଳିପାରିଲା ବିଭିନ୍ନ ସମୟର ତାତ୍କାଳିକ ପତ୍ରପତ୍ରିକାରୁ ଓ ଗୋପବାବୁଙ୍କ ନିଜ ଲେଖାରୁ । ସେମାନେ ମତେ ଆଣିଦେଲେ—

(କ)—୧ । 'ରଚନା' ପତ୍ରିକାର କେତେକ ସଂଖ୍ୟା, ୨ । ଗୋଟିଏ ବର୍ଷର 'ସତ୍ୟାଗ୍ରହୀ' ପତ୍ରିକା, ୩ । ଗୋଟିଏ ବର୍ଷର "ଗାନ୍ଧୀ ସେବାସଂଘ ପତ୍ରିକା", ୦ । କିଛି ବର୍ଷର 'ଗ୍ରାମସେବକ' ପତ୍ରିକା ।

(ଖ) ୭ ଗୋପବନ୍ଧୁ ଚୌଧୁରୀଙ୍କ ହାତଲେଖା : ୧ । ଅସମ୍ପୂର୍ଣ୍ଣ ଓ ଅପ୍ରକାଶିତ ଆତ୍ମଜୀବନୀ, ୨ । ସେ ଜେଲ୍‌ରେ ଥିବା ବେଳର ଦୁଇଖଣ୍ଡି ହାତଲେଖା 'ଡାଇରି' ଅପ୍ରକାଶିତ, ୩ । କିଛି କିଛି ହାତଲେଖା ଥିବା ଗୋଟିଏ ଟିପାଖାତା, ୪ । 'ଗାଁ କାମ' ଶୀର୍ଷକ ଅପ୍ରକାଶିତ ପାଣ୍ଡୁଲିପି, ୫ । ଗାନ୍ଧୀଜୀଙ୍କ ଲେଖାମାନଙ୍କରୁ ତାଙ୍କ ଦ୍ୱାରା ସଂଗୃହୀତ ଓଡ଼ିଆରେ ଲେଖା ହୋଇଥିବା ସାରସଂଗ୍ରହ ପାଣ୍ଡୁଲିପିଟିଏ, ୬ । ତାଙ୍କର ଗୋଟିଏ ଅପ୍ରକାଶିତ ଓ ଅସମ୍ପୂର୍ଣ୍ଣ ମାଣ୍ଡୁଲିପି 'ଗୁଜରାଟ-ଓଡ଼ିଆ ଅଭିଧାନ', ୭ । ସେ ଅନ୍ୟ-

ମାନଙ୍କ ଲେଖିଥିବା ଚିଠି କେତେଖଣ୍ଡି, ବରିଷ୍ଠ ସର୍ବୋଦୟ କର୍ମୀ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ୬ ଗୋପବନ୍ଧୁ ଚୌଧୁରୀ ତାଙ୍କ ପାଖକୁ ଲେଖିଥିବା କେତେଖଣ୍ଡ ଚିଠି ସାଇତି ରଖିଥିଲେ ଓ ଏଥିରେ ବ୍ୟବହାର କରିବାପାଇଁ ସେଗୁଡ଼ିକ ଦେଇଥିଲେ ।

ମୁଁ ଭାବୁଥିଲି, ଅପର କେହି ମୋ ମୁହଁ କଥାକୁ ଲେଖି ପକାଉଥିବେ—ଏଣୁପରି ମୋଠାରୁ ଶୁଣି ଜୀବନୀ ଲେଖିନେବା ପାଇଁ ଶ୍ରୀ ମନମୋହନ ଚୌଧୁରୀ, ଶ୍ରୀ ଫକୀର ମିଶ୍ର ଆଦି ଶ୍ରୀ ନୀଳାମ୍ବର ତ୍ରିପାଠୀଙ୍କୁ ଅନୁଲେଖକ ନିଯୁକ୍ତ କରିଥିଲେ । ଶ୍ରୀ ତ୍ରିପାଠୀ ପ୍ରାୟ ପଇଁତିରିଶଦିନ ଯାକେ ଶ୍ରୁତଲିଖନ ଲେଖିଲେ । ତହିଁରେ କୌଣସି ସୁବିଧା ହେଲା ସେ ପାଣ୍ଡୁଲିପି ଲେଖା ଆରମ୍ଭ ହୋଇଗଲା । କିନ୍ତୁ ଅନୁଭବ କଲି ଯେ ତହିଁରେ ନାନା ଅସୁବିଧା ହେଉଛି ଓ ତାହା ଅପେକ୍ଷା ମୁଁ ନିଜେ ଲେଖିବା ହିଁ ପ୍ରୟୋଜନ । ସେଥିଯୋଗୁଁ ମୂଳରୁ ଲେଖିବାକୁ ଆରମ୍ଭ କଲି । 'ଉତ୍କଳ ନବଜୀବନ ମଣ୍ଡଳ' କାର୍ଯ୍ୟାଳୟରେ ତଥ୍ୟ ସଂଗ୍ରହ ପାଇଁ ସେ ଅନୁଷ୍ଠାନର ବାର୍ଷିକ ସମ୍ମିଳନୀମାନଙ୍କ ଛପା ରିପୋର୍ଟ ଓ କିଛି ଅନ୍ୟାନ୍ୟ ଲେଖା ପ୍ରଭୃତି ଶ୍ରୀମତୀ ମାଳତୀ ଦେବୀଙ୍କ ଆନୁକୂଲ୍ୟରେ ଶ୍ରୀ ଋଷି ବେଦବ୍ରତଙ୍କଠାରୁ ଓ କେତୋଟି ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କଠାରୁ, କିଛି ତଥ୍ୟ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କଠାରୁ ପାଇଥିଲି । ଖଦୀକାମ ବିଷୟରେ ଓ ମୌଳିକ ଶିକ୍ଷା ବିଷୟରେ କିଛି ତଥ୍ୟ ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ଆଣି ମତେ ଦେଇଥିଲେ ।

ଶ୍ରୀ ବନମ କେଶରୀ ବିଶ୍ୱାଳ ଏକତ୍ରିଶି ଜଣଙ୍କ ପାଖକୁ ଯାଇ କିଛି ଉପାଦାନ ସଂଗ୍ରହ କରି ମତେ ଦେଇଥିଲେ । ତହିଁରୁ ଯାହା ମୋର ଲେଖିବାର କାର୍ଯ୍ୟରେ ଲାଗିଲା ସେଥିରୁ ପ୍ରତ୍ୟେକ ବିଷୟ ଓ ଯେଉଁମାନଙ୍କଠାରୁ ସେସବୁ ଉପାଦାନ ମିଳିଲା ସେମାନଙ୍କ ନାମ ନିମ୍ନରେ ଦେଲି—

| ବିଷୟ | ତଥ୍ୟ ଯୋଗାଇଥିବା ବ୍ୟକ୍ତିଙ୍କ ନାମ |
|---|---|
| ୬ ଗୋପବାବୁଙ୍କ ପିଲାଦିନ କଥା | ୬ ଗୋପବାବୁଙ୍କ ଭଉଣୀ ୬ ମାଳ ଅପା ଓ ୬ ସୁଲ ଅପା, ଶ୍ରୀ ଦୁର୍ଗା ଚରଣ ମହାନ୍ତି, ୬ ଜଗନ୍ନାଥ ଦାସ (ପୂର୍ବେ ଭାରତ ପାର୍ଲାମେଣ୍ଟ ସଦସ୍ୟ) |
| ୬ ଗୋପବାବୁଙ୍କ କଲେଜ ଜୀବନ | ୬ ଜଗନ୍ନାଥ ଦାସ, ୬ ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି, ଆଡ଼ଭୋକେଟ୍, ୬ ଗଜାଧର ମହାନ୍ତି, ଇଂରାଜୀ ଅଧ୍ୟାପକ, ଅଧ୍ୟାପକ ମୋହିନୀ ମୋହନ ଭଟ୍ଟାଚାର୍ଯ୍ୟ |

| ବିଷୟ | ତଥ୍ୟ ଯୋଗାଇଥିବା ବ୍ୟକ୍ତିଙ୍କ ନାମ |
|---|---|
| ୰ ଗୋପବାବୁଙ୍କ ସ୍ଥାପିତ ବେଳ ଅଳକାଶ୍ରମ ଓ ସେତେବେଳେ ୰ ଗୋପବାବୁଙ୍କ ଜୀବନ | ୰ ସାମୁଏଲ ଦାସ, ଅବସରପ୍ରାପ୍ତ ଆଇ.ଏ.ଏସ୍., ୰ ଭଗୀରଥୀ ମହାପାତ୍ର, ଜମିଦାର ଓ ଆଡ୍‌ଭୋକେଟ, ଓଡ଼ିଶା କଂଗ୍ରେସର ଏକଦା ଶୀର୍ଷ ନେତା; (ସେ ଫୁଲ୍‌ସ୍କ୍ୟାପ୍ ଆକାରରେ ୩୨ ପୃଷ୍ଠା ଲେଖି ଦେଇଥିଲେ ।) ଶ୍ରୀ ବୈଦ୍ୟନାଥ ପଣ୍ଡା, ଶ୍ରୀ ବ୍ରହ୍ମାନନ୍ଦ ଚୌଧୁରୀ, ଶ୍ରୀ ରାମକୃଷ୍ଣ ନନ୍ଦ ଓ ଶ୍ରୀ ବୈଦ୍ୟନାଥ ନନ୍ଦ |
| ୰ ଗୋପବାବୁଙ୍କ କଟକ ଜିଲ୍ଲାବୋର୍ଡ଼ ଚେଆରମ୍ୟାନ୍ ହୋଇଥିବା ବେଳ କଥା | 'ଜାତୀୟ କବି' ୰ ବୀର କିଶୋର ଦାସ, ୰ ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି, ୰ ରଘୁନାଥ ମହାନ୍ତି, ୰ ଯଦୁମଣି ମଙ୍ଗରାଜ (ବରିଷ୍ଠ କଂଗ୍ରେସ ନେତା) |
| ୰ ଗୋପବାବୁ ତାଙ୍କ ଜୀବନରେ ପ୍ରଥମଥର ଗିରଫ ହେଲା ବେଳ କଥା | ଯେ ତାଙ୍କୁ ଗିରଫ କରିଥିଲେ ସେହି ପୁଲିସ୍ କର୍ମଚାରୀ । ନିଜ ନାମ ନ ଦେଇ ହାଫ୍ ଫୁଲ୍‌ସ୍କେପ୍ କାଗଜରେ ଛଅପୃଷ୍ଠା ଲେଖି ଦେଇଥିଲେ |
| ୰ ଗୋପବାବୁଙ୍କ ଜେଲ୍ ଜୀବନ | ୰ ପୂଜ୍ୟ ଆଚାର୍ଯ୍ୟ ହରିହର ଓ ଶ୍ରୀ କରୁଣାକର ନନ୍ଦ ନାଏକ |
| ୰ ମହାତ୍ମାଜୀଙ୍କ ହରିଜନ ପଦଯାତ୍ରାରେ ୰ ଗୋପବାବୁ | ଶ୍ରୀ ସୁରେନ୍ଦ୍ର ନାଥ ରାୟ, ଶ୍ରୀ ଉପେନ୍ଦ୍ର ନାଥ ରାୟ |
| ବରି ଆଶ୍ରମ ଓ ସେତେବେଳେ ୰ ଗୋପବାବୁଙ୍କ ଜୀବନ | ୰ ବ୍ରଜମୋହନ ସିଂହ (ବୁଟୁବାବୁ), ଶ୍ରୀ ପଦ୍ମନାଭ ରାୟ, ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତି ଓ ଶ୍ରୀ ବିକ୍ରମ କେଶରୀ ବିଶ୍ୱାଳ ନାନା ବ୍ୟକ୍ତିଙ୍କଠୁଁ ଶୁଣି ଟିପି ଆଣିଥିବା କେତୁ ତଥ୍ୟ |
| ୰ ଗୋପବାବୁଙ୍କ ଦ୍ୱାରା ହରିଜନ ସେବାକାର୍ଯ୍ୟ | ଉପରୋଲ୍ଲିଖିତ ଭଦ୍ର ମହୋଦୟମାନେ ଓ ଶ୍ରୀ ବୃନ୍ଦାବନ ତ୍ରିପାଠୀ |
| ଭୂଦାନ | ଶ୍ରୀ ମାୟାଧର ଦାସ |

| ବିଷୟ | ତଥ୍ୟ ଯୋଗାଇଥିବା ବ୍ୟକ୍ତିଙ୍କ ନାମ |
| --- | --- |
| ୰ ଗୋପବାବୁଙ୍କ ବିଷୟରେ ସାଧାରଣ ଭାବେ ମୋଟାମୋଟି ନିଜ ନିଜ ଅଭିଜ୍ଞତା | ୰ ପୂଜ୍ୟ ଆଚାର୍ଯ୍ୟ ହରିହର, ୰ ଲିଙ୍ଗରାଜ ମହାନ୍ତି, ୰ ଭାଗୀରଥୀ ମହାପାତ୍ର, ୰ ପଣ୍ଡିତ ଗୋବିନ୍ଦ ମିଶ୍ର, ୰ ଶ୍ୟାମା ଚରଣ ମହାପାତ୍ର |
| ୰ ଗୋପବାବୁଙ୍କ ସମ୍ପର୍କରେ ବିଭିନ୍ନ ବିଷୟରେ | ୰ ରାଧାକୃଷ୍ଣ ବିଶ୍ୱାସରାୟ (ଭୂତପୂର୍ବ ମନ୍ତ୍ରୀ), ବିଶିଷ୍ଟ ସର୍ବୋଦୟ କର୍ମୀ ଓ ନେତା, ଶ୍ରୀ ନନ୍ଦ କିଶୋର ଦାସ, ସର୍ବୋଦୟ କର୍ମୀ ଶ୍ରୀମତୀ ପ୍ରେମଲତା ଜେନା, ଭିଙ୍ଗାରପୁରର ଜମିଦାର ଶ୍ରୀ ଚୌଧୁରୀ ଯଦୁନାଥ ଦାଶ ମହାପାତ୍ର, ଶ୍ରୀ କଣ୍ଡୁରି ଚରଣ ନାଏକ, ଶ୍ରୀ ଯଦୁମଣି ଦାସ, ଶ୍ରୀ ପୁରୁଷୋତ୍ତମ ମହାପାତ୍ର, ଶ୍ରୀ କାମାକ୍ଷୀ ପ୍ରସାଦ ଶର୍ମା |

ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ଯେଉଁମାନଙ୍କଠାରୁ ଉପାଦାନ ସଂଗ୍ରହ କରି ମତେ ଦେଇଥିଲେ ତନ୍ମଧ୍ୟରେ ଥିଲେ—ଜଣେ କର୍ମୀ ଶ୍ରୀ ଗୋବିନ୍ଦ ସାମଲ । ବନ୍ଧୁ ୰ ଗୋପବାବୁଙ୍କର କର୍ମକ୍ଷେତ୍ର ହୋଇଥିଲା ବେଳେ ନାନା ଘଟଣା ଶ୍ରୀ ସାମଲ ତାଙ୍କ ଡାଇରିରେ ଲେଖିଥିଲେ । ସେହି ଡାଇରି ଓ ଗୋଟିଏ ଦୀର୍ଘ ଲେଖା ସେ ଦେଇଥିଲେ ।

ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତି ୰ ଗୋପବାବୁଙ୍କ କଣ୍ଠି ରହଣି ବେଳର ନାନା ରଚନାତ୍ମକ କାର୍ଯ୍ୟର ତାଲିକା ଓ ବିଭିନ୍ନ କେନ୍ଦ୍ରରେ କାର୍ଯ୍ୟ କରୁଥିବା କର୍ମୀମାନଙ୍କ ତାଲିକା ଲେଖି ଶ୍ରୀ ଶରତ୍ ଚନ୍ଦ୍ର ମହାରଣାଙ୍କୁ ଦେଇଥିଲେ ।

୰ ଗୋପବାବୁଙ୍କ ବିଷୟରେ ନିଜ ନିଜର ପ୍ରତ୍ୟକ୍ଷ ଅଭିଜ୍ଞତା ଥିଲେ ଲେଖି ପଠାନ୍ତୁ ବୋଲି ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ଖବର କାଗଜରେ ଓ ପତ୍ରପତ୍ରିକା ମାଧ୍ୟମରେ ଆବେଦନ ଜଣାଇଥିଲେ । ତାକୁ ପଢ଼ି ଯେଉଁମାନେ ମୋ ପାଖକୁ ଲେଖା ପଠାଇଲେ ତନ୍ମଧ୍ୟରେ ଥିଲେ ଶ୍ରୀ ବୈଦେହୀ ପଣ୍ଡା, ଏକଦା ସ୍ୱାଧୀନତା ସଂଗ୍ରାମୀ ଓ ପରେ କଇଡ଼ା 'ଆଶ୍ରମ ସ୍କୁଲ'ର ଶିକ୍ଷକ (ସରକାରଙ୍କ ଆଦିବାସୀ ବିଭାଗ ଅଧୀନସ୍ଥ) ଶ୍ରୀ ଶୁକଦେବ ସାହୁ; ସର୍ବୋଦୟ କର୍ମୀ, କଣ୍ଟାଇର ଶ୍ରୀ ଭଜନ ଚନ୍ଦ୍ର ମହାନ୍ତି, ସର୍ବୋଦୟ କର୍ମୀ ଶ୍ରୀ ପ୍ରଫୁଲ୍ଲ ଦାସ ଓ ରହଙ୍ଗିରର ଶ୍ରୀ ଦେବେନ୍ଦ୍ରନାଥ ପାଢ଼ୀ ।

ଆହୁରି ଅନେକ ଲେଖକଙ୍କ ଲେଖାରେ ଭାବୋଚ୍ଛ୍ୱାସର ଆଧିକ୍ୟ ଥିଲେହେଁ ନୂତନ ତଥ୍ୟ ନ ଥିଲା । ଅନ୍ୟମାନେ ଯେଉଁ ଉପାଦାନ ଦେଇ ସାହାଯ୍ୟ କରିଥିଲେ କେହି କେହି

ତାର ପୁନରାବୃତ୍ତି କରିଥିଲେ । ଏପରି ପ୍ରତ୍ୟେକଙ୍କ ଆନ୍ତରିକତାକୁ ସମ୍ମାନ ଜଣାଉଛୁ ଓ ସେମାନଙ୍କୁ କୃତଜ୍ଞତା ଜଣାଉଛୁ ସିନା, ସେ ଲେଖାଗୁଡ଼ିକରୁ ଉପାଦାନ ନେଇ ନ ହେବାରୁ ସେମାନଙ୍କ ନାମ ଉଲ୍ଲେଖ କରିବା ଅନାବଶ୍ୟକ ଭାବିଲୁ ।

୬ ଗୋପବାବୁଙ୍କ ତିରୋଧାନ ପରେ ତାଙ୍କ ବିଷୟରେ ଯେତେ ଲେଖା ବିବିଧ ପତ୍ରପତ୍ରିକାରେ ବାହାରିଥିଲା ତାକୁ ମୁଁ ପଢ଼ିଛି ଓ ତନ୍ମଧ୍ୟରୁ ଯହିଁରୁ କିଛି ଉପାଦାନ ପାଇଛି ତାହା ଏଥିରେ ବ୍ୟବହାର କରିଛି । ସେଭଳି ଲେଖାର ଲେଖକ-ମାନଙ୍କ ମଧ୍ୟରେ ଥିଲେ ୬ ଆଚାର୍ଯ୍ୟ ବିନୋବା, ଡକ୍ଟର ରାଧାନାଥ ରଥ (ସମାଜ), ଡଃ ହରେକୃଷ୍ଣ ମହତାବ, ୬ ପ୍ରାଣକୃଷ୍ଣ ପଡ଼ିଆରୀ, ଡଃ କାଳିନ୍ଦୀ ଚରଣ ପାଣିଗ୍ରାହୀ, ୬ ଡଃ ମାୟାଧର ମାନସିଂହ, ଶ୍ରୀମତୀ ସରଳା ଦେବୀ, ଶ୍ରୀ ମଦନ ମୋହନ ମାନ୍ତ୍ରୀ, ୬ ଅଧିରାଜ ମୋହନ ସେନାପତି, ୬ ବାସୁଦେବ ମହାନ୍ତି, ଶ୍ରୀ ଫକୀର ମିଶ୍ର, ଶ୍ରୀ ରାମକୃଷ୍ଣ ପତି, ଶ୍ରୀ ସୁରେଶ, ଶ୍ରୀ ନମାଇଁ, ଶ୍ରୀ ଜୟକୃଷ୍ଣ ବିଶ୍ୱାଳ ଆଦି ।

'ଗ୍ରାମସେବକ' ଆଦି ପତ୍ରିକାମାନଙ୍କର ବିଭିନ୍ନ ବର୍ଷର ବିଭିନ୍ନ ସଂଖ୍ୟା ଯାହା ପୂର୍ବେ ଉଲ୍ଲେଖ କରାଯାଇଛି,—ସେଗୁଡ଼ିକ ପଢ଼ି ପଢ଼ି ତହିଁରୁ ବହୁ ତଥ୍ୟ ଆହରଣ କରାଯାଇଥିଲା ।

୬ ଗୋପବାବୁଙ୍କର ଯେଉଁ ଆତ୍ମଜୀବନୀ, ଚିଠିପତ୍ର, ଡାଇରି ଓ ଟିପାଖାତା ଗୁଡ଼ିକ ମିଳିଥିଲା ତାହାମଧ୍ୟ ଏଥିପାଇଁ ବ୍ୟବହାରରେ ଲାଗିଥିଲା । ୬ ଗୋପବନ୍ଧୁ ଚୌଧୁରୀ ମୋ ପାଖକୁ ଲେଖିଥିବା ତିନୋଟି ଚିଠି ଓ ମୋ ସ୍ତ୍ରୀଙ୍କ ପାଖକୁ ଲେଖିଥିବା ଗୋଟିଏ ଚିଠିର ଫଟୋ ତାଙ୍କ ହସ୍ତାକ୍ଷରର ନମୁନାସ୍ୱରୂପ ଏଥିରେ ଦିଆଗଲା । ଅନୁକୂଳ ସମ୍ମିଳନୀ ପାଇଁ ସେ ଯେଉଁ ଚିତ୍ରଗୁଡ଼ିକ କରାଇ ତାର ଫଟୋ ନିଆଇ ବହିଟିଏ କରାଇଥିଲେ ତାହା ବିଷୟରେ ଏ ପୁସ୍ତକରେ ବିସ୍ତୃତଭାବରେ ଆଲୋଚନା କରାଯାଇଛି ।

ଏ ଜୀବନୀଟି ଲେଖିବା ପାଇଁ ବହୁ ବର୍ଷର ପ୍ରସ୍ତୁତି ଭିତରେ ଓଡ଼ିଆ, ଇଂରେଜୀ ଓ ହିନ୍ଦୀ ଭାଷାରେ ପ୍ରକାଶିତ କେଉଁ କେଉଁ ପୁସ୍ତକ ଓ ଅନ୍ୟାନ୍ୟ ଲେଖା ମୁଁ ପଢ଼ିଲି ଓ ତହିଁରୁ କଣ କଣ ମୋର ସହାୟକ ହେଲା ସେ ସବୁତକର ନାମ ମୋର ମନେ ନାହିଁ । ଯାହା ମନେଅଛି ସବୁଯାକର ତାଲିକା କଲେ ଦୀର୍ଘ ହେବ, ଆବଶ୍ୟକ ବି ଲାଗୁ ନାହିଁ । ତଥାପି, କେତୋଟିର ନାମ ଦିଏଁ :— ୧ । ଭାରତୀୟ ବିଦ୍ୟାଭବନଙ୍କ ଦ୍ୱାରା ପ୍ରକାଶିତ ଇଂରାଜୀ ବହି "ଭାରତୀୟ ଜନଗଣଙ୍କ ଇତିହାସ ଓ ସଂସ୍କୃତି", ଏକାଦଶ ଭାଗ (ସ୍ୱାଧୀନତା ପାଇଁ ସଂଗ୍ରାମ), ସମ୍ପୃକ୍ତ ସମୟରେ ଭାରତର ରାଜନୈତିକ ଓ ସାମାଜିକ ଇତିହାସ ବିଷୟରେ ବିବିଧ ପୁସ୍ତକ, ୨ । ଇଂରାଜୀ ବହି "ଭାରତ, କର୍ଜନଙ୍କଠାରୁ ନେହେରୁଙ୍କ ପର୍ଯ୍ୟନ୍ତ ଓ ତାହାପରେ", ଲେଖକ—ଶ୍ରୀ ଦୁର୍ଗା ଦାସ,

ମୁଖବନ୍ଧ – ଭାରତର ରାଷ୍ଟ୍ରପତି ଡକ୍ଟର ଜାକିର୍ ହୁସେନ୍, ୩ । ଇଂରାଜୀରେ "ଯେଉଁ ଲୋକେ ଭାରତକୁ ଶାସନ କରୁଥିଲେ", ୨ୟ ଖଣ୍ଡ, ଲେଖକ ଶ୍ରୀ ଫିଲିପ୍ ଉଡ୍‌ରଫ୍, ୪ । ଇଂରାଜୀରେ "ରାତି ଅଧରେ ସ୍ୱାଧୀନତା", ଲେଖକ—ଶ୍ରୀ ଲାରି କଲିନ୍‌ସ ଓ ଶ୍ରୀ ଡୋମିନିକ୍ ଲାପିଏରେ, ୫ । ଡଃ ହରେକୃଷ୍ଣ ମହତାବଙ୍କ ଦ୍ୱାରା ଲିଖିତ "ଓଡ଼ିଶାର ଇତିହାସ", ଇଂରାଜୀରେ ଓ ୬ । ଓଡ଼ିଆରେ, ୭ । ଡଃ ମହତାବଙ୍କ ଦ୍ୱାରା ଲିଖିତ "ଦଶବର୍ଷର ଓଡ଼ିଶା", ୮। ଡଃ ମହତାବଙ୍କ ଆତ୍ମଜୀବନୀ "ସାଧନାର ପଥେ", ୯ । ୰ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଆତ୍ମଜୀବନୀ, ୧୦ । ୰ ପଣ୍ଡିତ ଗୋଦାବରୀଶ ଆତ୍ମଜୀବନୀ, ୧୧ । ପ୍ରକାଶିତ "ଗାନ୍ଧୀ ରଚନାବଳୀ" ଓ ତାଙ୍କ ଲେଖା ଅଲଗା ଅଲଗା ସବୁ ପୁସ୍ତକ, ୧୨ । ଗାନ୍ଧୀ-ଜୀବନ, ଗାନ୍ଧୀ-ବିଶ୍ୱର ବିଷୟରେ ପ୍ରକାଶିତ ବହୁ ପୁସ୍ତକ, ୧୩ । ସର୍ବୋଦୟ ବିଷୟରେ, ବିନୋବାଙ୍କ ବିଷୟରେ ଓ 'ଭୂଦାନ' ବିଶ୍ୱର ବିଷୟରେ ପ୍ରକାଶିତ ବିବିଧ ପୁସ୍ତକ ଓ ସେ ବିଷୟରେ ଓଡ଼ିଆରେ 'ସର୍ବୋଦୟ ପ୍ରେସ୍' ଦ୍ୱାରା ପ୍ରକାଶିତ ସବୁ ପୁସ୍ତକ ଓ ଇଂରାଜୀ, ହିନ୍ଦୀ, ଓଡ଼ିଆରେ ପତ୍ରିକାମାନଙ୍କରେ ପ୍ରକାଶିତ ବିବିଧ ଲେଖା, ୧୪ । ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀଙ୍କ ପୁସ୍ତକ "ଅଗଷ୍ଟ ବିପ୍ଳବ", ୧୫ । ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକଙ୍କ "ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ", ୧୬ । ୰ କୁଳବୃଦ୍ଧ ମଧୁସୂଦନ ଦାସ, ୰ ଉତ୍କଳମଣି ଗୋପବନ୍ଧୁ, ୰ ଆଚାର୍ଯ୍ୟ ହରିହର, ୰ ପଣ୍ଡିତ ଗୋଦାବରୀଶ ମିଶ୍ର, ୰ ପଣ୍ଡିତ କୃପାସିନ୍ଧୁ ହୋତା, ୰ ଈଶ୍ୱରଲାଲ୍ ବ୍ୟାସ୍ ଓ ବହୁ ଅନ୍ୟାନ୍ୟ ବ୍ୟକ୍ତିଙ୍କ ବିଷୟରେ ଓଡ଼ିଆରେ ଲେଖା ପ୍ରାୟ ସବୁ ପୁସ୍ତକ, ୧୭ । ୰ ପଣ୍ଡିତ ଗୋବିନ୍ଦ ମିଶ୍ରଙ୍କ ପୁସ୍ତକ "ଜାତୀୟ ଜୀବନର ଆତ୍ମପ୍ରକାଶ", ୧୮ । ଶ୍ରୀ ପବିତ୍ର ମୋହନ ପ୍ରଧାନଙ୍କ ଆତ୍ମଜୀବନୀ 'ମୁକ୍ତି ପଥେ ସୈନିକ'ର ପ୍ରଥମ ଭାଗ, ୧୯ । ୰ ଅନସୂୟା ପ୍ରସାଦ ପାଠକଙ୍କ ହିନ୍ଦୀ ଆତ୍ମଜୀବନୀ "ମେରା ଉତ୍କଳ ପ୍ରବାସ", ୨୦ । ୰ ଗୋପବନ୍ଧୁ ଚୌଧୁରୀଙ୍କର ସବୁ ପ୍ରକାଶିତ ପୁସ୍ତକ ଓ ବିଭିନ୍ନ ପତ୍ରିକାରେ ତାଙ୍କର ପ୍ରକାଶିତ ସବୁ ଲେଖା ଇତ୍ୟାଦି ।

୰ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ଯେ କୌଣସି ସମୟରେ ସଂପୃକ୍ତ ହୋଇ ନିଜ ପ୍ରତ୍ୟକ୍ଷ ଅଭିଜ୍ଞତାକୁ ମନେ ପକାଇ ତାଙ୍କ ବିଷୟରେ ଯେଉଁମାନେ ମୁଖ କଥାରେ ବା ଲିଖିତ ଆକାରରେ ତାଙ୍କ ସମ୍ବନ୍ଧରେ ମତେ ଯାହାକିଛି ଉପାଦାନ ଯୋଗାଇଛନ୍ତି ମୁଁ ସେଭଳି ପ୍ରତ୍ୟେକଙ୍କୁ ଗଭୀର କୃତଜ୍ଞତା ଜଣାଉଛି । ବହୁଜନଙ୍କଠାରୁ ସେପରି ସହଯୋଗ ନ ପାଇଥିଲେ ମୁଁ ତାଙ୍କର ଏହି ଜୀବନୀ ଲେଖିପାରି ନ ଥାନ୍ତି ।

ଶ୍ରୀ ମନମୋହନ ଚୌଧୁରୀ, ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ଓ ଶ୍ରୀ ଶରତ୍ ଚନ୍ଦ୍ର ମହାରଣାଙ୍କୁ ବିଶେଷଭାବେ କୃତଜ୍ଞତା ଜଣାଉଛି । ସେମାନେ ସାହାଯ୍ୟ ନ କରିଥିଲେ ୰ ଗୋପବନ୍ଧୁ ଚୌଧୁରୀଙ୍କର ଜୀବନର ପ୍ରଧାନ ଘଟଣାଗୁଡ଼ିକ ଓ ବିଭିନ୍ନ ସମୟରେ

ତାଙ୍କର ବିବିଧ ଗଠନାତ୍ମକ କାର୍ଯ୍ୟର ସମନ୍ୱିତ ତାଲିକାଟିଏ ସୁଦ୍ଧା ପ୍ରସ୍ତୁତ କରିପାରି ନ ଥାନ୍ତି । ଶ୍ରୀ ଶରତ୍ ଚନ୍ଦ୍ର ମହାରଣାଙ୍କ ନାମ ବିଶେଷଭାବେ ଉଲ୍ଲେଖ କରୁଛି କାରଣ ଶେଷ ଆଡ଼କୁ ଯେତେବେଳେ କେତେକ ବିଷୟରେ ନୂଆ ତଥ୍ୟ ଆବଶ୍ୟକ ହେଲା, ଅନ୍ୟଥା ବହୁ କାର୍ଯ୍ୟବ୍ୟସ୍ତ ଥାଇ ସୁଦ୍ଧା ସେ ମୋ ପାଇଁ ତାକୁ ସଂଗ୍ରହ କରିଦେଲେ ଓ କଟକରୁ ବାରମ୍ବାର ମୋ ସହିତ ସେ ବିଷୟରେ ଆଲୋଚନା କରିବାକୁ ଭୁବନେଶ୍ୱର ଆସୁଥିଲେ ।

ଏ ପୁସ୍ତକର ପ୍ରକାଶକ କଟକର 'ବିଦ୍ୟାପୁରୀ'ଙ୍କୁ ଓ ବିଶେଷତଃ ତହିଁର ଶ୍ରୀ ପୀତାମ୍ବର ମିଶ୍ରଙ୍କୁ କୃତଜ୍ଞତା ଜଣାଉଛି । ମୋ'ଠାରୁ ଶୁଣି ଶୁଣି ସେ ଏହାର ପ୍ରକାଶନ ଦାୟିତ୍ୱ ନେବାକୁ ଆଗ୍ରହ ଦେଖାଇଲେ । ପାଣ୍ଡୁଲିପିର ଆକାର ଓ ଫଟୋ ଆଦିର ସଂଖ୍ୟା ଦେଖି ଆଦୌ ଦ୍ୱିଧା କଲେ ନାହିଁ, ବରଂ କହିଲେ ଯେ ଆକାରରେ ଯେତେ ବଡ଼ ହେଉ, ଯେତେ ଫଟୋ ଆଦି ଦେବା ଆବଶ୍ୟକ ପଡ଼ୁ, ସେ ରାଜି । ପାଣ୍ଡୁଲିପିର ଛପା ସରି ଆସିବା ବେଳକୁ ଆଉକିଛି ଲେଖା ଲେଖିବା ଆବଶ୍ୟକ ହେଲା । ସେଥିପାଇଁ ଉପାଦାନ ବହୁତ ସମୟ ଲାଗିଲା ଓ ଖୋଜି ଖୋଜି ପୁରୁଣା ଫଟୋଗୁଡ଼ିକ ପାଇ ପାଇ କେତେ ମାସ ବିତିଗଲା । ସେଥିସକାଶେ ସେ ଧୈର୍ଯ୍ୟ ଧରି ଅପେକ୍ଷା କଲେ । ବହିଟିର ସବୁ ପ୍ରୁଫ୍ ସେ କଷ୍ଟ ସ୍ୱୀକାର କରି ଯତ୍ନ ସହକାରେ ଦେଖିଛନ୍ତି । ଛାପାରେ ଯାହା ଭୁଲ୍ ଅଛି ତାହା ସଂଖ୍ୟାରେ ଅତି ଅଳ୍ପ, ତଥାପି ଗୋଟିଏ ଶୁଦ୍ଧିପତ୍ର ଦିଆଗଲା ।

୰ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ଜୀବନୀ କେବଳ ଜଣେ ବ୍ୟକ୍ତିଙ୍କର ଜୀବନ କାହାଣୀ ନୁହେଁ, ଗୋଟିଏ ସମୟର ଇତିହାସ, ନାନା ଉଦ୍ୟମର ଇତିହାସ ଓ ନାନା ବ୍ୟକ୍ତିଙ୍କ ଆତ୍ମତ୍ୟାଗର କାହାଣୀ ବି ତା ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ନାନା ଦିଗରୁ ତାହାକୁ ଆଲୋଚନା କରି ହେବ, ତେଣୁ ସେ ବିଷୟରେ ବହୁ ପୁସ୍ତକ ଲେଖାଯାଇ-ପାରେ ଓ ଜଣେ ଲେଖକ ନୁହେଁ, ବହୁ ଲେଖକ ତାହା ଲେଖିବା ପ୍ରୟୋଜନ । ୰ ଗୋପବନ୍ଧୁ ଚୌଧୁରୀ ଭାରତରେ ଓ ଉତ୍କଳରେ ସୁବିଦିତ ଜଣେ ପ୍ରାତଃସ୍ମରଣୀୟ ମହାପୁରୁଷ ଥିଲେ, କେବଳ କଂଗ୍ରେସର, ସର୍ବୋଦୟର ବା 'ଭୂଦାନ' ଆନ୍ଦୋଳନର ମହାନ୍ ନେତା ଥିଲେ, ସେତିକି ନୁହେଁ; ଦେଶସେବା ପାଇଁ ସପରିବାର ତାଙ୍କର ତ୍ୟାଗ ଅତୁଳନୀୟ । ତାଙ୍କ ବ୍ୟକ୍ତିତ୍ୱ ଓ ଜୀବନ ଅନନ୍ୟସାଧାରଣ ଥିଲା । ସେ ଜଣେ ବ୍ୟକ୍ତି ହୋଇସୁଦ୍ଧା ନିଜେ ହୋଇଥିଲେ ଏକ ବିଶାଳ ଅନୁଷ୍ଠାନ ପରି, ନାନା କର୍ମ ଓ ପ୍ରେରଣାର ସେ ଉତ୍ସ ଥିଲେ ଓ କେନ୍ଦ୍ର ଥିଲେ । ଦେଶର ଅସଂଖ୍ୟ ବ୍ୟକ୍ତିଙ୍କ ଉପରେ ତାଙ୍କ ଚରିତ୍ର, ଆଦର୍ଶ ଓ ଦୃଷ୍ଟାନ୍ତର ପ୍ରଭାବ ପଡ଼ିଥିଲା ଓ ଅନେକଙ୍କ ଜୀବନକୁ ନୂଆ ମୋଡ଼ ଦେଇଥିଲା । ତାଙ୍କ ଜୀବନ ଘଟଣାବହୁଳ ଓ ବୈଚିତ୍ର୍ୟପୂର୍ଣ୍ଣ ଥିଲା । ଦେଶର

ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନମୟ ସମୟ ମଧ୍ୟରେ ସେ ତାଙ୍କର କର୍ମମୟ ଜୀବନ ଅତିବାହିତ କରିଥିଲେ । ସେହି ସମୟ ଉପରେ ତାଙ୍କ କାର୍ଯ୍ୟର ପ୍ରଭାବ ପଡ଼ିଥିଲା । ଦେଶର ସ୍ୱାଧୀନତା ପ୍ରାପ୍ତି ପାଇଁ, ସମାଜର ମୂଳଦୁଆରୁ ଲୋକଚରିତ୍ର ଗଠନ ପାଇଁ, ସମାଜର ବିବିଧ ଅଭାବ ଓ ସମସ୍ୟାର ସମାଧାନ ପାଇଁ ଓ ନୂତନ ଚେତନାର ଉନ୍ମେଷ ଓ ପ୍ରସାର ପାଇଁ ତାଙ୍କର ବଳିଷ୍ଠ ଅବଦାନ ଥିଲା । ସେ ଋଷିକଳ୍ପ ଆଦର୍ଶ ମନୁଷ୍ୟ ଥିଲେ; ନୈତିକତା, ସଦାଚାର ଓ ସଦ୍‌ବିଚାରର ଜୀବନ୍ତ ପ୍ରତିମୂର୍ତ୍ତି ଥିଲେ ଓ ବିଶୁଦ୍ଧ ଗାନ୍ଧୀବାଦୀ ଥିଲେ । ସେ ନିର୍ଭୀକ, ସତ୍ୟାଗ୍ରହୀ ଓ ସ୍ପଷ୍ଟବାଦୀ ଥିଲେ । ନିଜର ଯେତେ କ୍ଷତି ପଛେ ହୋଇଯାଉ, ନିଜ ନୀତି ଓ ସଂକଳ୍ପରେ ଅଟଳ ଥିଲେ ଓ ନିଜ ଚିନ୍ତା, ବାଣୀ ଓ କାର୍ଯ୍ୟରେ ଏକତ୍ୱ ରଖି ଦୃଢ଼ଭାବେ 'ନିସତ୍ୟ' ଆଚରଣ କରୁଥିଲେ । ସେ ସପରିବାର ଦରିଦ୍ର ଜନସାଧାରଣଙ୍କ ସହିତ ନିଜକୁ ମିଶାଇ ଦେଇଥିଲେ ଓ ସର୍ବତୋଭାବେ ଈଶ୍ୱରାଶ୍ରିତ ହୋଇ ପରହିତ ପାଇଁ ଜୀବନଧାରଣ କରି କାୟମନୋ-ବାକ୍ୟେ 'ଦରିଦ୍ର ନାରାୟଣ'ଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଥିଲେ ଓ ସେମାନଙ୍କ ହିତ ସାଧନ ପାଇଁ ଯେତେବେଳେ ନିଜ ସ୍ୱାଧୀନ ବିଚାରରେ ସିଦ୍ଧାନ୍ତ କରୁଥିଲେ ଯେ ସ୍ରୋତ ବିରୁଦ୍ଧରେ ଉଜାଣି ଗତି କରିବାକୁ ପଡ଼ିବ ସେତେବେଳେ କାଳବିଳମ୍ବ ନ କରି ପୂର୍ବ ବନ୍ଧନ ଛିନ୍ନ କରି ତାହା କରୁଥିଲେ । ଗଭୀର ଅନ୍ଧକାର ଭିତରେ ସେ ଥିଲେ ଜାଜ୍ୱଲ୍ୟମାନ ଆଲୋକଶିଖା । ସେହି ପରମ ଭାଗବତ ଯୁଗପୁରୁଷଙ୍କ ସ୍ମୃତିକୁ ବାରମ୍ବାର ପ୍ରଣାମ ।

। ଇତି ।

ଗୋପୀନାଥ ମହାନ୍ତି

# ସୂଚୀପତ୍ର

ପରିଚ୍ଛେଦ ସଂଖ୍ୟା | ବିଷୟ | ପୃଷ୍ଠା

(୭୧୩-୭୧୪), ଶ୍ରୀ ମନମୋହନ ଚୌଧୁରୀ (୭୧୫-୭୧୬), ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା (୭୧୬-୭୧୭), ଶ୍ରୀ ଶରତ୍ ଚନ୍ଦ୍ର ମହାରଣା (୭୧୭-୭୧୯), ୰ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ, ଶ୍ରୀ ବିଶ୍ୱନାଥ ପଣ୍ଡା (୭୧୯), ୰ ଗୁଣନିଧି ମହାନ୍ତି (୭୨୦-୭୨୧), ୰ ଗୌରାଙ୍ଗ ଚରଣ ଦାସ (୭୨୧-୭୨୨), ୰ ସହଦେବ ଦାସ (୭୨୨), ଶ୍ରୀ ହରେକୃଷ୍ଣ ବିଶ୍ୱାଳ (୭୨୩-୭୨୪), ଶ୍ରୀ ବିନୋଦ କାନନ୍‌ଗୋ (୭୨୪, ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ (୭୨୪-୭୨୫), ୰ ଗୋବର୍ଦ୍ଧନ ପୂହାଣ, ଶ୍ରୀ ଭଗୀରଥ ଦାସ (୭୨୫), ଶ୍ରୀ ବ୍ରଜମୋହନ ସିଂହ (ରାଣ୍ଟୁବାବୁ) (୭୨୫-୭୨୬), ଗୋକୁଳାନନ୍ଦ ମହାନ୍ତି ଓ ଶ୍ରୀମତୀ କନକ ଦେବୀ, ଶ୍ରୀ ବୈକୁଣ୍ଠ ନାଥ ମହାପାତ୍ର (୭୨୭), ଶ୍ରୀ ବୈଦ୍ୟନାଥ ଦାସ (୭୨୭-୭୨୮), ଶ୍ରୀ ବଂଶୀଧର ନାୟକ ଓ ଶ୍ରୀମତୀ ଉତ୍ତମା ଦେବୀ (୭୨୮), ୰ ବାବାଜୀ ରାମଦାସ, ୰ ମଠାଧୀଶ ଚକ୍ରଧର ଦାସ ଅଧିକାରୀ, ଶ୍ରୀ ହରି ଭଜନ, ଶ୍ରୀ ବୀରବର ରଥ (୭୨୯), ଶ୍ରୀ ଅର୍ଜୁନ ଜେନା, ଶ୍ରୀ ଅକ୍ରୁର ଜେନା, ଶ୍ରୀ ମୁରଲୀଧର ଜେନା, ଶ୍ରୀ ସୁରେନ୍ଦ୍ର ନାଥ ମହାନ୍ତି (୭୩୦), ଶ୍ରୀ ବିଶ୍ୱନାଥ ପଟ୍ଟନାୟକ (୭୩୦-୭୩୩), ୰ ଈଶ୍ୱର ଲାଲ୍ ବ୍ୟାସ (୭୩୩-୭୩୮), ଶ୍ରୀ ଭୋଳାନାଥ ମହାପାତ୍ର, ୰ ମହୀଧର ଖୁଣ୍ଟିଆ (୭୩୮), ଶ୍ରୀ ରାମଚନ୍ଦ୍ର ପୁରୀ ଓ ଶ୍ରୀମତୀ ଅମୃତା ଦେବୀ (୭୩୮-୭୩୯), ଶ୍ରୀ ଫକୀର ମିଶ୍ର ଓ ଶ୍ରୀମତୀ ଇନ୍ଦିରା ଦେବୀ (୭୩୯), ଶ୍ରୀ ରାଧାରଞ୍ଜନ ଦାସ ଓ ଶ୍ରୀମତୀ ଶାନ୍ତି ଦେବୀ (୭୩୯-୭୪୦), ଶ୍ରୀ ମହମ୍ମଦ ବାକୀ (୭୪୦-୭୪୧), ଶ୍ରୀ ଋଷି ବେହେରା (୭୪୧-୭୪୨), ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି, ଶ୍ରୀ ଶମ୍ଭୁଶେଖର ଦାସ (୭୪୨) ଶ୍ରୀ ସୁଧାଂଶୁ ଶେଖର ଦାସ, ୰ ପଦ୍ମନାଭ ରାୟ, ଶ୍ରୀ ବୃନ୍ଦାବନ ଜେନା (୭୪୩), ଶ୍ରୀ ଅଲେଖ ପାତ୍ର, ଶ୍ରୀ ଜୟକୃଷ୍ଣ ମହାନ୍ତି ଓ ଶ୍ରୀମତୀ କିରଣବାଳା ଦେବୀ, ୰ ଗଙ୍ଗା ନାରାୟଣ ଦାସ (୭୪୪), ଶ୍ରୀ ପରମାନନ୍ଦ ପଟ୍ଟନାୟକ ଓ ଶ୍ରୀମତୀ ଗଙ୍ଗା ଦେବୀ (୭୪୪-୭୪୫) ।

ମୌଳିକ ଶିକ୍ଷା ସ୍କୁଲମାନଙ୍କ ଶିକ୍ଷକଗଣ (୭୪୫-୭୪୯), ଶ୍ରୀ କୃଷ୍ଣଚନ୍ଦ୍ର ସାହୁ, ୰ ମଧୁସୂଦନ ଦାସ, ଶ୍ରୀ ରାମଚନ୍ଦ୍ର ମିଶ୍ର (୭୪୫), ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତି (୭୪୫-୭୪୭), ଶ୍ରୀ ଗୋଲକ ଚନ୍ଦ୍ର ନାୟକ, ଶ୍ରୀ ରାଧାକୃଷ୍ଣ ସାମଲ (୭୪୭), ଶ୍ରୀ କଣ୍ଡୁରି ଚରଣ ନାୟକ, ଶ୍ରୀ ଜୟକୃଷ୍ଣ ବିଶ୍ୱାଳ (୭୪୭), ଶ୍ରୀ ମଦନମୋହନ ସାହୁ, ୰ ଶ୍ୟାମସୁନ୍ଦର ପଣ୍ଡା, ଶ୍ରୀ କପିଳ

ଚରଣ ଦାସ, ୰ ଗୋପୀନାଥ ସାହୁ, ଶ୍ରୀ ବାସୁଦେବ ସାମଲ (୭୪୮), ଶ୍ରୀ ନଶାକର ଦାସ, ଶ୍ରୀ ବୃନ୍ଦାବନ ତ୍ରିପାଠୀ, ବୃନ୍ଦାବନ ଷଡ଼ଙ୍ଗୀ (୭୪୯) ।

ପୂର୍ବେ ଉଲ୍ଲେଖ କରାଯାଇଥିବା ନାଟ୍ୟକର୍ମୀମାନଙ୍କ ଛଡ଼ା ଅନ୍ୟାନ୍ୟ କେତେକ ନାଟ୍ୟକର୍ମୀ (୭୪୯-୭୫୬) :

୰ ସୁନାମଣି ଦେବୀ (୭୪୯), ଶ୍ରୀମତୀ ଶୋଭାରାଣୀ ପଣ୍ଡା (୭୪୯-୭୫୦), ୰ ମଙ୍ଗଳା ସେନ୍‌ଗୁପ୍ତ, ଶ୍ରୀମତୀ ସୁଶୀଳା ଦେବୀ (୭୫୦-୭୫୧), ଶ୍ରୀମତୀ ମାଣିକ୍ୟ ଦେବୀ ଓ ଶ୍ରୀମତୀ ତୁଳସୀ ଦେବୀ, ଶ୍ରୀମତୀ ଶକୁନ୍ତଳା ଦେବୀ, ଶ୍ରୀମତୀ ତାରାମଣି ଦେବୀ, ଶ୍ରୀମତୀ ଉଷା ଦେବୀ, ଶ୍ରୀମତୀ କ୍ଷେତ୍ରମଣି ଦେବୀ (୭୫୧), ଶ୍ରୀମତୀ ବେଲ ଦେବୀ, ଶ୍ରୀମତୀ ହରପ୍ରିୟା ଦେବୀ (୭୫୨), ଶ୍ରୀମତୀ ପ୍ରଭାବତୀ ଦେବୀ (୭୫୨-୭୫୩), ଶ୍ରୀମତୀ ବୈଦେହୀ ପଣ୍ଡା (୭୫୩-୭୫୪), ଶ୍ରୀମତୀ ମେନକା ମହାପାତ୍ର, ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି (୭୫୪), ଶ୍ରୀମତୀ ରତ୍ନାଦେବୀ ଦୁତୀଆ (୭୫୪-୭୫୫), ଶ୍ରୀମତୀ ମାଳତୀ ବଶ୍ୱାଳ (୭୫୫ ୭୫୬), ଶ୍ରୀମତୀ ଅନ୍ନପୂର୍ଣ୍ଣା ସାମନ୍ତରାୟ, ଶ୍ରୀମତୀ ଅନ୍ନପୂର୍ଣ୍ଣା ଦାସ, ଶ୍ରୀମତୀ ବାସନ୍ତୀ ମିଶ୍ର (୭୫୬) ।

# ଏକ

ଇଂରେଜ ଅଧୀନରୁ ଭାରତକୁ ମୁକ୍ତ କରି ସ୍ୱାଧୀନ କରିବାକୁ ମହାତ୍ମା ଗାନ୍ଧୀ ଯେତେବେଳଠୁଁ ଆନ୍ଦୋଳନ ଆରମ୍ଭ କରିଦେଲେ ସେତେବେଳେ ସମଗ୍ର ଭାରତବର୍ଷରେ ହଜାର ହଜାର ସ୍ତ୍ରୀ-ପୁରୁଷ ଆଗପଛ ହୋଇ ସେ ଆନ୍ଦୋଳନରେ ଯୋଗଦେଲେ । କିଏ କେତେ ଚାକିରି ଛାଡ଼ିଲେ, ନିଜ ଧନ୍ଦା ଛାଡ଼ିଲେ, ଘର ଛାଡ଼ିଲେ, ସମାଜ ଛାଡ଼ିଲେ, ସର୍ବସ୍ୱ ଗଲା, ଅସମ୍ଭବ ତ୍ୟାଗ କଲେ, ଅକଳନ ଦୁଃଖକଷ୍ଟ, ମାଡ଼, ଗାଳି, ନିର୍ଯାତନା ସହିଲେ, ଠେଙ୍ଗାମାଡ଼ରେ ଜଖମ ହେଲେ, ଗୁଳିରେ ମଲେ, ଜେଲ ଗଲେ, ସେହିମାନଙ୍କ ଆତ୍ମବଳି ଆଣିଦେଲା ଭାରତର ସ୍ୱାଧୀନତା ।

ଖାଲି ସେତିକି ନୁହେଁ, ସେ ଆନ୍ଦୋଳନ ଥିଲା ଜଗତର ଇତିହାସରେ ସମ୍ପୂର୍ଣ୍ଣ ନୂଆ ପ୍ରକାରର । ଅସ୍ତ୍ରଶସ୍ତ୍ର ପ୍ରୟୋଗ ନାହିଁ, ହିଂସାଦ୍ୱେଷ ନାହିଁ, ମିଥ୍ୟା ପ୍ରବଞ୍ଚନା ବା ଗୁପ୍ତ ଷଡ଼ଯନ୍ତ୍ର ନାହିଁ, ତଥାପି ସେ ବିରାଟ ରଣ-ବିପ୍ଳବ, ସେ ସ୍ୱାଧୀନତା ପାଇଁ 'ଯୁଦ୍ଧ', ସେ 'ଯୁଦ୍ଧ'ରେ ଶତ୍ରୁର ଶରୀର ଉପରେ ଆଞ୍ଚ ବି ଆସେ ନାହିଁ, ମଣିଷ ନିଜେ ଆଦର୍ଶ ଦେଖାଇ, ତ୍ୟାଗ କରି, ଯାତନା ଭୋଗି ଶତ୍ରୁର ହୃଦୟକୁ ତରଳାଏ, ବିଚାର ବଦଳାଏ, ଅସହଯୋଗ କରି ତାକୁ ଅଚଳ କରିଦିଏ, ତା ବୁଦ୍ଧି ବଣା କରେ, ତାକୁ ଲୋକହସା କରେ, କାଇଲ କରେ ।

କେମିତି ହୋଇପାରିଲା ତା ? ଏଥିପାଇଁ କୋଟି କୋଟି ଲୋକଙ୍କ ଭିତରେ କେତେ ଏକତା, ଶୃଙ୍ଖଳା, ଚରିତ୍ରବଳ, ମନବଳ, ଦୃଢ଼ ସଙ୍କଳ୍ପ, ଦେଶ ପ୍ରେମର ଚେତନା ଦରକାର, କେଡ଼େ ବଡ଼ ଆଦର୍ଶବାଦ ତ୍ୟାଗ ମନୋବୃତ୍ତି ଦରକାର, କେଡ଼େ ଶିକ୍ଷା ସଭ୍ୟତା ଦରକାର । କେମିତି ସେ ଏଡେ ବଡ଼ କାମ ପାଇଁ ପ୍ରସ୍ତୁତ ହେଲେ, ସାରା ପୃଥିବୀକୁ ଆଦର୍ଶ ଦେଖାଇଲେ ?

ଭାରତର ଲୋକ ଥିଲେ ଗାଁ-ଗହଳରେ, ସହରର ଖାଲି କାଁ ଭାଁ କେତେଟା । ଅଧିକାଂଶ "ବୃଦ୍ଧାଙ୍ଗୁଷ୍ଠ ଟିପଚିହ୍ନ" ଦେବା ଲୋକେ, ସମ୍ପୂର୍ଣ୍ଣ ନିରକ୍ଷର । ସେଠି ଦାରିଦ୍ର୍ୟ, କୁସଂସ୍କାର, ଅନୁନ୍ନତ ବୈଷୟିକ ସାମାଜିକ ଅବସ୍ଥାର ଶେଷ ସୀମା, ଜଗତରେ ଆଉ କେଉଁଠି ନାହିଁ, ଲୋକଙ୍କର ଦିନରାତି ଆବୋରି ଥିଲା ନିଜ ଚିନ୍ତାକୁ 'ପେଟ ଚାଖଣ୍ଡିକ', ଖାଲି ନିଜେ, ନିଜ ପରିବାର, କେତେକ ଲୌକିକ ସଂସ୍କାର ଘେନି ବନ୍ଧୁବାନ୍ଧବ କି ଜାତିଆଣ 'ସମାଜ', ଅନ୍ୟ କିଛି ନୁହେଁ ।

ଚାଷୀ ସକାଳୁ ଉଠି ପଖାଳ ଖାଉଁ, ବଳଦ ଘେନି ବିଲ୍‌କୁ ଯାଉଁ, ସଞ୍ଜରେ ଗଞ୍ଜେଇ ଚିଲମ୍, 'ସିନାଥମେଳା', ନ ହେଲେ ଗାଁ-ଦାଣ୍ଡରେ କି ଗାଁ ଆଖଡ଼ାଘରେ ଝାଞ୍ଜ ମୃଦଙ୍ଗ ଧରି ମନଇଚ୍ଛା ଗର୍ଜନ ଗୁଡ଼ା ସଂକୀର୍ତ୍ତନ ଓ "ଜିଜି ଜିଜି ଝାଉଁ", "ଜିଜି ଜିଜି ଝାଉଁ" ଶବ୍ଦ ନିର୍ଘୋଷ । ଆଶା, ସେହି ଶବ୍ଦରେ ଯମ ପଳେଇବ, ସବୁ ସମସ୍ୟା ସବୁ ଅନିଷ୍ଟ ଆପେ ପଳେଇବ ।

କିନ୍ତୁ ଯମ ତ ବେଶି ବେଶି ଆସେ । ମ୍ୟାଲେରିଆରେ ଲୋକେ କତରାଳିଗି ହୁଅନ୍ତି, ବାରମ୍ବାର 'ବାଡ଼ ପଶେ', 'ମା ଠାକୁରାଣୀ ବିଜେ କରନ୍ତି', ଅଖାଦ୍ୟ, ଅସ୍ୱାସ୍ଥ୍ୟକର ଅଭ୍ୟାସ, ଚଳଣି, ପରିବେଶ । ରୋଗ ଘରେ ଘରେ । ଶିଶୁ ପ୍ରସବ କରା ହେଉଥିଲା ଅଲଗା ଘରେ, ଗୁହାଳ ଘରେ, କବାଟ କିଳି, ଘରେ ଧୂଆଁ ଭର୍ତ୍ତି କରି, କେତେବେଳେ ପ୍ରସୂତିର ପେଟ ଉପରେ ଚଢ଼ି, କୋତରା ପିଠା ବାଉରୀଣୀ କଣ୍ଢୁରୁଣୀ ଧାଈ, ହାତରେ ବଡ଼ ବଡ଼ ନଖ, ହାତ ପୂରାଇ ଓଟାରୁଥିବ, କେତେଜଣ ମାଡ଼ିବସିଥିବେ । ଔଷଧ ଥିଲା ଗାଁ ବଇଦଙ୍କ ଚଟୁଆରେ, ଚେରମୂଳି, ଟିଣ୍ଡୁକା, କେତେବେଳେ 'ବଇଦେ' ଔଷଧ ବ୍ୟବସ୍ଥା ଶୁଣାଉଥିଲେ 'ବିଲେଇ ଦୁଧ ପିଆଅ', 'ଅସରପା ନେଣ୍ଡି ଖୁଆଅ' । ବେଳେବେଳେ ଲୋକଙ୍କ ଉପକାର ପାଇଁ ହଠାତ୍ କିଏ କେଉଁ ଗାଁରେ 'ହୁକୁମ' ଦେଉଥିଲା, ହଜାର ହଜାର ରୋଗୀ ଜହ୍ନା-ପିମ୍ପୁଡ଼ି ପରି ଧାର ଲଗୁଥିଲେ । ଆଖି ଖରାପ ହୋଇଛି ? "ତେଲୁଣିପୋକ ଛେଚି ତା' ରସ ଆଖିରେ ପକା, ମୋ ଆଜ୍ଞା ।" ଭୂତ ପ୍ରେତ ଡାହାଣୀ ଡଙ୍କୁଣୀ ଠାକୁରାଣୀ ବି ଦେଶଯାକ ଚାରିଆଡ଼େ, ଗାଁ ଗଣ୍ଡାରେ, କେଉଁ କେଉଁ ଗଛରେ ଲଗିବାକୁ ଟାକି ବସିଛନ୍ତି, ଧରିଲେ ଖାଇବେ । ରାତିରେ ପିଣ୍ଡାତଳକୁ ଯିବାକୁ ଡର ।

ଏ ଶତାବ୍ଦୀର ଦ୍ୱିତୀୟ ଦଶକରେ ବି ଥିଲା ଏହି ଅବସ୍ଥା, ତୃତୀୟ ଦଶକରେ ବହୁ ପରିମାଣରେ ଥିଲା । ଆଜି ହୁଏତ ସେ ଅବସ୍ଥା ଭାବି ହେବ ନାହିଁ । ସେତେବେଳେ ନାହିଁ ଥିଲା 'ଚେତନା' ! କି 'ସମାଜ-ଚେତନା' ! କି 'ସ୍ୱଦେଶ-ଚେତନା' ! ମଣିଷର ଦୁନିଆଁଟା ଥିଲା ଗାଁ, ପାଖରେ କେଉଁ ହାଟ ଯେଉଁଠି ଆଉ କେତୋଟି ଗାଁ ଲୋକ ଏକାଠି ହୁଅନ୍ତି, କିମ୍ବା କେବେ କେଉଁ 'ମେଳଣ' କି ଯାତ୍ରା ପଡ଼ିଆରେ କେତେବେଳେ 'ବନ୍ଧୁବାସିଆ' ଯିବାବେଳେ ବାଟଘାଟରେ । ଗାଁ ବାହାରର ଦୁନିଆଁ କଥା ଲୋକ

କ୍ୱଚିତ୍ ଜାଣେ, କ୍ୱଚିତ୍ ଭାବେ, କେବେ କାନରେ ପଡ଼ିଲେ ଭଣ୍ଡାଣ ଜଳାରେ ଯାଏ, ଲୋକ ଭାବେ—ଆମର କି ଯାଏ ! ବିପଦ କି ଗୋଳମାଳ ନା ଶୁଣିଲେ ଭ୍ରୁତରେ ଛନକା ପଶେ, ଯୁଗଯୁଗର ଅତ୍ୟାଚାର ଶୋଷଣ ଦାରିଦ୍ର୍ୟରେ ସଢ଼ି ସାହସ ପାଣି ଫାଟିଥିଲା । ଇଂରେଜର ନିର୍ମମ ଶାସନ, ଧରପଗଡ଼, ମାଡ଼, ଜେଲ ଆଇନ୍ ଦେଖି ଦେଖି ଗୃଣଥାଡ଼େ ଭୟ । ନାଲିପଗଡ଼ିଆ ପୁଲିସ୍ କନଷ୍ଟବଲଟିଏ ଆସିଲେ ଲୋକେ ଧାଇଁ ପଳଉଥିଲେ । ଘରେ ପଶି କବାଟ କିଳୁଥିଲେ । ବ୍ୟକ୍ତି ତାର ନିଜ ସମସ୍ୟାରେ 'ନାକ ବୁଡ଼ୁ ବୁଡ଼ୁ' ।

ଖରାଦିନେ ଘରେ ନିଆଁ ଲାଗେ । ବର୍ଷାଦିନେ ଗାଁ ଟଳମଳ, ଫସଲ ଧୋଇଯାଏ, ଗାଈଗୋରୁ ମଣିଷ ଭାସିଯାନ୍ତି । ଘର ଭାଙ୍ଗେ, ଜମି ହୁଏ ବାଲିଭୂଷା । ଆସେ ମଡ଼ୁଡ଼ି, ଦୁର୍ଭିକ୍ଷ, ତୋଫାନ, ଦୈବର ନାନା ଅଦୋହିତ । କେନାଲ ଯାଏ ଅତି ଅଳ୍ପ ଅଞ୍ଚଳରେ । ଅନ୍ୟଠି ଅଳ୍ପ ଫସଲ, ଏକ ଫସଲ । ପନିପରିବା ବି ଚତୁର୍ମାସ୍ୟାରେ ଯେତିକି ହୁଏ, ଆଉ ନାହିଁ । ବିଲାତି ଆଳୁ, ଟମାଟୋ, କୋବି, ପୋଟଳ, ଅମୃତଭଣ୍ଡା ଅନେକ ଲୋକ ଦେଖି ନ ଥିଲେ !

ଗାଁ ସମାଜରେ ଏକତାର ନାଁ ନ ଥିଲା । ଜାତି ଜାତି ଅଲଗା ଅଲଗା ପନ୍ଥା, ଭୂଠ ମଶାଣି ବି ଭିନେ, ତା ଭିତରେ ବି ବଡ଼ ସାନ ଅହଂକାର, ବିଦ୍ୱେଷ, ବାଦ, ଗୋଟିଏ ଜାତି ଭିତରେ ବି 'ବଡ଼ ଜାତି' 'ସାନ ଜାତି' ହୋଇ ନାନା ଉପଜାତି, ବାଡ଼ ବାଡ଼ ହୋଇ ଘୃଣା ଦ୍ୱେଷ ଅହଂକାରରେ ଫଟାଫଟି । ଜାତି ଜାତି ଭିତରେ ଏକାଠି ଖିଆପିଆ ଅସମ୍ଭବ, କାହା ହାତରୁ କିଏ ପାଣି ପିଇବ କି ନ ପିଇବ ସେଥିପାଇଁ ପୂର୍ବାପୂର୍ବି ସେହି ବିଧି ପାଳିବା ହିଁ 'ନିଷ୍ଠା', ସ୍ୱର୍ଗକୁ ଯିବାକୁ ସିଡ଼ି । ନିଷ୍ଠା-କାଷ୍ଠା ହିଁ ତ ଧର୍ମ, ଅସଲ ହେଲା ହାଣ୍ଡିଶାଳ 'ମାରି' ନ ହେଉ । 'ଜାତି ନ ଯାଉ' । ସବୁଠୁ କଡ଼ା ନଜର ଅଛିବ ଜାତିଙ୍କ ଉପରେ । ତାଙ୍କୁ ଛୁଇଁଦେଲେ ଲୁଗା ମାରି, ଗାଧୋଇବାକୁ ପଡ଼ିବ, ସେ ଯେଉଁ ଖାଦ୍ୟ ଛୁଇଁଦେଲେ ସେ ଖାଦ୍ୟ ମାରି । ସବର୍ଣ୍ଣଜାତିଙ୍କ ଆଖିରେ ସେମାନେ ଜନ୍ମରୁ ହୀନ, ଘୃଣ୍ୟ, ଅପବିତ୍ର; କୂଅ, ପୋଖରୀ, ଭୂଠ, ପଙ୍ଗତ, ଠାକୁର, ଦେଉଳ, ଭୁଟଶାଳୀ, ନାଟ, କୀର୍ତ୍ତନ, ଯେଉଁଠିକି ଅନ୍ୟମାନେ ଯାନ୍ତି ସେଠିକି ତାଙ୍କୁ ଯିବା ମନା । ସେହି "ଅଛିବ" ଜାତିଙ୍କ ନିଜ ନିଜ ଉପଜାତି ନାନା ସାନବଡ଼ ଭେଦ, ପାଣିଛୁଆଁ ଭେଦ ! ସେହିପରି ହିନ୍ଦୁ-ମୁସଲମାନ ଭେଦ ।

ସାମାଜିକ ଅର୍ଥନୈତିକ ଶ୍ରେଣୀରେ ଥାଏ ସାମନ୍ତବାଦୀ ସମାଜର ନାନା ଶ୍ରେଣୀ-ଭେଦ । ସାଆନ୍ତିଆ ପନ୍ଥାଏ ଥାନ୍ତି, ସାନବଡ଼ ହୋଇ ଜମିଦାର, ଅନ୍ୟାନ୍ୟ ଅଭିଜାତ କୁଳର, ଗାଁର ଅଳ୍ପ କେତେ 'ଥିଲାବାଲା', 'ବଡ଼ ଘର', ତାଙ୍କ ଭିତରେ ବାଦବିବାଦ ଥାଏ, ପୁଣି ଅନ୍ୟ ଲୋକେ ଗୋଟିଏ ଗୋଟିଏ ସାଆନ୍ତଙ୍କ ଆଡ଼କୁ

ଆତ୍ମଜିବା ଯେଉଁ ଗାଁ ଭିତରେ କଳି ଆହୁରି ତେବେ, ଆହୁରି ବାଡ଼ ବାଡ଼ ହୁଏ । ସାଆନ୍ତଙ୍କଠୁଁ ବଳି ଆହୁରି ପାରିବାର ରକ୍ତଶୋଷା ଗାଁ-'ମହାଜନ'ମାନେ ବନ୍ଧା ରଖିନ୍ତି, କରଜ ଦିଅନ୍ତି, ଜମି ଓ ଜିନିଷ ଠକି ନିଅନ୍ତି । ପୁଣି ସାନ ହୁଅନ୍ତୁ ବଡ଼ ହୁଅନ୍ତୁ, ସ୍ଥାନେ ସ୍ଥାନେ ସରକାରୀ ଚାକିରିଆ, କିଏ ଚାକିରି କରୁଥିଲେ, କିଏ ଚାକିରି କରୁଛନ୍ତି, ଜନସମାଜ ଭିତରେ ସେମାନେ ନିଜକୁ ସ୍ୱତନ୍ତ୍ର ମର୍ଯ୍ୟାଦା, ସ୍ୱତନ୍ତ୍ର ସୁବିଧାର ଅଧିକାରୀ ବୋଲି ଧରିନେଉଥିଲେ । ଏ ସମସ୍ତେ ନିଜ ନିଜ 'ବଂଶ'କୁ ବି ଖୁବ୍ ପ୍ରତାପୀ, ଖୁବ୍ ମର୍ଯ୍ୟାଦାବନ୍ତ ବୋଲି ମନେକରୁଥିଲେ । 'ଜମିଦାର', 'ସାଆନ୍ତ', 'ବାବୁ'ଙ୍କ ଆଗରେ 'ପ୍ରଜା', 'ରଇତ' ଥିଲେ ଯୋଡ଼ହସ୍ତ । ଗାଁ ଗାଁକେ ସମାଜରେ ଉପର ପାହ୍ୟାରେ ଥିଲେ ସାଆନ୍ତମାନେ, ଗାଁର ଅନ୍ୟ ସମସ୍ତେ ତାଙ୍କ ଆଜ୍ଞାବହ, କିଏ ବା ସେବାକାରୀ, ବେଠିଆ, କେତେ ସାଆନ୍ତ, ଜମିଦାର, 'ମହାଜନ' ଅତ୍ୟାଚାରୀ ଶୋଷକ ।

ସେହି ଫଡ଼ା ଫଡ଼ା ବାଦଚ୍ଛେଦମସ୍ତ ପୁରୁଣା ଖଣ୍ଡିଆ ସମାଜରେ ମୂଳରୁ ହିଁ ଏକତାର ପ୍ରଶ୍ନ ନ ଥିଲା । କାହିଁ ସେମାନେ ପରାକ୍ରମୀ ଇଂରେଜ ସରକାର ସଙ୍ଗେ ସଙ୍ଗେ ଲଢ଼ିବାକୁ ବାହାରନ୍ତେ । କାହାରି ମନରେ ନ ଥିଲା ନିଜ ସ୍ୱାର୍ଥ ଛଡ଼ା ଆଉ କଥା ଭାବିବା ପାଇଁ । ରକ୍ଷଣଶୀଳ ସମାଜ, ସେଥିରେ ନାନା କୁସଂସ୍କାର, 'ଧର୍ମ', 'ଅକ୍ଷର', ଖପରାଳିଆଁ 'ପଣ୍ଡିତ'ର ଯାହା ପୋଷାକ ପିନ୍ଧି ନିଜକୁ ଓ ସମାଜଯାକକୁ ବାନ୍ଧି ବାନ୍ଧି ଠେଲୁଥିଲା ।

ନାରୀଜାତି ଦେଶର ଦଶର କାମ କରିବା ଚିନ୍ତା ଭାବିପାରୁ ନ ଥିଲେ, କି ତାଙ୍କଦ୍ୱାରା ତାହା ହେବ ବୋଲି କଳ୍ପନା କରୁ ନ ଥିଲେ । ଖାଲି ପିଲା ପାଳିବା, ଘରକାମ କରିବା ଛଡ଼ା ଜୀବନରେ ଆଉକିଛି ତାଙ୍କ ଦେଇ ହେବ, ଏ କଥା ତାଙ୍କୁ ସମାଜ ଶିଖାଇ ନ ଥିଲା । ବଡ଼ ଘରର ବା ଉଚ୍ଚ ଜାତିର ସ୍ତ୍ରୀ-ଲୋକମାନେ ପଦାକୁ ବାହାରୁ ନ ଥିଲେ । ଡର, ଲାଜ, ଆଡ଼ ଉଢ଼ୁଆଳ, 'ଲୁଚିବା', ଓଢ଼ଣା ଲମ୍ବେଇ ଗ୍ରାମୀଣ ଘରର ପଶି 'ଗୁରୁଜନ' ଦେଖିଲେ ଅଣ୍ଟା ଭାଙ୍ଗି ତଳକୁ ନଇଁପଡ଼ି ଗୃଟେଗୋଡ଼ିଆ ହେଲପଡ଼ି ହୋଇ ଚାଲି ଚାଲି କିଛି ପ୍ରୟୋଜନ ପଡ଼ିଲେ କଥା ନ କହି ଟାକରା ଫୁଟାଇ କିଛି ପ୍ରୟୋଜନ ଅଛି ବୋଲି ସୂଚାଇଦେବା ଏ 'ସଦ୍‌ଗୁଣ' ଥିଲା 'ସଂସ୍କୃତି'ର ଅଙ୍ଗ ।

ମୋ'ର ଦେଶଟାରେ ବହୁବର୍ଷ ଲାଗି ରହିଥିଲା ଏ ଅବସ୍ଥା—ଅଥଚ ଶହ ଶହ ବର୍ଷର ଚଳଣିର ଢାଞ୍ଚା ହଠାତ୍ କେତୋଟି ବର୍ଷରେ ବଦଳିଲା କେମିତି ? କିଏ ବଦଳାଇଲେ ? କେମିତି ବଦଳାଇଲେ ? ସମାଜ-ବିଜ୍ଞାନ ଦୃଷ୍ଟିରେ ଏ ପ୍ରଶ୍ନ ଅତି ତାତ୍ପର୍ଯ୍ୟପୂର୍ଣ୍ଣ ।

ପରେ ଭାରତର ସ୍ୱାଧୀନତା-ସଂଗ୍ରାମରେ ସେହି ସାଧାରଣ ଗାଁ ଲୋକେ—ସ୍ତ୍ରୀ ପୁରୁଷ—ବିପୁଳ ସଂଖ୍ୟାରେ ଝାସ ଦେଇ ଅସୀମ ସାହସ, ସହିଷ୍ଣୁତା, ତ୍ୟାଗ ଦେଶପ୍ରେମର ପରାକାଷ୍ଠା ଦେଖାଇଲେ ସେତକ ନୁହେଁ, ତାଙ୍କ ମଧ୍ୟଯୁଗୀୟ ସମାଜ ପଛରେ ରହିଗଲା । ଏକ ପାହୁଣ୍ଡକେ ଡେଇଁ ପଡ଼ିଲେ କେତେଶହ ବର୍ଷର ବ୍ୟବଧାନ ଟପି ବିଂଶ ଶତାବ୍ଦୀକୁ, ନୂଆ ଯୁଗକୁ, ଜାଗ୍ରତ ଚେତନା ଆସିଗଲା ।

ସେପରି ମଣିଷ-ସମାଜକୁ ଗଢ଼ିଲା ଭଳି ବିଚକ୍ଷଣ କାରିଗର ଜଣେ ଥିଲେ ପୂଜ୍ୟ ୬ ଗୋପବନ୍ଧୁ ଚୌଧୁରୀ, ଜଣେ ସମ୍ଭ୍ରାନ୍ତ, ଧନୀ, ନାମୀ, ପ୍ରାଚୀନ ଅଭିଜାତ ବଂଶର ସନ୍ତାନ ସେ, ଖୁବ୍ ଉଚ୍ଚ ଆଧୁନିକ ଶିକ୍ଷା ପାଇଥିଲେ, 'ବୌଦ୍ଧିକ' ବିଚାରଶୀଳ ବ୍ୟକ୍ତି ଥିଲେ, ଖୁବ୍ ଧନୀ ସମ୍ଭ୍ରାନ୍ତଘରର ଲୋକ, ସମ୍ଭ୍ରାନ୍ତ ସମାଜର ମଣିଷ, ସେକାଳର ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଚାକିରି କରୁଥିଲେ; ୧୯୨୧ରେ ଚାକିରି ଛାଡ଼ିଲେ, ତାପରେ ଖୁବ୍ ବଡ଼ କଂଗ୍ରେସ କର୍ମୀ ଓ ନେତା ହେଲେ । ଖାଲି ସେତିକି ନୁହେଁ, ଧନ ଅଏସ, ବଡ଼ଲୋକି ଖାଦ୍ୟ, ପୋଷାକ, ଚଳଣି, ସମାଜ-ସମ୍ପର୍କ ସବୁ ଛାଡ଼ିଛୁଡ଼ି ଦେଇ ଆପଣାର ସମଗ୍ର ପରିବାରକୁ ସେହିପରି ଦୀନଦରିଦ୍ର କରି ସେହି କର୍ମୀଜୀବନ ଆଦରି ଗାଁର ଜଣେ ସାଧାରଣ ଅଳ୍ପବିତ୍ତ ଲୋକପରି ଜୀବନଯାକ ଚଳିଲେ । ଦେଶସେବା, ଦରିଦ୍ରସେବା କରି କରି ଜୀବନଟା ବିତାଇଲେ । ଆମେ ଜାଣୁ ନେତାମାନେ ରହନ୍ତି ସହରମାନଙ୍କରେ, ବଡ଼ ଘରେ, ସେଠି ନାନା ସୁଖସୁବିଧା ଥାଏ, ଚଢ଼ନ୍ତି କା'ର, ପ୍ଲେନ୍, ନାନାଭାବରେ ଚର୍ଚ୍ଚିତ ଅଭ୍ୟର୍ଥିତ ହୁଅନ୍ତି । କିନ୍ତୁ ସେ ବାଛି ନେଇଥିଲେ ଅତି ଅପନ୍ତରା ଗାଁ ଗହଳି, ସେଇଠି ତାଙ୍କ ଠାବ କଲେ । ପିନ୍ଧିବାକୁ ଫେଣ୍ଟେ ସାନ ହାତକଟା ଖଦୀ, ଦୁଇଖଣ୍ଡରୁ କେବେ ତିନିଖଣ୍ଡ ନ ଥାଏ । ଗାଁ ରାସ୍ତା ବୁଲିବାକୁ ଖାଲି ପାଦ, ଖାଇବାକୁ ଶାଗ ପଖାଳ, ହେଉପଛେ କେଉଁ ହରିଜନ ପଲ୍ଲୀରେ ହରିଜନ ହାଣ୍ଡିରୁ । ଆମେ ଜାଣୁ ନେତାମାନେ ବଡ଼ ବଡ଼ ସଭା ଡାକି ମାଇକ୍ ବାଟେ ଭାଷଣ ଦେଇ ନିଜ ବକ୍ତବ୍ୟ ପ୍ରଚାର କରନ୍ତି, ଏହା କର ତା କର ବୋଲି ଉପଦେଶ ଦିଅନ୍ତି । କିନ୍ତୁ ସେ କାହା ପିଣ୍ଡାରେ ବସି ଦୁଃଖସୁଖ ହୁଅନ୍ତି, ଦୁଃଖ ବୁଝନ୍ତି । ନିଜେ କଠୋର ତପସ୍ୟାରେ ଚଳି, ଅନବରତ କାମ କରି, ଦିନକୁ ଆଠଘଣ୍ଟା କୋଡ଼ି ହାଣି, ସୂତା କାଟି, ଖଦୀ ବୁଣି, ଝାଡ଼ା ଉଠେଇ, ହଇଜା ମଳର ଲୁଗା ଧୋଇ, ତାକୁ ଔଷଧ ଦେଇ, ନାନା ପରୋପକାରୀ କାମ କରି, ପ୍ରାର୍ଥନା କରି, ନିଷ୍ଠାରେ ରହି, ଦେଖାଇ ଦିଅନ୍ତି "ଏଇ କାମ କରିବା ଦରକାର, ଏଇ ଢଙ୍ଗରେ କାମ କରାଯାଏ ।"

ଆତ୍ମପ୍ରଚାର ନାହିଁ, ହୋହା ଘୋଘା ନାହିଁ, ଘରେ ଘରେ ଗାଁଏ ଗାଁଏ ତାଙ୍କ ସ୍ନେହର ଡୋରି, ପାଦରେ ବୁଲି ବୁଲି ଓଡ଼ିଶାଯାକ ସବୁଆଡ଼େ ସେ ବୁଲିଛନ୍ତି, ସମାଜରେ ତାଙ୍କ କାମ ଘାସର ଚେର ପାଖରୁ ଆରମ୍ଭ କରି, ସେମିତି ତାଙ୍କ ପରିବାରକୁ ବି ଦୀକ୍ଷିତ କଲେ, ସେହି କାମରେ ସେମାନେ ଲାଗିଲେ ।

୧୯୨୦ରେ 'ଉତ୍କଳମଣି' ଓଡ଼ିଶାରେ ପ୍ରଥମେ କଂଗ୍ରେସ ପ୍ରଚାର କଲେ । ୩୦-୮-୨୦ରେ ହେଲା ଓଡ଼ିଶାର ପ୍ରଥମ କଂଗ୍ରେସ କମିଟି, ପୁରୀ ଜିଲାରେ । ସେହି ବର୍ଷ ୪-୯-୨୦ରେ କଲିକତାରେ କଂଗ୍ରେସ ମହାତ୍ମାଙ୍କ ଅସହଯୋଗ ଓ ଅହିଂସ ସତ୍ୟାଗ୍ରହ ନୀତି ଗ୍ରହଣ କଲା । ଓଡ଼ିଶାରୁ କେତେଜଣ ମିଶିଲେ । ତାର ପ୍ରାୟ ୪ ମାସ ପରେ ଗୋପବାବୁ ବି ଆସି କଂଗ୍ରେସରେ ଯୋଗଦେଲେ । ୧୯୨୧ରୁ ୧୯୩୪ ଯାଏ, ପୁଣି ତାପରେ ବି, ୧୯୩୮-୧୯୫୯ରେ କଂଗ୍ରେସ ରାଜନୀତିରେ ସେ ଥିଲେ ଜଣେ ବଡ଼ ଖୁଣ୍ଟ । ଓଡ଼ିଶାରେ ଖୁବ୍ ବଡ଼ କଂଗ୍ରେସ ନେତା ବୋଲି ଜେଲ ବି ଯାଇଛନ୍ତି ବହୁତ ଥର ।

'୨୨ରେ ଯେତେବେଳେ ଅସହଯୋଗ ଆନ୍ଦୋଳନ ବନ୍ଦ ହେଲା, କଂଗ୍ରେସକର୍ମୀମାନେ ଛତ୍ରଭଙ୍ଗ ପଳାଇଲେ, ଆନ୍ଦୋଳନକାରୀଙ୍କ ମନରେ ଘୋର ନୈରାଶ୍ୟ, ସେତେବେଳେ ଆଶା ଉତ୍ସାହ ସଞ୍ଚାର କରିଥିଲେ ସେ, ପୁରୁଣା ନେତାମାନଙ୍କ ଭିତରେ ଏକତାର ସୂତ୍ରରୂପେ ଥିଲେ ।

ଏବେ ତ ସ୍ୱାଧୀନ ଭାରତ । ସେ ସମୟ ଆଉ ନାହିଁ । କିନ୍ତୁ ଜାଣିବାକୁ କୁତୁହଳ ହେବ—ସେ କାଳ କଣ ଥିଲା । ଯେଉଁମାନେ ତାକୁ ବଦଳାଇଲେ, ଦେଶକୁ ସ୍ୱାଧୀନ କରାଇଲେ, ତାଙ୍କ ଭିତରେ ଜଣେ ପ୍ରାତଃସ୍ମରଣୀୟ ବରେଣ୍ୟନେତା, ଯେ ଅସୀମ ତ୍ୟାଗ କରି ନିଜେ ଓ ନିଜ ପରିବାରଙ୍କୁ ସେଥିରେ ସମ୍ପୂର୍ଣ୍ଣଭାବେ ଲଗାଇ ଦେଇଥିଲେ । ସେ ନିଜେ କେମିତି ? କଣ କଲେ ?

ଗୋପବାବୁ ବିଶୁଦ୍ଧ ଗାନ୍ଧୀବାଦୀ ଥିଲେ । ଗାନ୍ଧୀବାଦର ଗୋଟିଏ ଲକ୍ଷ୍ୟ ଥିଲା ଭାରତର ସ୍ୱାଧୀନତାପ୍ରାପ୍ତି । କିନ୍ତୁ କେବଳ ସେତିକି ଲକ୍ଷ୍ୟରେ ଗାନ୍ଧୀବାଦ ସୀମିତ ହୋଇ ନ ଥିଲା । ତାହାର ଅନ୍ୟାନ୍ୟ ଲକ୍ଷ୍ୟ ଥିଲା ନୈତିକ, ସାମାଜିକ, ଅର୍ଥନୈତିକ । ଏତିକି ଲକ୍ଷ୍ୟର ବିସ୍ତାର "ସର୍ବୋଦୟ ବିଚାର", ଏତିକି କାର୍ଯ୍ୟକ୍ରମ "ରଚନାତ୍ମକ କାର୍ଯ୍ୟକ୍ରମ" । ଗାନ୍ଧିଜୀଙ୍କ ମତରେ ଏତିକି ନ ହେଲେ ସ୍ୱାଧୀନତାର ଉଦ୍ଦେଶ୍ୟ ସଫଳ ହେବ ନାହିଁ । ଏତିକି ବି ଦରକାର ଥିଲା ସ୍ୱାଧୀନତାପ୍ରାପ୍ତି ଲାଗି ପ୍ରସ୍ତୁତି ପାଇଁ । ଲୋକଙ୍କୁ ସ୍ୱାଧୀନତା ଉପଭୋଗ କରିବାକୁ ଯୋଗ୍ୟ କରିବାପାଇଁ ତାଙ୍କ ପାଖେ ସ୍ୱାଧୀନତାର ଫଳକୁ ପହଞ୍ଚାଇବା ପାଇଁ, ସ୍ୱାଧୀନତାର ସଂରକ୍ଷଣ ପାଇଁ, ମନୁଷ୍ୟଜାତିର

ବିକାଶ ପାଇଁ, ଭାରତରେ ଓ ତା ଆଦର୍ଶ ଦେଖାଇବା ଦ୍ଵାରା ପୃଥିବୀରେ ସତ୍ୟ-ଅହିଂସା-ଶାନ୍ତି-ମୈତ୍ରୀ-ତ୍ୟାଗ-ଶ୍ରମ-ସେବା-ପ୍ରେମପୂର୍ଣ୍ଣ ଅହିଂସ-ସ୍ଵାବଲମ୍ବୀ-ଶୋଷଣହୀନ ଗ୍ରାମ ସମାଜ ପ୍ରତିଷ୍ଠା କରିବାପାଇଁ ।

ସେ ସମାଜରେ ମଣିଷଠି ଈଶ୍ଵର ବିଶ୍ଵାସ ରହିବ । ସଂଯମ ଓ ଚରିତ୍ରବଳ ରହିବ । ସେ ହବୁ ବିଷୟରେ ସଦାଗ୍ରହୀ ହେବ । ତାଠିଁ ସବୁ ସଦ୍‌ଗୁଣ ରହିବ, ତାର ନୈତିକ, ଆଧ୍ୟାତ୍ମିକ ବିକାଶ ହେବ । ତା ଜୀବନ ସରଳ ହେବ । ତା ଆବଶ୍ୟକ ଅଳ୍ପ ହେବ । ସେ ନିଷ୍କାମ, ଅନାସକ୍ତ ରହି ସଂସାରରେ ସମସ୍ତଙ୍କ ଆପଣାର ଭାବି ଆନନ୍ଦରେ ଚଳିବ । ପ୍ରକୃତିକୁ, ଜୀବନକୁ, ସମାଜକୁ, ଉପଭୋଗ କରିବ । ତାଠିଁ ହିଂସା, ଦ୍ଵେଷ, ଲୋଭ ରହିବ ନାହିଁ । ସେ ସ୍ଵାବଲମ୍ବୀ, ସ୍ଵାଧୀନ, ସାହସୀ, ପରୋପକାରୀ ହେବ । ସେ ନିଜକୁ ନିଜେ ନିୟନ୍ତ୍ରିତ କରିବ । ଦାୟିତ୍ଵବାନ୍ ହେବ । ଗାନ୍ଧୀଜୀ ରାଜନୈତିକ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ମୂଳରୁ ତ ଏପରି କରୁଥିଲେ ଓ କହୁଥିଲେ, ୧୯୩୩ରେ ଅସହଯୋଗ ଆନ୍ଦୋଳନ ବନ୍ଦ କଲାପରେ ଖାସ୍ ଏହିଥିରେ ଲାଗିଲେ । ଗାନ୍ଧୀଜୀଙ୍କ ଆଦର୍ଶ ଅକ୍ଷରେ ଅକ୍ଷରେ ପାଳି ଗୋପବାବୁ ବି ଅବିକଳ ସେହିପରି କରୁଥିଲେ ଓ କଲେ । ସେ ହେଲେ ଗାନ୍ଧୀବାଦର ଜୀବନ୍ତ ପ୍ରତୀକ । ତେଣୁ କର୍ମଯୋଗୀ ଋଷିତୁଲ୍ୟ, ସାଧକ ।

ସମୟ ବଦଳୁଥାଏ । ସମାଜରେ ନାନା ସମସ୍ୟା ଦେଖାଦେଉଥାଏ । କଂଗ୍ରେସ ରାଜନୀତିରେ ଓଡ଼ିଶାରେ ୧୯୩୭ ପ୍ରାଦେଶିକ ଆସେମ୍ବ୍ଲି ନିର୍ବାଚନ ବେଳୁ ବିଭେଦ ବଢ଼ିଲା । ଗୋପବାବୁ କଂଗ୍ରେସରେ ହିଁ ଥାନ୍ତି । କିନ୍ତୁ ପ୍ରତ୍ୟକ୍ଷ ସକ୍ରିୟ ରାଜନୀତିରେ ଆଉ ରହିଲେ ନାହିଁ । ବରୀରେ ଆଶ୍ରମ କରି ରଚନାତ୍ମକ କାର୍ଯ୍ୟରେ ଲାଗିଗଲେ । ମଝିରେ ୧୯୩୮-୩୯ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ସଭାପତି ହୋଇଥିଲେ । ତାହା ମଧ୍ୟ ଉଚ୍ଚ କଂଗ୍ରେସ କର୍ତ୍ତୃପକ୍ଷ ଓ ଓଡ଼ିଶା ନେତାମାନଙ୍କ ଅନୁରୋଧ କ୍ରମେ । କିନ୍ତୁ ତାକୁ ଛାଡ଼ିଦେଲେ, ପୁଣି ରଚନାତ୍ମକ କାର୍ଯ୍ୟରେ ଲାଗିଲେ । ୧୯୨୧ରୁ ସେ ଯେଉଁ ରଚନାତ୍ମକ କାର୍ଯ୍ୟମାନ କରୁଥିଲେ ଓ କରାଉଥିଲେ, ତା ଭିତରେ ଥିଲା ସୂତାକଟା, ଲୁଗାବୁଣା, ଖଦୀ ପ୍ରଚାର, ନାନା ପ୍ରକାର କୁଟୀର ଶିଳ୍ପ ଓ ଗ୍ରାମୋଦ୍ୟୋଗର ବିକାଶ, ଗାଁ ସଫେଇ, ରୋଗୀସେବା, ମ୍ୟାଲେରିଆ, ହଇଜା, ବସନ୍ତ ଆଦି ମଡ଼କବେଳେ ପ୍ରତିକାର, ସାହାଯ୍ୟ ଓ ସେବା, ବଢ଼ି, ମରୁଡ଼ି, ଦୁର୍ଭିକ୍ଷ ଆଦି ବେଳେ ସାହାଯ୍ୟ ଓ ସେବା, ଗାଁ ସ୍ଵାସ୍ଥ୍ୟର ଉନ୍ନତି, ଗୋ ସେବା, କୁସଂସ୍କାର, ଅନ୍ଧ ବିଶ୍ଵାସ ଓ ଅତ୍ୟାଚାରୀ ଶୋଷକ ଆଦିଙ୍କ ପ୍ରତି ଭୟ ଦୂରୀକରଣ, ଜାତିଭେଦ, ଅସ୍ପୃଶ୍ୟତା, ସାଂପ୍ରଦାୟିକତା, ବିଭେଦ, କଳି ଆଦିର ବିଲୋପ, ଶିକ୍ଷା ବିସ୍ତାର, ନାରୀ ଶିକ୍ଷା, ପ୍ରୌଢ଼ ଶିକ୍ଷା, ଶିଶୁ ଶିକ୍ଷା ପାଇଁ ଉପଯୁକ୍ତ ବ୍ୟବସ୍ଥା, ନିରକ୍ଷରତା ଦୂରୀକରଣ, ନାରୀ ଜାଗରଣ,

ପର୍ଦ୍ଦା ଉଠାଇବା, ସ୍ତ୍ରୀ ଜାତିକୁ ପୁରୁଷଙ୍କ ସଙ୍ଗେ ସମାନରେ ସବୁ କାର୍ଯ୍ୟ କରିବାକୁ ସୁବିଧା ଦେବା, ଗାଁର ଶିକ୍ଷା ସମ୍ପର୍କରେ ଉନ୍ନତି ସାଧନ, ଗାନ୍ଧୀ ବସ୍ତ୍ରର ପ୍ରବର୍ତ୍ତନ, ଜନ ଜାଗରଣ କରାଇବା, ଲୋକଙ୍କୁ କର୍ମଠ କରିବା ଓ ବିଚାରଶୀଳ କରିବା, ସମାଜରେ ନୈତିକତା ବଢ଼ାଇବା ଆଦି । ୧୯୩୨ରୁ ସେ ଆରମ୍ଭ କରିଦେଲେ ହରିଜନ ସେବା, ଅସ୍ପୃଶ୍ୟତା ନିବାରଣ । ୧୯୩୪ରୁ ଆହୁରି ବେଶି ରଚନାତ୍ମକ କାମ କଲେ, ତା ପ୍ରକାର ଓ ପ୍ରସାର ବଢ଼ିଲା, ଆସିଗଲା ବିପୁଳ ଓ ବ୍ୟାପକ ଭାବେ ସୂତାକଟା, ଖଦୀ ପ୍ରଚାର, ହରିଜନ କାମ, କୃଷି ଉନ୍ନୟନ, ଗୋପାଳନ, ମହୁଗୃହ ଆଦି । ୧୯୩୭ରୁ ସେ ଆଉ ନୂଆ କାମ ଧରିଲେ —"ମୌଳିକ ଶିକ୍ଷା" ପରିଚାଳନା । ବର୍ଦ୍ଧାରୁ ତାଲିମ ପାଇ ସାଇ ୧୯୪୦ରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ କୋରାପୁଟ ଜିଲାରେ ପ୍ରଥମେ ଆଦିବାସୀ ସେବାର ସୂତ୍ରପାତ କଲେ । ୧୯୪୧ରେ ଲୁକେନ୍ଦ୍ରିରେ କେନ୍ଦ୍ର କଲେ । ଗୋପବାବୁ ତାଙ୍କୁ ପରାମର୍ଶ ଦେଉଥାନ୍ତି । ଆଦିବାସୀଙ୍କୁ ଶୋଷଣରୁ ରକ୍ଷା କରିବା ଓ ତାହାଙ୍କର ନାନା ପ୍ରକାର ସେବା କାର୍ଯ୍ୟରେ ସେ ଖୁବ୍ ଉତ୍ସାହ ଦେଖାଇ ନାନା ପ୍ରକାର ଆଦିବାସୀ-ସେବା ଆୟୋଜନ କଲେ । ଆହୁରି କେନ୍ଦ୍ର ବସିଲା । ୧୯୪୬ରେ ମୁଖ୍ୟତଃ ଆଦିବାସୀ ସେବାପାଇଁ "ନବଜୀବନ ମଣ୍ଡଳ" ଗଢ଼ା ହେଲା, କାର୍ଯ୍ୟ କଲା । ତାର ପ୍ରଧାନ ଉଦ୍ୟୋକ୍ତାମାନଙ୍କ ଭିତରେ ଥିଲେ ସେ, ତାଙ୍କ ଭାଇ ନବବାବୁ, ଶ୍ରୀମତୀ ମାଳତୀ ଦେବୀ, ଶ୍ରୀମତୀ ରମା ଦେବୀ, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ସାରଙ୍ଗଧର ଦାସ ଆଦି । ଅନୁନ୍ନତ ଆଦିବାସୀଙ୍କ ସମସ୍ୟା ସମାଧାନ ପାଇଁ ସେମାନଙ୍କ ଉଦ୍ୟମ ଐତିହାସିକ ଘଟଣା ।

୧୯୪୮ରେ ଗାନ୍ଧୀଙ୍କ ମୃତ୍ୟୁପରେ ଗାନ୍ଧୀବାଦୀମାନେ ସମ୍ମିଳନୀ କରି ସର୍ବୋଦୟ ସମାଜ ଗଢ଼ିଲେ । ୬ ଗୋପବାବୁ ସେ ସମ୍ମିଳନୀକୁ ଯାଇଥିଲେ । କିନ୍ତୁ ତାହା ପୂର୍ବରୁ ଗୋପବାବୁ ଯେତେଯେତେ ପ୍ରକାରର ରଚନାତ୍ମକ କର୍ମମାନ କରି ଆସୁଥିଲେ ତାହା ହିଁ ସେହି ସର୍ବୋଦୟ "ସମାଜ"ର ୨୨ଟି ଲକ୍ଷ୍ୟ ହୋଇ ଧାର୍ଯ୍ୟ ହେଲା ଓ ସର୍ବୋଦୟ "ସମାଜ"ର କର୍ମୀମାନେ ସେହି ୨୨ଟି ଲକ୍ଷ୍ୟକୁ ସାଧନ କରିବାପାଇଁ ଦୃଢ଼ ସଂକଳ୍ପ ନେଲେ ।

ସେତେବେଳକୁ କେତେକ କଂଗ୍ରେସ ଲୋକ ରାଜନୀତି କ୍ଷେତ୍ରରେ ହିଁ ବେଶି ବେଶି ଲିପ୍ତ ରହିଥାନ୍ତି, ଗାନ୍ଧିଜୀଙ୍କ ଦ୍ୱାରା ପ୍ରବର୍ତ୍ତିତ 'ରଚନାତ୍ମକ' କାର୍ଯ୍ୟରେ ନୁହେଁ । ଆଉ କେତେକ କଂଗ୍ରେସ କର୍ମୀ କ୍ଷମତା-ରାଜନୀତି ଆଡ଼କୁ ବିମୁଖ ହୋଇ ରଚନାତ୍ମକ କର୍ମ ଧରି ରହିଥାନ୍ତି । ଦୁହିଁଙ୍କ ମତଗତିରେ ପାର୍ଥକ୍ୟ ସ୍ପଷ୍ଟ ହୋଇଥାଏ । ରଚନାତ୍ମକ କର୍ମକୁ ଆଶ୍ରୟ କରିଥିବା କର୍ମୀମାନେ ଆଦର୍ଶରେ ନିଷ୍ଠାପର ଗାନ୍ଧୀବାଦୀ, ସେମାନେ ଭାବୁଥାନ୍ତି ଯେ ଯେଉଁମାନେ ରାଜନୀତିରେ ବ୍ୟାପୃତ ହୋଇ ରହିଛନ୍ତି ସେମାନେ

ଗାନ୍ଧୀବାଦଠୁଁ ଦୂରେଇ ଯାଉଛନ୍ତି, ସମାଜରେ ନୈତିକତା ଖସୁଛି, ଲୋକେ ଗାନ୍ଧୀଜୀଙ୍କୁ ଭୁଲି ଯାଉଛନ୍ତି, ଲୋଭ, ସ୍ୱାର୍ଥ, ଦ୍ୱେଷ, ହିଂସା, ଦୁର୍ନୀତି, ଲାଞ୍ଚମିଛ, କଳାବଜାର, ଖାଲାପୋଡେଇ, ଶୋଷଣ ବ୍ୟାପୁଛି, ବିଶେଷତଃ 'କଣ୍ଟ୍ରୋଲ୍' ଅମଳ ହେଲାଦିନୁଁ, ଧନୀ ଆହୁରି ଧନୀ, ଗରିବ ଆହୁରି ଗରିବ ହେଉଛି, ନିଶା ବନ୍ଦ ହେବା ପରିବର୍ତ୍ତେ ନିଶାଖୋର, ମଦପିଆ ବ୍ୟାପୁଛି, ବିଳାସବ୍ୟସନ ବଢ଼ୁଛି, ଗାନ୍ଧୀଜୀଙ୍କ ପରିକଳ୍ପିତ ଗ୍ରାମ-ସ୍ୱରାଜ ପରିବର୍ତ୍ତେ ସହର, କାରଖାନା, ପୁଞ୍ଜି କାରବାର, ଆଡ଼ମ୍ବର ବୃଦ୍ଧି, ଆବଶ୍ୟକ-ବୃଦ୍ଧି ବଢ଼ି ଲାଗିଛି, ଅଶାନ୍ତି ବଢ଼ୁଛି, ଗରିବଙ୍କ ଉପକାର ହେଉ ନାହିଁ, ସ୍ୱାଧୀନତାର ଉପକାର ସାଧାରଣ ଲୋକ ଉପଭୋଗ କରିବାକୁ ସୁଯୋଗ ପାଉ ନାହିଁ, ନୈରାଶ୍ୟ ବଢ଼ୁଛି, ଭିତରେ ଭିତରେ ହିଂସାର ନିଆଁ କୁହୁଳିଲାଣି । ସର୍ବୋଦୟବାଦୀମାନଙ୍କର ଏହିପରି ଭାବନାରୁ ୧୯୫୧ରେ ବାହାରିଲା ବିନୋବାଙ୍କ ନୂଆ ଆନ୍ଦୋଳନ,—'ଭୂଦାନ' । ସେ ଖାଲି ଭୂମିମାଲିକଙ୍କଠାରୁ ଭୂମିଦାନ ଭିକ୍ଷା ମାଗିବା ନୁହେଁ; ଅବଶ୍ୟ,—ଥିବା ଲୋକେ କିଛି କିଛି ଦେଲେ ଗରିବ କିଛି ପାଇଯିବେ, 'ଭୂଦାନ' 'ଗ୍ରାମଦାନ' 'ସମ୍ପତ୍ତିଦାନ' ମିଳିଲେ ଭୂମିହୀନ ଲୋକେ ଭୂମି ପାଇଯିବେ, ସେଇଟା ସେ ଆନ୍ଦୋଳନର 'ସୂତ୍ର', ତା ବାଗ, ତାର ଆଶୁଫଳ । ତାର ପ୍ରଧାନ ଉଦ୍ଦେଶ୍ୟ ଥିଲା,—କିଛି ତ୍ୟାଗ ଦେବାକୁ ଆରମ୍ଭ କରିବା ସଙ୍ଗେ ସଙ୍ଗେ ଲୋକେ 'ସର୍ବୋଦୟ' ବିଚାରକୁ ଗ୍ରହଣ କରିବେ, କ୍ରମେ ସେ ବିଚାରରେ ଦୃଢ଼ ହେବେ ଓ ଗାନ୍ଧୀଜୀଙ୍କ ରଚନାତ୍ମକ କର୍ମର ଯାହା ଲକ୍ଷ୍ୟ ଥିଲା, ନୈତିକ-ଆର୍ଥନୈତିକ-ସାମାଜିକ ସଂସ୍କାର ଓ ଉନ୍ନୟନ, ଭାରତରେ ବ୍ୟକ୍ତି ଓ ସମାଜ ସେହିପରି ଗଢ଼ି ହେବେ । କୋଟି କୋଟି ଲୋକ, ପ୍ରକାର ପ୍ରକାର ନିହିତ ସ୍ୱାର୍ଥ ଓ ଅବିରତ ତା' ଭିତରେ ପରସ୍ପରର ବିରୋଧ, ଲୋକଙ୍କ ମନରେ ସମାଜରେ ଯେଉଁ ଗତି ଦେଖା ଦେଲାଣି, ପୃଥିବୀର ଅନ୍ୟାନ୍ୟ ଦେଶର ନାନା ଘଟଣା ଓ ବିଚାରର ପ୍ରଭାବ ଯେପରି ଭାରତର ଲୋକଙ୍କ ମନରେ ପଡ଼ୁଥାଏ, ସ୍ୱାଧୀନ ଭାରତରେ ରାଜନୈତିକ ନେତାମାନେ ଯେତିକି ଯାହା ଭାବୁଥାନ୍ତି, ଏସବୁ କଥା ବିଚାରକୁ ନେଲେ ସନ୍ଦେହ ହେବା ସ୍ୱାଭାବିକ ଯେ ବିନୋବାଜୀଙ୍କ ଭୂଦାନ ଅଭିଯାନ କେତେଦୂର ସଫଳ ହେବ । କିନ୍ତୁ ଦେଖାଗଲା, ବିନୋବାଙ୍କ 'ଭୂଦାନ' ଆନ୍ଦୋଳନ ହୁହୁ ଘୋଟିଗଲା ।

ଓଡ଼ିଶାରେ ୧୯୫୨ରେ ଭୂଦାନ ଆନ୍ଦୋଳନକୁ ସର୍ବପ୍ରଥମେ ଆରମ୍ଭ କଲେ ପୂଜ୍ୟ ଗୋପବାବୁ, ପୂଜ୍ୟା ରମାଦେବୀ । ସେମାନେ ପାଦରେ ଚାଲି ଚାଲି ବର୍ଷେ ସାରା ସମୁଦାୟ ଓଡ଼ିଶାଯାକ ଗାଁଗଣ୍ଡାରେ ବୁଲିଲେ । ସେମାନେ ଦେଖିଲେ ବୁଝାଇଦେଲେ ଲୋକେ ବୁଝୁଛନ୍ତି, ସେମାନେ ଭୂଦାନ ପ୍ରତି, ନୂଆ ବିଚାର ପ୍ରତି ଆଗ୍ରହୀ, ଉତ୍ସୁକ । ସେହିଦିନଠାରୁ ୧୯୫୮ରେ ୭ ଗୋପବାବୁ ମରିବାଯାଏ ସେ ସେହିପରି ବୁଲୁଥାନ୍ତି, ଭୂଦାନ କାମ କରୁଥାନ୍ତି । ସେ ଥିଲେ ଓଡ଼ିଶାର ଭୂଦାନ ନେତା । ସେ ସର୍ବଭାରତୀୟ

ଭୂଦାନନେତାଙ୍କ ମଧ୍ୟରେ ଜଣେ ବରେଣ୍ୟ ସର୍ବୋଦୟ ନେତା, ଭୂଦାନ ନେତା ଥିଲେ । ଗାନ୍ଧିବାଦ ପାସୋର ଯାଉଥିଲା, ମହାତ୍ମାଙ୍କଙ୍କ ପରିକଳ୍ପିତ ବ୍ୟକ୍ତି ଓ ସମାଜର ଆଦର୍ଶ, ଆଉ ତାର ସ୍ମୃତି ମଧ୍ୟ କ୍ଷୀଣ ହୋଇ ଆସୁଥିଲା, ଅଥଚ ମାନବଜାତିର ବିକାଶକ୍ରମରେ ତାହା ହିଁ ବିଶ୍ବର ସ୍ତରରେ ଏ ଯୁଗରେ ହୋଇରହିଲା ମାନବ ସମାଜକୁ ସର୍ବଶ୍ରେଷ୍ଠ ଅବଦାନ । ପୂଜ୍ୟ ଗୋପବାବୁ ଆଜୀବନ ସେହି ଆଦର୍ଶରେ ଜୀବନ ଗଢ଼ିଥିଲେ । ୮ ଗୋପବନ୍ଧୁ ସେହି ଆଦର୍ଶକୁ ଏ ଦେଶରେ ପ୍ରତିଷ୍ଠା କରିବାକୁ ପ୍ରସାର କରିବାକୁ ଜୀବନ ପରିକରି ଅକ୍ଳାନ୍ତ ପରିଶ୍ରମ କରିଛନ୍ତି । ସେହି ହୋଇରହିଲା ତାଙ୍କ 'ସ୍ୱଧର୍ମ', ତହିଁରେ ସେ ବ୍ୟାପୃତ ରହିଲେ, କ୍ଷମତା ରାଜନୀତିକୁ ଧନ, ପ୍ରତିପତ୍ତି, ପ୍ରଚାର ପ୍ରତିଷ୍ଠାକୁ ଶୂକରୀବିଷ୍ଠା ମଣି ତ୍ୟାଗ କଲେ । କେଡ଼େ କଠୋର ସେ ପରିଶ୍ରମ ! ଏକ ବିରାଟ ଅନୁଷ୍ଠାନ ଚଲାଉଥାନ୍ତି, ନିଜେ ଦେଶସାରା ବୁଲି ବୁଲି ବୁଲୁଥାନ୍ତି ବର୍ଷ ବର୍ଷ, ଏହିପରି ଛ'ବର୍ଷ, ଅଧିକାଂଶ ହିଁ ପଦଯାତ୍ରା, ବୃଦ୍ଧ ହୋଇଥାନ୍ତି । ବୟସ ୫୭ ଡେଇଁଥାଏ, ସାମାନ୍ୟତମ ଆରାମ ବି ନାହିଁ, ଖାଲି ପାଦ, ଖାଲି ଦେହ, ଭୂଇଁରେ ଚଟେଇ ପାରି ଶୁଅନ୍ତି, ଖାଦ୍ୟ ଶାଗ ପଖାଳ, କାମ ସବୁବେଳେ, ଚାଲନ୍ତି ଦିନକୁ କେଉଁଦିନ ୧୦ ମାଇଲ କେଉଁଦିନ ୧୮ ମାଇଲ, ବାଟ ବିଲହୁଡ଼ା, ଘାଟି ପାହାଡ଼ । ସବୁ ଜିଲାର ଗାଁ ଗହଳରେ ହଜାର ହଜାର ଗାଉଁଲି ଲୋକଙ୍କ ସଙ୍ଗେ ତାଙ୍କର ଘରୋଇ କଥାଭାଷା, କେତେ କନ୍ଧ ଘରେ ସଉରା ଘରେ ହରିଜନ ଘରେ କି ବ୍ରାହ୍ମଣ ଘରେ ଖିଆ । କେତେ ଖରା, ବର୍ଷା, ଶୀତ, କେତେ ପ୍ରକାର ଅଞ୍ଚଳ,—ସମତଳ, ଟାଙ୍ଗର, ଘନ ଜଙ୍ଗଲ, ଉଚ୍ଚ ପର୍ବତ । ସେଠି ଦିନ, ରାତି । ସେ 'ଦରିଦ୍ର ନାରାୟଣଙ୍କ ଦର୍ଶନ' କରୁଥିଲେ, ଦେଶମାତାକୁ ଦେଖୁଥିଲେ, ସବୁଠି ଦେଖୁଥିଲେ ଭଗବାନଙ୍କୁ ।

କୁତୂହଳ ହେବା ସ୍ୱାଭାବିକ, କିଏ ଏହି ବ୍ୟକ୍ତି ? ସଂସାରରୁ ବାହାର ! ଏପରି ତ କେହି କଷ୍ଟ ସହନ୍ତି ନାହିଁ, କାମ କରନ୍ତି ନାହିଁ । କିଣ ତାଙ୍କ ଜୀବନ ! କିଣ ସେ ଦେଖୁଥିଲେ, ଲୋଡ଼ୁଥିଲେ । କାହିଁକି ଲୋକେ ଜନ୍ମାପିମ୍ପୁଡ଼ି ପରି ତାଙ୍କ ପିଛା ଧାଉଁଥିଲେ, ଟିକିଏ ତାଙ୍କୁ ଦେଖିବାକୁ, ତାଙ୍କ ତୁଣ୍ଡରୁ କଥା ଶୁଣିବାକୁ । ଖାଲି ସେତିକି ନୁହେଁ । ସଂସାରରେ କିଏ କି ପ୍ରକାର ସାଫଲ୍ୟ ପାଏ,—ସବୁ ସାଫଲ୍ୟ ଘୋଡ଼େଇ ପକାଏ ମହାକାଳ । ପୁଣି, ନିଜ ଜୀବଦଶାରେ ବି, ଭୁଲି ନ ହେବାଯାକେ ସୁଦ୍ଧା, ଜଣକେ ଦୃଷ୍ଟିରେ ଯେଉଁଟା ସାଫଲ୍ୟ ଅପର ଲୋକ ଦୃଷ୍ଟିରେ ତାହା ବିଫଳତା ବା ତୁଚ୍ଛ ବୋଲି ବି ଲାଗିପାରେ । କିନ୍ତୁ ଗୋଟାଏ କଥା ନିଶ୍ଚୟ ସବୁ ବିତର୍କ, ସବୁ ବିବାଦ ଉପରେ,—ମଣିଷର ସଦ୍ ବିଚାର, ସଦାଚାର, ଆଦର୍ଶବାଦ, ଆଦର୍ଶ ପ୍ରତି ତାର ନିଷ୍ଠା, ନିଜ ଚରିତ୍ରରେ, କଥାରେ କାର୍ଯ୍ୟରେ ମଣିଷର ସେହି ଏକ ବିଶ୍ବାସରେ ନିଷ୍ଠା, ଆନ୍ତରିକତା, ତାର ମହାନୁଭବତା, ତାର ଭ୍ରାତୃଭାବ, ତାର ନିସ୍ୱାର୍ଥପର

ମାନବବ୍ରତୀ, ସେଥିପାଇଁ ତାର ତ୍ୟାଗ, ଶ୍ରମ, ବିପଦ ଓ ଅସୁବିଧା ବରଣ, ଯୁଗେ ଯୁଗେ ଏପରି ମନୁଷ୍ୟ ନମସ୍ୟ । ଓଡ଼ିଶାରେ ପୁଣ୍ୟାତ୍ମା ୬ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପରେ ସେପରି ଥିଲେ ସେହି ଜଣେ, ୬ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ।

ମୋର ପରମ ସୌଭାଗ୍ୟ, ମୁଁ ବ୍ୟକ୍ତିଗତ ଭାବେ ତାଙ୍କ ସଂସ୍ପର୍ଶରେ ଆସିଥିଲି, ସେ ମତେ ଆପଣାର କରିଥିଲେ । ୧୯୫୨ରୁ ୧୯୫୭ ଶେଷଯାଏ ସେ ମୋ ପାଖକୁ ମୋ ଗ୍ରାମର ଗାଁକୁ କେତେଥର ଆସିଛନ୍ତି, ମୁଁ ତାଙ୍କ ପାଖକୁ କେତେଥର ଯାଇଛି, ସେ ମତେ ମୋ ପରିବାରକୁ ଭଲ ପାଉଥିଲେ, ଆମ ସଙ୍ଗେ ଆମ ବସାରେ ରାୟଗଡ଼ାରେ ବି ଅଳ୍ପ କେତେଥର ରହିଥିଲେ । ସାରା ସଂସାରଯାକ ତାଙ୍କ ଘର ତାଙ୍କ ପୁଅ ଝିଅ, ସେପରି ଓଡ଼ିଶାରେ ସହସ୍ର ସହସ୍ର । ପୂଜ୍ୟ ୬ ଗୋପବାବୁଙ୍କୁ ସେ ଲୋକେ କହୁଥିଲେ 'ବାପା', ପୂଜ୍ୟା ରମା ଦେବୀଙ୍କୁ 'ମା' । ସେମାନେ ତ ଘର ଛାଡ଼ି ସମାଜ ଛାଡ଼ି ସଂସାରଟାକୁ ହିଁ କରିଥିଲେ ନିଜ ଘର । ମୁଁ ତାଙ୍କୁ ଭାବେ,—ସନ୍ଥ, ଋଷି, ମହାନ୍ ସାଧକ, ମହାନ୍ କର୍ମଯୋଗୀ, ଯୁଗ ପ୍ରବର୍ତ୍ତକ । ଏ ଦେଶର ଯେଉଁଟା ତଳ, ଯେଉଁଟା ଅସଲ, ଗାଁ ଗହଳି, ଗରିବ ମଲାମୁଣ୍ଡିଆ, ମୂଳ, ନିଃସହାୟ, ସେଇଠି ତାଙ୍କ ବ୍ୟକ୍ତିତ୍ୱର ସୁଅ ପଡ଼ିଥିଲା ।

ତାଙ୍କୁ ଦେଖିଛି, ଧ୍ୟାନସ୍ଥ, ପ୍ରାର୍ଥନାବେଳେ, ମତେ ଲାଗେ ତାଙ୍କର 'ସମାଧି' ହୋଇଯାଏ । ସେ 'ଯୋଗ' ବୁଝାନ୍ତି ନାହିଁ, କରନ୍ତି । 'ଯୋଗୀ'ର ସବୁ ଲକ୍ଷଣ ତାଙ୍କଠି ଥିଲା । ସେ ଠିକ୍ 'ଚିତ୍ତବୃତ୍ତି ନିରୋଧ' କରିପାରୁଥିଲେ । ସେ 'ଅହଂ'କୁ ଛାଡ଼ିଥିଲେ, ଅପରର ହୃଦୟ ଭିତରେ ପଶି ପାରୁଥିଲେ, ପରର ଅନୁଭୂତିରୁ ଆନନ୍ଦ ଓ ଦୁଃଖ ନିଜେ ଅନୁଭବ କରୁଥିଲେ । ତାଙ୍କ ସାନ ସାନ କଥାରେ ବ୍ୟବହାରରେ ବି ଏହିପରି ଦେଖୁଥିଲି । ତାଙ୍କଠି ଅପୂର୍ବ ଯୋଗୀସୁଲଭ ଦେଦୀପ୍ୟମାନ ଜ୍ୟୋତି ଥିଲା । ତେଣୁ ତାଙ୍କ ମୁହଁକୁ ଅନାଇଲେ ପବିତ୍ର ଲାଗେ, ନିରାଶ ମନରେ ଆଶା ସଞ୍ଚରେ, ଏତେ ତେଜସ୍ୱୀ ତାଙ୍କ ଆଖି, ତାଙ୍କ ଆଖିକୁ ଅନାଇ ହୁଏ ନାହିଁ ।

ସାନ ପିଲା, କୁକୁର, ଗୋରୁ, ଚଢ଼େଇ ଏମାନଙ୍କର ତାଙ୍କ ପ୍ରତି ଖୁବ୍ ସ୍ନେହ । ୧୯୫୪-୫୫ରେ ପୁରୀରେ ଆମ ବସାରେ ସାନ ହତାରେ ଥରେ ଗୋଟିଏ ବିଚିତ୍ର କଥା ଦେଖିଲି । କୋରାପୁଟ ଜିଲାର ଚନ୍ଦ୍ରପୁର ବଣରୁ ନେଇଥିଲୁ ଗୋଟିଏ 'ମାରଣା ମୂଷା' ବଡ଼ ବଣ ନେଉଳ ଆକାର, ରୁମ ରୁମ, ଲୁଣ୍ଡୁଚି ମୂଷା ପରି ବ୍ୟବହାର, ସେ କୁଆଡ଼େ ସାପ ଓ ମୂଷା ମାରେ, ତା ନଖ ଖୁରଧାର । ଗୋଟିଏ ବରକୋଳି ଗଛ ତଳେ ଗୋପବାବୁ ଠିଆ ହୋଇଥାନ୍ତି, 'ମାରଣା ମୂଷା' ତାଙ୍କ ସଙ୍ଗେ ଖେଳୁଥାଏ । ତାଙ୍କ ପାଦବାଟେ ଉପରକୁ ବିଜୁଳିବେଗରେ ଚଢ଼ିଯାଏ ଓ ତାଙ୍କ ଦାଢ଼ିରେ ମୁହଁ

ଲୁଚିଯାଏ, ତାଙ୍କ ଆଖିକି ଅନାଇଁ ରହେ, ପୁଣି ଧାଇଁ ତାଙ୍କ ଦେହେ ଦେହେ ତଳକୁ, ତାପରେ ଆଉ ଗୋଡ଼ବାଟେ, ତାପରେ ପିଠିଯାକ, ତାଙ୍କ ଶରୀରଟା ହୋଇଥାଏ ତା ଖେଳପଡ଼ିଆ, କଳିକଳି ଦୌଡ଼ି ଦୌଡ଼ି ସେ ତାଙ୍କ ଆଖିକି ଅନାଏଁ, ବୋଧହୁଏ ବାହାଦୁରି ନେଉଥାଏ । ସେ ତାକୁ ଆଉଁସି ଦିଅନ୍ତି, ପୁଣି ଦୌଡ଼ି ଲୁଚକାଳି ଖେଳିବାକୁ ତା ଉତ୍ସାହ ବଢ଼େ । ଏଣେ ତା ନଖ ଆଞ୍ଚୁଡ଼ାରେ ତାଙ୍କ ପିଠି, ଛାତି, ହାତ, ଗୋଡ଼ର ଚର୍ମ ଉପରେ କଣ୍ଟା ହେଲାପରି ଫଡ଼ା ଫଡ଼ା ହୋଇ ଧାର ଧାର ରକ୍ତ ବୋହୁଥାଏ, କିନ୍ତୁ ତାଙ୍କର ଖାତିର ନଥାଏ, ସେ ହସୁଥାନ୍ତି !

ଗୀତା ତ ସେ ପ୍ରତ୍ୟହ ପଢ଼ୁଥିଲେ, ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତକୁ ଖୁବ୍ ଭଲ ପାଉଥିଲେ । ସେ ନାନା ଶାସ୍ତ୍ର ପଢ଼ିଥିଲେ ଓ ଶାସ୍ତ୍ରର ନୀତିକୁ ନିଜ ଜୀବନରେ ନିଷ୍ଠାପର ଭାବେ ଅଭ୍ୟାସ କରୁଥିଲେ । କେହି ତାଙ୍କର ଅନ୍ତରଙ୍ଗ ନହେଲେ ଓ ପ୍ରୟୋଜନ ନ ପଡ଼ିଲେ ସେ କାହାରି ଆଗରେ ଶାସ୍ତ୍ର ବଖାଣି ବସୁ ନ ଥିଲେ । ଆଜୀବନ ଦି' ଓଳି ପ୍ରାର୍ଥନା କରୁଥିଲେ ।

ସେ ତେଲ ଲଗାନ୍ତି ନାହିଁ, ପ୍ରସାଧନ ପାଖ ପଶନ୍ତି ନାହିଁ, କିନ୍ତୁ ତାଙ୍କ ମୁଣ୍ଡ ସବୁବେଳେ ଜକ୍ ଜକ୍, ତେଲ ଲଗାଇଲା ପରି । ଆଚାର୍ଯ୍ୟ ମହାଶୟଙ୍କଠୁଁ ମୁଁ ଶୁଣିଥିଲି, —ଶ୍ରୀ ଅରବିନ୍ଦଙ୍କର ସେହିପରି ହେଉଥିଲା, ଶ୍ରୀ ଅରବିନ୍ଦଙ୍କ ମୁଣ୍ଡରୁ ପଦ୍ମସୁବାସ ବାହାରୁଥିଲା ।

ତାଙ୍କ ଅସମାପ୍ତ ଆତ୍ମଜୀବନୀ ପାଣ୍ଡୁଲିପିରେ ପୂଜ୍ୟ ୬ ଗୋପବାବୁ ଲେଖି-ଯାଇଛନ୍ତି ଯେ ସେ ସର୍ବାଙ୍ଗାସନ କରୁଥିଲେ ଓ ସେ ତାହାରି ଫଳରେ ସତେଜ ରହୁଥିଲେ, ତାଙ୍କୁ କେବେ କ୍ଳାନ୍ତି ଲାଗୁ ନ ଥିଲା । ଯେଉଁଠି ଥାନ୍ତୁ, ଯେତେ କାମ କରୁଥାନ୍ତୁ, ନିଜ ସ୍ୱାସ୍ଥ୍ୟକୁ ସେ ଖୁବ୍ ଜଗୁଥିଲେ । କିନ୍ତୁ ସାଧାରଣ ଲୋକେ ଯେଉଁ ଯେଉଁ ଉପାୟରେ ସ୍ୱାସ୍ଥ୍ୟକୁ ଜଗିବାକୁ ପଡ଼େ ବୋଲି ଭାବନ୍ତି ୬ ପୂଜ୍ୟ ଗୋପବାବୁଙ୍କ ଉପାୟ ସେପରି ନ ଥିଲା । ତାଙ୍କ ଉପାୟ ତାଲିକାରେ ନ ଥିଲା ଶାରୀରିକ ପରିଶ୍ରମରୁ କ୍ଷାନ୍ତ ହେବା, ନରମ ଆରାମ ଖୋଜିବା, ନାନା ପ୍ରକାର ଦାମୀ ଖାଦ୍ୟ ଖାଇବା, ଡାକ୍ତର ଟନିକ୍, ଭିଟାମିନ ଆଦି, ଡାକ୍ତରୀ ଔଷଧ ବା କବିରାଜୀ ମୋଦକ ଖାଇବା । ସେସବୁ ସେ ନାପସନ୍ଦ କରୁଥିଲେ । ତାଙ୍କ ଉପାୟଗୁଡ଼ିକ ଥିଲା ସାଧାରଣ ଲୋକଙ୍କ ସ୍ୱାସ୍ଥ୍ୟଜଗା ଉପାୟର ଠିକ୍ ଓଲଟା, ସେ କହୁଥିଲେ, ଲୋକେ ଶାରୀରିକ ପରିଶ୍ରମ ନ କଲେ ସେମାନଙ୍କ ଦେହ କଦାପି ଠିକ୍ ରହିବ ନାହିଁ, ଆଳସ୍ୟ ନ ଛାଡ଼ିଲେ ଦେହ ଠିକ୍ ରହିବ ନାହିଁ, ଯାହା ପ୍ରକୃତିର ଅକୁଣ୍ଠିତ ଦାନ, —ମାଟି, ପାଣି, ପବନ, —ଯାହା ହାତପାଆନ୍ତାରେ ମିଳେ, ଯାହା ସଂସାରରେ ସରଳତମ ଉପାଦାନ, ସେପରି

ଗଛର ପତ୍ର, ଗୃହୀ ବାଡ଼ିର ଫଳ, ସାଧାରଣ ଫସଲ, ମନୁଷ୍ୟର ଦେହ ପାଇଁ ଉତ୍କୃଷ୍ଟ ଉପାଦାନ କେବଳ ସେହିସବୁ, କିନ୍ତୁ ତାକୁ ବି ନିଜ ଦେହକୁ ନିଜେ ପରୀକ୍ଷା କରି ଅଭିଜ୍ଞତା ଅର୍ଜନ କରି ଦେହରେ ଚଳାଇବାକୁ ପଡ଼ିବ, କେତେବେଳେ କେଉଁଟା ଖାଇବ, କେତେ ପରିମାଣରେ କଣ ଖାଇବ, କେତେବେଳେ ଉପାସ କରିବ । ରାତି ୩ଟାରୁ ନିଦରୁ ଉଠିବା, ନିଜର ସବୁ କାମ,—ବାସନମଜା, ଘରଓଳିଆ ଧୂଆ, ଲୁଗା କଚା ପର୍ଯ୍ୟନ୍ତ, ପୁଣି ପର କାମ,—ଏସବୁ କରିବା, ଶରୀର ଓ ମନ ଉଭୟକୁ କାମରେ ଲଗାଇବା, ଦିନକୁ ତିନିଥର ଗାଧୋଇବା, ଅସୁସ୍ଥ ଲାଗିଲେ ପାଣି ଟବ୍‌ରେ ବସି 'ନାଭି ସ୍ନାନ' କରିବା, ମୁଣ୍ଡରେ ଦେହରେ ପାଣି ପଟି, ପେଟ ଉପରେ କାଦୁଅ ପଟି ଦେବା, ନାନା ଉପାୟ, ସେସବୁ ତାଙ୍କ ଭାଷାରେ "ପ୍ରାକୃତିକ ଚିକିତ୍ସା",—ଡାକ୍ତରି ଔଷଧ ଖାଆନ୍ତି ନାହିଁ । ଶୋଇବାକୁ ତାଙ୍କ ଶଯ୍ୟା ଘର ଚଟାଣ ପରି କଠିନ ଓ ଏକା ସମତଳ ପଥର, ତା ଉପରେ ଶେଯ କି ଗଦି ନ ଥାଏ, ପଡ଼େ ଖଣ୍ଡେ ପତଳା ବୁଣା ଚଟେଇ । ତାଙ୍କ ପ୍ରାତଃଭୋଜନ ଖୁବ୍ ସକାଳୁ ପଖାଳ, ତା ସହିତ କିଛି ଶାଗ ଖରଡ଼ା, ମିଳିଲେ ବଡ଼ି । ପଖାଳ ନ ମିଳିଲେ ଚୂଡ଼ା ଗୁଡ଼ । 'ଭାତ' ଖାଇବା ବେଳେ ସେ ଖାଉଥିଲେ ଢିଙ୍କିକୁଟା ବଗଡ଼ା ଚାଉଳର ଭାତ, ତା ସହିତ କୌଣସି ଗୋଟିଏ 'ସାଧା' ତରକାରି, ଯେଉଁ ପରିବା ସହଜରେ ମିଳିଗଲା ସେତିକି । ସବୁ ଖାଲି ସିଝା ହେବ, ତହିଁରେ ମସଲା ଦିଆଯିବ ନାହିଁ, ଘିଅ ତେଲ ପଡ଼ିବ ନାହିଁ, ମିଳିଲେ କିଛି ନଡ଼ିଆକୋରା ପଡ଼ିବ, ସେ ଭାବୁଥିଲେ ସ୍ୱାସ୍ଥ୍ୟପାଇଁ ତାହା ଖୁବ୍ ଭଲ, "ସେଥିରେ ସବୁ ଅଛି ।" ସେ ଭାତ ବଦଳରେ ଯଦି ରୁଟି ଖାଆନ୍ତି ସେ ହୁଏ ହାତଚକିଆ ଗହମର ରୁଟି, ବଜାର ଅଟା ନୁହେଁ କି ମଇଦାରେ ତିଆରି ନୁହେଁ । ତାଙ୍କ ଭୋଜନ ଲାଗି 'ଏଇଟା ନ ହେଲେ ନ ଚଳେ' ଏପରି ନ ଥିଲା । ଭାତ ନ ମିଳୁ, ମାଣ୍ଡିଆ, ସୁଆଁ, କୋଳଥ, ଯାହା ମିଳିବ ସେହି ତାଙ୍କର ଖାଦ୍ୟ । କେଉଁଦିନ ଖାଲି ମୁଢ଼ି ଖାଇ 'ଭୋଜନ' ସାରୁଥିଲେ, କେବେ ଅବା ଖାଲି 'ଚିନାବାଦାମ' । ସାଧାରଣ ଚାଷୀ ଗାଁର ଗଛ ଲଗାଇ ଆମଦାନୀ କରେ ପିଜୁଳି, କାକୁଡ଼ି, ଆମ୍ବ, ମକା । ଚାଷୀମାନେ ପଛେ ଲଗାଇଲେ ବିଲାତି ବାଇଗଣ, ଅମୃତଭଣ୍ଡା, ଆତ, ଟମାଟୋ, ଡାଳିମ୍ବ, ଆଖୁ, ଗୁଡ଼ । ଗୋପବାବୁ ଭାବୁଥିଲେ ଆଖୁ, ଗୁଡ଼,—ଖାଦ୍ୟ ପାଇଁ ତାହା ହିଁ ଉପାଦେୟ, ଦେହ ପାଇଁ ଖୁବ୍ ପୁଷ୍ଟିକର,—ସେଓ, ନାସ୍‌ପାତି, ଅଙ୍ଗୁର ଆଦି ଦାମୀ ବିଦେଶୀ ଫଳ ଦରକାର ନାହିଁ । ଯାହା ସାଧାରଣ ଗରିବ ଲୋକ ଖାଇବାକୁ ନ ପାଏ ସେ ସେଭଳି ଖାଦ୍ୟ-ପଦାର୍ଥକୁ ବର୍ଜନ କରୁଥିଲେ । ପିଲାଦିନୁଁ ସେ ବହୁତ ଖୁବ୍ ରସଗୋଲା ଓ ଅନ୍ୟାନ୍ୟ ମିଠେଇ ଖାଉଥିଲେ, ମାଂସ ଖାଉଥିଲେ, କିନ୍ତୁ ଏକ ପ୍ରକାର ନୂଆ ଜନ୍ମ ନେଇ 'ଦ୍ୱିଜ' ହୋଇ ନୂଆ ପ୍ରକାରେ ଜୀବନଯାପନ କଲାପରେ ସେସବୁ ଖାଦ୍ୟକୁ ସେ ବର୍ଜନ କରିଥିଲେ ଓ ସମ୍ପୂର୍ଣ୍ଣ ନିରାମିଷାଶୀ ହୋଇଥିଲେ । ସେ ଚିନି ଖାଇବା

ଗ୍ରହଣକଲେ, ତା ପରବର୍ତ୍ତୀ 'ଗୁଡ଼' ଖାଇଲେ । ତାଙ୍କ ରୁଚିକୁ ସୁଆଦିଆ ଖାଦ୍ୟ ହୋଇଥିଲା ଓଡ଼ିଆ ଘରର ପିଠାପଣା । ଖାଇବାକୁ ସେସବୁ କିଛି ନ ମିଳିଲେ ବି ତାଙ୍କର ଚିନ୍ତା ନ ଥିଲା, 'ଖଡ଼ା-ବଡ଼ି-ଥୋଡ଼'ରେ ସେ ପରମ ତୃପ୍ତି ପାଉଥିଲେ ।

ଖାଲି ଦେହ, ଖାଲି ପାଦ, ସାନ ଖଦୀ ଖଣ୍ଡେ ପିନ୍ଧା, ମୁଣ୍ଡରେ କେତେବେଳେ ଠେକା, ହାତରେ ବାଡ଼ି, ପିଠିରେ ନିଜ କିଟ୍‌ବ୍ୟାଗ ବନ୍ଧା ହୋଇ ଝୁଲୁଥିବ, ବସିବା ପାଇଁ ସାନ ଚଟେଇଟି, କାନ୍ଧରୁ ଝୁଲୁଥିବ ନଲ୍‌ଟଣ, ଲୋଟା, ମୁଣି, ଝୋଲ ଗମ୍ ଗମ୍ ବୋହୁଥିବ, ମୁହଁରେ ଖାଲୁ ପରି ବହଳ ନିଶ ଦାଢ଼ି, —ବୁଲୁଥିବେ ଗୋପବନ୍ଧୁ ଚୌଧୁରୀ, —ଆଶାର ପ୍ରତୀକ, ଶାନ୍ତିର ଦୂତ ।

ଆପଣା ପରିବାର ପ୍ରତି ସେ ଅତ୍ୟନ୍ତ ସ୍ନେହୀ, କିନ୍ତୁ ସେ ସ୍ନେହରେ ସେ ବନ୍ଧା ନ ଥିଲେ, ପର ପ୍ରତି ସ୍ନେହ ତ ତାଙ୍କଠି ସହଜାତ, ସମସ୍ତେ ତାଙ୍କର ପ୍ରିୟ, ପର ଆପଣା ନାହିଁ । ଜାଣି ହେବ ନାହିଁ, ବରି ଆଶ୍ରମରେ କି ବିଶାଳ କର୍ମୀ ସଂଖ୍ୟା ଭିତରେ, କେଉଁ ପୁରୁଷ କେଉଁ ସ୍ତ୍ରୀ ଲୋକ, ସାନ ପିଲା କି ବୁଢ଼ା, ଜାତିଧର୍ମନିର୍ବିଶେଷରେ, —ତାଙ୍କ ଆପଣା ଜନ୍ମଗତ ପରିବାରର ଜଣେ ନୁହେଁ ବୋଲି, ସମସ୍ତେ ତାଙ୍କ ପ୍ରତି, ସମସ୍ତିଙ୍କ ପ୍ରତି ସେ, —ନିଜର ଆପଣାର ଲୋକ, ବାପ, ଭାଇ, ଭଉଣୀ, ପୁଅ କି ଝିଅ, —ତାଙ୍କ ପୁଅ 'ବୁଲୁ'ଠୁଁ ଝିଅ 'ଚମ୍ପା'ଠୁଁ ସେହି ଅନ୍ୟମାନଙ୍କ ପ୍ରତି ତାଙ୍କ ବ୍ୟବହାର ଆଦୌ ଭିନ୍ନ ବୋଲି ବାରିହେବ ନାହିଁ । ମାଁ ମାଙ୍କେ ବି ସେଇଆ । କେଉଁ କର୍ମୀ କି ଆଶ୍ରମର କେହି ବେମାର ପଡ଼ିଲେ ସେ ଓ ରମା ଦେବୀ ସେବାରେ ଲାଗି ରହନ୍ତି । ସେ ନିଜେ ଗୋଡ଼ ଘଷନ୍ତି, ଅନ୍ୟଠି ରୋଗୀସେବା ବେଳେ ବି ସେହିପରି ।

ସେ କେଉଁ ପ୍ରକାରର ଲୋକ ! କିନ୍ତୁ ସବୁ ବୟସର ସବୁ ଶ୍ରେଣୀର ଲୋକେ ସତେକି ତାଙ୍କ ସାଙ୍ଗସାଥୀ, —କାନ୍ଦିଲେ କାନ୍ଦ, ସମସ୍ତିଙ୍କ ସଙ୍ଗେ ତାଙ୍କର ଦୁଃଖ ସୁଖ, ସମସ୍ତିଙ୍କ ସଙ୍ଗେ ଥଟ୍ଟା ନକଲ, କାହାର ପାଖରେ ସେ କୁଣିଆ ପରି ହେବାର ଦେଖାଯାଏ ନାହିଁ । ଅନ୍ୟକୁ ହସେଇ ଦେଇପାରନ୍ତି ସେ ପଦେ ପଦେକେ, ନିଜେ ଅଲଗା କଥା କହିଦେଇ ନିଜେ ନ ହସି ଶୁଣାଳିକୁ ହସାନ୍ତି । ସାନ ପିଲାଙ୍କୁ ଦେଖିଲେ ସେ ସେମାନଙ୍କ ବୟସରେ ଖୁବ୍ କୁତୂହଳୀ ହୁଅନ୍ତି, ତାଙ୍କ ସଙ୍ଗେ ମିଶିଯାଆନ୍ତି, ସଙ୍ଗେ ସଙ୍ଗେ ସେମାନଙ୍କ ମନକୁ ଓଟାରି ନିଅନ୍ତି । ପିଲାଙ୍କ ସଙ୍ଗେ ମିଶିଲାବେଳେ ତହିଁରେ ତାଙ୍କର କେତେ ବେଳ ଗଲା ସେ ଭାବନ୍ତି ନାହିଁ କି ତାଙ୍କ ଧୈର୍ଯ୍ୟର ସୀମା ନ ଥାଏ । ତାଙ୍କ ସଙ୍ଗେ ସେ ଗପନ୍ତି, ସେମାନଙ୍କୁ ଖେଳାନ୍ତି । ପିଲାଙ୍କ ହୁମ୍‌ଦୁମ ଭିତରେ ସେ ହଣ୍ଟୁଥାନ୍ତି ପ୍ରତ୍ୟେକ ପିଲାକୁ ବୁଝିବାକୁ, ଚିହ୍ନିବାକୁ,

କେଉଁବାଟେ ତା ମନକୁ ଛୁଇଁପାରିଲେ ତାର ବିକାଶ ହେବ ସେଇଆ ସେ ଭାବୁଥାନ୍ତି, ସେଇ ଲକ୍ଷ୍ୟ ରଖି ଚେଷ୍ଟା କରୁଥାନ୍ତି, ପ୍ରତି ପିଲଟି ଥିବା ବିଶିଷ୍ଟ ଶକ୍ତିକୁ ଖେଳରେ ଖେଳରେ ପଦାକୁ କାଢ଼ୁଥାନ୍ତି । ପିଲଟି ଯେତେ 'ଦୁଷ୍ଟ', 'ଦୁର୍ଦ୍ଦାନ୍ତ', ତା ପ୍ରତି ୬ ଗୋପବାବୁ ସେତିକି ଖୁସି, କାରଣ ସେ ଭାବୁଥିଲେ, "ତାଠି କିଛି ଶକ୍ତି ଅଛି, ସେ ପିଲ ମାଦା ନୁହେଁ, ସାଧାରଣ ନୁହେଁ, ସେ କେବେ ପିଲଙ୍କୁ ଆକଟନ୍ତି ନାହିଁ, ରୋକନ୍ତି ନାହିଁ, ଗାଳି ଦିଅନ୍ତି ନାହିଁ, ଡରାନ୍ତି ନାହିଁ, ପିଲ ଯାହା କରୁ ପଛେ, ଯେତେ ଜିନିଷ ନଷ୍ଟକରୁ ପଛେ । ସେଇପରି କେତେ ପିଲ ତାଙ୍କ ସଂସ୍ପର୍ଶରେ ଆସି ମଣିଷ ହୋଇଛନ୍ତି ।

୬ ପୂଜ୍ୟ ଗୋପବାବୁ ଆଶାବ୍ଧୀ, ସରଳ ଓ ସରଳ ବିଶ୍ୱାସୀ ମଣିଷଟିଏ ଥିଲେ ସବୁଦିନେ । କୌଣସି ସଂସ୍ଥା ଚଳାଇଲାବେଳେ କାମ କରିବା ଲୋକଙ୍କ ଉପରେ, ସାଧାରଣ ସେବା କ୍ଷେତ୍ରରେ କର୍ମୀଙ୍କ ଉପରେ ତାଙ୍କର ଅଟଳ ବିଶ୍ୱାସ ରହୁଥିଲା, ସେ ସନ୍ଦେହୀ ନ ଥିଲେ । ସେ ଅନ୍ତର ଭିତରୁ ବିଶ୍ୱାସ କରୁଥିଲେ, "ସବୁ ମଣିଷଠି ଭଗବାନ ଅଛନ୍ତି, ବିବେକ ଅଛି, ଭଲପଣ ଅଛି ।"

କିନ୍ତୁ ଆୟବ୍ୟୟର ଖର୍ଚ୍ଚ ବିଷୟରେ ସେ ପ୍ରତି ପାଇଲାର ହିସାବ ରଖୁଥିଲେ । କଟକ ଜିଲ୍ଲା ବୋର୍ଡ଼ର ଦାୟିତ୍ୱ ତୁଲାଇବା ବେଳେ, ଖଦୀ କାମର ଦାୟିତ୍ୱ ତୁଲାଇଲା ବେଳେ, ପ୍ରତ୍ୟେକ ପ୍ରକାର ଜନସାଧାରଣଙ୍କ ସେବାକାର୍ଯ୍ୟ କାମ କଲାବେଳେ, ଆୟ-ବ୍ୟୟର ଦୈନନ୍ଦିନ ହିସାବର ଖାତାପତ୍ର ସେ ନିଜେ ଲେଖି ରଖୁଥିଲେ । ପ୍ରତିଦିନ ପ୍ରତି ପଇସାର ହିସାବ ମିଳେଇ ନ ଲେଖିବା ଯାକେ ସେ ଶୋଉ ନ ଥିଲେ । ତାଙ୍କ ଜୀବନଯାକ ତାଙ୍କର ଏହିପରି ଅଭ୍ୟାସ । କିନ୍ତୁ ଅନ୍ୟମାନଙ୍କୁ ସେ ଯେଉଁ ଟଙ୍କା ଦେଇଥାନ୍ତି, କେତେ ଲୋକ ତାଙ୍କ ସରଳ ବିଶ୍ୱାସର ସୁବିଧା ନେଇ ସେ ପଇସାକୁ ଉଡ଼ାଇ ଖାଇଛନ୍ତି, ଅପବ୍ୟୟ କରିଛନ୍ତି । ସେ ନିଜେ ଏତେ ଦକ୍ଷ ଯେ କିଛି ତାଙ୍କ ଆଖିରୁ ଲୁଚେଇ ହୁଏ ନାହିଁ, କିନ୍ତୁ ଲୋକେ ପଇସା ଗୋଳମାଳ କଲେ ସେ ନିଜେ ମର୍ମାହତ ହୁଅନ୍ତି ସିନା, ନିଜେ କଷ୍ଟ ଭୋଗନ୍ତି ସିନା, କାହାରିକୁ ଅଡ଼ୁଆରେ ପକାନ୍ତି ନାହିଁ, କାହା ବିରୁଦ୍ଧରେ ମାଲିମକଦ୍ଦମା କରନ୍ତି ନାହିଁ, ଦୋଷୀକୁ ବୁଝାନ୍ତି, ସେମାନଙ୍କୁ କହି-ପୋଛି ଯେତିକି ସମ୍ଭବ ହୁଏ ସେତିକି ଅସୁଲ କରନ୍ତି ଓ ସେପରି ଲୋକମାନଙ୍କୁ ତାଙ୍କ ଦାୟିତ୍ୱରୁ ଅବ୍ୟାହତି ଦିଅନ୍ତି । ବିଚକ୍ଷଣ ବୁଦ୍ଧିମାନ୍, ନୀତିବାନ୍ ହୋଇସୁଦ୍ଧା ସେ ଥିଲେ ଦୟାର ଅବତାର, ମଣିଷର ସ୍ଖଳନ ପାଇଁ ଦୁଃଖିତ ଦେଖିଲେ ତାହାର ପାଇଁ ସେ ଦୁଃଖିତ ହୁଅନ୍ତି, ତାହା ପ୍ରତି ତାଙ୍କର ହିଂସା କି ପ୍ରତିହିଂସା କି ଦ୍ୱେଷ ନ ଥାଏ । ଯେଉଁମାନେ ତାଙ୍କର ନିନ୍ଦା ଗାଉଥିଲେ କି ତାଙ୍କୁ ଶତ୍ରୁତା କରୁଥିଲେ ସେମାନଙ୍କ ପ୍ରତି ବି ତାଙ୍କର ସମାନ ବ୍ୟବହାର । ଯେ ତାଙ୍କର ଯାହା ଅନିଷ୍ଟ କରୁ, ଯାହା କୁତ୍ସା

ଶାନ୍ତି, ଯେପରି ଶଙ୍କୁତା କରୁ,—ସେ କୌଣସି କଥାରେ ଆଦୌ ବିଚଳିତ ହୁଅନ୍ତି ନାହିଁ, ସେ କଥାକୁ ଛଳ କରନ୍ତି ନାହିଁ, ନିନ୍ଦୁକ କି ବିରୋଧୀ ଉପରେ ସେ ରାଗନ୍ତି ନାହିଁ, ମନରେ ହିଂସା ନ ଥାଏ କି ଦ୍ୱେଷ ନ ଥାଏ, ଶତ୍ରୁ ପ୍ରତି ବି ସେ ସବୁବେଳେ ସ୍ନେହୀ, ଅମାୟିକ, ତାର ଉପକାର କରିବାକୁ ବ୍ୟଗ୍ର । ତେଣୁ ତାଙ୍କର ଚରିତ୍ର, ଦୃଷ୍ଟିଭଙ୍ଗୀ ଓ ବ୍ୟବହାରରେ ପଥର ବି ତରଳେ । କେହି ତାଙ୍କର ଶତ୍ରୁ ନ ଥିଲେ । ଯେଉଁମାନେ କେବେ କୌଣସି ବିଷୟରେ ୰ ଗୋପବାବୁଙ୍କ ପ୍ରତି ବିମୁଖ ହୋଇଯାଇଥିଲେ, ତାଙ୍କ ନିନ୍ଦା ଗାଇଥିଲେ, —ଥିଲେ ବି ସେପରି କେହି କେହି,—କିନ୍ତୁ ସତ୍ସଙ୍ଗରେ ଜୀବନ୍ତ ପ୍ରତିମୂର୍ତ୍ତି—ମନୁଷ୍ୟଙ୍କ ଭିତରେ ସନ୍ଥ ଆଦର୍ଶ, ସନ୍ଥ-ଜୀବନ ଏହି ମହାପୁରୁଷଙ୍କ ପ୍ରତି ନିଭୃତ ହୃଦୟ ଭିତରେ ସେମାନଙ୍କର ବି ତାଙ୍କ ପ୍ରତି ଭକ୍ତି ଥିଲା, ଏହା ବାରିହୋଇ ପଡ଼େ । ତାଙ୍କ ବିଷୟରେ ସେପରି ଜଣେ ଭଦ୍ରବ୍ୟକ୍ତି ଯାହା ଲେଖିଛନ୍ତି ତାହା ଏ ପୁସ୍ତକରେ ଅନ୍ୟତ୍ର ଉଦ୍ଧୃତ ହୋଇଛି ।

"୰ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ତାଙ୍କର ନିଜ ଚିନ୍ତା ଓ ଆଚରଣରେ ସବୁଠାରୁ ନିକୃଷ୍ଟ, ନିଷ୍ଠୁର ଓ କଠୋର ସମାଲୋଚକ ଥିଲେ, —ପରର ଦୋଷ ତାଙ୍କ ଆଖିରେ ପଡ଼େ ନାହିଁ, କିନ୍ତୁ ନିଜ ବିଷୟରେ ସେ ଭାବୁଥାନ୍ତି "ଆଜି କଣ ଭୁଲ୍ କଲି ? କେଉଁଠି ମୋ ଦୋଷତ୍ରୁଟି ରହିଗଲା ?" ନିଜ ଦୋଷ ନିରୂହି ନିକୁଚି ଖୋଜିବା ଓ ତାକୁ ସଂଶୋଧନ କରିବାକୁ ଚେଷ୍ଟା କରିବା ତାଙ୍କ ଚରିତ୍ରର ପ୍ରଧାନ ଗୁଣ ଥିଲା । 'ଦୋଷ' 'ତ୍ରୁଟି' ବୋଲି କାହାକୁ ଗଣାହେବ ସେ ବିଷୟରେ ତାଙ୍କ ବିବେକ ଅତିମାତ୍ରାରେ ସ୍ପର୍ଶକାତର, ତାକୁ ତଉଲି ଦେଖିବାଲାଗି ତାଙ୍କ ନିଜ ବିଷୟରେ ନିକିତି ଖୁବ୍ ସୂକ୍ଷ୍ମ । ଯେପରି ତ୍ରୁଟିର ସମ୍ଭାବ୍ୟ ଗୁଣ ତ୍ରୁଟି କଲେ ବି ସାଧାରଣ ଲୋକ ସେ ବିଷୟରେ ଭାବେ ବି ନାହିଁ, ଭାବେ 'ସଂସାରରେ ଏପରି ଚଳେ, ଏ କିଛି ନୁହେଁ" ତାର ବିବେକ ତଳେ ବି ଅସ୍ୱସ୍ତି ଅନୁଭବ କରେ ନାହିଁ, ୰ ଗୋପବାବୁଙ୍କ ଆତ୍ମସମୀକ୍ଷାର ନିଜ ତଟା ନିକିତିରେ ତାହା ଅତି ଓଜନଦାର୍ ହୋଇ ଧରାପଡ଼େ, ସେ ଅନୁତାପ କରନ୍ତି, ତାକୁ ସୁଧାରନ୍ତି । 'ଗୀତା'ର ଅଭ୍ୟାସ ଯୋଗ ଆଚରଣ କରନ୍ତି, ପରମେଶ୍ୱରଙ୍କ ସାହାଯ୍ୟ ଭିକ୍ଷା କରନ୍ତି; ତାଙ୍କ ମାପ-ନିକିତି ଶ୍ରୀଭଗବଦ୍ ଗୀତାଙ୍କର ପ୍ରତ୍ୟେକ ବିଚାର, ପ୍ରତ୍ୟେକ ଉପଦେଶ । ସେ ନିଜର ପ୍ରତିଦିନର ଠିକଣାଖି କାର୍ଯ୍ୟକୁ, କଥାକୁ, ନିଜ ବ୍ୟବହାରକୁ, ଶାସ୍ତ୍ରୀୟ ମତ ଉପଦେଶ ସହିତ ମିଳାଇ ମିଳାଇ କଠୋର ଭାବେ ବିଚାର କରନ୍ତି, ଯଦି କିଛି ଭୁଲ୍ ହେଲା ବୋଲି ଭାବନ୍ତି, ତେବେ ନିଜକୁ ଚେତାନ୍ତି ଯେ ସେପରି ଆଉ ହେବ ନାହିଁ, ସେଥିପାଇଁ ସତର୍କ ଓ ସାବଧାନ ହେବାକୁ ପଡ଼ିବ । ତାଙ୍କ ଚିଠିରୁ, ଜେଲ୍ ଡାଇରିରୁ, ଛପା-ଅଛପା ନାନା ଲେଖାରୁ ତାର ପ୍ରମାଣ ମିଳିବ, ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସିଥିଲେ ସେମାନେ ତ' ସହଜେ ଜାଣନ୍ତି ।

ତେଣୁ ସେ ଥିଲେ ମଣିଷ ସମାଜ ଭିତରେ ଜଣେ ଶକ୍ତିଶାଳୀ ଚୁମ୍ବକ, ଲୋକେ ସହଜେ ତାଙ୍କ ପାଖକୁ ଓଟାରି ହୋଇଆସୁଥିଲେ । ଦି'ପଦ ପଶ୍ରେଇ କଥାବାର୍ତ୍ତାରେ ସେମାନେ ଆକୃଷ୍ଟ ହେଉଥିଲେ । ତାଙ୍କ କଥାଭାଷା ଅତି ସହଜ, ସୁମିଷ୍ଟ, ସରଳ, ନିଷ୍କପଟ, ଆନ୍ତରିକ, ତହିଁରେ ତାଙ୍କଠି ନ ଥିଲା ନିଜ ବଡ଼ପଣ ପ୍ରଦର୍ଶନ କି ଅଭିଜ୍ଞତା କି ଅନ୍ୟକିଛି ମହତ୍ତ୍ୱଗୁଣରେ ବଡ଼ପଣ । ସେ ଅତି ବିନୟୀ, ସୌଜନ୍ୟପୂର୍ଣ୍ଣ ଅମାୟିକ ବ୍ୟକ୍ତି, ହୃଦ ଟାଣନ୍ତି, ଦୁଃଖ ବୁଝନ୍ତି । ତାଙ୍କ ସଙ୍ଗେ କଥାଭାଷା ହେବାମାତ୍ରେ ଜଣେ ଭାବିବ "ସେ ମୋର ଖାଲି ଚିହ୍ନା ଲୋକ ନୁହନ୍ତି, ସେ ମୋ ଆପଣାର ଲୋକ । ୰ ଗୋପବାବୁ ନିଜେ, ସମ୍ପୂର୍ଣ୍ଣ ନିରହଂକାର, ଖୋଲା ମଣିଷଟିଏ, ନିଷ୍ପାପ, ନିରାଡମ୍ବର । କିନ୍ତୁ ତାଙ୍କର ସାଧାରଣ ବ୍ୟବହାର ମାମୁଲି କଥା ବି ଅପର ବ୍ୟକ୍ତି ପକ୍ଷରେ ଶିକ୍ଷଣୀୟ ।

ଜନୈକ ଯୁବକ ଶ୍ରୀ ନିମାଇଁ ଚରଣ ସାହୁ ତାଙ୍କୁ ପ୍ରଥମ ଥର ଦେଖିବାକୁ ବଣ୍ଟି ଯାଇଥିଲେ । ୰ ଗୋପବାବୁ କପରି ଲୋକ ହୋଇଥିବେ ସେବିଷୟରେ ତାଙ୍କ ମନରେ କେତେ ବଡ଼ ବଡ଼ ଧାରଣା ଥାଏ, ମନ ଭିତରେ ତାଙ୍କର ସେ ଗୋଟିଏ ଭାବମୂର୍ତ୍ତି ଗଢ଼ି ରଖିଥାନ୍ତି, —"ଏତେ ବଡ଼ ଲୋକ ! ଦେଖିଲେ ମାଡ଼ି ପଡ଼ିବ !" ବଣ୍ଟି ଆଶ୍ରମକୁ ବାଟ ଖୋଜୁଛନ୍ତି, ପଚାରୁଛନ୍ତି, ଖରା ବେଳ । ଦେଖିଲେ ଜଣେ ଚାଷୀ କି ମୂଲିଆ ଗୋଟିଏ କ୍ଷେତରେ ପିଆଜ ଲଗାଉଛି । ନିମାଇଁବାବୁ ପଚାରିଲେ, "ଏଠି ଗୋପବନ୍ଧୁ ଚୌଧୁରୀ କେଉଁଠି ରହନ୍ତି କହିଦେଲ ! ମୁଁ ତାଙ୍କର ପାଖକୁ ଯାଉଛି ।" ଚାଷୀଟି ଉତ୍ତର ଦେଲ, "ଗୋପବନ୍ଧୁ ଚୌଧୁରୀ ! ଏଠି ସେମିତି ତ କୌଣସି ଲୋକ ନାହିଁ । ଏଠି ଅଛି ଗୋପିଆ ଚଷା, ମୋର ନାଁ ସେ ।" କହିଦେଇ ଚଷାଟି ହସିଦେଲା । ସେହି ଥିଲେ ଧୂଳିମାଟିର ସନ୍ଥ, କର୍ମବୀର, ସନ୍ୟାସୀରାଜ, ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ।

ଥରେ ଚିହ୍ନା ହେଲେ ଡୋରି ଲଗିଯାଏ । ଅସଂଖ୍ୟ ଲୋକ ଖାଲି ତାଙ୍କ ସ୍ନେହଡୋରରେ ବାନ୍ଧିହୋଇ ସବୁ ଛାଡ଼ି ଆଜୀବନ ତାଙ୍କ ସହକର୍ମୀ ହୋଇ ରହିଛନ୍ତି । ତାଙ୍କୁ ଚିହ୍ନିଲେ ହିଁ ତାଙ୍କ ପ୍ରଭାବ ଅପର ବ୍ୟକ୍ତିର ମନକୁ ମାଡ଼ିବସେ । ସେ ବଦଳିଯାଏ ।

ଅନେକ ବ୍ୟକ୍ତି, ଯେଉଁମାନେ ତାଙ୍କର ଅନୁଗାମୀ ହୋଇଥିଲେ, ନିଜ ଆଚରଣରେ ତାଙ୍କୁ ଅନୁସରଣ କରୁଥିଲେ କାଳକ୍ରମେ ପୂର୍ବ ଜୀବନଚର୍ଯ୍ୟା ଛାଡ଼ିଛନ୍ତି, ୰ ଗୋପବାବୁଙ୍କ ପନ୍ଥା ଛାଡ଼ି ଅନ୍ୟ ବାଟରେ ଚାଲିଯାଇଛନ୍ତି, ସେମାନେ ଏବେ ଯେକୌଣସି ସାଧାରଣ ବ୍ୟକ୍ତି ପରି, ନିଜ ନିଜ ସ୍ୱାର୍ଥସିଦ୍ଧି ପାଇଁ ସଂସାରୀ ଉପାୟରେ କାର୍ଯ୍ୟନିରତ । କିନ୍ତୁ ତଥାପି ସେମାନଙ୍କ ଚରିତ୍ରରେ ଆଚରଣରେ ୰ ଗୋପବାବୁଙ୍କର ଏପରି କିଛି ପ୍ରଭାବ ରହିଯାଇଛି ଯାହା ତାଙ୍କ ପ୍ରଭାବରେ ନ ପଡ଼ିଥିବା ଅନ୍ୟ କାହାଠି ଦୃଷ୍ଟିଗୋଚର ହେବ ନାହିଁ । ୰ ପୂଜ୍ୟ ଗୋପବାବୁଙ୍କ ବ୍ୟକ୍ତିତ୍ୱର ପ୍ରଭାବ ପରିଲକ୍ଷିତ

ହେବ ଆହୁରି ସେହିମାନଙ୍କ ବ୍ୟକ୍ତିତ୍ୱରେ, ଆଚରଣରେ, କାର୍ଯ୍ୟରେ, ଯେଉଁମାନେ ଅଳ୍ପ କିଛିଦିନ ପାଇଁ ସୁଦ୍ଧା ପୂଜ୍ୟ ୰ ଗୋପବାବୁଙ୍କର, ତାଙ୍କ ଦ୍ୱାରା ପ୍ରତିଷ୍ଠିତ ପରିଚାଳିତ ବରି ଆଶ୍ରମ, ବିବିଧ ରଚନାତ୍ମକ କର୍ମକେନ୍ଦ୍ର, ବିବିଧ କାର୍ଯ୍ୟ ସହିତ କେବେହେଲେ କିଛିଦିନ ପାଇଁ ସଂସ୍ପର୍ଶରେ ଆସିଥିଲେ । ଏହିପରି ପ୍ରଭାବ ପରିଲକ୍ଷିତ ହେଉଥିଲା ପୂର୍ବେ ଯେଉଁମାନେ ସଂସ୍ପର୍ଶରେ ଆସିଥିଲେ ସଂସାରରେ ଅଭିନବ ଅଦ୍ୱିତୀୟ ସତ୍ୟବାଦୀ ବନ ବିଦ୍ୟାଳୟ ସହିତ, ଋଷିତୁଲ୍ୟ ତାର ଆଚାର୍ଯ୍ୟମାନଙ୍କ ସହିତ, ପରମକାରୁଣିକ ବୋଧିସତ୍ତ୍ୱତୁଲ୍ୟ ସଂସାରଯାକର ମଣି ପରମପୂଜ୍ୟ ୰ ଗୋପବନ୍ଧୁ ଦାସଙ୍କ ସହିତ ।

ମନୁଷ୍ୟ ସମାଜରେ ମହାପୁରୁଷମାନଙ୍କ ଏହି ସୁଦୂରପ୍ରସାରୀ ପ୍ରଭାବ କାହାର ସ୍ଥୂଳ ଅଙ୍ଗୁଳିରେ ଧରିହୁଏ ନାହିଁ, ତାଙ୍କୁ 'ପରିସଂଖ୍ୟାନ' (ଷ୍ଟାଟିଷ୍ଟିକ୍ସ) ଶାସ୍ତ୍ରବଳରେ କଳିହୁଏ ନାହିଁ, ଯେପରି କଳିହୁଏ ନାହିଁ ସୂର୍ଯ୍ୟୋଦୟର ପ୍ରଭାବ । ଚିରସ୍ମରଣୀୟ ମହାତ୍ମା ଗାନ୍ଧୀ ଓ ଗାନ୍ଧୀ-ବାଦର ପ୍ରଭାବ ବି ଥିଲା ସେହିପରି । ଯେପରି ଋଷିଙ୍କ ଦ୍ୱାରା ମନ୍ତ୍ରପୂତ ସାମାନ୍ୟ କାଇଁଶିକା କାଠି ବ୍ରହ୍ମାସ୍ତ୍ରଠୁଁ ବଳି ଶକ୍ତିଶାଳୀ ହୋଇ ସର୍ବପରାକ୍ରମୀ ବିଷ୍ଣୁଙ୍କ ଚକ୍ରକୁ ବି ପରାଭୂତ କଲା, ସେହିପରି ଗାନ୍ଧୀ ପ୍ରଭାବ ଓ ଗାନ୍ଧୀବାଦର ପ୍ରଭାବ ଏ ଦେଶର ସାଧାରଣ ଜନତାଙ୍କଠାରେ ସ୍ୱପ୍ନ, ଆଦର୍ଶ, ଆତ୍ମବଳ ସଞ୍ଚାର କରି ସେମାନଙ୍କୁ ଏଭଳି ଉଦ୍‌ବୁଦ୍ଧ କଲା ଯେ ଏକଦା ପୃଥିବୀରେ ଅଦ୍ୱିତୀୟ ପରାକ୍ରମଶାଳୀ ବ୍ରିଟିଶ୍ ରାଜଶକ୍ତି ଭାରତରୁ ତା କବଳ ମୁକ୍ତ କରିବାକୁ ବାଧ ହେଲା ।

ଅଶାନ୍ତି ଭିତରେ ଶାନ୍ତିର କାରିଗର ଥିଲେ ପୂଜ୍ୟ ୰ ଗୋପବନ୍ଧୁ ଚୌଧୁରୀ, ସମାଜରେ ମନ ଫଟାଫଟି ଯୋଡ଼ୁଥିଲେ, କଜିଆ ଭାଙ୍ଗୁଥିଲେ । ରାଜନୀତିରେ ମତାନ୍ତର ରହିପାରେ ବୋଲି ସେ ସ୍ୱୀକାର କରୁଥିଲେ, ସେ ତ ଭାବୁଥିଲେ ପ୍ରତି ଲୋକ ନିଜେ ଭାବିବ, ନିଜ ମତ ଠିକଣା କରିବ, ମତ-ମତ ମୁକ୍ତ ବା ବୁଝା-ବୁଝି ଚାଲିବ, ଜଣେକ ମତ ଉପରେ ଅନ୍ୟ କେହି ନିଜ ମତ ଲଦିବା, ସେ ମତ ସେ ଗ୍ରହଣ କରୁ ବୋଲି ତାକୁ ଜୋର୍‌ଜବର୍ଦ୍ଦସ୍ତି କରିବା ସମ୍ପୂର୍ଣ୍ଣ ଭୁଲ୍, ଅନ୍ୟାୟ । ସେ ଭାବୁଥିଲେ, କାହାସଙ୍ଗେ 'ମତାନ୍ତର' ରହିପାରେ, କାରଣ ପ୍ରତ୍ୟେକ ନିଜ ମତ ଠିକଣା କରିବାକୁ, ନିଜ ମତ ଅନୁସାରେ କାର୍ଯ୍ୟ କରିବାକୁ ହକ୍‌ଦାର, କିନ୍ତୁ 'ମନାନ୍ତର' ରହିବା ଗର୍ହିତ, ଅପରକୁ ସ୍ନେହ କରିବାହିଁ ତ ମନୁଷ୍ୟର ଈଶ୍ୱରଦତ୍ତ କର୍ତ୍ତବ୍ୟ ।

ବନସ୍ୱୀ, ନିରଭିମାନୀ, ନିରାଡମ୍ବର ମଣିଷଟିଏ ସେ, ନିଜକୁ କରିଥିଲେ ସମ୍ପୂର୍ଣ୍ଣ ଗାଉଁଲି ଚାଷୀ ମୂଲିଆ ଭିତରୁ ଜଣେ, ଗରିବ ଗ୍ରାମବାସୀ, ଯାହାକୁ କହନ୍ତି, 'ଅତି ସାଧାରଣ', ନିଜପାଇଁ କେଉଁଥିରେ ଓଜରଆପତ୍ତି ନାହିଁ, 'ମୁଁ ବଡ଼', 'ମୁଁ ଜଣେ କେହି' ଏପରି ତ ଆଦୌ ନାହିଁ, 'ମୁଁ'ତ୍ୱ ଲୋପହୋଇ ପାଲଟିଥାଏ 'ତୁ', 'ସେ',

ପରପାଇଁ ତାଙ୍କ ଜୀବନ, —"ଧନ୍ୟ ସେ ପ୍ରାଣୀ ଏ ଜଗତେ, ଶରୀର ଧରେ ପରହିତେ ।" ନିଜ ବଡ଼େଇ ନିଜ ପ୍ରଶଂସା ପାଇବା ତ ଦୂର କଥା, କେହି ତାଙ୍କୁ ପ୍ରଶଂସା କଲେ ତାଙ୍କୁ ଅଭିନନ୍ଦନ ଦେଉ, ଏପରି ଧାରଣା ବି ତାଙ୍କୁ ଘୋର ଅରୁଚିକର, ଏ ବିଷୟରେ ନାନା କାହାଣୀ ଅଛି ।

୧୯୨୦ର କଲିକତା କଂଗ୍ରେସରେ ଅସହଯୋଗ ଆନ୍ଦୋଳନ ପାଇଁ ନିଷ୍ପତ୍ତି ଗୃହୀତ ହୋଇଥାଏ, ଉତ୍ସାହ ବଢ଼ି ଉଠିଥାଏ, କଟକ ସ୍ୱରାଜ୍ୟାଶ୍ରମ ସେହି ଆନ୍ଦୋଳନର କେନ୍ଦ୍ରସ୍ଥଳ ହୋଇଥାଏ । ଗୋପବାବୁ ତାଙ୍କ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଚାକିରିରୁ ଇସ୍ତଫା ଦେଲାମାତ୍ରେ ଭାରତରେ ବିବିଧ ଜାତୀୟ ସମ୍ବାଦପତ୍ରମାନଙ୍କରେ ସେ ସମ୍ବାଦ ବଡ଼ ବଡ଼ ଅକ୍ଷରରେ ଛପା ହେଲା, ଚାରିଆଡ଼େ ଏହି ସ୍ୱାଧୀନଚେତା ନିର୍ଭୀକ ଯୁବକଙ୍କ ପଦକ୍ଷେପ ଯୋଗୁଁ ଚହଳ ପଡ଼ିଗଲା, ଆଶା ଓ ଉନ୍ମାଦନା ଖେଳିଗଲା, ଓଡ଼ିଶାରେ ତରୁଣମାନେ ତେଜି ଉଠିଲେ, ଯେଉଁମାନେ ସ୍ୱାଧୀନତା ଆନ୍ଦୋଳନଲାଗି ଉଦ୍‌ବୁଦ୍ଧ ହୋଇଥିଲେ ସେମାନଙ୍କ ମନବଳ, ଆଶା, ଉତ୍ସାହ ତାଙ୍କ ଆଦର୍ଶ ଦେଖି ବହୁଗୁଣେ ବଢ଼ିଗଲା । ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଜଣାଇବେ ବୋଲି ସେମାନେ କଟକରେ କାଠଯୋଡ଼ି ନଦୀବନ୍ଧର ହାତୀଗଡ଼ା ଘାଟ ପାଖେ ଗୋଟିଏ ପ୍ରକାଣ୍ଡ ସଭା ଆୟୋଜନ କଲେ ।

କିନ୍ତୁ ସଭାକୁ ଆସି ସମ୍ବର୍ଦ୍ଧନା ଓ ଅଭ୍ୟର୍ଥନା ଘେନିବାକୁ ତାଙ୍କୁ ବାରମ୍ବାର ନିମନ୍ତ୍ରଣ କଲେ ବି ୬ ଗୋପବାବୁ ସେଠାକୁ ଗଲେ ନାହିଁ । ଆମନ୍ତ୍ରଣକାରୀଙ୍କୁ କହିଲେ, "ମୁଁ ଚାକିରି ଛାଡ଼ିଛି ସତ, ଅସହଯୋଗ ଆନ୍ଦୋଳନରେ ମୁଁ ଯୋଗଦେଇପାରେ ସତ, କିନ୍ତୁ ମୁଁ ତ ଅସହଯୋଗ ଆନ୍ଦୋଳନରେ ଯୋଗଦେବି ବୋଲି କିଛି ଚାକିରି ଛାଡ଼ି ନାହିଁ, ତେଣୁ ଏ ସମ୍ମାନ ମୋର ପ୍ରାପ୍ୟ ନୁହେଁ, ମୁଁ ଯିବି ନାହିଁ ।"

ତାଙ୍କ ପରବର୍ତ୍ତୀ ଜୀବନରେ ମଧ୍ୟ, ସେ କେବେ ସମ୍ବର୍ଦ୍ଧନା ପାଇବାକୁ ଆଗ୍ରହ ଦେଖାଇ ନାହାନ୍ତି, ଅଭ୍ୟର୍ଥନା, ଫୁଲମାଳ, ସଭାରେ ଉପସ୍ଥିତ ରହି ଅନ୍ୟମାନଙ୍କ ତୁଣ୍ଡରୁ ନିଜ ବିଷୟରେ ଅଜସ୍ର ପ୍ରଶଂସା ଶ୍ରବଣ, —ଏସବୁ ତାଙ୍କୁ ସବୁଦିନେ ବିଷପରି ଲାଗୁଥିଲା । ତଥାପି ଅବସ୍ଥା ଚକ୍ରରେ ବାଧ୍ୟ ହୋଇ ଯେତେବେଳେ ସେଭଳି କୌଣସି ସଭାକୁ ତାଙ୍କୁ ଯିବାକୁ ପଡ଼ିଛି ସେତେବେଳେ ସେ ଦେହ ମନକୁ କାଠ କରି ତାକୁ ସହିଯାଇଛନ୍ତି ।

ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀ ପାଣ୍ଡୁଲିପିରେ ମଧ୍ୟ ଆପଣାକୁ ବଡ଼ କରି ନ ଦେଖାଇବା ପ୍ରବୃତ୍ତିର ନାନା ପ୍ରମାଣ । ସେହି ପାଣ୍ଡୁଲିପିର ଭୂମିକାର ଆରମ୍ଭରେ ସେ ଲେଖିଛନ୍ତି :

"ଅନେକ ବନ୍ଧୁ ମତେ କେତେଥର କର୍ମୀମାନଙ୍କ ପାଇଁ କିଛି ଲେଖିବାକୁ କହି ସାରିଛନ୍ତି । ...ମୋର ଅନୁଭୂତିରୁ ଯେତେ ଯାହା କର୍ମୀମାନଙ୍କର ଶିଖିବାର ଅଛି ତାହା ଲେଖିବା ସ୍ଥିର କରିଛି । ...ମୁଁ ଯେଉଁଠି ଯେମିତି ଖାଲ ଢିପରେ ପଡ଼ିଛି ସେଥିରୁ ଉଠୁଛି ବା ଅନ୍ୟକୁ ସେମିତି ପଡ଼ି ଉଠୁଥିବାର ବା ନ ଉଠୁଥିବାର ଦେଖିଛି, ସେସବୁ ଲେଖିପାରିଲେ ଏବଂ ଠିକ୍ ସତକଥା ଲେଖିପାରିଲେ, ଅନେକଙ୍କ କାମରେ ଆସିପାରେ । ...୧୯୨୭ରୁ ବା ୧୯୨୮ରୁ ମୁଁ ପ୍ରତ୍ୟହ ଡାଇରି ଲେଖୁଥିଲି । ୧୯୩୦ରେ ସତ୍ୟାଗ୍ରହ ପରେ ଜେଲ୍‌କୁ ଆସିବାପରେ ମଧ୍ୟ ଡାଇରି ଲେଖୁଥିଲି । ...ହଠାତ୍ ମନରେ ଗୋଟାଏ ସନ୍ଦେହଜାତ ହେଲା ଯେ ଏ ଡାଇରି ଲେଖା ଭିତରେ ଆତ୍ମାଭିମାନ ନାହିଁ କି ? ଭବିଷ୍ୟତରେ ନିଜର ବଡ଼ପଣିଆ ବା ବଡ଼ ବଡ଼ ଚିନ୍ତାଧାରା ପ୍ରକାଶ ପାଇବାର ଏ ଗୋଟାଏ ସୂକ୍ଷ୍ମ ବାଟ, ଏ ଆଶା ଲୁଚିକରି ମନଭିତରେ ନାହିଁ କି ?......"

ସମ୍ଭବତଃ ଏଇଥିପାଇଁ ତାଙ୍କ ଆତ୍ମଜୀବନୀ ଲେଖା ଅସମାପ୍ତ ରହିଗଲା, —ସେପରି ଲେଖିଲେ କାଳେ ସେ ନିଜଠି ଅହମିକାକୁ ପରୋକ୍ଷରେ ବଢ଼ାଇବେ, କାଳେ ପ୍ରଚ୍ଛନ୍ନଭାବରେ ତାଙ୍କ ଆତ୍ମପ୍ରୀତି ମାଡ଼ିବସିବ, ଏହି ଆଶଙ୍କା ଯୋଗୁଁ, ସେହି ଆତ୍ମଜୀବନୀର 'ଭୂମିକା'ର ଶେଷ ଆଡ଼କୁ ସେ ଲେଖିଛନ୍ତି :

"ମୁଁ ଯେ ଅନୁଭୂତିଗୁଡ଼ିକ କର୍ମୀମାନଙ୍କ ପାଇଁ ଲେଖିବାକୁ ଯାଉଛି, ସେଥିରେ ମୁଁ କର୍ମୀସ୍ୱରୂପରେ ମୋ ନିଜ ଆଗରେ କି ଆଦର୍ଶ ରଖିଛି, ବା ଏ ଆତ୍ମଜୀବନୀ ଲେଖିଲାବେଳେ କି ଆଦର୍ଶ ଆସି ମୋ ଆଗରେ ଠିଆ ହୋଇଛି ତାହା ଜଣାଇଦେବା ଉଚିତ ।......

"ମଣିଷର କର୍ତ୍ତବ୍ୟ, ଭଗବାନଙ୍କ ପ୍ରଦତ୍ତ ଏ ଶରୀର, ମନ, ବୁଦ୍ଧି ଇତ୍ୟାଦିର ସଦ୍‌ବ୍ୟବହାର କରି, ପୁଣି ତାଙ୍କୁ ଫେରାଇଦେବା ଏବଂ ଏହାର ସଦ୍‌ବ୍ୟବହାର ହେଉଛି ନିରବଚ୍ଛିନ୍ନ ଅନାସକ୍ତ ସେବା ଓ ସେବାପାଇଁ ଯେସବୁକୁ ଆଉଟି ଗୁଣ୍ଡରେ ପକାଇଦେବା ଏବଂ ଶେଷରେ, —ନିଜର ଦେଶର ଦରିଦ୍ରନାରାୟଣଙ୍କ ଭିତରେ ରହି ସେବାର ଶ୍ରେଷ୍ଠ କ୍ଷେତ୍ର ବିଦ୍ୟମାନ ।......"

୰ ପୂଜ୍ୟ ଗୋପବାବୁ ସୌଜନ୍ୟ, ବିନମ୍ର ଓ ସରଳତାର ଅବତାର ଥିଲେ ସତ, କିନ୍ତୁ ସେ ଥିଲେ ଅସୀମ ସାହସୀ, ନିର୍ଭୀକ, ସଦା ସ୍ପଷ୍ଟବାଦୀ । ଯାହାଙ୍କ ସଙ୍ଗେ କଥା କହିବାକୁ ପଡ଼େ, ସେ ବ୍ୟକ୍ତି ଯେତେ ପ୍ରତାପୀ ହୋଇଥାନ୍ତୁ, ପୂଜ୍ୟ ୰ ଗୋପବାବୁଙ୍କର

ସ୍ୱଭାବ ଥିଲା ତାଙ୍କ ସଙ୍ଗେ ସଙ୍ଗେ ମୁହେଁ ମୁହେଁ ଖେକ୍‌ଠୋକ୍ କଥା କହିଦେବେ, ନିଜେ ଯାହା ଭାବୁଛନ୍ତି ଅବିକଳ ସେହିଆ, କିଛି କଥା ଚୋରାଇବେ ନାହିଁ, କିଛି ଲୁଚାଇବେ ନାହିଁ, ସେ ତାଙ୍କ ଯାହା ଭାବୁ, ବନ୍ଧୁତା ରହୁ ବା ଭାଙ୍ଗୁ, ତାଙ୍କ କଥା ଶୁଣି କେହି ତାଙ୍କ ବିପକ୍ଷରେ ଯାଉ, ତାଙ୍କର ସେଥିପାଇଁ ଚିନ୍ତା ହିଁ ନ ଥିଲା । କେଉଁଠି ଅନ୍ୟାୟ, ଅତ୍ୟାଚାର ଦେଖିଲେ ସେ ଆଦୌ ସହିପାରନ୍ତି ନାହିଁ, ସଙ୍ଗେ ସଙ୍ଗେ କ୍ରୋଧରେ ଜଳି ଉଠନ୍ତି, ଧାଇଁ ଯାଆନ୍ତି ସେହି ଅନ୍ୟାୟ ଅତ୍ୟାଚାରର ପ୍ରତିକାର କରିବାକୁ । ବାର୍ଦ୍ଧକ୍ୟ ଆସିଲା । ଷାଠିଏ ବାଷଠି ବୟସ ହେଲା । ସେତେବେଳେ ସୁଦ୍ଧା ସେ ଯୁବକମାନଙ୍କ ଅପେକ୍ଷା ଆହୁରି ଅଧିକ ଫୂର୍ତ୍ତି ଆନନ୍ଦରେ, ଆହୁରି ଉତ୍ସାହରେ, କାର୍ଯ୍ୟ କରିଯାଉଥିଲେ । ବାର୍ଦ୍ଧକ୍ୟ ତାଙ୍କ ଜୀବନର ଶେଷଦିନଯାଏ ତାଙ୍କର ପ୍ରାଣପ୍ରାଚୁର୍ଯ୍ୟମୟ ସ୍ୱଭାବକୁ, ତାଙ୍କ ଅଦମ୍ୟ ମନବଳକୁ, ସରସ ବ୍ୟକ୍ତିତ୍ୱକୁ ଛୁଇଁପାରି ନ ଥିଲା, ଓହ୍ଲାଇପଡ଼ୁ ପଛେ ତାଙ୍କ ଶରୀରରେ । କାର୍ଯ୍ୟକ୍ଷମ ଶକ୍ତିରେ, କଷ୍ଟ ସହିଷ୍ଣୁତାରେ, ସାହସରେ, ସବୁଦିନେ ସେ ଥିଲେ ଟୋକାଙ୍କଠୁ ଆହୁରି ଟୋକା, ବିପଦ କାମକୁ ସେ ଆଗେ ଆଗେ । କାର୍ଯ୍ୟ ଆରମ୍ଭକଲେ ସେଥିପାଇଁ ଯେତେ କଠିନ ପରିଶ୍ରମ ଆବଶ୍ୟକ ପଡ଼ୁ, କାର୍ଯ୍ୟଟିରେ ନିଜ ପ୍ରତି ଯେତେ ବିପଦର ଆଶଙ୍କା ଥାଉ, ଯେତେ ଅବେଳା ହୋଇଥାଉ, ପାଗ ଯେପରି ହୋଇଥାଉ, ସେ କାର୍ଯ୍ୟ କରିବାକୁ ବାହାରି ପଡ଼ିବେ । ସେ ବାଟ ଚାଲିଛନ୍ତି ଶହ ଶହ ମାଇଲ । ଏଭଳି ଦେହଖଟଣି କାମ କରିଛନ୍ତି ଯେ କାମ ଅର୍ଥ ଦିନକୁ ଅଠଘଣ୍ଟା କୋଡ଼ିହଣା । ଦେହଖଟଣି କରି କରି ସୁଦ୍ଧା ସେ ଥକନ୍ତି ନାହିଁ । ଶରୀରକୁ ଯେତେ ବାଧା ହେଉ, ଯେତେ ବିପଦ ଆସୁ, ତାଙ୍କ ମନରେ ଦୁଃଖ ନଥାଏ । ଓଲଟି ସବୁଦିନ ପରି ମନରେ ଫୂର୍ତ୍ତି, ଆନନ୍ଦ, ତେଜ । ସେ ସବୁଦିନେ ସବୁ ପରିସ୍ଥିତିରେ ଥିଲେ ଅବିଚଳିତ ।

ପଦଯାତ୍ରାରେ ବୁଲୁଥାନ୍ତୁ ବା ଆଉ କେଉଁଠି କାହା ସଙ୍ଗେ ଭେଟ ହେଉ, ଲୋକଙ୍କ ସୁଖଦୁଃଖ ସେ ଖୋଳିତାଡ଼ି ପଚାରନ୍ତି, ସମସ୍ତ ଗଳ୍ପ ବୋଲି କେବେ ତରବର ହୁଅନ୍ତି ନାହିଁ । ତାଙ୍କ ଜୀବନଯାକ ବିତିଗଲା ପରୋପକାର କରି କରି । ସେ ଅନ୍ୟମାନଙ୍କୁ ସଦୁପଦେଶ ଦିଅନ୍ତି, ନୂଆ ଜ୍ଞାନ ନୂଆ ବିଚାର ଶିଖାନ୍ତି, ବିପଦବେଳେ ସାହାଯ୍ୟ କରନ୍ତି, କାହାର କି ଅଭାବ, ଟିକିନଖି କରି ବୁଝି ପ୍ରାଣପଣେ ସାହାଯ୍ୟ ବନ୍ଦୋବସ୍ତ କରିବାକୁ ଚେଷ୍ଟା କରନ୍ତି । କାହାର କି କି ସମସ୍ୟା ଅଛି ସବୁ ସେ ଟିପି ଆଣନ୍ତି, ସେସବୁ କଥା ପାସୋରି ଯାଆନ୍ତି ନାହିଁ, ସମସ୍ୟାର ପ୍ରତିକାର ପାଇଁ ଯତ୍ନ ନିଅନ୍ତି । ଯାହା ତାଙ୍କଦ୍ୱାରା ନ ହୋଇପାରିବ, ଶୁଣୁ ଶୁଣୁ ସେ ସିଧା ମନା କରିଦିଅନ୍ତି, "ହଁ ମୁଁ କରିଦେବି" ବୋଲି କାହାରିକି କେବେହେଲେ ବୃଥା ଆଶା ବୃଥା ପ୍ରତିଶ୍ରୁତି ଦିଅନ୍ତି ନାହିଁ । ଯଦି ସେ କିଛି କରିଦେବେ ବୋଲି ତୁଣ୍ଡରେ କହିଛନ୍ତି ତାହେଲେ ସେ ନିଶ୍ଚୟ କରିଦେବେ । ତାଙ୍କ ତୁଣ୍ଡରୁ କଥା ବାହାରିଲେ ତାହା ପଥରରେ ଗାର ।

ସବୁ କାମ କଲାବେଳେ ଆଗେ ସେ ପ୍ରୟୋଗ କରନ୍ତି ତାଙ୍କ ବିଚାର, ବିଚାର ନ କରି, ଅଥବା କୌଣସି କାର୍ଯ୍ୟରେ ତାଙ୍କର ନିଜର ବିଶ୍ୱାସ ନଥାଇ, ସେ କୌଣସି କାର୍ଯ୍ୟ କରୁ ନଥିଲେ ।

ତାଙ୍କର ମନ ଥିଲା ଉଦାର ମନ, ଅନ୍ତର ଥିଲା ସ୍ନେହ କରୁଣାପ୍ଲୁତ, ବୁଦ୍ଧି ଥିଲା ସୂକ୍ଷ୍ମ ଓ ପ୍ରଖର, ଜ୍ଞାନ ବିଚକ୍ଷଣ । ସାହିତ୍ୟ, ଅର୍ଥନୀତି, ରାଜନୀତି, ଦର୍ଶନ, ଇତିହାସ, ଗଣିତ, ସମାଜତତ୍ତ୍ୱ, ନୃତତ୍ତ୍ୱ, ନାନା ବିଦ୍ୟାରେ ସେ ସୁପଣ୍ଡିତ ଥିଲେ ।

ଆଧୁନିକ ଜଡ଼ ବିଜ୍ଞାନ ପ୍ରତି ତାଙ୍କର ଅତ୍ୟନ୍ତ ଆଗ୍ରହ ଥିଲା । ସେ ସମ୍ବନ୍ଧରେ ସେ ବହୁତ ପଢ଼ୁଥିଲେ, ଜାଣିଥିଲେ, ବିଜ୍ଞାନର ଉପାୟ ଅନୁସରଣ କରି ସାମାଜିକ ଜୀବନ ବିଷୟରେ ନାନା ଅନୁସନ୍ଧାନ ବି କରୁଥିଲେ । ଉଦ୍‌ଭିଦ ବିଜ୍ଞାନ, ପ୍ରାଣୀବିଜ୍ଞାନ, ନକ୍ଷତ୍ର ବିଜ୍ଞାନ ଆଦି ପ୍ରତି ତାଙ୍କର ବିଶେଷ ଆଗ୍ରହ ଥିଲା ।

'ମୌଳିକ ଶିକ୍ଷା' ପ୍ରତି ତାଙ୍କର ମୌଳିକ ଅବଦାନ ଥିଲା, ସେ ନିଜେ ନାନା ଉପାୟ ଭାବୁଥିଲେ, ପରଖୁଥିଲେ, ଶିକ୍ଷା ପ୍ରତି ତାଙ୍କର ବିଶେଷ ଦୃଷ୍ଟି ଥିଲା । ସେହିପରି ଚିକିତ୍ସା ପ୍ରତି । ବିଶେଷତଃ "ପ୍ରାକୃତିକ ଚିକିତ୍ସା" ତାଙ୍କର ଅତି ପ୍ରିୟ ହୋଇଥିଲା । ନିଜେ ନାନା ସରଳ ଉପାୟ କରୁଥିଲେ, 'ଟୁଣ୍‌କାଟୁଣ୍‌କି' ଓ କିଛି କବିରାଜି ମଧ୍ୟ ସେ ଜାଣିଥିଲେ, ପ୍ରୟୋଗ କରୁଥିଲେ । ହୋମିଓପ୍ୟାଥି କରୁଥିଲେ ।

ଦେଶର ସବୁ ସମସ୍ୟା ବିଷୟରେ ତାଙ୍କର ବିପୁଳ ଓ ପ୍ରଗାଢ଼ ଅଧ୍ୟୟନ, ଚିନ୍ତା ଓ ଅଭିଜ୍ଞତା ଥିଲା । ଖଦୀ, କୃଷି, ଗ୍ରାମୋଦ୍‌ଯୋଗ, ବିବିଧ ରଚନାତ୍ମକ କାର୍ଯ୍ୟପଦ୍ଧତି —ଏ ବିଷୟରେ ସେ ଥିଲେ ଜଣେ ଅସାଧାରଣ ଜ୍ଞାନୀ, ବିଶେଷଜ୍ଞ ।

ସେ ସୁଲେଖକ ଥିଲେ, ପତ୍ରିକା ସମ୍ପାଦକ ଥିଲେ, ସଂସ୍କୃତରୁ ଇଂରେଜୀରୁ ଗୁଜୁରାଟୀରୁ ହିନ୍ଦୀରୁ ଅନୁବାଦ କରିଛନ୍ତି, ନିଜେ ବହୁତ ଲେଖିଛନ୍ତି, କବିତା ଲେଖିଥିଲେ, ଚିତ୍ର ଆଙ୍କୁଥିଲେ । ତାଙ୍କ ଓଡ଼ିଆ ଗଦ୍ୟ କି ପଦ୍ୟ ଲେଖାର ଭାଷା ଅତି ସରଳ, ସୁଲଳିତ, ଶକ୍ତିଶାଳୀ, ଭାବବ୍ୟଞ୍ଜକ, ଅଳ୍ପକେ ବହୁତ କହେ, ପ୍ରତିଶବ୍ଦ ଅପରିହାର୍ଯ୍ୟ, ଅପରିବର୍ତ୍ତନୀୟ, ସୁପ୍ରଯୁକ୍ତ । ଈଶୋପନିଷଦର ସେ ଯେଉଁ ଓଡ଼ିଆ ପଦ୍ୟାନୁବାଦ କରିଛନ୍ତି, ପୁଣି ଗୀତାର ସ୍ଥିତପ୍ରଜ୍ଞ ଲକ୍ଷଣର, ସେଗୁଡ଼ିକ ଅମ୍ଳାନ ହୋଇ ରହିବ । ଏ ପୁସ୍ତକରେ ସ୍ଥାନେ ସ୍ଥାନେ ତାଙ୍କ ଗଦ୍ୟର ନମୁନା ମିଳିବ । ସେ ସାହିତ୍ୟପ୍ରେମୀ ଥିଲେ । ସମାଜରେ ଜୀବନରେ ସାହିତ୍ୟକୁ ଉଚ୍ଚ ସ୍ଥାନ ଦେଉଥିଲେ ।

କେମିତି ଏତେ ବିଷୟରେ ଜଣକର ଏତେ ଆଗ୍ରହ ହେବ, ଏତେ ଜ୍ଞାନ, ଏତେ ପାରଦର୍ଶିତା ଆସିବ, କେମିତି ନାନା ବିଦ୍ୟା ନାନା ପ୍ରକାର ବ୍ୟକ୍ତି ଜଣଙ୍କୁ

କୁତୂହଳ ଓ ଆନନ୍ଦ ଦେଇପାରିବେ କଳ୍ପନା କରିହୁଏ ନାହିଁ । ଏ ଜୀବନର ସବୁ ଅବସ୍ଥାରୁ, ସଂସାରର ପ୍ରତ୍ୟେକ ବସ୍ତୁରୁ, ସେ ଶିଖୁଥିଲେ, ଆନନ୍ଦ ଉପଭୋଗ କରୁଥିଲେ । ସବୁଠି ତାଙ୍କ ପାଇଁ ଥିଲା କୁତୂହଳର ସାମଗ୍ରୀ, ତାଙ୍କ ଦୃଷ୍ଟିରେ କୌଣସି ବସ୍ତୁ ହେୟ ନ ଥିଲା ।

ତୀକ୍ଷ୍ଣ ବୁଦ୍ଧି ଓ ଆଶୁ ଗ୍ରାହିକା ଶକ୍ତିରେ ସେ ବିସ୍ମୟକର ଥିଲେ, —ଯେକୌଣସି କଥାକୁ ସେ ଚଟ୍ କରି ଧରିନେଉଥିଲେ, ତା' ତାତ୍ପର୍ଯ୍ୟ ଓ ଇଙ୍ଗିତ ବୁଝୁଥିଲେ, ତା ମର୍ମ ଧରୁଥିଲେ, ନାନା ଜଟିଳ ଅବସ୍ଥା ଭିତରେ ସେ ଏଭଳି ସରଳ ସୂତ୍ରଟିଏ ଖୋଜି ବାହାର କରୁଥିଲେ, ଯାହାକୁ ଅନୁସରଣ କରି କାର୍ଯ୍ୟ କରିଗଲେ ଆଉସବୁ ଯାହାତ ସହଜେ ପାରିହୋଇ ହେବ, ସମସ୍ୟାର ସମାଧାନ ହୋଇପାରିବ ।

ଆଦିବାସୀମାନଙ୍କ ଅସଲ ସମସ୍ୟା ଓ ତାର ସମାଧାନର ପ୍ରାଥମିକ ଉପାୟ ସେ ସେହିପରି ସୂକ୍ଷ୍ମ ବିଚାରରେ ଧରିପାରିଥିଲେ, କହୁଥିଲେ, "ମଦ ହିଁ ଆଦିବାସୀ ଜାତିମାନଙ୍କ ଲାଗି କାଳ, ଆଗ ମଦ ଛଡ଼ାଇବାକୁ ହେବ, ତା ସହିତ ଜମି, ଆଉ ପାଣି ।"

ସମୟ ବଦଳିଲା, କେତେ ଲୋକ ବଦଳିଗଲେ, ସେ ବଦଳିଲେ ନାହିଁ । ଯେଉଁ ଆଦର୍ଶ, ଯେଉଁ ନୀତି ସେ ୧୯୨୧ରୁ ଧରିଥିଲେ, ନିଷ୍ଠାପର ଭାବେ ତହିଁରେ ଲାଗି ରହିଲେ ।

ସେହି ଗୀତା, ସେହି ଗାନ୍ଧୀ, ସେହି
"ଅହିଂସା-ସତ୍ୟ-ଅସ୍ତେୟ-ବ୍ରହ୍ମଚର୍ଯ୍ୟ-ଅସଂଗ୍ରହ
ଶରୀରଶ୍ରମ-ଅସ୍ୱାଦ-ସର୍ବତ୍ରଭୟବର୍ଜନଂ
ସର୍ବଧର୍ମସମାନତ୍ୱ-ସ୍ୱଦେଶୀସ୍ପର୍ଶଭାବନା
ବିନମ୍ର ଏକନିଷ୍ଠା ସେ-ୟେ ଏକାଦଶ ସେବ୍ୟ ହୈଁ"

ସେହି,
"ବୈଷ୍ଣବ ଜନ ତୋ ତେନେ କହିୟେ
ଯେ ପରପୀଡ଼ାଇ ଜାଣେ ରେ—"
ପର ଦୁଃଖେ ଉପକାର କରେ ତୋ ଏ
ମନ ଅଭିମାନ ନ ଆଣେ ରେ—"

କୁଆଡ଼େ ଚାଲିଥିଲା ଦୁନିଆଁ ? ସଡ଼କରେ ଚାଲିଲେ ଶୁଭିବ "ଟଙ୍କା" "ଡାକ୍ତର" "ପଇସା" "ପର୍ମିଟ୍" "କଳାବଜାର" "କଳାପୋଡ଼େଇ" "ଖାଇଗଲା" "ନେଇଗଲା", ବଡ଼-ସହରରେ ଶୁଭିବ, "ଆଜିକାଲି ଧରାଧରି ନକଲେ କିଛିହୁଏ ନାହିଁ", ଆଉ, "କ୍ଲବ୍" "ବାର୍" "ପାର୍ଟି" "ଟ୍ୱିଷ୍ଟ୍ ନାଚ", ନାନା କଥା, ପ୍ୟାଣ୍ଟ୍, ହାଓ୍ୱାଇନ୍, ପୋଷାକ, ସିଗାରେଟ୍, ଆଗେ ନଥିବା ନାନା ଲୋପଦ୍ୟପନ ବଢ଼ିଥାଏ, ଗାଁ ଖାଲିକରି ସହର ବଢ଼ୁଥାଏ, କୋଠାବାଡ଼ୋଲାରେ ବହୁଳ ଧୂମ୍, ଯାନବାହନ ବଢ଼ୁଥାଏ, ଆମ ଦେଶ 'ଆଧୁନିକ' ହେଉଥାଏ । ବଢ଼ୁଥାଏ କଳ କାରଖାନା ବେପାର ବେଉସା ଅମଳ, ବିଦେଶୀ ସାହାଯ୍ୟ, 'ଯୋଜନା' ଅମଳ, ଜିପ୍-କାର୍-ଟେଲିଫୋନ୍ ଅମଳ, 'ମୌଳିକ ଶିକ୍ଷା' ନୁହେଁ, —ଇଂରେଜ ମାଧ୍ୟମରେ ଉଚ୍ଚଶିକ୍ଷା, ବିଦେଶରେ ଶିକ୍ଷାର ଅମଳ, କୁଟୀର ଶିଳ୍ପ ନୁହେଁ, —ବଡ଼ ବଡ଼ ପୁଞ୍ଜିପତିଙ୍କ ଉଦ୍ୟମରେ ଚାଲିଥିବା ମିଲ୍‌ମାନଙ୍କ ଅମଳ, ପୁଣି କିଛି ସରକାରୀ କାରଖାନାର,...... । ଉଦ୍ୟମ ବଢ଼ୁଥାଏ, ସମସ୍ୟା ବି, ହିଂସା, ଦ୍ୱେଷ, ଅସଦାଚାରର ବ୍ୟାପୁଥାଏ ।

କିନ୍ତୁ ପୂଜ୍ୟ ୰ ଗୋପବନ୍ଧୁ ଚୌଧୁରୀ ଆପଣା ନୀତି ଆଦର୍ଶରେ, କର୍ମରେ ଦୃଢ଼ ଆସ୍ଥା ରଖି, ଦୃଢ଼-ବ୍ରତଧାରୀ ହୋଇ ଅଟଳ-ପ୍ରତିଷ୍ଠ ରହିଥାନ୍ତି, ମନରେ ସଂଶୟର ଲେଶମାତ୍ର ନଥାଏ, ସବୁବେଳେ ପ୍ରଶାନ୍ତ, ଆଶାୟୀ । ଖାଲି ଅପାତ୍ର ତୁଣ୍ଡରୁ 'ଗାନ୍ଧୀ' ନାଁ ଶୁଣିଲେ ସେ ରାଗିଯିବାର ମୁଁ ଦେଖିଛି, ଉତ୍ତେଜିତ ହୋଇ କହନ୍ତି "ଏ ଗାନ୍ଧୀ ନାଁ କାହିଁକି ଧରୁଛନ୍ତି ? ଗାନ୍ଧୀ ସ୍ୱାଙ୍କର କିଏ ?"

ସେହିପରି ଆଉଥରେ ଦେଖିଛି, ସେଥରକ ରାମ୍ଭଗଡ଼ାରେ, ଜଣେ ପଦସ୍ଥ ବ୍ୟକ୍ତି, ଆଦିବାସୀ, —ଏମ୍. ପି. ହେବେ ପରା, —ତାଙ୍କ ପାଖକୁ ଆସିଥିଲେ, ତାଙ୍କୁ 'ବାପା' ବୋଲି ସମ୍ବୋଧନ କଲେ, ସେ ଗମ୍ଭୀର ହୋଇ ଅଳ୍ପ କେଇ କଥାଭାଷା ହେଲେ । ଭଦ୍ରବ୍ୟକ୍ତି ବିଦା ହେଲାପରେ ସେ ଆମକୁ କହିଲେ "ଦେଖ, ଆମକୁ ଡାକୁଛନ୍ତି 'ବାପା' ! କାହିଁକି ? ଆମେ କୋଉଦିନେ ସ୍ୱାଙ୍କ ବାପା ହେଲୁ, ସ୍ୱେ ଅମ ପୁଅ ହେଲେ ?" ଏ କଥାର ତାତ୍ପର୍ଯ୍ୟ ହେଲା ଯେ ଯେଉଁ ଭଦ୍ରବ୍ୟକ୍ତି ଆସିଥିଲେ ସେ ଖଦଡ଼ ମଣ୍ଡିତ ହୋଇଥିଲେ ସୁଦ୍ଧା ଗାନ୍ଧୀ ନୀତିରେ ଚଳୁ ନ ଥିଲେ କି ୰ ଗୋପବାବୁଙ୍କ ନାହିଁ ଚଳବାଟରେ ଚାଲୁ ନ ଥିଲେ, କେବଳ କର୍ମୀମାନଙ୍କ ଦେଖାଦେଖି ତାଙ୍କୁ 'ବାପା' ବୋଲି ଡାକଦେଲେ । ନିଜ ମତକୁ ସେ କାହା ଉପରେ ଲଦୁ ନ ଥିଲେ । ସେ ନିଜେ ପ୍ରସ୍ତୁତ, ନିଜ ମତ ଧରି ଏକୁଟିଆ ଚାଲିବାକୁ ପଡ଼ୁ ଥିଲେ ବି ଚାଲିଥିବେ । କିନ୍ତୁ ଜଣେ ମିଛରେ ଦେଖେଇହେବ ଯେ ସେ ଗାନ୍ଧୀବାଦୀ, ଏକଥା ଦେଖି ତୁନି ହୋଇ ରହିବା ତାଙ୍କ ନୀତି ବିରୁଦ୍ଧ ।

ସେ ଠାଏ ଲେଖିଛନ୍ତି "ଅନ୍ୟାୟ ଦେଖିଲେ ଭଲ ଲୋକ ଚୁପ ହୋଇ ରହିପାରେ ନାହିଁ ।"

ଯେଉଁମାନେ ତାଙ୍କ କଥା ମାନି ଚଳିବାକୁ ସଂକଳ୍ପ କରିଥିଲେ, ଅର୍ଥାତ୍ ତାଙ୍କ ନିଜ ପରିବାର ଓ ତାଠୁଁ ବି ବଳି ତାଙ୍କର 'ବୃହତ୍ତର ପରିବାର', ସେମାନଙ୍କ ଲାଗି ସେ ସବୁବେଳେ ଚେଷ୍ଟିତ, କିପରି ସେମାନେ ଆଦର୍ଶଚ୍ୟୁତ ତଳକୁ ଖସି ନ ପଡ଼ନ୍ତି, ଖରିଦାଢ଼ରେ ବାଟ ଚାଲନ୍ତି । କିନ୍ତୁ କାହାଠି କେବେ କିଛି ଇଚ୍ଛାକୃତ ସ୍ଖଳନ ଦେଖିଲେ ସେ ମର୍ମାହତ ହୁଅନ୍ତି, ସେତିକିବେଳେ ବାହାରେ ତାଙ୍କ 'ରାଗ' । ସେ ରାଗିଲେ ଅପର ବ୍ୟକ୍ତିକୁ ଗାଳି ଦିଅନ୍ତି ନାହିଁ, ଅତି ବେଶୀରେ ଦୁଇପଦ ଅଭିମାନ କରି ଦିଅନ୍ତି, ନ ହେଲେ ସେ ଚୁପ୍ ହୋଇ ବସନ୍ତି, ଝୁରନ୍ତି, ଉପାସ କରନ୍ତି । କେବେ କେବେ ରାଗିଗଲେ ସେ ନିଜର କିଛି ଜିନିଷ ଫିଙ୍ଗିଦିଅନ୍ତି, କେବେ କେବେ ସେ ଅବସ୍ଥାରେ ସେ ନିଜର କିଛି ପ୍ରିୟ ପଦାର୍ଥକୁ ନଷ୍ଟ କରିଦେଇଛନ୍ତି । ତାଙ୍କ ସର୍ବୋଦୟ ପରିବାର ଭିତରେ ତାଙ୍କ ରାଗକୁ ସମସ୍ତଙ୍କର ଡର । କ୍ରମେ ସେ ନିଜେ ନିଜକୁ ଶାନ୍ତ କରନ୍ତି, ନିଜ ରାଗ ପାଇଁ ଅନୁତାପ କରନ୍ତି, ଯାହା ଉପରେ ରାଗିଥାନ୍ତି ତାକୁ ବେଶି ଖାତିର କରନ୍ତି । କେଉଁଠି କିଛି ଅନ୍ୟାୟ କି ବିଶୃଙ୍ଖଳା ଦେଖିଲେ ସେ ରାଗୁଥିଲେ, ସବୁବେଳେ ନୁହେଁ । ସେ ନିଜ ରାଗ ପାଇଁ ଖୁବ୍ ଚିନ୍ତିତ ଓ ଅନୁତପ୍ତ ଥିଲେ, ସେହି ଗୋଟିଏ ଦୋଷ ତାଙ୍କଠି ଥିଲା, ସେ ତାକୁ ସୁଧାରିବାକୁ ପ୍ରାଣପଣେ ଚେଷ୍ଟା କରୁଥିଲେ ।

ସେ କାହାରିକି ଆଦେଶ ଦେଉ ନ ଥିଲେ, କାହାରି ଉପରେ ହାକିମୀ କରୁ ନ ଥିଲେ, କେହି "ରମା ଦେବୀଙ୍କ ମତ କଣ ?" ବୋଲି ତାଙ୍କୁ ପଚାରିଲେ କହନ୍ତି "ଲମା ଦେବୀଙ୍କି ପଚାର । ତାଙ୍କ କଥା ସେ ଜାଣନ୍ତି ।" ସେ କୌଣସି କ୍ଷେତ୍ରରେ, —ରାଜନୈତିକ କ୍ଷେତ୍ରରେ ହେଉ ରଚନାତ୍ମକ କାର୍ଯ୍ୟକ୍ଷେତ୍ରରେ ହେଉ, ନିଜକୁ କେବେ ନେତା ବୋଲି ଭାବୁ ନ ଥିଲେ, ଭାବୁଥିଲେ, "ଆଉ ଦଶଜଣଙ୍କ ପରି ମୁଁ ଜଣେ କର୍ମୀ, ସ୍ୱାଧୀନତା ଯୁଦ୍ଧରେ ମୁଁ ଜଣେ ସିପାହୀ, ସେତିକି ।"

ତେଣୁ ତାଙ୍କର ଯେଉଁ ସଂଗଠନ ଭିତରେ ସେ 'ନେତା' ଥିଲେ ତହିଁରେ ସେହି ମହାନ୍ ନେତାଙ୍କ ପଛଆଡ଼େ ଥିଲେ ସେହିମାନେ ଯେଉଁମାନେ ସ୍ୱ-ଇଚ୍ଛାରେ ତାଙ୍କ ମତ, ତାଙ୍କ ପନ୍ଥାକୁ ଆଦରିଥିଲେ, ବିନା ବାଧ୍ୟବାଧକତାରେ ଓ ନିଜର ଆନ୍ତରିକ ଆବେଗ ଯୋଗୁଁ ସ୍ୱତଃ ୰ ପୂଜ୍ୟ ଗୋପବାବୁଙ୍କୁ ସେମାନଙ୍କ ମୁରବି ବୋଲି ଗ୍ରହଣ କରିନେଇଥିଲେ । ସେହିମାନଙ୍କୁ ନେଇ ସେହି ସଂଗଠନ । ତେଣୁ ତହିଁରେ ନିଷ୍ଠା, ଆନ୍ତରିକତା, ଏକତା ବହୁ ପରିମାଣରେ ଅନ୍ତର୍ନିହିତ ଥିଲା ।

କର୍ମୀମାନଙ୍କୁ ସେ ଯେପରି ସେବା ଆଦର ସ୍ନେହ ଯତ୍ନ କରୁଥିଲେ, ସେମାନେ ତାଙ୍କୁ ନିଜ ବାପପରି ମଣିବା ଅତି ସ୍ୱାଭାବିକ । ସେ ସମ୍ବନ୍ଧ ଥିଲା ବ୍ୟକ୍ତିଗତ, ଆନ୍ତରିକ, ସ୍ନେହପୂର୍ଣ୍ଣ, ଅତ୍ୟନ୍ତ ଘନିଷ୍ଠ । ସାଧାରଣ କର୍ମୀମାନଙ୍କୁ ୰ ପୂଜ୍ୟ ଗୋପବାବୁ ସମ୍ମାନ କରୁଥିଲେ, ସେମାନଙ୍କ ବ୍ୟକ୍ତିଗତ ଦୁଃଖକୁ ସେ ନିଜର ବ୍ୟକ୍ତିଗତ ଦୁଃଖ ବୋଲି ମଣୁଥିଲେ । ଯେକୌଣସି ବିଷୟରେ ସେମାନେ ନିଜେ ନିଜ ବିଚାର ଭାବନ୍ତୁ, ନିଜ ସ୍ୱାଧୀନ ବୁଦ୍ଧିବିଚାର ପ୍ରୟୋଗ କରନ୍ତୁ, ନିଃସଙ୍କୋଚରେ ନିଜ ମତ ପ୍ରକାଶ କରନ୍ତୁ, ଏଥିପାଇଁ କର୍ମୀମାନଙ୍କୁ ସେ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲେ । ସେ ଯଦି ଦେଖନ୍ତି, କେଉଁ ଅଞ୍ଚଳର କର୍ମୀ ଏକାଠି ହୋଇ ତାଙ୍କ ମତଠୁଁ ଭିନ୍ନ ବାଟ ଧରିବାକୁ ମନ କଲେ, ସେ ତାଙ୍କୁ ବାଧା ନ କରି ନିଜେ ଅପସରି ଯାଆନ୍ତି, ବା ତାଙ୍କୁ କହନ୍ତି, "ତୁମେ ତୁମ ଅଲଗା ବାଟେ ଚାଲ, ମୋ ପଛରେ କାହିଁକି ?"

ସେ ଭାବନ୍ତି, "ଯେ କାମ କରିବେ ତାଙ୍କ ଉପରେ ମୋର କି ଅଧିକାର ? ମୁଁ କିଏ ? ପଚାରିଲେ ପରାମର୍ଶ ଦେବି, ନ ପଚାରିଲେ ନାହିଁ, ସେ କରିବେ, ତା ଦାୟିତ୍ୱ ନେବେ ।"

କେତେ ଲୋକ ଭାବନ୍ତି, ବାଧ୍ୟତାମୂଳକ ଶାସନ ଓ ଶାସ୍ତି ନ କଲେ ସଂଗଠନ ଚଳେ ନାହିଁ । ସେ ଭାବନ୍ତି, ସ୍ୱେଚ୍ଛାସେବୀଙ୍କ ଅନୁଷ୍ଠାନ ଚାଲିବ ସ୍ୱେଚ୍ଛାପ୍ରଣୋଦିତ କର୍ମୀଙ୍କ ଦ୍ୱାରା ।

କୋରାପୁଟର କର୍ମୀମାନେ ତାଙ୍କୁ ନ ପଚାରି 'ଭୂ-ସତ୍ୟାଗ୍ରହ' କରିବାକୁ ନିଷ୍ପତ୍ତି ଓ ଆୟୋଜନ କଲେ, ଆଦିବାସୀ ସେହି ନିଷ୍ପତ୍ତି ନେଲେ । ଏ ବିଷୟ ତା ପରେ ସେ ଶୁଣିଲେ । ଶୁଣି କହିଲେ ଯେ ତାହା 'ସତ୍ୟାଗ୍ରହ' ନୁହେଁ, ସେ ତାହାକୁ ପସନ୍ଦ କଲେ ନାହିଁ । କିନ୍ତୁ ସେ କହିଲେ, ଆଦିବାସୀ ଶୋଷିତ, ସେ ଜମି ପାଇବା ଦରକାର, ତାର ଶୋଷଣ ଅତ୍ୟାଚାର ବନ୍ଦ ହେବା ପାଇଁ ଆନ୍ଦୋଳନ ଦରକାର, ଯଦିଚ ୰ ଗୋପବାବୁ ଯେପରି ଆନ୍ଦୋଳନ ବିଷୟ ଭାବୁଥିଲେ ଆଦିବାସୀମାନେ ନିଷ୍ପତ୍ତି ଘେନିଥିବା ଆନ୍ଦୋଳନ ତାହା ନୁହେଁ, ତାଠୁଁ ଭିନ୍ନ । କର୍ମୀମାନେ ଓ ଲୋକେ ନିଜେ ନିଷ୍ପତ୍ତି ନେଇଛନ୍ତି, ଠିକ ଶିଖନ୍ତୁ, ଦାୟିତ୍ୱ ତୁଲାନ୍ତୁ, ଏପରି ଭାବି ସେ ନିଜେ ସେଠୁଁ ସମ୍ପର୍କ ତୁଟେଇ ସେ ଅଞ୍ଚଳରେ କଟେଇବେ ବୋଲି ଠିକଣା କରିଥିବା ନିଜର ସବୁ ଗସ୍ତ, ସଭା ବନ୍ଦ କରି ସେଠୁ ଚାଲିଗଲେ ଅନ୍ୟ ଜିଲ୍ଲାକୁ ।

ସେହିପରି, ବିନୋବାଙ୍କ କୋରାପୁଟ ଗସ୍ତ ପରେ,—ସେ ଜୋର୍ ଦେଉଥାନ୍ତି ଭୂଦାନର ତାତ୍ତ୍ୱିକ ନୈତିକ ପ୍ରଚାର ଓ ଆନ୍ଦୋଳନ ଉପରେ, ଗ୍ରାମ 'ନିର୍ମାଣ' ବିଷୟରେ ଭାବୁଥାନ୍ତି ସେ ହେବ ସ୍ୱାବଲମ୍ବୀ ପ୍ରଣାଳୀରେ । କିନ୍ତୁ ସେ ଦେଖିଲେ,

କର୍ମୀମାନେ ଓ ଯେ ନିର୍ମାଣ ଦାୟିତ୍ୱରେ ଅଛନ୍ତି ('ସର୍ବ ସେବା ସଂଘ' ସେ ଭାର ନେଇଥିଲେ, ତାର ମୁଖ୍ୟ ସଂଚାଳକ ଓ ସମ୍ପାଦକ ଶ୍ରୀ ଆଣ୍ଣାସାହେବ ସହସ୍ରବୁଦ୍ଧେ ସେଠି ରହି ସେ କାମ କରାଉଥିଲେ) ସେମାନେ 'ନିର୍ମାଣ' କାର୍ଯ୍ୟ କରିବାକୁ ବ୍ୟଗ୍ର, ସେ ନିର୍ମାଣ ବି ବାହାରୁ ଟଙ୍କା ଆଣି ନିର୍ମାଣ କାମ, —ସେ କାର୍ଯ୍ୟ ସେ ଉପାସ୍ଥ ଗୋପବାବୁଙ୍କୁ ଲାଗିଲା ଅରୁଚିକର, —ସେ ଆଣ୍ଣାସାହେବ ସହସ୍ରବୁଦ୍ଧେଙ୍କୁ ବୁଝାଇଲେ, ତାଙ୍କ ଆଗରେ ନିଜ ମତ କହିଲେ, କିନ୍ତୁ ତାଙ୍କର ବିରୋଧ କଲେ ନାହିଁ, କୋରାପୁଟ ଗ୍ରାମ ଚାଲିଗଲେ, ଯଦିଓ ସେ ବାରମ୍ବାର କୋରାପୁଟର ଭୂଦାନର ପ୍ରଧାନ କର୍ମୀ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ଜୀବନର ଶେଷଯାଏ ଉପଦେଶ ଦେଉଥାନ୍ତି ଯେ ସେ ପୁଣି ଗ୍ରାମଦାନ ସମ୍ପତ୍ତିଦାନ ଆଦି ସେଠି ଚଳାନ୍ତୁ ।

ସେ କୌଣସି ଅନୁଷ୍ଠାନରେ ବାନ୍ଧି ହୋଇ ରହି ନାହାନ୍ତି, ସବୁଦିନେ ମୁକ୍ତ । ସେ କୌଣସି 'ଧାରଣା'ର ଦାସ ନ ଥିଲେ । ସେ ଭାବୁଥିଲେ, —ଅନୁଷ୍ଠାନ ସେତିକି ସମୟଯାକେ ପ୍ରୟୋଜନ ଯେତେବେଳଯାଏ ସେ ତାଙ୍କ ଆଦର୍ଶର ଅନୁକୂଳ ଓ ସହାୟକ, ଆଦର୍ଶ ସାଧନ ପାଇଁ ହିଁ ଅନୁଷ୍ଠାନ ଲୋଡ଼ା, ଅନୁଷ୍ଠାନର ଅନ୍ୟ ଉଦ୍ଦେଶ୍ୟ ନାହିଁ । ଆଦର୍ଶ ଗଲେ ଅନୁଷ୍ଠାନ ହେବ ନିର୍ଜୀବ, କଳ । ଆଦର୍ଶ ପୂରଣ କରିବା ଉଦ୍ଦେଶ୍ୟରେ ନୂଆ ପ୍ରକାର ଉଦ୍ୟମ ଦରକାର ହେଲେ, ପୁରୁଣା ଅନୁଷ୍ଠାନ ଅଦରକାରି ହେବ ।

୧୯୨୧ରୁ ସେ ନାନା ରଚନାତ୍ମକ କର୍ମକେନ୍ଦ୍ର ଗଢ଼ିଥିଲେ, କେତେଠି ସଂପୃକ୍ତ ଥିଲେ । ୧୯୩୫ରୁ ୧୯୫୨ ଯାଏ ସେଭଳି ଆହୁରି ବହୁତ ଅଧିକ ଅନୁଷ୍ଠାନ ଗଢ଼ିଥିଲେ ବା ଆହୁରି ଅନେକ ଅନୁଷ୍ଠାନ ସହିତ ସଂପୃକ୍ତ ଥିଲେ । ଓଡ଼ିଶା ସାରା ନାନା ସ୍ଥାନରେ ଗାଁ ଗହଳରେ କର୍ମୀକେନ୍ଦ୍ର ଥିଲା, କର୍ମୀମାନେ ନାନା ଚମତ୍କାର କାର୍ଯ୍ୟ କରୁଥିଲେ । କିନ୍ତୁ ସେମିତି ୭ ଗୋପବାବୁ ଭାବି ବିଶ୍ୱର ଅବସ୍ଥାକୁ ଭଲ କରି ଦେଖି ଅନୁଭବ କଲେ ଯେ ସମୟ ଯେପରି ବଦଳୁଛି, ଯେଉଁ ଚଞ୍ଚଳ 'ବୈମନସ୍ୟ' ଘୋଟୁଛି 'ପଶ୍ଚିମୀ ହାଓ୍ୱା ବ୍ୟାପୁଛି', ଅନୈତିକତା, ସ୍ୱାର୍ଥ, ହିଂସା, ଦ୍ୱେଷ, ଅଶାନ୍ତି ବ୍ୟାପୁଛି, ନୂଆ ନୂଆ ସମସ୍ୟା ବ୍ୟାପୁଛି, ଖାଲି ରଚନାତ୍ମକ କାମ କରୁଥିଲେ ଚଳିବ ନାହିଁ, ସ୍ଥିତାବସ୍ଥା ବଦଳିବ ନାହିଁ, ବ୍ୟାପକ ଭୂଦାନ ଆନ୍ଦୋଳନ ହିଁ ପ୍ରଧାନ ରଚନାତ୍ମକ କାମ । ସେମିତି ୧୯୫୩ରେ ସେ କର୍ମୀମାନଙ୍କୁ ଡାକିଲେ, ନିଜର ନିଷ୍ପତ୍ତି ଘୋଷଣା କଲେ ଯେ ରଚନାତ୍ମକ କାମ ବନ୍ଦ କରି କେନ୍ଦ୍ର ବନ୍ଦ କରି ସବୁ କର୍ମୀ ଆସି ଲାଗିଯା'ନ୍ତୁ ଭୂଦାନ କାମରେ, ଭୂଦାନ କାର୍ଯ୍ୟ ସଫଳ ହେଲେ ତାହା ଫଳରେ ଅସଂଖ୍ୟ ରଚନାତ୍ମକ କେନ୍ଦ୍ର ଗଢ଼ାହୋଇପାରିବ । ସେହି ନିଷ୍ପତ୍ତି ନେବା ହେତୁ ବହୁ ବର୍ଷର ନାନା କର୍ମ-କେନ୍ଦ୍ର ବନ୍ଦ ହୋଇଗଲା, କ୍ୱଚିତ୍ ଅଳ୍ପ କେତୋଟି ଖୋଲା ରହିଗଲା ।

କେବଳ କର୍ମୀ ହିଁ ସବୁ କାର୍ଯ୍ୟ କରିଦେବେ ଏଭଳି ସେ ଆଦୌ ଭାବୁ ନ ଥିଲେ । ସେ ଭାବୁଥିଲେ, ଦେଶକୁ ଗଢ଼ିବାକୁ ସରକାରଙ୍କର ବହୁତ ଦାୟିତ୍ୱ ବହୁତ କର୍ତ୍ତବ୍ୟ ଅଛି, ସରକାର ତାହା ତୁଲାନ୍ତୁ—କର୍ମୀଙ୍କ କାମ ତାଙ୍କ ନିଜ ମୂଳ ଲକ୍ଷ୍ୟରେ ଲାଗି ରହିବା, ନିଜେ ହେବା ତ୍ୟାଗ, ସେବା, ପରୋପକାର, ନୀତି ଆଦର୍ଶର ପ୍ରତୀକ, କଷ୍ଟସହିଷ୍ଣୁତା, ଅକ୍ଳାନ୍ତ ଶ୍ରମ, ସାହସ, ସଦ୍‌ବ୍ୟବହାର, ସଦାଚାର, ସତ୍ୟ, ଅହିଂସା ତାହା କାର୍ଯ୍ୟରେ ଦେଖାଇ ଲୋକଙ୍କୁ ସେପରି ଗଢ଼ିବା, ଅହିଂସ ଶୋଷଣହୀନ ସ୍ୱାବଲମ୍ବୀ ଗ୍ରାମ ସମାଜ ଗଢ଼ିବା ।

ସେ ସମାଜ ପରସ୍ପର ପ୍ରତି ପ୍ରେମ, ମୈତ୍ରୀ, ବିଶ୍ୱାସ, ସହାନୁଭୂତି, ସେବା ଉପରେ ପ୍ରତିଷ୍ଠିତ ହେବ, ଲୋକେ ସଂଯତ, ଚରିତ୍ରବାନ୍, କର୍ମଠ, ନିଷ୍ଠାପର, ଆତ୍ମବିଶ୍ୱାସୀ, ନିର୍ଭୀକ, ସ୍ୱାଧୀନଚେତା, ସ୍ୱାବଲମ୍ବୀ ହେବେ, ନିଜର, ସମାଜର, ଦେଶର ଦାୟିତ୍ୱ ତୁଲାଇବେ, ଲୋକମତ ଜାଗ୍ରତ ହେବ, ସରକାର ବି ସେହିପରି ଚାଲିବ ।

କର୍ମୀ ସେପରି କରୁ କରୁ ସେହି ଉଦ୍ଦେଶ୍ୟ ସାଧନ ନିମନ୍ତେ ଲୋକଙ୍କ ସାହାଯ୍ୟରେ ନାନା ପ୍ରକାର ପ୍ରୟୋଜନୀୟ ଅଭାବ ଦୂରୀକରଣ କରିପାରିବେ, ଶୋଷଣ, ଅତ୍ୟାଚାର, ଦୁର୍ନୀତି, କୁସଂସ୍କାର ନିବାରଣ କରିପାରିବେ, ଦେଶର ଉନ୍ନୟନ ଆପେ କରାଇ ପାରିବେ । କିନ୍ତୁ ସେସବୁ କାର୍ଯ୍ୟ ଖାଲି ସେତିକରେ ସରିଯିବ ନାହିଁ, କି ମୂଳ ନୈତିକ ଲକ୍ଷ୍ୟ ଛାଡ଼ି କର୍ମୀ ଖାଲି ସେହି କାର୍ଯ୍ୟରେ ଲାଗି ରହିବେ ନାହିଁ ।

କେହି ହଠାତ୍ ବଦଳିଯାଇ ଏଡ଼େ ଉଚ୍ଚ ଆଦର୍ଶକୁ ଆପଣାଠିଁ ମୂର୍ତ୍ତି କରି-ପାରିବେ, ଏପରି ସେ ଭାବୁ ନ ଥିଲେ, କିନ୍ତୁ ସେ ଭାବୁଥିଲେ, ପ୍ରତ୍ୟେକ ମନୁଷ୍ୟଠିଁ ବିବେକ ଅଛି, ଭଲପଣିଆ ଅଛି । ଏ ବିଷୟରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ତେଣୁ ଦୁଷ୍ଟ, ଦୁରାଚାର, ଅତ୍ୟାଚାରୀ, ମାମଲାବାଜ୍, ଟାଉଟର, ଚୋର, ଖୁଣୀ, ଡକାଏତ, ପତିତ, ଏଭଳି ଲୋକଙ୍କ ସଙ୍ଗେ ବି ସେ ମିଶିଥିଲେ, ତାଙ୍କ ଭିତରେ ଭଲଗୁଣ କଣ ଅଛି ତାର କିପରି ବିକାଶ ହେବ ସେଥିପାଇଁ ଚେଷ୍ଟା କରୁଥିଲେ । ଗାଁ ଗଣ୍ଡାରେ ବୁଲିଲା ବେଳେ, ଜେଲ୍‌ଖାନା ଭିତରେ, ନାନା ପ୍ରକାର ଲୋକଙ୍କ ସଙ୍ଗେ ତାଙ୍କର ଚର୍ଚ୍ଚା ହେଉଥିଲା ।

ସେ ଭାବୁଥିଲେ, —ମଣିଷ ଯଦି ଥରେ ଭଲ ମନ୍ଦ ଭାବି ଶିଖିବ, ଚେତିବ, ତେବେ ସେ ନିଜେ ଇଚ୍ଛା କଲେ ବଦଳି ପାରିବ, କର୍ମୀ ଯଦି ଆଦର୍ଶକୁ ଗ୍ରହଣ କଲା ତେବେ ବାରମ୍ବାର ସବୁବେଳେ (ସତତ) ଅଭ୍ୟାସ କରୁ କରୁ 'ସାତତ୍ୟ ଯୋଗ' ହିଁ

ତାକୁ ସିଦ୍ଧି ଆଣିଦେବ । ସେ ତେଣୁ ପୂଜ୍ୟ ୰ ଗୋପବାବୁ ଅନ୍ୟମାନଙ୍କଠୁଁ ଲୋଡ଼ୁଥିଲେ, —ଆନ୍ତରିକତା, ନିଷ୍ଠା, ଉଦ୍ୟମ ।

ସେ ଯେ ଏତେ ଲୋକଙ୍କୁ ଉଦ୍‌ବୁଦ୍ଧ କରିଇ ପାରୁଥିଲେ ତାହା ପୁଣି ଏ ଜଡ଼ବାଦୀ ଯୁଗରେ, ଯେଉଁଠି ମଣିଷର ସ୍ୱାର୍ଥ ହିଁ ତାର ସବୁ ଉଦ୍ୟମର ଉଦ୍ଦେଶ୍ୟ ଏହା ହିଁ ବିସ୍ମୟକର ହୋଇଥିଲା । ସେହି ମହତ୍ କର୍ମରେ ଆଗେ ଆଗେ ଥିଲେ ସେ, ତାଙ୍କ ସଙ୍ଗେ ତାଙ୍କ ସମଗ୍ର ପରିବାର, ତାଙ୍କର ନାନା ବରେଣ୍ୟ ସହକର୍ମୀ, ସେମାନଙ୍କ ପଛେ ପଛେ କର୍ମୀ ଆଉ, —ସମସ୍ତିଙ୍କର ସେହି ଏକ ଆଦର୍ଶ, ତ୍ୟାଗ, ସେବା, ଆଦର୍ଶ, ନୀତି, ମାନବପ୍ରେମ ।

ସେମାନେ ସମସ୍ତେ ସେହି ମାର୍ଗରେ ଚାଲିଥିଲେ, କାମ କରୁଥିଲେ, ସେମାନଙ୍କର ଲକ୍ଷ୍ୟ ଥିଲା ଗୋଟିଏ ଆଦର୍ଶ ସମାଜ, ଆଦର୍ଶ ସଂସାର ସୃଷ୍ଟି କରିବା, ଏ ସଂସାର ସତେ ସତେ ସେହି ମହାନ୍ ଉଦ୍ୟମକୁ ଆଖିରେ ଦେଖିଥିଲା ! ଆଜି ଲାଗିପାରେ କିମ୍ବଦନ୍ତୀ ପରି, ଆରବ୍ୟ କାହାଣୀ ପରି !

ଅଦ୍ଭୁତ ବ୍ୟକ୍ତିତ୍ୱ ସେ, ନାହିଁ ନଥିବାର । କେତେବେଳେ ଦ'ପହରେ ଗାଈ ଜଗୁଆଳି ଟୋକାଙ୍କ ସଙ୍ଗେ ମାଙ୍କଡ଼ ଦୁରୁଡ଼ୋଉଛନ୍ତି, କେତେବେଳେ କାହା ଗାଈ ପାଖେ ବସିଛନ୍ତି ୪ ଘଣ୍ଟା, ତା ପାଟିରୁ ନାଳ ପୋଛୁଛନ୍ତି, ଭାବୁଛନ୍ତି, "ଆହା ଏ ଅଜ ଠିକିକୁ ମରିବ, ଡାକ୍ତର ଧରିପାରିଲେ ନାହିଁ (ମଳ ମଧ୍ଯ) ।" କେତେବେଳେ କୋଠିଆ କାନ୍ଧ ପିଣ୍ଡାରେ, କେତେବେଳେ ଧ୍ୟାନରତ, କେତେବେଳେ ପିଲଙ୍କ ମାଷ୍ଟର, କେତେବେଳେ ଜନଗହଳରେ ଲୋକଙ୍କ ଆଶା-ଭରସା । କର୍ମଜୀବନରେ ପଶିଲାଦିନୁ କେବେ ଜାଣନ୍ତି ନାହିଁ ଆରାମ କଣ, ରାତି ରାତି ଉଜାଗର ହେଲେ ଦିଅନ୍ତି, ରାତି ୧୨ ରେ ନିଦ, ଦିନଯାକ ଖଟଣି । ଖୁବ୍ ବଡ଼ଲୋକ ଘରର ମଣିଷ ହୋଇ ସେ ଦେଶର ସାଧାରଣ ଗରିବଙ୍କ ପରି, ଗୃହୀ ହୋଇ ସେ ସନ୍ନ୍ୟାସୀ, ବିବାହିତ ହୋଇ ସୁଦ୍ଧା ୨୯ ବର୍ଷ ବୟସରୁ ଆଜୀବନ ସେ ବ୍ରହ୍ମଚାରୀ, ସନ୍ନ୍ୟାସୀ ହୋଇ ସେ ମହା-ଗୃହୀ, ଏ ଦେଶଯାକର ଲୋକ ତାଙ୍କ ନିଜ ପରିବାର, ଖାଲି ତୁଣ୍ଡରେ ନୁହେ, ବକ୍ତୃତାରେ ବି କେବେ ନୁହେଁ, ପ୍ରତ୍ୟକ୍ଷ ବ୍ୟକ୍ତିଗତ ସମ୍ପର୍କ ଓ ବ୍ୟକ୍ତିଗତ ସ୍ନେହ ସହାନୁଭୂତି ଯୋଗୁଁ । ଦେଶର ଉଚ୍ଚ ପଣ୍ଡିତ ମହଲରେ ତାଙ୍କର ସମ୍ମାନ, କିନ୍ତୁ ସେ ଦେଶର ଯେତେ ଅପାଠୁଆ ଗରିବ ଲୋକଙ୍କର ସାଙ୍ଗ, ଆପଣାର ଲୋକ ।

ସେହି ସାଧାରଣ ଲୋକଙ୍କର, ଖଟିଖିଆ ମଲିମୁଣ୍ଡିଆଙ୍କର ସେ ଅନ୍ତରଙ୍ଗ ଆପଣାର ହେବାକୁ, ତାଙ୍କରି ଶ୍ରେଣୀର ଜଣେ ହେବାକୁ, ସେମାନେ କେଉଁ ଦୁଃଖରେ କେମିତି ଚଳନ୍ତି, କେତେ ଖଟିଲେ କେତେ ରୋଜଗାର କରନ୍ତି ଜାଣିବାକୁ,

ସେ ତାଙ୍କର କାମ କଲେ, ପରର ବିଲରେ ମଜୁରିଆ ହୋଇ ହଳକାମ, ମାଟିହଣା କାମ, ପର ବିଲରେ ଧାନ କାଟି ମଜୁରି ବାବଦ କଲେଇ ମୁଣ୍ଡେଇ ଫେରନ୍ତି ପୂଜ୍ୟ ୰ ଗୋପବନ୍ଧୁ ଚୌଧୁରୀ, ମାଟି ହାଣି ଟୋକେଇରେ ମାଟି ବୁହନ୍ତି, ସେହି କାମ କରାଇଲେ ନିଜ ସ୍ତ୍ରୀଙ୍କୁ, ପୁଅ ଝିଅଙ୍କୁ, ତାଙ୍କ ସହକର୍ମୀଙ୍କୁ । କାମ କରି ଆଦର୍ଶ ଦେଖାଇ ସମାଜ ବଦଳାଉଥିଲେ । *

ସେ ଥିଲେ ପ୍ରାଣପ୍ରାଚୁର୍ଯ୍ୟପୂର୍ଣ୍ଣ ଆଦର୍ଶ ମଣିଷ ଜଣେ, ଏପରି ଏ ସଂସାରରେ କଚିତ୍ ଜନ୍ମନ୍ତି । ସାଧାରଣ ମଣିଷର ଛାଇପଡ଼େ ତା ଆଖପାଖ ସ୍ଥାନ ଅଗ୍ରକରେ, ତା ସଙ୍ଗେ ସଙ୍ଗେ ଚାଲେ, ତା ସଙ୍ଗେ ସଙ୍ଗେ ଅନ୍ତର୍ହିତ ହୁଏ, ହୋଇଥାଉ ଯେତେ ପ୍ରତାପୀ ସେ, ଯେତେ ଧନୀ, ମାନୀ, କିନ୍ତୁ ଏପରି ଅତି ବିରଳ ଯୁଗଜନ୍ମାଙ୍କ ଛାଇ ମଣିଷ ସମାଜରେ କାହିଁ କେତେ ଦୂରକୁ ପଡ଼େ, ସେ ପ୍ରଭାବ ମଣିଷକୁ ସମାଜକୁ ସମୟକୁ ବଦଳାଉଥାଏ, ସମୟ କି ସ୍ଥାନ ଦୂରତାର ସୀମା ମାନେ ନାହିଁ, ଅକଳନ ଯୁଗର ନୀରବ ଇତିହାସ ଉପରେ ଅକ୍ଷୟ ଛାପା ମାରିଦିଏ, ହଜିଲେ ବି ଜୀଇ ରହେ କେଉଁଠି, ପୁଣି କେବେ ଗଜୁରେ, କେଉଁ ଦେଶରେ, କେଉଁ ସମୟରେ ।

* ତାଙ୍କ ଜୀବନର ଆଦର୍ଶ ପ୍ରକଟିତ ହୋଇଥିଲା ୧୯୫୬ ନଭେମ୍ବରରେ ତାଙ୍କ ମୟୂରଭଞ୍ଜ ପଦଯାତ୍ରା ବେଳେ ଗୋଟିଏ ସ୍ୱାଗତ ସଙ୍ଗୀତର କେତୋଟି ଧାଡ଼ିରେ :

"ଯେଉଁଠାରେ ଖାଲି ଲୁହ ପ୍ରଭୁ ହେ ସେହିଠାକୁ ମୋତେ ନିଅ
ଆଜୀବନ ଦିଏ କାନ୍ଦିବି ଖାଲି ପୋଛିବି ତା ଆଖି ଲୁହ" ଇତ୍ୟାଦି ।

(ରଚୟିତା—କବି ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ)

# ଦୁଇ

ପ୍ରଥମ ପରିଚ୍ଛେଦରେ ପୂଜ୍ୟ ୰ ଗୋପବାବୁଙ୍କ ବ୍ୟକ୍ତିତ୍ୱ ଓ କାର୍ଯ୍ୟ ବିଷୟରେ କିଛି ଆଭାସ ଦିଆଯାଇଛି, ତାଙ୍କ ପୂର୍ବ ପୁରୁଷ, ବଂଶ, ସମାଜ, ଆଦ୍ୟ ଜୀବନ ଓ ୧୯୨୧ରେ ସେ ଡେପୋଟି ଗିରିକି ଛାଡ଼ିବା ପର୍ଯ୍ୟନ୍ତ ଜୀବନୀ ସଂକ୍ଷେପରେ ରହିଛି 'ଦୀପଂଜ୍ୟୋତି' ପୁସ୍ତକରେ । ତାଙ୍କର କର୍ମମୟ ପରବର୍ତ୍ତୀ ଜୀବନଠାରୁ ଶେଷଯାକେ କାହାଣୀ ଲେଖିବା ପୂର୍ବରୁ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ସମୁଦାୟ ଜୀବନର ବିଶିଷ୍ଟ ଘଟଣାଗୁଡ଼ିକ ଅତି ସଂକ୍ଷେପରେ ପର୍ଯ୍ୟାୟକ୍ରମେ ଏକତ୍ର ନିମ୍ନରେ ଉପସ୍ଥାପିତ କରାଯାଉଛି :

## ୰ ଶ୍ରୀ ଗୋପବନ୍ଧୁ ଚୌଧୁରୀ

ପିତା—ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ । ପୈତୃକ ଘର—କଟକ ଜିଲ୍ଲା ଜଗତ୍‌ସିଂପୁର ପାଖ 'ଖେରସ', ମହାରଚ୍ଛା ଶାସନ ଅମଳରୁ ପୁରୁଷାନୁକ୍ରମିକ ଜମିଦାର । ଜାତି କରଣ, ଭରଦ୍ୱାଜ ଗୋତ୍ର । ନିଜେ କଟକରେ ବଡ଼ ଓକିଲ । ଉତ୍କଳ ସମ୍ମିଳନୀର ଜଣେ ପ୍ରଧାନ ନେତା । ୧୯୦୩—୧୯୦୮ ଯାଏ ତହିଁରେ ସେ ମଧୁବାବୁଙ୍କ ପ୍ରଧାନ ସହକର୍ମୀ । ତାପରେ ମଧୁବାବୁଙ୍କ ସହିତ ତାଙ୍କର ମତାନ୍ତର ହେଲା ଓ ଓଡ଼ିଆମାନଙ୍କ ସ୍ୱାର୍ଥ ସଂରକ୍ଷଣ ପାଇଁ ସେ Orissa Peoples' Association ଗଢ଼ିଲେ । ଓକିଲତିରେ ସ୍ୱାମୀଜୀ (ସ୍ୱାମୀ ବିଚିତ୍ରାନନ୍ଦ ଦାସ) ତାଙ୍କ 'ଜୁନିଅର୍' ଥିଲେ । ୧୯୦୮ରୁ ୧୯୧୫ରେ ମୃତ୍ୟୁ ପର୍ଯ୍ୟନ୍ତ ଗୋକୁଳାନନ୍ଦ ଚୌଧୁରୀ କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼ର ଭାଇସ୍ ଚେଆର୍‌ମ୍ୟାନ୍ ଥିଲେ । ତାଙ୍କର ୩ ପୁଅ, ୧ ଝିଅ ମଲେ, ତାପରେ ତାଙ୍କର ଗୋଟିଏ ଭଉଣୀର ଝିଅ 'ମାନୁଣୀ'କୁ ଆଗ ସେ ପାଳିଥିଲେ । ସେଇ ଗୋପବାବୁଙ୍କ ମାଈ ଅପା, ତାପରେ 'ଫୁଲ', ଗୋପବାବୁଙ୍କ 'ଫୁଲ ଅପା', ତାପରେ 'ହେମ' ଜନ୍ମ, ତାପରେ 'କାହ୍ନୁ', ସେ ବି ମରିଗଲା । ତାପରେ 'ଗୋପ' । 'ହେମ'ବି

ପିଲାଦିନେ ମଲା । ତାପରେ ଝୁଅାଁ (ଶ୍ରୀ ନବକୃଷ୍ଣ ଚୌଧୁରୀ), ଶେଷରେ 'ବେଙ୍ଗ' (ଶ୍ରୀମତୀ ବସନ୍ତ ଦେବୀ ସେ ଶ୍ରୀ ଜଗନ୍ନାଥ ମହାନ୍ତିଙ୍କ ସ୍ତ୍ରୀ) ।

ମାତା—ଶ୍ରୀମତୀ ପଦ୍ମାବତୀ ଦେବୀ । କଟକ ଜିଲ୍ଲା 'ବେଣ୍ଟକାର' ଗାଁର ବିଶିଷ୍ଟ ଧନୀ ଶ୍ରୀ ସଦାନନ୍ଦ ମହାନ୍ତିଙ୍କ କନ୍ୟା ।

ଜନ୍ମ—୮-୫-୧୮୯୫ ସକାଳ ୮ଟା, କଟକ, ପଛେ ଯାହା 'ସ୍ଵରାଜ୍ୟାଶ୍ରମ' ହେଲା, ସେ କୋଠାର ତଳ ମହାଲର ୩ ବଖରା ଭିତରୁ ମଝି ବଖରାରେ ।

ବିଦ୍ୟା—୧୯୦୮ରେ କଟକ କଲେଜିଏଟ୍‌ରୁ ମ୍ୟାଟ୍ରିକୁଲେସନ୍ ପାଶ୍ କଲେ, ପ୍ରଥମ ଶ୍ରେଣୀ, ଟ ୧୫-୦୦ ବୃତ୍ତି ପାଇଲେ । ରେଭେନ୍‌ସା କଲେଜରେ ଏଫ୍.ଏ. ପଢ଼ିଲେ, ୧୯୧୦ରେ ଏଫ୍.ଏ. ପାଶ୍ କରି କଲିକତା ପ୍ରେସିଡେନ୍‌ସି କଲେଜରେ ବି.ଏ. ପଢ଼ିଲେ, ୧୯୧୨ରେ ବି.ଏ.ରେ ଗଣିତରେ ଅନର୍ସ ପାଇ ପାଶ୍ କରି ସେଠି ଏମ୍.ଏ. ପଢ଼ିଲେ, ୧୯୧୪ରେ ଉଲ୍ଲକ୍ଷ୍ୟ ସହିତ ୨ୟ ଶ୍ରେଣୀରେ ଗଣିତରେ ଏମ୍.ଏ. ପାଶ କଲେ । ୧୯୧୬ରେ ପୁଣି କଲିକତା ଯାଇ ଲ' ପଢ଼ିଲେ, ୧୯୧୭ରେ 'ପ୍ରିଲିମିନେରି ଲ'' ପରୀକ୍ଷାରେ କଲିକତା ୟୁନିଭର୍ସିଟିରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେଲେ, ଅଳ୍ପଦିନ ପରେ ଚାକିରି କଲେ ବୋଲି ଆଉ ପଢ଼ିଲେ ନାହିଁ ।

ବିବାହ—୧-୧୧-୧୯୧୪ ।

ତାଙ୍କ ସ୍ତ୍ରୀ ଶ୍ରୀମତୀ ରମା ଦେବୀ । ଜନ୍ମ—ତା ୩ ଡିସେମ୍ବର ୧୮୯୯ ।

ପିତା—'ଉତ୍କଳ ସମ୍ମିଳନୀ'ର ମହାନ୍ ନେତା ମଧୁବାବୁଙ୍କ ସାନଭାଇ ଶ୍ରୀ ଗୋପାଳ ବଲ୍ଲଭ ଦାସ, ଡେପୁଟି ମ୍ୟାଜିଷ୍ଟ୍ରେଟ୍ । ପୈତୃକ ନିବାସ—କଟକ ଜିଲ୍ଲା ସତ୍ୟଭାମାପୁର । ମାତା—ଶ୍ରୀମତୀ ବସନ୍ତଲତା ଦେବୀ । କଟକ ଜିଲ୍ଲା କୁମୁଡ଼ା-ଜୟପୁରରେ ପୈତୃକ ଘର, ପିତା—ରାୟବାହାଦୁର ନନ୍ଦକିଶୋର ଦାସ, ଡେପୁଟି ମ୍ୟାଜିଷ୍ଟ୍ରେଟ୍, ପଛେ ସୁପରିଣ୍ଟେଣ୍ଡେଣ୍ଟ ଅଫ୍ ଗଡ଼ଜାତ୍ ମହାଲ୍‌ସ୍, ଓଡ଼ିଶା ।

ସନ୍ତାନ ଜନ୍ମ—(୧) ୧୯୧୫—ଶ୍ରୀ ମନମୋହନ ଚୌଧୁରୀ (ବୁଲୁ)
(୨) ୧୯୧୭—ଶ୍ରୀମତୀ ଅନ୍ନପୂର୍ଣ୍ଣା (ଚୁନ୍ନା)
(୩) ପୁତ୍ର (ମୃତ)

ଗୋପବାବୁଙ୍କ ପିତୃବିୟୋଗ—୧୪-୨-୧୯୧୫

ଚାକିରି—୧୯୧୭, ଡେପୁଟି ମ୍ୟାଜିଷ୍ଟ୍ରେଟ୍, କଟକ
୧୯୧୮, କନ୍‌ଫାର୍ମିଡ଼୍, କଟକ

୧୯୧୯, କଟକ, (ସେତେବେଳଠୁଁ 'ଭାରତୀ ମନ୍ଦିର' ପାଠାଗାର ଓ ଲାଇବ୍ରେରୀ ଗଠନରେ ସହଯୋଗ, ତାକୁ ଆର୍ଥିକ ସାହାଯ୍ୟ, ସେ କାର୍ଯ୍ୟରେ ସହଯୋଗ, ସେଠି ରାଜନୀତି ଚର୍ଚ୍ଚା ଓ ପଢ଼ା ଆରମ୍ଭ ହୋଇଥାଏ ।), —ଯାଜପୁର ସେକେଣ୍ଡ୍ ଅଫିସର, ୧୯୨୦—ବନ୍ୟା ଓ ବଣା ଆଡ଼େ ବଡ଼ି କାମ, ସେପ୍‌ଟେମ୍ବର କି ଅକ୍‌ଟୋବରରେ ବରଗଡ଼ ବଦଳି । ୧୯୨୧—ବରଗଡ଼ରେ ସେକେଣ୍ଡ ଅଫିସର ।

ଚାକିରିରୁ ଇସ୍ତଫା—୧୯୨୧ ଜାନୁଆରି ବା ଫେବୃଆରି ।

## ଦେଶସେବା କ୍ଷେତ୍ରରେ କର୍ମମୟ ଜୀବନର ଆରମ୍ଭ

୧୯୨୧ ଜାନୁଆରି କି ଫେବୃଆରି—ହଠାତ୍ ନିଜର, ନିଜ ପରିବାରର, ପୋଷାକ, ଚଳଣି, ଖାଦ୍ୟ, ଦୃଷ୍ଟିଭଙ୍ଗୀ ସବୁଥିରେ ପରିବର୍ତ୍ତନ, ଗାନ୍ଧୀଜୀଙ୍କ ଅନୁସରଣ; ଚାକିରି ଛାଡ଼ି ଆଗ ଗଲେ ସତ୍ୟବାଦୀ, ଉତ୍କଳମଣିଙ୍କ ପାଖକୁ । ୨।୩ ଦିନ ରହି ଫେରି କଂଗ୍ରେସରେ ମିଶିଲେ । ଗାଁରେ ଆଶ୍ରମ ଗଢ଼ି ରହିବାକୁ ଓ କାମ କରିବାକୁ ଠିକଣା କଲେ ।

କଟକ ଜିଲା କଂଗ୍ରେସ କମିଟି ସଭ୍ୟ ହେଲେ, ଉ:ପ୍ରା:କ:କ: ଗଢ଼ା ହେଲା, ଅଖିଳ ଭାରତ କଂଗ୍ରେସ କମିଟିକୁ ଓଡ଼ିଶାରୁ ୧୨ ଜଣ ସଭ୍ୟ ବାଛି ହେଲେ, ସେ ଜଣେ । 'ନିଖିଳ ଭାରତ କଟାଳୀ ସଂଘ'ର ସଭ୍ୟ ହେଲେ । 'ଆହମେଦାବାଦ' କଂଗ୍ରେସକୁ ଗଲେ । 'ଉତ୍କଳ ସମ୍ମିଳନୀ'ର ସ୍ଥାୟୀ ସଭ୍ୟ ହେଲେ । କଂଗ୍ରେସର ଜଣେ ମୁଖ୍ୟ କର୍ମୀ ଓ ପ୍ରାଦେଶିକ ସ୍ତରରେ ଜଣେ ମୁଖ୍ୟ ନେତା ହେଲେ ।

ଅଲକାଶ୍ରମ—୧୯୨୧ ମାର୍ଚ୍ଚ କି ଅପ୍ରେଲ୍‌ରେ ନିଷ୍ପତ୍ତି ନିଆଗଲା ଯେ 'ଜାତୀୟ ବିଦ୍ୟାଳୟ' ହେବ, ପଛେ ଆଶ୍ରମ । ୮-୫-୧୯୨୧—'ଜଗତ୍‌ସିଂପୁର ଜାତୀୟ ବିଦ୍ୟାଳୟ' ପ୍ରତିଷ୍ଠା । (୧୯୨୨ ଜାନୁଆରି-ଫେବୃଆରି ଶ୍ରୀପଞ୍ଚମୀ ଦିନ ଅଲକାଶ୍ରମ ପ୍ରତିଷ୍ଠା) ଗୋପବାବୁ କଟକରୁ ସେଠିକି ଯାଆସ କରୁଥାନ୍ତି, ୧୯୨୮ରୁ ଅଲକାଶ୍ରମରେ ସପରିବାର ରହିଗଲେ । ନାନା ରଚନାତ୍ମକ କାମ, ଜନସେବା କାମ ଓ କଂଗ୍ରେସ କାମ କଲେ । ୧୯୨୧ରେ 'ଅଲକାଶ୍ରମ ଖଦୀ ପ୍ରତିଷ୍ଠାନ' ବସାଇଲେ ।

୧୯୨୨—'ଅଖିଳ ଭାରତ ଚରଖା ସଂଘ' ହେଲା, ଗୋପବାବୁ ତାର ସଭ୍ୟ ଓ ଟ୍ରଷ୍ଟି । ପଛେ ସମ୍ପାଦକ ।

୧୯୨୩—ନି: ଭା: କ: କ:ର କାର୍ଯ୍ୟକାରୀ କମିଟିରେ ଓଡ଼ିଶାରୁ ପ୍ରଥମ ସଭ୍ୟ । କଟକ ମ୍ୟୁନିସିପାଲିଟିର ଜଣେ କମିସନର ହେଲେ । ଗଞ୍ଜାମ ବ୍ରହ୍ମପୁରରେ ଉତ୍କଳ ସମ୍ମିଳନୀରେ ଯୋଗଦେଲେ ।

୧୯୨୪—କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼୍‌ ଚେଆରମ୍ୟାନ୍ ହେଲେ । ଉ: ପ୍ରା: କ: କ: କଟକରେ ଓଡ଼ିଶାର ପ୍ରଥମ ପ୍ରାଦେଶିକ ସମ୍ମିଳନୀ କଲେ, ତାର ଅଭ୍ୟର୍ଥନା ସମିତିର ସଭାପତି ହେଲେ । 'ଉତ୍କଳ ସମ୍ମିଳନୀ'ରୁ ସମ୍ପର୍କ ତୁଟାଇଲେ । ୧୯୨୩-୨୪ରେ ହଇଜା କାମ । ୧୯୨୪ରେ ଟାଇଫଏଡ୍ ।

୧୯୨୫—ଗାନ୍ଧିଜୀ 'ଅଖିଳ ଭାରତ ଚରଖା ସଂଘ' ଗଢ଼ିଲେ, ଗୋପବାବୁ ତାର ଓଡ଼ିଶା ଶାଖାର 'ସମ୍ପାଦକ ଓ ଖଜାଞ୍ଚି' ।

୧୯୨୭—ନବବାବୁ ମାଳତୀ ଦେବୀଙ୍କ ବିବାହ । 'କଟକ ସେବା ସଂଘ' ପ୍ରତିଷ୍ଠା ।

୧୯୨୮—ଉତ୍କଳମଣିଙ୍କ ତିରୋଧାନ । କଲିକତା କଂଗ୍ରେସ ସମ୍ମିଳନୀକୁ ଗଲେ । ଓ୍ୱାର୍ଦ୍ଧା ଯାଇ ଗାନ୍ଧୀଜୀଙ୍କୁ ଭେଟିଲେ । ଓଡ଼ିଶାରେ 'ଗାନ୍ଧୀ ସେବା ସଂଘ' କାମର ଭାର ନେଲେ ।

୧୯୨୯—ଲାହୋର କଂଗ୍ରେସ ସମ୍ମିଳନୀକୁ ଗଲେ । କଲିକତାରେ ପ୍ରବାସୀ ଉତ୍କଳ ସମ୍ମିଳନୀରେ ସଭାପତି ।

୧୯୩୦—୨୬-୧-୩୦ରେ କଟକରେ ବିରାଟ ସଭାରେ 'ସ୍ୱାଧୀନତା ସଂକଳ୍ପ' ପଢ଼ିଲେ । ନାନା ସଭା । ୬-୪-୩୦ରେ ଲବଣ ସତ୍ୟାଗ୍ରହର 'ସେନାପତି' ହୋଇ ଗ୍ଭଲିଲେ । ୮-୪-୩୦ରେ ଗିରଫ୍ । ଜେଲ୍ ।

୧୯୩୧—ମାର୍ଚ୍ଚ ୧୦ରେ ଜେଲ୍‌ରୁ ଖଲାସ । ବିପୁଳ ସମ୍ବର୍ଦ୍ଧନା । ପୁରୀରେ ପ୍ରସ୍ତାବିତ ଅ: ଭା: କ: କ: ସମ୍ମିଳନୀ ଅଭ୍ୟର୍ଥନା ସମିତିର ସମ୍ପାଦକ ।

୧୯୩୨—୧୦-୧-୩୨ରେ ଗିରଫ୍, ଜେଲ୍ । ପରହଲ୍ସ ସେପ୍‌ଟେମ୍ବରରେ ଖଲାସ । ହରିଜନ କାମ ।

୧୯୩୩—୨୪-୩-୩୩ରୁ ପୁଣି ଜେଲ୍ ।

୧୯୩୪—ଜାନୁଆରିରେ ଜେଲ୍‌ରୁ ଖଲାସ୍ । ବିହାର ଭୂମିକମ୍ପ କାମ । ଓଡ଼ିଶା ନଇବଢ଼ି କାମ । 'ଅ: ଭା: ହରିଜନ ସେବକ ସଂଘ'ର ସଭ୍ୟ । 'ଅ: ଭା: ଚରଖା ସଂଘ' ଓଡ଼ିଶା ଶାଖାର ସେକ୍ରେଟେରି । ୭-୫-୧୯୩୪ରୁ ୨-୬-୩୪ ଯାଏ ଗାନ୍ଧୀଜୀଙ୍କ ସଙ୍ଗେ ହରିଜନ ଗସ୍ତ ଓ ପଦଯାତ୍ରା । ୧୩-୮-୧୯୩୪ରେ ଗୋପବାବୁ ସପରିବାର ବଖରି ଗଲେ ।

ବସ୍ତି ଆଶ୍ରମ—(୧) ଆଗ ବସ୍ତି ମୌଜାର ବାଗ୍‌ଦା ଗ୍ରାମରେ ବାମନବାବୁଙ୍କ 'ଚୌପାଢ଼ୀ'ରେ ଆଶ୍ରମ ୧୩-୮-୩୪ରୁ ୭-୪-୩୫ ।

(୨) ୭-୪-୩୫ରୁ ବାଗ୍‌ଦା ପଛଆଡ଼େ ଅରଙ୍ଗାବାଦ୍ ମୌଜାରେ 'ସେବାଘର' ଆଶ୍ରମ, ୮-୮-୪୨ ଯାକେ ।

(୩) ୧୯୪୫ ଜୁନ୍‌ରୁ ୧୯୫୦ ଯାଏ ଅରଙ୍ଗାବାଦ୍‌ରେ ଗୋବର୍ଦ୍ଧନ ପୃଷ୍ଟୀଙ୍କ ଦାଣ୍ଡଘର ।

(୪) ୧୯୫୧ରୁ 'ବୁଧେଇପାଲ'ରେ ଆଶ୍ରମ, ୧୯୫୨ରୁ ପ୍ରାୟ ବାହାରେ ଥାନ୍ତି । ନାନା ରଚନାତ୍ମକ କର୍ମ ।

୧୯୩୮—୨୫-୩-୩୮ ଡେଲାଂ ସମ୍ମିଳନୀ । ଉ: ପ୍ରା: କ: କ: ସଭାପତି ହେଲେ । 'ଗ୍ରାମସେବା ସଂଘ' ପତ୍ରିକା ସମ୍ପାଦକ । ସରକାରୀ 'ମୌଳିକ ଶିକ୍ଷା ବୋର୍ଡ଼୍'ର ସଭାପତି ।

୧୯୪୦—'ସତ୍ୟାଗ୍ରହୀ' ପତ୍ରିକା ସମ୍ପାଦକ (୧୯୩୯ରେ ଆଗ ବାହାରିଥିଲା) ।

୧୯୪୧—ସରକାର ମୌଳିକ ଶିକ୍ଷାର ପ୍ରୟୋଗ ବନ୍ଦ କରିଦେବାରୁ ଗୋପବାବୁ ଓ ତାଙ୍କ ସହକର୍ମୀମାନେ ବେସରକାରୀ ଭାବେ ସେହି କାର୍ଯ୍ୟ ଚଳାଇଲେ ।

୧୯୪୨—୨୫-୨-୪୨ରେ ବସ୍ତିରେ ଝିଅ ବାହାଘର । ୯-୮-୪୨ରେ ଗିରଫ୍, ଜେଲ୍ ।

୧୯୪୫—ଜୁନ୍‌ରେ ଜେଲରୁ ଖଲାସ । ପୁଣି ବସ୍ତି ।

୧୯୪୭—୧୭-୨-୪୭ରେ ପୁଅ ବାହାଘର । 'ଉତ୍କଳ ନବଜୀବନ ମଣ୍ଡଳ' ଗଠନ ।

୧୯୪୭—ଅଗଷ୍ଟ ୧୫, ଭାରତ ସ୍ୱାଧୀନ ହେଲା ।

୧୯୪୮—ଜାନୁଆରୀ ୩୦ରେ ଗାନ୍ଧୀଜୀଙ୍କର ହତ୍ୟା । ମାର୍ଚ୍ଚ ୧୩-୧୫—ସେବାଗ୍ରାମରେ ସଭା, 'ସର୍ବୋଦୟ ସମାଜ' ଗଠନ, ଗୋପବାବୁ ସଭ୍ୟ ।

୧୯୪୯—ମାର୍ଚ୍ଚ—ଇନ୍ଦୋର ପାଖେ ରାଉ ସର୍ବୋଦୟ ସମ୍ମିଳନୀ, ଗୁଜରାଟ ଗସ୍ତ ।

୧୯୫୦—ଅପ୍ରେଲ୍‌ରେ ଅନୁଗୁଳର ଅ: ଭା: ସର୍ବୋଦୟ ସମ୍ମିଳନୀ । ଗୋପବାବୁ ଅ: ଭା: ସର୍ବୋଦୟ ସଂଘର ମୁଖ୍ୟ ସମ୍ପାଦକ । ବଡ଼ ବଢ଼ି । ଓ୍ୱାର୍ଦ୍ଧା, ମଦୁରାଇ ଆଦି ଗସ୍ତ । ଅଗଷ୍ଟ ୨୦-୨୭—ବସ୍ତିରେ ଅନଶନ ।

୧୯୫୧—ଅପ୍ରେଲ ୮-୧୨, ଶିବରାମ୍‌ପଲ୍ଲୀ ସର୍ବୋଦୟ ସମ୍ମିଳନୀ । ୧୮-୪-୫୧—ପୋଚମ ପଲ୍ଲୀରେ ବିନୋବା ପ୍ରଥମ ଭୂଦାନ ପାଇଲେ । ମେ'ରେ ମହାରାଷ୍ଟ୍ର ଗଲେ ।

୧୯୫୨—୭-୧-୫୨ରେ ଗୋପବାବୁ, ରମା ଦେବୀ ଭୂଦାନ ପଦଯାତ୍ରାରେ ବାହାରିଲେ । ବର୍ଷ ସାରା ୧୧ଟି ଜିଲ୍ଲା ବୁଲିଲେ ।

୧୯୫୩—ଭୂଦାନ ଗସ୍ତ ଓ ପଦଯାତ୍ରା, ନାନା ଜିଲ୍ଲା ।

୧୯୫୪—ଭୂଦାନ ଗସ୍ତ ଓ ପଦଯାତ୍ରା, ନାନା ଜିଲ୍ଲା ।

୧୯୫୫—୨୭-୧-୫୫ରୁ ୩୦-୯-୫୫ ଯାଏ ବିନୋବାଙ୍କ ସଙ୍ଗେ ପଦଯାତ୍ରା । ତାପରେ କୋରାପୁଟ୍‌ରେ ପଦଯାତ୍ରା, ଗସ୍ତ ।

୧୯୫୬—ମଧ୍ୟ ପ୍ରଦେଶର ରାଏପୁର, କୁଟଣ୍ଡା, ପୁଣି କୋରାପୁଟ୍, ଜୁନ୍ ମଝିରେ କୋରାପୁଟ୍‌ରୁ ଫେରିଲେ । କେନ୍ଦୁଝର ଗସ୍ତ, ପଦଯାତ୍ରା ।

୧୯୫୭—ଜୁନ୍‌ରେ କଣ୍ଟାବଞ୍ଜି କୋରାପୁଟ୍‌ରେ, ପୁଣି ଫେରି ଆସିଲେ, କେନ୍ଦୁଝର ସୁନ୍ଦରଗଡ଼ରେ ପଦଯାତ୍ରା, ଜର ହେଲା, କଟକ ଫେରିଲେ, ପୁଣି ଜର, ଭଲ ହୋଇ କଟକ ଫେରିଲେ ।

୧୯୫୮—୨୭-୨-୫୮ରୁ ପୁଣି ଗସ୍ତ, ପଦଯାତ୍ରା, ମୟୂରଭଞ୍ଜ, ବାଲେଶ୍ୱର, ମାର୍ଚ୍ଚ-ଅପ୍ରେଲ୍‌ରେ ଫେରିଲେ, ପୁଣି ବାହାରିଲେ, କଟକରୁ ଫେରି ଆସିଲେ, ରମା ଦେବୀଙ୍କୁ ଟାଇଫଏଡ୍ ହେଲା ବୋଲି । ଯୋଶୀଆ ସାହୁ ଆଶ୍ରମରେ ରହିଲେ । ୨୯-୪-୫୮—ଭୁବନେଶ୍ୱର ଆସିଥିଲେ । ୫ଠାରେ ଫେରିଲେ । ହଠାତ୍ ଗ୍ୱଢ ୧୧·୫୫ରେ ମୃତ୍ୟୁ ।

# ତିନି

ପୂଜ୍ୟ ୰ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ଜନ୍ମ ଓଡ଼ିଶାର କଟକ ସହରରେ, ତା ୮-୫-୧୮୯୫ ।

## କର୍ମମୟ ଜୀବନର ପଟ୍ଟଭୂମି

ତାଙ୍କ ଜନ୍ମର ପ୍ରାୟ ୩୦ ବର୍ଷ ଆଗରୁ ଓଡ଼ିଆ ଭାଷା ଓ ଓଡ଼ିଆଙ୍କ ସ୍ୱାର୍ଥ ସଂରକ୍ଷଣ ଲାଗି 'ଓଡ଼ିଆ ଜାତୀୟ ଚେତନା' ଆରମ୍ଭ ହୋଇଥାଏ, କ୍ରମେ ସବୁ ଓଡ଼ିଆଭାଷୀ ଅଞ୍ଚଳକୁ ଏକ ଶାସନରେ ରଖିବାକୁ ଦାବୀରେ ପରିଣତ ହୋଇଥାଏ, ଓ ଶେଷରେ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଆନ୍ଦୋଳନରେ ପରିଣତ ହୋଇଥାଏ, ସେ ଆନ୍ଦୋଳନର ନେତା, ଓଡ଼ିଶାର ନେତା ହୋଇଥାନ୍ତି ପ୍ରାତଃସ୍ମରଣୀୟ ୰ ଶ୍ରୀ ମଧୁସୂଦନ ଦାସ, ଉତ୍କଳ ସମ୍ମିଳନୀର ଜନ୍ମଦାତା । ୰ ଗୋପବନ୍ଧୁ ଚୌଧୁରୀଙ୍କ ଜନ୍ମର କିଛିକାଳ ପୂର୍ବରୁ ସେ କଲିକତାରୁ ଚାଲିଆସି କଟକରେ ଓକିଲାତି କରୁଥିଲେ ଓ ୩୦-୧୨-୧୯୦୩ରେ କଟକରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କରାଇଥିଲେ । ଉତ୍କଳ ସମ୍ମିଳନୀ ଇଂରେଜ ସରକାରଙ୍କ ବିରୋଧ କରୁ ନ ଥିଲେ ସତ, କିନ୍ତୁ ଉତ୍କଳ ସମ୍ମିଳନୀ ହେବାରୁ ଓଡ଼ିଶାରେ ଐକ୍ୟ ଓ ଜାତୀୟ ଚେତନା ପାଇଁ ବଳ ବଳ ବାତାବରଣ ଖେଳିଲା ଓ ବଢ଼ିଲା, ତା ଉହାଡ଼ରେ ବି ଜାତୀୟ ଚେତନା ଥିଲା ଓ ତାର ଗୋଟିଏ ଉଦ୍ଦେଶ୍ୟ ଥିଲା ଲୋକେ ବିଦେଶୀ ଜିନିଷ ଉପରେ ନିର୍ଭର ନ କରି ଦେଶୀୟ ଶିଳ୍ପର ଉନ୍ନତି କରନ୍ତୁ, ୧୯୦୩ ବେଳକୁ ମଧୁବାବୁ ଅରଟ, ସୂତାକଟା, ଲୁଗାବୁଣା ଆଦି କରାଉଥିଲେ ଓ ପ୍ରଚାର କରିଥିଲେ । ସେ ସବୁ ଭାରତୀୟ 'ସ୍ୱଦେଶୀ' ଅର୍ଥନୈତିକ ଆନ୍ଦୋଳନର ପୂର୍ବରୁ । ଦେଶ ଆଗେ କେଡ଼େ ସମୃଦ୍ଧ ଥିଲା, କିପରି ଇଂରେଜ ଅମଳରେ ସେ ସମୃଦ୍ଧି ଧ୍ୱଂସ ପାଇଛି, ଦାରିଦ୍ର୍ୟ, ଅଶିକ୍ଷା, ଅବନତି ଘୋଟିଛି, ପରସ୍ପର ସଦ୍ଭାବ ସୌହାର୍ଦ୍ଦ୍ୟ ରଖି ଏକତାବଦ୍ଧ

ହୋଇ ଦେଶର ସମସ୍ୟାକୁ ନଜେ ସୁଧାରିବାକୁ ପଡ଼ିବ, —ପ୍ରାତଃସ୍ମରଣୀୟ ମଧୁସୂଦନ ଦାସ ଓ ତାଙ୍କ ଉତ୍କଳ ସମ୍ମିଳନୀ ଓଡ଼ିଶାରେ ସର୍ବପ୍ରଥମେ ଏ ଚେତନା ସୃଷ୍ଟି କରିଥିଲେ, ଯୋଡ଼ିଏ ନୂଆ ଶବ୍ଦ ଆସିଲା, —'ଦେଶ' ଓ 'ଜାତି' । ମଧୁବାବୁ କହୁଥିଲେ "ଦେଶ ପାଇଁ ପ୍ରତିଦିନ ୫ ମିନିଟ୍ ଭାବ, ଦେଶ ପାଇଁ କିଛିହେଲେ କର ।" ରାଜନୈତିକ ଆଦର୍ଶ ଯାହାର ଯାହା ହେଉ, ଓଡ଼ିଶାରେ ରାଜନୈତିକ ଚେତନା, ଜନସେବାର ଧାରଣା, ଗ୍ରାମୋଦ୍ୟୋଗ ଧାରଣା, ମଧୁବାବୁଙ୍କଠାରୁ ହିଁ ଆରମ୍ଭ, —'ଗାନ୍ଧୀଯୁଗ' ଆସିବାର ବହୁତ ପୂର୍ବରୁ ।

୰ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ବାପା ୰ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ବଡ଼ ଜମିଦାର ଥିଲେ, କଟକରେ ଓକିଲାତି କରୁଥିଲେ, 'ଉତ୍କଳ ସମ୍ମିଳନୀ' ଆନ୍ଦୋଳନରେ ସେ ମୂଳରୁ ମଧୁବାବୁଙ୍କ ପ୍ରଧାନ ସହକର୍ମୀ ଥିଲେ, ୧୯୦୩-୧୯୦୮ ଯାଏଁ । ତାପରେ ମଧୁବାବୁଙ୍କ ସହିତ ତାଙ୍କର ମତାନ୍ତର ହେଲା, ଓଡ଼ିଆଙ୍କ ସ୍ୱାର୍ଥ ସଂରକ୍ଷଣ ପାଇଁ ସେ Orissa Peoples' Association ଗଢ଼ିଥିଲେ । ୧୯୦୮ରୁ ୧୯୧୫ ଯାଏଁ ସେ କଟକ ଜିଲାବୋର୍ଡ୍ ଭାଇସ୍ ଚେଆର୍‌ମ୍ୟାନ୍ ଥିଲେ ।

ଗୋପବାବୁ ଯେଉଁ ପରିବାରରେ ଜନ୍ମହେଲେ, ବଢ଼ିଲେ, ମୂଳରୁ ସେଠି ଆଭିଜାତ୍ୟ ଛଡ଼ା ରାଜନୈତିକ ଚେତନା ଥିଲା, ଜାତୀୟ ଚେତନା ଓ ସେବାଭାବ ଥିଲା, ଓଡ଼ିଶାରେ ସେ ଚେତନା ବଢ଼ାଇବାରେ ଯେ ନିଜେ ଜଣେ ବଡ଼ ନେତା, ସେ ଗୋପବାବୁଙ୍କ ବାପା ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ।

୧୯୦୮ରେ ଗୋପବାବୁ କଟକ କଲେଜିଏଟ୍‌ରୁ ମ୍ୟାଟ୍ରିକୁଲେସନ ପାଶ୍ କଲେ, ଭଲ ଛାତ୍ର ଥିଲେ, ପ୍ରଥମ ଶ୍ରେଣୀ ପାଇଲେ, ଟ ୧୫-୦୦ ବୃତ୍ତି ପାଇଲେ । ତାଙ୍କ ସ୍କୁଲ୍ ଜୀବନ ବେଳେ ଭାରତରେ ରାଜନୈତିକ 'ସ୍ୱଦେଶୀ' ଚେତନା ଆରମ୍ଭ ହେଲଣି, ୧୯୦୫ରେ ବଙ୍ଗଭଙ୍ଗ ଆନ୍ଦୋଳନ ବେଳେ ସେ ଆନ୍ଦୋଳନ ବ୍ୟାପିଲା, 'ବନ୍ଦେ ମାତରଂ' ଧ୍ୱନି ଉଠିଲା, ଇଂରେଜ ଶାସନ ବିରୁଦ୍ଧରେ ତୀବ୍ର ବିଦ୍ୱେଷ ବଢ଼ିଲା, ଆସିଲା 'ଭାରତମାତା' ପ୍ରତି ଅନୁରକ୍ତି, ବିଦେଶୀ ଶାସନରୁ ତାଙ୍କୁ ମୁକ୍ତ କରିବାକୁ ଆବେଗ, ସର୍ବଭାରତୀୟ ନେତାମାନେ ଠିଆ ହେଲେ, ଓଡ଼ିଶାରେ ବି ତା ପ୍ରଭାବ ପଡ଼ୁଥାଏ, ଯଦିଓ ଉତ୍କଳ ସମ୍ମିଳନୀ ନେତାମାନେ ଇଂରେଜ ସଙ୍ଗେ ସହଯୋଗ ରଖି ଓଡ଼ିଆ ସ୍ୱାର୍ଥ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ଉଦ୍ୟମ କରୁଥାନ୍ତି, ତଥାପି ଯୁବକମାନେ ଆକୃଷ୍ଟ ହେଉଥାନ୍ତି ମହାଭାରତୀୟ ଚେତନାରେ । ଶ୍ରୀ ଅରବିନ୍ଦ, ଶ୍ରୀ ବାଲଗଙ୍ଗାଧର ତିଲକ୍, ଲାଲା ଲାଜପତ୍ ରାୟ୍, ଶ୍ରୀ ଖୁଦୀରାମ୍ ଆଦି ସନ୍ତ୍ରାସବାଦୀ, ଶ୍ରୀ ଅଶ୍ୱିନୀ କୁମାର ଦତ୍ତ, ଶ୍ରୀ ରାସବିହାରୀ ଘୋଷ୍, ଶ୍ରୀ ବିପିନ୍ ପାଲ୍, ଶ୍ରୀ ଅଜିତ୍ ସିଂ ଆଦି ସେତେବେଳେ ଛାତ୍ର ଓ ଯୁବକମାନଙ୍କୁ ଉଦ୍‌ବୁଦ୍ଧ କରୁଥାନ୍ତି । କଟକ ରେଭେନ୍‌ସା କଲେଜ୍‌ରୁ

୧୯୧୦ରେ ଏଫ୍.ଏ. ପାଶ୍ କରି ଗୋପବାବୁ ବି.ଏ. ପଢ଼ିବାକୁ କଲିକତା ଗଲେ, ୧୯୧୨ରେ ବି.ଏ. ଓ ୧୯୧୪ରେ ଏମ୍.ଏ. ପାଶ୍ କଲେ, କଲିକତାରେ ସେ ବର୍ଷଗୁଡ଼ିକ ଭିତରେ ମହାଭାରତୀୟ ଜାତୀୟ ଚେତନାର ଜୁଆର ଫେଣ୍ଟୁଥାଏ, ସେହି ଉତ୍ତେଜକ ସ୍ୱାଧୀନତାକାମୀ ଭାବଧାରା ଭିତରେ ତାଙ୍କ କଲେଜ୍ ଜୀବନ ବିତିଗଲା । ସେତେବେଳେ ଭାରତର ଜାତୀୟ ଆନ୍ଦୋଳନର ପ୍ରାଣକେନ୍ଦ୍ର କଲିକତା ।

ଓଡ଼ିଶାରେ ୧୯୦୨ରୁ ପୁଣ୍ୟାତ୍ମା ଉତ୍କଳମଣି ଗୋପବନ୍ଧୁ ଦାସ ଦେଶସେବାରେ ଲାଗିଥାନ୍ତି, ସ୍ୱଦେଶୀ ବାର୍ତ୍ତା ପ୍ରଚାର କରୁଥାନ୍ତି, ୧୯୦୮ରେ ଉତ୍କଳ ସମ୍ମିଳନୀର ପୁରୀ ସଭାରେ ସେ ଅଗ୍ନିଗର୍ଭ ଭାଷଣ ଦେଇଥିଲେ, ୧୯୦୮ରେ ଛ ମାସ ନୀଳଗିରିରେ ହେଡ୍‌ମାଷ୍ଟର ହୋଇ ୧୯୧୧ରେ ମୟୂରଭଞ୍ଜ ମହାରାଜାଙ୍କ ଓକିଲ ହୋଇ ୧୨-୮-୧୯୦୯ରେ ସେ ସତ୍ୟବାଦୀ ଏମ୍.ଇ. ସ୍କୁଲ୍ କରିଥିଲେ, ୧୯୧୧ରେ ୰ ପଣ୍ଡିତ ନୀଳକଣ୍ଠ ଦାସ, ୧୯୧୨ରେ ୰ ଆଚାର୍ଯ୍ୟ ହରିହର, ୧୯୧୩ରେ ୰ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ୧୯୧୪ରେ ୰ ପଣ୍ଡିତ କୃପାସିନ୍ଧୁ ମିଶ୍ର ସେଠି ଶିକ୍ଷକ ହୋଇ ଯୋଗଦେଲେ, ୰ ପଣ୍ଡିତ ନୀଳକଣ୍ଠ ହେଡ୍‌ମାଷ୍ଟର ହେଲେ, ୧୯୧୨ରେ ସେ ସତ୍ୟବାଦୀ ହାଇସ୍କୁଲ ହେଲା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ୧୯୦୮ରେ 'ଉତ୍କଳ ସମ୍ମିଳନୀ' ଅନୁଷ୍ଠାନରେ ଯୋଗ ଦେଇଥାନ୍ତି, ୧୯୧୯ରେ ସେ କଟକରେ ଉତ୍କଳ ସମ୍ମିଳନୀ ସମ୍ମେଳନର ସଭାପତି ହେଲେ । 'ସତ୍ୟବାଦୀ' ନେତାମାନେ ଠିକ୍ ମଧୁବାବୁଙ୍କ ନେତୃତ୍ୱର ପଛେ ପଛେ । ଓଡ଼ିଆ ଭାଷାର ଉନ୍ନତି କରିବା, ଓଡ଼ିଶାର ଗୌରବୋଜ୍ଜ୍ୱଳ ଅତୀତ ପେନ ବେ ଅନୁଭବ କରିବା ଓ ତାକୁ ପୁଣି ବିସ୍ମୃତି ଭିତରୁ ଉଦ୍ଧାର କରିବା, ଓଡ଼ିଶାର ଶିକ୍ଷା ସଭ୍ୟତା ସଂସ୍କୃତିର ଉନ୍ନତି କରିବା, କୁସଂସ୍କାର, ଅନ୍ଧବିଶ୍ୱାସ, ଭୟ ଭାଙ୍ଗିବା, ଜାତିକୁ କର୍ମଠ, ପ୍ରଗତିଶୀଳ କରିବା, ଦେଶରେ ନାନା ସମସ୍ୟାର ସମାଧାନ କରିବାକୁ, ପ୍ରତିକାର କରିବାକୁ ଚେଷ୍ଟା କରିବା, ସବୁ କ୍ଷେତ୍ରରେ ଓଡ଼ିଶାର ଉନ୍ନତି କରିବା, ଏସବୁ ଥିଲା ସେମାନଙ୍କ ଅଭିମୁଖ୍ୟ ଭିତରେ ।

ଓଡ଼ିଆଭାଷୀ ବିଚ୍ଛିନ୍ନ ଅଞ୍ଚଳର ଏକୀକରଣ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଓଡ଼ିଆଙ୍କ ସ୍ୱାର୍ଥ ସଂରକ୍ଷଣ, ଉତ୍କଳ ସମ୍ମିଳନୀର ଏ ମୁଖ୍ୟ ଉଦ୍ଦେଶ୍ୟ ସେମାନେ ଗ୍ରହଣ କରିଥିଲେ, ସେଥିପାଇଁ ଓଡ଼ିଶାରେ (ଆଗ ବଙ୍ଗଦେଶ ଅନ୍ତର୍ଗତ, ପଛେ ବିହାର-ଓଡ଼ିଶା), ପଡ଼ୋଶୀ ପ୍ରଦେଶମାନଙ୍କରେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳରେ, ସେମାନେ କାର୍ଯ୍ୟ କଲେ ।

କିନ୍ତୁ ଉତ୍କଳମଣି ଆଉ ଗୋଟିଏ ନୂଆ କଥା ଆରମ୍ଭ କଲେ, —ଦେଶରେ ଯେଉଁମାନେ ଗରିବ ମଳିମୁଣ୍ଡିଆ ଅଥଚ ବେଶି ଭାଗ, —ସେହି ସାଧାରଣ 'ପୋକ-ମାଛି ପରି ମଣିଷ'ଙ୍କୁ ଦେବତା ମଣିଲେ, ସବୁ କ୍ଷେତ୍ରରେ ଅଗ୍ରାଧିକାର

ଦେଲେ, —ଆଗେ ତା ନ ଥିଲା, —ତାଙ୍କ ଦୁଃଖରେ କାନ୍ଦି କାନ୍ଦି ଦୁଃଖ କଷ୍ଟ ସହି ତାଙ୍କ ସେବା କରି କରି ବୁଲିଲେ, ସର୍ବତ୍ୟାଗୀ ହୋଇ ତ୍ୟାଗବ୍ରତ ନେଲେ, ଦେଶ-ସେବାର ନୂଆ ଦୀକ୍ଷା ଦେଲେ, —ନିଜେ ଶୁଦ୍ଧପୂତ ନୀତିମାନ୍ ସର୍ବସଦ୍‌ଗୁଣାଧାର ଈଶ୍ୱର-ନିବେଦିତ ହୋଇ ଜୀବନକୁ ପାଣିଛଡ଼ାଇଦେଇ ସର୍ବତ୍ୟାଗୀ ହୋଇ ଦରିଦ୍ରନାରାୟଣଙ୍କ ସେବା, ତାଙ୍କ ଶୋଷଣ ଅତ୍ୟାଚାରର ପ୍ରତିରୋଧ । ସେହି ଆଦର୍ଶରେ ସେ ଉଦ୍‌ବୁଦ୍ଧ କଲେ ସହକର୍ମୀଙ୍କୁ, ଦେଶବାସୀଙ୍କୁ, ସତ୍ୟବାଦୀ ଅନୁଷ୍ଠାନକୁ । ଆରମ୍ଭ ହେଲା ନିଜେ ପର ପାଇଁ କାମ କରି 'ରଚନାତ୍ମକ କାମ' । ସେତେବେଳକୁ ମହାତ୍ମା ଗାନ୍ଧୀ ଭାରତକୁ ବି ଫେରି ନ ଥିଲେ । ଉତ୍କଳମଣି ଥିଲେ ଜନସେବକ, ମଧୁବାବୁଙ୍କ ଶିଷ୍ୟ ଓ ଉତ୍କଳ ସମ୍ମିଳନୀର ନେତା ।

ଦ୍ୱିତୀୟ ନୂଆ କଥା ଆରମ୍ଭ କଲେ, —ବଙ୍ଗଭଙ୍ଗ ଆନ୍ଦୋଳନ ଫଳରେ ଯେଉଁ ଇଂରେଜ-ବିଦ୍ୱେଷୀ, ସ୍ୱଦେଶାନୁରକ୍ତ ବଙ୍ଗଦେଶରେ ପ୍ରବଳ ହୋଇଥିଲା, ତା ପୂର୍ବରୁ ଅଳ୍ପ କେତେଠି ଓ ତାପରେ ବ୍ୟାପକଭାବେ ଭାରତରେ ବ୍ୟାପିଥିଲା, ଉତ୍କଳମଣି ଓ ତାଙ୍କ ସହକର୍ମୀମାନେ ସେ ମହାଭାରତୀୟ ଚେତନା, ସେ ଜାଗୃତିକୁ ତାପରେ ଓଡ଼ିଶାରେ ପ୍ରବର୍ତ୍ତନ କରିଥିଲେ । ବଙ୍ଗ ଦେଶରେ ବଙ୍ଗ-ଭଙ୍ଗ ବିକ୍ଷୋଭ ଫଳରେ ସରକାର ସେଠିକାର ଶିକ୍ଷାନୁଷ୍ଠାନମାନଙ୍କ ଉପରେ କଡ଼ା ନଜର ଦେଲେ, ଛାତ୍ର ଶିକ୍ଷକ ଅଧ୍ୟାପକମାନେ ସେଥିରେ ମାତିବାରୁ ସେମାନଙ୍କୁ ଶାସ୍ତି ଦେଲେ, ନାନା ପ୍ରକାର ନିର୍ଯ୍ୟାତନା ହେଲା, ତାପରେ କଲିକତାରେ ବଙ୍ଗୀୟ ନେତାମାନେ ୧୦-୧୧-୧୯୦୫ରେ ବଡ଼ ସଭା କରି ଗୋଟିଏ 'ଜାତୀୟ ଶିକ୍ଷା କାଉନ୍‌ସିଲ୍' ଗଢ଼ିଲେ, ଚାନ୍ଦା ଅସୁଲ୍ କରି କେତେଗୁଡ଼ିଏ 'ଜାତୀୟ' ପ୍ରାଇମେରୀ ସ୍କୁଲ ଓ 'ଜାତୀୟ' ସେକେଣ୍ଡେରୀ ସ୍କୁଲ ବସାଇ ଗଢ଼ିଦେଲେ, 'ଜାତୀୟ ସ୍କୁଲ୍' ଓ ସେଥିପାଇଁ ଶିକ୍ଷାକ୍ରମର ଧାରଣା ଆସିଗଲା, ଭାରତର ଅନ୍ୟଆଡ଼େ ବି ସେପରି ସ୍କୁଲ୍ ହେଲା । ୧୨-୮-୧୯୦୯ରେ ଉତ୍କଳମଣି 'ସତ୍ୟବାଦୀ' ଏମ୍.ଇ. ସ୍କୁଲ୍ ବସାଇଲେ, ନିଜେ ସେ ଓ ତାଙ୍କ ସହକର୍ମୀ ଶିକ୍ଷକମାନେ, ଛାତ୍ରମାନେ ସେଇଠି ରହିଲେ । ୧୯୧୧ରେ ପଣ୍ଡିତ ନୀଳକଣ୍ଠ ଦାସ ଅଧ୍ୟାପକ ଚାକିରି ଛାଡ଼ି ସେଠିକି ଆସିଗଲେ, ସେଠି ହେଡ୍‌ମାଷ୍ଟର୍ ହେଲେ, ୧୯୧୨ରେ ଶିକ୍ଷକତା ଛାଡ଼ି ଆସିଗଲେ ଆଚାର୍ଯ୍ୟ ହରିହର, ସେଠି ଶିକ୍ଷକ ହେଲେ, ସେବର୍ଷ ସେ ହାଇସ୍କୁଲ୍ ହେଲା, ୧୯୧୩ରେ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ୧୯୧୪ରେ ପଣ୍ଡିତ କୃପାସିନ୍ଧୁ ମିଶ୍ର ଆସି ସେଠି ଶିକ୍ଷକ ହେଲେ । ସେମାନେ ସମସ୍ତେ ଉତ୍କଳମଣିଙ୍କ ସହକର୍ମୀ ହେଲେ । ସ୍କୁଲ୍‌ଟି ବଢ଼ି ଉଠିଲା ସେବା ଓ ଜାତୀୟତାର ପୀଠ ହୋଇ । ତେଣେ ଭାରତୀୟ ଆନ୍ଦୋଳନ, ନୂଆ ନୂଆ ଭାବ, ବ୍ୟାପୁଥାଏ । ଦକ୍ଷିଣ ଆଫ୍ରିକାରେ ମହାତ୍ମା ଗାନ୍ଧୀ ଆନ୍ଦୋଳନ କରୁଥାନ୍ତି, 'ସତ୍ୟାଗ୍ରହ'ର ଧାରଣା, 'ଗାନ୍ଧୀବାଦ' ବିଚାର ଜନ୍ମ ହେଲା, ଚାରିଆଡ଼େ ପ୍ରଚାରିତ ହେଉଥାଏ, ୧୯୧୫ରେ

ମହାତ୍ମା ଗାନ୍ଧୀ ଭାରତ ଫେରିଲେ, ସେଦିନରୁ ଆଜୀବନ, ୧୯୪୮ ଯାଏ ଭାରତ ମାତୃଭୂମି ହେଲା ତାଙ୍କ କର୍ମଭୂମି ।

ଏମେ ଉତ୍କଳମଣି ଓ ତାଙ୍କ ସହକର୍ମୀଙ୍କ ଆଦର୍ଶ ହେଲା ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଏକୀକରଣ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଓଡ଼ିଶାର ସମୃଦ୍ଧିବିଧାନ ସହିତ ଭାରତର ସ୍ୱାଧୀନତାପ୍ରାପ୍ତି । ୪-୧୦-୧୯୧୯ରେ ଉତ୍କଳମଣି ପ୍ରକାଶ କଲେ ଓଡ଼ିଶାର ପ୍ରଥମ ଜାତୀୟତାବାଦୀ ସମ୍ବାଦପତ୍ର, 'ସମାଜ', ସେ ତାର ସମ୍ପାଦକ ହେଲେ, ୧୯୨୦ରେ କଂଗ୍ରେସରେ ଯୋଗଦେଲେ । ଇତ୍ୟବସରେ, ୧୯୧୦-୧୪ ଗୋପବାବୁ କଲିକତାରେ ପ୍ରେସିଡେନ୍‌ସି କଲେଜ୍‌ରେ ପଢ଼ୁଥାନ୍ତି । କଲିକତା ସେତେବେଳେ ରାଜନୈତିକ ଚେତନାର ଉଦ୍ଦୀପନାରେ ଉଠୁଥାଏ ପଡ଼ୁଥାଏ । ତାଙ୍କ ମନ ଉପରେ ପ୍ରଭାବ ପଡ଼ୁଥିବ, ପଢ଼ିଥିବେ ସେ ବିଷୟରେ, ବକ୍ତୃତା ଶୁଣିଥିବେ, ଛାତ୍ର ମହଲରେ ଆଲୋଚନା ଶୁଣିଥିବେ । ତାଙ୍କ ପରବର୍ତ୍ତୀ ଜୀବନରେ ଲେଖାମାନଙ୍କରେ ସ୍ୱାମୀ ବିବେକାନନ୍ଦ, ଶ୍ରୀ ଅରବିନ୍ଦ, ତିଲକ୍ ମହାରାଜ୍, ରବୀନ୍ଦ୍ରନାଥ ଆଦିଙ୍କ ଉଲ୍ଲେଖ ଓ ସେମାନଙ୍କ ପ୍ରତି ଭକ୍ତିର ନିଦର୍ଶନ ମିଳେ । କିନ୍ତୁ ସେତେବେଳେ ସେ ରାଜନୀତିରେ ମିଶି ନାହାନ୍ତି । ୧୯୧୪ରେ ଏମ୍.ଏ. ପାଶ୍ କଲେ, ଗଣିତରେ ଏମ୍.ଏ., ଦ୍ୱିତୀୟ ଶ୍ରେଣୀରେ ଉତ୍କର୍ଷତା ସହକାରେ ଉତ୍ତୀର୍ଣ୍ଣ ହେଲେ ।

କେହି କେହି କହନ୍ତି ଏମ୍.ଏ. ପରେ ତାଙ୍କୁ ସବ୍ ଡେପୋଟି ଗ୍ରହଣ ସଙ୍ଗ ହୋଇଥିଲା, ସେ ମନା କଲେ, ତାଙ୍କୁ ରେଭେନ୍‌ସା କଲେଜ୍‌ରେ ଗଣିତରେ ଅଧ୍ୟାପକ ନିଯୁକ୍ତି ପାଇଁ ପ୍ରସ୍ତାବ ଥିଲା, ରାଜି ହେଲେ ନାହିଁ । ଇଚ୍ଛା ଥିଲା ବିଲାତ ଯିବେ, ପଢ଼ିବେ, ଆଇ.ସି.ଏସ୍. ପରୀକ୍ଷା ଦେବେ । କିନ୍ତୁ ୪-୮-୧୯୧୪ରୁ ପ୍ରଥମ ପୃଥିବୀବ୍ୟାପୀ ମହାଯୁଦ୍ଧ ଆରମ୍ଭ ହୋଇଗଲା । ବିଲାତ ପଠାଇବାକୁ ସେ ତାଙ୍କ ବାପାଙ୍କଠୁ ସମର୍ଥନ ପାଇଲେ ନାହିଁ ।

୧-୧୧-୧୯୧୪ରେ ତାଙ୍କର ବିବାହ ହେଲା, ଶ୍ରୀମତୀ ରମା ଦେବୀ ତାଙ୍କ ସ୍ତ୍ରୀ । ଗୋପବାବୁଙ୍କ ଶ୍ୱଶୁର ଶ୍ରୀ ଗୋପାଳବଲ୍ଲଭ ଦାସ ସେକାଳର ଜଣେ ଡେପୁଟି ମ୍ୟାଜିଷ୍ଟ୍ରେଟ୍, ସେ ଜଣେ ଖ୍ୟାତନାମା ଲେଖକ, 'ଉତ୍କଳ ସମ୍ମିଳନୀ'ର ନେତା ମଧୁବାବୁଙ୍କର ସେ ସାନ ଭାଇ, ନିଜେ ମଧ୍ୟ ଉତ୍କଳ ସମ୍ମିଳନୀର ଜଣେ ନେତା । ସେମାନେ ବି ବଡ଼ ଲୋକ, ଖାନ୍ଦାନ୍, ଜମିଦାର ।

ସେହି ବିଭାଘର ଦ୍ୱାରା ସେପରି ଆଉ ଗୋଟିଏ ପରିବାର ସହିତ ସେ ସମ୍ପର୍କିତ ହେଲେ, ରମା ଦେବୀଙ୍କ ମାମୁଁଘର । ଶ୍ରୀ ନନ୍ଦକିଶୋର ଦାସଙ୍କ ବାପା ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଥିଲେ, ସେ ନିଜେ ଡେପୁଟି ମ୍ୟାଜିଷ୍ଟ୍ରେଟ୍, ତାପରେ ଓଡ଼ିଶା ଗଡ଼ଜାତ

ମାହାଲ୍ ରାଜ୍ୟମାନଙ୍କ ସୁପରିଣ୍ଟେଣ୍ଡେଣ୍ଟ୍, ଏକ ପ୍ରକାର ପଲିଟିକେଲ୍ ଏଜେଣ୍ଟ୍ ପରି କ୍ଷମତାପନ୍ନ, ତାଙ୍କ ପୂର୍ବରୁ ଜଣେ ଶ୍ରୀ ରାଜକିଶୋର ଦାସ ଡେପୁଟି ମ୍ୟାଜିଷ୍ଟ୍ରେଟ, ପରେ ପୁରୀର ଜିଲ୍ଲା କଲେକ୍ଟର। ସେମାନେ ବି ଖୁବ୍ ବଡ଼ ଲୋକ, ଖାନ୍ଦାନ୍।

ଗୋପବାବୁଙ୍କ ମାମୁଁଘର (ବେଣ୍ଟକାର) ଲୋକ ବି ଧନୀ ଅଭିଜାତ। ଅଜା ଶ୍ରୀ ସଦାନନ୍ଦ ମହାନ୍ତି ଖୁବ୍ ଧନୀ, କିଛି ଇଞ୍ଜିନିଅରିଂ ପଢ଼ିଥିଲେ, ଜୋବ୍ରା ଆନିକଟ୍ ତିଆରି କାର୍ଯ୍ୟରେ ଥିଲେ। ତାଙ୍କ ମାମୁଁମାନଙ୍କ ଭିତରୁ ବଡ଼ମାମୁଁ ଶ୍ରୀ ହରେକୃଷ୍ଣ ମହାନ୍ତି ଡେପୁଟି ମ୍ୟାଜିଷ୍ଟ୍ରେଟ୍। ସେ କାଳରେ ଓଡ଼ିଆ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଅତି ଅଳ୍ପ ଥିଲେ।

ତାଙ୍କ ଅନ୍ୟାନ୍ୟ ବନ୍ଧୁବାନ୍ଧବ ବି ସେହିପରି। ଧନୀ, ଅଭିଜାତ, ଇଂରେଜ ଅଧୀନରେ ବଡ଼ ଚାକିରିଆ। ୧୯୨୧ରୁ ସେ ସପରିବାର ଉପରି ସେ ବଂଶପ୍ରଭାବ, ଗୋଷ୍ଠୀ, ଶ୍ରେଣୀ ଛାଡ଼ି ସବୁ ତ୍ୟାଗକରି ନିଜ ଇଚ୍ଛାରେ ଆନନ୍ଦ ମନରେ ସାଧାରଣ 'ଦରିଦ୍ର ନାରାୟଣ'ଙ୍କ ସଙ୍ଗରେ ମିଶିଗଲେ, ସଂସ୍କାରକ ହେଲେ, ଆପଣା ଶ୍ରେଣୀ, ସମାଜ ଓ ଇଂରେଜ୍ ସରକାର ବିରୁଦ୍ଧରେ ବିଦ୍ରୋହୀ ହେଲେ ଆଶ୍ଚର୍ଯ୍ୟ ଲାଗେ ସେଇଆ। ସେ ତ୍ୟାଗ 'କିଛି ନ ଥାଇ ତ୍ୟାଗୀ ହେବା ନୁହେଁ', ଅବସ୍ଥାରେ ପଡ଼ି ବା ମନଦୁଃଖରେ ବାବାଜି ହେଲାପରି ନୁହେଁ, ସୁସ୍ଥ ଧୀରସ୍ଥିର ବିଚାରପ୍ରସୂତ, ନିଜ ରୁଚିରେ, ନିଜ ଇଚ୍ଛାରେ।

କିନ୍ତୁ ୧୯୧୪ରେ ବା ୧୯୧୫ରେ ତାଙ୍କୁ ଦେଖି କେହି ସେପରି ଭାବିବା କାରଣ ନ ଥିଲା। ୧୪-୨-୧୯୧୫ରେ ତାଙ୍କ ବାପା ମଲେ, ତାଙ୍କ ଉପରେ ଘରର ଦାୟିତ୍ୱ ଚାଲି ଆସିଲା। ୧୯୧୫ରେ ତାଙ୍କ ପୁଅ ଜନ୍ମ ହେଲେ, ମନମୋହନ, ସେହିବର୍ଷ ସେ କଲିକତା ଗଲେ ଆଇନ୍ ପଢ଼ିବାକୁ। ୧୯୧୬ରେ ସେ ପ୍ରିଲିମିନେରି ଲ' ପାସ୍ କଲେ, କଲିକତା ୟୁନିଭର୍ସିଟିରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇଲେ। ସେହିବର୍ଷ ତାଙ୍କୁ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଚାକିରି ମିଳିଗଲା। ସେ କଟକରେ ଚାକିରିରେ ଯୋଗଦେଲେ।

୧୯୧୭-୧୯ ସେ କଟକରେ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଥିଲେ। ୧୯୧୭ରେ ତାଙ୍କର ଝିଅ ଅନ୍ନପୂର୍ଣ୍ଣା ଜନ୍ମ ହେଲେ। ୧୯୧୯ରେ ସେ ଯାଜପୁର ବଦଳି ହେଲେ, ଯାଜପୁର ସବ୍ ଡିଭିଜନ୍‌ର ସେକେଣ୍ଡ୍ ଅଫିସର୍ ହେଲେ। ୧୯୨୦ ଶେଷଆଡ଼କୁ ସେ ବରଗଡ଼ ବଦଳି ହେଲେ, ୧୯୨୧ ଜାନୁଆରି ବା ଫେବ୍ରୁଆରିରେ ଇସ୍ତଫା ଦେଲେ।

୧୯୧୭-୧୯। ଗୋପବାବୁ ଯେତେବେଳେ କଟକରେ ଡେପୁଟି ମ୍ୟାଜିଷ୍ଟ୍ରେଟ ହୋଇ ଚାକିରି କଲେ, ସେତେବେଳେ ଭାରତରେ ଗାନ୍ଧୀ-ଯୁଗ ଆରମ୍ଭ। ପୃଥିବୀ

ମହାଯୁଦ୍ଧ ଚାଲିଛି, ଇଂରେଜ୍ ସରକାର ଲଢୁଛି, ଜର୍ମାନ ଯୁଦ୍ଧ, ଭାରତ ଉପରେ କଡ଼ା ନଜର, ଯୁଦ୍ଧବେଳେ ଏଠି ଯେପରି ଗଣ୍ଡଗୋଳ ନ ହୁଏ, ପୁଲିସ୍, ମାଜିଷ୍ଟ୍ରେଟ୍, ରାଜା, ଜମିଦାର, ରାୟସାହେବ, ରାୟବାହାଦୁର୍ ଆଉ ଖାନ୍‌ଦାନ୍ ଲୋକେ, —ସେମାନେ ସେ ସରକାରର ସ୍ତମ୍ଭମାନେ । ଯୁଦ୍ଧ ସରିଲା ନଭେମ୍ବର ୧୯୧୮ରେ । ଏଣେ ଗାନ୍ଧୀଜୀ ୧୯୧୫ରେ ଭାରତରେ ପହଞ୍ଚି ୧୯୧୭ରେ ଚାଲିଗଲେ ବିହାରର ଚମ୍ପାରଣ୍ ଜିଲାକୁ ନୀଳ-ଚାଷୀଙ୍କ ଅଭିଯୋଗ ବୁଝିବାକୁ, 'ନୀଳ'-କୋଠିଆ ଇଂରେଜ ବେପାରୀଙ୍କ ଅନ୍ୟାୟ ଅତ୍ୟାଚାରରେ ସେମାନେ ଉଠିଛନ୍ତି । ମୋତିହାରିରେ ପଶିବାକୁ ଗାନ୍ଧୀଙ୍କୁ ନିଷେଧ କରାଗଲା, ସେ ସରକାରଙ୍କ ନିଷେଧ ଆଜ୍ଞା ମାନିଲେ ନାହିଁ, ତାଙ୍କ ନାଁରେ ମକଦ୍ଦମା ହେଲା, ୧୮-୪-୧୯୧୭ରେ ବିଚାର ହେଲା, କହିଲେ "ଆଇନ୍ ମୁଁ ଭାଙ୍ଗିଛି ସତ, ସେ ଅପରାଧରେ ମୁଁ ଅପରାଧୀ, କିନ୍ତୁ ମୋ ବିବେକ ଯାହା କହିଲା ମୁଁ ସେଇଆ କରିଛି ।" ତାଙ୍କ ଉତ୍ତର ତାଙ୍କ ନିର୍ଭୀକତା, ତେଜ, ବ୍ୟକ୍ତିତ୍ୱରେ ଚାରିଆଡ଼େ ଚହଲ ପଡ଼ିଗଲା, "ଭାରତର ରାଜନୀତି କ୍ଷେତ୍ରରେ ଏ ନୂଆ ସୂର୍ଯ୍ୟ ଉଇଁଲେ ।" ମକଦ୍ଦମା ଉଠେଇ ନିଆଗଲା, ନୀଳଚାଷ ଆଇନ ବଦଳିଲା, ମହାତ୍ମା ଜିତିଲେ, ସେଦିନଠୁଁ ଭାରତର ମହାନ୍ ନେତା ହେଲେ । ଠିକ୍ ତା ପଛେ ପଛେ ଗଲେ ଗୁଜରାଟର 'ଖେଡ଼ା'କୁ ଚାଷୀମାନଙ୍କ ସ୍ୱାର୍ଥରକ୍ଷା ପାଇଁ ସତ୍ୟାଗ୍ରହ କଲେ, ଜିତିଲେ । ୧୯୧୯ରେ ସେ ଆରମ୍ଭ କଲେ "ରାଓଲଟ୍ ବିଲ୍" ବିରୁଦ୍ଧରେ ସତ୍ୟାଗ୍ରହ, ଭାରତର ନାନା ସ୍ଥାନରେ ଆନ୍ଦୋଳନ ହେଲା, ତା ଫଳରେ ପଞ୍ଜାବର ଜାଲିଆନାୱାଲାବାଗ୍‌ରେ ଇଂରେଜ ସରକାର ନିର୍ମମ ହତ୍ୟାକାଣ୍ଡ କଲେ । ପୁଣି ଗୋଟିଏ କଥାରୁ ଆଉ ଗୋଟିଏ କଥା, —ଭାରତରେ ଆରମ୍ଭ ହୋଇଗଲା ରାଜନୈତିକ ଚେତନାର ବ୍ୟାପକ ପ୍ରଚାର ।

ଓଡ଼ିଶାରେ ଯୁବକମାନଙ୍କ ମନ ଧାଉଁଥାଏ ଏ ନୂଆ ମହାଭାରତୀୟ ଚେତନାର ନିଆଁ ଆଡ଼କୁ । ଜାଲିଆନାୱାଲାବାଗ୍‌ର ନିର୍ମମ ଅତ୍ୟାଚାର ତାକୁ କୁହୁଳାଉଥାଏ । ୧୯୧୯ରେ ଉତ୍କଳ-ସମ୍ମିଳନୀର ଦୁଇଥର ଅଧିବେଶନ ହେଲା, କଟକରେ ଉତ୍କଳମଣି ସଭାପତି ଥାଇ ଚତୁର୍ଦ୍ଦଶ ଓ ପୁରୀରେ ପଞ୍ଚଦଶ ଅଧିବେଶନ । କିନ୍ତୁ କ୍ରମେ କ୍ରମେ ଉତ୍କଳ ସମ୍ମିଳନୀର ଶିକ୍ଷିତ ଯୁବକମାନେ ଦେଖୁଥାନ୍ତି ଭାରତବ୍ୟାପୀ ନୂଆ ଯୁଗ ଆସିଛି, କାହିଁ ଭାରତର ଅନ୍ୟାନ୍ୟ ପ୍ରଦେଶ ପରି ଓଡ଼ିଶା ବି ତହିଁରେ ଉଦ୍‌ବୁଦ୍ଧ ହୁଅନ୍ତା କିନା, କିନ୍ତୁ ଓଡ଼ିଶା ତହିଁରୁ ଆଡ଼େଇ ହୋଇ ରହିଛି, ଅନ୍ୟତ୍ର ଇଂରେଜ୍ ସହିତ ସଂଘର୍ଷ ଚାଲିଥିଲା ବେଳେ ଓଡ଼ିଶାରେ ଉତ୍କଳ ସମ୍ମିଳନୀର ପୁରୁଖା ନେତାଏ ରହିଛନ୍ତି ଇଂରେଜ୍-ଅନୁରକ୍ତ, ତା ମନୋରଞ୍ଜନ କରି ଓଡ଼ିଶା ସ୍ୱାର୍ଥର ଉନ୍ନତି ଆଶାର, ସ୍ୱତନ୍ତ୍ର ପ୍ରଦେଶ ଗଠନ ଆଶାର ପରିପୂରଣ । ମଧୁବାବୁ କହୁଛନ୍ତି, ଭାରତମାତା ବି ଆମ ମାତା, ଉତ୍କଳମାତା ବି ଆମ ମାତା, ଭାରତର ଅବିଚ୍ଛେଦ୍ୟ ଅଙ୍ଗ, ଓଡ଼ିଶାର ଏକୀକରଣ ଉନ୍ନତି ସମୃଦ୍ଧି ନ ହେଲେ ଭାରତର ବା ପୂର୍ଣ୍ଣତା କାହୁଁ ଆସିବ ? ଉତ୍କଳମଣି

ଭାବୁଛନ୍ତି, ସେକଥା ଠିକ୍ ସତ, କିନ୍ତୁ ଆଗ ତ ଦରକାର ବିଦେଶୀ କବଳରୁ ଭାରତର ମୁକ୍ତି, ତେଣୁପାଇଁ ଉଦ୍ୟମ ଆଗ ଦରକାର, ଜରୁରି । ନୂଆ ଯୁଗର ଶିକ୍ଷିତ ଯୁବକମାନଙ୍କର ବି ସେହି ମନୋଭାବ, ଭାରତୀୟ ମୁକ୍ତି ଆନ୍ଦୋଳନ ସେମାନଙ୍କୁ ଆକୃଷ୍ଟ କରୁଥାଏ । ସେମାନେ ଭାବୁଥାନ୍ତି, —ଓଡ଼ିଶାର ବି ଆଶା ପୂରଣ ହେବ ତାହାର ଆନୁକୂଲ୍ୟରେ ସିନା, ତାଠୁଁ ଅଲଗା ହୋଇ ରହି ନୁହେଁ ।

ଗୋପବାବୁ, ତାଙ୍କ ସହପାଠୀ ଭାଗୁବାବୁ, (ସେତେବେଳେ ଓକିଲ, ଶ୍ରୀ ଭାଗୀରଥୀ ମହାପାତ୍ର), ଓ ଅନ୍ୟ କେତେଜଣ ମିଶି କଟକରେ ଗୋଟିଏ ପାଠାଗାର ଓ ତା ସହିତ ଲାଇବ୍ରେରି କଲେ । ଉଦ୍ଦେଶ୍ୟ ଥିଲା, ସେଠି ଯୁବକମାନେ ଏକାଠି ହେବେ, ଦେଶ ବିଦେଶର ପତ୍ରପତ୍ରିକା, ବହି, ପଢ଼ିବେ, ନିଜ ଭିତରେ ଆଲୋଚନା କରିବେ, ଏହାଦ୍ୱାରା ସେମାନଙ୍କ ଭିତରେ ସ୍ୱାଧୀନ ଚିନ୍ତା ଓ ଦେଶ ପ୍ରୀତି ଜାଗ୍ରତ ହେବ । ଗୋପବାବୁ ସେ ଅନୁଷ୍ଠାନକୁ ଆର୍ଥିକ ସାହାଯ୍ୟ ଦେଉଥିଲେ, ସେଠିକି ଯାଉଥିଲେ, ଯେଉଁମାନେ ସେଠିକି ଯା ଆସ କରୁଥିଲେ ତାଙ୍କ ସଙ୍ଗେ ମିଶୁଥିଲେ, ସହଯୋଗ କରୁଥିଲେ ଓ ସେମାନେ ତାଙ୍କୁ ବଡ଼ ଭାଇ ପରି ଦେଖୁଥିଲେ । ସେ ଅନୁଷ୍ଠାନ ନାଁ ଦିଆହୋଇଥିଲା 'ଭାରତୀ ମନ୍ଦିର', ୧୯୧୯ରେ ସେ ଆରମ୍ଭ ହୋଇଥିଲା । ଏଥିରୁ ଜଣାପଡ଼ୁଛି ଯେ ଗୋପବାବୁ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଥିଲାବେଳୁ ତାଙ୍କଠି ଦେଶପ୍ରେମ, ଜାତୀୟ ଚେତନା, ସ୍ୱାଧୀନ ଚିନ୍ତା ଓ ନିର୍ଭୀକତା ଥିଲା, ସେ ଏଭଳି ମନ ଯେଣୁ ବେଶିଦିନ ସରକାରୀ ଚାକିରି କରିପାରିବେ ବୋଲି ଲାଗୁ ନ ଥିବ ।

ସେ ଯାଜପୁର ଗଲେ, ୧୯୨୦ରେ ଖୁବ୍ ବଢ଼ି ହୋଇଥାଏ, ବରୁଆଁ ଓ ବଡ଼ଆଡ଼େ ରିଲିଫ୍ କାର୍ଯ୍ୟ କଲେ । ସେ ଦେଖିଲେ ଯେ ବଢ଼ି ସାହାଯ୍ୟ କାମ ସରକାରଙ୍କ ପକ୍ଷରୁ ନାଁକୁ ମାତ୍ର ହେଉଛି, ଦୁର୍ଭିକ୍ଷ ପଡ଼ୁଛି, ଅନାହାରରେ ଲୋକେ ମରୁଛନ୍ତି । ସେହି ଦୃଶ୍ୟ ଓ ସେ ଉଦାସୀନତା ତାଙ୍କ ପ୍ରାଣକୁ ଏପରି ବାଧିଲା ଯେ ତହିଁରେ ହିଁ ସେ ଚାକିରିକୁ ଛାଡ଼ି ଦେଲେ । ସେ ଚାହିଁଲେ, ସରକାର 'ଦୁର୍ଭିକ୍ଷ ପଡ଼ୁଛି' ବୋଲି ଘୋଷଣା କରୁ, ଆଇନ୍ ଅନୁସାରେ 'ଦୁର୍ଭିକ୍ଷ ସାହାଯ୍ୟ' ଆସୁ । ଅବସ୍ଥା ଲେଖି ସେ ରିପୋର୍ଟ କଲେ । ଶ୍ରୀ ଦୟାନିଧି ଦାସ ଯାଜପୁରର ଏସ୍. ଡି. ଓ. ଥିଲେ । ଶ୍ରୀଯୁକ୍ତ ମନମୋହନ ଚୌଧୁରୀ ପୂଜ୍ୟ ୰ ଗୋପବାବୁଙ୍କଠୁଁ ଶୁଣିଥିବାର କହନ୍ତି ଯେ ଏସ୍. ଡି. ଓ., କଲେକ୍ଟର ଉଭୟେ ଗୋପବାବୁଙ୍କୁ ପରାମର୍ଶ ଦେଲେ ଯେ ସେ ନିଜ ରିପୋର୍ଟ୍ ବଦଳାନ୍ତୁ, 'ଦୁର୍ଭିକ୍ଷ ପଡ଼ୁଛି' ବୋଲି ରିପୋର୍ଟ୍‌ରେ ନ ଲେଖନ୍ତୁ, କିନ୍ତୁ ଗୋପବାବୁ ସେ ପରାମର୍ଶ ଗ୍ରହଣ କରିବାକୁ ରାଜିହେଲେ ନାହିଁ । କିନ୍ତୁ ପୂଜ୍ୟ ୰ ଗୋପବାବୁ ନିଜେ ଏପରି କେଉଁଠି ଲେଖି ନାହାନ୍ତି, ତାଙ୍କ ଅସମ୍ପୂର୍ଣ୍ଣ

'ଆତ୍ମଜୀବନୀ'ରେ ଗ୍ରନ୍ଥକାର ଗୁଡ଼ିବା ବେଳ କଥା ଓ ତାଙ୍କ ମନୋଭାବ କଥା ଲେଖିଛନ୍ତି, ସେଠି ବି ସେ ଏପରି ଲେଖି ନାହାନ୍ତି ।

ଯାହାହେଉ, ଯାଜପୁର ଏସ୍. ଡି. ଓ. ଶ୍ରୀ ଦସ୍ମାନନ୍ଦ ଦାସ୍ ବି ବଢ଼ି ବିଷୟରେ ନିଜ ରିପୋର୍ଟ ଦେଲେ, ଗୋପବାବୁଙ୍କ ରିପୋର୍ଟଠାରୁ ତାଙ୍କ ରିପୋର୍ଟ ଭିନ୍ନ ହେଲା ଓ ଦୁର୍ଭିକ୍ଷ ପଡ଼ିଛି ବୋଲି ସେ ଲେଖିଲେ ନାହିଁ । ଗୋପବାବୁଙ୍କ ମନ ସରକାର ଉପରୁ ଆସ୍ଥାର ଭାଙ୍ଗିଗଲା । ସେ ପ୍ରାଣପଣେ ସାହାଯ୍ୟ କଲେ, କାମ କଲେ, ଛୁଟି ନେଇ ଆସି ଆପଣା ଘରୁ ଓ ବନ୍ଧୁବାନ୍ଧବଙ୍କଠୁଁ ଲୁଗାପଟା ଆଦି ନେଇ ସେ ଅଞ୍ଚଳରେ ବାଣ୍ଟିଲେ, କଲେକ୍ଟରଙ୍କୁ ରିପୋର୍ଟ କଲେ, ବଢ଼ି ଅଞ୍ଚଳର କରୁଣ ନିଃସହାୟ ଅବସ୍ଥା ଦେଖି ଉପଯୁକ୍ତ ସାହାଯ୍ୟ ପାଇଁ, ସେଠି ଆଉ ନ ରହି ଯାଜପୁର ସଦର ମହକୁମାକୁ ମତେ ବଦଳି କରାଯାଉ ବୋଲି ଲେଖିଲେ, କଲେକ୍ଟର ତାଙ୍କୁ ଯାଜପୁର ସଦର ମହକୁମାକୁ ବଦଳି କଲେ, ଶ୍ରୀ ଦସ୍ମାନନ୍ଦ ଦାସଙ୍କୁ ବଦଳି କରାଗଲେ, ତାଙ୍କ ଜାଗାରେ ଶ୍ରୀ ରାଧାଚରଣ ଦାସ ଗଲେ । ଯାଜପୁର ଆସି ଅଳ୍ପଦିନେ ଗୋପବାବୁ ବରଗଡ଼ ବଦଳି ହୋଇ ଚାଲିଗଲେ, ମନରେ ରହିଗଲା ବନ୍ୟା ଅଞ୍ଚଳରେ ବଢ଼ି ଦୁର୍ଭିକ୍ଷରେ ମରିଥିବା ମଣିଷଙ୍କ ରୂପ ।

ଚାକିରିରୁ ମନ ଗୁଡ଼ୁଥାଏ । ସେଥିପାଇଁ ଆହୁରି କରୁଣ କାରଣ ଥାଏ; 'ଭାରତୀ ମନ୍ଦିର' ସହିତ ଯେଉଁ ଯୁବକମାନେ ସମ୍ପୃକ୍ତ ଥିଲେ ତାଙ୍କ ଭିତରେ ଥିଲେ ଗୋପବାବୁଙ୍କ ଭାଇ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହପାଠୀ, ଶ୍ରୀ ହରେକୃଷ୍ଣ ମହତାବ୍, ସେତେବେଳେ ସେ ଗୋପବାବୁଙ୍କ ସାନଭାଇ ପରି । ଦୁହେଁ କଲେଜ୍ ଛାତ୍ର । ସେହିପରି ଆଉ କେତେ ଥିଲେ, ଶ୍ରୀ ଯଦୁମଣି ମଙ୍ଗରାଜ, ଶ୍ରୀ ରାଜକୃଷ୍ଣ ବୋଷ୍ ଆଦି । ଶ୍ରୀ ଭାଗୀରଥୀ ମହାପାତ୍ର 'ଭାରତୀ ମନ୍ଦିର'ର ଉଦ୍ୟୋକ୍ତା ଭିତରୁ ଜଣେ, ସେ ଗୋପବାବୁଙ୍କ ସହପାଠୀ ଓ ବନ୍ଧୁ । ଏମାନେ ସମସ୍ତେ ଅସହଯୋଗ ଆନ୍ଦୋଳନରେ ମିଶିବାକୁ ବ୍ୟଗ୍ର ହେଲେଣି । ଭଗୁବାବୁ ଓକିଲାତି ଗୁଡ଼ିଥିଲେ, ନବବାବୁ ମହତାବ୍‌ବାବୁ କଲେଜ୍ ଗୁଡ଼ିଥିଲେ, ଅନ୍ୟମାନେ ବି ପଢ଼ା ଗୁଡ଼ି ଦେଇଥିଲେ । ତାର ପ୍ରଭାବ ଗୋପବାବୁଙ୍କ ଉପରେ ପଡ଼ୁଥାଏ । ୧୯୨୦ରେ ଚକ୍ରଧରପୁରରେ ଉତ୍କଳ ସମ୍ମିଳନୀ ହେଲା, ସଭାପତି ମଧୁବାବୁ, ଉତ୍କଳମଣି ପ୍ରସ୍ତାବ ଆଗତ କଲେ "ଏଣିକି ଉତ୍କଳ ସମ୍ମିଳନୀର ମୌଳିକ ଉଦ୍ଦେଶ୍ୟ ଓଡ଼ିଆ ଦେଶ ମିଶ୍ରଣ ନ ହୋଇ ଭାରତର ସ୍ୱରାଜ୍ୟପ୍ରାପ୍ତି ହେଉ", ଯୁବକମାନେ ବହୁସଂଖ୍ୟାରେ ଯୋଗ ଦେଇଥିଲେ, ବିପୁଳ ସମର୍ଥନ ସହକାରେ ପ୍ରସ୍ତାବ ପାଶ୍ ହୋଇଗଲା ।

ସେହି ୧୯୨୦ରେ ଉତ୍କଳମଣି ପ୍ରଥମେ ଓଡ଼ିଶାରେ କଂଗ୍ରେସ୍ ଦଳ ଗଢ଼ିବା ଆରମ୍ଭ କଲେ । ୩୦-୮-୧୯୨୦ରେ ଗଢ଼ା ହେଲା ଓଡ଼ିଶାର ପ୍ରଥମ କଂଗ୍ରେସ କମିଟି,

—ସେ ପୁରୀ ଜିଲା କଂଗ୍ରେସ୍ କମିଟି, ଉତ୍କଳମଣି ତା ସଭାପତି ହେଲେ । ସେ କଂଗ୍ରେସ୍‌ରେ ଯୋଗଦେଲେ, ସେଥିପରେ ଅନ୍ୟମାନେ, ତାଙ୍କ ଭିତରେ ନବବାବୁ, ଓ ମହତାବ୍ ।

୪-୯-୧୯୨୦ରେ କଲିକତାରେ ଭାରତୀୟ କଂଗ୍ରେସର ବିଶେଷ ଅଧିବେଶନ ବସିଲା । ଓଡ଼ିଶାରୁ ଉତ୍କଳମଣି, ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ ଦାସ, ଶ୍ରୀ ହରେକୃଷ୍ଣ ମହତାବ୍, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ଭାଗୀରଥୀ ମହାପାତ୍ର, ଶ୍ରୀ ଯଦୁମଣି ମଙ୍ଗରାଜ, ଶ୍ରୀ ରାଜକୃଷ୍ଣ ବୋଷ୍ ଆଦି ଗଲେ । କଲିକତା କଂଗ୍ରେସ୍‌ରେ ଗୋଟିଏ ଐତିହାସିକ ପ୍ରସ୍ତାବ ମହାତ୍ମା ଗାନ୍ଧୀ ଦେଲେ ଓ ତା ଗୃହୀତ ହେଲା, ତାର ସାର କଥା ହେଲା, —ଭାରତ ସ୍ୱରାଜ୍ୟ ଚାହେଁ, ଗାନ୍ଧୀଜି ଯେଉଁ 'କ୍ରମବର୍ଦ୍ଧମାନ ଅହିଂସ ଅସହଯୋଗ' ପନ୍ଥା ଆରମ୍ଭ କରିଛନ୍ତି ଭାରତର ଜନତା ସେହି ପନ୍ଥାକୁ ସେଥିପାଇଁ ଗ୍ରହଣ କରିବେ । ସେଠୁ ଫେରି ଉତ୍କଳମଣି କଂଗ୍ରେସ୍ ପ୍ରଚାରରେ ଲଗିଲେ । ସତ୍ୟାଗ୍ରହ ହେବ, ଅସହଯୋଗ ଆନ୍ଦୋଳନ ହେବ, ସେହି ଉପାୟରେ ଇଂରେଜ ସରକାର ସଙ୍ଗେ ଲଢ଼ି ସ୍ୱରାଜ୍ୟ ଆସିବ । ଚାରିଆଡ଼େ ଆଶା, ଉତ୍ତେଜନା ।

ଆଉ ୪।୫ ମାସ ପରେ ଗୋପବାବୁ ଇସ୍ତଫା ଦେଲେ । ଓଡ଼ିଶାରେ କଂଗ୍ରେସ୍ ଆନ୍ଦୋଳନର ଆରମ୍ଭ ବେଳ ସେ !

## ଚାରି

ଗୋପବାବୁ ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଲେଖିଛନ୍ତି :—"ଜୀବନରେ ସାତ୍ତ୍ୱିକ ସୁଖ ଭୋଗ କରିବାର ବାସନା ବଳବତୀ ହେଉଥିଲା । ସ୍ୱାଧୀନ କର୍ମକ୍ଷେତ୍ରରେ ପଶି କପାଳ ପରୀକ୍ଷା କରିବାପାଇଁ ତହିଁ ଠାଏ ମନ୍ଦୋ ସ୍ଥିର କରି ପକାଇଲି ।"

ତାପରେ, ୧୯୨୧ ଜାନୁଆରି ବା ଫେବୃଆରି ହେବ, ଇସ୍ତଫାପତ୍ର ପଠାଇଦେଲେ, ସେଥିରେ ମାତ୍ର ଗୋଟିଏ ମୋଟେ ଧାଡ଼ି, —"ସ୍କୁଲରେ ମଣିଷର ବିକାଶର ସ୍ଥାନ ନାହିଁ ।"

ହୁଲସ୍ଥୂଲ୍ ପଡ଼ିଗଲା, ଓଡ଼ିଶାରେ, ଭାରତରେ ସବୁ ଖବର କାଗଜରେ ବାହାରିଲା । ଲୋକେ ଧାଇଁ ଆସିଲେ, ବନ୍ଧୁସ୍ୱଜନ ମର୍ମାହତ ହେଲେ, ଆସିଲେ ପଚାରିବାକୁ, ଆସିଲେ ଆନ୍ଦୋଳନରେ ମିଶିଥିବା ଲୋକେ ସମ୍ବର୍ଦ୍ଧନା ଜଣାଇବାକୁ, ଘାଟରେ ହାଟରେ ସେହି କଥା, —"ଗୋପବାବୁ ଇସ୍ତଫା ଦେଲେ ।"

## ଆଗ ଗଲେ ଉତ୍କଳମଣିଙ୍କ ପାଖକୁ

ଆଗ ଗଲେ ଉତ୍କଳମଣିଙ୍କ ପାଖକୁ ସତ୍ୟବାଦୀ, ଧୋତିଟିଏ ପିନ୍ଧିଥାନ୍ତି, ଦେହରେ କାମିଜ୍ ନାହିଁ, ଚଦର ଖଣ୍ଡିଏ, ସଙ୍ଗରେ ୩।୪ ବର୍ଷର ଝିଅ, ଚୂନି (ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀ) । ପୂଜ୍ୟ ଆଚାର୍ଯ୍ୟ ହରିହର ବି ସେଠି ଥିଲେ, ସେ ଏ ବିବରଣୀ ଦେଇଛନ୍ତି, ସେ ହେଲେ ଗୋପବାବୁଙ୍କ ବଡ଼ଭାଇ ପରି, 'ହରି ଭାଇନା', ଆଜୀବନ ସହକର୍ମୀ, ଭକ୍ତଭାଜନ ଅନ୍ତରଙ୍ଗ ବନ୍ଧୁ । ପଛେ ତାଙ୍କର ଆଗରେ ଗୋପବାବୁ ଆଖି ବୁଜିଲେ, ସେ ବି ସେହି ଯୋଗୁଆ ସାହି ଆଶ୍ରମରେ ରମା ଦେବୀଙ୍କ ପାଖେ ରହିଲେ ଶେଷ ଜୀବନରେ, ସେଠି ଥାଇ ସେପୁରକୁ ଗଲେ ।

୧୯୨୧ରେ ଯାଇ ସତ୍ୟବାଦୀରେ ଗୋପବାବୁ ଆଚାର୍ଯ୍ୟ ମହାଶୟ ରହୁଥିବା ବଖରାଟିରେ ତାଙ୍କରି ସଙ୍ଗେ ରହିଲେ । ଦୁଇଦିନ ଥିଲେ । ଉତ୍କଳମଣିଙ୍କ ସଙ୍ଗେ ବହୁତ କଥାଭାଷା ହେଲେ ।

ପୂଜ୍ୟ ୰ ଉତ୍କଳମଣି ଗୋପବନ୍ଧୁ ଦାସ ପଚାରିଲେ, "ଆପଣ ଆମ ଭିତରକୁ ଆସନ୍ତୁ, କିଛି କାମ କରିବା ।" ଗୋପବାବୁ କହିଲେ, "ମୁଁ ତ ବାହାରିଲି । କିନ୍ତୁ ମୁଁ ଯେତେବେଳଯାଏ ନିଜ ପରିବାରକୁ ଏସବୁ କାମ କରିବାପାଇଁ ବାହାର କରି ନ ପାରିଛି, ମୋର ଏକୁଟିଆ ଆସିବାର କିଛି ମୂଲ୍ୟ ନାହିଁ ।"

ତାପରେ ସେ ଫେରିଆସି କଂଗ୍ରେସରେ ଯୋଗଦେଲେ । ବିଲାତି ଲୁଗା ଛାଡ଼ିଲେ, ଖଦଡ଼ ପିନ୍ଧିଲେ, ପୋଷାକସବୁ ପୋଡ଼ିଦେଲେ । ଚରଖା, ତାକୁଡ଼ି ଧରିଲେ, ସୂତା କାଟିଲେ । ଧୂଆଁ, ବିଳାସବ୍ୟସନ, ଛାଡ଼ିଲେ । ଆମିଷ ଛାଡ଼ିଲେ । ଦାମୀ ଖାଦ୍ୟ ଛାଡ଼ି ବଗଡ଼ା ଚାଉଳର ଭାତ, ବିନା ଘିଅ ତେଲ ମସଲାରେ ସିଝା ପରିବା ଖାଇଲେ, ସାଧାରଣ ଗରିବ ଲୋକ ପରି ଚଳିଲେ, ଦେହ ମେହେନତ୍ କଲେ । ଗାନ୍ଧୀଜୀଙ୍କ ନିର୍ଦ୍ଦେଶ ଅନୁସାରେ ଜୀବନ ଗଢ଼ିବାକୁ ଚେଷ୍ଟା କଲେ । ପୁଅ

ଝିଅଙ୍କୁ ସେହିପରି ବଢ଼ାଇଲେ । ରମା ଦେବୀଙ୍କୁ ପ୍ରଭାବିତ କଲେ, ସେ ବି ବଦଳିଗଲେ, କାଳକ୍ରମେ ଖଦଡ଼ ଶାଢ଼ୀ ପିନ୍ଧିଲେ ।

ସେତେବେଳକୁ କଂଗ୍ରେସ୍ ଅଫିସ୍ ଥାଏ କଟକରେ ସାହେବ୍‌ଜାଦା ବଜାରରେ 'ସ୍ୱରାଜ୍ୟାଶ୍ରମ' ଘରେ । ଆଗେ ଘରଟି ଥିଲା କଟକ ଜିଲ୍ଲା ଦୀକ୍ଷିତ ପଡ଼ାର ହରାକର ଦାସଙ୍କର, କାଳକ୍ରମେ ସେ ଘରେ ପୂଜ୍ୟ ୰ ଗୋପବାବୁଙ୍କ ବାପା ସପରିବାର ରହୁଥିଲେ ଓ ଗୋପବାବୁ ସେ ଘରେ ଜନ୍ମ ହୋଇଥିଲେ । ପଛେ ସେ ଘରେ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ରହୁଥିଲେ, ସେ ଗଲାପରେ ସେଠି ସାକ୍ଷୀଗୋପାଳର କେତେଜଣ ଥିଲେ, ଉତ୍କଳମଣି କଟକ ଆସିଲେ ସେଠି ବସା କରନ୍ତି, ତାପରେ ସେ ହେଲା "ସ୍ୱରାଜ୍ୟାଶ୍ରମ", ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ କର୍ମକେନ୍ଦ୍ର ।

୧୯୨୧ରେ ସେ କଟକ ଜିଲ୍ଲା କଂଗ୍ରେସ କମିଟି ସମ୍ପାଦକ ହେଲେ ।

**୧୯୨୧ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଗଠନ, —ତା'ର ପ୍ରଥମ ସଭାପତି ଉତ୍କଳମଣି, ସଭ୍ୟ ଗୋପବାବୁ**

ସେହି ୧୯୨୧ରେ ଓଡ଼ିଶାରେ ପ୍ରଥମ ଥର 'ଉତ୍କଳ ପ୍ରାଦେଶିକ କଂଗ୍ରେସ୍ କମିଟି' ଗଢ଼ା ହେଲା । ସଭାପତି ହେଲେ ଉତ୍କଳମଣି ଗୋପବନ୍ଧୁ ଦାସ, ଉପସଭାପତି ଡାକ୍ତର ଏକାମ୍ ରସୁଲ୍, ସମ୍ପାଦକ ହେଲେ ଶ୍ରୀ ଭାଗୀରଥୀ ମହାପାତ୍ର ଓ ଶ୍ରୀ ବ୍ରଜବନ୍ଧୁ ଦାସ, ଦହେଁ ଆଡ଼୍‌ଭୋକେଟ୍ । ସେହିବର୍ଷ (ପ୍ରଥମ ଥର) ଓଡ଼ିଶାରୁ ଅଖିଳ ଭାରତ କଂଗ୍ରେସ୍ କମିଟିକୁ ସଭ୍ୟ ବଛା ହେଲେ, ୧୨ ଜଣ ସଭ୍ୟ, —ସର୍ବଶ୍ରୀ ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ଭାଗୀରଥୀ ମହାପାତ୍ର, ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ, ଜଗବନ୍ଧୁ ସିଂହ, ନିରଞ୍ଜନ ପଟ୍ଟନାୟକ (ଗଞ୍ଜାମ), ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ, ନୀଳକଣ୍ଠ ଦାସ ଚୌଧୁରୀ, ବ୍ରଜମୋହନ ପଣ୍ଡା (ସମ୍ବଲପୁର), ଯାମିନୀକାନ୍ତ ବିଶ୍ୱାସ, ଧରଣୀଧର ମିଶ୍ର ।

ଗୋପବାବୁଙ୍କ ଦାୟିତ୍ୱ ପଡ଼ିଆସିଲା, ସେ ଗସ୍ତ କରି କଂଗ୍ରେସ୍ ପ୍ରଚାର ଓ ସଂଗଠନ ବଢ଼ାଇବେ, ଅଫିସ୍ କାମ ଚଳାଇବେ, କଂଗ୍ରେସ୍ ସଂସ୍ଥା ପରିଚାଳନା କରିବେ ।

୨୪-୩-୧୯୨୧ରେ କାଠଯୋଡ଼ି ନଦୀବାଲିରେ ବିରାଟ ସଭା ହେଲା, ମହାତ୍ମା ଗାନ୍ଧୀ ଭାଷଣ ଦେଲେ । ଦେଶ କାମ ପାଇଁ ସେ ସ୍ତ୍ରୀଲୋକମାନଙ୍କୁ ଗହଣା ଓହ୍ଲାଇ ପକାଇ ଦେଇ ଦେବାକୁ କହିଲେ । ରମା ଦେବୀ ଦେଇ ଦେଲେ । ସେହି ଦିନଠୁ ଗୋପବାବୁଙ୍କ ପରିବାରରେ କେହି ଗହଣା ପିନ୍ଧନ୍ତି ନାହିଁ ।

ଗୃହକୁ ଫେରିଲେ । ନିଜ ଅନ୍ତର ଭିତରେ ମୁକ୍ତିର ଆନନ୍ଦ, ଉଚ୍ଛୁଳା ମାନବ-ପ୍ରୀତି, ମୁଁ ଆଡ଼େ ଚାହିଁଲେ ସହସ୍ରେ ହାତ ସ୍ନେହରେ ଲମ୍ବି ଆସୁଛି, ପୁଣି ମାଡ଼ି ପଡ଼ୁଛି, ତର ସହୁ ନାହିଁ, କରିବାକୁ କେତେ କାମ ! କି ବିଶାଳ କର୍ମକ୍ଷେତ୍ର !

ସେ ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଲେଖିଛନ୍ତି :—

"ଆତ୍ମଜୀବନୀ"ରୁ

"ଗୃହକୁ ତ ଫେରିଦେଲି । ମାତ୍ର କଂଗ୍ରେସ୍‌ରେ ପଶି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାର ମାସେ ଖଣ୍ଡେ ବିତି ଯାଇଥିଲା ।

ଚଢ଼େଇଟିକୁ କିଛିଦିନ ପିଞ୍ଜରାରେ ରଖି ହଠାତ୍ ଛାଡ଼ି ଦେଲାକ୍ଷଣି ତାକୁ ମୁକ୍ତ ସ୍ୱାଧୀନତାଟା ଯେମିତି ଟିକିଏ ଅଡ଼ୁଆ ଅଡ଼ୁଆ ଲାଗେ ସେମିତି ଅବସ୍ଥା ମୋର ହୋଇଥିଲା ।

ଯାହାହେଉ, ଦୁଇଟି କାମରେ କଂଗ୍ରେସ୍ ଅନୁଷ୍ଠାନକୁ ମୋଠାରୁ କିଛି ସାହାଯ୍ୟ ମିଳିବ ବୋଲି ସହକର୍ମୀମାନେ ଆଶା କରୁଥିଲେ । ଗୋଟିଏ ତ ମୋର ଗସ୍ତ କରିବାର କ୍ଷମତା, ଅନ୍ୟଟି ଅଫିସ୍ କାମ ଚଲାଇବା ଓ ଗୋଟିଏ ସଂସ୍ଥା ପରିଚାଳନା କରିବା ।

କଂଗ୍ରେସ୍ କାମ

ଏ ଦୁଇଟି କାମରେ ଯତସାମାନ୍ୟ ପାରଦର୍ଶିତା ମୁଁ ମୋର ଅଳ୍ପ କେତେବର୍ଷ ସରକାରୀ ଚାକିରିରୁ ଲାଭ କରିଥିଲି । ଯେତେବେଳେ ଯେଉଁ କାମଟି ଭଲ ଜଣାପଡ଼େ ଓ ହାତକୁ ନିଆଯାଏ, ସେଥିରେ ନିଷ୍ଠାପର ଭାବେ ଲାଗି ସେ କାମକୁ ତୁଲାଇଥିଲେ, ପରେ ସେ କାମ ଅନିଷ୍ଟପୂର୍ଣ୍ଣ ଜଣାପଡ଼ିଲେ ଓ ତାକୁ ଛାଡ଼ିଦେଲେ ମଧ୍ୟ ଯେତିକି ଶ୍ରମ ନିଷ୍ଠାର ସହ କରାଯାଇଥାଏ ତାହା ବ୍ୟର୍ଥ ହୁଏ ନାହିଁ, ବରଂ ଭବିଷ୍ୟତରେ ଯେତେବେଳେ ମଣିଷ ଆଗକୁ ପାଦେ ଗୋଡ଼ ବଢ଼ାଏ, ସେତେବେଳେ ସେ ଅଭିଜ୍ଞତା ବହୁତ କାମରେ ଲାଗେ ।

ଅଫିସ୍ କାମର ଦାୟିତ୍ୱ ମୁଣ୍ଡାଇବା ପୂର୍ବରୁ ପ୍ରଥମେ ମୋ ଭଉଣୀ ତଥା ଜାତୀୟ କାର୍ଯ୍ୟକ୍ଷେତ୍ରରେ "ଅଗ୍ରଜ" ଭାଇବାବୁଙ୍କ* ସଙ୍ଗେ ଅନେକ ଗାଁଗଣ୍ଡା ଅଞ୍ଚଳରେ ମଫସଲ ଗସ୍ତ କରିଥିଲି । ଦିନ ଭିତରେ ୩ ଜାଗାରେ ସଭାସମିତି କରି ସେଥିରେ ବକ୍ତୃତା ଦେଉଥିବାର ମୋର ମନେପଡ଼େ । ସେତେବେଳଯାଏ ସତ୍ୟାଗ୍ରହର ମର୍ମ ଠିକ୍

* ଭାଇବାବୁ—ଶ୍ରୀ ଭାଗୀରଥୀ ମହାପାତ୍ର ଏମ୍. ଏ., ବି. ଏଲ୍. ଓଡ଼ିଶାର ଜଣେ ଖ୍ୟାତନାମା କଂଗ୍ରେସ୍ ନେତା । ଶ୍ରୀମତୀ ସରଳା ଦେବୀ ତାଙ୍କ ସ୍ତ୍ରୀ ।

ଠିକ୍ ବୁଝି ନ ଥିଲି, ଅସହଯୋଗଟା କଣ ତା ନିଜେ ବେଶ୍ ଉପଲବ୍ଧି କରିଥିଲି ଏବଂ ଆମର ଦାସ ମନୋଭାବଟା ଯେ ଆମର ଦୁର୍ଦ୍ଦଶାର ପ୍ରଧାନ କାରଣ ସେଇଟା ଅଙ୍ଗେ ଲିଭାଇଥିବାରୁ, ଅସହଯୋଗ କରିବା କାହିଁକି ଦରକାର ସେ ବିଷୟ ଲୋକଙ୍କୁ ବେଶ୍ ବୁଝାଇ ପାରୁଥିଲି । ଏବେ ପୁରୁଣା କଥାସବୁ ଭାବିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ, ଯେ ମୁଁ ସ୍କୁଲ୍, କଲେଜ୍ ଜୀବନରେ ବା ଓକିଲାତି କାଳ ଭିତରେ ବକ୍ତୃତା କ୍ୱଚିତ୍ ଦେଇଛି, ବରଂ ବକ୍ତୃତା ଦେବାକୁ ଯାହାର ଏକରକମ୍ ଗୋଟେ ଆତଙ୍କ ଥିଲା, ସେହି ମୁଁ କେମିତି ଏତେକଥା ସାଧାରଣ ଲୋକଙ୍କ ଆଗରେ କହିପାରିଥିଲି ଓ ଏବେ ମଧ୍ୟ କହିପାରୁଛି, କାରଣ ତ ଏବେ ସ୍ପଷ୍ଟ ବୁଝୁଛି "ଗୋଟାଏ ଦୃଷ୍ଟିରୁ ଦେଖିଲେ ଏଟା ମୋର ସ୍ପଷ୍ଟ ଅନୁଭୂତ ଯେ ସାହସ କରି ଗୋଟେ କାମରେ ପଶିଗଲେ ପ୍ରଥମେ ପ୍ରଥମେ ଯୋଉ ଅଡୁଆ ଲାଗୁଥାଏ, ତାହା ତୁଟିଯାଏ; ବାଟ ଆପଣା ମନକୁ ଦିଶିଯାଏ । ଦ୍ୱିତୀୟତଃ ଓ ପ୍ରଧାନତଃ ଏଟା ମୋର ବିଶ୍ୱାସ ଜନ୍ମି ଯାଇଛି । ଦରକାରବେଳେ ଭଗବାନ୍ ଏଇ ସାହସ ଦେଇଦିଅନ୍ତି ଓ ମଣିଷକୁ ତାଙ୍କ ନିମିତ୍ତ ମାଧ କରେଇ ନେଇ ଯାଆନ୍ତି ।"

## କାହିଁକି ପ୍ରଥମ କର୍ମକ୍ଷେତ୍ର ପାଇଁ ଜଗତସିଂପୁରକୁ ବାଛିଲେ

ଆଗ ତାଙ୍କ କର୍ମକ୍ଷେତ୍ର ହେଲା ଜଗତସିଂପୁର କାହିଁକି ହେଲା ସେ ବିଷୟରେ ସେ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଲେଖିଛନ୍ତି (ପୂର୍ବାନୁବୃତ୍ତି ପରେ)

"ଏହି ସମୟରେ ଜଗତ୍‌ସିଂପୁରଠାରେ ଅସହଯୋଗ ପ୍ରଚାର ଓ ପ୍ରସାର ପ୍ରତି ମୋର ବେଶୀ ସମୟ ଓ ଧ୍ୟାନ ଦେଉଥିଲି । କାହିଁକି ଯେ ଜଗତ୍‌ସିଂପୁରଟା ପ୍ରତି ଖାସ୍ କରି ମୁଁ ଏତେ ଆକୃଷ୍ଟ ହୋଇଥିଲି ତାର କାରଣ ସ୍ପଷ୍ଟ କରି କହିପାରିବି ନାହିଁ । ତେବେ ଭାଗୁବାବୁ ଓକିଲାତି ଛାଡ଼ିଦେଇ ଓ ଅସହଯୋଗ ଆନ୍ଦୋଳନରେ ଦାସେ ଆପଣଙ୍କ ଜଣେ ପ୍ରଧାନ ସହକାରୀ ହୋଇଥିବାରୁ ଓ ତାଙ୍କର ଜଗତ୍‌ସିଂପୁର ପ୍ରତି ବେଶୀ ମମତା ଥିବାରୁ ଜଗତ୍‌ସିଂପୁର ପ୍ରତି ସମସ୍ତଙ୍କର ବିଶେଷ ନଜର ପଡ଼ିଥିଲା । ତା ଛଡ଼ା ଭାଗୁବାବୁ ମଧ୍ୟ ସେଠାରେ ମାଇନର ସ୍କୁଲଟିକୁ ଜାତୀୟ ବିଦ୍ୟାଳୟ କରିବାକୁ ଉଦ୍ୟମ ଆରମ୍ଭ କରିଦେଇଥିଲେ । ମୋର ଜନ୍ମସ୍ଥାନ ଜଗତ୍‌ସିଂପୁର ନ ହୋଇଥିଲେ ମଧ୍ୟ ପୂର୍ବପୁରୁଷଙ୍କର ବାସସ୍ଥାନ ଓ ବାପାଙ୍କର ଜନ୍ମସ୍ଥାନ ଥିବାରୁ ମୋର ସେଥିପ୍ରତି ଅଗରୁ ଟିକିଏ ମମତା ଥିଲା—ଅର୍ଥାତ୍ ଜଗତ୍‌ସିଂପୁରର ଉନ୍ନତି ପାଇଁ କିଛି କରିବି ବୋଲି ଅନେକ ସମୟରେ ଭାବିଥିଲି, —ଏଟା ବୋଧହୁଏ ହେଇ ଇଂରାଜୀ ପ୍ରବାଦରେ "Charity begins at home" ଯେତିକି ସତ୍ୟ ଅଛି ତାହାର ସ୍ୱାଭାବିକ ପ୍ରଭାବ ଜଗତ୍‌ସିଂପୁର । ଆମ ଦୁଇଜଣଙ୍କ ଦେଖାଦେଖି ପଢ଼ିଆରୀ ମଧ୍ୟ ଅସହଯୋଗ ଆନ୍ଦୋଳନ କରି ଓକିଲାତି ଛାଡ଼ିଲେ ଓ ମାଇନର ବିଦ୍ୟାଳୟଟି ଜାତୀୟ

ହେବା ସଙ୍ଗେ କଣ୍ଠୋଇବାବୁ ମଧ୍ୟ ଏ ଆନ୍ଦୋଳନକୁ ଆସିଗଲେ । ତା ଛଡ଼ା ଏଇ ଥାନାରୁ ଆଉ କେତେଜଣ ଉଦୀୟମାନ ଯୁବକ ୰ ଦେବେନ୍ଦ୍ର ଓ ଦ୍ୱାରକା ଅସହଯୋଗ କରି ଆମ ସଙ୍ଗେ ଯୋଗ ଦେଇଥିଲେ ।

ଏହିସବୁ ଘଟଣାଚକ୍ରରୁ ପ୍ରଥମରୁ ଜଗତସିଂହପୁର ସହିତ ଜଡ଼ିତ ହୋଇ ଯାଇଥିଲି ଓ ମୋର ନୂତନ ଜୀବନର ପ୍ରଥମ କେତେବର୍ଷ ଜଗତ୍‌ସିଂହପୁର ଅଞ୍ଚଳରେ କଟିଥିଲା । ବାହାରେ ଅନ୍ୟ କାମ କରୁଥିଲେ ସୁଦ୍ଧା ମୋର ସମସ୍ତ କର୍ମର କେନ୍ଦ୍ର ଏହି ଜଗତ୍‌ସିଂହପୁର ଥିଲା ।

ଏଟା ସଙ୍କୀର୍ଣ୍ଣ ଜାତୀୟତା ହୋଇପାରେ । କିନ୍ତୁ ମଣିଷର କ୍ରମବିକାଶରେ ଘରୁ ସାହି ପଡ଼ିଶା, ପଡ଼ିଶାରୁ ଗାଆଁ, ଗାଆଁରୁ ଜାତି, ଜାତିରୁ ଦେଶ ଇତ୍ୟାଦି ଯେମିତି ସ୍ତର ଥାଏ, ସେମିତି ଏଥିରେ ମୋର ଯେ ଘଟିଥିଲା, ସେଥିରେ ମୋର ସନ୍ଦେହ ନାହିଁ ।

ତେବେ ମୋର ବିଶ୍ୱାସ ଓ ସେ ବିଶ୍ୱାସ ଅନୁଭୂତିରୁ ଦୃଢ଼ ହୋଇଛି, ପ୍ରତ୍ୟେକ କର୍ମୀର ପ୍ରଧାନ କର୍ମକେନ୍ଦ୍ର ତାର ନିଜର ଗାଆଁ ହେବା ଉଚିତ । ଅନ୍ତତଃ ସେଠୁ କର୍ମ ଆରମ୍ଭ ହେବା ଉଚିତ୍, —କାରଣ ସେଇଠାରେ ସେ ବେଶି ପରିଚିତ, ତାର ଦୋଷଗୁଣ ଲୋକେ ଭଲ ଜାଣନ୍ତି ଏବଂ ତାର ସେବାର ପରୀକ୍ଷା ସେଠାରେ ଭଲ ହୋଇଥାଏ । "ଗାଆଁ କନିଆଁ ସିଙ୍ଘାଣିନାକି ଏହି ଯେ ମନୋଭାବ, ତା ବିରୁଦ୍ଧରେ ତାକୁ କାମ କରିବାକୁ ପଡ଼େ ଓ ନିଜର ନିଃସ୍ୱାର୍ଥତା ପ୍ରମାଣ କରିବାରେ ସେ ମିଥ୍ୟାଚାର କରିପାରେ ନାହିଁ । କାରଣ ତାର ସବୁ ହାଲ୍ ତାର ଗାଆଁ ଲୋକଙ୍କୁ ସବୁ ଜଣା ।

ମୋର ଜଗତ୍‌ସିଂହପୁର ବାଛି ନେବାବେଳେ ଏ ଚିନ୍ତାଧାରା ସ୍ପଷ୍ଟ ମନରେ ନ ଥିଲେ ଏତିକି ମୋଟାମୋଟି ଥିଲା ଯେ ଗୋଟିଏ ଗାଆଁକୁ କର୍ମକେନ୍ଦ୍ର କରିବାକୁ ହେବ । ସହରଟା କରିପିବ ନାହିଁ, ଯଦ୍ୟପି ସହର ଛଡ଼ା ଅନ୍ୟ ଗାଆଁ ସହ ମୋର କୌଣସି ସମ୍ପର୍କ ଜନ୍ମାବଧି ନ ଥିଲା, ସେଥିପାଇଁ ମୁଁ ଅନ୍ୟ ଯେ କୌଣସି ଗାଆଁ ବାଛି ନେଇପାରିଥାନ୍ତି । କିନ୍ତୁ ଉପରୋକ୍ତ ଆକର୍ଷଣଗୁଡ଼ିକ ମୋତେ ଜଗତସିଂହପୁରକୁ ଟାଣି ନେଲା ଓ ଅନ୍ୟଆଡ଼େ ପ୍ରଚାର ଓ ଗସ୍ତ କରୁଥିଲେ ସୁଦ୍ଧା, କଟକରେ କଂଗ୍ରେସ କାର୍ଯ୍ୟର ଖବର ନେଉଥିଲେ ସୁଦ୍ଧା, ଜଗତ୍‌ସିଂହପୁରଠାରେ ବେଶି ସମୟ କଟାଉଥିଲି ଓ ସେଠା କାମରେ ଆନନ୍ଦ ଅନୁଭବ କରୁଥିଲି ।"

ଏତିକରୁ ସ୍ପଷ୍ଟ ବାରି ହୋଇପଡ଼ିବ ଯେ ଗୃହକର୍ମ ଛାଡ଼ି ଜାତୀୟ ଆନ୍ଦୋଳନରେ ଯୋଗଦେବା ସମୟରୁ ହିଁ ପୂଜ୍ୟ ଗୋପବାବୁଙ୍କର ମୌଳିକ ବିଚାର ଓ ମୌଳିକ ଦୃଷ୍ଟିଭଙ୍ଗୀ ତାଙ୍କୁ ବାଟ କଢ଼ାଇଥିଲା । ସେ ନାଁ ତୋଳି ନ ଥିଲେ, ସେଠାକୁ ଯାଇ

ଘଟିପାରିବା ଭଳି ଆଶିଥିଲେ । କାମ କିଛି ଖୋଜୁ ନ ଥିଲେ, ସେ କରିବାକୁ ଚାହୁଁଥିଲେ ନିଜ କାମ, ସ୍ଥାୟୀ କାମ । ସେ କାମ ଆରମ୍ଭ ହେବ ଗାଁ ଗହଳିରୁ, ଦେଶର ସାଧାରଣ ମଣିଷଙ୍କ ଚେତନା ସ୍ତରରୁ । ମହାତ୍ମାଜୀଙ୍କ ସର୍ବୋଦୟ ବିଚାର ଏହିପରି ଥିଲା । ଏହାହିଁ ଭିତରେ ଲୁଚିଥିଲା ତାଙ୍କ ଆନ୍ଦୋଳନର ବିରାଟ ଶକ୍ତି । ଏହା ପଛଆଡ଼େ ଥିଲା ଇତିହାସର ଅଭିଜ୍ଞତା, ସୂକ୍ଷ୍ମତମ ବିଚାର ।

## ଆତ୍ମଜୀବନୀ—ସେତେବେଳେ ତାଙ୍କ ମନୋଭାବ

ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ନିଜର ସେକାଳର ମନୋବୃତ୍ତିକୁ ଓ ନାନା ପ୍ରାରମ୍ଭିକ କାର୍ଯ୍ୟ ବୁଝାଇବାକୁ ଗୋପବାବୁ ଲେଖିଛନ୍ତି—(ଆତ୍ମଜୀବନୀର ପୂର୍ବାନୁବୃତ୍ତି) ଏହି ସମୟରେ ଗାନ୍ଧୀଜୀଙ୍କ ଆନ୍ଦୋଳନର ମୌଳିକ ନୀତି ଆଡ଼କୁ ମୋର ମନୋଭାବ କେଉଁଆଡ଼େ ଯାଇଥିଲା ତାହା ଜଣାଇଦେବା ଉଚିତ୍ । ଅସହଯୋଗ କରିବାର ଆବଶ୍ୟକତା ଭଲକରି ହୃଦୟଙ୍ଗମ କରିଥିଲେ ସୁଦ୍ଧା, ସ୍ୱରାଜ୍ୟପାଇଁ ସତ୍ୟାଗ୍ରହ କିପରି ଅମୋଘ ଅସ୍ତ୍ର ତା ଭଲ କରି ବୁଝି ନ ଥିଲି । ବଡ଼ ବଡ଼ ବକ୍ତୃତାମାନ ଯେ ଦେଉଥିଲି, ଏଥିରେ ବ୍ରିଟିସ୍ ସରକାର ପ୍ରତି ଅସନ୍ତୋଷ ଥିଲା ୧୨ ପଣ, ବାକି ୪ ପଣ ଥିଲା ଅସହଯୋଗର ଆବଶ୍ୟକତା, ମାତ୍ର ସତ୍ୟାଗ୍ରହ କ'ଣ ବା କିପରି ତାହା ଉଦ୍ଦେଶ୍ୟ ସାଧନରେ ସାହାଯ୍ୟ କରିବ ସେକଥା ବୁଝାଇବା ତ ଦୂରର କଥା, ନିଜେ ମଧ୍ୟ ବୁଝି ନ ଥିଲି । ଅଧିକନ୍ତୁ ଜେଲ୍‌ଯିବା ଡରଟା ମଧ୍ୟ ପୂରାପୂରି ଯାଇ ନ ଥିଲା । ଡରଟା ନିଜ ପାଇଁ ସେତେ ନ ଥିଲା, ବେଶି ଥିଲା ଆତ୍ମୀୟସ୍ୱଜନ ଓ ସମ୍ପତ୍ତି ଇତ୍ୟାଦି ପାଇଁ । ବକ୍ତୃତାରେ ରାଜଦ୍ରୋହସୂଚକ କଥା କହି ଯେତିକିଦୂର ନିଜକୁ ବିପଦଗ୍ରସ୍ତ କରିହୋଇପାରେ ସେତିକି କରୁଥିଲି । ନଚେତ୍ ପ୍ରତ୍ୟକ୍ଷ ଆଇନ୍ ଅମାନ୍ୟ କଲାବେଳେ କୌଣସି ଆକ୍ରମଣସୂଚକ ସତ୍ୟାଗ୍ରହ କରିବାକୁ ଆଦୌ ପ୍ରସ୍ତୁତ ନ ଥିଲି ।

ଅହମଦାବାଦ କଂଗ୍ରେସ୍‌କୁ ଯାଇ ସେଠୁ ଫେରି ଅବଶ୍ୟ ମନ କେତେକ ପରିବର୍ତ୍ତିତ ହୋଇଥିଲା ଓ ଯେତେବେଳେ ସ୍ୱେଚ୍ଛାସେବକ ସଂଗଠନ କଥା ପଡ଼ିଥିଲା ଓ ଗିରଫ ହେଲେ ତାହାପରେ କିଏ ହେବ, ସେତେବେଳେ ଅବଶ୍ୟ ମୋ ନାମଟା ୮।୧୦ ଜଣଙ୍କ ତଳେ ରଖିବାରେ ମୁଁ ଆପତ୍ତି କରି ନ ଥିଲି । କିନ୍ତୁ ଯେତେବେଳେ ଦାସେ ଆପଣେ ଓ ଭାଗୁବାବୁଙ୍କ ଗିରଫ ହେଲା ଓ ଯେଉଁଦିନ ଆଶ୍ରମ ପ୍ରଥମେ ଖାନ୍‌ତଲାସ ହେଲା, ସେତେବେଳେ ମୁଁ କଟକ ଜିଲ୍ଲା କଂଗ୍ରେସ ସମ୍ପାଦକ ଥିଲି ।

ସେତେବେଳେ ପ୍ରକୃତରେ ମୋର ମନ ଭିତରେ ଦୁର୍ବଳତା ଆସିଥିଲା—"ମୁଁ ଧରାହେଲେ ମୋର ପରିବାର କଣ କରିବେ ବା କହିବେ । ସେମାନେ ଏଥିରେ ବିବ୍ରତ ହେବେ ନାହିଁ ତ ?"

## ଗୋପବାବୁ—କଟକ ଜିଲା କଂଗ୍ରେସ୍ କମିଟି ସମ୍ପାଦକ

ଏହିପରି ମନରେ ଗୋଟିଏ କମ୍ବା ରଖି ଜେଲ୍‌କୁ ଯିବା ମଧ୍ୟ ସୁନ୍ଦର ହୋଇ ନ ଥାନ୍ତା, ଭଗବାନ ମଧ୍ୟ ତାହା ହିଁ କରିଥିଲେ । ଡାକ୍ତର ଏକରାମ୍ ଥିଲେ ଜିଲା କଂଗ୍ରେସ କମିଟି ସଭାପତି, ମୁଁ ଥିଲି ସମ୍ପାଦକ । "ମୁଁ ତ ସବୁ କରୁଥିଲି ତଥାପି ସେ ଧରା ହେଲେ, ଜେଲ୍ ଗଲେ, ମୁଁ ନିଷ୍କୃତି ପାଇଗଲି ।" ସତ୍ୟାଗ୍ରହ ପାଇଁ ମୁଁ ସେତେବେଳେ ପ୍ରସ୍ତୁତ ହୋଇପାରି ନ ଥିଲି, ଏହା ଅବଶ୍ୟ ସୁନ୍ଦର ନ ଥିଲା । ମାତ୍ର ତା ବୋଲି ମୋର ମନ ଖରାପ ହୋଇ ନ ଥିଲା । କାରଣ ସେତେବେଳେ "One step is enough for me" ଏହି ଧାରଣାର ବଶବର୍ତ୍ତୀ ହୋଇ ମୁଁ କାମରେ ଲାଗି ରହିଥିଲି ଏବଂ ଅଯାଚିତ ଭାବେ ଯଦି ଜେଲ୍ ଆସି ପଡ଼େ ଯିବି, ଏପରି ଭାବ ନେଇ ଚାଲିଥିଲି ।

ଏହାପରେ ଗାନ୍ଧୀଜୀଙ୍କର ବର୍ଦୋଲି କାର୍ଯ୍ୟକ୍ରମ । ହଠାତ୍ ଆଇନ ଅମାନ୍ୟ ପ୍ରସ୍ତାବ ବନ୍ଦ କରିଦେବା ଯୋଗୁଁ ଅନେକଙ୍କ ପ୍ରାଣରେ ନିରୁତ୍ସାହ ଓ ନୈରାଶ୍ୟ ଘୋଟି ଯାଇଥିଲା । ସେତେବେଳେ କେତେକ ଯୁବକ ସହକର୍ମୀ ପ୍ରକୃତରେ ମୁଣ୍ଡରେ ହାତଦେଇ ବସି ପଡ଼ିଥିଲେ, କିନ୍ତୁ ମୁଁ ଆଦୌ ନିରୁତ୍ସାହ ହୋଇ ନ ଥିଲି । ଏହାର କାରଣ, ସତକଥା, ମୁଁ ସତ୍ୟାଗ୍ରହର ସୌନ୍ଦର୍ଯ୍ୟ ଓ ଜୋର ସେ ପର୍ଯ୍ୟନ୍ତ ଉପଲବ୍ଧି କରି ନ ଥିଲି ଓ ଆଇନ୍ ଅମାନ୍ୟ ବନ୍ଦ ଦ୍ୱାରା କେମିତି ଯେ ହାତରୁ ଆସି ସ୍ୱରାଜ୍ୟଟା ଖସିଗଲା ତାହା ବୁଝିପାରୁ ନ ଥିଲି—ଅନ୍ତତଃ ଯେଉଁ ସହକର୍ମୀମାନେ ନିରାଶ ହୋଇ ପଡ଼ିଥିଲେ, ସେମାନେ ଏହିପରି ଭାବୁଥିଲେ । ବରଂ ସେତେବେଳେ ଯେ ଗଠନମୂଳକ କାର୍ଯ୍ୟ ହୋଇଥିଲା, ସେଥିରେ ମୋର ଆନନ୍ଦ ହୋଇଥିଲା । ମୋର ମନୋଭାବର ବିକାଶକ୍ରମ ଦେଖି ମୋର ଏଣିକି ପୂର୍ଣ୍ଣ ବିଶ୍ୱାସ ହୋଇଯାଇଛି ଯେ ଗାନ୍ଧୀଜୀଙ୍କ ଆନ୍ଦୋଳନରେ ୩ଟି ସୋପାନ ରହିଛି, ତାର ଯଥାର୍ଥ ସ୍ୱାଭାବିକକ୍ରମ ଏହିପରି : ଅସହଯୋଗ ମନୋଭାବ, ଗଠନମୂଳକ କାର୍ଯ୍ୟରେ ବଳ ସଞ୍ଚୟ ଓ ସତ୍ୟାଗ୍ରହରେ ଆତ୍ମବଳ ଦ୍ୱାରା ସେ ଶକ୍ତିକୁ ପ୍ରତିପକ୍ଷ ବିରୁଦ୍ଧରେ ପ୍ରୟୋଗ ।

ଗାନ୍ଧୀଜୀ ଧରାହେବା ସଙ୍ଗେ ସଙ୍ଗେ ଅନେକେ ମଉଳି ପଡ଼ିଲେ । କେତେ କେତେ ଗୁଡ଼ଗୁଡ଼ି ଦେଇ ବସି ପଡ଼ିଲେ । ଯେଉଁମାନେ ଆଇନ୍ ଅମାନ୍ୟ ବନ୍ଦ ହେଲା ବୋଲି ଦୁଃଖ କରୁଥିଲେ ସେମାନେ ଧୀରେ ବସିଗଲେ । ପ୍ରକୃତ ପରୀକ୍ଷାର ସମୟର ବେଳ ଆସିଗଲା ବୋଲି ମୋର ସେତେବେଳେ ମନେ ହୋଇଥିଲା ଏବଂ ୧୯୩୦ରେ ସତ୍ୟାଗ୍ରହରେ ଆତ୍ମବଳର ବେଦୀ ଉପରେ ଶେଷ ପରୀକ୍ଷାର ବେଳ ଆସିବା ସମୟରେ ମନୋଭାବ ଯେମିତି ହୋଇଥିଲା, ସେତେବେଳେ ସେବା କ୍ଷେତ୍ରରେ ପରୀକ୍ଷାର ବେଳ ଆସିଥିଲା ବୋଲି ମନେ ହୋଇଥିଲା ।

ଗାନ୍ଧୀଜୀଙ୍କ ଧରା ହେବାପରେ ଗଠନମୂଳକ କାମ ଉପରେ ଯେତେବେଳେ ଜୋର୍ ଦେବାକୁ ପଡ଼ିଥିଲା ସେତେବେଳେ ଅଳକାଶ୍ରମରେ ମୋର ଅଧିକାଂଶ ସମୟ କଟିଥିଲା ।

## ପାଞ୍ଚ

**ଅଳକାଶ୍ରମ :**

ସେ ହୋଇଥିଲା ସ୍ୱାଧୀନତା ଆନ୍ଦୋଳନ ଯୁଗରେ ୧୯[illegible]ରୁ ୧୯୩୬ ଭିତରେ ଓଡ଼ିଶାର ଅହିଂସା ମୁକ୍ତି-ଯୁଦ୍ଧର ଗୋଟିଏ ବଳିଷ୍ଠ ଦୁର୍ଗ, ଗୋଟିଏ ମହାନ୍ ଶକ୍ତି-ପୀଠ । ସେଠି 'ଜାତୀୟ ବିଦ୍ୟାଳୟ'ଟିଏ ଖୋଲା କରି ହୋଇଥିଲା, ସୂତାକଟା ଓ ବୁଣା କାର୍ଯ୍ୟ କରାଯାଉଥିଲା, ତହିଁରେ ଅନ୍ୟମାନଙ୍କୁ ତାଲିମ୍ ଦିଆଯାଉଥିଲା ଓ ଅଳକାଶ୍ରମକୁ କେନ୍ଦ୍ରକରି ଗୃହଆଡ଼େ ବ୍ୟାପକଭାବେ ତାର ପ୍ରସାର କରାଯାଉଥିଲା, ସେହି ସ୍ଥାନକୁ କେନ୍ଦ୍ର କରି ସେଠୁ ବହୁତ ଦୂରରେ ଦୂରରେ ଗାଁ ଗହଳି ଭିତରେ ଲୋକଙ୍କ ସଙ୍ଗେ ସମ୍ପର୍କ ବଢ଼ା ହେଉଥିଲା, ତାଙ୍କ ଭିତରେ ଅସହଯୋଗ ଆନ୍ଦୋଳନର ଓ ସତ୍ୟାଗ୍ରହର ବାର୍ତ୍ତା ପ୍ରଚାର କରାଯାଉଥିଲା, କର୍ମୀ ଗଢ଼ା ହେଉଥିଲେ, ନାନା ନୂଆ ବିଚାର, ନୂଆ ଆଦର୍ଶ ସେଠୁ ଗାଁ ଗହଳି ଭିତରେ ଭରା ହେଉଥିଲା, ଲୋକଙ୍କ ମନକୁ, ଚଳଣିକୁ, ସମାଜକୁ ନୂଆ ଭାବଧାରାରେ ପ୍ରଭାବିତ କରି ବଦଳା ଯାଉଥିଲା; ନେତାମାନଙ୍କ ଭିତରେ ସେଠି ନାନା ଆଲୋଚନା ହେଉଥିଲା, ନିଷ୍ପତ୍ତି ନିଆ ହେଉଥିଲା, ସେଠି ନାନା ରଚନାତ୍ମକ କାର୍ଯ୍ୟ ହେଉଥିଲା, ପୁଣି ଅହିଂସାମାର୍ଗରେ ନାନା ପରୀକ୍ଷାମୂଳକ ପ୍ରୟୋଗ କରାଯାଇ ଅଭିଜ୍ଞତା ଅର୍ଜନ କରାଯାଉଥିଲା । ଅଳକାଶ୍ରମ ଇତିହାସ ଗଢ଼ିଥିଲା ।

ଆଉ, ସେତେବେଳେ ଅଧିକାଂଶ ସମୟରେ ସେହି ହୋଇଥିଲା ପୂଜ୍ୟ ଗୋପବାବୁଙ୍କ ନିବାସସ୍ଥଳ, ତା'ପରେ ସପରିବାର ସେଠୁ ସେ ଉଠିଗଲେ ବରି ଆଶ୍ରମକୁ । ଗୃହିର ଗ୍ରାଡ଼ି ପାରମ୍ପରିକ ଗତାନୁଗତିକ ଜୀବନଧାରା ଛାଡ଼ି, ବୈନ୍ୟକ୍ଳେଶ ତ୍ୟାଗ ତପସ୍ୟାମୟ ବିପ୍ଳବୀର ଜୀବନ ବରଣକରି ସେ ଯେତେବେଳେ ସମଗ୍ର ପରିବାର ସହିତ ସତ୍ୟାଗ୍ରହ ଆନ୍ଦୋଳନରେ ଝାସ ଦେଲେ ସେତେବେଳେ ଅଳକାଶ୍ରମ ହିଁ ହେଲା ତାଙ୍କ ଜୀବନର ପ୍ରଧାନ କର୍ମକେନ୍ଦ୍ର ।

## ଜଗତ୍‌ସିଂପୁରର ଅବସ୍ଥିତି

ଜଗତ୍‌ସିଂପୁର କଟକରୁ ୨୮ ମାଇଲ ବାଟ । କଟକରୁ ସଡ଼କ ତ ଥିଲା, କିନ୍ତୁ ନିୟମିତ୍ଭାବେ ବସ୍ ଚାଲୁ ନ ଥିଲା । ଯିବା ଆସିବା ହେଉଥିଲା ଚାଲି ଚାଲି, ଶଗଡ଼ରେ, କିମ୍ବା ମାଛଗାଁ ନାଳରେ ହାତଟଣା ବୋଟ୍‌ରେ । ସେ ଅଞ୍ଚଳ ସେତେବେଳେ ଘୋର ମଫସଲ, ଜଗତ୍‌ସିଂପୁରରେ ଡାକ୍ତରଖାନା, ଥାନା, ଡାକଘର, କେନାଲ ଅଫିସ୍ ଆଉ କେତେଗୁଡ଼ିଏ ସରକାରୀ ଅଫିସ ଥିଲା, ଅଳ୍ପ ଦୋକାନ କେତୋଟି ଥିଲା ଓ ଗୋଟିଏ ବସ୍ତି ଥିଲା । କିନ୍ତୁ ସେ ଗୋଟିଏ ପେଣ୍ଠସ୍ଥଳ । ଲାଗି ଲାଗି ଆଖପାଖରେ ଅନେକ ଗାଁ । ସେଠୁ ପାଖେ ବାଲିକୁଦା ବାଟେ ସମୁଦ୍ରକୂଳକୁ ବାଟ, ପାଖେ ତର୍ତ୍ତୋଲ ଯିବାକୁ, ପାଖେ ଆଳପିଙ୍ଗଳ ବାଟେ ଦେବୀନଦୀ କୂଳକୁ ଓ ଧୋଇଆ ଅଞ୍ଚଳକୁ, ଆଉ ପାଖେ ସହଜେ ତ କଟକକୁ ।

## ତା'ର ପ୍ରାଚୀନ ଐତିହ୍ୟ

ଜଗତ୍‌ସିଂପୁରରେ ଯୋଡ଼ିଏ ପ୍ରସିଦ୍ଧ ଠାକୁର । ଗୋଟିଏ କସ୍ତୀଗଡ଼ର ଜଗନ୍ନାଥ, ଆଉ ଗୋଟିଏ ଗୃହଡ଼ାର ସୋମନାଥ । କଥିତ ଅଛି ଯେ ଏଠି ହରି ଓ ହର ଉଭୟ ଠାକୁର ଅଛନ୍ତି ବୋଲି ଏ ପ୍ରତନ୍ନୀଟିର ନାମ ହରିହରପୁର । ଏହା ଅଳକାନଦୀ କୂଳରେ । ଅଳକା କାଠଯୋଡ଼ିର ଗୋଟିଏ ଶାଖା, କାଳକ୍ରମେ ପୋତି ହୋଇପଡ଼ିଛି । ନଈଟି ସମୁଦ୍ରରେ ପଡ଼ୁଥିଲା ଓ ପୂର୍ବେ ଗମ୍ଭୀର ଥିଲା, ପୂର୍ବ ଗତିପଥ ବଦଳି ଯାଇଥିବ, ଆଖପାଖରେ ଭୂଗର୍ଭରୁ ଭଙ୍ଗା ଜାହାଜର ଅଂଶ ମିଳିଥିବାର ଶୁଣାଯାଏ । ହରିହରପୁରରେ ଓ ଆଖପାଖ ଅଞ୍ଚଳରେ ବହୁତ ତନ୍ତୀ ପରିବାରଙ୍କ ଘର । ଯେ କୋଟି, ବଡ଼ବାଟ, ନବାପାଟଣା, ତର୍ତ୍ତଙ୍ଗ, ଗୃହଡ଼ା, ଦେବୋଗ, ରସଲ୍‌ପୁର ଇତ୍ୟାଦି ମୌଜାରେ ବହୁତ ତନ୍ତୀ ଅଛନ୍ତି ଓ ବଡ଼ବାଟର ହାତବୁଣା ଲୁଗା ଏବେ ବି ପ୍ରସିଦ୍ଧ । ସମ୍ରାଟ୍ ଜାହାଙ୍ଗୀରଙ୍କ ରାଜତ୍ୱ କାଳରେ ଇଂଲଣ୍ଡର "ଇଷ୍ଟ-ଇଣ୍ଡିଆ କମ୍ପାନୀ" ଭାରତର ନାନା ସ୍ଥାନରେ ବାଣିଜ୍ୟ ବନ୍ଦର ଖୋଲିଥିଲେ । ଓଡ଼ିଶାରେ ପ୍ରଥମେ ବାଲେଶ୍ୱରରେ ଓ ହରିହରପୁରରେ ସେମାନେ ବାଣିଜ୍ୟ କୋଠି ବସାଇଥିଲେ ।

ବିଳଭରୁ ଲୁଣ ଆଣି ସେଠି ବିକି ତା ବଦଳରେ ତନ୍ତ୍ରୀମାନଙ୍କଠାରୁ ସୁନ୍ଦର ସୁନ୍ଦର ଲୁଗା ନେଉଥିଲେ । ଇଷ୍ଟ-ଇଣ୍ଡିଆ କମ୍ପାନୀର ଜଣେ କର୍ମଚାରୀ ବିଟନ୍ ସାହେବ ୧୬୩୩ରେ ଲେଖିଛନ୍ତି ଯେ ହରିହରପୁରଠାରୁ ୩୨୪ ମାଇଲ ଭିତରେ ଅତି ଅଳ୍ପରେ ୩° ହଜାର ତନ୍ତ୍ରୀ ରହୁଥିଲେ । ଅନେକେ ଭାବନ୍ତି, ସେ ହରିହରପୁର ଜଗତ୍‌ସିଂପୁରର ହରିହରପୁର, ଯଦିଓ ଅନ୍ୟମାନେ କହନ୍ତି ଯେ ସେ ହରିହରପୁର ବାଲେଶ୍ୱରରେ ।

## ଅଳକାଶ୍ରମର ଅବସ୍ଥିତି

ଜଗତସିଂପୁରର ମାଛଗାଁ କେନାଲର ଦକ୍ଷିଣପଟେ ଗୋଟିଏ ଖୁବ୍ ବଡ଼ ଆମ୍ବତୋଟା ଥିଲା ଓ ତାକୁ ଲାଗି କିଛି ଜମି ଥିଲା । ତୋଟାଟି ପୋତା ଅଳକା ନଈର ବାଆଁ ପାଖେ । ତାର ପଶ୍ଚିମକୁ ସୋମନାଥ ମନ୍ଦିର ଓ ଜଗତ୍‌ସିଂପୁରର ପ୍ରସିଦ୍ଧ "ସୋମନାଥ ହାଟ" ବା "ଗୁଣ୍ଡାର ହାଟ" । ହାଟ ଓ ତୋଟା ମଝିରେ ଉତ୍ତରକୁ ଆଳପିଙ୍ଗଳ ଯିବାକୁ ରାସ୍ତା ପଡ଼ିଛି । ହାଟ ଦିନ ବହୁ ଦୂରଦୂରାନ୍ତରୁ ଗାଁ ଲୋକେ ଆସି ହାଟପଡ଼ିଆରେ ଭିଡ଼ ହୁଅନ୍ତି । ଜଗତ୍‌ସିଂପୁରର ବିଖ୍ୟାତ ଜମିଦାର ବଂଶ ଗୁଣ୍ଡାର ମହାପାତ୍ର ପରିବାର । ଦେବାନ୍ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର ବ୍ରିଟିଶ୍ ସରକାରଙ୍କର ବିଶ୍ୱସ୍ତ ଓ ଅନୁଗତ ପୁଲିସ୍ କର୍ମଚାରୀ ଥିଲେ । ସେଥିପାଇଁ ଜଣାଶୁଣା ଥିଲେ, ସେ ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ହୋଇଥିଲେ । ସେହି ପରିବାରର ଆଉଜଣେ ବଡ଼ ଜମିଦାର ଥିଲେ ଦୁର୍ଗାଚରଣ ମହାପାତ୍ର । ସେତେବେଳେ କଟକ ଜିଲାର କଂଗ୍ରେସ ସଭାପତି ଓ କଂଗ୍ରେସର ପ୍ରସିଦ୍ଧ ନେତା ଶ୍ରୀ ଭାଗୀରଥୀ ମହାପାତ୍ର "(ଭାଗୁବାବୁ)" ତାଙ୍କର ପୁତ୍ର । ସୋମନାଥ ହାଟ ପାଖ ବଡ଼ ଆମ୍ବତୋଟାଟି ଓ ତାକୁ ଲାଗିଥିବା କିଛି ଜମି ତାଙ୍କର ପରିବାରର । ଆମ୍ବତୋଟା ଭିତରେ ଅଳକାଶ୍ରମ ଗଢ଼ା ହୋଇଥିଲା ।

## ଜାତୀୟ ବିଦ୍ୟାଳୟ

ଗୋପବାବୁ ଯେତେବେଳେ ଓକିଲାତି ଛାଡ଼ିଲେ, କଂଗ୍ରେସରେ ମିଶିଲେ ଓ କଟକରେ ନିଜଘରେ ରହି ଓଡ଼ିଶା କଂଗ୍ରେସର ପ୍ରାଣକେନ୍ଦ୍ର ସ୍ୱରାଜ୍ୟ ଆଶ୍ରମରେ ଅଫିସର ଦାୟିତ୍ୱ ନେଲେ, ପୁଣି ସଙ୍ଗେ ସଙ୍ଗେ ଗାଁ ଗହଳରେ ବୁଲି ବୁଲି ସଂଗଠନ ଓ ପ୍ରଚାରକାର୍ଯ୍ୟ କରିବାକୁ ଆରମ୍ଭ କଲେ, ସେତେବେଳେ ସେ ନିଷ୍ପତ୍ତି କଲେ ଯେ ସେ କୌଣସି ଗାଁରେ ରହି ଦେଶକାମ କରିବେ ଓ ସେଥିପାଇଁ ଜଗତସିଂପୁରକୁ ବାଛିଲେ । ଭାଗୁବାବୁଙ୍କ ସହିତ ପରାମର୍ଶ କଲେ ଓ ଭାଗୁବାବୁ ପୂର୍ଣ୍ଣ ସହାୟତା ଦେଲେ । ସେତେବେଳେ ଜଗତ୍‌ସିଂପୁରରେ ଗୋଟିଏ ମାଇନର ସ୍କୁଲ୍ ଥାଏ । ଆଗ ସ୍ଥିର ହେଲା ଯେ, ଜଗତସିଂପୁରରେ ଗୋଟିଏ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରାଯିବ । ତାହାହିଁ ହେଲା ଅଳକାଶ୍ରମ ପ୍ରତିଷ୍ଠାର ସୂତ୍ରପାତ ।

୧୯୨୧ ଜାନୁଆରୀ କିମ୍ବା ଫେବୃଆରୀରେ ଗୋପବାବୁ ଚାକିରି ଛାଡ଼ିଲେ, ମାର୍ଚ୍ଚ ଅପ୍ରେଲ୍ ବେଳକୁ ଶ୍ରୀ ଭାଗୀରଥି ମହାପାତ୍ରଙ୍କ ସହିତ ମିଶି 'ଜଗତ୍‌ସିଂପୁର ଜାତୀୟ ବିଦ୍ୟାଳୟ' ପାଇଁ ଆୟୋଜନ ଆରମ୍ଭ କରିଦେଲେ । ଜଗତ୍‌ସିଂପୁରରେ ସରକାରୀ ମାଇନର ସ୍କୁଲଟିଏ ଥିଲା, ହେଡ୍‌ମାଷ୍ଟର ଶ୍ରୀ କିଶୋରୀ ଚରଣ କାନନ୍‌ଗୋ । ସେ ଗୋପବାବୁଙ୍କର ସହପାଠୀ, ପରମବନ୍ଧୁ । ସେ ଚାକିରି ଛାଡ଼ି 'ଜଗତ୍‌ସିଂପୁର ଜାତୀୟ ବିଦ୍ୟାଳୟ'ରେ ଯୋଗଦେଲେ । ସେହିପରି ପଣ୍ଡିତ ହରେକୃଷ୍ଣ ପଡ଼ିଆରି, ସେ ଜଗତ୍‌ସିଂପୁରରେ ସରକାରୀ 'ଗୁରୁ ଟ୍ରେନିଂ' ସ୍କୁଲ୍‌ର ପ୍ରଧାନ ଶିକ୍ଷକ ଥିଲେ, ସେ ବି ଚାକିରି ଛାଡ଼ି ଜାତୀୟ ବିଦ୍ୟାଳୟରେ ଯୋଗଦେଲେ । ପଛେ ଏମାନେ ହେଲେ ବିଖ୍ୟାତ ଦେଶ-ସେବୀ । ଆଖି ଆଗରେ ଆଦର୍ଶ ଥିଲା ସତ୍ୟବାଦୀର 'ବନବିଦ୍ୟାଳୟ', ପ୍ରତିଷ୍ଠାତା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଓ ତାଙ୍କର ସହକର୍ମୀ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପଣ୍ଡିତ କୃପାସିନ୍ଧୁ ଆଦି । ଶ୍ରୀ ଦ୍ୱାରିକାନାଥ ମହାପାତ୍ର, ଶ୍ରୀ ଗୁଣନିଧି ସାହୁ, ଶ୍ରୀ କିଶୋରୀ ମୋହନ କାନନ୍‌ଗୋ ଆଦି ଅନ୍ୟାନ୍ୟ ଶିକ୍ଷକ ମିଳିଲେ । କଟକ ସ୍ୱରାଜ୍ୟ ଆଶ୍ରମରୁ ୫ ଜଣ କର୍ମୀ ଆସିଗଲେ,—ଶ୍ରୀ ବିଶ୍ୱନାଥ ନନ୍ଦ, ଶ୍ରୀ ରାମକୃଷ୍ଣ ନନ୍ଦ, ଶ୍ରୀ ସୁଦର୍ଶନ ପ୍ରହରାଜ, ଶ୍ରୀ କୃଷ୍ଣଚନ୍ଦ୍ର ପ୍ରଧାନ ଓ ଆଉ ଜଣେ । ଖଦୀ ତାଲିମ୍ ଦେବାକୁ ପୁରୀରୁ ଆସିଲେ ଶ୍ରୀ ଫକୀର ମିଶ୍ର । ସମୁଦାୟ ପ୍ରାୟ ୧୫ ଜଣ ଶିକ୍ଷକ ହେଲେ, କେତେକଜଣ ବି.ଏ. ପାଶ କରିଥାନ୍ତି ଆଉ କେତେଜଣ ଆଇ.ଏ. ପାଶ୍ କରିଥାନ୍ତି । ପରେ ଆସି ଯୋଗଦେଲେ ବାବାଜି ରାମଦାସ, ଶ୍ରୀ ଗୋକୁଳାନନ୍ଦ ମହାନ୍ତି, ଶ୍ରୀ ନୀଳମଣି ପ୍ରଧାନ, ଶ୍ରୀ ଉଦୟନାଥ ଷଡ଼ଙ୍ଗୀ, ଶ୍ରୀ ବିଶ୍ୱନାଥ ପଣ୍ଡା ଆଦି ବହୁ କର୍ମୀ ଓ ଛାତ୍ର । ଆରମ୍ଭରୁ ପ୍ରାୟ ୨୦୦ ଛାତ୍ର ମିଳିଗଲେ । ଘର ନ ଥାଏ, ଜଗତ୍‌ସିଂପୁରର ଶ୍ରୀ ହରି ସିଂହ ଓ ଶ୍ରୀ ପଞ୍ଚୁ ସିଂହଙ୍କର ଗୋଟିଏ ଘରେ ଜାତୀୟ ବିଦ୍ୟାଳୟଟି ଆରମ୍ଭ କରିଗଲା । ପଛେ ଆମ୍ବତୋଟା ଭିତରେ ଘରତୋଳା ହେଲା, ଝାଟିମାଟି କାନ୍ଥର ବଡ଼ ଚାଳଘରଟିଏ, ଯେପରି ତହିଁରେ ଜାତୀୟ ବିଦ୍ୟାଳୟର ୨୦୦ ଛାତ୍ର ରହିପାରିବେ, ଶିକ୍ଷକମାନେ ଓ ଅନ୍ୟାନ୍ୟ ନେତା ଓ କର୍ମୀମାନେ ରହିପାରିବେ, ସବୁ କ୍ଲାସ୍ ହୋଇପାରିବ, ଖଦୀ ସରଞ୍ଜାମ, ଅରଟ, ସୂତା, ନାନା ରଚନାତ୍ମକ କାର୍ଯ୍ୟ ପାଇଁ ସ୍ଥାନ ହେବ, ଲାଇବ୍ରେରୀ ରହିବ, ସବୁ କାମ ହେବ । ଗହଳ ଆମ୍ବତୋଟା, ପ୍ରକାଣ୍ଡ ଅନ୍ଧାର, ବାହାରୁ କିଛି ଦିଶିବ ନାହିଁ । ଟିକିଏ ଭିତରକୁ ଗଲେ ତୋଟା ମଝିରେ ସଫା ଜାଗା ଅରାଏ ଦିଶିବ, ସେଠି ଚତୁଷ୍କୋଣ ହୋଇ ଆଶ୍ରମ ଘର, ଚାରିଦାଣ୍ଡିଯାକ ବଡ଼ ବଡ଼ ବଖରା, ମଝିରେ ବଡ଼ ଅଗଣା । ରମଣୀୟ ପ୍ରାକୃତିକ ପରିବେଶ ।

'ଜଗତ୍‌ସିଂପୁର ଜାତୀୟ ବିଦ୍ୟାଳୟ' ଉଦ୍‌ଘାଟିତ ହୋଇଥିଲା ୧୯୨୧ ମେ' ୮ ତାରିଖରେ । ତାପରେ ସେ ନୂଆଘର 'ଅଳକାଶ୍ରମ'କୁ ଉଠିଗଲେ ।

‘ଅଲକାଶ୍ରମ’ ଉଦ୍‌ଘାଟିତ ହେଲା ୧୯୨୨ ଜାନୁଆରୀ-ଫେବୃଆରୀରେ ଶ୍ରୀପଞ୍ଚମୀ ଦିନ । ଉଦ୍‌ଘାଟନ କରିବାକୁ ଆସିଥିଲେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ।

ତାଙ୍କ ସଙ୍ଗେ ବହୁତ ଲୋକ ଆସିଥିଲେ, —ଓଡ଼ିଶାର ଜାତୀୟ ନେତାମାନେ, କଂଗ୍ରେସ୍ କର୍ମୀମାନେ, ବହୁ ବିଶିଷ୍ଟ ବ୍ୟକ୍ତି, ବିଶାଳ ଜନତା । ତାଙ୍କ ଭିତରେ ଥିଲେ ତ୍ୟାଗୀ କଂଗ୍ରେସ୍ ନେତା ଧର୍ମାନନ୍ଦ ପଟ୍ଟନାୟକ, କଟକର ବିଶିଷ୍ଟ ଓକିଲ, ଜାତୀୟକବି ବୀରକିଶୋର ଦାସ ଓ ପରେ ଚିଫ୍ ଜଷ୍ଟିସ୍ ମାନ୍ୟବର ବୀରକିଶୋର ରାୟଙ୍କ ଶ୍ୱଶୁର, ସ୍ୱନାମଧନ୍ୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ, ବୋଧପୁରର ଶ୍ରୀ ଶ୍ରୀଧର ମହାନ୍ତି, ସେକାଳର ଜଣେ ସ୍ୱଦେଶୀ କର୍ମୀ, କଲେଜ୍ ଛାଡ଼ି ସ୍ୱାଧୀନ ବ୍ୟବସାୟ କରୁଥିଲେ, ଉତ୍କଳମଣି ବାଲୁଗାଁ ଗଲେ ତାଙ୍କ ପାଖେ ରହନ୍ତି, ଓକିଲ ଓ କୁଟୀରଶିଳ୍ପ ଉଦ୍ୟୋକ୍ତା, କବି ଭିକାରୀ ଚରଣ ପଟ୍ଟନାୟକ (ଏଣ୍ଡି ଗୃହ, ଅଭଙ୍ଗା କଣ୍ଢେଇ ପ୍ରବର୍ତ୍ତକ), ଓକିଲ ଶ୍ରୀ ନିଶାମଣି ଦାସ, ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ, ଦେଶସେବୀ କଂଗ୍ରେସ୍ ନେତା ଆଦି । ଶ୍ରୀ ଭାଗୀରଥୀ ମହାପାତ୍ର ଓ ଗୋପବାବୁ ତ ସହଜେ ଉପସ୍ଥିତ ଥିଲେ, ସେହିପରି ସବୁ ଆଶ୍ରମବାସୀ । ପ୍ରାୟ ୫୦୦ ଗ୍ରାମବାସୀ ଆସିଥିଲେ ।

ଉତ୍କଳମଣି ପ୍ରାର୍ଥନା ଭାଷଣ ଦେଲାବେଳେ ଭାବ ଗଦଗଦ ହୋଇ କାନ୍ଦି ପକାଇଲେ । ସେ କହିଲେ ଯେ ସେମାନେ ସମସ୍ତେ ସମଗ୍ର ଭାରତ ସହିତ ମିଶି ଗାନ୍ଧୀଜୀଙ୍କ ଅନୁସରଣରେ ଯେଉଁ ଅହିଂସା-କର୍ମୀ ଶିବିରମାନ ଖୋଲୁଛନ୍ତି ତା ଉପରେ ଭଗବାନଙ୍କ ଆଶୀର୍ବାଦ ସର୍ବଦା ରହିଥାଉ, ଏହି ଶିବିରର କର୍ମୀମାନଙ୍କ ଦ୍ୱାରା ଭାରତର ଅହିଂସ ମୁକ୍ତି ସଂଗ୍ରାମ କ୍ଷିପ୍ର ଗତିରେ ଚାଲୁ, ଭଗବାନଙ୍କ ଇଚ୍ଛା ପୂର୍ଣ୍ଣ ହେଉ । ଭାରତର ମୁକ୍ତି ସଙ୍ଗେ ସଙ୍ଗେ ଜଗତର ବିପୁଳ କଲ୍ୟାଣ ସାଧିତ ହେଉ । ତାଙ୍କ ଭାବବିହ୍ୱଳତା ସମସ୍ତଙ୍କ ଆଖିରୁ ଲୁହ ବୁହାଇଥିଲା, ସମସ୍ତେ ଉଦ୍‌ବୁଦ୍ଧ ହୋଇଥିଲେ ।

ତାହାପରେ ଆଶ୍ରମର ଛାତ୍ର ଓ ଶିକ୍ଷକମାନଙ୍କ ସମେତ ୨୦୦ ଜଣଙ୍କୁ ଆଶ୍ରମର ଦୈନନ୍ଦିନ ଭୋଜନ ଦିଆହୋଇଥିଲା । ଉତ୍କଳମଣି, ଭାଗୁବାବୁ, ଗୋପବାବୁ, ସବୁ ଅତିଥି ସେମାନଙ୍କ ସାଙ୍ଗରେ ଖାଇ ବସିଥିଲେ ।

ସେ ଭୋଜନ ଥିଲା ବଗଡ଼ା ଚାଉଳ ଭାତ, ଘାଣ୍ଟ ତରକାରୀ, ଖଟା । ଅଲକାଶ୍ରମର ବାସିନ୍ଦାମାନଙ୍କ ପାଇଁ ଓ ଅତିଥିମାନଙ୍କ ପାଇଁ ଦୁଇଓଳି ତାହାହିଁ ଥିଲା ଖାଦ୍ୟ ବ୍ୟବସ୍ଥା—ବଗଡ଼ା ଚାଉଳର ଭାତ, ଗୋଟିଏ ମିଶ୍ରିତ ତରକାରୀ ଓ ଖଟା । ବଲକା କଦଳୀ ଓ କାଗଜି ଲେମ୍ବୁ । ୧୯୨୬ରେ ଯେତେବେଳେ ରେଭେରେଣ୍ଡ ସି. ଏଫ୍. ଆଣ୍ଡ୍ରୁଜ୍ ଆସିଥିଲେ, ସେତେବେଳେ ତାଙ୍କୁ ବି ତାହାହିଁ ଦିଆହୋଇଥିଲା । ଏପରି ଖାଦ୍ୟ ଯେ ଖାଲି ଶସ୍ତା ଓ ସୁଲଭ ବୋଲି ପ୍ରବର୍ତ୍ତନ କରାଯାଇଥିଲା, ସେତିକି

ନୁହେଁ, ସତ୍ୟାଗ୍ରହୀ ଯେଉଁ ଜୀବନଧାରାରେ ନିଜକୁ ଗଢ଼ିବେ ସେହା ତାହାର ଅନୁରୂପ ଥିଲା ।

ସେଇ ଶ୍ରୀପଞ୍ଚମୀ ରାତ୍ରରେ ଗଡ଼୍‌ଗଡ଼ାର ଜମିଦାର ଶ୍ରୀ ଦୁର୍ଗାଚରଣ ମହାପାତ୍ର ଅତିଥିମାନଙ୍କୁ ଗୋଟିଏ ଭୋଜି ଦେଇଥିଲେ ଓ ପ୍ରାୟ ୧୦୦ ଜଣଙ୍କୁ ଖୀର, ଖେଚେଡ଼ି, ପିଠା ପ୍ରକାର ପ୍ରକାର ତରକାରି ଆଦି ଖୁଆଇଥିଲେ ।

ତା'ପରେ ଆଶ୍ରମ ଚାଲିଲା ।

ସେଠି ଯେଉଁ ୨୦୦ରୁ ଅଧିକ ବ୍ୟକ୍ତି ରହୁଥିଲେ ତାଙ୍କ ଭିତରେ ଥିଲେ (୧) ଛାତ୍ର, (୨) ଶିକ୍ଷକ, ସେମାନେ ପୁଣି ଦୁଇ ପ୍ରକାର :—ଯେଉଁମାନେ ପାଠ ପଢ଼ାନ୍ତି ଓ ଯେଉଁମାନେ ସୂତାକଟା, ଲୁଗାବୁଣା ଓ ଅନ୍ୟାନ୍ୟ ଧନ୍ଦା ଶିଖାନ୍ତି (୩) ରାଜନୈତିକ କର୍ମୀ ଓ ନେତାମାନେ । ଗୋପବାବୁ ଅଲକାଶ୍ରମର ମୁଖ୍ୟ ପରିଚାଳକ ଥିଲେ । କଟକରେ କାର୍ଯ୍ୟ ଥିଲେ ସେ ନିଜ ଘରକୁ ଯାଆନ୍ତି, କେତେବେଳେ ଅନ୍ୟ କେଉଁଠି କାର୍ଯ୍ୟ ପଡ଼େ, କେତେବେଳେ ବା ପଦଯାତ୍ରା କରି ବୁଲନ୍ତି, ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ କଂଗ୍ରେସ କେନ୍ଦ୍ର ଦେଖନ୍ତି, କାମ ବୁଝନ୍ତି । ଅଧିକାଂଶ ସମୟରେ ସେ ଅଲକାଶ୍ରମରେ ରହୁଥାନ୍ତି । ସେତେବେଳେ ତାଙ୍କ ପରିବାର କଟକରେ ଥାନ୍ତି । ୧୯୨୮ରୁ ତାଙ୍କ ପରିବାରର ସମସ୍ତେ ଅଲକାଶ୍ରମରେ ଆସି ରହିଲେ ଓ ସେ ବି ସେହିଦିନୁ ତାକୁ ତାଙ୍କ ସ୍ଥାୟୀ ଆବାସ କଲେ । ନବବାବୁ ଆରମ୍ଭରୁ କେତେକାଳ ଅଲକାଶ୍ରମରେ ରହୁଥିଲେ । ତାହାପରେ ବି ଅନେକ ସମୟରେ ସେଠି ରହୁଥିଲେ । ରମାବାବୁଙ୍କ ଘର ସେହି ଗ୍ରାମରେ । ତଥାପି ସେ ମଧ୍ୟ ଅଲକାଶ୍ରମ ଆରମ୍ଭରୁ ଦିନାକେତେ ସେଠାରେ ରହିଥିଲେ । ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରି, ବାବାଜୀ ରାମ ଦାସ, ଭଦ୍ରକର ଗୋକୁଳାନନ୍ଦ ମହାନ୍ତି, ନୀଳମଣି ପ୍ରଧାନ, ଉଦୟନାଥ ଷଡ଼ଙ୍ଗୀ, ବିଶ୍ୱନାଥ ନନ୍ଦ, ରାମକୃଷ୍ଣ ନନ୍ଦ, ଦେବେନ୍ଦ୍ରନାଥ ଦାସ, ବିଶ୍ୱନାଥ ପଣ୍ଡା, ଗୁଣନିଧି ମହାନ୍ତି, ଆଳିର ସହଦେବ ଦାସ ଆଦି ସେଠାରେ ରହୁଥିଲେ । ଅସଂଖ୍ୟ କର୍ମୀ ଅଲକାଶ୍ରମ ସହିତ ସଂପୃକ୍ତ ଥିଲେ, କିଏ ସେଠି କେତେଦିନ ଥିଲେ । ଆଶ୍ରମର ପ୍ରାଣକେନ୍ଦ୍ର ଥିଲେ ପୂଜ୍ୟ ଗୋପବାବୁ ।

ଗୋପବାବୁ ଓ ରମାବାବୁ ଅଲକାଶ୍ରମ ପାଇଁ ନିଜ ଧନରୁ ଖର୍ଚ୍ଚ କରୁଥିଲେ, —ଗୋପବାବୁ ଓ ତାଙ୍କ ପରିବାର ନିଜର ପୈତୃକ ସମ୍ପତ୍ତିକୁ ବି କପରି ଦେଶ କାର୍ଯ୍ୟରେ ଆହୁତି ଦେଇଥିଲେ ତାହା ଜଣାଶୁଣା କଥା, ତା ଛଡ଼ା ଅଲକାଶ୍ରମ ମୁଖ୍ୟତଃ ଚଳୁଥିଲା ସର୍ବସାଧାରଣଙ୍କ ସାହାଯ୍ୟରେ । କର୍ମୀମାନେ, ଶିକ୍ଷକମାନେ ଓ ଛାତ୍ରମାନେ ସାହାଯ୍ୟ ପାଇଁ ଗାଁ ଗାଁ ବୁଲନ୍ତି । ଲୋକେ ଟଙ୍କା ପଇସା, ଜିନିଷପତ୍ର, ଚାଉଳ, ମୁଗ, ବିରି ଆଦି ଫସଲ ଏହିପରି ନାନା ପ୍ରକାର ସାହାଯ୍ୟ ଦିଅନ୍ତି । ପିଲାମାନେ ଆଶ୍ରମରେ

ନ ରହି ପଦାରେ ରହି ଆଶ୍ରମରେ ପଢ଼ିଲାବେଳେ, ପିଲାଙ୍କ ରହିବା ବନ୍ଦୋବସ୍ତ ହେବା ପୂର୍ବରୁ ଏପରି ବି ଦିନାକେତେ ଚାଲିଥିଲା, ପ୍ରତି ପିଲା ସକାଳେ ବିଦ୍ୟାଳୟକୁ ଆସିଲାବେଳେ ପା'ଏ ଚାଉଳ ଓ ଯୋଡ଼ିଏ ପଇସା ଆଣି ବିଦ୍ୟାଳୟର ବେବର୍ତ୍ତାଙ୍କୁ ଦେଇଯାଏ, ସେତିକରେ ପିଲାଙ୍କ ପାଇଁ ଜଳଖିଆ ଓ ମଧ୍ୟାହ୍ନଭୋଜନର ବ୍ୟବସ୍ଥା ହୁଏ । ଜନସାଧାରଣଙ୍କଠାରୁ ସାହାଯ୍ୟ ନେଇ ଅନୁଷ୍ଠାନ ଚଳାଇବା ଦ୍ୱାରା ଅନେକ ପ୍ରକାର ଉପକାର ହେଉଥିଲା, ଲୋକସମ୍ପର୍କ ବଢ଼ୁଥିଲା, ଜନସାଧାରଣଙ୍କର ସହାନୁଭୂତି ଆକୃଷ୍ଟ ହେଉଥିଲା, ଆତ୍ମବିଶ୍ୱାସ ବଢ଼ୁଥିଲା, ନୂଆ ବିଚାର ପ୍ରତି ଅନୁରକ୍ତି ବଢ଼ୁଥିଲା ।

## ପାଠପଢ଼ା

ଅଳକାଶ୍ରମରେ ଯେଉଁ ପାଠପଢ଼ା ହେଉଥିଲା ତାହା ମାଇନର ଓ ହାଇସ୍କୁଲ୍ ଶ୍ରେଣୀମାନଙ୍କର । ପ୍ରତ୍ୟେକ ଶ୍ରେଣୀ ଅଲଗା ଅଲଗା ଥାଏ ଓ ସେଥିପାଇଁ ନିର୍ଦ୍ଦିଷ୍ଟ ପାଠ୍ୟକ୍ରମ ଥାଏ । ସାଧାରଣ ସ୍କୁଲ୍‌ମାନଙ୍କରେ ଯାହାସବୁ ପଢ଼ା ହୁଏ, ଅଙ୍କ, ସାହିତ୍ୟ, ସଂସ୍କୃତ, ଇତିହାସ, ଭୂଗୋଳ, ଇଂରେଜୀ ଆଦି—ସେସବୁ ତ ପଢ଼ା ହୁଏ, ତାହାଛଡ଼ା ଅର୍ଥଶାସ୍ତ୍ର ଆଦି କେତେକ ନୂଆ ବିଷୟ ପଢ଼ା ହୁଏ । ଗୋପବାବୁ ନିଜେ ଅର୍ଥଶାସ୍ତ୍ର ପଢ଼ାଉଥିଲେ । ଅଷ୍ଟମ ଓ ନବମ ଶ୍ରେଣୀରେ ମଧ୍ୟ ସେ ଅର୍ଥଶାସ୍ତ୍ରର ଜଟିଳ ତତ୍ତ୍ୱମାନ ପିଲାଙ୍କୁ ବୁଝାଉଥିଲେ । ଦେଶ ବିଦେଶ ବିଷୟରେ ହାଲ୍‌ଚାଲ, କିଛି ସମାଜତତ୍ତ୍ୱ, ସାଧାରଣଜ୍ଞାନ, ନୀତିଶିକ୍ଷା ଓ ଚରିତ୍ରଗଠନ ଆଦି ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥାଏ । ପିଲାଙ୍କୁ କିଣ ପଢ଼ାଇଲେ ଶିଖାଇଲେ ପିଲାଏ ମଣିଷ ହେବେ, ନିଜର ଓ ସମାଜର ଉପକାର କରିପାରିବେ, କୌଣସି ଅବସ୍ଥାରେ ହଟିପିବେ ନାହିଁ, ଏହିସବୁ ଆଖିଆଗରେ ରଖି ତାଙ୍କୁ ପାଠ ପଢ଼ା ହେଉଥାଏ ଓ ଅନ୍ୟାନ୍ୟ କାର୍ଯ୍ୟ ଶିକ୍ଷା ଦିଆହେଉଥାଏ । ତାର ଉପାୟ ଯେ ଖାଲି କ୍ଲାସ୍‌ରେ ପାଠ ପଢ଼ାଇବା ଥିଲା, ତା ନୁହେଁ । ଗୋପବାବୁ, କର୍ମୀମାନେ ଓ ଶିକ୍ଷକମାନେ ପିଲାଙ୍କ ସାଙ୍ଗରେ ଘନିଷ୍ଠ ଭାବେ ମିଶୁଥିଲେ, ବସିଲାଠାଇଁ, ଚାଲିଲାଠାଇଁ, କାମ କଲାବେଳେ ନାନା ଉପାୟରେ ତାଙ୍କୁ ଶିଖାଉଥିଲେ, ବୁଝାଉଥିଲେ ।

## ଅନ୍ୟାନ୍ୟ କାମ

କେତେବେଳେ ରୋଗୀ ସେବା କରିବାକୁ କେଉଁ ଗ୍ରାମକୁ ଗଲାବେଳେ ମଧ୍ୟ ନିଜେ ଉଚିତ ଭାବିଲେ କେଉଁ ପିଲାଙ୍କୁ ନେଇ କିପରି କାମ କରିବାକୁ ହୁଏ ଶିଖାଉଥିଲେ । ଗୋପବାବୁ ପିଲାମାନଙ୍କ ସଙ୍ଗରେ ବସି ଖାଉଥିଲେ, ତାଙ୍କ ସଙ୍ଗେ ଖୁବ୍ ଖେଳୁଥିଲେ, ବଗିଚାକାମ ବେଳେ ନିଜେ କୋଡ଼ି ଧରି ତାଙ୍କ ସଙ୍ଗେ ମିଳି କାମ କରୁଥିଲେ ଓ ଖୁବ୍ କଠିନ ପରିଶ୍ରମ କରୁଥିଲେ ।

ସେଠି ଶିକ୍ଷାର ଉଦ୍ଦେଶ୍ୟ ଥିଲା ଯେ ପିଲାଟିର ଜ୍ଞାନ ବଢ଼ିବ ଓ ତାହା ସଙ୍ଗେ ସଙ୍ଗେ ସେ ନିଜେ କିଛି ଧନ୍ଦା ଶିଖି ପେଟ ପୋଷି ପାରିବ, ଅନ୍ୟ ଦଶଜଣଙ୍କୁ ବାଟ ଦେଖାଇବ, ତାକୁ ଅନ୍ୟ ପର ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ କି ଚାକିରି ଖୋଜିବାକୁ ପଡ଼ିବ ନାହିଁ ।

## ସୂତାକଟା

ଛାତ୍ରଛାତ୍ରୀଙ୍କୁ ସୂତାକଟା, ଲୁଗାବୁଣା ଶିକ୍ଷା ହେଉଥାଏ । ଖଦୀକାମ ପାଇଁ ଅଲକାଶ୍ରମ ଖୁବ୍ ପ୍ରସିଦ୍ଧ ହୋଇଥିଲା । କେବଳ ଛାତ୍ରଛାତ୍ରୀ ନୁହନ୍ତି, ବାହାରୁ ଅନେକ ଲୋକ ସେଠିକି ଆସି ସୂତାକଟା ଶିଖିଲେ ଓ ଖଦାବୁଣା ଶିଖିଲେ । ଆଳିର ସହଦେବ ଦାସ ଆସି ଖଦୀକାମରେ ମିଶିଲେ । ଖଦୀ କାମପାଇଁ ସିଂଭୂମ୍, ସମ୍ବଲପୁର, ପୁରୀ, ବାଲେଶ୍ୱର, ଗଞ୍ଜାମ ସବୁ ଜିଲ୍ଲାରୁ ୩୪ ଜଣ ଲେଖା କର୍ମୀ ଆସନ୍ତି; ସୂତାକଟା, ତୂଳାଭଣା, ଲୁଗାବୁଣା ଆଦି ଶିଖନ୍ତି । ସ୍ୱରାଜ୍ୟ ଆଶ୍ରମରୁ ଖଦୀ ତାଲିମ୍ ଦେବାକୁ ଆସିଲେ ବିଶ୍ୱନାଥ ନନ୍ଦ, ରାମକୃଷ୍ଣ ନନ୍ଦ, ସୁଦର୍ଶନ ପ୍ରହରାଜ, କୃଷ୍ଣଚନ୍ଦ୍ର ପ୍ରଧାନ, ପୁରୀର ଫକିର ସାହୁ । ଅନ୍ୟାନ୍ୟ ତାଲିମ୍‌ଦାତା ବି ଆସିଲେ ।

୪୦ ଖଣ୍ଡି ଚରଖା ଓ ୧୦ଟି ତନ୍ତ ଚାଲୁଥାଏ । ଗାଁ ଗାଁରେ ଲୋକ କାମ ଶିଖୁଥାନ୍ତି । ସୂତାକଟାଳି ଆସି ପ୍ରତି ହାଟପାଳିରେ ତୂଳା ନିଅନ୍ତି, ସୂତା ଦିଅନ୍ତି, ସୂତାକଟା ମଜୁରି ନିଅନ୍ତି । ଆଶ୍ରମର ବାହାରପଟ ବଖରାରେ ସୂତା ରହେ ।

ଗୋପବାବୁଙ୍କ ଖୋଲା ଦେହରୁ ଝାଳ ଛିଟି ଯାଉଥିବ, ତୂଳାଭଣା ଧରି ଭଣୁଥିବେ, ଅରଟରେ ବା ତକଲିରେ ସୂତା କାଟୁଥିବେ, କପା ଝାଇରେ କପା ଖୁଆଉଥିବେ, ଲୁଗା ବୁଣୁଥିବେ । ଏସବୁ କାର୍ଯ୍ୟରେ ସେ ଖୁବ୍ ଧୂରନ୍ଧର ଥିଲେ । ଅତି ସୁନ୍ଦର ସରୁ ସୂତା କାଟୁଥିଲେ । ଲୁଗା ପାଲିସ୍ । ତା ଉପରେ ଅକ୍ଷର ଲେଖି ହେବ । ନବବାବୁ ଖଦୀ ବିଷୟରେ ତାଲିମ୍ ପାଇବାପାଇଁ ସାବରମତୀ ଆଶ୍ରମକୁ ଯାଇଥିଲେ । ସେଠି ସେ ଦରିବୁଣା ଓ ସତରଞ୍ଜି ବୁଣା କାମ ଶିଖି ଆସିଲେ ଓ ଅଲକାଶ୍ରମରେ ତାହା ଶିଖାଇଲେ । କାଳକ୍ରମେ ଓଡ଼ିଶାର ଅନେକ ଆଡ଼ୁ ଦୂରରୁ ଦୂରରୁ ଲୋକେ ଆସି ଅଲକାଶ୍ରମରେ ସୂତାକଟା, ଲୁଗାବୁଣା, ଦରି ଓ ସତରଞ୍ଜି ବୁଣା ଶିଖିଗଲେ । ସେଥିପାଇଁ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳରୁ ୩୪ ଜଣ ଲେଖା କର୍ମୀ ଆସିଥିଲେ, ସିଂଭୂମ୍, ସମ୍ବଲପୁର, ବାଲେଶ୍ୱର ଓ ଗଞ୍ଜାମରୁ ମଧ୍ୟ । ଅଲକାଶ୍ରମରେ ଦଶଖଣ୍ଡ ତନ୍ତ ଥିଲା ଓ ଚାଳିଶ୍ ଖଣ୍ଡ ଚରଖା ଚାଲୁଥିଲା । ସମସ୍ତେ ଅବସର ସମୟରେ ସୂତା କାଟୁଥିଲେ । ତା ଛଡ଼ା ନିୟମିତ ଭାବେ କାଟୁଥିଲେ ନିଜେ ଗୋପବାବୁ, ତାଙ୍କ ସହକର୍ମୀମାନେ, ଆଶ୍ରମର ଶିକ୍ଷକମାନେ । ଛାତ୍ରମାନେ ପିଠିରେ ଗଣ୍ଠି ବାନ୍ଧି ପାଖ ଦୂର ନାନା ଗାଁକୁ ଯାଇ ଖଦଡ଼ ବିକୁଥିଲେ ।

## ଆଶ୍ରମର ଦୈନନ୍ଦିନ ନିର୍ଘଣ୍ଟ

ଆଶ୍ରମରେ ଭୋର ସାଢ଼େ ପାଞ୍ଚଟା ସୁଦ୍ଧା ସମସ୍ତଙ୍କ ନିତ୍ୟକର୍ମ ସରେ । ଛାତ୍ରମାନେ ବ୍ୟାୟାମ କରନ୍ତି, ସକାଳ ୬ଟାରେ ସମବେତ ପ୍ରାର୍ଥନା ହୁଏ । ୭ଟାରେ ଜଳଖିଆ ଦିଆଯାଏ, ତା ପରେ ପିଲାମାନେ ପାଠ ପଢ଼ିବାକୁ ଯାଆନ୍ତି । କର୍ମୀମାନେ ଲୁଗାବୁଣା, ସୂତାକଟାରେ ଲାଗନ୍ତି । ସକାଳ ୯ଟାରୁ ୧୨ଟା ଯାଏ ବିଦ୍ୟାଳୟର ପାଠ୍ୟକ୍ରମ ଚାଲେ । ତା'ପରେ ମଧ୍ୟାହ୍ନଭୋଜନ, ତା'ପରେ ଟିକିଏ ବିଶ୍ରାମ ଓ ସେତିକିବେଳେ ଖବରକାଗଜ ପଢ଼ା । ଦିନ ଦୁଇଟାବେଳେ ପୁଣି ସମସ୍ତେ ଉଠି-ପଡ଼ନ୍ତି । ପିଲାମାନେ ନିଜ ନିଜ ରୁଚି ଅନୁସାରେ କେହି ତନ୍ତରେ ଲୁଗା ବୁଣିବାକୁ ଯାଉଥିଲେ ତ କେହି ବଗିଚା କାମ କରୁଥିଲେ । ଭଲ ବଗିଚାଟିଏ ଥିଲା । ପ୍ରାୟ ଦୁଇ ଏକର ଜମିରେ କପାଚାଷ ହେଉଥିଲା, ବିଲାତି ବାଇଗଣ ଆଦି ପରିବା ଚାଷ ହେଉଥିଲା ଓ ଗୋଟିଏ ପୋଖରୀ ମଧ୍ୟ ଥିଲା । ଚାରିଟାରୁ ସାଢ଼େ ପାଞ୍ଚଟାଯାଏ ଖେଳ । ସନ୍ଧ୍ୟା ୬ଟାରେ ପୁଣି ସମବେତ ପ୍ରାର୍ଥନା । ଆଶ୍ରମର ସମବେତ ପ୍ରାର୍ଥନା ବେଳେ ସମସ୍ତେ ତୋଟା ଭିତରେ ଗୋଲ ହୋଇ ବସୁଥିଲେ ଓ ଏକାଠି ପ୍ରାର୍ଥନା ବୋଲୁଥିଲେ । ମଧୁବାବୁଙ୍କ "ଅଖିଳ ବ୍ରହ୍ମାଣ୍ଡପତି" ସବୁଦିନେ ବୋଲି ଯାଉଥିଲା । ତାହାଛଡ଼ା ଅନ୍ୟାନ୍ୟ ପ୍ରାର୍ଥନା ବି ବୋଲା ହେଉଥିଲା । ଗହଳିଆ ଆମ୍ବତୋଟା, ତା ଭିତରୁ ସମବେତ କଣ୍ଠରେ ପ୍ରାର୍ଥନାର ମଧୁର ଝଙ୍କାର, ଅଳ୍ପ ଦୂରରେ ମନ୍ଦିର, ସେ ପରିବେଶ ମର୍ମସ୍ପର୍ଶୀ ହେଉଥିଲା । ପ୍ରାର୍ଥନା ପରେ ପିଲାମାନେ ଦେଶ ବିଦେଶର ସମ୍ବାଦ ଆଲୋଚନା କରୁଥିଲେ । ବଡ଼ ବଡ଼ ମାନେ ତାଙ୍କୁ ବୁଝାଉଥିଲେ । ରାତି ସାଢ଼େ ୮ଟାରେ ଭୋଜନ । ତାପରେ ପିଲାଏ ଶୋଇ ପଡ଼ୁଥିଲେ ।

ଅଲକାଶ୍ରମର ବାସିନ୍ଦାମାନେ ନାନା 'ଜାତୀୟ ଦିବସ' ପାଳୁଥିଲେ ଓ 'ପ୍ରଭାତ ଫେରି' କରି ସାହି ସାହି ବୁଲୁଥିଲେ । ଅନେକ ଗାଁରୁ ସଙ୍କୀର୍ତ୍ତନ ଦଳ ଆସନ୍ତି, ଏକାଠି ହୁଅନ୍ତି, ଜାତୀୟ ଜାଗରଣର ଉଦ୍‌ବୋଧନ ବୁଝାଉଥିବା ସଙ୍କୀର୍ତ୍ତନ ବୋଲନ୍ତି, ସୋମନାଥ ମନ୍ଦିର ସାମ୍ନା ହାଟପଦାରେ ବଡ଼ ବଡ଼ ସଭା ବି ହୁଏ ।

## ପତ୍ରିକା

ଅଲକାଶ୍ରମରୁ "ଅଲକା" ବୋଲି ପିଲାମାନଙ୍କର ଗୋଟିଏ ମାସିକ ପତ୍ରିକା ବି ବାହାରୁଥିଲା । ସାହିତ୍ୟ ଲେଖିବା, ଛବି ଆଙ୍କିବା ଆଦି ପିଲାମାନଙ୍କର ମୌଳିକ କଳାସୃଷ୍ଟିକୁ ଉତ୍ସାହିତ କରୁଥିଲା ।

ଆଖି ଆଗରେ ଗୋଟିଏ ବିରାଟ ଆଦର୍ଶ ରଖି ଗୋଟିଏ ବଡ଼ ପରିବାର ଗଢ଼ି ଉଠୁଥିଲା । ସେଥିରେ ଜାତିଧର୍ମର ବାଡ଼ ନ ଥିଲା, ତା'ର ଭିତ୍ତି ଥିଲା ଦେଶପ୍ରେମ ଓ ଉଦାର ମାନବିକତା ।

ଗୋପବାବୁ, ରମାଦେବୀ ଓ ଅଳକାଶ୍ରମର ପ୍ରଭାବ ସମୁଦାୟ ଜଗତସିଂପୁର ଅଞ୍ଚଳ ଉପରେ ପଡ଼ିଥିଲା, ଲୋକେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହେଲେ, ନିଜ ଚଳଣି ଓ ଚଳଣିରେ ତାଙ୍କ ଆଦର୍ଶକୁ ଅନୁକରଣ କଲେ, ଦେଶ କଥା ଭାବିଲେ, ରଚନାତ୍ମକ କାମ ଅଭ୍ୟାସ କଲେ । ଡର ତୁଟିଲା, ନାରୀ ଜାଗରଣ ହେଲା, କୁସଂସ୍କାର ଭାଙ୍ଗିଲା, ରକ୍ଷଣଶୀଳ ସମାଜ ବଦଳିବାକୁ ଲାଗିଲା । ସର୍ବୋପରି ସହଜେ ବାଣହେଲା କଂଗ୍ରେସ୍ କାମରେ ସେମାନଙ୍କର ବିପୁଳ ସହଯୋଗ ଓ ଆତ୍ମତ୍ୟାଗ ଦ୍ୱାରା ।

## ଆଶ୍ରମର ପ୍ରଭାବ : ଗୋଟିଏ ନମୁନା

ଆଶ୍ରମର ପ୍ରଭାବ କିପରି ଅନ୍ୟମାନଙ୍କ ଉପରେ ପଡ଼ୁଥିଲା ତା'ର ଗୋଟିଏ ଉଦାହରଣ ଗୃହୀଙ୍କର ବ୍ରହ୍ମାନନ୍ଦ ଚୌଧୁରୀ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ନିଶାମଣି ଦେବୀ । ଅଳକାଶ୍ରମ ଆରମ୍ଭ ହେଲାବେଳେ ବ୍ରହ୍ମାନନ୍ଦ ବାବୁ ଗୁରୁ ଟ୍ରେନିଂ ପାଇ ଘରେ ଥାଆନ୍ତି । ଗୋପବାବୁ ତାଙ୍କୁ ଡାକିଲେ ଓ ସେ ଅଳକାଶ୍ରମରେ ଶିକ୍ଷକ ହେଲେ । ସେ ନିଜ ଘରେ ଥାନ୍ତି । କିନ୍ତୁ ଆଶ୍ରମରେ କାର୍ଯ୍ୟ କରୁଥାନ୍ତି । ସେ ଗୋପବାବୁଙ୍କ ଦ୍ୱାରା ଦେଶକାର୍ଯ୍ୟରେ ଦୀକ୍ଷିତ ହୋଇଗଲେ । ତାଙ୍କ ନିର୍ଦ୍ଦେଶରେ ଓ ତାଙ୍କ ସଙ୍ଗେ ମିଶି ଗ୍ରାମଆଡ଼େ ବୁଲି ନାନା କାର୍ଯ୍ୟ କଲେ ଓ ଜେଲ୍ ବି ଗଲେ । ଗୋପବାବୁ ନିଜ ଖର୍ଚ୍ଚରେ ତାଙ୍କ ବିବାହକାର୍ଯ୍ୟ ସମ୍ପନ୍ନ କରାଇଥିଲେ ଓ ଆଶ୍ରମର ସବୁ କର୍ମୀ ଓ ଗୋପବାବୁ ତାଙ୍କ ବିବାହ ଉତ୍ସବରେ ଯୋଗ ଦେଇଥିଲେ ।

## ନିଶାମଣି ଦେବୀ

ତାଙ୍କ ସ୍ତ୍ରୀ ଶ୍ରୀମତୀ ନିଶାମଣି ଦେବୀ ନିଜ ଘରେ ପ୍ରତିଦିନ ରାନ୍ଧିବାଢ଼ି ଖାଇ ଆଶ୍ରମରେ ସୂତାକଟା, ତୂଳାଭିଣା ଆଦି କାର୍ଯ୍ୟ କରୁଥିଲେ । ତାପରେ ଘରକୁ ଯାଇ ପୁଣି ଆସି ସନ୍ଧ୍ୟାରେ ଆଶ୍ରମର ପ୍ରାର୍ଥନାରେ ଯୋଗ ଦେଉଥିଲେ । ସେ ଆଶ୍ରମରେ ଖାଉ ନ ଥିଲେ । ଆଶ୍ରମର ତରକାରୀରେ ମସଲା ଆଦି ଦିଆଯାଉ ନ ଥିଲା । ଥରେ ବହୁତ କଷ୍ଟରେ ଆଶ୍ରମବାସୀମାନେ ସେ ଭଉଣୀଙ୍କୁ ଆଶ୍ରମର ଭାତ ଖାଇବାପାଇଁ ରାଜି କରାଇଥିଲେ ।

୧୯୩୦ ଲବଣ ସତ୍ୟାଗ୍ରହରେ ବ୍ରହ୍ମାନନ୍ଦବାବୁ ଜେଲ ଗଲେ । ତାଙ୍କ ପରିବାରରେ ତାଙ୍କ ସ୍ତ୍ରୀଙ୍କ ଛଡ଼ା ଆଉ କେହି ନ ଥାନ୍ତି । ସେ ଚଳିବେ କିପରି ? ଆଶ୍ରମର କର୍ମୀମାନେ ତାଙ୍କୁ ସାହାଯ୍ୟ ଯାଚିଲେ, କିନ୍ତୁ ସେ ନେବାକୁ ମନାକଲେ । ସେ କହିଲେ "ମୋତେ ତୁମ୍ଭେମାନେ କିଛି ତୂଳା ଯୋଗାଇଦିଅ ବା କିଛି ବଳଣା ଦିଅ, ମୁଁ ସୂତାକାଟି ବଞ୍ଚିବି । ତାଙ୍କ ସ୍ୱାମୀ ଜେଲ୍‌ରେ ୬ ମାସରୁ ଅଧିକ ଦିନ ରହିଲେ । ସେ ସୂତା କାଟିଥିଲେ । ଆଶ୍ରମରେ ସେ ସୂତାରେ ଲୁଗା ବୁଣା ହେଉଥିଲା ଓ ବିକ୍ରୀ

କରାଯାଉଥିଲା । ତହିଁରୁ ସେ ମାସକୁ ୧୦।୧୨ ଟଙ୍କା ପାଉଥିଲେ ଓ ସେହି ଆୟରୁ ଚଳୁଥିଲେ । ଆଗ ଆଗ କରଣଘରର ଝିଅମାନେ ଓ ବୁଢ଼ୀମାନେ ତାଙ୍କ ସୂତାକଟା ଦେଖି ତାଙ୍କୁ ବହୁତ ସମାଲୋଚନା କରୁଥିଲେ ଓ ଥଟ୍ଟା କରୁଥିଲେ । ପଛେ ତାଙ୍କ ରୋଜଗାର ଦେଖି ଅନେକ ଝିଅ ବୋହୂ ଅଲକାଶ୍ରମରୁ ଚରଖା ଓ ତୂଳା ଆଣି ସୂତା କାଟିବାକୁ ଲାଗିଲେ । ସୂତାକଟା ଘରେ ଘରେ ବ୍ୟାପିଲା । ଖଦୀବୁଣା, ସୂତାକଟା ଓ କପାଚାଷର ବହୁଳ ପ୍ରଚାର ହେଲା । କାଳକ୍ରମେ ଆଗ ଓଡ଼ିଶା ପ୍ରାଦେଶିକ ଖଦୀ ବୋର୍ଡ଼୍‌ର ଓ ପଛେ ଚରଖା ସଙ୍ଘର ଦାୟିତ୍ୱ ଗୋପବାବୁ ପରିଚାଳନା କରିଥିଲେ ।

## ନାନା କାମ

ତାଙ୍କର ଯୋଗ୍ୟତା, ବ୍ୟକ୍ତିତ୍ୱ, ତ୍ୟାଗ, ନିଷ୍ଠା, କଠୋର ଅକ୍ଲାନ୍ତ ପରିଶ୍ରମ ଯୋଗୁଁ ସେ କଂଗ୍ରେସରେ ଯୋଗଦେବା ମାତ୍ରେ କଂଗ୍ରେସ୍‌ର ଜଣେ ଉଚ୍ଚକୋଟିର କର୍ମୀ ଓ ନେତା ବୋଲି ସ୍ୱୀକୃତ ହେଲେ । ତାଙ୍କ ନେତୃତ୍ୱରେ ଅଲକାଶ୍ରମ କଂଗ୍ରେସ୍‌ର ନାନା ପ୍ରକାର କାର୍ଯ୍ୟର କେନ୍ଦ୍ର ହୋଇଗଲା । ସେତେବେଳେ ଜଗତ୍‌ସିଂପୁର ଅଞ୍ଚଳକୁ କଂଗ୍ରେସ୍ କମିଟି ତାଙ୍କର ଗୋଟିଏ ସବ୍‌ଡିଭିଜନ୍ କରିଥାନ୍ତି । ଅଲକାଶ୍ରମ ହେଲା ତାହାର କେନ୍ଦ୍ର । ଚାରିପାଖେ ପାଞ୍ଚ ଛଅଟି ଥାନାରେ କଂଗ୍ରେସ୍ କାମ ଚାଲିଥାଏ, ଆହୁରି ବ୍ୟାପୁଥାଏ । କଟକ ଜିଲ୍ଲାଯାକ ଓ ସମଗ୍ର ଓଡ଼ିଶା ପ୍ରଦେଶରେ ଯେଉଁ କଂଗ୍ରେସ୍ କାମ ଚାଲୁଥାଏ ସେଥିପାଇଁ ବି ଅଲକାଶ୍ରମକୁ କେନ୍ଦ୍ର ରୂପେ ବ୍ୟବହାର କରାଯାଉଥାଏ ।

ସେ କାମ ଖାଲି ସ୍ଥାନେ ସ୍ଥାନେ ବୁଲି ସଭା କରି ବକ୍ତୃତା ଦେବା କାମ ନୁହେଁ, ଯଦିଚ ତା ବି ହେଉଥାଏ ବହୁତ, ଖାଲି କାଗଜପତ୍ର କାମ ନୁହେଁ, ସେ ନାନାପ୍ରକାର ଗଠନାତ୍ମକ କାର୍ଯ୍ୟ । ଲୋକଙ୍କ ସଙ୍ଗେ ଚିହ୍ନାପରିଚ ବଢ଼ାଇବାକୁ ପଡ଼ିବ, ତାଙ୍କ ଶ୍ରଦ୍ଧା ଓ ବିଶ୍ୱାସ ଅର୍ଜନ କରିବାକୁ ପଡ଼ିବ, ତାଙ୍କର ସେବା କରିବାକୁ ପଡ଼ିବ, ତାଙ୍କ ବିଚାରକୁ ଉନ୍ନତ କରିବାକୁ ପଡ଼ିବ । ସେମାନେ ଆପଣା ପରିବେଷ୍ଟନୀ ପ୍ରତି, ଆପଣା ଅବସ୍ଥା ପ୍ରତି ସଚେତ ହେବେ, ତାକୁ ସୁଧାରିବାକୁ ନିଜ ଆଡ଼ୁ ଉଦ୍ୟମ କରିବେ, ନିରାଶ୍ରୟ ମନୋବୃତ୍ତିର ଅନ୍ଧାରରେ ପଡ଼ି ରହିବେ ନାହିଁ । ସେମାନେ ପରିଶ୍ରମ କରିବେ, ଭୟ ଛାଡ଼ିବେ, କୁସଂସ୍କାର ଛାଡ଼ିବେ, ମିତମାନ୍ ହେବେ, ନିଜ ଭିତରେ ଏକତା ରଖିବେ । ତା ସଙ୍ଗେ ସଙ୍ଗେ ସେମାନେ ମହାତ୍ମା ଗାନ୍ଧୀଙ୍କ ବିଚାର ଓ ଉପଦେଶ ବୁଝିବେ, ଆନ୍ଦୋଳନର ନୀତି, ଉଦ୍ଦେଶ୍ୟ ଓ ପନ୍ଥାକୁ ଗ୍ରହଣ କରିବେ, ସେହି ଅନୁସାରେ ନିଜକୁ ପ୍ରସ୍ତୁତ କରିବେ । ସେଥିପାଇଁ କର୍ମୀପକ୍ଷରେ ଦରକାର ଗାଁ ଗାଁ ବୁଲିବା, ଲୋକଙ୍କ ସଙ୍ଗେ ମିଶିବା । ଏ ସମ୍ପର୍କରେ ପୂଜ୍ୟ ଗୋପବାବୁ ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଲେଖିଛନ୍ତି :—

### ତାଙ୍କ ନିଜକଥା

‘‘କଂଗ୍ରେସ୍ କାମରେ ମୁଁ ପ୍ରାକୃତିକ ଜଙ୍ଗଲର ଅଧିକାଂଶ ଅଞ୍ଚଳ ବୁଲି ଆସିଥିଲି । ଏ ବୁଲାରେ ମୋର ଯେ ଅଭିଜ୍ଞତା ହୋଇଛି ତା ମୁଁ ଭୁଲି ପାରିବି ନାହିଁ । ଜୀବନରେ ଏ ବୁଲା ଯେ ବନ୍ଦ ହେବ ମତେ ଲାଗୁନାହିଁ, କାରଣ କର୍ମୀ ଜୀବନର ଗୋଟିଏ ପ୍ରଧାନ ଅଙ୍ଗ ବୁଲା । ସାମାନ୍ୟ ଗ୍ରାମର କେନ୍ଦ୍ରର ସେବକ ହୋଇ ରହିଲେ ମଧ୍ୟ ତାକୁ ଅନବରତ, ଏ ଓଳି ସେ ଓଳି, ନିତିଦିନ, ଏ ଦୁଆର ସେ ଦୁଆର, ଏ ଗାଁ ସେ ଗାଁ ବୁଲିବାକୁ ପଡ଼ିବ ହିଁ ପଡ଼ିବ । ତଦୁପରି ଯଦି ରାଜନୈତିକ କାର୍ଯ୍ୟର ଭାର ବା ଟିକିଏ ବଡ଼ ଅନୁଷ୍ଠାନର ଭାର ନେବାକୁ ପଡ଼େ, ତେବେ ତ କଥାହିଁ ନାହିଁ, ବୁଲି ବୁଲି ଥକି ଯିବାକୁ ପଡ଼େ ।’’

ଅଣ୍ଠୁ ଲୁଚୁ ନ ଥିବା ଭଳି ଲୁଗା ଖଣ୍ଡିଏ ପିନ୍ଧି ଖାଲିଦେହରେ, କେତେବେଳେ ତା ଉପରେ ଚଦରଟିଏ ଦେହରେ ପକାଇ ସେ ଖାଲିପାଦରେ ବୁଲି ବୁଲି ଗାଁକୁ ଗାଁ ବୁଲୁଥିଲେ । ଲେଖିଛନ୍ତି :

### ପୋଷାକ

‘‘ଅସହଯୋଗ ଆନ୍ଦୋଳନରେ ପ୍ରଚାର କାମରେ ବାହାରି ପଡ଼ିବା ସଙ୍ଗେ ସଙ୍ଗେ ନିଜର ଚାଲିଚଳଣି ଅନେକ ସାଧାସିଧା କରି ପକାଇଥିଲି । ମୋର ମନେପଡ଼େ କୁର୍ତ୍ତା ଯୋଡ଼ା ପିନ୍ଧିବା ଛାଡ଼ିଦେବା ବେଳେ ମୋ ମନରେ ଏହି ଭାବ ଥିଲା ଯେ ଭାରତବାସୀର ଅନ୍ୟ ପୋଷାକ ଆଇପାରେ କିନ୍ତୁ ଗରିବ ଓଡ଼ିଶାର ଖଦୀ ଖଣ୍ଡି ଓ ଖୁବ୍ ବେଶି ହେଲେ ଚଦର ଖଣ୍ଡିଏ ଛଡ଼ା ଆଉ କଣ ହୋଇପାରେ ? କିନ୍ତୁ ଏଇଟା ଠିକ୍ ମୋର ମନେପଡ଼େ ନାହିଁ, ଗାନ୍ଧୀଜୀ କୁର୍ତ୍ତା ଟୋପି ଛାଡ଼ିବା ପୂର୍ବରୁ ମୁଁ ଛାଡ଼ିଥିଲି କି ନାହିଁ । କିନ୍ତୁ ଏଇଟା ଠିକ୍ ମନେପଡ଼େ ଯେ ଗ୍ରାମବାସୀଙ୍କ ଆଗରେ ଆମେ କୁର୍ତ୍ତା ଜାମା ପିନ୍ଧି ଠିଆ ହେଲେ ଆମ କଥା ଶୁଣିବାକୁ ଯେ ତାଙ୍କର ଗୋଟାଏ ସ୍ୱାଭାବିକ କୁଣ୍ଠା ଆସିବ ଏ ଚିନ୍ତାଟା ମୋ ମନରେ ଗଭୀର ଭାବେ ଅଙ୍କିତ ହୋଇଯାଇଥିଲା ।’’

### ଖାଦ୍ୟ

ମାଛ ମାଂସ ସେ ବହୁଦିନୁ ଛାଡ଼ି ଦେଇଥିଲେ, ମୋଟାସୋଟା ଖାଉଥିଲେ, ଯାହା ମିଳୁ, ନିୟମିତ ସମୟରେ ଖାଉଥିଲେ । ଗାଁ ବୁଲି ଗଲେ କୌଣସି ସାଧାରଣ ଲୋକ ଘରେ, ଗରିବ ଲୋକ ଘରେ କୁଣିଆଁ ହେଉଥିଲେ, କାହା ପିଣ୍ଡାରେ ଶୋଇ ପଡୁଥିଲେ । ସାଙ୍ଗରେ ଛତୁଣ୍ଡାପରି ଯେମିତି ସେ ବୁଲୁ ନ ଥିଲେ, ମଶାରିଟିଏ ବି ନେଉ ନ ଥିଲେ, ମଶା କାମୁଡ଼ା ସହୁଥିଲେ, ଶେଷେ ମ୍ୟାଲେରିଆରେ ପଡ଼ିବା ପରେ ସେ ମଶାରି ନେଇ ବୁଲିଲେ । ଅଲକାଶ୍ରମର କର୍ମୀମାନେ ତାଙ୍କର ଅନୁସରଣ କରୁଥିଲେ ।

## ଲୋକେ କଣ ଭାବୁଥିଲେ

କେଉଁ ଗାଁକୁ ଗଲେ କି କାହା ଘରକୁ ଗଲେ ସେ ଆଦୌ 'ଭଦ୍ରଲୋକ' କି 'କୁଣିଆଁ' ପରି ହୁଅନ୍ତି ନାହିଁ । ଆପଣା ପରି ମିଶିଯାନ୍ତି, ନିଜେ ଜଣେ ଗ୍ରାମଲୋକ କି ଘରର ଲୋକଭଳି ଲୋକଙ୍କର ସବୁ କାମରେ କାନ୍ଧ ଲଗାନ୍ତି, ମିଶିଯାନ୍ତି । ନବବାବୁ ବି ଏହିପରି ଚଳୁଥାନ୍ତି । ତୃଜ୍ୟା ରମା ଦେବୀ ଅଲକାଶ୍ରମରେ ରହିଲାପରେ ଗାଁ ବୁଲିଲା ବେଳେ ସେ ଏହିପରି ଚଳିବାର ଲୋକେ ଦେଖୁଥାନ୍ତି । ଆଗ ଆଗ ସେମାନଙ୍କର ଏ ବେଶ, ଏ ଚଳଣି ଦେଖି ଅନେକେ ହାସ୍ୟ ହାସ୍ୟ କଲେ । ଗାଁ ଲୋକେ ତାଙ୍କ ଆଭିଜାତ୍ୟ କଥା ଜାଣନ୍ତି, ତାଙ୍କ ପରିବାରକୁ ଜାଣନ୍ତି, ତେଣୁ ସେମାନେ ମର୍ମାହତ ହେଉଥାନ୍ତି ଓ ଅନେକେ ସେମାନଙ୍କ ପ୍ରତି ଆକୃଷ୍ଟ ହେଉଥାନ୍ତି । କେତେବେଳେ କେଉଁଠି ବହୁତ ଲୋକ ରୁଣ୍ଡି ହନ୍ତି, ଗୋପବାବୁ ବକ୍ତୃତା ଦେବାକୁ ଠିଆ ହୋଇଛନ୍ତି, ଖାଲି ଦେହ, ଖାଲି ପାଦ, ଅଣ୍ଟାକୁ ଲୁଗା ନାହିଁ ଟପି ଟପ୍ରେ, ଚଦର ଇଛି ଯେ ସେଥିରେ ବଲ୍ଗୁବାଲିଆ ପିଆଁ, ତାଙ୍କ ବକ୍ତୃତା ଶୁଣିବା ଆଗରୁ ତାଙ୍କୁ ଦେଖି କେତେ ସରଳ ଗାଲୋକ କାନ୍ଦୁଛନ୍ତି, କହୁଛନ୍ତି "ଆହା ! କାହା ପୁଅ ! କାହା ନାତି ! ଦେଶକାମ କରିବାକୁ ଯାଇ ଦେଇ ଏଇ ଅବସ୍ଥା ହେଲେ !" ସେହିପରି ରମା ଦେବୀଙ୍କୁ ଦେଖି, "ସୁନାରେ ଗୁଡ଼ିଣି ହୋଇଥିଲେ, ଅଇଗ୍ଗୁ ନିମ୍ବକାଠି ବି ନାହିଁ ! କାହିଁ ଗଲା ! କାହିଁ ଗଲା ସେ ପାଟପଟଣୀ ! ସତେ ଅବା ରଜାଘର ଦୁଲଣୀ, ରଜାଘର ବୋହୂ, ଏ କି ଅବସ୍ଥା ! ଖରାରେ ଅଣିଏ ଧୂଳିରେ ଚାଲି ଚାଲି ବୁଲୁଛନ୍ତି, କଷ୍ଟ ଭୋଗୁଛନ୍ତି ! ଦେହିମାନଙ୍କ ଆଦର୍ଶ ଲୋକଙ୍କୁ ପ୍ରଭାବିତ କରିଥିଲା, ସାହସ ଦେଇଥିଲା, ପୁରୁଣା ସମାଜକୁ, ପୁରୁଣା ଚଳାଧାରାକୁ ବଦଳାଇଥିଲା, ସେମାନେ ବହୁସଂଖ୍ୟାରେ କଂଗ୍ରେସରେ ଯୋଗ ଦେଇଥିଲେ । ଦାଣ୍ଡରେ ହାଟରେ ତାଙ୍କରି କଥା । ବୁଲି ବୁଲି ଗାଁ ଲୋକଙ୍କ ସଙ୍ଗେ ମିଶିବା, ଦୁଃଖସୁଖ ହେବା, ଲୋକଙ୍କ ସମସ୍ୟା ବୁଝିବା, ତାର ସମାଧାନ ବିଷୟରେ ସେମାନଙ୍କୁ ବାଟ ବତେଇବା ଓ ନିଜେ ସାହାଯ୍ୟ କରିବା କର୍ମୀମାନଙ୍କର ଗୋଟିଏ ପ୍ରଧାନ କାମ ହୋଇଥିଲା । ତା ସହିତ ଆଉ ଅସିଥିଲା ଗାଁ କଳ ଚଳେଇବା, ସେଥିପାଇଁ ନିଶାପ କରିବା, ସ୍ୱପନ୍ତମାନଙ୍କୁ ସ୍ତାଜ କରାଇବା । ତାହା ସଙ୍ଗେ ସଙ୍ଗେ ଚାଲିଥାଏ କଂଗ୍ରେସ୍‌ର ପ୍ରଚାର କାର୍ଯ୍ୟ, ପାଣ୍ଠି ସଂଗ୍ରହ ଓ ଅନ୍ୟାନ୍ୟ ନାନା କାର୍ଯ୍ୟ । ସମସ୍ତେ ଗାଁ ଗାଁ ବୁଲି ଲାଗି ପଡ଼ିଥାନ୍ତି ।

## ରୋଗୀ ଓ ହଇଜା

ଅଲକାଶ୍ରମ ଦ୍ୱାରା ଯେତେ କାର୍ଯ୍ୟ ହେଉଥିଲା ତହିଁରେ ଗୋଟିଏ ଉଲ୍ଲେଖଯୋଗ୍ୟ ଅବସ୍ମରଣୀୟ କାର୍ଯ୍ୟ ଥିଲା ରୋଗୀ ସେବା ଓ ହଇଜା ଓ ମ୍ୟାଲେରିଆ

ବନ୍ଦ କରିବାକୁ ନାନା ଉଦ୍ୟମ । ଗୋପବାବୁ ଆଶ୍ରମର କର୍ମୀ ଶିକ୍ଷକ ଓ ଛାତ୍ରମାନଙ୍କୁ ନେଇ ଖୁବ୍ ଉତ୍ସାହରେ ଏ କାର୍ଯ୍ୟ ଚଳାଉଥାନ୍ତି ।

ହଇଜା କାମ

ତାଙ୍କ ଅପ୍ରକାଶିତ ଆତ୍ମଜୀବନୀରେ ସେ ଏ ବିଷୟରେ ବହୁତ ଲେଖିଛନ୍ତି । ହଇଜା କିପରି ବ୍ୟାପେ, ସେଥିପାଇଁ ପ୍ରତିଷେଧକ ଉପାୟ କଣ, ହଇଜା ହେଲେ ଭଲ କରିବାକୁ କଣ ଉପାୟ କରାଯିବ, ରୋଗ ଯେପରି ନ ବ୍ୟାପିବ ସେଥିପାଇଁ କଣ କରାଯିବ, ଏସବୁ ବିଷୟରେ ଗାଁ ଲୋକଙ୍କର କୌଣସି ଧାରଣା ନ ଥାଏ । ଡାକ୍ତର, ଅନ୍ୟ କେହି ସରକାରୀ କର୍ମଚାରୀ ବା ଅନ୍ୟ ଜାଣିବା ଲୋକ ତାଙ୍କୁ କିଛି ବୁଝାଇଲେ ବି ସେମାନେ ଶୁଣନ୍ତି ନାହିଁ, ସହଯୋଗ କରନ୍ତି ନାହିଁ । ସେମାନଙ୍କ ଧାରଣା ଯେ 'ବାଡ଼ୀ' ଅର୍ଥାତ୍ ହଇଜା ରୋଗକୁ ଠାକୁରାଣୀ କରାନ୍ତି, ଠାକୁରାଣୀ କାହାକୁ ଧଇଲେ ତାକୁ ହଇଜା ହୁଏ । ଠାକୁରାଣୀ ସେ ଲୋକକୁ ଖାଇଯାଏ, ଠାକୁରାଣୀଙ୍କୁ ଖୁସିକରି ଶାନ୍ତ କରିବା ହିଁ ରକ୍ଷାପାଇବା ପାଇଁ ଏକମାତ୍ର ଉପାୟ, ଆଉ ଗୋଟିଏ ଉପାୟ ହରିନାମ ସଙ୍କୀର୍ତ୍ତନ କରିବା । କାହାକୁ ହଇଜା ହେଲେ ଅନ୍ୟମାନେ ତାର ସେବା କରିବା ପରିବର୍ତ୍ତେ ଠାକୁରାଣୀଙ୍କ କୋପରୁ ନିଜେ ବର୍ତ୍ତିବା ପାଇଁ ତାଙ୍କୁ ଡରନ୍ତି, ଘରେ ପଶି କବାଟ କିଳନ୍ତି, କାଛ ସେପାଖ ବଖରାର ପଡ଼ିଶା ବି ଝରକା କବାଟ ବୁଜି ଡରି ଡରି ଚଳେ, ସଙ୍କୀର୍ତ୍ତନ କରେ, ରୋଗୀ ଶୋଷରେ ପାଣି ପାଇଁ ଡାକଲେ ବି କେହି ତା ଡାକ ଶୁଣନ୍ତି ନାହିଁ । ଠାକୁରାଣୀଙ୍କୁ ଶାନ୍ତ କରିବାପାଇଁ ସ୍ଥାନେ ସ୍ଥାନେ ଠାକୁରାଣୀଙ୍କ ପୂଜା ହୁଏ, ସେଥିରେ ବ୍ରାହ୍ମଣ ପୁରୋହିତମାନେ କିଛି ଲାଭ କରନ୍ତି, ପୁଣି କେଉଁ ଗଛରେ କି ପଥରରେ ସିନ୍ଦୂର ଲଗା ହୋଇ ପୂଜା ପାଉଥିବା କେଉଁ ଠାକୁରାଣୀଙ୍କ ନିଜର ସେବକ ଅର୍ଥାତ୍ 'କାଳସୀ' ଥାଆନ୍ତି, ତାଙ୍କୁ କହି ଠାକୁରାଣୀଙ୍କ 'ମାଜଣା' କରାଯାଏ, ବାଜା ବାଜେ, ଧୂପ ଧୂଆଁ ଚହଲେ, ନାନା ଆଧିବିଧି ହୁଏ, ଭୋଗ ଦିଆହୁଏ । ଠାକୁରାଣୀଙ୍କ ବିଶିଷ୍ଟ ଭୋଗ —'ପଣା', ପାଣିରେ ଛେନା କଦଳୀ ଗୁଡ଼ ଏକାଠି ଚକଟା ହୋଇ ଗୋଟିଏ ନୂଆହାଣ୍ଡିରେ ଥୁଆ ହୋଇଥାଏ । ଠାକୁରାଣୀଙ୍କ ପୀଠ ପାଖେ ଓ ପ୍ରତି ଛକରେ ଏପରି ହାଣ୍ଡି ହାଣ୍ଡି ପଣା ଥୁଆ ହୋଇଥାଏ । କେତେବେଳେ କେଉଁ କାଳସୀ ଉପରେ ଠାକୁରାଣୀ 'ଅବତରନ୍ତି', ସେ ଉଠେ, ପାଗଳ ପରି ଅଙ୍ଗଭଙ୍ଗୀ କରେ, ଠାକୁରାଣୀ ତା ତୁଣ୍ଡରେ କହୁଛନ୍ତି ଏପରି ଭାବ ଦେଖାଇ ଲୋକଙ୍କୁ ଡରାଇ ଛୁଆଁ ନାନା କଥା କହେ, ଲୋକେ ଆହୁରି ଡରନ୍ତି ।

୧୯୨୩-୨୪ରେ ଜଗତ୍‌ସିଂହପୁର ଅଞ୍ଚଳରେ ପ୍ରବଳ ହଇଜା ଲାଗିଲା । ଗୁଡ଼ୁଆ, ବେଲଗର, ତନ୍ତୀସାହି, ରଘୁନାଥ ଆଦି ବହୁତ ଗାଁରେ ହଇଜା ହେଲା, ଲୋକ

ମଲେ । ଗୋପବାବୁ ଦେଖିଥାନ୍ତି ଯେ ହଇଜାକୁ ଲୋକେ ଭୟ କରୁଥିବାରୁ ରୋଗୀଙ୍କ ଯତ୍ନ କଥା ହୋଇପାରୁ ନାହିଁ, ରୋଗୀର ଝାଡାବାନ୍ତିରୁ ଯେ ରୋଗ ସଂକ୍ରମିତ ହୁଏ, ତାହା ରୋକ ହୋଇପାରୁ ନାହିଁ, ଅଜ୍ଞାନରେ ପଡ଼ି ରୋଗକୁ ଡର ଆଉ କିଛି ନ ଶୁଣି ନ କରି ଲୋକେ ରୋଗ ଦାଉରୁ ଆତ୍ମରକ୍ଷା କରିପାରୁ ନାହାନ୍ତି । ଗୋପବାବୁଙ୍କ ନିର୍ଦ୍ଦେଶ ଓ ନେତୃତ୍ୱରେ ଅଳକାଶ୍ରମ ହଇଜାରୋଗୀଙ୍କ ସେବା କରିବା ଓ ହଇଜା ଲୋକଙ୍କରେ ପ୍ରତିଷେଧକ ଉପାୟ କରିବା କାର୍ଯ୍ୟର ଦାୟିତ୍ୱ ନେଲେ । କର୍ମୀମାନେ, ଶିକ୍ଷକମାନେ ଓ ଛାତ୍ରମାନେ ସେଥିପାଇଁ ଜଗତସିଂହପୁର ଅଞ୍ଚଳରେ ଗାଁ ଗାଁ ବୁଲିଲେ । ଆଗେ ଲୋକେ ହଇଜା ରୋଗୀକୁ ଡାକ୍ତରଖାନାକୁ ନେଉ ନ ଥିଲେ । ସେମାନେ ବୋଲି ଆଣନ୍ତି ବା ଅଣାନ୍ତି । ଡାକ୍ତର ଔଷଧ ନେଇ ରୋଗୀଙ୍କ ଗାଁରେ ପହଞ୍ଚନ୍ତି, ରୋଗୀଙ୍କ ସେବା କରନ୍ତି, ତାଙ୍କୁ ସଫା ସୁତୁରା ରଖନ୍ତି, ତାଙ୍କ ଲୁଗାପଟା ଗାଁ ପୋଖରୀରେ କିମ୍ବା ସର୍ବସାଧାରଣ ବ୍ୟବହାର କରୁଥିବା ସ୍ଥାନରେ ନ ଧୁଆଇ ସେସବୁ ଡିସ୍‌ଇନ୍‌ଫେକ୍ଟ କରାନ୍ତି, ଗୃହଆଡ ଡିସଇନ୍‌ଫେକ୍ଟ କରାନ୍ତି, ପାଣି ଫୁଟାଇ ପିଇବ, ଗରମ ଜିନିଷ ଖାଇବ, ପାଚିବାଟେ ରୋଗ ଆକ୍ରମଣ କରେ, ସେଥିପାଇଁ ସାବଧାନ ହେବ, ଜୀବାଣୁନାଶକ ଔଷଧ ବ୍ୟବହାର କରିବ, ମୁହଁ ହାତ ଗୋଡ ଧୋଇବ, ମାଛି ବସାଇ ଦେବ ନାହିଁ, ଏହିପରି ନାନା ଉପଦେଶ ଦିଅନ୍ତି ଓ ଭୟ ଛଡାନ୍ତି । ସ୍ୱେଚ୍ଛାସେବକମାନେ ନିଜେ ଏସବୁ କାର୍ଯ୍ୟରେ ତାଲିମ୍ ଦେଇଥାନ୍ତି, ଜୀବାଣୁନାଶକ ବ୍ୟବସ୍ଥା ଗ୍ରହଣ କରିଥାନ୍ତି, ସେମାନେ ସଙ୍ଗରେ ପିଇବାପାଣି ନେଇଯାନ୍ତି, ପ୍ରଚୁର ଡିସଇନ୍‌ଫେକ୍‌ଟେଣ୍ଟ ନେଇଯାନ୍ତି । ସେମାନଙ୍କୁ ଗୋଟିଏ ଗୋଟିଏ ନୂଆ ପୋଷାକ ଦିଆଯାଉଥିଲା, ସେମାନେ ତାକୁ ପିନ୍ଧି ସେବାକାମକୁ ଯାଉଥିଲେ, ସେଠୁ ଫେରି ତାକୁ ବଦଳି ପକାଇ ଡିସଇନ୍‌ଫେକ୍‌ଟେଣ୍ଟ (ଜୀବାଣୁନାଶକ ଔଷଧ)ରେ ଧୋଉଥିଲେ, ନିଜେ ସଫାସୁତୁରା ହେଉଥିଲେ, ତାପରେ ଆଶ୍ରମ ଭିତରକୁ ପଶୁଥିଲେ । ଗୋପବାବୁ ଏ କାର୍ଯ୍ୟରେ ନିଜେ ଖୁବ୍ ନଜର ଦେଉଥିଲେ ।

ଲୋକଙ୍କ ଭୟ ତୁଟାଇବାକୁ ଯେତେ ଚେଷ୍ଟା କଲେ କିଛି ଫଳ ହେଲା ନାହିଁ, ପୂଜକମାନେ ଓ କାଳିସୀମାନେ ପ୍ରତିବାଦ କଲେ । ଲୋକେ ତାଙ୍କ ପୁରୁଣା ବିଶ୍ୱାସରେ ରହିଲେ । ଗୋପବାବୁ କହୁଥିଲେ; "ଆଗ ପଣାହାଣ୍ଡି ଭଙ୍ଗାଯାଉ ।" ଲୋକଙ୍କ ବିଶ୍ୱାସ ଥିଲା ଏହି ପଣାହାଣ୍ଡି ସର୍ଗିବ ଠାକୁରାଣୀ ତାକୁ ରଖିବେ ଓ ହଇଜା କରାଇ ଖାଇଯିବେ । ଲୋକେ ଯେତେବେଳେ ଦେଖିବେ ଯେ ଆଶ୍ରମଲୋକେ ପଣାହାଣ୍ଡି ଭାଙ୍ଗୁଛନ୍ତି ଅଥଚ ତାଙ୍କର କିଛି ଅନିଷ୍ଟ ହେଉନାହିଁ ତାଙ୍କର ପୁରୁଣା ବିଶ୍ୱାସ ଦୋହଲିଯିବ । ସ୍ୱେଚ୍ଛାସେବକମାନେ ଓ ନିଜେ ଗୋପବାବୁ ବୁଲି ବୁଲି ଖୋଜି ଖୋଜି ଯେଉଁଠି ପଣାହାଣ୍ଡି ଦେଖିଲେ ତାକୁ ପିଟି ପିଟି ଭାଙ୍ଗିଲେ । ଏ କାର୍ଯ୍ୟ ଚାଲିଲା । ତାପରେ, ଯେଉଁ ସରକାରୀ ଡାକ୍ତର ହଇଜା କାମ ପାଇଁ ଆସିଥିଲେ ସେ ଆଉ

ଗୋଟିଏ ଉପାୟ କରାଇଲେ; ଯେଉଁ କାଳିସୀମାନେ ଠାକୁରାଣୀ ମାର୍ଜଣା କରନ୍ତି, ଯୋଡ଼ାଏ ଜାଗାରେ ତାଙ୍କୁ ମାଡ଼ ଦିଆଗଲା; ଲୋକେ ଦେଖିଲେ ଯେ ମାଡ଼ ମାରିବା ଲୋକଙ୍କର କୌଣସି ଅନିଷ୍ଟ ହେଲା ନାହିଁ ।

ସେତେବେଳେ ହଇଜା ପାଇଁ ଆଁକବାଲିକା ପରି ଔଷଧ କି ପ୍ରତିଷେଧକ ନ ଥିଲା । ଗୋପବନ୍ଧୁ ଲେଖିଛନ୍ତି "ଔଷଧ ଭିତରେ 'Essence of Cinnamon' —ପୁଦିନା ପାରନ୍ଟା ପ୍ରସ୍ରାବ ବନ୍ଦ ଅବସ୍ଥାରେ ଖୁବ୍ କାମ କରୁଥିବାର ଦେଖାଯାଉଥିଲା । ପ୍ରଥମ ଅବସ୍ଥାରେ Chlorotone Bismuth ଦେଇ ଖୁବ୍ ଭଲ ଫଳ ହୋଇଥିବାର ଦେଖାଯାଇଛି । ଅବଶ୍ୟ Injection ସମସ୍ତ ମୃତ୍ୟୁଦାୟକ ହେଲେ ବଞ୍ଚିବାର ଖୁବ୍ ସମ୍ଭାବନା ।" ହଇଜାରେ ଅନେକ ରୋଗୀ ମରୁଥିଲେ, ଚିକିତ୍ସା ପାଇଲେ କେହି କେହି ବଞ୍ଚୁଥିଲେ । ଚିକିତ୍ସାପାଇଁ ଡାକ୍ତରଖାନାକୁ ଆଣିଲେ କିମ୍ବା ଗାଁରେ ହୋମିଓପ୍ୟାଥି ବା ଏଲୋପ୍ୟାଥି ଔଷଧ ଦେଲେ ତା ଅର୍ଥ ଠାକୁରାଣୀଙ୍କ ଅସ୍ୱୀକାର କରିବା ଓ ତହିଁରେ ଠାକୁରାଣୀ ଆହୁରି କ୍ଷତି କରିବେ,—ପୂଜକମାନେ ଓ କାଳିସୀମାନେ ଏ ବିଶ୍ୱାସ ଦୃଢ଼ କରୁଥିଲେ, କାରଣ ତହିଁରେ ତାଙ୍କର ନିଜ ସ୍ୱାର୍ଥ ଥିଲା । କିନ୍ତୁ ଯେତେ ଯେତେ ଚିକିତ୍ସା ପାଇ ରୋଗୀ ଭଲ ହେଲେ, ଲୋକଙ୍କର ଏ ବିଶ୍ୱାସ ଦୁର୍ବଳ ହେଲା ।

ଡାକ୍ତରି ଚିକିତ୍ସାପାଇ ଭଲ ହେଉ ହେଉ ପୁଣି ଲୋକେ କିପରି ନିଜ ପୁରୁଣା ବିଶ୍ୱାସ ପୁରୁଣା ଅଭ୍ୟାସକୁ ଏଡ଼ି ନ ପାରି ମରୁଥିଲେ, ଗୋପବନ୍ଧୁ ତାଙ୍କ 'ଅସମ୍ପୂର୍ଣ୍ଣ ଆତ୍ମଜୀବନୀ'ରେ ସେହିଭଳି ଯୋଡ଼ାଏ ଘଟଣା ଲେଖିଛନ୍ତି :

"ବେଲଗଡ଼ ତନ୍ତ୍ରସାହି—ଏଠାରୁ ରୋଗ ଆରମ୍ଭ ହୋଇଥିଲା ବୋଲି ଜଣାପଡ଼େ । ରଥଯାତ୍ରାରୁ ଫେରି ହଇଜା ଆରମ୍ଭ । ଡା. ବୋଷ ଡାକ୍ତର ଓ ଅସ୍ପତାଳ ପିଲାଏ ରୋଗୀଙ୍କୁ ଦେଖୁଥାନ୍ତି । ଗୋଟିଏ ରୋଗୀକୁ ପ୍ରାୟ ଦିନ ଦଶଟା ବେଳେ ଇଞ୍ଜେକ୍‌ସନ୍ ଦିଆ ହୋଇଥିଲା । ୨ଟା, ୩ଟା ବେଳେ ତା ଅବସ୍ଥା ଖୁବ୍ ଭଲ ଥିଲା ବୋଲି ଦେଖି ଆସିଥିଲେ । ୫ଟା ବେଳେ ଗଲାବେଳକୁ ଦେଖାଗଲା ରୋଗୀ ଗୃହପାଖେ ୫।୭ ଜଣ ବସିଛନ୍ତି, ରୋଗୀ ଉଠି ବସିଛି, ତା ହାତରେ ପଣା ହାଣ୍ଡି ଟିଏ, ସେ ସେଥିରେ ମୁହଁ ଲଗାଇ ତାକୁ 'ପ୍ରସାଦ' କରି ଦେଉଛି । ପଣାରେ ବେଶି କିଛି ନାହିଁ, କେବଳ କିଛି ଛେନା, କଦଳୀ, ଗୁଡ଼ ଇତ୍ୟାଦି । ରାତିରେ କି ପରଦିନ ସକାଳୁ ରୋଗୀଟି ମରି ଯାଇଥିଲା । ରୋଗ ପୁଣି ବାହାରି ପଡ଼ିଥିଲା ।

ସେହି ଗାଁରେ ଜଣେ ବ୍ରାହ୍ମଣ, ସେ ଖୁବ୍ ଠାକୁରାଣୀ ମାର୍ଜନା କରାନ୍ତି— ଦିପହରିଆ ବେଶ୍ ରୋଜଗାର କରନ୍ତି । ଡାକ୍ତରି ଔଷଧ ଦେବା ବିରୁଦ୍ଧରେ ଥିଲେ । ତାଙ୍କୁ ନିଜେ ହଇଜା ହେଲା । ଡାକ୍ତରଖାନାକୁ ନିଆଯାଇଥିଲା । ଭଲ ହୋଇ

ଆସିଥିଲେ । ଭୋକ ଖୁବ୍ ହେଉଥାଏ । ଡାକ୍ତରଖାନା ପଥ୍ୟ ପରିବର୍ତ୍ତେ ଘରୁ ବାଲି ଅଣାଇ ଖାଇବାକୁ ଅନୁମତି ଦିଆହୋଇଥିଲା । ମାତ୍ର ବାର୍ଲି ବୋଲି ଲୋଟାରେ ଭାତ ଆଣି ଖାଇବାକୁ ଦିଆଯାଉଛି ଦେଖାଗଲା । ଦେଖିଲାବେଳକୁ ଭାତ ତାର କାମ କରି ସାରିଲାଣି । ପରଦିନ ପେଟ ଫାମ୍ପି ରୋଗର ପୁଣି ଆଗମନ ଓ ସେଥିରେ ତାଙ୍କର ମୃତ୍ୟୁ ହୋଇଥିଲା ।"

ପ୍ରାୟ ଦେଢ଼ମାସ ପର୍ଯ୍ୟନ୍ତ ହଇଜା କାମ ଚାଲିଲା ଓ ପ୍ରାୟ ୫୦।୬୦ ଖଣ୍ଡ ଗାଁରେ ଗୋପବାବୁ ଓ ବିଶ୍ୱନାଥ ପଣ୍ଡା ଆଦି ଆଶ୍ରମର କର୍ମୀମାନେ ଓ ଆଶ୍ରମର ଛାତ୍ରମାନେ ବୁଲି ବୁଲି ଔଷଧପତ୍ର ବାଣ୍ଟିଲେ ଓ ରୋଗୀ ସେବା କଲେ, ପ୍ରତିଷେଧକ ବ୍ୟବସ୍ଥା କଲେ ଓ ହଇଜା ଟିକାକରଣ କାର୍ଯ୍ୟରେ ସରକାରୀ ଉଦ୍ୟମ ସହିତ ସହଯୋଗ କଲେ । ଜଗତ୍‌ସିଂହପୁରର ଡାକ୍ତର ମହେନ୍ଦ୍ର ମିଶ୍ରଙ୍କ ପାଖରୁ, ସରକାରୀ ହଇଜା ଟିକାକରଣ ଡାକ୍ତରଙ୍କ ପାଖରୁ ଓ ଅନ୍ୟାନ୍ୟ ସୂତ୍ରରୁ ଔଷଧପତ୍ର ନିଆ ହେଉଥିଲା । ସେତେବେଳେ କଟକରେ ଡାକ୍ତର ପ୍ରଫୁଲ୍ଲ ଚନ୍ଦ୍ର ଘୋଷ ଏମ୍. ବି. ଥିଲେ । ସେ ଜଣେ ସେ କାଳର ନାମଜାଦା ଡାକ୍ତର । ଗୋପବାବୁ ତାଙ୍କୁ ଟେଲିଗ୍ରାଫ୍ କରି ଡକାଇଲେ ଓ ଦିନାକେତେ ହଇଜା କାମରେ ଲଗାଇଲେ । ଡାକ୍ତର ପ୍ରଫୁଲ୍ଲ ଚନ୍ଦ୍ର ଘୋଷ ପ୍ରାୟ ଦେଢ଼ମାସ ପର୍ଯ୍ୟନ୍ତ ଅଲକାଶ୍ରମରେ ରହି କାର୍ଯ୍ୟ କଲେ । ଗୋପବାବୁ ଓ ଅନ୍ୟାନ୍ୟ କର୍ମୀ କିଛି ହୋମିଓପାଥି ଶିଖି ହୋମିଓପାଥି ଔଷଧ ମଧ୍ୟ ଦେଉଥିଲେ । ସତ୍ୟବାଦୀର ଈଶ୍ୱର ଚନ୍ଦ୍ର ମିଶ୍ର ହୋମିଓପ୍ୟାଥ୍, ଘନଶ୍ୟାମ ଦାସ, ନୀଳମଣି ପ୍ରଧାନ, ନରସିଂହ ଷଡ଼ଙ୍ଗୀ ଏପରି ୭।୮ ଜଣ କର୍ମୀ ଆସି ଅଲକାଶ୍ରମଠୁ ୧୦ ମାଇଲ୍ ଭିତରେ ବୁଲି ହଇଜା କାମ କରୁଥାନ୍ତି, ତାଙ୍କ ସଙ୍ଗେ ଗୋପବାବୁ ଓ ଆଶ୍ରମର ଅନ୍ୟାନ୍ୟ କର୍ମୀ, ଶିକ୍ଷକ ଓ କେତେକ ଛାତ୍ର ହଇଜା କାମକୁ ହାତକୁ ନେଇ ବାରମ୍ବାର ଡିଷ୍ଟ୍ରିକ୍ଟ ବୋର୍ଡ଼ ସହିତ ସମ୍ପର୍କ ରଖିଲେ ଓ ଡିଷ୍ଟ୍ରିକ୍ଟ ବୋର୍ଡ଼ ବହୁତ ଟଙ୍କା ଖର୍ଚ୍ଚ କଲେ । ଗୋପବାବୁ ଲେଖିଛନ୍ତି, "ଆଶ୍ରମ ଏହି କାମକୁ ହାତରେ ନେବାଦ୍ୱାରା ଡିଷ୍ଟ୍ରିକ୍ଟ ବୋର୍ଡ଼କୁ ସେ ଅଞ୍ଚଳରେ ବହୁତ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଥିଲା । କାରଣ ଡିଷ୍ଟ୍ରିକ୍ଟ ବୋର୍ଡ଼କୁ ନିୟମିତ ରୂପେ ସବୁ ହାଲ ଜଣାଇ ସାହାଯ୍ୟ ଲୋଡ଼ା ଯାଉଥିଲା । କହିବା ବାହୁଲ୍ୟ, ସେତେବେଳର ଚେୟାରମ୍ୟାନ୍ ମହୋଦୟ ନିମାଇଁ ଚରଣ ମିତ୍ର ଏ କାମରେ ଯତ୍‌ପରୋନାସ୍ତି ସାହାଯ୍ୟ କରିଥିଲେ ।"

ଗୋପବାବୁ ଓ ଅଲକାଶ୍ରମର ଅନ୍ୟମାନେ କିପରି ନିଜ ଜୀବନକୁ ପାଣିଛଡ଼ାଇ ଦେଶଲୋକଙ୍କର ଉପକାର କରୁଛନ୍ତି, ଲୋକଙ୍କର ତା ଆଉ ବୁଝିବାକୁ ବାକି ନ ଥିଲା । ଚାରିଆଡ଼େ କଂଗ୍ରେସର ପ୍ରଭାବ ବଢ଼ି ଉଠିଲା, ଲୋକେ ଭାବୁଥିଲେ, ବଦଳୁଥିଲେ । ଗୋଟିଏ ବିଚିତ୍ର ଘଟଣା ମନେପଡ଼େ । ଗୋପବାବୁ ଲେଖିଛନ୍ତି—

"ଏ ମୁତ ମଧ୍ୟରେ ସବୁଠାରୁ ମଧୁର ଅଭ ଗୋଟିଏ ଅଛୁ । ଦେଓ୍ବାନ୍ ବାହାଦୂର ଶ୍ରୀକୃଷ୍ଣ ମହାପାତ୍ରଙ୍କ ଘର ଗୃହଦ୍ୱାରେ । ସେତେବେଳକୁ ସେ ପୁଲିସ୍ ସାହେବ୍, ତଥା ଅସହଯୋଗ ବନ୍ଦେଇରେ । ସେ ଅଲକାଶ୍ରମକୁ ଜଳେଇବାକୁ ଚେଷ୍ଟା କରୁଥିଲେ । ଦିନେ ହଠାତ୍ ସକାଳୁ କେତେଗୁଡ଼ିଏ ବାଲି ତିଣି ଜଣେ କିଏ ମନେ ନାହିଁ—ସମ୍ଭବତଃ ତାଙ୍କର ପୁଅ—ଆଶ୍ରମରେ ଆଣି ଦେଇଗଲେ, କହିଗଲେ ହଇଜାରୋଗୀଙ୍କ ପାଇଁ ଦେଓ୍ବାନ୍ ବାହାଦୂର ଏତକ ଦେଇଛନ୍ତି ।

ନିଃସ୍ୱାର୍ଥ ଜନସେବା ପ୍ରତିପକ୍ଷର ମନ ମଧ୍ୟ ଟଳେଇ ଦେବ ଏଥିରେ ସନ୍ଦେହ ନାହିଁ ।

ଅଲକାଶ୍ରମରେ ଆଉ ଗୋଟିଏ କାର୍ଯ୍ୟ ଥିଲା ସେ ଅଞ୍ଚଳରେ ମ୍ୟାଲେରିଆ ଚିକିତ୍ସା । ପ୍ରବଳ ମ୍ୟାଲେରିଆ ହେଉଥିଲା । ଗୋପବାବୁ ଓ କର୍ମୀମାନେ ବୁଲି ବୁଲି ରୋଗୀଙ୍କର ସେବା କରୁଥିଲେ, ଔଷଧ ବାଣ୍ଟୁଥିଲେ, ରୋଗୀଙ୍କୁ କୁଇନାଇନ୍ ଖୁଆଉଥିଲେ, ମଶାରି ବ୍ୟବହାର କରିବାକୁ କହାଉଥିଲେ, ମଶା ମାରିବା ଔଷଧ ବାଣ୍ଟୁଥିଲେ ଓ ଅଗଣା ସଫା କରିବା, ନଈ ପୋଖରୀରୁ ଦଳ ସଫା କରିବା, ଝିଙ୍କ ଗାଡ଼ିଆ ପୋତିବା ଇତ୍ୟାଦି ନାନା ପ୍ରତିରୋଧକ ବ୍ୟବସ୍ଥା ବତାଉଥିଲେ । ସେମାନେ ମ୍ୟାଲେରିଆ ବିଷୟରେ ନାନା ଅଭିଜ୍ଞତା ଅର୍ଜନ କରୁଥିଲେ ଓ ତାକୁ କାର୍ଯ୍ୟରେ ଲଗାଉଥିଲେ ।

## ଛଅ

### ତାଙ୍କ ତୃତୀୟ ସନ୍ତାନର ମୃତ୍ୟୁ

୧୯୨୨ରୁ ଗୋପବାବୁ ଅଲକାଶ୍ରମ କାର୍ଯ୍ୟ ସହିତ ସମ୍ପୃକ୍ତ ହେଲେ ଓ ୧୯୨୨ ଆରମ୍ଭରୁ ସେଠି ରହିଲେ, ତା ଆଗରୁ ବି ଯା ଆସ କରୁଥିଲେ । ଠିକ୍ ସେତେବେଳେ

ସେ ଏହି ନୂଆକାର୍ଯ୍ୟରେ ମନପ୍ରାଣ ଢାଳଦେଇ କାର୍ଯ୍ୟ ଆରମ୍ଭ କରିଥାନ୍ତି ଓ ନାନା ସ୍ୱପ୍ନ ଦେଖୁଥାନ୍ତି, ସେତେବେଳେ ସତେ ଅବା, ଭବିଷ୍ୟତ ପାଇଁ ଏହି ସର୍ବତ୍ୟାଗୀ ମହାପୁରୁଷଙ୍କର ପ୍ରସ୍ତୁତିକୁ ଆହୁରି ଦୃଢ କରିବା ଉଦ୍ଦେଶ୍ୟରେ ତାଙ୍କର ଗୋଟିଏ ମର୍ମନ୍ତୁଦ ଦୁର୍ଘଟଣା ଘଟିଲା । ସେତେବେଳକୁ ତାଙ୍କର ଦୁଇଟି ପୁଅ ଓ ଗୋଟିଏ ଝିଅ ( ମନ୍‌ମୋହନ, ଅନ୍ନପୂର୍ଣ୍ଣା ଓ ବଳ ) ଜନ୍ମ ହୋଇଥାନ୍ତି । ଖୋପବାବୁ ଅଲକାଶ୍ରମରେ ଥାନ୍ତି, ରମା ଦେବୀ ଓ ତାଙ୍କ ପିଲାଏ କଟକରେ ତାଙ୍କ ଘରେ ଥାନ୍ତି । ୧୯୬' ସାଲ ମେ ମାସରେ ଦିନେ ହଠାତ୍ ତାଙ୍କ ସାନପୁଅ ବଳ କଲେରାରେ ମରିଗଲା । ଗୋପବାବୁ ତାଙ୍କ ପୁଅର ମୃତ୍ୟୁ ସମ୍ବାଦ ପାଇଲେ । ରାମନାମ ନେଲେ, କିନ୍ତୁ ବିଚଳିତ ହେଲେ ନାହିଁ । ଏ ବିଷୟରେ ସେ ଲେଖିଛନ୍ତି—

"ସେ ମୃତ୍ୟୁ ସମ୍ବାଦଟି ହଠାତ୍ ସମସ୍ତ ପରିବାରକୁ ବିବ୍ରତ କରି ପକାଇଲେ ମଧ୍ୟ ମୁଁ ସେତେ ବିଚଳିତ ହୋଇ ନ ଥିଲି । ବାପାଙ୍କ ମୃତ୍ୟୁପରେ କୌଣସି ବନ୍ଧୁବାନ୍ଧବ ବା ଆତ୍ମୀୟସ୍ୱଜନଙ୍କ ମୃତ୍ୟୁଟା ମୋତେ କିଛି ନୂଆ ବା ବିଶେଷ କଥା ପରି ଲାଗେ ନାହିଁ ଏବଂ ମୁଁ ଶୀଘ୍ର ସମ୍ଭାଳି ହୋଇଥାଏ । ନିଜର ପୁଅର ମୃତ୍ୟୁ ଯେ ମତେ ବିଶେଷ ବିଚଳିତ କରି ନାହିଁ, ତାର ପ୍ରମାଣ ମୋର ସ୍ପଷ୍ଟ ମନେପଡ଼େ । ମୁଁ ମୃତ୍ୟୁରାତିର ପରଦିନ ସକାଳୁ ଆଶ୍ରମରେ—କଂଗ୍ରେସ ଅଫିସରେନିଶ୍ଚିନ୍ତରେ ବସି କାମ କରିଥିଲି ଏବଂ ମୋର ମଧ୍ୟ ଏତିକି ଅନୁଭୂତି ଏହିକୁ କ୍ଷଣିକ ଦୁଃଖ ଏଡ଼େଇବାର ପ୍ରଧାନ ଉପାୟ ନିଜର ସତ୍ ଧନ୍ଦାରେ ଲାଗି ରହିବା । ମୋର ଏ ବାହାଦୁରୀ କହିବାକୁ ବା ମୋର ହୃଦୟର କଠୋରତା କହିବାକୁ, ଏ ବିଷୟରେ ଜଣାଇବାକୁ ଏ କଥାର ଉଲ୍ଲେଖ କରି ନାହିଁ ।

ଏହି ଘଟଣା ଆଉ ଗୋଟିଏ କଥା ଯେ ଆଖିରେ ଆଙ୍ଗୁଳି ଦେଇ ଦେଖାଇ ଦେଇଥିଲା ସେଥିରେ ମୋର ସନ୍ଦେହ ନାହିଁ ।

### ତାଙ୍କ ମନର ପରିବର୍ତ୍ତନ—ବିବାହିତ ଜୀବନରେ ବ୍ରହ୍ମଚର୍ଯ୍ୟ ଅଭ୍ୟାସ

ଦେଶକାମରେ ଗୋଡ଼ ପୂରାଇଲା ଦିନଠାରୁ ବେଳେବେଳେ ମନରେ ଉଠୁଥିଲା ପିଲାପିଲି ସୃଷ୍ଟିଏ ହେଲେ ବା କୁଟୁମ୍ବର ହୋଇ ରହିଥିଲେ ଦେଶକାମ ନିର୍ବାଧରେ ଚାଲିବ ନାହିଁ । ଏ ପୁଅଟିର ମୃତ୍ୟୁପରେ ଦଶେ କାହିଁକି ମୋର ଏକା ନୁହଁ ମୋର ସ୍ତ୍ରୀର ମଧ୍ୟ ଏହି ଭାବ ମନରେ ଜାଗି ଉଠିଲା, ଯେ ଭଗବାନ ଆମର ପିଲାପିଲି ହେବା ଚାହାନ୍ତି ନାହିଁ । ଯେତେକ ଦେଇଛନ୍ତି ସେତିକ ଯଥେଷ୍ଟ । ସେଥିପାଇଁ ପିଲାପିଲି ବନ୍ଦ କରିବା ଠିକ୍ କଲୁ । ସେତେବେଳେ ଯାଏ ସଂଯମ ବୋଲି ଗୋଟିଏ

ଉପାୟ ଏଥିପାଇଁ ଅଛି ତାହା ମୁଣ୍ଡରେ ପଶି ନ ଥାଏ । ସେଥିପାଇଁ ଭଗବାନଙ୍କ ଏ କାମ ପାଇଁ ଭଗବାନଙ୍କ ଉପାୟ 'ଷ୍ଟୁପିଡ୍' ନାହିଁ, ସଇତାନର ଆଶ୍ରୟ ନେଲୁଁ, (Birth Control) ଗର୍ଭସଂଯମର ଗୋଟିଏ ଉପାୟ ଅନୁସରଣ କଲୁଁ ।......"

୨୯ ବର୍ଷ ବୟସ ହେବାଦିନଠାରୁ ଆଜୀବନ ସେ ସସ୍ତ୍ରୀକ ଥିଲେ ସୁଦ୍ଧା ପୂର୍ଣ୍ଣ ବ୍ରହ୍ମଚାରୀ ହୋଇ ଜୀବନ ବିତାଇଥିଲେ ।

ଦେଶସେବା କରିବାପାଇଁ ସେ ନିଜକୁ ସବୁ ପ୍ରକାରରେ ପ୍ରସ୍ତୁତ କରିଥିଲେ । ଓଡ଼ିଶାର ଗ୍ରାମଅଞ୍ଚଳେ ବୁଲି ବୁଲି ନାନା କାର୍ଯ୍ୟ କରିବାକୁ ଲାଗିଲେ ।

୧୯୨୨ର ଶେଷ ଆଡ଼କୁ ସେ ସପରିବାର ଗୟା ଗଲେ, ସେଠି ତାଙ୍କ ବାପାଙ୍କୁ ଶ୍ରାଦ୍ଧ ଦେଲେ । ସପରିବାର ଯିବାର ଉଦ୍ଦେଶ୍ୟ ବୁଝାଇ ସେ ଲେଖିଛନ୍ତି ଯେ ତାଙ୍କ ପରିବାରଙ୍କଠିଁ ଟିକିଏ ରାଜନୈତିକ ଆନ୍ଦୋଳନର ହାଓ୍ୱା ଲଗୁ ଏପରି ତାଙ୍କର ଇଚ୍ଛା ଥିଲା । ୧୯୨୩ରେ ନିଖିଳ ଭାରତ କଂଗ୍ରେସ୍ କାର୍ଯ୍ୟକାରୀ କମିଟି ବସିଲା, ସେ ଥିଲେ ନିଖିଳ ଭାରତ କଂଗ୍ରେସ୍ କମିଟିର ଓଡ଼ିଶାରୁ ପ୍ରଥମ ସଭ୍ୟ । କାର୍ଯ୍ୟକାରୀ କମିଟି ବୈଠକରେ ଯୋଗଦେଲେ, ତାଙ୍କ ପରିବାର ବି ନିଖିଳ ଭାରତ କଂଗ୍ରେସ୍ କମିଟିର ସମ୍ମିଳନୀ ଦେଖିଲେ । ତାପରେ ଅନେକଥର ସେ ସପରିବାର ଓଡ଼ିଶା ବାହାରେ ବିବିଧ ସମ୍ମିଳନୀକୁ ଯାଇଛନ୍ତି । କିଛିଦିନ ପରେ ଏ ଗୟାରୁ ସେ କଟକ ଫେରି ଆସିଲେ ।

୧୯୨୩ରେ ସେ କଟକ ମ୍ୟୁନିସିପାଲିଟିର ଜଣେ କମିସନର ହେଲେ, ତାଙ୍କ ନିର୍ବାଚନ ବିନା ପ୍ରତିଦ୍ୱନ୍ଦ୍ୱିତାରେ ହିଁ ହେଲା ।

ସେ ଓଡ଼ିଶାର ଗାଁ ଗାଁ ଜିଲ୍ଲା ଜିଲ୍ଲା ବୁଲୁଥାନ୍ତି, ନାନା ଗଠନମୂଳକ କାର୍ଯ୍ୟ କରୁଥାନ୍ତି ଓ କଂଗ୍ରେସ୍ କାର୍ଯ୍ୟ କରୁଥାନ୍ତି । ସେହି ବର୍ଷ ସେ ସିଂଭୂମ୍, ବାଲେଶ୍ୱର ଓ ପୁରୀ ଜିଲ୍ଲାରେ ପାଦରେ ବୁଲି ବୁଲି ଗାଁ ଗାଁ ଅନୁସନ୍ଧାନ ବୁଲୁଥାନ୍ତି, ଲୋକଙ୍କ ସଙ୍ଗେ ମିଶୁଥାନ୍ତି, ସେମାନଙ୍କ ସମସ୍ୟା ବୁଝୁଥାନ୍ତି ଓ କଂଗ୍ରେସ୍ କାର୍ଯ୍ୟ କରୁଥାନ୍ତି । ଅସହଯୋଗ ଆନ୍ଦୋଳନ ବେଳେ ଚୌରିଚୌରା (ଉତ୍ତର ପ୍ରଦେଶର ଗୋଟିଏ ଗାଁ)ରେ ୧୯୨୨ ଫେବୃଆରି ୫ ତାରିଖରେ ୨୨ ଜଣ ପୁଲିସ୍ ଗୋଟାଏ ଘରୁଥାଇ ଉପରେ ଗୁଳି ଚଳାଇଲେ । ତାଙ୍କ ଗୁଳି ସରିଗଲା ପରେ କ୍ରୁଦ୍ଧ ଜନତା ସେମାନଙ୍କୁ ହାଣି ପକାଇଲେ, ରକ୍ତବହେଲରେ ଆଉ ଗୋଟାଏ, ଚଣ୍ଡଗୋଳ ହେଲା । ଏହିସବୁ ହିଂସାକାଣ୍ଡ ଯୋଗୁଁ ଗାନ୍ଧୀଜୀ ଭାରତବ୍ୟାପୀ ଆଇନଅମାନ୍ୟ ଆନ୍ଦୋଳନକୁ ବନ୍ଦ କରିଦେବାକୁ ନିର୍ଦ୍ଦେଶ ଦେଲେ । ଫେବୃଆରି ୧୧ ଓ ୧୨ରେ ବରଦୋଲିରେ କଂଗ୍ରେସର କାର୍ଯ୍ୟକାରୀ କମିଟି ବସି ଗାନ୍ଧୀଜୀଙ୍କ ନିଷ୍ପତ୍ତିକୁ ସମର୍ଥନ କଲେ । ୧୯୨୨ରେ

ଦଳ ଭିତରୁ ତୀବ୍ର ବିରୋଧ ସତ୍ତ୍ୱେ '୨୨' ଫେବୃଆରୀ ୨୪ ଓ ୨୫ରେ ଦିଲ୍ଲୀରେ ବସିଥିବା ନିଖିଳ ଭାରତ କଂଗ୍ରେସ୍ କମିଟି ଗାନ୍ଧୀଜୀଙ୍କ ପ୍ରସ୍ତାବକୁ ଅନୁମୋଦନ କଲେ । ଆଇନ୍ ଅମାନ୍ୟ ଆନ୍ଦୋଳନ ବନ୍ଦ ହେଲା, ତା ସହିତ ଆକୁମାରୀ ହିମାଚଳ ଭାରତଯାକ ମହାତ୍ମାଙ୍କ ନେତୃତ୍ୱରେ ଯେଉଁ ଅସହଯୋଗ ଆନ୍ଦୋଳନ ଚାଲିଥିଲା ତାର ସବୁ କାର୍ଯ୍ୟକ୍ରମ ବନ୍ଦ ହୋଇଗଲା । ହଜାର ହଜାର ଲୋକ ସବୁ ଛାଡ଼ି ସେ ଆନ୍ଦୋଳନରେ ମାତି ଉଠିଥିଲେ, ଜେଲ୍ ଯାଇଥିଲେ, ଲାଠିମାଡ଼ ଖାଇଥିଲେ, ସର୍ବସ୍ୱାନ୍ତ ହୋଇଥିଲେ । ଆଶା କରିଥିଲେ ଆନ୍ଦୋଳନ ସଫଳ ହେବ, ସ୍ୱରାଜ୍ ଆସିବ । ନିରାଶ ହେଲେ । ସୁବିଧା ଦେଖି ଇଂରେଜ୍ ସରକାର ୧୮ ମାର୍ଚ୍ଚ ୧୯୨୨ରେ ମହାତ୍ମା ଗାନ୍ଧୀଙ୍କୁ ଛଅ ବର୍ଷ ଜେଲ୍ ଦେଇଦେଲେ ।

ସେତେବେଳେ, ଓଡ଼ିଶାରେ ୧୯୨୨, ୧୯୨୩ରେ ଓ ତାପରେ ଟଙ୍କାର ନିରାଶାରେ ପଡ଼ି ଅନେକ କଂଗ୍ରେସ କର୍ମୀ କଂଗ୍ରେସ୍ ପ୍ରତି ଆସ୍ଥା ତୁଟାଉଥାନ୍ତି, ଅନୁଷ୍ଠାନ ଛାଡ଼ି ଚାଲିଯାଉଥାନ୍ତି, ତା ସହିତ ସମ୍ପର୍କ ତୁଟାଉଥାନ୍ତି । ଓଡ଼ିଶା କଂଗ୍ରେସ୍‌ର ସେହି ଦୁର୍ଦ୍ଦିନରେ ଅଟଳ ରହି ଅଦମ୍ୟ ଉତ୍ସାହ, ଆଶା, ପ୍ରଫୁଲ୍ଲତା, ଅମ୍ଳାନ ରଖି ନିଶ୍ଚିନ୍ତ ମନରେ ଓ ସ୍ଥିର ବିଶ୍ୱାସରେ ଆଉ ଅହୁରି ଅଧିକ ସକ୍ରିୟ ରହି ସମସ୍ତଙ୍କୁ ଅନୁପ୍ରାଣିତ କରୁଥାନ୍ତି ଶ୍ରୀ ଗୋପବନ୍ଧୁ ଚୌଧୁରୀ, କଂଗ୍ରେସ୍ ଅନୁଷ୍ଠାନକୁ ଦୃଢ଼ୀଭୂତ କରୁଥାନ୍ତି ଓ ବଳ ଯୋଗାଉଥାନ୍ତି, ଅନେକେ ଏକଥା ମୁକ୍ତ କଣ୍ଠରେ ସ୍ୱୀକାର କରୁଥିଲେ ।

## ୧୯୨୩ ବ୍ରହ୍ମପୁର ଉତ୍କଳ ସମ୍ମିଳନୀ ଓ ଗୋପବାବୁ

୧୯୨୦ରେ ଚକ୍ରଧରପୁରରେ ହୋଇଥିବା ଉତ୍କଳ ସମ୍ମିଳନୀରେ ସମ୍ମିଳନୀର ମୌଳିକ ଉଦ୍ଦେଶ୍ୟରେ ଆମୂଳ ପରିବର୍ତ୍ତନ ହେଲାଭଳି ପ୍ରସ୍ତାବ ଗୃହୀତ ହୋଇ ଯାଇଥିଲା, ତାର ମୁଖ୍ୟ ଉଦ୍ଦେଶ୍ୟ ବୋଲି ଧାର୍ଯ୍ୟ ହୋଇଥିଲା, —ଭାରତର ସ୍ୱାଧୀନତା ପ୍ରାପ୍ତି । ମଧୁବାବୁଙ୍କ ନେତୃତ୍ୱରେ ଯେଉଁମାନେ ଏ ସମ୍ମିଳନୀ ଆରମ୍ଭ କରିଥିଲେ, ବିଚ୍ଛିନ୍ନାଞ୍ଚଳ ଏକୀକରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନକୁ ପ୍ରଧାନ ଲକ୍ଷ୍ୟ ରଖି, ସେମାନଙ୍କ ଦଳ ସଂଖ୍ୟାରେ ଦୁର୍ବଳ ହୋଇଯାଇଥିଲା । ସ୍ୱାଧୀନତା ଆନ୍ଦୋଳନ ଆଡ଼କୁ ହିଁ ଅଧିକାଂଶ ଲୋକ, ବିଶେଷତଃ ସେତେବେଳର ଉତ୍ସାହୀ ସକ୍ରିୟ ଯୁବକମାନେ ଆକୃଷ୍ଟ ହୋଇଥିଲେ । ସେତେବେଳେ ଗୋପବାବୁ ସରକାରୀ ଚାକିରିରେ ଥିଲେ ।

ତାପରେ ଦୁଇ ତିନିବର୍ଷ ସମ୍ମିଳନୀ ବସିଲା ନାହିଁ, ତାପରେ ୧୯୨୩ରେ ବ୍ରହ୍ମପୁରରେ ବସିଲା । ମହାତ୍ମାଜୀ ଓ ଓଡ଼ିଶାର ନେତା ଉତ୍କଳମଣି ଜେଲ୍‌ରେ ଥାନ୍ତି,

ଅସହଯୋଗ ଆନ୍ଦୋଳନ ଧିମେଇ ଯାଇଥାଏ । ଉତ୍କଳ ସମ୍ମିଳନୀର ପୂର୍ବତନ ନେତାମାନଙ୍କ ସହିତ କଂଗ୍ରେସ୍ ଦଳର ଲୋକେ ବି ସେ ସମ୍ମିଳନୀରେ ଯୋଗ ଦେଉଥିଲେ । ଗୋପବାବୁ ବି ଯାଉଥିଲେ । ଅନ୍ୟାନ୍ୟ କେତେକ କଂଗ୍ରେସ ନେତାଙ୍କ ସହିତ ସେ ବି ଉତ୍କଳ ସମ୍ମିଳନୀର ସ୍ଥାୟୀ ସଭାର ସଭ୍ୟ ଥିଲେ । ୧୯୨୩ ଡିସେମ୍ବର ୨୩ରେ ବ୍ରହ୍ମପୁର ସ୍ୱରାଜ୍ ଆଶ୍ରମରେ ଉତ୍କଳ ସମ୍ମିଳନୀର ସ୍ଥାୟୀ ସଭାର ବୈଠକ ହେଲା । ସଭାରେ ସଭାପତି ଶ୍ରୀ ବିଚିତ୍ରାନନ୍ଦ ଦାସ । ଉତ୍କଳ ସମ୍ମିଳନୀର ସଭାପତି ଥିଲେ ଶ୍ରୀ ଲକ୍ଷ୍ମୀଧର ମହାନ୍ତି । ତାଙ୍କର ଗୋଟିଏ ପ୍ରସ୍ତାବର ଅନୁମୋଦକ ଥିଲେ ଶ୍ରୀ ରାମକୃଷ୍ଣ ରଥ ଓ ସମର୍ଥକ ଥିଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ । ପ୍ରସ୍ତାବଟି ଥିଲା :

"ଏହି ସ୍ଥାୟୀ ସଭା ପକ୍ଷରୁ ଆନ୍ଧ୍ର-ଉତ୍କଳର ସୀମା ନିର୍ଦ୍ଧେଶ ସମ୍ବନ୍ଧରେ ଯେଉଁ ଦାବୀ କରାଯାଇଛି ତତ୍ ସମ୍ବନ୍ଧରେ ରିପୋର୍ଟ୍ ପ୍ରସ୍ତୁତ ଓ ପ୍ରମାଣ ସଂଗ୍ରହ ନିମନ୍ତେ ଏବଂ ଏହାକୁ କଂଗ୍ରେସ୍‌ର ସୀମା-ନିର୍ଦ୍ଧେଶ କମିଟି ସମକ୍ଷରେ ଉପସ୍ଥାପିତ କରିବା ନିମନ୍ତେ ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଗୋଟିଏ କମିଟି ଗଠିତ ହୋଇଛି :— ଶ୍ରୀ ଶଶୀଭୂଷଣ ରଥ, ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ, ଶ୍ରୀ ଲାଲମୋହନ ପଟ୍ଟନାୟକ ଓ ଶ୍ରୀ ଅପର୍ଣ୍ଣା ପଣ୍ଡା । ଉତ୍କଳ ସମ୍ମିଳନୀର ପାଣ୍ଠି ଶ୍ରୀ ଜଗବନ୍ଧୁ ସିଂହଙ୍କ ନିକଟରେ ରକ୍ଷିତ ଥାଏ । ଏ ସଭା ନିଷ୍ପତ୍ତି କଲେ ଯେ ସେ ପାଣ୍ଠି ଏ ସ୍ଥାୟୀ ସଭାର ରକ୍ଷିତ ପାଣ୍ଠି ବୋଲି ସ୍ଥିର ହେଉ ।"

ଏ ସଭାରେ ଯେଉଁମାନେ ଉପସ୍ଥିତ ଥିଲେ ସେମାନଙ୍କ ନାମ—

କଟକର—ସର୍ବଶ୍ରୀ ଗୋପବନ୍ଧୁ ଚୌଧୁରୀ, ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଦେଓ୍ୱାନ୍ ବାହାଦୁର୍ ଲକ୍ଷ୍ମୀଧର ମହାନ୍ତି, କୃଷ୍ଣଚନ୍ଦ୍ର ମିଶ୍ର

ପୁରୀର—ଶ୍ରୀ ଦିଗମ୍ବର ଶ୍ରୀଚନ୍ଦନ

ଗଞ୍ଜାମର—ସର୍ବଶ୍ରୀ ରାମକୃଷ୍ଣ ରଥ, କୃଷ୍ଣଚନ୍ଦ୍ର ସାହାଣି, ଶ୍ରୀନିବାସ ପରିଡ଼ା, ଲିଙ୍ଗରାଜ ପାଣିଗ୍ରାହୀ, ଲାଲମୋହନ ପଟ୍ଟନାୟକ, ଈଶ୍ୱର ସାହୁ, ମଧୁସୂଦନ ଶର୍ମା ।

'ଉତ୍କଳ ଦୀପିକା'ର ୨ୟ ୫୫, ଫେବୃଆରୀ ୧୯୨୪ ସଂଖ୍ୟାରେ ଏ ସଭାର ବିବରଣୀ ପ୍ରକାଶିତ ହୋଇଥିଲା ।

## ଉତ୍କଳ ସମ୍ମିଳନୀ ପ୍ରତି ତାଙ୍କର ଆଭିମୁଖ୍ୟ

କିନ୍ତୁ ୧୯୨୩ରେ ବ୍ରହ୍ମପୁରରେ ବସିଥିବା ଉତ୍କଳ ସମ୍ମିଳନୀ ପରେ ସେ ତାହା ପ୍ରତି ବିଶେଷ ଆକୃଷ୍ଟ ହୋଇଥିବା ଜଣାପଡ଼େ ନାହିଁ । ୧୯୨୦ରେ କଟକଣ

ଛାଡ଼ି ସେ ଦେଶ କାମ ଧରିଥିଲେ, କଂଗ୍ରେସ୍‌ରେ ମିଶିଥିଲେ, ତାଙ୍କ ଆଖିରେ ଭାରତର ସ୍ୱାଧୀନତାପ୍ରାପ୍ତି ପାଇଁ ଆନ୍ଦୋଳନ ହିଁ ମୁଖ୍ୟ ହୋଇଥିଲା, ଉତ୍କଳ ସମ୍ମିଳନୀର ଆନ୍ଦୋଳନ ନୁହେଁ । ଓଡ଼ିଶାର ବିଚ୍ଛିନ୍ନ ଅଞ୍ଚଳ ସମେତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଉ, ଏଥିପାଇଁ ତାଙ୍କର ପ୍ରବଳ ଆକାଙ୍‌କ୍ଷା ଥିଲା, ହେବା ବି ସ୍ୱାଭାବିକ । ଉତ୍କଳ ସମ୍ମିଳନୀ ଆନ୍ଦୋଳନ ମୂଳରୁ ତାଙ୍କର ଆଠବର୍ଷ ଦିନୁ ତେରବର୍ଷ ଯାଏ ତାଙ୍କ ବାପା ଗୋକୁଳାନନ୍ଦ ଚୌଧୁରୀ ଥିଲେ ସେ କାର୍ଯ୍ୟରେ ମଧୁବାବୁଙ୍କ ପ୍ରଧାନ ସହକର୍ମୀ । କିନ୍ତୁ ଇଂରେଜ ସରକାରଙ୍କୁ ଦୁଃଖ ଜଣାଇ ଦରଖାସ୍ତ ଦେଇ କହୁଦୋରୁ ଖୁସି କରି ତାଙ୍କୁ ରାଜି କରି ଓଡ଼ିଶାର ନ୍ୟାଯ୍ୟ ଦାବୀ ପୂରଣ କରି ହେବ ଓ ସ୍ୱତନ୍ତ୍ର ପ୍ରଦେଶ ମିଳିପାରିବ, ଏ ବିଶ୍ୱାସ ତାଙ୍କର ନଥିଲା, କି ଏହିଭଳି ନରମ ଉପାୟ ଅବଲମ୍ବନ କରୁଥିବା ଓ ଭାରତୀୟ ସ୍ୱାଧୀନତା ଆନ୍ଦୋଳନଠୁ ଅଲଗା ରହୁଥିବା ଗୋଟିଏ ସ୍ଥାନୀୟ ଅନୁଷ୍ଠାନ ଏ କାର୍ଯ୍ୟ କରିପାରିବ, ଏଭଳି ବିଶ୍ୱାସ ତାଙ୍କର ନ ଥିଲା । ଅବଶ୍ୟ, 'ଉତ୍କଳ ଦୀପିକା'ର ୧୯୨୪ ଫେବୃଆରି ୧୬ରେ ଗୋଟିଏ ସମ୍ବାଦ ବାହାରିଥାଏ ଯେ ଶ୍ରୀ ଭୁବନାନନ୍ଦ ଦାସଙ୍କ ଗୋଟିଏ ପ୍ରଶ୍ନର ଉତ୍ତରରେ ସରକାର କହିଥାନ୍ତି ଯେ ବିଚ୍ଛିନ୍ନାଞ୍ଚଳ ଓଡ଼ିଆଙ୍କର ଏକୀକରଣ ଇଚ୍ଛା ବିଷୟରେ ଅନୁସନ୍ଧାନ କରିବାକୁ ଫିଲିପ୍ ଡଫ୍ ଏନ୍‌କ୍ୱାଇରି କମିଟି ସ୍ଥାପନ କରାଯାଇଛି । କିନ୍ତୁ ଗୋପବାବୁ କଂଗ୍ରେସ୍ ଆନ୍ଦୋଳନକୁ ହିଁ ମୁଖ୍ୟ ବୋଲି ଭାବିଥାନ୍ତି ଓ ସେ ଭାବୁଥାନ୍ତି ଯେ କଂଗ୍ରେସ୍ ଆନ୍ଦୋଳନର କାର୍ଯ୍ୟକ୍ରମ ଦ୍ୱାରା ହିଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସମ୍ଭବ ହେବ, ତାକୁ ଛାଡ଼ି ଅଲଗା ଅନୁଷ୍ଠାନ ବାଟେ ଲାଗିଲେ ବୃଥା ଶକ୍ତିର ଅପଚୟ ହିଁ ହେବ । ୧୯୨୪ ଫେବୃଆରି ୨୩ର 'ଉତ୍କଳ ଦୀପିକା'ରେ ବାହାରିଲା ଯେ ଦେଶମିଶ୍ରଣ ସମ୍ପର୍କରେ କାର୍ଯ୍ୟପନ୍ଥା ସ୍ଥିର କରିବା ପାଇଁ ମାର୍ଚ୍ଚ ୧୧ରେ ବ୍ରହ୍ମପୁରରେ ଓଡ଼ିଆମାନଙ୍କର ପୁଣି ଗୋଟିଏ ସମ୍ମିଳନୀ ହେବ । ବ୍ରହ୍ମପୁର ଓ ବଣାଖୋପାଟଣାର ୨୦୦ ଓଡ଼ିଆ ଉପସ୍ଥିତ ଥାଇ ଶ୍ରୀ ବିକ୍ରମଦେବ ବର୍ମାଙ୍କ ସଭାପତିତ୍ୱରେ ବ୍ରହ୍ମପୁରରେ ୧୫-୩-୨୪ରେ ସେ ଦେଶମିଶ୍ରଣ ସଭା ହେଲା ବୋଲି 'ଉତ୍କଳ ଦୀପିକା'ର ମାର୍ଚ୍ଚ ୧୮, ୧୯୨୪ରେ ପୃ ୧୧୮ରେ ବାହାରିଲା, ପୁଣି ୨୯-୩-୨୪ର 'ଉତ୍କଳ ଦୀପିକା'ର ପୃ ୧୭୬ରେ ବାହାରିଲା ଯେ ଉତ୍କଳ ସମ୍ମିଳନୀର ପ୍ରାଦେଶିକ ଅଧିବେଶନ ମେ' ମାସରେ କଟକରେ ହେବ ଓ ଯେଉଁମାନେ ଆବେଦନ ପତ୍ର ଓ ଚାନ୍ଦା ଦେବେ ସେମାନେ ତାହା ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀ ବ୍ରଜକୃଷ୍ଣ ବୋଷ୍ ଆଦିଙ୍କ ଠିକଣାରେ ପଠାନ୍ତୁ । କିନ୍ତୁ ୧୯୨୪ ବେଳକୁ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଉତ୍କଳ ସମ୍ମିଳନୀ ସହିତ ସମ୍ପର୍କ ତୁଟାଇଲେଣି ବୋଲି ଜଣାପଡ଼େ । ମାର୍ଚ୍ଚ ୧୮, ୧୯୨୪, 'ଉତ୍କଳ ଦୀପିକା'ର ପୃ ୧୧୮ରେ ଅଛି :

"......ପୁନଶ୍ଚ 'ସମାଜ' କାଗଜରେ ଦେଖିଲୁଁ ଯେ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ, ବିଚିତ୍ରାନନ୍ଦ ବାବୁଙ୍କ ସହିତ ଉତ୍କଳ ସମ୍ମିଳନୀକୁ କଟକକୁ ଆହ୍ୱାନ

କରିଥିଲେ, ବର୍ତ୍ତମାନ ସେ ସମ୍ମିଳନୀ ସମ୍ପର୍କ ତ୍ୟାଗ କରିଅଛନ୍ତି । ବିଚ୍ଛିନ୍ନ ଉତ୍କଳକୁ ଏକ ଶାସନାଧୀନ କରିବା ସମ୍ମିଳନୀର ଉଦ୍ଦେଶ୍ୟ, ମାତ୍ର ଏ ବିଷୟରେ ସରକାର ଯେପରି କହୁ କରି ଆସୁଛନ୍ତି ଏବଂ ଭୁବନାନନ୍ଦ ଦାସଙ୍କ ପ୍ରଶ୍ନର ଉତ୍ତର ଯେପରି ଦେଇ ଅଛନ୍ତି ତାହା ଶୁଣି ଶ୍ରୀ ଗୋପବନ୍ଧୁ ଚୌଧୁରୀ ହତାଶ ହୋଇ ଏପରି କରିବାରେ ପ୍ରବୃତ୍ତ ହୋଇଅଛନ୍ତି...ମାତ୍ର ଦେଶର ଲୋକମାନେ ମିଶ୍ରଣ କାମନାରେ ଅନେକ କାର୍ଯ୍ୟ କରିଥିବା ସ୍ଥଳେ ଶେଷ ନିଷ୍ପତ୍ତି ବେଳେ ହତାଶ ହୋଇ ପଡ଼ିବା ଉଚିତ ନୁହେଁ ।......"

ଗୋପବାବୁ 'ଉତ୍କଳ ଦୀପିକା'ରେ ଗୋଟିଏ ଚିଠି ଛପାଇଲେ । ଉତ୍କଳ ସମ୍ମିଳନୀ ସଙ୍ଗେ ନିଜର ସମ୍ପର୍କ ଛିନ୍ନ ଏଥିରେ ସ୍ପଷ୍ଟ କରିଦେଲେ । ଲେଖିଲେ :

"ମହାଶୟ,

ମାର୍ଚ୍ଚ ମାସ ୨୨ ତାରିଖ ସଂଖ୍ୟାରେ 'ଉତ୍କଳ ଦୀପିକା'ର ସମ୍ପାଦକ ମହୋଦୟ ଉତ୍କଳ ସମ୍ମିଳନୀ ସମ୍ବନ୍ଧରେ କେତେକ ବିଷୟ ଆଲୋଚନା କରିଅଛନ୍ତି । ସେଥିରେ ସେ ଲେଖିଛନ୍ତି ଯେ, ସରକାର ଏ ବିଷୟରେ ଯାହା କରି ଆସୁଛନ୍ତି ଓ ଭୁବନାନନ୍ଦ ଦାସଙ୍କ ପ୍ରଶ୍ନର ଉତ୍ତର ଯେପରି ଦେଇଛନ୍ତି ତାହା ଶୁଣି ମୁଁ ହତାଶ ହୋଇ ସମ୍ମିଳନୀର ସମ୍ପର୍କ ତୁଟାଇବା କଥା 'ସମାଜ' କାଗଜରେ ପ୍ରକାଶ କରିଅଛି ।

ତାର କାରଣ

ଏଥିରେ ମୋର ଗୋଟିଏ ଜବାବ ଦେବାର ଅଛି । ସମ୍ପାଦକ ମହାଶୟ ଯେ ଲେଖିଛନ୍ତି ମୁଁ ହତାଶ ହୋଇ ଏପରି କରିଅଛି ତା ଆଦୌ ଠିକ୍ ନୁହେଁ । ମୁଁ ହତାଶ ହେବା ବିଷୟ ଆଦୌ ଲେଖି ନାହିଁ ।

ମୋର ସମ୍ମିଳନୀ ସମ୍ପର୍କ ତୁଟାଇବାର କାରଣ, ମୋର ଧାରଣା ବର୍ତ୍ତମାନ ସମ୍ମିଳନୀର ଯେପରି ଅବସ୍ଥା ଏବଂ ଦେଶମିଶ୍ରଣ ପାଇଁ ପ୍ରକୃତ ଉପାୟ ଯାହା ଆବଶ୍ୟକ ତା ସମ୍ମିଳନୀ ଦ୍ୱାରା ଗୋଟିଏ ସ୍ୱତନ୍ତ୍ର ଆନ୍ଦୋଳନରେ ସାଧିତ ହେବା ଅସମ୍ଭବ । ଉଦ୍ଦେଶ୍ୟ ସିଦ୍ଧ ହେବାପାଇଁ ଆଉ ଆବେଦନ ନିବେଦନ ସ୍ୱରୂପ ନରମ ନରମ ଉପାୟ ଉଚିତ ନାହିଁ, ଏବଂ ଯେଉଁ ଗରମ ଗରମ ଉପାୟ ଆବଶ୍ୟକ ମନେକରେ, ଯଥା ଆଇନ ଅମାନ୍ୟ, ସତ୍ୟାଗ୍ରହ, ଟିକସ ବନ୍ଦ ଇତ୍ୟାଦି ସେଥିପାଇଁ ଦେଶକୁ ପ୍ରସ୍ତୁତ କରିବାପାଇଁ ସମ୍ମିଳନୀ ଭଳି ସ୍ୱତନ୍ତ୍ର ଅନୁଷ୍ଠାନର ଆବଶ୍ୟକ ନାହିଁ । କଂଗ୍ରେସ ଏହି କାର୍ଯ୍ୟକ୍ରମ ବଳରେ ତା ଦ୍ୱାରା ସହଜରେ ଏହା ସାଧିତ ହେବା ସମ୍ଭବ । ସେଥିପାଇଁ ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ (ଉତ୍କଳ ସମ୍ମିଳନୀ)କୁ ଯୋଗଦେବାକୁ ଇଚ୍ଛୁକ ନୁହେଁ । ବୃଥାରେ

ଦେଶର ଶକ୍ତି ଦୁଇସ୍ଥାନରେ ବିଭକ୍ତ କରି ଲଗାଇବା ଠିକ୍ ନୁହେଁ—ଗୋଟିଏ ଅନୁଷ୍ଠାନ ଓ ତାହା କଂଗ୍ରେସ୍‌ରେ ରହି ସମସ୍ତେ ମିଳିମିଶି ଏଥିପାଇଁ ଚେଷ୍ଟା ଆବଶ୍ୟକ ।" ଏ ସମ୍ପର୍କରେ ସେ ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଲେଖିଛନ୍ତି :

"୧୯୨୩ ପ୍ରାରମ୍ଭରେ ପଡ଼ିଗଲା ଗଞ୍ଜାମର ଉତ୍କଳ ସମ୍ମିଳନୀ । ଚକ୍ରଧରପୁର-ଠାରେ ପୂର୍ବ ବୈଠକରେ ଉତ୍କଳ ସମ୍ମିଳନୀ ଦାସେ ଆପଣଙ୍କ ଉଦ୍ୟମରେ କଂଗ୍ରେସର ଉଦ୍ଦେଶ୍ୟ ଗ୍ରହଣ କରିସାରିଥିଲା । ସେଇଟା ବୋଧହୁଏ ୧୯୨୦ ଶେଷ ଅଥବା ୧୯୨୧'ର ଆରମ୍ଭରେ ହେବ, ସେତେବେଳକୁ ମୁଁ ସ୍କୁଲରେ ବରଗଡ଼ରେ ଥିଲି ।

ସେଥିରେ ଯେଉଁମାନେ ବିରୋଧରେ ଥିଲେ ସେମାନେ ଅସହଯୋଗ ଆନ୍ଦୋଳନର ଜୋର ଦେଇ ଚୁପ୍‌ଚାପ୍ ରହିଥିଲେ ମଧ୍ୟ ସେମାନେ ସେ ପ୍ରସ୍ତାବକୁ ରଦ୍ଦ କରିବାକୁ ସବୁ ସମୟରେ ଚାହୁଁଥିଲେ । ୧୯୨୨ରେ ସମ୍ମିଳନୀ ଆଉ ହୋଇନାହିଁ । ୧୯୨୩ରେ ଗଞ୍ଜାମରେ ସମ୍ମିଳନୀ ଡକା ହେଲା । ଏଇଟି ସେହିମାନଙ୍କ ଉଦ୍ୟମରେ ହୋଇଥିଲା ବା ତାର ସାଧାରଣ କ୍ରମ ଗତିରେ ବସିଥିଲା ମୁଁ ଠିକ କହିପାରିବି ନାହିଁ । ତେବେ କଂଗ୍ରେସର ଲୋକେ ଆମେ ଶୀଘ୍ର ଜାଣିପାରିଥିଲୁ ଯେ ଗାନ୍ଧୀଜୀଙ୍କ ଗ୍ରେପ୍ତାର ପରେ ଦେଶରେ ଅବସାଦ ତଥା ଦାସେ ଆପଣଙ୍କ ଜେଲ୍‌ରେ ଅନୁପସ୍ଥିତିର ସୁବିଧା ସେମାନେ ନେବେ ଏବଂ ସମ୍ମିଳନୀକୁ ପୁଣି ତାର ସେହି ନରମପନ୍ଥାକୁ ଫେରାଇ ନେବେ । ଆମେସବୁ ଦଳେବଳେ ଯାଇଥିଲୁ ମାତ୍ର ସମ୍ମିଳନୀର ପ୍ରତିନିଧି ନିର୍ବାଚନ ନିୟମିତ କିଛି ନ ଥିଲା । ତାହା ଗୋଟିଏ ସାଧାରଣ ସଭା ଭଳି ଥିଲା । ସେଥିରେ ଯେ ଆସୁଥିଲେ ସେ ପ୍ରତିନିଧି ହେଉଥିଲେ । ବିଷୟ ନିର୍ବାଚନ କମିଟି ପାଇଁ ଗୋଟାଏ ନିର୍ଦ୍ଦିଷ୍ଟ ନିୟମ କରି ଥିଲା ନଚେତ୍ ସମ୍ମିଳନୀରେ କୌଣସି ବିଷୟରେ ଭୋଟ ପାଇଁ ସମସ୍ତ ଉପସ୍ଥିତ ଲୋକଙ୍କର କ୍ଷମତା ଥିଲା ।"

( ଅସମ୍ପୂର୍ଣ୍ଣ ଆତ୍ମଜୀବନୀ ଏଇଠୁ ଖଣ୍ଡିଆ ରହିଗଲା । )

ଓଡ଼ିଶା ପ୍ରତି ତାଙ୍କର ପ୍ରାଣରେ ପୂର୍ଣ୍ଣ ଆବେଗ ଥିଲା, କିନ୍ତୁ ଉତ୍କଳ ସମ୍ମିଳନୀର ଚିରାଚରିତ 'ନରମପନ୍ଥା' ପ୍ରତି ବିତୃଷ୍ଣା ଥିଲା, ତାର ସଂଗଠନରେ ଅବ୍ୟବସ୍ଥା ପ୍ରତି ମଧ୍ୟ । ତାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଥିଲା ଯେ ସେ ପନ୍ଥାଦ୍ୱାରା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଅସମ୍ଭବ । ତାହା ସମ୍ଭବ ହୋଇପାରିବ କେବଳ କଂଗ୍ରେସ୍‌ର ନିଖିଳ ଭାରତୀୟ ଜାତୀୟ ଆନ୍ଦୋଳନ ଦ୍ୱାରା । ୧୯୨୪ ଜୁନ୍ ୨୮ରେ କଟକରେ ପ୍ରଥମ 'ଉତ୍କଳ ପ୍ରାଦେଶିକ କଂଗ୍ରେସ୍ ସମ୍ମିଳନୀ'ର ଅଭ୍ୟର୍ଥନା ସମିତିର ସଭାପତି ହୋଇ ସେ ଯେଉଁ ବକ୍ତୃତା ଦେଇଥିଲେ ତହିଁରେ ସେକଥା ସେ ଆନ୍ତରିକ ପ୍ରାଞ୍ଜଳଭାବେ ବୁଝାଇଥିଲେ :

## ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ତାଙ୍କର ତୀବ୍ର ଆକାଂକ୍ଷା

"ଆଚାର୍ଯ୍ୟଦେବ (ଡଃ ପ୍ରଫୁଲ୍ଲ ଚନ୍ଦ୍ର ରାୟ ସଭାପତି ହୋଇଥିଲେ),

ଆଜି ଉତ୍କଳର ରାଜନୈତିକ ଜୀବନରେ ଗୋଟିଏ ବିଶେଷ ଦିନ... ଉତ୍କଳର ଯେଉଁମାନେ ଏ ସ୍ୱରାଜ୍ୟ ଯଜ୍ଞରେ ଆହୁତି ଦେଇଛନ୍ତି ବା ଦେବାକୁ ପ୍ରସ୍ତୁତ ଅଛନ୍ତି, ଆଜି ସେମାନେ ପ୍ରଥମଥର ପାଇଁ ଏକତ୍ର ମିଳିତ। ପ୍ରତ୍ୟେକ ପ୍ରଦେଶରେ ଏହିପରି ସମ୍ମିଳନୀ ଅନେକ ଆଗରୁ ବର୍ଷକୁ ବର୍ଷ ହୋଇ ଆସୁଅଛି। କିନ୍ତୁ ଏ ପର୍ଯ୍ୟନ୍ତ ଉତ୍କଳରେ ହୋଇ ନ ଥିଲା...

ଉତ୍କଳର ସମସ୍ୟା— ... ...ଦେଶର ସମସ୍ୟା—

### ଦେଶ ମିଶ୍ରଣ

ଉତ୍କଳରେ ଆଉ ଗୋଟିଏ ଅସୁବିଧା ଅଛି, ସେହିଟି ତାର ବିଚ୍ଛିନ୍ନ ଅବସ୍ଥା ଯୋଗୁଁ ତାର ଜାତୀୟ ଜୀବନରେ ଉନ୍ନତିର ବାଧା, ଅନେକଗୁଡ଼ିଏ ସରକାରୀ ପ୍ରଦେଶରେ ଖଣ୍ଡ ଖଣ୍ଡ ହୋଇ ଉତ୍କଳ ପ୍ରଦେଶଟି ଅଛି। ସେଥିପାଇଁ ଅନେକ ଅସୁବିଧା। ଅବଶ୍ୟ କଂଗ୍ରେସ୍ ଭାଷା ସୂତ୍ରରେ ପ୍ରଦେଶମାନ ଗଠନ କରିଛି, କିନ୍ତୁ ଏପର୍ଯ୍ୟନ୍ତ ନିଖିଳ ଭାରତ କଂଗ୍ରେସ୍ କମିଟି ତରଫରୁ ଆନ୍ଧ୍ରୋତ୍କଳ ସୀମା ନିର୍ଦ୍ଦେଶ ଆଦି ହୋଇ ନ ଥିବାରୁ କଂଗ୍ରେସ କାର୍ଯ୍ୟରେ ନାନା ବାଧା ଘଟୁଅଛି, କିନ୍ତୁ ସ୍ୱରାଜ୍ ଦେବା ପୂର୍ବରୁ ଗୋଟିଏ ଶାସନାଧୀନରେ ସମଗ୍ର ଉତ୍କଳ ଭାଷାଭାଷୀ ଅଞ୍ଚଳ ଏକତ୍ର ହେବା ସମ୍ଭବ ନୁହେଁ। ଏ ସରକାରଙ୍କ ନିଦ ପାଞ୍ଚିରେ ଭାଙ୍ଗେ ନାହିଁ। "ଚେଇଁ ଶୋଇଲେ ଉଠାଇବ କିଏ ?" ଜାତିଟାକୁ ଏକାଠି କରିଦେଲେ କାଳେ ଜାତିଟା ଉଠିପଡ଼ିବ ସେହି ଭୟରେ ଏତିକ ସରକାର କରିବ ନାହିଁ। ତେବେ କୌଣସି ବିଶେଷ ଅନ୍ୟାୟର ପ୍ରତିକାର ପାଇଁ ଯେପରି ବଙ୍ଗ ବିଚ୍ଛେଦ ସମୟରେ ତୁମୁଳ ଆନ୍ଦୋଳନ, ବୋରସାଦ୍‌ରେ ଟିକସ ବନ୍ଦ, ନାଗପୁର ବା ଅକାଳୀ ସତ୍ୟାଗ୍ରହ ବା ତାଞ୍ଜୋରରେ ମିରଶାଦାରମାନଙ୍କ ଟିକସ ବନ୍ଦ ହୋଇଥିଲା ସେହିପରି କିଛି ନ କଲେ ପର୍ଯ୍ୟନ୍ତ ଏ ସରକାରଙ୍କର ଜ୍ଞାନୋଦୟ ହେବ ନାହିଁ। ସେ ଯାହାହେଉ, ବର୍ତ୍ତମାନ ଏପରି ଭାବରେ ଲୋକମତ ଗଢ଼ିବାକୁ ପଡ଼ିବ ଯେପରି ସ୍ୱରାଜ୍ୟ ସଂଗ୍ରାମ ଖୁବ୍ ଦ୍ରୁତଗତିରେ ଚାଲେ, କିମ୍ବା ଏ ବିଶିଷ୍ଟ ଅନ୍ୟାୟର ପ୍ରତିକାର କରିବାପାଇଁ ଉତ୍କଳ ସତ୍ୟାଗ୍ରହ କରିବାକୁ ପ୍ରସ୍ତୁତ ହୁଏ।..."

୧୯୨୩ ପରେ କେବଳ ଆଉଥରେ ଉତ୍କଳ ସମ୍ମିଳନୀର ଗୋଟିଏ ଅଧିବେଶନରେ ସେ ଯୋଗ ଦେଇଥିବାର ଜଣାଯାଏ। ୧୯'୯ ଜାନୁଆରି ୧ ତାରିଖ। ସେତିକବେଳକୁ କଲିକତାରେ ଭାରତୀୟ ଜାତୀୟ କଂଗ୍ରେସ୍‌ର

ଅଧିବେଶନ ବସିଥାଏ । ଓଡ଼ିଶାରୁ ପ୍ରତିନିଧିମାନେ ଯାଇଥାନ୍ତି । ସେତେବେଳେ ସେ ଥାନ୍ତି ଉତ୍କଳ ପ୍ରାଦେଶିକ କଂଗ୍ରେସ୍ କମିଟିର ସଭାପତି । ଭାରତୀୟ ଜାତୀୟ କଂଗ୍ରେସ୍ ବସୁଛି ଦେଖି କଲିକତାର ଓଡ଼ିଆମାନେ କଲିକତା 'ଦେଶବନ୍ଧୁ ନଗର'ରେ କଂଗ୍ରେସର ଅତିରିକ୍ତ ସଭା ମଣ୍ଡପରେ 'ପ୍ରବାସୀ ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନ ଡାକିଲେ, ୨-୧-୧୯୨୯ରେ ସେ ସଭା ବସିଲା । ଓଡ଼ିଶାର କଂଗ୍ରେସ୍ ପ୍ରତିନିଧିଙ୍କ ସମେତ ପ୍ରାୟ ଦଶ ହଜାରରୁ ଅଧିକ ଓଡ଼ିଆ ଉପସ୍ଥିତ ଥିଲେ । ଅଧିବେଶନର ସଭାପତି ହେଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ । ସେ ସଭାର ବିବରଣୀ ୧୩-୧-୧୯୨୯ର 'ଉତ୍କଳ ଦୀପିକା'ରେ ପ୍ରକାଶିତ ହୋଇଥିଲା । ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳର ଏକୀକରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବୀ ପ୍ରତି ଭାରତର ରାଜନୈତିକ ଦଳମାନଙ୍କର ଅନାସ୍ଥା ଓ ଅବହେଳା ଓଡ଼ିଆମାନଙ୍କ ମନରେ କ୍ଷୋଭ ଆଣିଥାଏ । ୧୯୨୮ ଫେବୃଆରି ୨ରେ ଦିଲ୍ଲୀରେ ବିଭିନ୍ନ ରାଜନୈତିକ ଦଳଙ୍କର ଗୋଟିଏ 'ସର୍ବଦଳୀୟ ସମ୍ମିଳନୀ' ହେଲା । କଂଗ୍ରେସ୍, ମୁସ୍ଲିମ୍ ଲିଗ୍, ହିନ୍ଦୁ ମହାସଭା, ଆଦି ନାନା ଦଳର ପ୍ରତିନିଧି ଏକାଠି ହୋଇ ନିଷ୍ପତ୍ତି କଲେ ଯେ ସମସ୍ତିଙ୍କ ରାଜିରେ ଭାରତ ପାଇଁ ଗୋଟିଏ ଶାସନ ପଦ୍ଧତିର ଖସଡ଼ା ତିଆରି କରାଯାଇ ଇଂରେଜ ସରକାରଙ୍କୁ କୁହାଯିବ ସେ ତାଙ୍କୁ ଗ୍ରହଣ କରନ୍ତୁ । ପଣ୍ଡିତ ମୋତିଲାଲ ନେହେରୁଙ୍କ ଅଧ୍ୟକ୍ଷତାରେ ଗୋଟିଏ ସାନ ସବକମିଟିକୁ ସେ ଖସଡ଼ା ତିଆରି କରିବା ଭାର ଦିଆଗଲା, ସେହିବର୍ଷ ଅଗଷ୍ଟ ୧୦ରେ ନେହେରୁ ସବକମିଟି ଖସଡ଼ା ଓ ରିପୋର୍ଟ ଦେଲେ ଓ ଅଗଷ୍ଟ ୨୮ରୁ ୩୧ ଯାଏ ଲକ୍ଷ୍ନୌରେ ସର୍ବଦଳୀୟ ସମ୍ମିଳନୀର ଅଧିବେଶନ ବସି ତାକୁ ମଞ୍ଜୁର କଲେ । ଡିସେମ୍ବର ମାସରେ ଭାରତୀୟ ଜାତୀୟ ଅଧିବେଶନରେ ମହାତ୍ମାଙ୍କ ପ୍ରସ୍ତାବ ଅନୁଯାୟୀ ତାକୁ ଗ୍ରହଣ କରାଗଲା ଓ ଇଂରେଜ ସରକାର* ସର୍ବଦଳୀୟ ସମ୍ମିଳନୀ ଭାଷାସୂତ୍ରରେ ପ୍ରଦେଶ ଗଠନ ପ୍ରସ୍ତାବ ସମର୍ଥନ କଲେ, ସେଥିପାଇଁ ସିନ୍ଧୁ, କର୍ଣ୍ଣାଟକ, ଆନ୍ଧ୍ରର ଦାବୀକୁ ସହାନୁଭୂତି ଦେଲେ, କିନ୍ତୁ ଓଡ଼ିଶାକୁ ସେ ସହାନୁଭୂତି ଦେଲେ ନାହିଁ ।

ଶ୍ରୀ ଗୋପବନ୍ଧୁ ଚୌଧୁରୀ ସଭାପତି ଥାଇ ୨-୧-୨୯ରେ 'ପ୍ରବାସୀ ଉତ୍କଳ ସମ୍ମିଳନୀ' ଯେଉଁ ପ୍ରସ୍ତାବ ଗୁଡ଼ିକ ପାଶ୍ କଲେ ତାର ତୃତୀୟ ପ୍ରସ୍ତାବ ଥିଲା :

"ଉତ୍କଳ ଭାଷୀ ସମସ୍ତ ଅଞ୍ଚଳ ଏକତ୍ରିତ ହୋଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ନ ହେବା ପର୍ଯ୍ୟନ୍ତ ଓଡ଼ିଆ ଜାତିର ସର୍ବାଙ୍ଗୀନ ଉନ୍ନତି ଅସମ୍ଭବ । ସର୍ବଦଳ ସମ୍ମିଳନୀ ଭାଷା ସୂତ୍ରରେ ପ୍ରଦେଶ ଗଠନ ସ୍ଥିର କରିଥିଲେ ହେଁ ସିନ୍ଧୁ, କର୍ଣ୍ଣାଟକ, ଆନ୍ଧ୍ର ପ୍ରତି ସେମାନେ ଯେଉଁ ପରିମାଣରେ ସହାନୁଭୂତି ଦେଖାଇଅଛନ୍ତି ସର୍ବାଦୌ ଉତ୍କଳରୁ ଏ

---

* ଜଣାଇ ଦିଆଗଲା ଯେ ୧୯୨୯ ଡିସେମ୍ବର ୩୧ ସୁଦ୍ଧା ସେ ତାକୁ ଗ୍ରହଣ କରନ୍ତୁ ନ ହେଲେ ଅସହଯୋଗ ଆନ୍ଦୋଳନ ହେବ ।

ଆନ୍ଦୋଳନର ଉତ୍ପତ୍ତି ହୋଇଥିଲେହେଁ ଉତ୍କଳର ଦାବୀ ପ୍ରତି ତାଦୃଶ ସହାନୁଭୂତି ନ ଦେଖାଇଥିବାରୁ ଏ ସମ୍ମିଳନୀ ଆକ୍ଷେପ ପ୍ରକାଶ କରୁଅଛନ୍ତି ଏବଂ ଦାବୀ କରୁଛନ୍ତି ଯେ ନୂତନ ଶାସନପଦ୍ଧତି କାର୍ଯ୍ୟରେ ପରିଣତ ହେବା ସଙ୍ଗେ ସଙ୍ଗେ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିସିବାର ବ୍ୟବସ୍ଥା ହେଉ ।"

ପ୍ରଥମ ପ୍ରସ୍ତାବରେ ଉତ୍କଳମଣିଙ୍କ ବିୟୋଗରେ ଶୋକ ପ୍ରକାଶ କରାଗଲା । ଦ୍ୱିତୀୟ ପ୍ରସ୍ତାବରେ ରହିଲା "ପ୍ରବାସୀ ଓଡ଼ିଆମାନଙ୍କ ନିମନ୍ତେ ଏକ କଲିକତା ଓଡ଼ିଆ ସମାଜ" ସ୍ଥାପିତ ହେଉ । ଚତୁର୍ଥ ପ୍ରସ୍ତାବରେ ରହିଲା ଯେ "ଭାରତର ନ୍ୟାଯ୍ୟ ଦାବୀ ଇଂରେଜ୍ ସରକାର ବରାବର ଉପେକ୍ଷା କରୁଥିବାରୁ କଲିକତା ପ୍ରବାସୀ ଓଡ଼ିଆମାନେ ସାଇମନ୍ କମିସନଙ୍କ ସହିତ କୌଣସି ସମ୍ପର୍କ ରଖିବେ ନାହିଁ ।"

ସର୍ବଦଳୀୟ ସମ୍ମିଳନୀର ପ୍ରସ୍ତାବ ବିଷୟରେ ଆଲୋଚନା କରିବାପାଇଁ ସବୁ ରାଜନୈତିକ ଦଳର ପ୍ରତିନିଧିମାନେ ୧୯୨୮ ଡିସେମ୍ବର ୨୨ରେ କଲିକତାରେ ସଭା ଆରମ୍ଭ କଲେ, ତୀବ୍ର ମତଭେଦ ହେଲା ଓ ୧୯୨୯ ଜାନୁଆରି ପହିଲାରେ ଅନିର୍ଦ୍ଦିଷ୍ଟ କାଳ ପାଇଁ ସଭାକୁ ମୁଲତବି ରଖାଗଲା । ପ୍ରବାସୀ ଉତ୍କଳ ସମ୍ମିଳନୀରେ ପାଶ୍ ହୋଇଥିବା ପ୍ରସ୍ତାବର ତାତ୍ପର୍ଯ୍ୟ ହେଲା,—କଂଗ୍ରେସ୍ ସମେତ ଭାରତର ସବୁ ରାଜନୈତିକ ଦଳଙ୍କୁ, ଜନସାଧାରଣଙ୍କୁ, ଇଂରେଜ ସରକାରଙ୍କୁ ଓଡ଼ିଶାର ଦାବୀ କଥା ପୁଣି ଥରେ ମନେ ପକାଇଦେବା, ଏତିକି । ଗୋଟିଏ କ୍ରମିକ ଆନ୍ଦୋଳନ ଭିତରର ଗୋଟିଏ ଘଟନାମାତ୍ର ସେ, ଓଡ଼ିଆମାନଙ୍କର ନୈରାଶ୍ୟ ଓ କାମନା ପ୍ରକାଶ,—ବିଚ୍ଛିନ୍ନ ଅଞ୍ଚଳ ମିଶୁ, ସ୍ୱତନ୍ତ୍ର ପ୍ରଦେଶ ହେଉ ।

## ୧୯୨୪ର ଅନ୍ୟାନ୍ୟ ଘଟନା

୧୯୨୪ରେ ଗୋପବାବୁ କଟକରେ ମ୍ୟୁନିସିପାଲିଟି ନିୟନ୍ତ୍ରଣ କମିଟିର ସଭ୍ୟ ହୋଇଥିଲେ । ଗୋପବାବୁଙ୍କ ଅଦମ୍ୟ ଉତ୍ସାହ, ଆଶା, ପ୍ରଫୁଲ୍ଲତା, ନିଶ୍ଚିନ୍ତ ମନରେ ସ୍ଥିର ବିଶ୍ୱାସରେ ଅତିମାତ୍ରାରେ ସକ୍ରିୟତା ଅନ୍ୟମାନଙ୍କୁ ଅନୁପ୍ରାଣିତ କରୁଥିଲା, କଂଗ୍ରେସ୍ ଅନୁଷ୍ଠାନକୁ ପୁଣି ଦୃଢ଼ କରୁଥିଲା ଓ ବଳ ଯୋଗାଉଥିଲା, ସମସ୍ତିଙ୍କୁ ଏକାଠି ବାନ୍ଧି ରଖିଥିଲା । ଅନେକେ ଏକଥା ମୁକ୍ତ କଣ୍ଠରେ ସ୍ୱୀକାର କରୁଥିଲେ ।

୧୯୨୪ରେ ଉତ୍କଳ ପ୍ରାଦେଶିକ କଂଗ୍ରେସ୍ କମିଟି କଂଗ୍ରେସ୍ କାର୍ଯ୍ୟର ପ୍ରସାର ପାଇଁ ଗୋଟିଏ ପ୍ରାଦେଶିକ ସମ୍ମିଳନୀ ଡାକିବାକୁ ସ୍ଥିର କଲେ । ଡାକ୍ତର ଏକାମ୍ ରସୁଲ୍ ସଭାପତି ଥିଲେ । ଗୋଟିଏ ୧୪ଜଣିଆ ଅଭ୍ୟର୍ଥନା ସମିତି ଗଢ଼ା ହେଲା, ଗୋପବାବୁ ତହିଁରେ ସଭାପତି ହେଲେ । ଉତ୍କଳମଣି ଓ ଭାଗୁବାବୁ ଜେଲ୍ ଯାଇଥାନ୍ତି, ପରେ ଜୁନ୍ '୬ରେ ଖଲାସ ହେଲେ, ଜନ୍ ୨୮ରେ ଓ ଜନ୍ ୨୯ରେ (ଶନିବାର ଓ

ରବିବାର) କଟକ ମ୍ୟୁନିସିପାଲିଟି ହତାରେ ଗୋଟିଏ ମଣ୍ଡପରେ ସଭା ବସିଲା । ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ସଭାପତି ହୋଇଥିଲେ । ଆଲୋକଚିତ୍ର ଦେଖାଇ ବକ୍ତୃତା ଦେବାପାଇଁ କଲିକତାରୁ ପଲ୍ଲୀସେବା ସଙ୍ଘ, ଖଦି ପ୍ରତିଷ୍ଠାନ ଓ ମ୍ୟାଲେରିଆ ନିବାରଣୀ ସମିତି ଆସିଥିଲେ । ସମ୍ମିଳନୀ ସହିତ ଗୋଟିଏ ନାରୀ ସମ୍ମିଳନୀ ବି ହୋଇଥିଲା । ଶ୍ରୀମତୀ ସରଳା ଦେବୀ (ଭାଗିବାବୁଙ୍କ ସ୍ତ୍ରୀ) ସେଥିରେ ସବୁକାର୍ଯ୍ୟ ଚଳାଇଥିଲେ । ଓଡ଼ିଶାର ମଠବାଡ଼ି ଓ ଅନ୍ୟାନ୍ୟ ଦେବୋତ୍ତର ସାଧାରଣ ଅନୁଷ୍ଠାନମାନଙ୍କ ଅବସ୍ଥା ସମ୍ବନ୍ଧେ ଅନୁସନ୍ଧାନ କରି ସେଗୁଡ଼ିକର ସୁପରିଚାଳନା ବିଷୟରେ ରିପୋର୍ଟ ଦେବାକୁ ଗୋଟିଏ ୪ଜଣିଆ କମିଟି ଗଢ଼ା ହେଲା, ସଭ୍ୟ ରହିଲେ ଲିଙ୍ଗରାଜ ମିଶ୍ର ? ଉତ୍କଳମଣି, ପଣ୍ଡିତ ନୀଳକଣ୍ଠ, ଗୋପବାବୁ ଓ ମହତାବ ବାବୁ । ଉପକୂଳ ଅଞ୍ଚଳରେ ବଢ଼ି ବିଷୟ ତଦନ୍ତ କରିବାକୁ ଆଉ ଗୋଟିଏ କମିଟି ହେଲା । ସେଥିରେ ସଭ୍ୟ ରହିଲେ ପଣ୍ଡିତ ନୀଳକଣ୍ଠ, ଭାଗୁବାବୁ, ମହତାବବାବୁ, ଜଗବନ୍ଧୁ ସିଂହ ଓ ଗୋପବାବୁ । ଏହି ସମ୍ମିଳନୀର ସପ୍ତମ ପ୍ରସ୍ତାବରେ ନିଖିଳ ଭାରତ କଂଗ୍ରେସ କମିଟିକୁ ଅନୁରୋଧ କରାଗଲା ଯେ ବଙ୍ଗଳା, ବେହାର ଓ ଛୋଟନାଗପୁର, ମଧ୍ୟ ପ୍ରଦେଶ ଓ ମାନ୍ଦ୍ରାଜ ପ୍ରଦେଶରେ ବିଚ୍ଛିନ୍ନ ହୋଇ ରହିଥିବା ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକ ଓଡ଼ିଶା ସହିତ ମିଶି କିପରି ଏକ ଶାସନରେ ରହିବ ତାହା ଭାଷାସୂତ୍ରରେ ପ୍ରଦେଶ ଗଠନ କରିବା ବିଷୟରେ ଜାତୀୟ କଂଗ୍ରେସର ନୀତି ଅନୁସାରେ ମୀମାଂସା କରିବା ଭାର ମହାତ୍ମା ଗାନ୍ଧୀଙ୍କ ଉପରେ ଛାଡ଼ିଦିଆହେଉ । ଅନ୍ୟାନ୍ୟ ଅନେକ ପ୍ରସ୍ତାବ ଧାର୍ଯ୍ୟ ହୋଇଥିଲା ଓ ଖଦୀ ପ୍ରଚାର ଆଦି ଆଲୋଚିତ ହୋଇଥିଲା ।

## ସାତ

### ୧୨୪—କଟକ ଜିଲ୍ଲାବୋର୍ଡ ଚେଆରମ୍ୟାନ୍

୧୯୨୪ରେ କଟକ ଜିଲ୍ଲାବୋର୍ଡର ନିର୍ବାଚନରେ କଂଗ୍ରେସ୍ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ବାହାରିଲା । ଆଗ ତାର ସଭ୍ୟପଦ ଲାଗି କଂଗ୍ରେସ୍ ପ୍ରାର୍ଥୀ ସେ ଗୋପବାବୁରୁ

ନିର୍ବାଚନରେ ଲଢ଼ିଲେ ଓ ନିର୍ବାଚିତ ହେଲେ । ତାହାପରେ କଟକ ଜିଲ୍ଲାବୋର୍ଡ଼ର ଚେଆରମ୍ୟାନ୍ ପଦ ପାଇଁ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କଲେ । ତହିଁରେ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ଥିଲେ ସ୍ୱୟଂ ତାଙ୍କ ମଲାସୁର ଓ ଜଣେ ପୂର୍ବତନ ଜିଲ୍ଲା କଲେକ୍ଟର ରାୟବାହାଦୂର ରାଜକିଶୋର ଦାସ । ଦୁଇ ପରିବାର ଭିତରେ ଖୁବ୍ ଭଲ ସମ୍ପର୍କ ଥିଲା । କିନ୍ତୁ ଗୋପବାବୁ ଦେଶକାମ ପାଇଁ ନିଜର ସ୍ୱାଧୀନପନ୍ଥା ବାଛି ନେଇଥିବାରୁ ନୀତି ଦୃଷ୍ଟିରୁ ଓ ଦେଶର ସ୍ୱାର୍ଥ ପାଇଁ ନିର୍ବାଚନରେ ଲଢ଼ିଲେ । ସେ ଜିତିଲେ । ଗୋପବାବୁ, ନବବାବୁ ଓ କିଶୋରୀ ବାବୁ କଟକ ଜିଲ୍ଲାବୋର୍ଡ଼ର ସଭ୍ୟ ହେଲେ । ଗୋପବାବୁ ଚେୟାରମ୍ୟାନ୍ ହେଲେ । ଭାଇସ୍ ଚେୟାରମ୍ୟାନ୍ ହେଲେ ରାୟବାହାଦୂର ଲକ୍ଷ୍ମୀଧର ମହାନ୍ତି । ଆଉ ଜଣେ ବିଶିଷ୍ଟ କଂଗ୍ରେସ କର୍ମୀ, କବି ଶ୍ରୀ ବୀର କିଶୋର ଦାସ ଲୋକାଲ୍ ବୋର୍ଡ଼ର ଭାଇସ୍ ଚେୟାରମ୍ୟାନ୍ ହେଲେ । ଲୋକାଲବୋର୍ଡ଼ର ଚେୟାରମ୍ୟାନ୍ ଥିଲେ ରାୟବାହାଦୂର ଗୋପାଳ ଚନ୍ଦ୍ର ପ୍ରହରାଜ ।

କଟକ ଜିଲ୍ଲାବୋର୍ଡ଼ର ସର୍ବେସର୍ବା ହୋଇ ଅକ୍ଳାନ୍ତ ପରିଶ୍ରମ କରି ଗୋପବାବୁ ଜିଲ୍ଲାବୋର୍ଡ଼ ପରିଚାଳନାରେ ବହୁତ ଦକ୍ଷତା ଦେଖାଇଥିଲେ ଓ ନାନା ପରିବର୍ତ୍ତନ ଆଣିଥିଲେ । ଜିଲ୍ଲାବୋର୍ଡ଼ ସଂକ୍ରାନ୍ତୀୟ ଲଞ୍ଚ, ମିଛ, ଦୁର୍ନୀତି ଦୂର କରିବାକୁ ସେ ପ୍ରାଣପଣେ ଚେଷ୍ଟା କରିଥିଲେ । ଲୋକଙ୍କ ଅଭାବ ଅସୁବିଧା ବୁଝୁଥିଲେ, ଆପତ୍ତିସବୁ ନିଜେ ଶୀଘ୍ର ଯାଇ ତଦନ୍ତ କରୁଥିଲେ ଓ ଆଶୁ ପ୍ରତିକାର କରୁଥିଲେ ।

ଚାହିଁ ଚାହିଁ ସବୁ କାମ ଶୃଙ୍ଖଳାରେ ପକାଇଦେଲେ, ସବୁ କାମ ପାଇଁ ନିୟମ ବାନ୍ଧି ଦେଲେ ଓ ନିୟମରେ ଯେପରି ସବୁ ଚାଲିବ, ତାର ବନ୍ଦୋବସ୍ତ କଲେ । ନିଘା ପଡ଼ିଲା ଗରିବ ପ୍ରାଇମେରୀ ଶିକ୍ଷକଙ୍କ ଉପରେ । ସେମାନଙ୍କ ଦରମା କିଛି ରେଟ୍ ପ୍ରକାରେ ମିଳୁ ନ ଥିଲା, ସବ୍ ଇନସ୍ପେକ୍ଟର ଟଙ୍କା ନେଇଯାନ୍ତି; ଟ ୨-୦୦, ଟ ୪-୦୦, ଟ ୫-୦୦ ଏପରି ବାଣ୍ଟିଦେଇ ଆସନ୍ତି । ଶିକ୍ଷକମାନେ କିଏ କେତେ ବେତନ ପାଇବେ ସେ ଧାର୍ଯ୍ୟ କଲେ । ସର୍ବନିମ୍ନ ଏମ୍. ଇ. ପାଶ୍ ପାଇବେ ଟ ୭-୦୦, ୟୁ. ପି. ଟି. ପାଇବେ ଟ ୯-୦୦, ଏମ୍. ଭି. ଟି. ପାଇବେ ଟ ୧୨-୦୦ (ଶ୍ରୀ ରଘୁନାଥ ମହାନ୍ତି କହିଛନ୍ତି, (ସେତେବେଳେ କେନ୍ଦ୍ରାପଡ଼ା ଲୋକାଲ୍‌ବୋର୍ଡ଼ର ଚେଆର୍‌ମ୍ୟାନ୍) ପ୍ରାଇମେରୀ ଶିକ୍ଷକମାନେ ଖୁବ୍ ଉପକୃତ ହେଲେ । ଗୋପବାବୁ ଚାରିଆଡ଼େ ସ୍କୁଲ୍ ବସାଇବାରେ ଲାଗିଲେ, ଶିକ୍ଷାର ବିସ୍ତାର ହେଲା । ସ୍କୁଲ୍‌ମାନଙ୍କରେ ସୂତାକଟା ଚଳାଇଲେ ଓ କବିରାଜ ଔଷଧପତ୍ର ରଖାଇଲେ; କେତେଠିଁ ଏଣ୍ଡି ଚାଷ ବି କରାଇଲେ ।

ଚିକିତ୍ସା ପାଇଁ ଆୟୁର୍ବେଦୀୟ ଚିକିତ୍ସାଳୟ ଗୁଡ଼ାଏ ବସାଇବା ଏ ସମୟରେ ତାଙ୍କର ଆଉ ଗୋଟିଏ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ।

ଏପରି ବହୁତ ଅଛି । ସେ ଜିଲ୍ଲାବୋର୍ଡ଼ର ଅଧ୍ୟକ୍ଷ ଥିବାବେଳେ ଅନେକ କାମରେ ଦୃଷ୍ଟି ଦେଲେ । ସରକାରଙ୍କୁ ଲେଖାଲେଖି କରି 'ରୋଡ୍ ସେସ'ରୁ ଜିଲ୍ଲାବୋର୍ଡ଼ ପାଇଁ ବହୁତ ଟଙ୍କା ଆଣିଲେ । ଜିଲବୋର୍ଡ଼ର ହାଟ, ମଛଘଆ ଅଢ଼ରେ ସୁବ୍ୟବସ୍ଥା କରି ତହିଁରୁ ଅସୁଲ ବଢ଼ାଇଲେ, ଜିଲବୋର୍ଡ଼ର ଜନହିତକର କାର୍ଯ୍ୟର ଖୁବ୍ ପ୍ରସାର କଲେ । ତହିଁରେ ବହୁତ ଗାଁକୁ ରାସ୍ତା ହେଲା, କୂଅ ପୋଖରୀ ହେଲା, ଡାକ୍ତରଖାନାମାନଙ୍କୁ ଔଷଧ ଯୋଗାଣ ହେଲା, ଇସ୍କୁଲ୍ ଘରମାନଙ୍କର ଉନ୍ନତି ହେଲା, ହାଟ, ଘାଟ, କାଞ୍ଜିଅଡ଼ା ଆଦିର ଉନ୍ନତି ହେଲା, ନାନା ପ୍ରକାରର ସାହାଯ୍ୟ ବଣ୍ଟା ହେଲା ।

ଆଳରେ ଦୁର୍ଭିକ୍ଷ ପଡ଼ିଲା, ସେ ନିଜେ ଯାଇ ସାହାଯ୍ୟ ବାଣ୍ଟିଲେ, ଧାନ ଚାଉଳ ଯୋଗାଇଦେଲେ, ଅବସ୍ଥା ସୁଧୁରିଲା । ସେ ଦୁର୍ଭିକ୍ଷରେ ଶ୍ରୀ ସହଦେବ ଦାସ କାମ କରିଥିଲେ ।

କେଉଁଠି କେଉଁ ହାଟ ପଟ୍ଟାଦାର କି କାଞ୍ଜିଅଡ଼ା ପଟ୍ଟାଦାର ଲୋକଙ୍କୁ ହଇରାଣ କରୁଛି ବୋଲି ଶୁଣିଲେ ସେ ନିଜେ ଧାଇଁଯାଇ ତଦନ୍ତ କରୁଥିଲେ, ପ୍ରତିକାର କରୁଥିଲେ ।

ସେ ସବୁ ପ୍ରକାର ଲାଞ୍ଚ, ମିଛ, ଦୁର୍ନୀତି ଧରୁଥିଲେ, ବନ୍ଦ କରୁଥିଲେ, ସବୁଠି ସବୁ ଅଳିଆ ସଫା କରୁଥିଲେ, କଳିଗୋଳର ମୀମାଂସା କରି ଦେଉଥିଲେ ।

ତଥାପି ସେ ସରଳ, ଦୟାଳୁ, କ୍ଷମାଶୀଳ ଲୋକ, କେତେ ଦୁଷ୍ଟଲୋକ ତାର ସୁବିଧା ନେବାକୁ ବି ଚେଷ୍ଟା କରୁଥିଲେ, ପଇସା କଉଡ଼ି ଖାଇ ଦେଉଥିଲେ, ଧରା ପଡ଼ୁଥିଲେ, କ୍ଷମା ପାଉଥିଲେ, ଶୁଧୁରୁଥିଲେ ।

ଗୋପବାବୁଙ୍କର ଲେଖାପଢ଼ା କାଗଜପତ୍ର ଅଫିସ୍ ସବୁବେଳେ ଚମତ୍କାର ଥାଏ । କୌଣସି ଫାଇଲ୍ କି କାଗଜ ତାଙ୍କ ପାଖେ ଅଟକେ ନାହିଁ, ସଙ୍ଗେ ସଙ୍ଗେ ଫଇସଲ କରିଦିଅନ୍ତି । ଯେଉଁ ଅଧସ୍ତନ କିଛି କାମ କରିପାରେ ନାହିଁ, ଡେରି କରୁଛି ବୋଲି ସେ ଦେଖନ୍ତି, ସେ ନିଜେ ତା କାମ କରି ଦିଅନ୍ତି, ତାକୁ ଗାଳି ଦିଅନ୍ତି ନାହିଁ । ସହକର୍ମୀମାନଙ୍କ ସଙ୍ଗେ ତାଙ୍କର ସବୁବେଳେ ସଦ୍‌ଭାବ ଥାଏ । ଯେଉଁମାନେ ତାଙ୍କ ବିରୋଧ କରୁଥିଲେ ତାଙ୍କଠି କିଛି ଭଲ ଗୁଣ ଥିଲେ ସେ ତାକୁ ପ୍ରଶଂସା କରନ୍ତି, ନିଜର କାହା ସଙ୍ଗେ ଶତ୍ରୁତା ନ ଥାଏ । ସେ ଅତି ବିଚକ୍ଷଣ, ମହାନୁଭବ ବୋଲି ଖ୍ୟାତି ରହିଗଲା ଓ ଅତି ଜନପ୍ରିୟ ହେଲେ ।

ଅତି ଉଲ୍ଲେଖଯୋଗ୍ୟ ଥିଲା ଜିଲ୍ଲା ଅନ୍ଧସନ୍ଧରେ ତାଙ୍କ ଗସ୍ତ, ସାଇକଲ ଚଢ଼ି, ପାଦରେ ଚାଲି । ପୋଷାକ ସେହି ଏକାପ୍ରକାର, ହାତବୁଣା ସାନ ଖଦଡ଼ ଧୋତି

ଖଣ୍ଡେ, ଖାଲି ପାଦ, ଖାଲି ଦେହ, ସେଠି ଖଣ୍ଡେ ହାତବୁଣା ଗୁଦର, ନିଜ ବୁଜୁଳା ନିଜେ ବୁହନ୍ତି, ଭୋଜନ ସେହି ବଗଡ଼ା ଭାତ, ସିଝା ନିରାମିଷ ତରକାରି, ଚୂଡ଼ା ଗୁଡ଼, ଯାହା ମିଳିଲା, ପାରି ଶୋଇବାକୁ 'ବେଡ଼ିଂ' ନାହିଁ, ସତରଞ୍ଜି, ଗୁଦର ବା ଖାଲି ଗୁଦର। ଆଗ ଅଗତ ଜିଲ୍ଲାବୋର୍ଡ଼ ଡାକବଙ୍ଗଳା ଚୌକିଆ କେହି କେହି ତାଙ୍କୁ ହାକିମ ବୋଲି ମାନିଲେ ନାହିଁ, ପୂରେଇ ଦେଲେ ନାହିଁ। ସେ ହସିଥିଲେ, ପିଣ୍ଡାରେ ଶୋଇଥିଲେ, ପରେ ତାଙ୍କ ଜିଲ୍ଲାବୋର୍ଡ଼ ଇଞ୍ଜିନିଅରଙ୍କୁ ଆଦେଶ ଦେଇ ସବୁ ଶୁଧାରି ନେଇଥିଲେ। ସେତେବେଳଯାଏ ଧାରଣା ଥିଲି ଯେ ଜିଲ୍ଲାବୋର୍ଡ଼ ଡାକବଙ୍ଗଳା 'ସରକାରୀ' ଲୋକଙ୍କ ପାଇଁ, ସେଠି ଖଦଡ଼ପିନ୍ଧା ଲୋକ ଅର୍ଥାତ୍ କଂଗ୍ରେସ୍ ଲୋକ ରହିପାରିବେ ନାହିଁ। ଥରେ ଠାଏ ସେ ପହଞ୍ଚିଲାବେଳକୁ କନଷ୍ଟବଲ ଘଉଡ଼େଇଲା, କହିଲା, "କଲେକ୍ଟର ଆସିବେ ରହିବେ, ଥାନା ବାବୁ ଅଛନ୍ତି।" ସେ ଥାନାବାବୁଙ୍କୁ ଦେଖାକଲେ ଓ ତାଙ୍କୁ ଚାଲିଯିବାକୁ ଆଦେଶ ଦେଲେ। କଲେକ୍ଟର ବଙ୍ଗଳା ପାଇଁ ଦରଖାସ୍ତ କରି ନ ଥିଲେ, ସ୍ଥାନ ନ ଥିଲା, ଫେରିଗଲେ।

ସେ ଭେଟି ଉପହାର ନିଅନ୍ତି ନାହିଁ, ବଡ଼ ଲୋକଙ୍କ ଘରକୁ କୁଣିଆ ହେବାକୁ ଯାଆନ୍ତି ନାହିଁ, ଡାକବଙ୍ଗଳାରେ ରହନ୍ତି ବା କେଉଁ ଗରିବ ପଲ୍ଲୀରେ। ଅନବରତ ଗାଁଆଡ଼େ ବୁଲୁଥାନ୍ତି। କିନ୍ତୁ ରାସ୍ତାଖର୍ଚ୍ଚ ନେବାକୁ ତାଙ୍କର ଘୋର ଆପତ୍ତି ଥିଲା। ତାଙ୍କୁ ବୁଝାଇ ଦିଆଗଲା ଯେ ତା ନହେଲେ ଅନ୍ୟମାନଙ୍କର ଅସୁବିଧା ହେବ ଓ ଆଇନ୍‌ଗତ ଅସୁବିଧା ହେବ। ସେ ରାଜି ହେଲେ କେବଳ ଯେତିକି ଖର୍ଚ୍ଚ କରିବେ ସେତିକି ନେବାକୁ। ଯାଜପୁର ଗଲେ ତାଙ୍କ ଅଫିସ୍ କହେ ତାଙ୍କର ଟ ୧୦୦-୦୦ ପ୍ରାପ୍ୟ, ସେ ନିଅନ୍ତି ଟ ୮-୦୦। ଅନ୍ୟମାନେ ସେପରି କଲେ ନାହିଁ, ସେ ନିଜ ନୀତିରେ ରହିଲେ।

କଟକରେ ତାଙ୍କ ଘର ଓ ଜଗତ୍‌ସିଂପୁରରେ ଅଲକାଶ୍ରମ କଂଗ୍ରେସ କର୍ମୀମାନଙ୍କର ଭେଟାଭେଟି ହେବାର ଯାଗା ହୋଇଥାଏ। ଏକା ସଙ୍ଗେ ନାନା ଗଠନାତ୍ମକ କାର୍ଯ୍ୟ କରିବା ସଙ୍ଗେ ସେ କର୍ମୀମାନଙ୍କୁ ତାଲିମ ଦେଉଥାନ୍ତି। ୧୯୨୧ରେ ହିଁ କର୍ମୀମାନଙ୍କର ତାଲିମ ପାଇଁ ସେ ଗୋଟିଏ ହାତଲେଖା ପତ୍ରିକା ସମ୍ପାଦନ କରୁଥାନ୍ତି। ଏହା ସହିତ ଅଧିକାଂଶ ସମୟ ଜିଲ୍ଲାବୋର୍ଡ଼ କାର୍ଯ୍ୟରେ କଟୁଥାଏ। କଥିତ ଅଛି ଯେ କଟକ ଜିଲ୍ଲାର ସବୁ ଗାଁ ସେତେବେଳେ ସେ ବୁଲିଥିଲେ। ସେତେବେଳେ କେତେ ଦୁଃଖ କଷ୍ଟ ଅଙ୍ଗେ ନିଭେଇଥିଲେ, କେତେ ବିପଦରେ ପଡ଼ିଥିଲେ, କେତେ ଲୋକଙ୍କୁ ବିପଦରୁ ଉଦ୍ଧାର କରିଥିଲେ। ଯଦୁମଣି ମଙ୍ଗରାଜ କହୁଥିଲେ, କିପରି ଥରେ ଦାହେଁଯାକ ସାଇକେଲ୍‌ରେ ନଈବନ୍ଧରେ ରାସ୍ତା କଲାବେଳେ ମଙ୍ଗରାଜେ ନଈରେ ପଡ଼ି ଯାଇଥିଲେ, ଗୋପବାବୁ ସାଇକଲରୁ ପଡ଼ି, ଉଠିପଡ଼ି ପାଣିକୁ ଡେଇଁ ମଙ୍ଗରାଜଙ୍କୁ ଉଦ୍ଧାର କରିଥିଲେ।

କଂଗ୍ରେସ୍ କାର୍ଯ୍ୟର ବ୍ୟାପକ ପ୍ରସାର ହେଲା । ସୂତାକଟା ଓ ଖଦୀବୁଣା କାର୍ଯ୍ୟ କଟକ ଜିଲାରେ ବ୍ୟାପିଲା । ସେ ସମ୍ବନ୍ଧୀୟ ନାନା ସରଞ୍ଜାମ କଟକରେ ତାଙ୍କ ଘରେ ଭର୍ତ୍ତି ହୋଇଥାଏ । ନବବାବୁ ମଧ୍ୟ ସେହି କାର୍ଯ୍ୟରେ ଲାଗିଥାନ୍ତି । ସେ ସାବରମତୀ ଆଶ୍ରମରୁ ସୂତାକଟା, ତୁଳାଭିଣା, ଧରି ଓ ସତରଞ୍ଜି ବୁଣା ବିଶେଷଜ୍ଞ ହୋଇ ଫେରିଥାନ୍ତି ଓ ସେଠୁ ନୂଆ ପ୍ରକାର ଅରଟ ଓ ଭିଣା ଆଣିଥାନ୍ତି । ତାହାର ପ୍ରଚଳନ ହେଉଥାଏ । ପିଲାମାନେ ବି କାମ ଶିଖୁଥାନ୍ତି ।

## ୧୯୨୪—ଖୁବ୍ ବେମାର ପଡ଼ିଲେ, ଟାଇଫଏଡ଼୍

ତାପରେ ୧୯୨୪ରେ କଟକରେ ଗୋପବାବୁ ପ୍ରଚଣ୍ଡ ବେମାରରେ ପଡ଼ିଲେ । ତାଙ୍କୁ ଟାଇଫଏଡ଼୍ ହେଲା । ଦୋତାଲାରେ ବଡ଼ଘରେ ଥାନ୍ତି । ଧନଗରିବ ଲୋକ ଭିଡ଼ । ବହୁତ ଧନ ପଡ଼ିଲେ । ନାନା ପ୍ରକାର ଚିକିତ୍ସା ହେଲା । କଲିକତାରୁ ବଙ୍କିମ୍‌ବାବୁ ବୋଲି ଜଣେ ହୋମିଓପାଥ୍ ଆସି ଚିକିତ୍ସା କଲେ ଓ ତାଙ୍କର ଔଷଧରେ ସେ ଭଲ ହେଲେ ।

ଏହାପରେ ସେ ଖୁବ୍ ମୋଟା ହୋଇଗଲେ ଓ ଜଳ ଚିକିତ୍ସାରେ ଆଗ୍ରହୀ ହେଲେ । ସେ ନିଜ ଉପରେ, ଅନ୍ୟମାନଙ୍କ ଉପରେ ଲୁଇ-କୁନଙ୍କ ଜଳ ଚିକିତ୍ସା କରୁଥାନ୍ତି, ଦୁଇଓଳି କାଠଯୋଡ଼ି କୂଳରେ ୨।୩ ମାଇଲ ବୁଲୁଥାନ୍ତି ଓ ଅନେକ ଲୋକଙ୍କ ସଙ୍ଗେ ନାନା ପ୍ରକାର ଆଲୋଚନା କରୁଥାନ୍ତି ।

ସେ ଅଲକାଶ୍ରମକୁ ଯାଉଥାନ୍ତି । ସେଠି ମଧ୍ୟ କିଛିଦିନ ରହୁଥାନ୍ତି ଓ ପୂର୍ବପରି ଅନ୍ୟାନ୍ୟ କାର୍ଯ୍ୟ ବୁଲାଉଥାନ୍ତି ।

ସେ କଟକ ଜିଲ୍ଲାବୋର୍ଡ଼ରେ ୩ ବର୍ଷ ଚେୟାରମ୍ୟାନ୍ ରହିଲେ ।

## ୧୯୨୫—ମହାତ୍ମା ଗାନ୍ଧୀ ଓଡ଼ିଶା ଆସିଲେ

୧୯୨୫ରେ ମହାତ୍ମାଜୀ କଟକ ଆସି ମଧୁବାବୁଙ୍କ ଘରେ ରହିଲେ । ସେ ମଧୁବାବୁଙ୍କ ଉତ୍କଳ ଟ୍ୟାନେରୀର ସଂରକ୍ଷଣ ପାଇଁ ଆଲୋଚନା କରିବାକୁ ଆସିଥିଲେ । ଗୋପବାବୁ ଓ ଭଗୁବାବୁ ତାଙ୍କୁ ଅଲକାଶ୍ରମ ଦେଖିଯିବାକୁ ନିମନ୍ତ୍ରଣ କଲେ । କିନ୍ତୁ ସେ ନ ଯାଇପାରିବାରୁ ଅଲକାଶ୍ରମ କାର୍ଯ୍ୟର ନମୁନା ତାଙ୍କୁ କଟକରେ ଦେଖାଇବାକୁ ବନ୍ଦୋବସ୍ତ କରାଗଲା । ୨।୩ ଖଣ୍ଡ ଲରିରେ ଅଲକାଶ୍ରମର କର୍ମୀ, କେତେକ ଗ୍ରନ୍ଥ ଓ ନାନା ସରଞ୍ଜାମ ମଧୁବାବୁଙ୍କ କୋଠିକୁ ଅଣାଯାଇ ତାନକରିଭିତରେ ସେଠି ଗୋଟିଏ ପ୍ରଦର୍ଶନୀ କରାଗଲା । କପାରୁ ଆରମ୍ଭ କରି ଖଦୀବୁଣା ପର୍ଯ୍ୟନ୍ତ ପ୍ରତ୍ୟେକ କାର୍ଯ୍ୟ ସେ ପ୍ରଦର୍ଶନୀରେ ଦେଖା ହୋଇଥିଲା ଓ କର୍ମୀମାନଙ୍କୁ କିପରି ତାଲିମ ଦିଆଯାଉଛି ସବୁ

ଦେଖାଇ ଦିଆହୋଇଥିଲା । ଗୋପବାବୁ କହୁଥିଲେ, ଗାନ୍ଧୀଜୀ ପ୍ରଦର୍ଶନୀଟି ଦେଖି ଖୁବ୍ ଖୁସି ହୋଇଥିଲେ ଓ ଅଳକାଶ୍ରମର ଛାତ୍ର, ଶିକ୍ଷକ ଓ କର୍ମୀମାନଙ୍କ ପାଇଁ ଗୋଟିଏ ବାର୍ତ୍ତା ଦେଇଥିଲେ—

"Lead simple and plain lives.
Think of high ideals and thoughts.
Do not make your minds so many blotting sheets of western civilisation."

( ତୁମ ଚଳଣି ସାଦାସିଧା ହେଉ । ବଡ଼ ବଡ଼ ଆଦର୍ଶକଥା ମନେ ପକାଉଥିବ, ଉନ୍ନତ ଚିନ୍ତା କରୁଥିବ, କିନ୍ତୁ ନ ବୁଝି ଆଖିବୁଜି ପାଶ୍ଚାତ୍ୟ ସଭ୍ୟତାକୁ କାହା ଲେଖା ଉପରେ ବ୍ଲଟିଂକାଗଜ ମାଡ଼ି ଅନୁକରଣ କରିବାକୁ ନିଜ ମନକୁ ଦିଅନା କର ନାହିଁ । ତାହେଲେ କଣ ହେବ ନା କାଳିରେ ଲେଖା ଲେଖିସାରି ତା ଉପରେ ବ୍ଲଟିଂ କାଗଜ ଘୁଷିଦେଲେ ଲେଖାର ଦ୍ୟାହିର ଛାପା ଉଠିଯାଏ ସିନା, ତହିଁରେ ପ୍ରକୃତ ଲେଖାର ଓଲଟା ଛାପାଟା ଉଠେ; ସେମିତି ତେମେ ପାଶ୍ଚାତ୍ୟ ସଭ୍ୟତାକୁ ନବୁଝି ନଶୁଝି ଅନୁକରଣ କଲେ ତାର ଅସଲ ଅର୍ଥ ଓ ତାତ୍ପର୍ଯ୍ୟ ବୁଝି ନ ପାରି ତହିଁର ବିପରୀତ କାମ କରି ବସିବ ।)

ମହାତ୍ମାଙ୍କଙ୍କ ବାର୍ତ୍ତାରେ ଥିଲା, "ତୁମ ନିଜର ଯେଉଁ ଗୋଟିଏ ଗୋଟିଏ ମନ, ତୁମ ସବୁ ଲୋକଙ୍କର ସବୁ ମନକୁ ପାଶ୍ଚାତ୍ୟ ସଭ୍ୟତାର ଏତେ ଏତେ ଫର୍ଦ ବ୍ଲଟିଂ କାଗଜରେ ପରିଣତ କର ନାହିଁ ।" 'ବ୍ଲଟିଂ କାଗଜ' ଉପମାଟି ବୁଝାଇବାକୁ ମଧୁବାବୁ କହିବାରୁ ମହାତ୍ମାଜୀ ତା ଅର୍ଥ ପ୍ରାଞ୍ଜଳଭାବେ ବୁଝାଇ ଦେଇଥିଲେ ।

### ଖଦୀବୋର୍ଡ଼ କାମ

କଂଗ୍ରେସ୍ କାମରେ ଗୋପବାବୁ ଅନବରତ ଓଡ଼ିଶାସାରା ବୁଲୁଥାନ୍ତି, ସେ ଖଦୀବୋର୍ଡ଼ କାମ ବି ଲାଗିପାଗି କରୁଥାନ୍ତି * । ଆତ୍ମଜୀବନୀରେ ଲେଖିଛନ୍ତି :—

* କଂଗ୍ରେସ୍ ତରଫରୁ ଗୋଟିଏ ଖଦୀବୋର୍ଡ଼ ଥାଏ, ତାହାର ମାଧ୍ୟମରେ ଚରଖା ଓ ସୂତାକଟା ପ୍ରଚାର ହେଉଥାଏ । ଓଡ଼ିଶା ପ୍ରାଦେଶିକ ଖଦୀବୋର୍ଡ଼ ଦାୟିତ୍ୱରେ ଗୋପବାବୁ ଥିଲେ । ତାପରେ ୧୯୨୫ରେ ଗାନ୍ଧୀଜୀ "ଅଖିଳ ଭାରତୀୟ ଚରଖା ସଂଘ" ଅନୁଷ୍ଠାନଟି ଗଢ଼ିଥିଲେ । ତାପରେ ତା ସମ୍ପାଦକ ହେଲେ ନିରଞ୍ଜନ ପଟ୍ଟନାୟକ । ଗଞ୍ଜାମର କୋଇରଣି, କୋଦଳା ଓ ପୁରୀର ବୋଲଗଡ଼ ଚରଖା ସଂଘର ମୁଖ୍ୟ କେନ୍ଦ୍ର ଥିଲା ।

"ସେତେବେଳକୁ ଚରଖା ସଂଘ କଂଗ୍ରେସ୍‌ର ସ୍ୱତନ୍ତ୍ର ଅନୁଷ୍ଠାନ ଭଳି ହୋଇ ନ ଥାଏ, କଂଗ୍ରେସ୍ କମିଟିମାନଙ୍କ ଦାୟିତ୍ୱରେ ଖଦୀକାମ ହେଉଥାଏ । ମୋର ଠିକ୍ ମନେ ନାହିଁ, ସମ୍ପାଦକ କି ଖାଜାଞ୍ଚି,—ମତେ କଣ ଗୋଟାଏ ଦାୟିତ୍ୱ ଦିଆହୋଇଥିଲା, ମୋ ପାଖକୁ ଗୁଡ଼ାଏ ଟଙ୍କା ଆସୁଥିଲା, ମୁଁ ତାକୁ ଭିନ୍ନ ଭିନ୍ନ ଅଞ୍ଚଳକୁ ବାଣ୍ଟୁଥିଲି, ହିସାବପତ୍ର ରଖୁଥିଲି ଓ କେନ୍ଦ୍ରମାନଙ୍କ ହିସାବ ପରୀକ୍ଷା କରୁଥିଲି । ଅବଶ୍ୟ ଏଥିରେ କେତେଜଣ ସହକର୍ମୀଙ୍କୁ ନେଇ ଗୋଟିଏ ବୋର୍ଡ଼୍ ଗଢ଼ା ହୋଇଥିଲା ଏବଂ ବୋର୍ଡ଼୍ କାର୍ଯ୍ୟନୀତି ଧାର୍ଯ୍ୟ କରୁଥିଲେ, ମାତ୍ର ଟଙ୍କା କାରବାରର ଦାୟିତ୍ୱ ମୋ ଉପରେ ପଡ଼ିଥିଲା । ଏମିତି ସାଧାରଣ ପଇସା ଖର୍ଚ୍ଚ କରିବାର ଭାର ପରେ ମୋ ଉପରେ ଅନେକଥର ଆସିଛି ଏବଂ ସେଥିରୁ ମୋର ଅନେକ ଅଭିଜ୍ଞତା ହୋଇଛି,······ଏ ପଇସା ଦେଶର ଜାତୀୟ ଆନ୍ଦୋଳନ ପାଇଁ ଯେତିକି ଦରକାର ସେତିକି ମଧ୍ୟ ଏହା ବିପଜ୍ଜନକ ହୋଇ, ନେବା ଦେବା ଉଭୟ ଲୋକଙ୍କୁ ଖରାପ କରିବାର ସମ୍ଭାବନା ଅଛି । ଏ ଖଦୀବୋର୍ଡ଼୍ କାମ କଲାବେଳେ ସେହି ସମୟରେ ଅଭିଜ୍ଞତା ହୋଇଥିଲା ଯେ ସାଧାରଣ ପଇସାର ହିସାବ କଡ଼ାକାନ୍ତି ପର୍ଯ୍ୟନ୍ତ ଠିକ୍ କରି ରଖିବା ଦରକାର ଓ ତାହା ସାଧାରଣଙ୍କୁ ଜଣାଇଦେବା ଦରକାର ।"

ଏତେ ନିଷ୍ଠା ଓ ପରିଶ୍ରମ କରି ଖଦୀପ୍ରସାର କାର୍ଯ୍ୟ କରି ତାଙ୍କର ଯେଉଁ ଅଭିଜ୍ଞତା ହେଲା ସେ ବିଷୟରେ ସେ ଲେଖିଛନ୍ତି :

"ଏହି ଖଦୀବୋର୍ଡ଼୍ କାମ ପାଇଁ ବାହାରୁ ପ୍ରାପ୍ତ ସବୁ ଟଙ୍କା ଆସୁଥିଲା ଏବଂ ପୂରାପୂରି ବାହାର ଟଙ୍କାରେ ଭଲ କାମ ହୁଏ ନାହିଁ, ଏ ଧାରଣା ବି ମୋର ଦିନକୁଦିନ ହେଲା । କାରଣ ସେ ଟଙ୍କାର ସଦ୍‌ବ୍ୟବହାର ପ୍ରତି ସ୍ଥାନୀୟ ଲୋକେ ସେତେ ନଜର ରଖନ୍ତି ନାହିଁ ।"

ଏ ଖଦୀବୋର୍ଡ଼୍‌ର ଆରବ୍‌ଧ କାମ ପରେ ଚରଖା ସଂଘ ହାତକୁ ନେଇ ଅଧିକ ସୁବ୍ୟବସ୍ଥିତରୂପେ କରିବାକୁ ଲାଗିଲେ । × × × ଯେଉଁମାନେ ଖଦୀ ବିଭାଗ ଚଳାଇବେ ସେମାନେ ଯେ ନିଜେ ଖଦୀ ତିଆରର ସବୁ ପ୍ରକ୍ରିୟା ଜାଣିଥିବେ ଓ ଖଦୀରେ ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିବା ଏକାନ୍ତ ଦରକାର, ଏକଥା ସେତିକିବେଳେ ଧକ୍‌କା ଖାଇ ଖାଇ ବୁଝି ଯାଇଥିଲି । ବିଭାଗରେ ଯେ ସାମାନ୍ୟ କିରାଣି ବା ସାମାନ୍ୟ ହିସାବରକ୍ଷକ ହେବ ତା'ର ମଧ୍ୟ ଏ ଗୁଣଗୁଡ଼ିକ ଥିବା ଆବଶ୍ୟକ ।

ଏହି ସମୟରେ ଭିନ୍ନ ଭିନ୍ନ ଜିଲାରୁ କେତେଜଣ ଯୁବକଙ୍କୁ ଖଦୀକାମ ଶିଖିବା ପାଇଁ ସାବରମତୀ ଆଶ୍ରମକୁ ପଠାଯାଇଥିଲା ।

ଅଲକାଶ୍ରମରେ ନିଖିଳ ଭାରତ ଚରଖା ସଂଘର ଗୋଟିଏ ଶାଖା ଥିଲା ।

## କଂଗ୍ରେସ୍ କାମ

ଗ୍ରାମଆଡ଼େ କଂଗ୍ରେସ୍‌ର ଅନେକ କାମ ଚାଲିଥାଏ, ଗୋପବାବୁ ଅନେକଆଡ଼େ ଅନେକ କାମ ହାତକୁ ନେଇଥାନ୍ତି, ତାଙ୍କଠି ଉତ୍ସାହ ଓ କାର୍ଯ୍ୟକାରୀଶକ୍ତିର ସତେ ଯେପରିକି ସୀମା ନ ଥାଏ । ପଛେ ତାଙ୍କ ଆତ୍ମଜୀବନୀରେ ଏଥିପାଇଁ ସେ କ୍ଷୋଭ ପ୍ରକାଶ କରିଛନ୍ତି, ନିଜକୁ ସମାଲୋଚନା କରିଛନ୍ତି, ଲେଖିଛନ୍ତି ଯେ ମଣିଷ ନିଜ ଶକ୍ତିର ସୀମା ବାହାରକୁ ଯିବାକୁ ଚେଷ୍ଟା କରିବା ଉଚିତ ନୁହେଁ, ତହିଁରେ କାର୍ଯ୍ୟ ଭଣ୍ଡୁର ହୁଏ ।

୧୯୨୫ରେ ସେ ପୁଣି ବେମାର ପଡ଼ିଲେ, ପ୍ରବଳ ମ୍ୟାଲେରିଆ ଜ୍ୱର ଧରିଲା । ବାରମ୍ବାର ହେଲା । ଭଲ ହେଲେ । ସାମାନ୍ୟ ସୁସ୍ଥ ଲାଗୁ ଲାଗୁ ସେ ପୁଣି କାମରେ ଲାଗି ପଡ଼ନ୍ତି । ସେବର୍ଷ ବୋଲଗଡ଼ରେ କଂଗ୍ରେସ୍ ସମ୍ମିଳନୀ ହେଲା, ତାର ସେ ଆୟୋଜନ କଲେ ।

୧୯୨୫ ଶେଷ ଆଡ଼କୁ କି ୧୯୨୬ରେ ସେଠ୍ ଯମୁନାଲାଲ୍ ବଜାଜ୍ ଓଡ଼ିଶାରେ କାମ ଦେଖିବାକୁ ଆସିଥିଲେ । ଗୋପବାବୁ ତାଙ୍କ ସଙ୍ଗେ ବୁଲିଥିଲେ ଓ ଖଦୀ କାମ ବିଷୟରେ ଆଲୋଚନା କରିଥିଲେ ।

## ନବବାବୁ

୧୯୨୬ ଆରମ୍ଭରେ ହେବ କି ତାର କିଛିଦିନ ଆଗରୁ ହେବ, ଛଅମାସ ପାଇଁ ନବବାବୁ ଶାନ୍ତିନିକେତନ ଗଲେ । ସେଠି ଗ୍ରାମ୍ୟ ଅର୍ଥନୀତି ବିଷୟରେ ଡକ୍ଟର ତାରକନାଥ ଦାସ କୁଡ଼ିଏ ବକ୍ତୃତା ଦେବାର ଥାଏ, ନବବାବୁ ତାକୁ ଶୁଣିବାକୁ ଯାଇଥିଲେ । ଡକ୍ଟର ଦାସ ଜଣେ ଉଚ୍ଚଶିକ୍ଷିତ ବିଶିଷ୍ଟ ଅର୍ଥନୀତିଜ୍ଞ, ସେ ଆମେରିକାରେ ବହୁବର୍ଷ ଅଧ୍ୟାପକ ହୋଇଥିଲେ । ଶାନ୍ତିନିକେତନରେ ନବବାବୁଙ୍କର ପୂଜ୍ୟା ମାଳତୀ ଦେବୀଙ୍କ ସଙ୍ଗେ ଚିହ୍ନା ହେଲା । ତାଙ୍କର ବାପା ବଞ୍ଚି ନ ଥାନ୍ତି, ତାଙ୍କ ମା' ଶାନ୍ତିନିକେତନରେ ମହିଳା ହଷ୍ଟେଲ୍‌ର ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ପରେ ମାଳତୀ ଦେବୀଙ୍କର ପଢ଼ା ସରିଗଲା, ତାଙ୍କ ମା' ବି ଶାନ୍ତିନିକେତନ ଚାକିରି ଛାଡ଼ିଲେ, ଦୁହେଁ ଆସି କଲିକତାରେ ୧୦ ନମ୍ବର ନ୍ୟୁପାର୍କ ଷ୍ଟ୍ରିଟ୍‌ରେ ରହୁଥାନ୍ତି । ନବବାବୁ ଶାନ୍ତିନିକେତନରୁ ଫେରି ଆସି କଲିକତାରେ ୩୬ ନମ୍ବର ହ୍ୟାରିସନ୍ ରୋଡ଼୍‌ରେ ରହିଲେ ଓ ସେଠି ଷ୍ଟେନୋଟାଇପିଷ୍ଟ କାମ ଶିଖିବାକୁ ଲାଗିଲେ । ସେ ମାଳତୀ ଦେବୀଙ୍କୁ ବିଭା ହେବାକୁ ମନ କଲେ ।

ନବବାବୁଙ୍କର ଏ ଇଚ୍ଛା ଜଣାପଡ଼ିବା ମାତ୍ରେ ତାଙ୍କ ବୋଉ, ତାଙ୍କ ଗୁରୁଜନମାନେ ଓ ବନ୍ଧୁବାନ୍ଧବମାନେ ସମସ୍ତେ ଏ ପ୍ରସ୍ତାବର ଘୋର ବିରୋଧ କଲେ ।

ତାର କାରଣ, ମାଳତୀ ଦେବୀ ଓଡ଼ିଆ ଘରର ଝିଅ ନୁହନ୍ତି, ସେ ବଙ୍ଗ ଦେଶରେ ଜନ୍ମ, ମାତୃଭାଷା ବଙ୍ଗଳା, ପୁଣି, —ଜାତିରେ ସେ କରଣ ନୁହନ୍ତି, ବଙ୍ଗ ଦେଶର 'ବୈଦ୍ୟ' ଜାତିର । ଚିରାଚରିତ ପ୍ରଥା ଅନୁସାରେ ନବବାବୁଙ୍କ ବାପ ମା କିମ୍ବା ବନ୍ଧୁବାନ୍ଧବ ବୋହୂ ବାଛି ନାହାନ୍ତି, ବାଛିଛନ୍ତି ସେ ନିଜେ । ତାଙ୍କ ବଂଶ ପରମ୍ପରାରେ କେବେ ଏପରି ବିବାହ ଚଳି ନ ଥିଲା । ନବବାବୁଙ୍କୁ ଅନେକ ପ୍ରକାରେ ନିବର୍ତ୍ତାଗଲା, ବିଭାଘର ଯେପରି ନ ହେବ ସେଥିପାଇଁ ବହୁତ ପ୍ରକାର ଚେଷ୍ଟା କରାଗଲା, ଚାରିଆଡ଼େ ହୁରି ପଡ଼ିଗଲା । ସେତିକିବେଳେ ନବବାବୁଙ୍କୁ ଦୃଢ଼ ସମର୍ଥନ ଜଣାଇ ଅଟଳ ହୋଇ ଠିଆ ହୋଇ ରହିଲେ ଗୋପବାବୁ । ମୂଳରୁ ସେ ଏ ବିବାହ ପ୍ରସ୍ତାବକୁ ସ୍ୱାଗତ କରୁଥାନ୍ତି ଓ ନବବାବୁଙ୍କୁ ନୈତିକ ସମର୍ଥନ ଜଣାଉଥାନ୍ତି । ଷ୍ଟେନୋଟାଇପିଂ ଶିକ୍ଷା ସାରି ନବବାବୁ କଟକ ଆସିଲେ । ଜଗତ୍‌ସିଂହପୁରଠାରୁ ୫ ମାଇଲ୍ ଦୂର 'ଅଣଖିଆ'ଠାରେ ସେମାନଙ୍କର କିଛି ପୈତୃକ ଜମି ଥିଲା । ସେଠି ଗୋଟିଏ ଘର କରି ଏକୁଟିଆ ରହି ସେହି ଜମିରେ ଆଧୁନିକ ଆଖୁଚାଷ ଆଦି ଆରମ୍ଭ କଲେ ଓ ଗୋଟିଏ ଆଖୁପେଡ଼ା 'ଶାଳ' ପକାଇଲେ ।

## ୧୯୨୭—ନବବାବୁଙ୍କ ବିବାହ

୧୯୨୭ ଜୁନ୍ ମାସରେ ଗୋପବାବୁ ମାଳତୀ ଦେବୀଙ୍କ ସଙ୍ଗେ କଲିକତାରେ ନବବାବୁଙ୍କର ବିବାହ କରାଇଲେ । ସେ ବିବାହରେ ତାଙ୍କ ପୁଅ ବୁଲୁବାବୁ ମାର୍କଣ୍ଡ ହୋଇଥିଲେ ଓ କଟକର କେତେକ ବନ୍ଧୁବାନ୍ଧବ ଯାଇଥିଲେ । ତାଙ୍କ ଭିତରେ ଗ୍ରନ୍ଥାର ଭାଗୁବାବୁଙ୍କ ବାପା ବି ଥିଲେ । କଟକରେ ଯେତେବେଳେ ବିବାହ ଭୋଜି ହେଲା, ତହିଁରେ ଅନ୍ୟମାନଙ୍କ ସଙ୍ଗେ ଅନେକ ଅଭିଜାତ ବଂଶର ଲୋକ ଓ କରଣ ଜାତିର ମୁଖିଆ ମୁଖିଆ ଲୋକ ବି ଆସି ଯୋଗଦେଲେ, ତାର ତାତ୍ପର୍ଯ୍ୟ, ସେ ବିବାହ ଜାତି ଓ ସମାଜର ସ୍ୱୀକୃତି ପାଇଲା । ଏ ଅନୁମୋଦନ ଗୋପବାବୁଙ୍କ ବ୍ୟକ୍ତିଗତ ପ୍ରଭାବ ଲାଗି ସମ୍ଭବ ହୋଇଥିଲା । ନବବାବୁଙ୍କ ବିବାହ ସେ କାଳର ସମାଜରେ ଗୋଟିଏ ଐତିହାସିକ ଘଟଣା । ଗୋପବାବୁ ଜାତି ଓ ଅନ୍ୟାନ୍ୟ ନାନା ସଂସ୍କାର ଭାଙ୍ଗିଲେ, ନୂଆ ସମାଜର ମୂଳଦୁଆ ପକାଇଲେ, ସେ ସଂସ୍କାର ସେ ଆରମ୍ଭ କରିଥିଲେ ନିଜ ଘରୁ ।

## ଆଣ୍ଡ୍ରୁଜ୍

୧୯୨୭ରେ ବୈତରଣୀ ନଈରେ ଭୀଷଣ ବଢ଼ି ହେଲା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ବଢ଼ି ସାହାଯ୍ୟ କାମରେ ଲାଗି ପଡ଼ିଥିଲେ । ୧୯୨୭ରେ ସେ କଟକରେ ନିଖିଳ ଓଡ଼ିଶା ବନ୍ୟା କନ୍‌ଫରେନ୍‌ସ୍ କରାଇଥିଲେ । ବଢ଼ି କାମରେ ଦୀନବନ୍ଧୁ ସି. ଏଫ୍. ଆଣ୍ଡ୍ରୁଜ୍ ଓଡ଼ିଶା ଆସିଥିଲେ । ୧୯୨୫ରେ ଆଗ ଥର ଆସି ସେ କଟକରେ ସ୍ୱରାଜ୍ ଆଶ୍ରମରେ ରହିଥିଲେ । ୧୯୨୭ରେ ଆସି କଟକରେ ଗୋପବାବୁଙ୍କ ଘରେ ରହିଲେ । ନବବାବୁ ଓ ମାଳତୀ ଦେବୀ ତାଙ୍କ ସେବାରେ ଲାଗିଥାନ୍ତି । ସେତିକିବେଳେ

ସେ ବର୍ଷାରେ ଚନ୍ଦ୍ର ଚନ୍ଦ୍ର ଅଗଷ୍ଟ ମାସରେ ଅଲକାଶ୍ରମରେ ପହଞ୍ଚିଲେ । ବଗଡ଼ା ଗ୍ରାମର ଘିଅ, ଗୋଟିଏ ତରକାରି, ଖଟା ଓ କଦଳୀ କାଗେଜ ଖାଇ ତୃପ୍ତ ହେଲେ । ଅଲକାଶ୍ରମର କାର୍ଯ୍ୟ ଦେଖି ଅତି ଖୁସି ହେଲେ । ଗୋପବାବୁ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ ଓ ଅନ୍ୟମାନେ ତାଙ୍କୁ ଅଭ୍ୟର୍ଥନା କରିଥିଲେ । ତାଙ୍କ ଆଶ୍ରମରେ ରହଣି ମୋଟା ଖଦଡ଼ ଧୋତି ଓ ଗ୍ରାମର ହଳେ ଭେଟି ଦିଆଯାଇଥିଲା । ସେ ଗୋପବାବୁ, ରମା ଦେବୀ ଆଦିଙ୍କର ଓ ଆଶ୍ରମର ଉଚ୍ଛ୍ୱସିତ ପ୍ରଶଂସା କରି ଯାଇଥିଲେ । କଟକରେ ତାଙ୍କ ରହଣି ବେଳେ ସେ ଗୋପବାବୁଙ୍କ ଘରେ ରହୁଥିଲେ, ଗୋପବାବୁଙ୍କ ପୁଅ ଝିଅଙ୍କ ସଙ୍ଗେ ବି ତାଙ୍କର ଘନିଷ୍ଠତା ବଢ଼ି ଉଠିଥିଲା । ନବବାବୁ ଓ ମାଲତୀ ଦେବୀ ତ ତାଙ୍କର ଗ୍ରହ ଭଳି ଥିଲେ ।

## ୧୭-୬-୧୯୨୮—ଉତ୍କଳମଣିଙ୍କ ତିରୋଧାନ

୧୯୨୮ ଜୁଲାଇ ୧୭ ନେତାଜୀର ଦିନ ସନ୍ଧ୍ୟା ୭ଟା ୧୫ ମିନିଟ୍‌ରେ ପୂଜ୍ୟ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ୫୧ ବର୍ଷ ନ ପୂରୁଣୁ ଅକାଳରେ ଇହଲୀଳା ସମ୍ବରଣ କଲେ । ଓଡ଼ିଶାରେ ଅନ୍ଧାର ଘୋଟିଗଲା ।

ଗୋପବାବୁ ମର୍ମାହତ ହେଲେ । ଉତ୍କଳମଣି ଥିଲେ ତାଙ୍କର ଗୁରୁ, ପଥ-ପ୍ରଦର୍ଶକ, ସେ ଥିଲେ ଓଡ଼ିଶାରେ କଂଗ୍ରେସର ପ୍ରତିଷ୍ଠାତା, ମହାତ୍ମା ଗାନ୍ଧୀଙ୍କ ନୀତି ଅନୁସରଣରେ ସଙ୍ଗଠନ କାର୍ଯ୍ୟ ଓ ସ୍ୱାଧୀନତା ଆନ୍ଦୋଳନର ମୂଳଦୁଆ ସେ ହିଁ ପକାଇଥିଲେ । ଓଡ଼ିଶାର ଦରିଦ୍ର ଜନସାଧାରଣଙ୍କ ଦୁଃଖ ଦୂର କରିବାକୁ ବାଧ ବାଧ ପ୍ରାଣପାତ କରି କାର୍ଯ୍ୟ କରୁଥିଲେ । ସେହି ଉଦ୍ଦେଶ୍ୟରେ ଜୀବନକୁ ଉତ୍ସର୍ଗ କରିଥିଲେ ।

ନେତା ଚାଲିଗଲେ ।

ଦେଶସାରା ଶୋକର ଜୁଆର ଉଚ୍ଛୁଳିଲା । ଠିକ୍ ସେହି ଜୁଲାଇ ୧୭ ତାରିଖ ପୂର୍ବଦିନ ଗୋପବାବୁ ଉତ୍କଳମଣିଙ୍କୁ ଦେଖିବାକୁ ଯାଇଥିଲେ, ତାଙ୍କ ପାଖେ ରହି ୧୭ ତାରିଖ ଦିନ ଫେରି ଆସିଥିଲେ ।

ସେହି ଲହର ଶୋକ ଭିତରେ ଗୋପବାବୁ ଅଣ୍ଟା ଭିଡ଼ିଲେ । ଉତ୍କଳମଣିଙ୍କ ସ୍ମୃତିରକ୍ଷା ହେବ—ଚିନ୍ତାରେ, କାର୍ଯ୍ୟରେ, ତାଙ୍କ ଆଦର୍ଶକୁ ଜୀବନ୍ତକରି । ପିଣ୍ଡରେ ପ୍ରାଣ ଥିବାଯାକେ ସେ ଉଦ୍ୟମର ଶେଷ ହେବ ନାହିଁ ।

୧୯୨୮ ଶେଷରେ ପରିବାରର ସମସ୍ତିଙ୍କ ସହିତ ସେ ଯାଇ ଅଲକାଶ୍ରମରେ ରହିଲେ । ତା ଆଗରୁ କଟକରୁ ସେଠିକି, ସେଠୁ କଟକ ଯିବା ଆସିବା କରୁଥିଲେ ।

ଏଣିକି ଅଳକାଶ୍ରମ ହେଲା ସେମାନଙ୍କ ଘର, କାମ ଥିଲେ କଟକ ଆସନ୍ତି । କିନ୍ତୁ ଅଳକାଶ୍ରମରେ ଆଉ ବେଶିଦିନ ରହିପାରିଲେ ନାହିଁ । ୧୯୩୦ ଓଟାର ନେଲା । ୧୯୩୨ରେ ଅଳକାଶ୍ରମ ଓ ତା ପାଖ ଜମିତକ ସରକାର ବାଜ୍ୟାପ୍ତି କଲେ, ଘରସବୁ ମାଟିରେ ମିଶିଲା । ୧୯୩୪ରେ ସେ ଜାଗାକୁ ସରକାର ଶ୍ରୀ ଭାଗୀରଥୀ ମହାପାତ୍ରଙ୍କ ପରିବାରକୁ ଲିଜ୍‌ଟାଇ ଦେଲେ କିନ୍ତୁ ଅଳକାଶ୍ରମ ଆଉ ନ ଥିଲା ।

୯-୨-୧୯୨୯ 'ଉତ୍କଳ ଦୀପିକା' ପୃ ୫୬ରେ ଅଛି ଯେ ଗୋପବନ୍ଧୁ ଚୌଧୁରୀ ଅଳକାଶ୍ରମରୁ ତହିଁରେ ଗୋଟିଏ ଲେଖା ଛପାଇ ଥିଲେ । 'ଗୋପବନ୍ଧୁ' (ଦାଶ) ସଂଘ ନାମରେ ଗୋଟିଏ ସଂଘ ଗଠିତ ହୋଇଥିଲା, ଗୋପବାବୁ ତାର ସମ୍ପାଦକ ଓ କୋଷାଧ୍ୟକ୍ଷ ଥିଲେ । ଗୋପବାବୁ ଲେଖିଲେ ଯେ ସେ ସଂଘର କର୍ମୀମାନେ ନିମ୍ନଲିଖିତ କାର୍ଯ୍ୟରେ ନିଯୁକ୍ତ ରହନ୍ତୁ :

(୧) ଗ୍ରାମ ସଂଗଠନ, (୨) ସେବା କାର୍ଯ୍ୟ ଓ (୩) ଶ୍ରମଜୀବୀ ସଂଗଠନ ।

## ଆଠ

ଗୋପବାବୁ ଗୃହକର ଗୃହ କଂଗ୍ରେସରେ ମିଶିବାର ଆଠବର୍ଷ ହୋଇଥାଏ, ରମା ଦେବୀ ତାଙ୍କ ଆଦର୍ଶ ଓ କାର୍ଯ୍ୟକୁ ଆପଣାର କରି ନେଇଥାନ୍ତି । ସେହି ଗୃହରେ ନୂଆ ହୋଇ ଗଢ଼ି ହୋଇ ଯାଉଥାନ୍ତି, ସେ କ୍ଷେତ୍ରରେ ନିଜର ବିଚକ୍ଷଣ ପାରଦର୍ଶିତା ଦେଖାଇଥାନ୍ତି । ଗୋପବାବୁ ଅଳକାଶ୍ରମ ପରିବାରର ବାପ ହେଲେ, ରମାଦେବୀ ସେ ପରିବାରର ମା, ଓ ସେହିପରି, ଯେଉଁମାନେ ସେ ଦୁହିଁଙ୍କୁ ମାନୁଥିଲେ, ଭକ୍ତି କରୁଥିଲେ, ସେ ସମସ୍ତିଙ୍କର । ଆଗରୁ ତାଙ୍କ କଟକ ଘରେ ଅନେକ ସମୟରେ ଦେଶପ୍ରେମୀ କର୍ମୀମାନେ ଏକାଠି ହେଉଥିଲେ, କେତେବେଳେ ବହୁତ ଲୋକ

ରହୁଥାଉଥିଲେ । ସେମାନଙ୍କର ଯତ୍ନ ନେବା, ସେମାନଙ୍କୁ ଚଳାଇବା, ବଢ଼ାବାଢ଼ି ଦେବା ତାଙ୍କର ଅଭ୍ୟାସ ହୋଇଯାଇଥିଲା । ପିଲାଦିନୁ କୋଠାଘର, ପୁଣି ବଡ଼ ଘର ଚଳାଇବା ଦାୟିତ୍ୱ ତୁଲାଇବାକୁ ସେ ତାଲିମ୍ ହୋଇଥିଲେ, ତାପରେ ଆସିଥିଲା ଦେଶକାମର ଭିଡ଼ । ଅଲକାଶ୍ରମରେ, ପଛେ ବରି ଆଶ୍ରମରେ, ପୁଣି ବଡ଼ ବଡ଼ ସମ୍ମିଳନୀମାନଙ୍କରେ ସେ ସୁରୁଖୁରୁରେ ସେହିପରି ଦାୟିତ୍ୱ ବି ତୁଲାଇନେଲେ । ୧୯୨୮ ବେଳକୁ ଅଲକାଶ୍ରମ ସ୍କୁଲ ଆଉ ଚାଲୁ ନ ଥିଲା, ସେ ଘରସବୁ ଥାଏ, ସେଠି ମୁଖ୍ୟତଃ ଖଦୀ କାମ ଚାଲିଥାଏ । ପୂର୍ବତନ ଛାତ୍ରଙ୍କ ଭିତରୁ ଅଳ୍ପ କେତେଜଣ ରହିଥାନ୍ତି, ସେମାନେ ପଢ଼ୁ ନ ଥାନ୍ତି, ଖଦୀ କାମ କରୁଥାନ୍ତି । ସୂତାକଟା, ଖଦୀବୁଣା କରିବାକୁ ଓ କଂଗ୍ରେସର ଅନ୍ୟାନ୍ୟ ଗଠନାତ୍ମକ କାର୍ଯ୍ୟ କରିବାକୁ ତାଲିମ ପାଇବା ସକାଶେ ସେଠି କର୍ମୀ ରହୁଥାନ୍ତି । ପୁରୁଣା କର୍ମୀମାନେ ରହୁଥାନ୍ତି, କେତେଆଉ କେତେ ଲୋକ ଆସନ୍ତି । ଉତ୍କଳମଣିଙ୍କ ସ୍ୱର୍ଗପ୍ରାପ୍ତି ପରେ ଅନେକେ ଗୋପବାବୁଙ୍କ ଆଡ଼କୁ ହିଁ ଅନାଉଁଥାନ୍ତି ସେ ନେତା ବୋଲି । ତାଙ୍କଠି ନେତୃତ୍ୱ କାମନା ନ ଥାଏ. କେବେ ସ୍ୱପ୍ନରେ ମଧ ତାଙ୍କୁ କ୍ଷମତାଲୋଭ ଛୁଇଁ ନାହିଁ, କିନ୍ତୁ ତାଙ୍କଠି ଥାଏ ଅଦମ୍ୟ କର୍ମପ୍ରବଣତା, ଦେଶକାର୍ଯ୍ୟରେ ଅକ୍ଳାନ୍ତ ଶ୍ରମ ପାଇଁ ଦୁର୍ଦ୍ଦମନୀୟ ଆବେଗ । ସେ ଓଡ଼ିଶା ସାରା ନାନା କାର୍ଯ୍ୟ ଆବୋରିଥାନ୍ତି, ନିଜକୁ ବିଶ୍ରାମ ନ ଦେଇ ଖଟୁଥାନ୍ତି । ଅଲକାଶ୍ରମ ଓଡ଼ିଶାରେ କଂଗ୍ରେସ୍ କାର୍ଯ୍ୟର କେନ୍ଦ୍ର ହୋଇଥାଏ, ତେଣୁ ଅନେକ ଲୋକ ଆସୁଥାନ୍ତି । ସେଠି ସମସ୍ତେ ମିଶି ଗୋଟିଏ ଘର, ସେ ଘର ସମ୍ଭାଳନ୍ତି ରମା ଦେବୀ ।

## ଜାଗରଣ

ସେ ଆସି ପହଞ୍ଚିବାରୁ ଅଲକାଶ୍ରମରେ ନାରୀକର୍ମୀ ସଂସ୍ଥା ସଂଗଠନ ଓ ନାରୀ କର୍ମୀ ତାଲିମ୍ କାର୍ଯ୍ୟ ଆଦି ଆରମ୍ଭ ହୋଇଗଲା । ଗ୍ରାମରେ, ଜଗତ୍‌ସିଂହପୁରରେ, ଆଖପାଖ ଗାଁରେ, କ୍ରମେ ଦୂର ଦୂର ଗାଁରେ ମା ଭଉଣୀମାନଙ୍କ ଭିତରେ ନୂଆ ଦୃଷ୍ଟିଭଙ୍ଗୀ, ନୂଆ ଉତ୍ସାହ, ନୂଆ ଭାବଧାରା ଖେଳାଇବା, ଦେଶକାମରେ ସେମାନଙ୍କୁ ଉଦ୍‌ବୁଦ୍ଧ କରିବା କାର୍ଯ୍ୟ ବ୍ୟାପକଭାବେ ଚାଲିଲା । କୁସଂସ୍କାର, ଅନ୍ଧବିଶ୍ୱାସ ଭାଙ୍ଗୁ, ଅଦରକାରୀ ପଚୁଆ ପ୍ରଥା ଓ ଚଳଣିମାନ ଭାଙ୍ଗୁ, ନାରୀମାନେ ସବୁକଥା ଜାଣନ୍ତୁ, ବୁଝନ୍ତୁ, କାମଦାମ ଶିଖନ୍ତୁ, ପାଠ ପଢ଼ନ୍ତୁ, ବିଚାର ବିବେକ ଅନୁସରଣ କରି କାର୍ଯ୍ୟ କରନ୍ତୁ, ପରିଶ୍ରମ କରନ୍ତୁ, ପଦାକୁ ବାହାରନ୍ତୁ, ନିଜ କର୍ତ୍ତବ୍ୟ ତୁଲାନ୍ତୁ, ଶାନ୍ତି ଶୃଙ୍ଖଳା ରକ୍ଷି ଆଦର୍ଶ ଜୀବନ ବଞ୍ଚନ୍ତୁ, ଭୟ ଛାଡ଼ନ୍ତୁ, ନିଜ ଗୋଡ଼ରେ ଠିଆ ହୋଇ ଶିଖନ୍ତୁ— ଏପରି ନାନା ଧାରଣା ଖେଳିବାକୁ ଲାଗିଲା । ଦ୍ରୁତ ଦ୍ରୁତ ପରିବର୍ତ୍ତନ ଆରମ୍ଭ ହୋଇଗଲା । କଂଗ୍ରେସ୍ ଆନ୍ଦୋଳନ ଓ ଅଲକାଶ୍ରମ ସହିତ ଯେଉଁ ନାରୀ କର୍ମୀମାନେ ସଂଯୁକ୍ତ ଥିଲେ ତାଙ୍କ ଭିତରେ ଜଣେ ସ୍ୱନାମଧନ୍ୟା ସରଳା ଦେବୀ, ସେ ଭାଗୁବାବୁଙ୍କ ସ୍ତ୍ରୀ, ନିଜେ ଜଣେ କଂଗ୍ରେସ୍ ନେତ୍ରୀ ଓ ସୁଲେଖିକା । ଓଡ଼ିଶାରେ କଂଗ୍ରେସ୍

ଆନ୍ଦୋଳନରେ ନାରୀ ଜାଗରଣରେ ଭୂମିକାର ଚମତ୍କାର କାହାଣୀର ସ୍ୱତନ୍ତ୍ର ଓ ବିଶଦ ଅଧ୍ୟୟନ ପ୍ରୟୋଜନ ।

## ଗୋପବାବୁଙ୍କ ବ୍ୟକ୍ତିଗତ ଜୀବନ

ଗୋପବାବୁ ସୁସ୍ଥ ସବଳ କର୍ମଠ ପରିଶ୍ରମୀ ସଦାପ୍ରଫୁଲ୍ଲ ମଣିଷ । ନାନା କାର୍ଯ୍ୟରେ ତତ୍ପର ରହି ତାହାର ଭିତରେ ପ୍ରତି ମୁହୂର୍ତ୍ତରେ ସେ ଜୀବନକୁ ଉପଭୋଗ କରନ୍ତି । ମାଟି ହାଣନ୍ତି, ସୂତା କାଟନ୍ତି, ଲୁଗା ବୁଣନ୍ତି, ପିଠିରେ ଲୁଗା ବେଣ୍ଡିରି ବାନ୍ଧି ଗାଁ ଗାଁ ବୁଲି ଖଦୀ ବିକନ୍ତି, ଆଲୋଚନା କରନ୍ତି, ବୁଝାନ୍ତି, ପରାମର୍ଶ ଦିଅନ୍ତି, ସଂଗଠନ କରନ୍ତି, ନାନା କାମ । ତାହାର ଭିତରେ ହସ ଖୁସି ଅଣ୍ଟା ନଥିଲା, ଚିଠି ଲେଖୁ ଲେଖୁ ତହିଁରେ ବି ହସ-କବିତା । ବିଶ୍ୱନାଥ ପଣ୍ଡାଙ୍କୁ ଚିଠି ଲେଖିଥିଲେ,

"ବିଶ୍ୱଦାଦା ବିରଡାଲି—ତୁମି ଗାଧା ଖାଅ ଖାଲି
ଖାଅ କାଦା ଧୋୟାବାଲି—ଶୁଅ ସଦା ବାଟ ଗଳି
ବାହାରଣା ବାଟବଣା—ଅଛ ଜଣା ତୁମେ କଣା
ଇତ ଅଜଣା"

ସେ ଭାରି ରାଗୀ ଥିଲେ, ହଠାତ୍ ରାଗି ଯାଆନ୍ତି, ପୁଣି ଶୀତଳ ହୁଅନ୍ତି, ଅନ୍ୟାୟ ଅନୀତି ବୋଲି କୌଣସି କଥାକୁ ଭାବିଲେ ହିଁ ରାଗ, ଅନ୍ୟଥା ନୁହେଁ । କିନ୍ତୁ ପିଲାମାନଙ୍କୁ ସାତଖୁଣ ମାଫ୍ । ସବୁଦିନେ ସବୁ ପିଲାଙ୍କର ସେ ଭାରି ସାଙ୍ଗ, ତାଙ୍କୁ ଖେଳିବାକୁ, ଦୁଃସାହସିକତା କରିବାକୁ ଉତ୍ସାହିତ କରନ୍ତି, ଦୁଷ୍ଟ ପିଲାହିଁ ତାଙ୍କ ଆଖିରେ ବେଶି ଆକର୍ଷଣୀୟ, କାରଣ ତାଠି ମୌଳିକତା ଅଛି, ପ୍ରାଣପ୍ରାଚୁର୍ଯ୍ୟ ଅଛି, ଖାଲି ଠିକ୍ ବାଟ ଦରକାର । ପିଲାଙ୍କୁ ସେ କେବେ ରାଗନ୍ତି ବି ନାହିଁ । ତାଙ୍କୁ ନାନା କାମ ଶିଖାନ୍ତି ।

ସେ ନାନା ମୌଳିକ କାର୍ଯ୍ୟ କରି ଆନନ୍ଦ ପାଉଥିଲେ । ରଙ୍ଗ କଣିଆଣି ରଖି ଛବି ଆଙ୍କୁଥିଲେ, ପିଲାଙ୍କୁ ବି ମତାଉଥିଲେ । ଭାବୁଥିଲେ, ଲେଖୁଥିଲେ, ପ୍ରକୃତି ସମେତ ସମୁଦାୟ ପରିବେଷ୍ଟନୀହିଁ ତାଙ୍କ ପାଇଁ କୁତୂହଳ ଓ ଅଧ୍ୟୟନର ଉପାଦାନ । ସରଳ, ନିରହଙ୍କାର, ନିରାଡମ୍ବର ମଣିଷ, ସମସ୍ତଙ୍କ ପ୍ରତି ଅମାୟିକ ନିଘାବନ୍ତ ବ୍ୟବହାର, ତାଙ୍କର ସାଧାରଣ କଥାଭାଷାରୁ ବି କିଛି ଜାଣିବାର ଶିଖିବାର ଥିଲା । ଲୋକଙ୍କୁ ସେ ସହଜେ ଆକୃଷ୍ଟ କରନ୍ତି । ଲୋକେ ତାଙ୍କୁ ଖୁବ୍ ଭଲ ପାଉଥିଲେ ଓ ଭକ୍ତି କରୁଥିଲେ, ତାଙ୍କ ଉପରେ ବିଶ୍ୱାସ ରଖିଥିଲେ । ଏହିପରି ଥିଲେ ସେ ସବୁଦିନେ ।

ସେତେବେଳେ ନବବାବୁ ଅସ୍ପୃଶ୍ୟତାବିରୋଧୀ ଆନ୍ଦୋଳନ ଆରମ୍ଭ କରିଥିଲେ । ସେ କେଳା ସାହିରେ ଖାଉଥିଲେ ଓ ବାଗଲପୁର ହରିଜନ ସାହିରେ ସ୍କୁଲ

ବସାଇଥିଲେ । ସବର୍ଣ୍ଣମାନେ ତାଙ୍କୁ ଦନେ ସଭରେ ପୋଡ଼ୁ ଦେବାରୁ ସବୁ ହରିଜନ ଅନ୍ୟ ଗାଁକୁ ଉଠି ଯାଇଥିଲେ । ଗୋପବାବୁ ଅଛୁଆଁ ମାନୁ ନ ଥିଲେ, କିନ୍ତୁ ଅଲକାଶ୍ରମରେ ସେତେବେଳେ ଖାସ୍ ହୋଇ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଆରମ୍ଭ ହୋଇ ନ ଥିଲା । ଆଶ୍ରମରେ ଗୋଟିଏ ବାଉରି ପରିବାର ଥାଏ, ବେଳେ ବେଳେ ଆଶ୍ରମବାସୀମାନେ ତା ଘରେ ଖାଆନ୍ତି । କେତେକ ରକ୍ଷଣଶୀଳ ବୃଦ୍ଧ କର୍ମୀ ଅସ୍ପୃଶ୍ୟତା ଦୂର କରିବା ସପକ୍ଷରେ ନ ଥିଲେ, ଅନ୍ୟମାନେ ଅସ୍ପୃଶ୍ୟତାର ଘୋର ବିରୋଧୀ । ଗୋପବାବୁଙ୍କ କଟକ ଘରକୁ ଶ୍ରୀ ଶ୍ରୀଧର ସାମଲ ଯିବା ଆସିବା କରୁଥିଲେ ଓ ସମୟେ ତାଙ୍କ ସଙ୍ଗରେ ଖାଉଥିଲେ । ସେ ବି. ଏ. ପାଶ୍ କରି ସ୍ପେଶାଲ୍ ସ୍କୁଲ ସବଇନସପେକ୍ଟର ହୋଇଥିଲେ । କିନ୍ତୁ ଗୋପବାବୁଙ୍କ ବୋଉ ଆଗପରି ଅଛୁଆଁ ବାରୁଥିଲେ ।

## ନାନା ଘଟନା

ଆଶ୍ରମରେ ପଢ଼ୁଥିଲା ପରେ ଥରେ ଗୋପବାବୁଙ୍କ ପୁଅ ଓ ଝିଅ ନାଳରେ ବୁଡ଼ି ଯାଉ ଯାଉ ଅଳ୍ପକେ ରକ୍ଷା ପାଇଗଲେ । ଝିଅଟି (ରମା) ଗାଧୋଇ ସାରି ପାହାଚରେ ଠିଆ ହୋଇ ନାଳକୁ ପିଠି କରି ମୁଣ୍ଡବାଳ ଝାଡୁଥାଏ, ନାଳରେ ପଡ଼ିଗଲା, ତାକୁ ଉଦ୍ଧାର କରିବାକୁ ଯାଇ ପୁଅଟି (ବୁଲୁ) ବି ନାଳରେ ପଡ଼ିଗଲା, ଉଭେଁ କୁଣ୍ଢାକୁଣ୍ଢି ହୋଇ ବୁଡ଼ିଯାଇ ନାଳର ଅଢ଼ତଳେ ଯେଉଁଠି ପାଣିଭଉଁରି ପଡ଼ୁଛି ସେହିଆଡ଼କୁ ସୁଅରେ ଓଟାରି ହୋଇଗଲେ । ରମା ଦେଖି ପାଟି କରି ପାଣି ଭିତରକୁ ପଶିଗଲେ, ସେ ବି ପହଁରି ଜାଣନ୍ତି ନାହିଁ । ଭାଗ୍ୟକୁ ପାଟି ଶୁଣି ଆଶ୍ରମର କର୍ମୀ ନୀଳମଣି ପ୍ରଧାନ (ପରେ ଡିଷ୍ଟ୍ରିକ୍ଟବୋର୍ଡ୍ ଭାଇସ୍ ଚେଅରମ୍ୟାନ୍ ହୋଇଥିଲେ) ପାଣି ଭିତରେ ବୁଡ଼ି ଦୁହିଁଙ୍କ ଟେକି ଧରିଲେ ଓ ଅନ୍ୟମାନେ ତାଙ୍କୁ କୂଳକୁ ଟାଣିନେଲେ ।

ସହରରେ ବଢ଼ିଥିବା ପିଲା ଦୋଟି ତୋଟାରେ ଦଣ୍ଡାରେ ବୁଲୁଥାନ୍ତି, ଗାଁ ବୁଲୁଥାନ୍ତି, କେତେବେଳେ କେଉଁ ଗାଁକୁ ଆଶ୍ରମବାସୀଙ୍କ ସଙ୍ଗେ ବୁଲି ଯାଉଥାନ୍ତି । ସୁଖରେ ଜୀବନ ବିତାଉଥାନ୍ତି ।

ଏହି ସମୟରେ ଥରେ କଲିକତାରୁ ଖ୍ୟାତନାମା ଶ୍ରୀ ସତୀଶଚନ୍ଦ୍ର ଦାସଗୁପ୍ତ ଅଲକାଶ୍ରମ ଦେଖି ଆସିଥିଲେ । ସେ ଜଣେ ବିଶିଷ୍ଟ ଗାନ୍ଧୀବାଦୀ ନେତା, ପୁଣି କୁଟୀରଶିଳ୍ପ ତଥା ଗ୍ରାମୋଦ୍ୟୋଗ ବିଷୟରେ ବିଶେଷଜ୍ଞ ।

ଅଲକାଶ୍ରମକୁ କେତେଗୁଡ଼ିଏ ପତ୍ରିକା ଆସୁଥିଲା । ତା ଭିତରେ ଥିଲା ଲାଲା ଲଜପତ୍ ରାୟଙ୍କ ସାପ୍ତାହିକ କାଗଜ, "The People" । ଅଲକାଶ୍ରମରେ ଥିବାବେଳେ ଗୋପବାବୁ ତାଙ୍କର "Servants of the People

Society''ରେ ଯୋଗଦେବାକୁ ଭାବିଥିଲେ, କିନ୍ତୁ ସେଥିରେ ଯୋଗ ଦେଲେ ନାହିଁ । ସାଇମନ୍ କମିସନ୍ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କଲବେଳେ ପୁଲିସର ଲାଠି ମାଡ଼ରେ ଆହତ ହୋଇ ୧୯୨୮ରେ ଲାଲଜୀ ଇହଧାମ ଛାଡ଼ିଲେ ।

## ୧୯୨୮—କଲିକତା କଂଗ୍ରେସ୍

ସେହି ୧୯୨୮ ଡିସେମ୍ବର ମାସରେ କଲିକତାରେ ଅଖିଳ ଭାରତ କଂଗ୍ରେସ୍ କମିଟିର ବାର୍ଷିକ ଅଧିବେଶନ ବସିଲା । ଗୋପବାବୁ ସପରିବାର ସେଠିକି ଯାଇଥିଲେ । ଭାରତୀୟ ଜାତୀୟ କଂଗ୍ରେସର ସେହି ଅଧିବେଶନର ବିଶେଷ ତାତ୍ପର୍ଯ୍ୟ ଥିଲା । ତା ପୂର୍ବରୁ ନାନା ରାଜନୈତିକ ଦଳଙ୍କ 'ସର୍ବଦଳୀୟ ସମ୍ମେଳନ' ବସି ମୋତିଲାଲ୍ ନେହେରୁଙ୍କ ଅଧ୍ୟକ୍ଷତାରେ ଗୋଟିଏ ସବ୍‌କମିଟି ବସାଇ ଭାରତର ଶାସନପଦ୍ଧତି କିଭଳି ହେବ, ସେଥିପାଇଁ ଗୋଟିଏ ଶାସନ ଖସଡ଼ା (ନେହେରୁ ରିପୋର୍ଟ୍) କରାଇ ଅନୁମୋଦନ କରିଥିଲେ ଯଦିଚ ସେହି ଡିସେମ୍ବରରେ ନାନା ଦଳର ପ୍ରତିନିଧିମାନେ ଗୋଟିଏ ବୈଠକରେ ତାକୁ ଆଲୋଚନା କଲବେଳେ ମୁସ୍ଲିମ୍ ଲିଗ୍, ଶିଖ୍, ଅନୁନ୍ନତ ଜାତି ଆଦିଙ୍କ ନେତାମାନେ ତହିଁରେ ଥିବା ବିବିଧ ବ୍ୟବସ୍ଥା ପ୍ରତି ଅସନ୍ତୁଷ୍ଟ ହୋଇ ଉଠି ଚାଲିଗଲେ ଓ ସେ ଖସଡ଼ାରେ କିଛି କାମ ହେଲା ନାହିଁ । କିନ୍ତୁ ଅଖିଳ ଭାରତ କଂଗ୍ରେସ୍ କମିଟିର ବାର୍ଷିକ ଅଧିବେଶନରେ ମହାତ୍ମା ଗାନ୍ଧୀଙ୍କ ପ୍ରସ୍ତାବ କ୍ରମେ ମେ 'ନେହେରୁ ରିପୋର୍ଟ୍' ପ୍ରସ୍ତାବ ଗୃହୀତ ହେଲା ଓ ସରକାରଙ୍କୁ ସୂଚାଇଦିଆଗଲା ଯେ ୧୯୨୯ ଡିସେମ୍ବର ୩୧ ସୁଦ୍ଧା ତାକୁ ଗ୍ରହଣ କରି କାର୍ଯ୍ୟକାରୀ କରି ଭାରତକୁ 'ଡୋମିନିଅନ୍ ଷ୍ଟେଟସ୍' ଦିଅନ୍ତୁ ନଚେତ୍ ଅସହଯୋଗ ଆନ୍ଦୋଳନ ଚାଲିବ ।

ମହାତ୍ମା ଗାନ୍ଧୀଙ୍କର ଏ ପ୍ରସ୍ତାବଟି ସେଠି ଗୃହୀତ ହେଲେ ସୁଦ୍ଧା ତାର ଆଲୋଚନାବେଳେ ତୀବ୍ର ବାଦାନୁବାଦ ଚାଲିଲା । ପ୍ରସ୍ତାବରେ ଥିଲା 'ଡୋମିନିଅନ୍ ଷ୍ଟେଟସ୍', ଅର୍ଥାତ୍ ଭାରତ ଇଂରେଜ ସାମ୍ରାଜ୍ୟରେ ହିଁ ରହିବ କିନ୍ତୁ ସ୍ୱାୟତ୍ତଶାସିତ ହେବ । କିନ୍ତୁ ପ୍ରମୁଖ ନେତାମାନେ ଏପରି ଭାବିଲା ବେଳକୁ ଦେଶର ଯୁବଶକ୍ତି ବେଲୁଡ଼ିବେଲି ଆହ୍ୱାନ ଆହ୍ୱାନ ଉତ୍କଣ୍ଠିତ ହୋଇ ଲୋଡ଼ିଲେଣି 'ପୂର୍ଣ୍ଣ ସ୍ୱରାଜ' । ପୁରୁଣା ନେତାଏ ଦକ୍ଷିଣପନ୍ଥୀ ହେଲେ ଯୁବକମାନେ ମୋହିଁଲେଣି 'ବାମପନ୍ଥୀ' ଆଡ଼କୁ । ୧୯୨୭ରେ ମାଡ୍ରାଜ୍ ଅଧିବେଶନରେ 'ସ୍ୱାଧୀନତା ପ୍ରାପ୍ତି ହିଁ ଲକ୍ଷ୍ୟ' ବୋଲି ପ୍ରସ୍ତାବ ଗୃହୀତ ହୋଇ ସାରିଥାଏ । ୧୯୨୭ରେ ୟୁରୋପରୁ ଫେରି ପଣ୍ଡିତ ଜବାହରଲାଲ୍ ନେହେରୁ ନିଜକୁ 'ସୋସିଆଲିଷ୍ଟ୍' ବୋଲି ଘୋଷଣା କରିଥାନ୍ତି । ସେ ଓ ଶ୍ରୀ ସୁଭାଷଚନ୍ଦ୍ର ବୋଷ୍ 'ଇଣ୍ଡିପେଣ୍ଡେନ୍ସ ଲିଗ୍' ଗଢ଼ି ସ୍ୱରାଜ୍ ପାଇଁ ଆନ୍ଦୋଳନ ଚଳାଉଥାନ୍ତି । ସେହିମାନେ ମହାତ୍ମା ଗାନ୍ଧୀଙ୍କ ପ୍ରସ୍ତାବକୁ ବିରୋଧ କଲେ, ଭୋଟରେ ହାରିଲେ ସିନା, ବହୁତ ଭୋଟ୍ ପାଇଥିଲେ, ଯହିଁରୁ ଜଣାପଡ଼ିଗଲା ଯୁଗର ଦାଗ କେଉଁଆଡ଼େ, ବିଶେଷତଃ

ଯୁବକମାନଙ୍କର, ଯେଉଁମାନେ ଦେଶର ଭବିଷ୍ୟତ । ମହାତ୍ମାଙ୍କ ପ୍ରସ୍ତାବ ସପକ୍ଷରେ ୧୩୫୦ ଭୋଟ ଉଠିଲା, ସେମାନଙ୍କ ସପକ୍ଷରେ ୧୭୩ । ଭବିଷ୍ୟତର ରାଜନୀତିକୁ ତାହା ପ୍ରଭାବିତ କଲା, ଏଭଳି କୁହାଯାଇପାରେ ।

## ଓ୍ୱାର୍ଦ୍ଧା ଗଲେ, ମହାତ୍ମାଜୀଙ୍କ ସଙ୍ଗେ ଭେଟ, ନୂଆ ଦାୟିତ୍ୱ

କଲିକତାରୁ ଫେରି ଗୋପବାବୁ ଓ୍ୱାର୍ଦ୍ଧା ଗଲେ । ଯାଇ ମହାତ୍ମା ଗାନ୍ଧୀଙ୍କୁ ଦେଖା କଲେ । ସେ ଓଡ଼ିଶାବାସୀଙ୍କ ଦୁଃଖ କଥା ମହାତ୍ମା ଗାନ୍ଧୀଙ୍କୁ କହୁଥିଲାବେଳେ ମହାତ୍ମାଙ୍କ ଆଖି ଛଳ ଛଳ ହୋଇ ଯାଉଥାଏ । ଗୋପବାବୁଙ୍କ ମନରେ ସେ ଦୃଶ୍ୟର ଗଭୀର ପ୍ରଭାବ ପଡ଼ିଥିଲା । ସେ ଦୃଶ୍ୟ ସେ ଶ୍ରୀମତୀ ରମା ଦେବୀଙ୍କ ପାଖକୁ ପଠେଇ ଚିଠିରେ ଲେଖିଥିଲେ ।

## ଗୋପବାବୁଙ୍କ ଓଡ଼ିଶାରେ ଗାନ୍ଧୀ ସେବାସଂଘ କାର୍ଯ୍ୟର ଦାୟିତ୍ୱ ଗ୍ରହଣ

ଓଡ଼ିଶାର ନାନା ସ୍ଥାନରେ ଗାନ୍ଧୀ ସେବାସଂଘ କେନ୍ଦ୍ର ଖୋଲି କାର୍ଯ୍ୟ କରିବା ପ୍ରସ୍ତାବ ଥାଏ । ମହାତ୍ମା ଗାନ୍ଧୀ ଗୋପବାବୁଙ୍କୁ କହିଲେ ଯେ ସେ ଯଦି ସେ କାମର ଦାୟିତ୍ୱ ନେବାକୁ ମଙ୍ଗିବେ, ତେବେ ଗାନ୍ଧୀଜି ଓଡ଼ିଶାରେ ସେ କାର୍ଯ୍ୟ କରାଇବେ । ଗୋପବାବୁ ସେ କାର୍ଯ୍ୟକୁ ଅତି ଗୁରୁତ୍ୱପୂର୍ଣ୍ଣ ଭାବିଲେ ଓ ଏଡ଼େ ବଡ଼ ଦାୟିତ୍ୱ ମୁଣ୍ଡାଇବା କଥା ଭାବିଚିନ୍ତି ଜଣାଇବେ । ଓ୍ୱାର୍ଦ୍ଧାରୁ ସେ ରମା ଦେବୀଙ୍କୁ ଲେଖିଥିବା ପତ୍ରରେ ସେ ବିଷୟରେ ଲେଖିଥିଲେ । ସେ ଭାବୁଥିଲେ, ତାହା ଏକ ଅତି କଠିନ ପରୀକ୍ଷା । ପଛେ ସେ ସମ୍ମତି ଜଣାଇଥିଲେ ଓ ସେ ଦାୟିତ୍ୱ ନେଇଥିଲେ ।

## ୧୯୨୯ରେ ଅଳକାଶ୍ରମରେ କାର୍ଯ୍ୟ

୧୯୨୯ ଆସିଲା । ଗୋପବାବୁ, ରମା ଦେବୀ ଆଦି ଅଳକାଶ୍ରମରେ ରହି ଆଗ ପରି ନାନା ସାଙ୍ଗଠନିକ କାର୍ଯ୍ୟ କରୁଥାନ୍ତି । ଗାଁ ଗାଁ ବୁଲୁଥାନ୍ତି । ନାନା ସ୍ଥାନରେ କଂଗ୍ରେସ୍ ଅନୁଷ୍ଠାନ ଗଢ଼ା ହେଉଥାଏ ଓ କାର୍ଯ୍ୟ ହେଉଥାଏ । ଅଳକାଶ୍ରମ ପାଖେ ପ୍ରାୟ ପ୍ରତି ହାଟପାଳି ଦିନ 'ସୋମନାଥଙ୍କ ହାଟ'ରେ ସଭା ହେଉଥାଏ । ଦେଶର ଓ ସମାଜର ବିବିଧ ସମସ୍ୟା, ଗାନ୍ଧୀ ଭାବଧାରା, ଲୋକଙ୍କ କର୍ତ୍ତବ୍ୟ, ଏହିସବୁ ବିଷୟରେ ଆଲୋଚନା ହେଉଥାଏ । ସାମାଜିକ କ୍ଷେତ୍ରରେ ନ୍ୟାୟ କଣ, ଅନ୍ୟାୟ କଣ, ସାଧାରଣ ଲୋକଙ୍କର ଅଧିକାର କଣ, ଦାବୀ କଣ, ଏ ବିଷୟରେ ଧାରଣା ଦିଆଯାଉଥାଏ । ଲୋକଙ୍କ ଭୟ ବି ତୁଟୁଥାଏ, ଅନ୍ୟାୟ ଓ ଜୁଲୁମ୍ ବିରୁଦ୍ଧରେ ମୁହଁ ଖୋଲିବାକୁ ସାହସ ଆସୁଥାଏ, ମୁହଁ ବି ଖୋଲୁଥାନ୍ତି । ନାନା ଗାଁ ଲୋକେ ଆସନ୍ତି, ଆଶ୍ରମ ବୁଲି ଦେଖନ୍ତି, ଆଶ୍ରମବାସୀମାନେ କେମିତି ଚଳନ୍ତି, କଣ ଖାଆନ୍ତି, ତାଙ୍କର ଦୈନନ୍ଦିନର କାର୍ଯ୍ୟ କଣ,

ଏସବୁ ଦେଖନ୍ତି, ସେମାନଙ୍କ ସଙ୍ଗେ କଥାଭାଷା ହୋଇ ନାନା ନୂଆ ଧାରଣା ପାଆନ୍ତି, ନିଜ ନିଜ ଗାଁକୁ ଲେଉଟି ଯାଇ ଯାହା ଦେଖିଲେ, ଯାହା ବୁଝିଲେ, ସେ ବିଷୟରେ କୁହାକୋହି ହୁଅନ୍ତି । ଅଲକାଶ୍ରମର ପ୍ରଭାବ ଜଗତ୍‌ସିଂହପୁର ଅଞ୍ଚଳଯାକର ଲୋକଙ୍କ ଉପରେ ପଡ଼ୁଥାଏ । ୧୯୩୦ରେ ଯେଉଁ ଆନ୍ଦୋଳନ ଲାଗିଲା, ସହିଁରେ ଏ ଅଞ୍ଚଳର ସ୍ତ୍ରୀ ପୁରୁଷ ବହୁସଂଖ୍ୟାରେ ଭାଗ ନେଲେ, ଏ ସେପରିକ ସେଥିପାଇଁ ଆଗରୁବା ମଣିଷ ଥିଆରି କାମ ।

ସେତେବେଳେ ଗୋପବାବୁ ଅନେକ ଯୁବକଙ୍କ ସଙ୍ଗେ ସମ୍ପର୍କ ରଖୁଥାନ୍ତି ଓ ଦେଶକାମ କରିବାକୁ ସେମାନଙ୍କୁ ପ୍ରେରଣା ଦେଉଥାନ୍ତି । ସେମାନେ ଓଡ଼ିଶାର ନାନା ସ୍ଥାନର । ଗୋଟିଏ ଉଦାହରଣ, କୋରାପୁଟ୍ ଜିଲ୍ଲାର ଜୟପୁରର ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ. ପଛେ ସେ ହେଲେ ଓଡ଼ିଶାର ଜଣେ କଂଗ୍ରେସ୍ ନେତା, ଏମ୍. ଏଲ୍. ଏ. ଓ ମନ୍ତ୍ରୀ । ୧୯୨୯ରେ ସେ ଗୋଟିଏ ସରକାରୀ ଚାକିରି କରୁଥାନ୍ତି, ଗୋପବାବୁଙ୍କୁ ଚିଠି ଲେଖି ପରାମର୍ଶ ମାଗିଲେ, ଚାକିରି ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ କାର୍ଯ୍ୟ କରିବାକୁ ଗୋପବାବୁ ତାଙ୍କୁ ପରାମର୍ଶ ଦେଲେ ଓ ସେ ୧୯୨୯ରେ ଚାକିରି ଛାଡ଼ି କଂଗ୍ରେସ୍‌ରେ ମିଶିଲେ ।

## ୧୯୨୯—କଟକଠାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ୍ କମିଟି ଅଧିବେଶନ

୧୯୨୯ ଅପରାର୍ଦ୍ଧରେ କଟକରେ ଉତ୍କଳ ପ୍ରାଦେଶିକ କଂଗ୍ରେସ୍ କମିଟି ଅଧିବେଶନ ହେଲା । ସଭାପତି ହେଲେ ଶ୍ରୀ ହରେକୃଷ୍ଣ ମହତାବ୍ । ଗୋପବାବୁ ଓ ଶ୍ରୀ ରାଜକୃଷ୍ଣ ବୋଷ୍ ସାଧାରଣ ସମ୍ପାଦକ ଦାୟିତ୍ୱରେ ରହିଲେ ।

## ୧୯୨୯—ଲାହୋର କଂଗ୍ରେସ୍‌ର ପୂର୍ବକଥା

୧୯୨୯ରେ ଦେଶରେ ଆଶା ଓ ଉତ୍ତେଜନା ଖେଳୁଥାଏ ଯେ ଇଂରେଜ ସରକାର ଶୀଘ୍ର କଂଗ୍ରେସର ଦାବୀ ମାନିନେବେ ଓ ଭାରତକୁ ସ୍ୱାଧୀନତା ଦେବେ । କିନ୍ତୁ ସରକାରଙ୍କ ମତିଗତି ସ୍ପଷ୍ଟ ଜଣାପଡ଼ୁ ନ ଥାଏ । ଆଶା ବଢ଼ୁଥାଏ କଳ୍ପନା ଉପରେ । ଅକ୍ଟୋବର ୩୧ରେ ବିଲାତରୁ ଫେରି ବଡ଼ଲାଟ ଲର୍ଡ୍ ଇର୍‌ୱିନ୍ ଗୋଟିଏ ବିବୃତ୍ତି ଦେଲେ । ତାର ସାରମର୍ମ ଥିଲା ଯେ ୧୯୧୭ରେ ଇଂରେଜ୍ ସରକାରଙ୍କ ଘୋଷଣା ଭିତରେ ବି ଏହି ଉଦ୍ଦେଶ୍ୟ ନିହିତ ଥିଲା ଯେ ଭାରତର ଶାସନ ପଦ୍ଧତିର କ୍ରମଶଃ ଅଭିବୃଦ୍ଧିର ସ୍ୱାଭାବିକ ପରିଣତି ହିଁ ହେବ ଭାରତର ଡୋମିନିଅନ୍ ଷ୍ଟେଟସ୍ ପ୍ରାପ୍ତି । ବଡ଼ଲାଟଙ୍କ ଏ ବିବୃତ୍ତି ଭାରତବାସୀଙ୍କ ଆଶାକୁ ଆହୁରି ତେଜି ଦେଲା, କିନ୍ତୁ ଦେଖାଗଲା ଯେ ବିଲାତର ପାର୍ଲିଆମେଣ୍ଟ ସଭ୍ୟମାନଙ୍କଠାରୁ ତାର ସମର୍ଥନ ପରିବର୍ତ୍ତେ

ତା ପ୍ରତି ବିରୋଧ ହିଁ ଆସୁଛି । ଭାରତରେ ଉତ୍ତେଜନା ବଢ଼ିଲା, କଂଗ୍ରେସ୍ ଲୋକେ ଭାବୁଥାନ୍ତି, ତା'ହେଲେ ୧୯୨୮ କଲିକତା ଅଧିବେଶନ ପ୍ରସ୍ତାବ ଅନୁଯାୟୀ ପୁଣି ଅସହଯୋଗ ଆନ୍ଦୋଳନ ଲାଗିବାର ହିଁ ସମ୍ଭାବନା ସର୍ବ ! ଡିସେମ୍ବର ୨୩ରେ ମହାତ୍ମା ଗାନ୍ଧୀ, ମୋତିଲାଲ୍ ନେହେରୁ ଆଦି ନେତାମାନେ ବଡ଼ଲାଟଙ୍କ ସଙ୍ଗେ ଯାଇ ଦେଖା କଲେ, ଡୋମିନିଅନ୍ ଷ୍ଟେଟସ୍ ମିଳିବ ବୋଲି ନିର୍ଭର ପ୍ରତିଶ୍ରୁତି ମିଳୁ ବୋଲି ପଚାରିଲେ, ବଡ଼ଲାଟ ସେଭଳି ପ୍ରତିଶ୍ରୁତି ଦେଇପାରିବେ ନାହିଁ ବୋଲି କହିଲେ । ତାପରେ ମହାତ୍ମା ଗାନ୍ଧୀ ଘୋଷଣା କଲେ ଯେ ଏଣିକି ଲକ୍ଷ୍ୟ ରଖାଯିବ,—ପୂର୍ଣ୍ଣ ସ୍ୱରାଜ୍, ଆଉ ସାଇମନ୍ ନୁହେଁ କି ଡୋମିନିଅନ୍ ଷ୍ଟେଟସ୍ ନୁହେଁ ।

### ୧୯୨୯—ଲାହୋରରେ କଂଗ୍ରେସ୍ ଅଧିବେଶନ

ଏହି ପରିସ୍ଥିତିରେ ୧୯୨୯ ଡିସେମ୍ବର ୨୯ରେ ଲାହୋର୍‌ରେ କଂଗ୍ରେସ୍ ଅଧିବେଶନ ବସିଲା । ପ୍ରବଳ ଶୀତ ପଡ଼ୁଥାଏ । ଓଡ଼ିଶାରୁ ଯେଉଁ ଅଳ୍ପ କେତେଜଣ ସେଠି ଉପସ୍ଥିତ ଥିଲେ ତହିଁରୁ ଜଣେ ଥିଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ । ଅଧିବେଶନରେ ସଭାପତି ହେଲେ ଶ୍ରୀ ଜବାହରଲାଲ୍ ନେହେରୁ । ଗୋଟିଏ ପ୍ରସ୍ତାବ ଗୃହୀତ ହେଲା । ତାର ସାରମର୍ମ ଥିଲା '—

୧—ଇଂରେଜ୍ ସରକାରଙ୍କ ପ୍ରସ୍ତାବିତ ଗୋଲଟେବୁଲ୍ ବୈଠକରେ କଂଗ୍ରେସ୍ ଆଉ ଯୋଗ ଦେବ ନାହିଁ ।

୨—କଂଗ୍ରେସ୍ ସମ୍ବିଧାନର ପ୍ରଥମ ଧାରାରେ ଯେଉଁ 'ସ୍ୱରାଜ୍' ଶବ୍ଦ ଅଛି ତାର ଅର୍ଥ ହେବ 'ପୂର୍ଣ୍ଣ ସ୍ୱାଧୀନତା' ।

୩—ସର୍ବଦଳୀୟ ସମ୍ମିଳନୀ ଆନୁକୂଲ୍ୟରେ ଯେଉଁ 'ନେହେରୁ କମିଟି' ବସିଥିଲା (ଅର୍ଥାତ୍ ପଣ୍ଡିତ ମୋତିଲାଲ୍ ନେହେରୁ ସଭାପତି ଥାଇ ସବ୍ କମିଟି) ତାର ଶାସନ ପଦ୍ଧତି ସମ୍ପର୍କରେ ସୁପାରିସ୍ ଏଣିକି ଅକାମୀ ହେଲା (ଅର୍ଥାତ୍ ଡୋମିନିଅନ୍ ଷ୍ଟେଟସ୍ ଧାରଣାକୁ ପ୍ରତ୍ୟାଖ୍ୟାନ କରାଗଲା, ଏଣିକି ଦାବୀ ପୂର୍ଣ୍ଣସ୍ୱରାଜ୍, ସାଂପ୍ରଦାୟିକ ସମସ୍ୟା ସମାଧାନ ପାଇଁ ସେ କମିଟି ଯେଉଁ ବ୍ୟବସ୍ଥା ସୁପାରିସ୍ କରିଥିଲେ ସେ ସୁପାରିସ୍ ବ ନାମଞ୍ଜୁର ହେଲା ।)

୪—କୌଣସି ସରକାରୀ କମିଟି ସହିତ କୌଣସି ପ୍ରକାର ସମ୍ପର୍କ ରଖାଯିବ ନାହିଁ । କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥାପକ ସଭା ସହିତ କୌଣସି ସମ୍ପର୍କ ରଖାଯିବ ନାହିଁ, ତହିଁରେ ସଭ୍ୟ ହେବାକୁ କେହି ନିର୍ବାଚନ ଲଢ଼ିବେ

ନାହିଁ, କେହି ତହିଁରେ ସଭ୍ୟ ହୋଇ ଆଉ ରହିବେ ନାହିଁ, ଯେଉଁମାନେ ଅଛନ୍ତି ସେମାନେ ଇସ୍ତଫା ଦେବେ ।

୫—କଂଗ୍ରେସ୍‌ର ସାଙ୍ଗଠନିକ କାର୍ଯ୍ୟମାନ ଆହୁରି ଜୋର୍‌ରେ ଚାଲୁ କରାଯିବ ।

୬—ଅଖିଳ ଭାରତ କଂଗ୍ରେସ୍ କମିଟିକୁ ସୁପାରିସ୍ କରାଗଲା ଯେ ସେ ଯେତେବେଳେ ଉପଯୁକ୍ତ ମଣିବେ ସେତେବେଳେ ଖଜଣା ବନ୍ଦ, ଟିକସ ବନ୍ଦ, ଅସହଯୋଗ ଆନ୍ଦୋଳନ ଆଦି ଚଳାଇବେ ।

୧୯୨୮ କଲିକତା କଂଗ୍ରେସ୍ ପ୍ରସ୍ତାବରେ ଇଂରେଜ ସରକାରଙ୍କୁ ୧୯୨୯ ଡିସେମ୍ବର ୩୧ ଯାଏଁ ସମୟ ଦିଆଯାଇଥିଲା । ୧୯୨୯ ଡିସେମ୍ବର ୩୧ରେ ରାତ ୧୨ଟା ବେଳେ ଲାହୋରର ହାଡ଼ଭଙ୍ଗା ଶୀତରେ ରାବୀ ନଦୀ କୂଳଯାକେ ପଟୁଆରଟିଏ ଗଲା ଓ କଂଗ୍ରେସ୍ ସଭାପତି ଜବାହରଲାଲ୍ ନେହେରୁ ଭାରତୀୟ ସ୍ୱାଧୀନତାର ପ୍ରତୀକ ତିରଙ୍ଗା ପତାକା ସେଠି ଉତ୍ତୋଳନ କଲେ । ବିପୁଳ ଉନ୍ମାଦନା ଖେଳିଗଲା ।

୧୯୩୦ ଜାନୁଆରି ୨ ତାରିଖରେ ନୂଆ କଂଗ୍ରେସ କାର୍ଯ୍ୟକାରୀ କମିଟି ବସିଲା । ଶ୍ରୀ ସୁଭାଷ ଚନ୍ଦ୍ର ବୋଷ୍ ଓ ଅନ୍ୟାନ୍ୟ ବାମପନ୍ଥୀ ନେତାମାନଙ୍କୁ ତହିଁରୁ ବହିର୍ଭୂତ କରାଯାଇଥାଏ । ପ୍ରସ୍ତାବ ଧାର୍ଯ୍ୟ ହେଲା ଯେ ଜାନୁଆରି ୨୬ ତାରିଖ ଭାରତ ସାରା 'ପୂର୍ଣ୍ଣ ସ୍ୱାଧୀନତା ଦିବସ' ବୋଲି ଦିବସ ପାଳିତ ହେବ । ସେଦିନ ଭାରତସାରା ପ୍ରତ୍ୟେକ ସ୍ଥାନରେ ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତି ପାଇଁ ଗୋଟିଏ ଘୋଷଣାପତ୍ର ପାଠ କରାଯିବ ଓ ତହିଁରେ ସମସ୍ତିଙ୍କର ସ୍ୱୀକୃତି ନିଆଯିବ, କି ଗ୍ରାମରେ କି ସହରରେ ସମସ୍ତେ ସେ ଘୋଷଣାପାଠ ଶୁଣି ହାତଟେକି ସମ୍ମତି ଜଣାଇବେ । ଘୋଷଣାପତ୍ରଟି ମହାତ୍ମା ଗାନ୍ଧୀ ରଚନା କରିଥାନ୍ତି । ତହିଁରେ ଥାଏ ଯେ ସ୍ୱାଧୀନତା ପ୍ରାପ୍ତି ପାଇଁ ଆନ୍ଦୋଳନ ଅହିଂସ ଉପାୟରେ ହେବ, ଅସହଯୋଗ, ଆଇନ ଅମାନ୍ୟ, ଟିକସ ଓ ଖଜଣା ବନ୍ଦ ଆଦି ଉପାୟ ଅବଲମ୍ବନ କରାଯିବ, ପୂର୍ଣ୍ଣସ୍ୱରାଜ ପ୍ରାପ୍ତି ପାଇଁ କଂଗ୍ରେସ୍ ଯେତେବେଳେ ଯାହା ନିର୍ଦ୍ଦେଶ ଦେଉଥିବ ତାକୁ କାର୍ଯ୍ୟକାରୀ କରିବାକୁ ସମସ୍ତେ ଶପଥବଦ୍ଧ ରହିବେ ।

# ନଅ

## '୧୯୩୦' ଆନ୍ଦୋଳନ

୧୯୩୦ ଜାନୁଆରି ୨୬ ଅସିଲା । ଦେଶଯାକ ସ୍ୱାଧୀନତା ଆନ୍ଦୋଳନର ପ୍ରବଳ ଉତ୍ତେଜନା । କଣ ହେବ ? ଗୋପବାବୁ ଅଲକାଶ୍ରମରେ ନ ଥାନ୍ତି, ବିଶାଳତର ଓ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟସୂଚୀରେ ଭାଗ ନେବାପାଇଁ କଟକ ଚାଲି ଅସିଥାନ୍ତି । ସେଦିନ କଟକରେ ୧୪୪ ଧାରା ଜାରି ହୋଇଥାଏ । ସକାଳେ କାଠଗଡ଼ା ସାହିରେ କଂଗ୍ରେସ୍ ନେତା ଶ୍ରୀ ହରେକୃଷ୍ଣ ମହତାବଙ୍କ ପ୍ରେସ୍‌ରେ ସ୍ୱାଧୀନତା ପତାକା ଉତ୍ତୋଳନ ହେଲା । ଉପର ଓଳି କଟକ ବାଖରାବାଦରେ ଗୋପବାବୁଙ୍କ ଘର ହତାରେ ସଭା ହେଲା । ମଣିଷ ଆଟପଟାଳି, ଜହାପିମ୍ପୁଡ଼ି ପରି ମଣିଷ, ହତା, ସନ୍‌ସାଇନ୍ ଫଲ୍‌ଡସ୍ ପାଚିରି, ନଈକୂଳ, ସବୁଠି ଗହଳି ପୂରିଥାଏ । ଗୋପବାବୁ ସ୍ୱାଧୀନତା-ସଙ୍କଳ୍ପ ପଢ଼ିଲେ । ସେ ଗୋଟିଏ ଗୋଟିଏ ବାକ୍ୟ ପଢ଼ନ୍ତି, ଜନତା ସେହି ବାକ୍ୟକୁ ସମବେତ ସ୍ୱରରେ ଉଚ୍ଚାରଣ କରନ୍ତି । ବିପୁଳ ଜୟଧ୍ୱନି ଭିତରେ ସଭା ଭାଙ୍ଗିଲା ।

ସେଦିନ ଅଲକାଶ୍ରମରେ ବି ସଭା ହେଲା । ଆଶ୍ରମ ଚାରିପାଖେ ଅନେକ ପୁଲିସ୍, ଚୌକିଆ, ସବ୍‌ଇନସ୍‌ପେକ୍‌ଟର ଜଗିଥାନ୍ତି, ସବ୍‌ଡିଭିଜନାଲ୍ ମ୍ୟାଜିଷ୍ଟ୍ରେଟ୍ ଉପସ୍ଥିତ ଥାନ୍ତି । ସଭାରେ ରାମବାବୁଙ୍କୁ ମିଶାଇ ଥାନ୍ତି ମୋଟେ ୨୦।୨୫ ଜଣ ଲୋକ, ସେମାନେ ଆଶ୍ରମର ଅଧିବାସୀ ଓ ଆଖପାଖ ଗାଁରୁ କେତେଜଣ କଂଗ୍ରେସ୍ କର୍ମୀ । ରାମବାବୁ ପତାକା ଉତ୍ତୋଳନ କଲେ ।

୧୯୨୧ ଅସହଯୋଗ ଆନ୍ଦୋଳନ ବେଳେ ସେ କଂଗ୍ରେସ ସଂଗଠନ ଓ ପ୍ରଚାର କାର୍ଯ୍ୟରେ ଖୁବ୍ ଖଟିଥିଲେ, କିନ୍ତୁ ସେତେବେଳେ ସେ ଜେଲ୍ ଯିବାକୁ ନିଜ ମନକୁ ପ୍ରସ୍ତୁତ କରିପାରି ନ ଥିଲେ । ନିଜେ ଲେଖିଛନ୍ତି, ସେ ପ୍ରସ୍ତୁତି ଆରମ୍ଭ ହୋଇଥାଏ,

ସମ୍ପୂର୍ଣ୍ଣ ହୋଇଥାଏ, କଦା ହୋଇଥାଏ, ସେ ହୁ' କର ଉତ୍ତେଜନା ନୁହେଁ, ସମ୍ପୂର୍ଣ୍ଣ ନବଜନ୍ମ । ଅନ୍ୟ କୌଣସି ପ୍ରକାର ପ୍ରସ୍ତୁତରେ ତାଙ୍କର ବିଶ୍ୱାସ ନ ଥିଲା । ୧୯୩୦ ବେଳକୁ ସେ ସେହି ସଦାପ୍ରସ୍ତୁତ ମଣିଷ ।

୧୯୩୦ର ହାଓ୍ୱା ଗୁରୁଆଡ଼େ ବହୁଥାଏ । କଟକରେ କାଠଯୋଡ଼ି ବାଲିରେ ଥରକୁଥର ବିରାଟ ବିରାଟ ସଭା ହେଉଥାଏ । ଗୋପବାବୁ ଓ ଅନ୍ୟ ନେତାମାନେ ଭାଷଣ ଦେଉଥାନ୍ତି । "ଭାରତମାତା କୀ ଜୟ !" "ମହାତ୍ମା ଗାନ୍ଧୀ କୀ ଜୟ !" ଆଦି ଧ୍ୱନିରେ ଚହଲି ପଡ଼ୁଥାଏ । କେତେ ସ୍ୱଦେଶୀ ସଂକୀର୍ତ୍ତନ ଶୁଭୁଥାଏ । କେତେ ଚଟି ଚଟି ଗୀତ ବହି ବିକ୍ରି ହେଉଥାଏ । ସମ୍ବାଦପତ୍ରମାନେ ଏ ସମ୍ପର୍କରେ ମୁଖର । ଚାରିଆଡ଼େ ଉତ୍ତେଜନା, ଆଲୋଚନା, ବିଚାର, ମନେ ମନେ ପ୍ରସ୍ତୁତ, ଦେଶରେ ଅଭୂତପୂର୍ବ ଜାଗରଣ ।

ତାପରେ ମହାତ୍ମାଜୀ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ, ମାର୍ଚ୍ଚ ୧୨ରେ ଆରମ୍ଭ ହେଲା ତାଙ୍କର ପ୍ରସିଦ୍ଧ ପଦଯାତ୍ରା, ତାଙ୍କ ଆଶ୍ରମର ୭୮ ଜଣଙ୍କ ସଙ୍ଗେ ସେ ଚାଲିଥାନ୍ତି, ନିଷ୍ପତ୍ତି କରିଥାନ୍ତି ଅପ୍ରେଲ୍ ୬ ତାରିଖରେ ଗୁଜରାଟର ଡାଣ୍ଡିରେ ଲୁଣ ଆଇନ୍ ଭାଙ୍ଗି ଲୁଣ ମାରିବେ । ଓଡ଼ିଶାରେ ବି ଲବଣ ସତ୍ୟାଗ୍ରହ ହେବ ବୋଲି ସ୍ଥିର ହେଲା । ମାର୍ଚ୍ଚ ୧୨ରେ କଟକର୍ଠାରେ ନଈବାଲିରେ ବଡ଼ ସଭା ହେଲା । ମାର୍ଚ୍ଚ '୫ରେ ବାଲେଶ୍ୱରରେ ଉ: ପ୍ରା: କଂଗ୍ରେ୍ କମିଟିର ବିଶେଷ ଅଧିବେଶନ ବସିଲା, ସ୍ଥିର ହେଲା ବାଲେଶ୍ୱର ଯେ ଜିଲ୍ଲାର ଇଞ୍ଚୁଡ଼ିରେ ଲୁଣମରା ହେବ । ଶ୍ରୀ ମହତାବ୍ ଆଗରୁ ଆୟୋଜନ କରିବେ, କଟକରୁ ଗୋପବାବୁଙ୍କ ନେତୃତ୍ୱରେ ଦଳେ ସତ୍ୟାଗ୍ରହୀ ଯାଇ ଆଗ ଲୁଣ ମାରିବେ । କଟକରୁ ବାଲେଶ୍ୱରର ଇଞ୍ଚୁଡ଼ି ଚଟାଣ ଯାକେ ପଦଯାତ୍ରା ହେବ, ଗୋପବାବୁ ସେନାପତି ହେବେ, ଆଚାର୍ଯ୍ୟ ହରିହର ହେବେ ଉପ-ସେନାପତି । ଦଳରେ କିଏ କିଏ ଯିବେ ତା ବି ଠିକ୍ ହେଲା । ଅନ୍ୟମାନଙ୍କ ଛଡ଼ା ସେଥିରେ ଥିଲେ ପୁରୀର ରଘୁନାଥ ମିଶ୍ର, କଟକର ଗୌରାଙ୍ଗ ଚରଣ ଦାସ, ରଘୁନାଥ ଦାସ, ଗୁଣନିଧି ମହାନ୍ତି ଓ ଚୌଦ୍ୱାରର ବିନୋଦ ଚୌଧୁରୀ, ପୁଷ୍ଟି ମହାଶୟ, ବାଲେଶ୍ୱରର ଗୋକୁଳାନନ୍ଦ ମହାନ୍ତି, ବିଶ୍ୱନାଥ ହୋତା, କଣେଶ୍ୱ ମୋହନ ମହାପାତ୍ର, ଗୋଲକ ବିହାରୀ ଦେ, ପ୍ରିୟନାଥ ସରକାର ଓ ସୁରେନ୍ଦ୍ରନାଥ ଦାସ, କାଳୀପଦ ଦାସ, ସମ୍ବଲପୁରର ଦୁର୍ଗାପ୍ରସାଦ ଗୁରୁ, ରାମ ପ୍ରସାଦ ଗୁରୁ ଆଦି । ମାର୍ଚ୍ଚ ୨୩ରେ କଟକରେ କଟକ ଜିଲ୍ଲା କଂଗ୍ରେସ କମିଟି ବୈଠକ ବସିଲା । ଜିଲ୍ଲାଯାକ ସତ୍ୟାଗ୍ରହ ହେବ, ତେଣୁ ନାନା-ପ୍ରକାର ବନ୍ଦୋବସ୍ତ କପର ହେବ ସେ ବିଷୟରେ ନିଷ୍ପତ୍ତି ହେଲା । କଟକରେ କାଠଯୋଡ଼ି ବାଲିରେ ପ୍ରାୟ ତିନି ହଜାର ଲୋକଙ୍କର ବଡ଼ ସଭାଟିଏ ହୋଇ ଏ ବିଷୟରେ ନିଷ୍ପତ୍ତି ନିଆଗଲା, ଅପ୍ରେଲ୍ ୬ ତାରିଖ ଦିନ ଯାତ୍ରା ଆରମ୍ଭ ହେବ ବୋଲି ସ୍ଥିର ହେଲା ।

କଟକରେ ଗୋପବାବୁଙ୍କ ଘରେ ସତ୍ୟାଗ୍ରହୀଙ୍କ ଶିବିର ହୋଇଥାଏ, ପରେ ପୁଣି ସ୍ୱରାଜ୍ୟାଶ୍ରମକୁ ଉଠିଗଲା । ପଛେ ପୁଲିସ୍ ସ୍ୱରାଜ୍ୟାଶ୍ରମ ଦଖଲ କରିବାରୁ କଂଗ୍ରେସ୍ ଅଫିସ୍ କଟକର ଜୈନ ମନ୍ଦିରକୁ ଉଠି ଯାଇଥିଲା, ପୁଣି ସ୍ୱରାଜ୍ୟାଶ୍ରମକୁ ଲେଉଟିଥିଲା ୧୯୩୨ ଆରମ୍ଭରେ ।

ଅପ୍ରେଲ୍ ୫ ତାରିଖ ଦିନ ପୁଣି କାଠଯୋଡ଼ି ବାଲିରେ ବିରାଟ ସଭା । ସତ୍ୟାଗ୍ରହୀମାନଙ୍କୁ ବିଦାୟ ସମ୍ବର୍ଦ୍ଧନା ଦିଆଗଲା । ଚାରିଆଡ଼େ ପ୍ରବଳ ଉତ୍ତେଜନା, —"ଏମାନେ ଦେଶ ପାଇଁ ଜୀବନକୁ ପାଣି ଛଡ଼ାଇ ଦେଇ ଇଂରେଜ୍ ସରକାର ସଙ୍ଗେ ମୁହାଁମୁହିଁ ହେବାକୁ ଯାଉଛନ୍ତି, ଆଇନ୍ ଭାଙ୍ଗିବାକୁ ଯାଉଛନ୍ତି । କଣ ହେବକି ! ଭଗବାନ ସହାୟ ହୁଅନ୍ତୁ । ମହାତ୍ମା ଜିତନ୍ତୁ । ଦେଶ ସ୍ୱାଧୀନ ହେଉ ।" ସବୁଠି ଏଇ ଚିନ୍ତା । ସେଦିନ ସଭାରେ ୧୪୪ ଆଇନ୍ ଭାଙ୍ଗି ଗୋପବାବୁ ବକ୍ତୃତା ଦେଇଥିଲେ । ପରେ ସେଥିପାଇଁ ତାଙ୍କୁ ଜେଲ୍ ହେଲା ।

ଅପ୍ରେଲ୍ ୬ ତାରିଖ ଭୋର୍‌ରୁ ପ୍ରାର୍ଥନା ସାରି ଗୋପବାବୁଙ୍କ ନେତୃତ୍ୱରେ ସତ୍ୟାଗ୍ରହୀ ଦଳ ତାଙ୍କ କଟକ ଘରୁ ଚାଲିଲେ । ପତାକା ଉଡ଼ୁଥାଏ । ପଛରେ ଶହ ଶହ ଲୋକ ଚାଲିଥାନ୍ତି, ଜୟଧ୍ୱନି ଶବ୍ଦ ଉହାଇ ଉହାଇ ଉଠୁଥାଏ । ଶଙ୍ଖ ବାଜୁଥାଏ, ହୁଳହୁଳି ପଡ଼ୁଥାଏ, ଫୁଲ ଚନ୍ଦନ ପଡ଼ୁଥାଏ । ସେମାନେ ଗଣେଶଘାଟ, ଚୌଧୁରୀ ବଜାର, ବକ୍ସି ବଜାର ଦେଇ ଯୋବ୍ରା ଘାଟରେ ଲଞ୍ଚରେ ମହାନଦୀ ପାରି ହେଲେ, ଜଗତ୍‌ପୁରଠାରୁ କେନ୍ଦ୍ରାପଡ଼ା ଆଡ଼କୁ ଚାଲିଲେ । ତାଙ୍କ ସଙ୍ଗେ ଭୂନିତାନି ହୋଇ ପୁଲିସ୍‌ମାନେ ଚାଲିଥାନ୍ତି, ଅଟକାଉ ନ ଥାନ୍ତି । ଏହିପରି ଦୁଇଦିନ ଗଲା । ବାଟରେ ଭିଡ଼ ବଢ଼ୁଥାଏ, ଗାଁମାନଙ୍କରୁ ଲୋକ ଉଠି ଆସୁଥାନ୍ତି, ହୁଳହୁଳି ପଡ଼ୁଥାଏ, ଶଙ୍ଖ ବାଜୁଥାଏ, ଜୟଧ୍ୱନି ଉଚ୍ଛୁଳୁଥାଏ ।

## ୮-୪-୧୯୩୦—ପ୍ରଥମଥର ଗିରଫ

୧୯୩୦ ଅପ୍ରେଲ୍ ୮ ତାରିଖ ଦିନ, ଗୋପବାବୁଙ୍କୁ ଗିରଫ କରିବାକୁ ଦଳବଳ ଘେନି କଟକରୁ ଜଣେ ପୁଲିସ୍ କର୍ମଚାରୀ ଗଲେ । ଜଗତ୍‌ପୁରରୁ ବସ୍‌ଟିଏ ନେଇ ସେ କେନ୍ଦ୍ରାପଡ଼ା ଆଡ଼କୁ ଚାଲିଲେ । ବାଟରେ ଖବର ପାଇଲେ, ସତ୍ୟାଗ୍ରହୀମାନେ ଚାନ୍ଦୋଲ ପାଖେ କାକ୍‌ଟିଆ ବୋଲି ଗୋଟିଏ ଗାଁରେ ବିଶ୍ରାମ କରୁଛନ୍ତି, ଅପରାହ୍ଣରେ ଚାନ୍ଦୋଲ ହାଟରେ ବଡ଼ ସଭା ହେବ । କର୍ମଚାରୀଟି ସଡ଼କରେ ଲୋକବଳ ଓ ବସ୍ ଛାଡ଼ିଦେଇ ଏକୁଟିଆ ଚାଲିବାଟେ ସେ ଗାଁକୁ ଗଲେ । ପ୍ରାୟ ପାଞ୍ଚଟା ବେଳ । ସତ୍ୟାଗ୍ରହୀମାନେ ଜଣକ ଘର ଆଗରେ ଖୋଲା ଅଗଣାରେ ଗୋଲ ହୋଇ ବସି ତାକୁଡ଼ିରେ ସୂତା କାଟୁଥାନ୍ତି, ପାଖରେ କେତେଜଣ ଗାଁବାଲା ଥାନ୍ତି । ଗୋପବାବୁ ତାଙ୍କୁ ଦେଖି ଦେଖି ପଚାରିଲେ, "କଣ ? ନିମନ୍ତ୍ରଣ ?"

“ଆଜ୍ଞା ହଁ ।”

ଗୋପବାବୁ ସଙ୍ଗେ ସଙ୍ଗେ ଉଠି ପଡ଼ିଲେ, କର୍ମଚାରୀଙ୍କ ସଙ୍ଗେ ଚାଲିଲେ । କେତେ ଲୋକ ପାଟିତୁଣ୍ଡ କଲେ । କର୍ମଚାରୀ ଅଟକିଲେ । ଗୋପବାବୁ ଡାକିଲେ, କହିଲେ “ଆସନ୍ତୁ !” ସେ ଅଟକିଲେ ନାହିଁ । ପ୍ରାୟ ପନ୍ଦର ମିନିଟ୍ ପରେ ସେମାନେ ବାଲିଟି ଟପିଯାଇ ସଡ଼କକୁ ଆସିଲେ । ସେତେବେଳେ ପ୍ରାୟ ଶହେ ଲୋକ ଝାଂଖୋଲ କରତାଳ ଧରି ସଂକୀର୍ତ୍ତନ କରି ଧ୍ୱନିମାନ ଦେଇ ଆସୁଥାନ୍ତି । କର୍ମଚାରୀ କହିଲେ, “ଏଇ ବସ୍‌ରେ ଯିବା ।” ଗୋପବାବୁ ଅଟକିଲେ ନାହିଁ, ବସ୍‌କୁ ଗଲେ । ପଛୁଆର ଚାହିଁ ଚାହିଁ ଫେରିଗଲେ । ସେମାନେ ଜଗତ୍‌ପୁରରେ ପହଞ୍ଚିଲେ । ବୋଟ୍‌ରେ ନଈପାରି ହେଲେ, ଯୋବ୍ରାରେ ପହଞ୍ଚିଲେ, ସେଠି ରେଭେନ୍‌ସା କଲେଜ୍, ମେଡ଼ିକେଲ୍ ସ୍କୁଲ୍, କେତେ ହାଇସ୍କୁଲ୍‌ର ପ୍ରାୟ ୫୦୦ ଛାତ୍ର ଠିଆ ହୋଇଥାନ୍ତି, ଧ୍ୱନି ଦେଉଥାନ୍ତି । ଭିଡ଼ ଆହୁରି ବଢ଼ିଗଲା । ଗୋପବାବୁଙ୍କୁ ନେବାକୁ ପୁଲିସ୍ ଖୋଲା କାର୍‌ଟିଏ ଆଣିଥାନ୍ତି, ସେ ଅପେକ୍ଷା ନ କରି କାର୍‌ରେ ବସିଲେ, ପିଲାଏ ବେଢ଼ିଗଲେ, ବାଟ ଦେଲେ ନାହିଁ । ଗୋପବାବୁ ଠିଆ ହୋଇପଡ଼ି ପିଲାଙ୍କୁ ବୁଝାଇ କହିଲେ, “ଆମେ ଜାଣିଶୁଣି ଜେଲ୍ ଯାଉଛୁ, ଯା ଦ୍ୱାରା ବ୍ରିଟିଶ୍ ସରକାର ହାରିବ । ଆଇନ୍ ଭାଙ୍ଗିଲେ ପୁଲିସ୍ ଗିରଫ୍ କରିବେ, ସେ ତାଙ୍କ କର୍ତ୍ତବ୍ୟ, ସେପରି କରି ସେମାନେ ପରୋକ୍ଷରେ ଆମ ଆନ୍ଦୋଳନକୁ ସାହାଯ୍ୟ କରୁଛନ୍ତି । ସେଥିରେ ବାଧା ଦେବା ଅନୁଚିତ ଓ ଅନାବଶ୍ୟକ । ଯଦି ପ୍ରକୃତରେ ତୁମଠି ଦେଶପ୍ରେମ ଅଛି ତେବେ କଂଗ୍ରେସ୍ ନୀତି ଅନୁସରଣ କରି କିଛି କାର୍ଯ୍ୟ କର, ମୋ ଗିରଫଦାରୀକୁ ବାଧା ଦେଇ କିଛି ଲାଭ ନାହିଁ ।” ପିଲାଏ ବାଟ ଛାଡ଼ିଦେଲେ, କାର୍ ଚାଲିଗଲା ।

ଆଗ ତାଙ୍କୁ ଟାଉନ୍ ଥାନାକୁ ନିଆଗଲା, ସେତେବେଳକୁ ସନ୍ଧ୍ୟା, ରାତି ଆଠଟାରେ କୋର୍ଟକୁ ନିଆଗଲା, ଯେ ମ୍ୟାଜିଷ୍ଟ୍ରେଟ୍ ଥିଲେ ସେ ପୂର୍ବେ ତାଙ୍କର ସହକର୍ମୀ ଥିଲେ । କାଠଗଡ଼ାକୁ ନ ଯାଇ ନିଜ ପାଖକୁ ବେଦୀ ଉପରକୁ ଆସିବାକୁ ସେ ତାଙ୍କୁ ଠାରିଲେ ଓ କହିଲେ “ଆସନ୍ତୁ” ! ଗୋପବାବୁ ନିର୍ବିକାର ଭାବରେ ଆସାମୀର କାଠଗଡ଼ା ଭିତରେ ପଶି ଠିଆ ହେଲେ । ରାତି । ସରକାରୀ ଲୋକଙ୍କ ଛଡ଼ା କଚେରୀରେ କେହି ନଥାନ୍ତି । ମ୍ୟାଜିଷ୍ଟ୍ରେଟ୍ ପଚାରିଲେ, “ଆପଣଙ୍କର କିଛି କହିବାର ଅଛି ?” ସେ ପଦେ ମାତ୍ର ଉତ୍ତର ଦେଲେ, —“ନାହିଁ ।” ଜେଲ୍ ହାଜତକୁ ନିଆଗଲେ । ୯ ତାରିଖ ଦିନ ବିଚାର ହେଲା । ରାୟ ଶୁଣାଇ ଦିଆଗଲା, ସେ ୫ ତାରିଖ ଦିନ ୧୪୪ ଧାରା ଭାଙ୍ଗି କାଠଯୋଡ଼ି ବାଲିରେ ବକ୍ତୃତା ଦେଇଥିଲେ, ତେଣୁ ସାତଦିନ ଜେଲ୍ ହେଲା, ତା ଉପରେ ଟ ୫୦-୦୦ ଜୋରିମାନା, ନ ଦେଲେ ଆଉ ସାତଦିନ ଜେଲ୍ । ଅବିଚଳିତ ହୋଇ ସେ ରାୟ ଶୁଣିଲେ । ଜୋରିମାନା ଦେବାକୁ ମନା କଲେ ।

ଗୃହ ୧୪ଟାରେ କଟକ ଜେଲ୍‌କୁ ନିଆଗଲେ । ସେଠି ୬ ଦିନରୁ ବେଶି ଜେଲ୍ ଭୋଗିଲେ । ତାଛଡ଼ା ଅଲକାଶ୍ରମରେ ତାଙ୍କର ଗୋଟିଏ ଗାଈ ଥିଲା, କୋନ୍ମୋନା ବାବତରେ ନିଲାମ ହେଲା ।

## ପ୍ରଥମ ଜେଲ୍

ଅପ୍ରେଲ୍ ୯, ୧୯୩୦ । ତାଙ୍କ ଜୀବନରେ ତାଙ୍କର ସେହି ଥିଲା କଟକରେ ପ୍ରଥମ ଥର ଗିରଫ, ପ୍ରଥମ ଜେଲ୍ ଦଣ୍ଡ । ଗୃହାଶ୍ରମରେ ଥିଲାବେଳେ ନିଜେ ସେ ମକଦ୍ଦମା ବିଗୁର କରୁଥିଲେ । ଜେଲ୍ ଯିବା ସାମାଜିକ ମୂଲ୍ୟବୋଧରେ ଗୋଟିଏ ମର୍ଯ୍ୟାଦା-ହାନିକର ଦୁର୍ଘଟଣା ବୋଲି ଲୋକେ ଆଗେ ଭାବୁଥିଲେ, କିନ୍ତୁ ଅସହଯୋଗ ଆନ୍ଦୋଳନ ବେଳଠୁଁ ସେହି ହେଲା ଦେଶପ୍ରେମୀ ପକ୍ଷରେ ଖୁବ୍ ମର୍ଯ୍ୟାଦାବନ୍ତ ପରିଣତ । ସେ ଖୁବ୍ ପ୍ରଫୁଲ୍ଲ ଥିଲେ, ଉଲ୍ଲସିତ ଥିଲେ, ଯେତେଥର ଜେଲ୍ ଯାଇଛନ୍ତି ସବୁଥର ତାଙ୍କ ମନର ଅବସ୍ଥା ସେହିପରି ଥାଏ ।

ତାଙ୍କ ଗିରଫରେ ପ୍ରତିବାଦ କରି ଅପ୍ରେଲ ୧୦, ୧୯୩୦ରେ କଟକରେ ପୂର୍ଣ୍ଣ ହରତାଳ ହେଲା । ଯେଉଁମାନେ ତାଙ୍କ ସଙ୍ଗେ ମିଶି ଲୁଣ ମାରିବାକୁ ଚାଲି ଚାଲି ଯାଉଥିଲେ ସେ ଗୃନ୍ଦୋଲ ପାଖ କାକଡ଼ିଆରେ ଗିରଫ ହେବାପରେ ସେମାନେ ଚାଲି ଚାଲି ଭଦ୍ରଖ ଯାକେ ଗଲେ । ଇତ୍ୟବସରରେ ନିଃ ଭାଃ କଂଗ୍ରେସ୍ କମିଟି ଧାର୍ଯ୍ୟ କଲେ ଯେ ଅପ୍ରେଲ୍ ୧୩ ଭିତରେ ଦେଶରେ ସର୍ବତ୍ର ଲୁଣ ମରା ହେବ, ତେଣୁ ଗୋପବାବୁଙ୍କ ସହଯାତ୍ରୀମାନେ ବାଲେଶ୍ୱରର ଇଞ୍ଚୁଡ଼ି ଚଟାଣରେ ୧୩ ତାରିଖରେ ଲୁଣ ମାରିବେ ବୋଲି ଭଦ୍ରଖରୁ ପଦଯାତ୍ରା ବନ୍ଦ କରି ରେଲ୍ ଧରିଲେ । ଆଉ ଗୋଟିଏ ଦଳ ଯାଜପୁରରୁ ରେଲ ଚଢ଼ି ଇଞ୍ଚୁଡ଼ିରେ ଲୁଣ ମାରିବାକୁ ଗୃଲଲେ । ଅନ୍ୟାନ୍ୟ ସତ୍ୟାଗ୍ରହୀ ବି ସେଥିପାଇଁ ଯାଉଥାନ୍ତି, କଟକରୁ ରମା ଦେବୀ, ମାଳତୀ ଦେବୀ ଓ ଅନ୍ୟାନ୍ୟ ନାରୀକର୍ମୀ ବି ରେଲରେ ଯାଇ ପହଞ୍ଚିଲେ ।

ବାଲେଶ୍ୱରରେ 'ପର୍ମିଟ୍ କୋଠି' ବୋଲି ଗୋଟିଏ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଅମଳର କୋଠାଘରେ କଂଗ୍ରେସ୍ କେନ୍ଦ୍ର ଅଫିସ୍ ଖୋଲି ହୋଇଥାଏ । ସେଠି ଶ୍ରୀ ହରେକୃଷ୍ଣ ମହତାବ୍ ଏ ଆଇନ୍ ଅମାନ୍ୟ କାର୍ଯ୍ୟସୂଚୀ ଆୟୋଜନ କରୁଥାନ୍ତି, ସଞ୍ଚାଳନା କରୁଥାନ୍ତି, ବହୁତ ସତ୍ୟାଗ୍ରହୀ ଜୁଟିଥାନ୍ତି, ବହୁତ ଉତ୍ତେଜନା ଖେଳିଥାଏ । କଟକରେ କେଉଁ ଗଣକବି ପ୍ରଣୀତ ଚଟି ଗୀତ ବହି ବିକ୍ରି ହେଉଥାଏ ଓ ପିଲାଏ ଗାଉଥାନ୍ତି—

> "ମହାତ୍ମା ଆଦେଶ ପାଳ ହେ—ଲୁଣ ମାରିବାକୁ ଚାଲ ।
> ପୁଲିସିମାନେତ ଚାଲିକି ଗଲେଣି ମହତ ପକାଇବାକୁ"—ଇତ୍ୟାଦି ।

ଲୁଣ ମରା ହେଲା । ପୁଲିସ ତରଫରୁ ବଳ ପ୍ରୟୋଗ ହେଲା । ହୁଲୁସ୍ଥୁଲ୍ ପଡ଼ିଲା ।

ଗୋପବାବୁ ଜେଲ୍‌ରୁ ଫେରିଲେ ପରେ ଲୁଣସେବା କାମ ଚଳାଇବା ପାଇଁ ଓ ଲୁଣ ମାରିବା ପାଇଁ ବାଲେଶ୍ୱର ଗଲେ । ସେଥିରେ ହଜାରିବାଗ୍ ଜେଲ୍ ଜୀବନ ବିଷୟରେ ତାଙ୍କର ବ୍ୟକ୍ତିଗତ ଡାଇରି ଖାତା ମିଳିଛି । ଗୋଟିକରେ ସେ ଲେଖିଛନ୍ତି—

"୨୬।୪।୩୦—ଦ୍ୱିପହରରେ ବାଲେଶ୍ୱର ପରମିଟ୍ କୋଠିରେ ମହତାବ ଓ ମୁଁ ଗିରଫଦାର ହୋଇଥିଲୁଁ । ରାତି ୯ଟା ସମୟରେ ଜେଲ୍‌କୁ ନିଆଯାଇଥିଲୁଁ ।

× × ×

୩୦।୪।୩୦—ମୋର ରାୟ ଦିଆଗଲା । କାଲିଆଡ଼କୁ ସିଧା ହଜାରିବାଗ୍ ଯିବାର ସମ୍ବାଦ ମିଳିଲା । ଉପେନ୍ଦ୍ରକୁ ଟୁକୁକୁ (ନବବାବୁଙ୍କୁ) ତାର କରିବା ପାଇଁ କହିଲି ।

୧।୫।୩୦—ଟୁକୁ ସହିତ ଦେଖା । ସନ୍ଧ୍ୟାକୁ ବାଲେଶ୍ୱର ଛାଡ଼ିଲୁ । ଷ୍ଟେସନରେ ବିପୁଳ ଜନସଙ୍ଘ । ଗୁରୁବାବୁ ପ୍ରଭୃତି ସମସ୍ତଙ୍କ ସଙ୍ଗେ ସାକ୍ଷାତ୍ । ଲିଙ୍ଗରାଜ ମଧ୍ୟ ଆସି ଯାଇଥିଲେ । ବାଟଯାକ ପ୍ରତି ରେଲ ଷ୍ଟେସନରେ ଜନସମାଗମ । ଖଡ଼ଗପୁରଠାରେ ରେଲ ବଦଳାଇ ଆଦ୍ରାଭିମୁଖେ ଗମନ ।

× × ×

୨।୫।୩୦—× × × ରାତି ୮ଟା ବେଳେ ହଜାରିବାଗ୍ ପହଞ୍ଚିଲୁ ।"

ତାଙ୍କୁ ୧୮ ମାସ ଜେଲ୍ ହୋଇଥିଲା ଓ ସେ ହଜାରିବାଗ୍ ଜେଲ୍‌ରେ ଥିଲେ ବୋଲି ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଲିପା ଅଛି । ସେ ୧୯୩୧ ନଭେମ୍ବର ମାସରେ ଛାଡ଼ ପାଇଥାନ୍ତେ, କିନ୍ତୁ ଗାନ୍ଧୀ-ଇରଉଇନ ଚୁକ୍ତି ହେବାରୁ ୧୯୩୧ ମାର୍ଚ୍ଚ ୧୦ରେ ଖଲାସ ହେଲେ ।

ପ୍ରାୟ ୧୦ ମାସ ମୁକ୍ତ ଥିଲେ, କିନ୍ତୁ ପୁଣି ୧୯୩୨ର ଜାନୁଆରି ମାସର ୧୦ ତାରିଖରେ ଗିରଫ ହେଲେ । ଜାନୁଆରି ୧୯ରୁ ଅଗଷ୍ଟ ଯାଏ ଜେଲ୍ ଭୋଗିଲେ, ପୁଣି ହଜାରିବାଗ୍ ଜେଲ୍‌ରେ ରହିଲେ ।

ପୁଣି ପ୍ରାୟ ଛ ମାସ ପଦାରେ ଥିଲେ, ୧୯୩୩ ମାର୍ଚ୍ଚ ୨୪ରୁ ପୁଣି ଜେଲ୍ ଗଲେ । ସେତେବେଳେ ଆଗ କଟକ ଜେଲରେ ଅପ୍ରେଲ୍ ୨୬ କି ୨୮ ଯାଏ ରଖାଗଲେ, ଅପ୍ରେଲ ଶେଷରୁ ହଜାରିବାଗ୍ ଜେଲ୍‌ରେ ରହିଲେ ଓ ୧୯୩୪ରେ ଖଲାସ ହେଲେ । କିନ୍ତୁ ସେତିକିରେ ଜେଲ୍ ଯିବା ସରି ନ ଥିଲା, ୧୯୪୨ରୁ ୧୯୪୫ ଯାଏ ପୁଣି ସେ ଜେଲ୍‌ରେ ରହିଲେ ।

## ତାଙ୍କ ଅନୁପସ୍ଥିତରେ କଂଗ୍ରେସ୍ ଆନ୍ଦୋଳନ

ଆନ୍ଦୋଳନ ଆରମ୍ଭ ହେଉ ହେଉ ସେ ୧୯୩୦ରେ ବର୍ଷେ ପାଇଁ ଜେଲ୍ ଚାଲିଗଲେ । ତାଙ୍କ ଅନୁପସ୍ଥିତିବେଳେ ନବବାବୁ, ରମା ଦେବୀ, ମାଳତୀ ଦେବୀ, ଅନ୍ୟାନ୍ୟ ନେତାମାନେ ଓ କର୍ମୀମାନେ ଜୋର୍‌ସୋର୍‌ରେ ଆନ୍ଦୋଳନ ଚଳାଉଥାନ୍ତି । ଗୋପବାବୁଙ୍କ କଟକ କୋଠା ସତ୍ୟାଗ୍ରହର ପ୍ରଧାନ କେନ୍ଦ୍ର ହୋଇଥାଏ । ପ୍ରତିଦିନ ଅନ୍ୟାନ୍ୟ ଜିଲ୍ଲାରୁ ଓ କଟକ ଜିଲ୍ଲାର ମଫସଲରୁ ଦଳ ଦଳ ହୋଇ ସତ୍ୟାଗ୍ରହୀ ଆସୁଥାନ୍ତି ଓ ସେଠୁ ଅନ୍ୟାନ୍ୟ ଅଞ୍ଚଳକୁ ପଠାଯାଉଥାନ୍ତି । ରମା ଦେବୀ ଓ ମାଳତୀ ଦେବୀ ଆନ୍ଦୋଳନର ବିବିଧ କାର୍ଯ୍ୟସୂଚୀରେ ଅକ୍ଳାନ୍ତ ପରିଶ୍ରମ କରୁଥାନ୍ତି । ରମା ଦେବୀ ସତ୍ୟାଗ୍ରହୀଙ୍କ ମା ପରି ହୋଇଥାନ୍ତି, ସେବାକାର୍ଯ୍ୟରେ ତାଙ୍କ ଭଳି କେହି ନ ଥିଲେ । ସେତିକିବେଳେ କଂଗ୍ରେସ୍‌ର 'ବାନରସେନା' ସଂଗଠିତ ହେଉଥାନ୍ତି । ବାନରସେନାର କର୍ମୀମାନେ ନିଶାଦ୍ରବ୍ୟର ଦୋକାନ, ବିଲାତି ଲୁଗା ଦୋକାନ, ସ୍କୁଲ୍ କଲେଜ୍ ସମ୍ମୁଖରେ ପିକେଟିଂ କରୁଥାନ୍ତି, ରମା ଦେବୀ ଓ ତାଙ୍କ ପରିବାର ତହିଁରେ ଭାଗ ନେଉଥାନ୍ତି । କଂଗ୍ରେସ୍‌ର ଉଦ୍ୟମ ବିରୁଦ୍ଧରେ ସରକାରଙ୍କ ଅଭିଯାନ ଚାଲିଥାଏ, ପୁଲିସ୍ ଧରପଗଡ଼ ଖାନତଲାସ ଆଦି କରୁଥାନ୍ତି, ଦମନକାର୍ଯ୍ୟ କରୁଥାନ୍ତି, ପିକେଟିଂ କରୁଥିବା ସାନ ସାନ ପିଲାଙ୍କୁ ବେତମାଡ଼ ହେଉଥାଏ । ରମା ଦେବୀ, ମାଳତୀ ଦେବୀ ଆଦି ଆହତମାନଙ୍କର ସେବା ଶୁଶ୍ରୂଷା କରୁଥାନ୍ତି, ଘା'ରେ ପଟି ବାନ୍ଧୁଥାନ୍ତି, ଆନ୍ଦୋଳନରେ କ୍ଷତିଗ୍ରସ୍ତ ହେଉଥିବା ଲୋକଙ୍କୁ ସାହସ ଦେଉଥାନ୍ତି ଓ ତାଙ୍କ ପାଇଁ ସାହାଯ୍ୟ ଆୟୋଜନ କରୁଥାନ୍ତି । ସମୁଦ୍ର ଉପକୂଳରେ ନାନା ସ୍ଥାନରେ ଲୁଣ ଆଇନ୍ ଭାଙ୍ଗି କର୍ମୀମାନେ ଲୁଣ ମାରିଲେ ଓ ମରାଇଲେ, ସ୍ଥାନେ ସ୍ଥାନେ ରମା ଦେବୀଙ୍କ ନେତୃତ୍ୱ ଓ ପରିଚାଳନାରେ ଶହ ଶହ ସ୍ତ୍ରୀଲୋକ ଟୋକେଇ ଟୋକେଇ ଲୁଣ ମାଟି ଲୁଣ ମୁଣ୍ଡେଇ ଚାଲିଗଲେ । ସତ୍ୟାଗ୍ରହ ଆନ୍ଦୋଳନର ପ୍ରଚାର ଓ ସଂଗଠନ ଚାରିଆଡ଼େ ବିପୁଳ ଉତ୍ସାହରେ ଚାଲିଥାଏ, ପ୍ରବଳ ଉନ୍ମାଦନା ଖେଳିଥାଏ, ଅହିଂସା ମାର୍ଗରେ ଭାରତର ମୁକ୍ତି ସଂଗ୍ରାମର ବିଜୟ ସୁନିଶ୍ଚିତ, ସ୍ୱରାଜ୍ ଆସିବ, ଇଂରେଜ୍ ଯିବେ, ଏ ଆଶା ଓ ବିଶ୍ୱାସ ଅଘୋରଦ୍ୱାରୀ ପ୍ରାୟ ସମସ୍ତଙ୍କଠାରେ ଆସିଥାଏ । ଯେତିକି ଯେତିକି ସରକାରୀ ଦମନନୀତି ବଢ଼ି ବଢ଼ି ଚାଲିଲା ସେତିକି ସେତିକି ଜନସାଧାରଣଙ୍କର ଉନ୍ମାଦନା ବଢ଼ି ଉଠିଲା । କେତେ ପିଲା ସ୍କୁଲ୍ କଲେଜ୍ ଛାଡ଼ିଲେ, କେତେ ଲୋକ ଚାକିରି ଛାଡ଼ିଲେ, କେତେ ଲୋକଙ୍କର ବୈଷୟିକ ସର୍ବନାଶ ହେଲା, କିନ୍ତୁ ତଥାପି ଅସଂଖ୍ୟ ସ୍ତ୍ରୀ ପୁରୁଷ ପ୍ରତ୍ୟକ୍ଷଭାବେ ବା ପରୋକ୍ଷଭାବେ ଏ ଆନ୍ଦୋଳନରେ ଯୋଗଦେଲେ । ବାଟେ ବାଟେ ଶୁଭୁଥାଏ ମୁକ୍ତିର ଆହ୍ୱାନ, "ଜୟ ଭାରତ ମାତାକୀ ଜୟ !" "ଜୟ ମହାତ୍ମା ଗାନ୍ଧୀକୀ ଜୟ !"

ସେ ତାକ ଅଗଣିତ ଲୋକଙ୍କର ଖାଲି କାନରେ ବାଜିଥିଲା ସେତିକି ନୁହେଁ, ଅନ୍ତରରେ ବସା ବାନ୍ଧିଥିଲା, ଚେତନାକୁ ମୋଡ଼ ଦେଇଥିଲା । ସମସ୍ତେ ଉଦ୍‌ବୁଦ୍ଧ ହୋଇଥିଲେ, ତା ବି ନୁହେଁ, କିଏ ବିରୋଧ କଲେ, କିଏ ଆଡ଼େଇ ହୋଇ ରହିଲେ, କିନ୍ତୁ ମୋଟାମୋଟିରେ ଦେଖିଲେ ଜଣାଯାଉଥାଏ, ଆନ୍ଦୋଳନ ବଢ଼ି ଉଠିଥିଲା, ତା ପ୍ରତି ସହାନୁଭୂତି ଓ ଅନୁରକ୍ତି ବଢ଼ି ବଢ଼ି ଚାଲିଥିଲା, ତ୍ୟାଗୀ କର୍ମୀମାନଙ୍କ ଆଦର୍ଶ ବଳି ବଳି ଅଧିକରୁ ଅଧିକ ଲୋକଙ୍କୁ ଅନୁପ୍ରାଣିତ କରୁଥିଲା, ସବୁଠି ଖାଲି ସେହିକଥା ।

୨୪-୪-୭୭—ଜନୁଆନ ରାତି

କେତେ ଲୋକଙ୍କ ବିଚାର, ଅଭ୍ୟାସ ଓ ଆଚାର ବଦଳିଗଲା, ସେମାନେ ଅନ୍ତତଃ ବହୁତେ ମହାତ୍ମାଙ୍କ ଉପଦେଶକୁ ପାଳିବାକୁ ଚେଷ୍ଟା କରୁଥାନ୍ତି, ତାଙ୍କଠିଁ ନୈତିକତା ଓ ଆତ୍ମବିଶ୍ୱାସ ବଢ଼ି ଉଠିଲା । କେତେ ଲୋକ ଖଦୀ ପିନ୍ଧିଲେ, ସେମାନଙ୍କ ଆଖିରେ 'ଖଦୀ' ହେଲା 'ପବିତ୍ର' । ସୂତାକାଟିବା ଗାଁ ଗହଳରେ ବି ବ୍ୟାପିଲା । ହିନ୍ଦୁ-ମୁସଲମାନ ପରସ୍ପର ଭିତରେ ସ୍ନେହ ସଦ୍‌ଭାବ ବଢ଼ିବାକୁ ଲାଗିଲା । ଅଛୁଆଁ ଛୁଆଁ ଭେଦ କୋହଳ ହେଲା । ଶାରୀରିକ ପରିଶ୍ରମର ମର୍ଯ୍ୟାଦା ବଢ଼ିଲା । ନାନା କୁସଂସ୍କାର ବଦଳିବାକୁ ଲାଗିଲା । ଶିକ୍ଷା ପ୍ରତି ଆଗ୍ରହ ବଢ଼ିଲା, ଗାଁରେ ନିରକ୍ଷରମାନଙ୍କୁ ପାଠ ପଢ଼ାଇବା ଉଦ୍ୟମ ହେଲା । ଆଗ ରମା ଦେବୀ ଓ ମାଳତୀ ଦେବୀଙ୍କ ଉଦ୍ୟମରେ ନାରୀ ଜାଗରଣ ଆରମ୍ଭ ହେଲା, ଅନ୍ଧାରକଣରେ ପଡ଼ିଥିବା ନାରୀଜାତି କ୍ରମେ କ୍ରମେ ପଦାକୁ ବାହାରିଲେ, ତୁଣ୍ଡ ଖୋଲିଲେ, ବୃଥା ଲାଜ ସଂକୋଚ ଛାଡ଼ି ପୁରୁଷଙ୍କ ପରି ନାନା କାମ କଲେ, ଘରେ ଘରେ ଆଲୋଚନା, ବାରମ୍ବାର ସ୍ଥାନେ ସ୍ଥାନେ ସଭା, ଏକାଠି ବସି ବିଚାର, ଗଣ୍ଡ ମଫସଲରେ ସୁଦ୍ଧା ସାମାଜିକ ଓ ରାଜନୈତିକ ଚେତନା ବଢ଼ି ଉଠିଲା । କଂଗ୍ରେସ୍ ଆନ୍ଦୋଳନର ବଡ଼ ଅବଦାନ ଆଗ ସାମାଜିକ ପରିବର୍ତ୍ତନ । ଯୁଗଯୁଗର ସ୍ଥିତାବସ୍ଥା ଓ ସାମାଜିକ ପଛୁଆପଣ ତହିଁରେ ବଦଳିଗଲା, ଦେଶ ନୂଆ ହୋଇ ଗଢ଼ି ହେଲା ।

# ଦଶ

## ପ୍ରଥମ ହଜାରିବାଗ୍ ଜେଲ୍ ଜୀବନ—ଡାଇରୀରୁ ଉଦ୍ଧୃତାଂଶ

ଗୋପବାବୁ ଜେଲ୍ ଗଲେ । 'ହଜାରିବାଗ୍' ଜେଲ୍‌ରେ ରହିଲେ, ୧୯୩୧ ମାର୍ଚ୍ଚ ୧୦ ତାରିଖଯାକେ ଥିଲେ । ତା ଭିତରୁ ଆରମ୍ଭରୁ ୨।୫।୧୯୩୦ରୁ ସେ ୧୪।୧।୩୧ ପର୍ଯ୍ୟନ୍ତ ରହଣି ବିଷୟରେ ତାଙ୍କର 'ଦୈନିକ ଡାଇରି' ଯୋଡ଼ିଏ ସାନ ସାନ ଖାତାରେ ସେ ଲେଖି ଯାଇଛନ୍ତି । ସବୁ କଥା ଥିବା ସମ୍ଭବ ନୁହେଁ, ଯେତିକି ଲେଖୁଥିଲେ ସେତିକି ତାଙ୍କ ନିଜ ପାଇଁ । ନିଜର ଦିନ ଦିନକର କାମ, କିଛି ଆତ୍ମ-ସମୀକ୍ଷା, କିଛି ଚିନ୍ତା ଲେଖି ଲେଖି ସେ ତହିଁରେ ଆତ୍ମପ୍ରକାଶ କରିବା ସଙ୍ଗେ ସଙ୍ଗେ ନିଜକୁ ଜଗିଥିଲେ, କଳୁଥିଲେ, ଆତ୍ମ-ଶୁଦ୍ଧି ଓ ଆତ୍ମ-ପ୍ରସ୍ତୁତି ବଢ଼ାଉଥିଲେ । ସେ ମୁକ୍ତ ମଣିଷ, ଜେଲ୍‌ରେ ଥାଇ ବି ଆପଣା ଉପରେ ତାଙ୍କର ପୂର୍ଣ୍ଣ ସଂଯମ ଓ ସ୍ୱାଧୀନତା, ଚିନ୍ତାରେ ସେ ସ୍ୱାଧୀନ, ସେ ସଦା ପ୍ରଫୁଲ୍ଲ । ଜେଲ୍ ଜୀବନ ତାଙ୍କ ପକ୍ଷେ ଆଶ୍ରମ ଜୀବନ, ସେଠି ମଣିଷ ଅଭ୍ୟାସ କରି ଆତ୍ମୋନ୍ନତି କରିପାରେ, ତାଙ୍କର ଏପରି ବିଶ୍ୱାସ ଥିଲି ବୋଲି ତାଙ୍କ ଡାଇରିରୁ ଜଣାପଡ଼େ । ଅବସ୍ଥା ଯେପରି ହୋଇଥାଉ, ଆତ୍ମବଳ ଅତୁଟ ରଖି ପାରିପାର୍ଶ୍ୱିକ ଅବସ୍ଥାର ସୀମା ଭିତରେ ଥାଇ ସୁଦ୍ଧା ଆପଣା ପ୍ରାଣପ୍ରାଚୁର୍ଯ୍ୟ ଦ୍ୱାରା ଜୀବନକୁ ଉପଭୋଗ କରିପାରିବାର ଶକ୍ତି ଓ ସବୁ ସୀମାକୁ କରିକୁ ଆଡ଼େଇ ଦେଇ ଚିନ୍ତାରାଜ୍ୟରେ ସ୍ୱାଧୀନଭାବେ ଉପରକୁ ଉଠିପାରିବା ଶକ୍ତି ତାଙ୍କଠି ଥିଲା । ଡାଇରିଟି ସେ ଖାଲି ନିଜପାଇଁ ଲେଖିଥିଲେ, ତା ପୃଷ୍ଠାରେ ସେ ନିଜ ସଙ୍ଗେ କଥାଭାଷା ହୋଇଛନ୍ତି ।

ସେ ହଜାରିବାଗ୍ ଜେଲ୍‌ରେ ପହଞ୍ଚିଲାବେଳକୁ ତାଙ୍କ ସଙ୍ଗେ ମହତାବ ବାବୁ, କରୁଣାକର ବାବୁ ଓ ଡାକ୍ତର କୃଷ୍ଣବାବୁ ଆଦି ଥିଲେ ଓ ପୁଣି ସେହି ଜେଲ୍‌ରେ କଏ

ଆଗ କଏ ପଛ ହୋଇ ଓଡ଼ିଶାରୁ ଶ୍ରୀ ଯଦୁମଣି ମଙ୍ଗରାଜ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ କୃପାସିନ୍ଧୁ ହୋତା, ଆଚାର୍ଯ୍ୟ ହରିହର, ଶ୍ରୀ କଶୋରୀ ମୋହନ କୋଅର୍ଦ୍ଦାର୍, ଶ୍ରୀ ନନ୍ଦ କଶୋର ଦାସ, ଶ୍ରୀ ରାଜକୃଷ୍ଣ ବୋଷ୍ ଆଦ ଆସି ରହିଲେ । ସେଠି ବହାରର ଅନେକ କଂଗ୍ରେସ୍ କର୍ମୀ ବି ଥିଲେ । ତାଙ୍କ ଭିତରେ ଥିଲେ ପ୍ରସିଦ୍ଧ ନେତା ଶ୍ରୀ କୃଷ୍ଣ ସିଂହ ବା 'ଶ୍ରୀ ବାବୁ', ଶ୍ରୀ ରାଜେନ୍ଦ୍ର ପ୍ରସାଦ, ସ୍ୱାମୀ ସହଜାନନ୍ଦ, ରାମଦୟାଲ ବାବୁ, ଯମୁନାଲାଲ୍ ବାବୁ, କୋଠାରୀଜୀ, ରୁପ୍‌ନାର ନାରଣ ବାବୁ ।

## ଜେଲ୍‌ର ବର୍ଣ୍ଣନା, ଜେଲ୍‌ର ଦୈନନ୍ଦିନ ଜୀବନର ଆଭାସ, A B C ଶ୍ରେଣୀ ବନ୍ଦୀଙ୍କର ପରିଚୟ

ଜେଲରେ ତାଙ୍କୁ 'A class'ରେ ରଖାଗଲା । ସେଥିପାଇଁ ସେ ମନେ ମନେ କ୍ଷୁଣ୍ଣ ହେଲେ । 'A', 'B', 'C' ଭେଦ ତାଙ୍କୁ ବାଧୁଥିଲା ଓ ସେ ସାଧାରଣ କଏଦୀଙ୍କ ଭଳି ନିମ୍ନତମ ଶ୍ରେଣୀରେ ରହିବାକୁ ଇଚ୍ଛା କରୁଥିଲେ । ଜେଲ୍‌ର ବ୍ୟବସ୍ଥା ତାଙ୍କୁ ଆଦୌ ଅସୁବିଧା ଲାଗୁ ନ ଥିଲା । ସେ ଯେପରି ମସଲା ନ ଦେଇ ସିଝା ସାଦାସିଧା ନିରାମିଷ ଖାଦ୍ୟ ଖାଆନ୍ତି, ଚନା ପରିବର୍ତ୍ତେ ମୁଢ଼ି ଖାଉଥିଲେ, ସେସବୁ ମିଳୁଥିଲା; ଦୁଧ, ବେଦାନା, କଦଳୀ ଆଦ ଫଳ ବି ମିଳୁଥିଲା । ସେ ଦୁଧକୁ ବିସାଦରେ ଗ୍ରହଣ କରୁଥିଲେ । ବରଂ ଜେଲ୍‌ର ସୁଖ ସୁବିଧା ଦେଖି ସେ ଭାବୁଥିଲେ, ବ୍ୟବସ୍ଥା ଯଦି କଠୋର ହୋଇଥାନ୍ତା ଭଲ ହୋଇଥାନ୍ତା, ସୁଖ ସୁବିଧା ମିଳୁଥିଲେ ସତ୍ୟାଗ୍ରହୀ ଦୁର୍ବଳ ହୋଇଯାନ୍ତି । ସେ ନିଜେ ଚେଷ୍ଟା କରୁଥିଲେ ଯେପରି କଠୋରଭାବେ ଚଳି ପାରିବେ, ସୁଆଦ ଖାଇବାକୁ ମନ ଡାକିବ ନାହିଁ, ଅଳସ ଲାଗିବ ନାହିଁ, ନିଦରେ ବେଶି ବେଳ କଟିବ ନାହିଁ । ବିଭିନ୍ନ ଦିନର ଡାଇରୀରେ ସେ 'ପାଟି-ଚକଲାପଣ' ଲାଗି ନିଜକୁ ସମାଲୋଚନା କରିଛନ୍ତି ଓ ଚେତାଇ ଦେଇଛନ୍ତି । ଡାକ୍ତର ଆସି ତାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରୁଥିଲେ । କେନ୍ଦୁପାଟଣାର ଡାକ୍ତର ବ୍ରଜନାଥ ମିଶ୍ରଙ୍କ କଥା ସେ ଅନେକ ସ୍ଥାନରେ ଲେଖିଛନ୍ତି । ସେ ଏଲ୍. ଏମ୍. ପି. ଡାକ୍ତର ଥିଲେ ଓ କବିରାଜ ଥିଲେ । ଡାକ୍ତର ବ୍ରଜ ତାଙ୍କୁ ଅନେକ ସମୟରେ ଦେଶୀ ଚିକିତ୍ସା କରିବାକୁ କହିଛନ୍ତି । ସେ ନିଜ ସ୍ୱାସ୍ଥ୍ୟର ଖୁବ୍ ଯତ୍ନ ନେଉଥିଲେ ଜଣାପଡ଼ୁଛି । ଭୋର୍ ୪ଟାରୁ ଉଠନ୍ତି, ନିଶ୍ୱାସ ବେଗ ରୁନ୍ଧି ବ୍ୟାୟାମ କରନ୍ତି, ବୁଲନ୍ତି, କେବେ ଦୌଡ଼ନ୍ତି, ଟିକିଏ ପେଟ ବିଗିଡ଼ିଲେ କି ସର୍ଦ୍ଦି ହେଲେ କି ଜର ହେଲେ ଆଗ ନିଜେ ପ୍ରାକୃତିକ ଚିକିତ୍ସା ଓ ଦେଶୀ ଚିକିତ୍ସା କରନ୍ତି, ପେଟରେ କାଦୁଅ ବୋଳା ପଟି ବାନ୍ଧି ଶୋଇବା, ବେକରେ ଥଣ୍ଡାପଟି ଦେବା, ଏସବୁ ସାଧାରଣତଃ ଆଗ କରନ୍ତି । ପ୍ରତିଦିନର ଡାଇରୀରେ ଟିକିନିଖି କରି ସେ ତାଙ୍କ ଦେହ ଖବର ଲେଖନ୍ତି, କେତେବେଳେ ଶୋଇଲେ, ନିଦ କିପରି ହେଲା, ତା ବି । ଦେହକୁ ଜିଣି, ଶାରୀରିକ ପରିଶ୍ରମ କରି, କର୍ମନିରତ ଓ ପ୍ରଫୁଲ୍ଲ ରହି ସେ ସ୍ୱାସ୍ଥ୍ୟ ଠିକ୍

ରଖିଥିଲେ, ତାଙ୍କ ଓଜନ ବଢ଼ିଥିଲା । ପଛେ କେତେବେଳେ କେତେବେଳେ ଦେହ ଖରାପ ହେଲା । ସେ ଏକାଦଶୀରେ ଉପାସ କରୁଥିଲେ, ଦେହ ଖରାପ ହେଲେ ବି ଖାଇବା ବନ୍ଦ କରୁଥିଲେ ।

ଜେଲ୍‌ରେ କର୍ମଚାରୀମାନଙ୍କ ବ୍ୟବହାର ଭଲ ଥିଲା । ସେ ସବୁବେଳେ ବିଶ୍ୱାସ କରୁଥିଲେ ଯେ ମଣିଷର ବିବେକ ଓ ବିଚାର ଅଛି, ତାକୁ ବୁଝାଇଲେ ବୁଝିବ । ଜେଲ୍‌ର ଶୃଙ୍ଖଳା ଭାଙ୍ଗିବା, କର୍ମଚାରୀଙ୍କ ସଙ୍ଗେ ଖରାପ ବ୍ୟବହାର କରିବା, ବାଳକା ସୁଖ ସୁବିଧା ଖୋଜିବା, ଏସବୁ ସେ ଘୃଣା କରୁଥିଲେ ଓ ଅନ୍ୟମାନଙ୍କଠି ସେପରି କିଛି ଦେଖିଲେ ଦୁଃଖିତ ହେଉଥିଲେ । ଅନ୍ୟାନ୍ୟ ରାଜନୈତିକ ବନ୍ଦୀ, ସାଧାରଣ କଇଦୀ, ଜେଲ୍‌ର କର୍ମଚାରୀ, ସମସ୍ତିଙ୍କ ସଙ୍ଗେ ତାଙ୍କ ବ୍ୟବହାର ସ୍ନେହସୌଜନ୍ୟପୂର୍ଣ୍ଣ ଥିଲା । ସେ ସାଧାରଣ କଇଦୀଙ୍କ ପାଇଁ ଦୁଃଖ କରୁଥିଲେ ଯେ ସେମାନେ ଶିକ୍ଷାର ସୁବିଧା ପାଇନାହାନ୍ତି, ଉନ୍ନତ ହେବାକୁ ସୁଯୋଗ ପାଇନାହାନ୍ତି । ସତ୍ୟାଗ୍ରହୀମାନେ ନିଜେ ତ ପ୍ରତିଦିନ ଉଠି ପ୍ରାର୍ଥନା କରନ୍ତି, ସେଠି ଭଜନ ହେଉଥିବା ସ୍ଥାନରେ ବି ଗୋପବାବୁ ଉପସ୍ଥିତ ହୁଅନ୍ତି ।

ଅନ୍ୟାନ୍ୟ ରାଜନୈତିକ ବନ୍ଦୀମାନଙ୍କ ସହିତ ତାଙ୍କର ଆଲୋଚନା ହେଉଥିଲା । ନାନା ବିଷୟରେ ତାତ୍ତ୍ୱିକ ଆଲୋଚନା ହେବା କଥା ସେ ଲେଖିଛନ୍ତି । ସେ କେତେଜଣଙ୍କୁ ସୂତାକଟା ଶିଖାଉଥିଲେ ଓ କେହି ଶିଖି ସୂତା କାଟିଲେ ସେ ଖୁବ୍ ଖୁସି ହେଉଥିଲେ ।

ସେ ନିଜେ ସୂତା କାଟିବା କାର୍ଯ୍ୟକୁ ଖୁବ୍ ଗୁରୁତ୍ୱ ଦେଉଥିଲେ ଓ ତହିଁରେ ଖୁବ୍ ଆଗ୍ରହ ଦେଖାଉଥିଲେ । ପ୍ରତିଦିନ ଡାଇରୀରେ ଲେଖୁଥାନ୍ତି ସେଦିନ କେତେ ଗଜ ସୂତା କାଟିଲେ । ସେ ତୁଳା ବଳଣା ବଳୁଥିଲେ, ନିୟମିତ ଭାବେ ସୂତା କାଟୁଥିଲେ, ଆଗ ଆଗ ଦୈନିକ ୧୦୦ ଗଜ ୩୦୦ ଗଜ କାଟୁଥିଲେ, ପରେ ଦିନକୁ ୫୦୦ ଗଜ ବା ଆଖପାଖ । କେବେ କେବେ ସୂତା କାଟି ନ ପାରିଲେ ସେକଥା ବି ଡାଇରୀରେ ଲେଖିଦିଅନ୍ତି ।

ଜେଲ୍‌କୁ ଖବର କାଗଜ ଅାସୁଥିଲା । Statesman, Search Light ଓ ମହାତ୍ମା ଗାନ୍ଧୀଙ୍କ Young India ସେ ନିୟମିତ ଭାବେ ପଢ଼ୁଥିଲେ । ପତ୍ରିକାମାନଙ୍କ ଭିତରେ ସେ Modern Review ପଢ଼ୁଥିବା କଥା ଲେଖିଛନ୍ତି ଓ ତହିଁରେ ଛପା ହୋଇଥିବା କେତୋଟି ପ୍ରବନ୍ଧକୁ ପ୍ରଶଂସା କରିଛନ୍ତି ।

ସେ ଜେଲ୍‌ରେ ଥିବାବେଳେ ବହୁତ ବହି ପଢ଼ୁଥିଲେ, କେଉଁ ବହି ପାର୍ଶଲ୍‌ରେ ମଗାଉଥିଲେ, କେତେବେଳେ ଜେଲ୍‌ର ପାଠାଗାରରୁ ବହି ନେଇ ପଢ଼ୁଥିଲେ ଓ କେଉଁ ସହବନ୍ଦୀଙ୍କଠୁଁ କେଉଁ ବହି ବି ପାଉଥିଲେ । ପ୍ରତିଦିନ ଗୀତା ପଢ଼ନ୍ତି, ପଛେ ଗୀତା ଓ ଭାଗବତ ପ୍ରତ୍ୟହ ପଢ଼ିଲେ, ହିନ୍ଦୀରେ ତୁଳସୀ ରାମାୟଣ ବି ପଢ଼ୁଥିଲେ । ସେ ଯେଉଁସବୁ ବହି ପଢ଼ୁଥିଲେ ତହିଁରୁ କେତୋଟିର ନାଁ ଡାଇରୀରୁ ମିଳେ—

Bible, Kempison Imitations of Christ, ମହାତ୍ମା ଗାନ୍ଧୀଙ୍କ ଆତ୍ମକଥା (ଇଂରେଜୀ), ଗୁଜରାଟି 'ଗୀତାଭାଷ୍ୟ', ମହାତ୍ମାଙ୍କଙ୍କ (ଗୁଜରାଟି) ଆତ୍ମକଥା, ଗୁଜରାଟି ବୁଦ୍ଧଚରିତ ଓ ବୁଦ୍ଧଲୀଳା ସାରସଂଗ୍ରହ, ଲୋକମାନ୍ୟ ତିଲକଙ୍କ 'ଗୀତା ରହସ୍ୟ' (ହିନ୍ଦୀ), ଶ୍ରୀ ଅରବିନ୍ଦଙ୍କ 'ଗୀତାର ଭୂମିକା', 'Essays on the Gita', 'ଯୌଗିକ ସାଧନା', Romain Rollandsଙ୍କ ମହାତ୍ମା ଗାନ୍ଧୀଙ୍କ ଜୀବନୀ । 'Old Civilisations of the New World', Ruskinଙ୍କ 'Unto this last', C. F. Andrewsଙ୍କର ମହାତ୍ମା ଗାନ୍ଧୀଙ୍କ ବିଷୟରେ ବହିଟିଏ ଓ 'India and the Simon Report', Lead braterଙ୍କ 'Other side of death', H. G. Wellsଙ୍କ 'Short History of the World', Betrand Russelଙ୍କ 'Conquest of Happiness', Rene Frilop Millorଙ୍କ 'Lenin and Gandhi', Stalinଙ୍କ 'Leninism', Fundamental Problems of Maxism, History of Taxation ଆଦି । ସେତେବେଳେ ସେ ଅନ୍ୟାନ୍ୟ ଗାନ୍ଧୀ ସାହିତ୍ୟ ଓ ଶ୍ରୀ ରାମକୃଷ୍ଣ ପରମହଂସ ଓ ବିବେକାନନ୍ଦଙ୍କ ବହିମାନ ପଢ଼ିଥିବା ଜଣାପଡ଼େ ।

ସେ ଯାହା ପଢ଼ୁଥିଲେ, ତାକୁ ବୁଝି ବୁଝି ନିଜ ଅଭିଜ୍ଞତା ସଙ୍ଗେ ମିଳାଇ ଭାବି ଭାବି ପଢ଼ୁଥିଲେ, ଖାଲି ପଢ଼ିସିବା ପାଇଁ ନୁହେଁ, ପଢ଼ାରୁ କିଛି ଜ୍ଞାନ ବଢ଼ାଇବାପାଇଁ, ଜ୍ଞାନକୁ ଜୀବନରେ କିପରି ପ୍ରୟୋଗ କରି ହେବ ତା ଭାବୁଥିଲେ । Imitations of Christ, ଗୀତା, Bible, 'ବ୍ରହ୍ମଚର୍ଯ୍ୟ', 'ଗାନ୍ଧୀ ଆତ୍ମଜୀବନୀ' ପଢ଼ୁ ପଢ଼ୁ ତହିଁରୁ ଗୋଟିଏ ଗୋଟିଏ କଥା ଧରି ସେ ନିଜ ଅଭିଜ୍ଞତା ସାଙ୍ଗେ ମିଶାଇ ଦେଖୁଥିଲେ, ମନେ ମନେ ଆଲୋଚନା କରୁଥିଲେ ଓ ସେହି ସମ୍ପର୍କରେ ନିଜ ମତାମତକୁ ବେଳେ ବେଳେ ତାଙ୍କ ଡାଇରୀରେ ଲେଖୁଥିଲେ ।

ସେ ଗୁଜ୍‌ରାଟି ଶିଖିଥିଲେ । 'ଗୀତାଭାଷ୍ୟ', ମହାତ୍ମାଜୀଙ୍କ ଇଂରାଜୀ ଆତ୍ମଜୀବନୀରୁ କେତେକ ପରିଚ୍ଛେଦ, କେତେକ ପ୍ରବନ୍ଧ ଓ ମହାତ୍ମା ଗାନ୍ଧୀଙ୍କ ଗୁଜ୍‌ରାଟି ଆତ୍ମକଥାରୁ କିଛି ଅନୁବାଦ କରିଥିଲେ ।

[ତାଙ୍କର ନିତ୍ୟଦିନର କାର୍ଯ୍ୟ ତାଙ୍କ ଡାଇରିରେ ଲେଖାଅଛି । ନିଜର ସବୁ କାମ ସେ ନିଜ ହାତରେ କରନ୍ତି । ଘର ଓଳାନ୍ତି, ବାସନ ମାଜନ୍ତି, ପାଇଖାନା ଧୁଅନ୍ତି, ଘର ଧୁଅନ୍ତି, ଲୁଗାରେ ସାବୁନ୍ ଦେଇ କାଚ ସଫା କରନ୍ତି ।]

ଏପରି ଅଭ୍ୟାସ ସେ ଆଗରୁ କରିଥିଲେ । ସବୁଦିନେ ଥିଲା, ତାଙ୍କ ଆଶ୍ରମ ଜୀବନର ବି ଶିକ୍ଷା ଏଇଆ । ତା'ଛଡ଼ା ଜେଲ୍‌ର କାରଖାନାରେ ତାଙ୍କୁ କାମ କରିବାକୁ ଦିଆଯାଏ । ସେ ଗାଲିଚ୍ଚ ବୁଣୁଥିଲେ ।

ଆପଣା ଲୋକଙ୍କଠୁଁ ସେ ଦୂରରେ ଅଛନ୍ତି କି ଜେଲ୍‌ରେ ଅଛନ୍ତି ବୋଲି ଅଧୀର ସେ ଚିନ୍ତିତ ନ ଥିଲେ । ଘରକୁ ଚିଠି ଦିଅନ୍ତି, ଘରୁ ଚିଠି ପାଆନ୍ତି । ତାଙ୍କ ଅନୁପସ୍ଥିତି ବେଳେ ସ୍ୱାଧୀନତା ଆନ୍ଦୋଳନ କାର୍ଯ୍ୟରେ ରହି ତାଙ୍କ ପରିବାରର ଲୋକଙ୍କୁ ନାନା ଦୁଃଖ କଷ୍ଟ ଭୋଗିବାକୁ ପଡ଼ିଲା । ସେଥିପାଇଁ ସେ ଦୁଃଖ କରୁ ନ ଥିଲେ, ଖୁସି ହେଉଥିଲେ । ଶୁଣିଲେ, ଭାଇ ଜେଲ୍ ଗଲେ,—ଖୁସି ହେଲେ, ପୁଅ ମାଡ଼ ଖାଇଲା, ଖୁସି ହେଲେ, ଦକ ଦକ ହେଉଥାନ୍ତି କାଳେ ତାଙ୍କ ସ୍ତ୍ରୀ ଦୁଃଖକଷ୍ଟ ସହିପାରିବେ ନାହିଁ ବୋଲି । କିନ୍ତୁ ରମା ଦେବୀ ଯେତେବେଳେ ଧରା ହେଲେ, ଜେଲ୍ ଗଲେ, ସେ ଖୁସି ହେଲେ, ଗର୍ବିତ ହେଲେ ।

## ଏଗାର

ଜେଲ୍‌ରେ ତାଙ୍କର ନିତ୍ୟଦିନର କାର୍ଯ୍ୟ ବିଷୟରେ ତାଙ୍କ ଡାଇରିରୁ ଧାରଣା ମିଳେ :

୪।୫।୩୦ "ବୁଧବାର—ଭୋର ୪ଟା ବେଳକୁ ଉଠି ଦାନ୍ତଘଷା, ଝାଡ଼ା ଫେରିବା କାମ ସାରି ପ୍ରାର୍ଥନାରେ ବସିଗଲୁ । ଜେଲ୍‌ରେ ଭୋରରୁ ସମସ୍ତଙ୍କ ଆଗରୁ

ଉଠି ପାଇଖାନା ଯିବା ଓ ଦାନ୍ତଘଷା ଇତ୍ୟାଦି କାମ ସାରିଦେଲେ ବହୁତ ସୁବିଧା ହୁଏ । ବିଶେଷତଃ ଯେଉଁମାନଙ୍କୁ ୬ଟା ବେଳକୁ କାମ କରିବାକୁ ଯିବାକୁ ହେବ ସେମାନଙ୍କର ଭୋରରୁ ଉଠି ଆଗରୁ ଏ ସମସ୍ତ କାର୍ଯ୍ୟ ସାରିଦେଲେ ବହୁତ ସମୟ ମିଳେ । ରାଧୁଆ ସାଙ୍ଗ ଲୁଗାକୁଡ଼ିକ ସାବୁନ୍ ଦେଲି । ଜଳଖିଆର ବନ୍ଦୋବସ୍ତ କଲି । ଚନ୍ଦନର ହାଲୁଆ ହେଉଥିବାରୁ ମୁଁ ନଖାଉଥିବାରୁ ଗୁଡ଼ର ବରାଦ କରିଥିଲି । ପ୍ରାୟ ୧୦ଟା ପର୍ଯ୍ୟନ୍ତ ଗୋଟିଏ ସଭା ହୋଇ ସୁପରିଣ୍ଟେଣ୍ଡେଣ୍ଟଙ୍କ ସଙ୍ଗେ ଯେ ଗୋଳମାଳ ଲଗିଥିଲା ତାର ମୀମାଂସା କପରି କରାଯିବ ସେ ଆଲୋଚନାରେ ଗଲା । ସଭାସ୍ଥଳରେ ମୁଁ ଅନେକ ଗୁଡ଼ାଏ ସୂତା କାଟି ପକାଇଲି । ବଡ଼ ଦୁଃଖର କଥା ଆମ୍ଭେମାନେ ସମସ୍ତେ ନିଜ ମତକୁ ଠିକ ବୋଲି ମନେକରୁ ଏବଂ ବିପରୀତ ମତଧାରୀଙ୍କୁ ନାନା ପ୍ରକାର ଦୁରଭିସନ୍ଧି ଥିବାର କହିଥାଉ, ଏଥିରୁହିଁ ଦୁନିଆର ସବୁ ଗୋଳମାଳର ସୂତ୍ରପାତ । କିନ୍ତୁ ଆମ୍ଭେମାନେ ଯେଉଁମାନେ ସ୍ୱରାଜ୍ୟ ଆଣିବୁ ବୋଲି ଆଗୁଆ ହୋଇଛୁ ବା Liberative non-violence ସତ୍ୟାଗ୍ରହ ଏ ସମସ୍ତର ବାନା ଉଡ଼ାଉଛୁ, ତାଙ୍କ ମଧ୍ୟରେ ଏପରି ପରସ୍ପର ପ୍ରତି ଆକ୍ଷେପ, ଅଭିସନ୍ଧି ଆରୋପ ଆଦୌ ସୁନ୍ଦର ନୁହେଁ । ଆଜିକାର କ୍ରିୟାକଳାପ ଦେଖି ମୋ ମନରେ ବଡ଼ କଷ୍ଟ ହେଲା । ଆମ ଓଡ଼ିଶାରେ ଏପରି ବହୁତ ଥର ଦେଖାଯାଏ ସତ୍ୟ, କିନ୍ତୁ ବିହାରୀ ଭାଇଙ୍କ ମଧ୍ୟରେ ଏପରି ଏତେ ପରିମାଣରେ ଥିବାର ଦେଖି ବଡ଼ କଷ୍ଟ ହେଲା । ଉନ୍ନତ ଜାତିର ଏ କଣ ପରିଚୟ ?

ଯଦୁମଣି ଆଜି ପଢ଼ିଥିଲା । ଗୋବିନ୍ଦ୍ ଝା ଲକ୍ଷ୍ମୀନାରାୟଣ ମଧ୍ୟ ଆସିଲେ ।

ଦ୍ୱିପହରକୁ ଆଜି ଗଲା କେତେଦିନର ଡାଇରୀ ଲେଖିଲି ଏବଂ ଟିକିଏ ଗୁଜରାଟି ଗୀତା ପଢ଼ିଥିଲି ଏବଂ ଝଣ୍ଟେ ଚିଠି ବେଲ୍ (ରମା ଦେବୀ) ନିକଟ ଲେଖିଥିଲି ।

ଶ୍ରୀ କୃଷ୍ଣ ସିଂହ ଆମ ସଙ୍ଗରେ ବନ୍ଦୀ—ବିହାରର ପ୍ରସିଦ୍ଧ ନେତା—ବଡ଼ ସୁନ୍ଦର ଲୋକ । ତାଙ୍କୁ ଆଜି ଜର । ସନ୍ଧ୍ୟାରେ ଟିକିଏ ଶ୍ରୀ କୃଷ୍ଣ ବାବୁଙ୍କ ପାଖେ ବସି ପ୍ରାର୍ଥନାରେ ଯୋଗଦେଲି । ପ୍ରାର୍ଥନାରେ ଜଣେ ଦୁଇଜଣ ଯୋଗଦେଇ ନ ଥିବାରୁ ଜୀବରାମ ଭାଇ (ଭଦ୍ରକର ଜୀବରାମ କଲ୍ୟାଣୀ) ବଡ଼ ବ୍ୟସ୍ତ ହୋଇ ଟିକିଏ ରାଗିଗଲା ପରି ରାଗିଗଲେ । ନ ଆସିବା ଲୋକ ଶ୍ରୀକୃଷ୍ଣ ବାବୁଙ୍କ ଶୁଶ୍ରୂଷା କରୁଥିଲେ, ମୁଁ ତାଙ୍କୁ କହିଲି ସେମାନେ ପ୍ରାର୍ଥନାଠାରୁ ପ୍ରକୃତ ଭଗବତ୍ ଉପାସନା କରୁଛନ୍ତି । ଯାହାହେଉ ଶେଷରେ ସେ ନିଜର ଭୁଲ୍ ବୁଝିଥିଲେ । ପ୍ରାର୍ଥନା ପରେ ଭାଗବତ ଦ୍ୱିତୀୟ ଅଧ୍ୟାୟ ପଢ଼ିଲି— ରାତି ୯ଟାରେ ଶୋଇ ପଡ଼ିଲି ।”

ସେ ଖୁବ୍ ଭୋରରୁ ଉଠୁଥିଲେ, ନିତ୍ୟକର୍ମ ସାରୁଥିଲେ, ପ୍ରାର୍ଥନା କରୁଥିଲେ, ବ୍ୟାୟାମ କରୁଥିଲେ, ନିଜ ବାସନ ମାଜୁଥିଲେ, ଘର ଓଳାଉଥିଲେ, ପାଇଖାନା

ଧୋଉଥିଲେ, ଲୁଗାରେ ସାବୁନ୍ ମାରି ଲୁଗା କାଚୁଥିଲେ, ଘର ଧୋଉଥିଲେ । ତାଙ୍କୁ ଜେଲ୍‌ରେ "Medium Labour' ଶ୍ରେଣୀରେ କାମ କରିବାକୁ ବର୍ଗ ହୋଇଥିଲା ଓ ଜେଲର ଫ୍ୟାକ୍ଟରୀରେ ତାଙ୍କୁ କାମ କରିବାକୁ ଦିଆ ହେଉଥିଲା । ସେ ଗାଲିଚ୍ଚବୁଣା କାମଟି ବାଛିଥିଲେ, କେବେ ଘଣ୍ଟାଏ କେବେ ୨।୩ ଘଣ୍ଟା ତନ୍ତରେ ଗାଲିଚ୍ଚ ବୁଣୁଥିଲେ । ଏ କାମପାଇଁ ତାଙ୍କୁ ଉତ୍କଣ୍ଠା ଆସୁଥିଲା, ସାଧାରଣତଃ ଦି'ପହରେ ଏ କାମ ପଡ଼ୁଥିଲା । ସେ ତୂଳା ଭିଣୁଥିଲେ, ବଲଣା ବଳୁଥିଲେ, ସୂତା କାଟୁଥିଲେ । ପ୍ରତିଦିନ ପଢ଼ୁଥିଲେ । କଥାଭାଷା ଓ ଆଲୋଚନାରେ କିଛି ବେଳ କଟୁଥିଲା, କେବେ କେବେ ଦିପହରେ କିଛି ସମୟ ଶୋଇ ପଡ଼ୁଥିଲେ, ସେଥିପାଇଁ ନିଜ ଉପରେ ବିରକ୍ତ ହେଉଥିଲେ । ସନ୍ଧ୍ୟାରେ ପୁଣି ଗାଧାନ୍ତି, ବୁଲିଯାନ୍ତି, ଆସି କେବେ ପଢ଼ନ୍ତି, ଖାଇସାରି ପ୍ରାର୍ଥନା କରି ରାତି ୯ଟାରେ ଶୋଇପଡ଼ନ୍ତି ।

ତାଙ୍କ ଡାଇରିରୁ ଅଳ୍ପ କିଛି ଉଦ୍ଧୃତାଂଶ ତଳେ ଦିଆଗଲା, ତହିଁରୁ ତାଙ୍କର କେତେକ ମତାମତ ଓ ମନୋଭାବ ବିଷୟରେ ଧାରଣା ମିଳିବ :

୮।୫।୩୦—"ସନ୍ଧ୍ୟାରେ ଏଘରେ ୫ଟି ଆଲୁଅ ଦେଇଗଲା, ଆମେ ୧୩ ଜଣଙ୍କୁ ୫ଟି; ୨।୩ ଜଣ ଲେଖାଁ ଗୋଟିଏ ଗୋଟିଏ ନେବା ଉଚିତ, ମାତ୍ର—ଗୋଟିଏ ଏକା ନେଇ ଖଟ ଉପରେ ବସି ରହିଲା । ମୁଁ ତ ତାକୁ କିଛି କହିଲି ନାହିଁ, ଏଣେ ମହତାବ୍, କୋଠାରୀଜୀ ଓ ଗୋରକ ଅନ୍ଧକାରରେ ବସିଲେ । ଏସବୁ ବଡ଼ ଦୁଃଖର କଥା ।"

୨୧।୫।୩୦—"ଦୁଇଟି ଟେବୁଲ୍ ବଢ଼େଇ କାରଖାନାରୁ ଆମ୍ଭମାନଙ୍କ ପାଇଁ ଆସିଲା । ଟେବୁଲ୍ ଦୁଇଟି ହତା ଫାଟକ ଡେଇଁବା ସଙ୍ଗେ ସଙ୍ଗେ ତା ଉପରେ ୧୦।୧୨ ଜଣ ପଡ଼ିଗଲେ । ଛଡ଼ାଛଡ଼ି କଳିକଜିଆ ପର୍ଯ୍ୟନ୍ତ । କିବା ଟେବୁଲ୍ ! କିଏ ବା ଦେଉଛି ! ଯେ Independence ପାଇଁ ପ୍ରାଣଦେବାକୁ ବାହାରିଛନ୍ତି ସେ ଖଣ୍ଡେ ଟେବୁଲ୍ ପାଇଁ ଜେଲ୍ ମଧ୍ୟରେ କଳି !"

୨୨।୫।୩୦—"ଗାଧୋଇସାରି ପୁରୁଣା Young India ଖଣ୍ଡେ କେଉଁଠି ଥିଲା ସେଥିରୁ ଓଡ଼ିଶାର ଖବର କିଛି ପଢ଼ିଲି । ସେ ରିପୋର୍ଟ୍‌ରେ ମୋ ନାଁଟାକୁ ପ୍ରାଧାନ୍ୟ ଦିଆ ହୋଇଥିବାର ଦେଖି ମନରେ ଟିକିଏ ଗର୍ବ ହଠାତ୍ ହୋଇଥିଲା । କିନ୍ତୁ ଏ ଭାବ ସହଜରେ ମନକୁ ଆସୁଥିଲେ ମଧ୍ୟ ଏପରି ମନକୁ ତାଲିମ୍ କରିବାକୁ ଦରକାର ଯେ ସେ ଭାବଟା ଲୁପ୍ତ ହୋଇଯିବ । ଏ ସାମାନ୍ୟ ଅହଂଭାବ ବଡ଼ି ବହୁତ ଅନିଷ୍ଟ କରିଥାଏ । ଭଗବାନ ଏ ଭାବକୁ ଦମନ କରିବାକୁ ଶକ୍ତି ଦିଅନ୍ତୁ ।"

୩।୭।୩୦—"ହଠାତ୍ ଖଣ୍ଡେ ଚିଠି ମୋର ମିଳିଲା—ମୋର ଭଣଜା ହିମ (ବାଲିକୁଦା ଜମିଦାର ପରୀକ୍ଷିତ ଦାସଙ୍କ ନାତି ରାଜକିଶୋର ଦାସ) ୬ ମାସ ଜେଲ୍ ଗଲାଣି, ତା ବୋଉ ଗୁଲିଅପା ଆଶ୍ରମବାସିନୀ, ଟୁକି (ନବବାବୁ) ଓ ମିନୁ (ମାଳତୀ ଦେବୀ) ହୁଏତ ଅଗଷ୍ଟ ଶେଷରେ ଜେଲ୍ ଆସିବେ, ବେଲୁ (ରମା ଦେବୀ) ଖୁବ୍ କାମ କରି ଶୁଖିଯାଉଛି, ବାବୁ (ବୁଲୁବାବୁ) ଧଡ଼ି (ସଚ୍ଚିଦାନନ୍ଦ ଚୌଧୁରୀ) ମଧ୍ୟ କାମରେ ଲଗିଛନ୍ତି । ଚୂନିଆ (ଅନ୍ନପୂର୍ଣ୍ଣା ମହାରଣା) ସୂତାକଟାରେ **Expert** ହେଉଛି—ଏ ସମସ୍ତ ଶୁଣି ମନରେ ଖୁବ୍ ଆନନ୍ଦ ହେଲା ସତ୍ୟ—ଆହୁରି ଭଲ ଖବର, ମୋର ଶାଶୂ ଆଶ୍ରମକୁ ଆସୁଛନ୍ତି, କିନ୍ତୁ ତଥାପି ବେଳେ ବେଳେ ମନେହୁଏ ଏମାନେ ଦେଶ ପାଇଁ କାମ କରୁ କରୁ ସମସ୍ତେ ଜେଲ୍ ଚାଲିଗଲେ ଭଲ ହୁଅନ୍ତା ।

ପର ମୁହୂର୍ତ୍ତରେ ପୁଣି ମନରେ ଟିକିଏ କଷ୍ଟହୁଏ ଯେ ନା, ସେମାନଙ୍କର କଷ୍ଟ ମୁଁ ସହିବ କିପରି । ଏହିପରି ଦୁର୍ବଳତାର ସମାବେଶ ମନରେ ହେଉଥାଏ । ଏହାହିଁ ମାୟା ବନ୍ଧନ ।"

୧୮।୭।୩୦—"କାମକୁ ଯାଇ ହରେକୃଷ୍ଣନାଙ୍କଠାରୁ ଶୁଣିଲି ଖବର ଆସିଛି ବାଲେଶ୍ୱରରେ ଖୁବ୍ ଜୋରରେ କାମ ଚାଲିଛି,—'ପରମିଟ୍ କୋଠି' ପୁଲିସ୍ ଘେରି ଦେଇ ପହରା ଦେଉଛି । ନବ ଚୌଧୁରୀ ଗେରଫ୍ତାର । ଶୁଣି ବଡ଼ ଖୁସି ହେଲି, ଯାହାହେଉ ଟୁକିକୁ (ନବବାବୁଙ୍କୁ) ଟିକିଏ ବିଶ୍ରାମ ମିଳିଯିବ । ଏଣିକି ଆମଘରୁ କାହା ପାଳି ପଡ଼ିବ ଦେଖାଯାଉ ।"

୧।୯।୩୦—"ମଢ଼ିଆଙ୍କର ଖଣ୍ଡେ ଚିଠି ପାଇଲି । ଭଗବାନଙ୍କର ଅସୀମ ଦୟା । କି ଆଶ୍ଚର୍ଯ୍ୟ ପରିବର୍ତ୍ତନ ଘଟିଯାଉଛି ! ସେ ପୁଣି ଲେଖିଛନ୍ତି ବେଲୁ (ରମା ଦେବୀ) ମିନୁ (ମାଳତୀ ଦେବୀ) ଜେଲ୍ ଯିବେ । ସେମାନଙ୍କର ଭାଗ୍ୟ ଯଦି ସେମାନେ ଏପରି ମହାଯଜ୍ଞରେ ଆତ୍ମାହୁତି ଦେଇପାରନ୍ତି । ଓଡ଼ିଶାର ଭାଗ୍ୟ ବଦଳିଯିବ । ସେହି ନେଇ ମନ କେବଳ ବ୍ୟସ୍ତ ରହିଲା—ନୂତନ କଥା କଣ ହେବ ଇତ୍ୟାଦି ଇତ୍ୟାଦି ।"

୨୩।୯।୩୦—"ଖାଇସାରି 'ରାଜଯୋଗ' ପଢ଼ି ବସିଲି, ମାତ୍ର ଅଳ୍ପ ପଢ଼ିଲା ପରେ ଗୋଟିଏ ଖବରରେ ବିଚଳିତ ହୋଇପଡ଼ିଲି । ଖବର ମିଳିଲା ଯେ ହଜାରିବାଗ୍ କଂଗ୍ରେସ୍ ଅଫିସ୍ '**Raid**' ହେଉଛି ଓ ସେଥିରୁ ଅନୁମାନ, ସବୁଠି **Raid** ହେଉଥିବ କାରଣ ହଜାରିବାଗ୍‌ରେ କାମ ସେପରି ନଥିଲା, ତଥାପି **Raid**, ବୋଧହୁଏ **B & O** ସରକାରଙ୍କ ଇଲାକାରେ ଏହା ଚାଲିଛି ।

ଏ ଖବରରୁ ଚିନ୍ତା ଆସିଲାବେଳକୁ ମିନୁ ଯଦି ଧରା ହୋଇଥିବେ କଣ ହେବ ? ଅନେକ ଏହିପରି ଚିନ୍ତା କରି କରି ପରେ ଶାନ୍ତ ହେଲି । ଧରାହେଲେ ସବୁଠୁ ଭଲ

ହେବ ଏହା ସ୍ଥିର କଲି । ସେମାନଙ୍କ ପ୍ରତି କ୍ରମେ ଗୋଟାଏ ଭକ୍ତିଭାବ ଆସୁଛି । ବେଳେବେଳେ ମନରେ ଯେତେବେଳେ ବେଲୁ ପ୍ରତି ଘୃଣ୍ୟ 'ପ୍ରେମ'ର ଜାଗରଣ ହେଉଛି ସେତେବେଳେ ତାହା 'ଦେହ' ପ୍ରତି କଷ୍ଟ ହେବ, ଏହି ଚିନ୍ତାରେ ମନରେ କଷ୍ଟ ହେଉଛି, ମାତ୍ର ତାର ସେହି ପବିତ୍ର ଆତ୍ମାର ଉନ୍ନତି ଓ ବିକାଶ ଯେ ହେବ ଓ ଯାହା ହେଉଛି ଓ ସେ ବା ମୁଁ ଏ ମୃତ୍ୟୁରେ ମଲେ ଯେ ସେହି ପରମାତ୍ମାଙ୍କଠାରେ ମିଳିବାରେ ଚେଷ୍ଟାରେ ସହୋଦ୍ୟମୀ ଏ କଥା ଭାବି ଆନନ୍ଦ ହେଉଛି ।"

୨।୧୦।୩୦—"ଏଣ୍ଡେ ଚିଠି ପାଇଲି ବେଲୁଠାରୁ, ପଢ଼ି ମନଟା ଟିକିଏ ବ୍ୟସ୍ତ ହେଲା । ବୋଧ ହୁଏ ଗିରି ବା ଦୁଃଖରେ ପୂର୍ଣ୍ଣ ଚାଲିଯାଇଛି ।"

୩।୧୦।୩୦ ଶୁକ୍ରବାର—ରାତିରେ ନିଦ ନାହିଁ ହେଉଛି, ମାତ୍ର ଠିକ୍ ୩ଟା ବାଜିବାକୁ ୫।୧୦ ମିନିଟ୍ ଥାଇ ନିଦ ଭାଙ୍ଗୁଛି । ଏଥିରେ ପ୍ରଭୁଙ୍କର ଅପାର କରୁଣା ସ୍ପଷ୍ଟ ଅନୁଭବ କରୁଛି, କାରଣ ଯେତେ କ୍ଳାନ୍ତ ହୋଇ ଶୋଇ ପଡ଼ିଲେ ମଧ୍ୟ ଠିକ୍ ସେହି ସମୟରେ ସେ ଉଠାଇ ଦେଉଛନ୍ତି ।

ଆଜି ସକାଳୁ ବେଶ୍ ଶୀତ ଶୀତ ଲାଗୁଛି । ଆକାଶ ପରିଷ୍କାର । ପଶ୍ଚିମ-ଉତ୍ତର କୋଣରୁ ସୁଲୁସୁଲିଆ ଥଣ୍ଡା ପବନ ଆସୁଛି । କାକର ପଡ଼ୁଛି । ଠିକ୍ ଶରତ୍‌କାଳ । ବେଶ୍ ଲାଗୁଛି । ନିତ୍ୟକର୍ମ ସାରି ବାହାରେ ଯାଇ କିଛିକ୍ଷଣ ବୁଲିଲି ।

ମିନୁର ଆଜି ଏଠାକୁ ଆସିବା ଖବର ଗୋଟାଏ କାଲି ପାଇଥିଲି, ସେଥିପାଇଁ ଅବଶ୍ୟ ମନ ଟିକିଏ ଉଦ୍‌ବେଗ୍ନ ଥିଲା । ତାଛଡ଼ା ଏ ଶାନ୍ତିପୂର୍ଣ୍ଣ ପ୍ରାତଃକାଳଟି ଅନେକ ପୁରୁଣା କଥା ମନକୁ ଆଣିଲା । ପ୍ରଥମତଃ ମନେପଡ଼ିଲା, ମୋର ସେହି ୧୯'୫ରେ ବେରାମ ସମୟରେ ଯେଉଁ ସମସ୍ତ ଦୃଶ୍ୟ ବେହୋସ୍ ଅବସ୍ଥାରେ ଦେଖିଥିଲି କେତୋଟି ସେଥିରୁ ମନେଅଛି, ଅନେକଗୁଡ଼ିଏ ସତ୍ୟ ହେଲାଣି :—

୧—ଝୁଲ (ନବବାବୁ)ର ଘରଉଁଠାରେ ଖୁସି ବାହାହେବା,

୨—ଗାନ୍ଧୀଜୀଙ୍କ ସଙ୍ଗେ ଏକାଠି ସମୁଦ୍ରରେ ପହଁରିବା,

୩—ବେଲୁଠାରୁ (ରମା ଦେବୀଙ୍କଠାରୁ) ବିଚ୍ଛିନ୍ନ ହେବା, ହୁଏତ ତାର ମୃତ୍ୟୁ ବା କାରାବାସ,

୪—ବୁଲୁ (ମନମୋହନ ଚୌଧୁରୀ) ଚୁନା (ଅନ୍ନପୂର୍ଣ୍ଣା)ଙ୍କୁ ଧଓଟି ଚଢ଼େଇ ଛୁଆ ଭାବି ଏକାକୀ ଦୁନିଆରେ କିଛିକାଳ ପାଇଁ ଆମେସବୁ ଛାଡ଼ି ଦେଇଯିବା,

୫—ବନ୍ଧୁତ ଝଙ୍କା ଦେଶକାମ ପାଇଁ ମୋ ହାତକୁ ଅସିବ ତଥାପି ଝଙ୍କା ପାଇଁ ବ୍ୟାକୁଳ ହେବ ।

ଏଥିରୁ ୧, ୨ ଓ ୫ ଏ ସମସ୍ତ ଅବସ୍ଥା ଘଟିଗଲାଣି, ୩ ଓ ୪ ବେଲୁ ଜେଲ୍ ଗଲେ ହୋଇପିବ ପରା, କିମ୍ବା ଏଠାକବେଳେ ଯଦି ମଦ୍ଯୋଏ ତାହେଲେ ମଧ୍ଯ ଘଟିପିବ, ୪ ଟି ଘଟିବାର ସୂଚନା ମିଳିଲାଣି, ବୋଉ ମଧ୍ଯ ସମସ୍ତଙ୍କୁ ଛାଡ଼ି ପୁଣି ଗଲାଣି । ଦେଖାଯାଉ ପ୍ରଭୁଙ୍କର ଇଚ୍ଛା କଣ । ଅଳ୍ପର ଟୋଟିଏ ଦୃଶ୍ୟ ଅଛୁ, ଘଟିବ କି ନାହିଁ ଦେଖାପିବ !"

୧।୧୧।୩୦—ଏ ଦିନଟା ଅନେକ ମନେ ରହିବ । ଏକେ ଏହି ଦିନ ବେଲୁର ଜୀବନ ସଙ୍ଗେ ମୋର ଜୀବନ ଏ ସସାରରେ ସଯୁକ୍ତ ହୋଇଥିଲ, ସେ ଅଜିକି ୧୬ ବର୍ଷର କଥା । କିଏ ଜାଣିଥିଲା ଅଜି ପୁଣି ସେହିଦିନ ଅଲ୍ଟଥରେ ବେଲ୍ର ଜୀବନ ସଙ୍ଗେ ଘନିଷ୍ଠତର ସଯୋଗ ହୋଇପିବ !

ଆଜି ସନ୍ଧ୍ୟା ୪ଟା ପରେ ଗାଧୋଇ ବୁଲୁଛି, ଯଦୁମଣି ଦଉଡ଼ିଆସି ଖବର କାଗଜ ଦେଖାଇ ଖବର ଦେଇଗଲା, ବେଲୁ ଗ୍ରେପ୍ତାର ହୋଇଛୁ (ସ୍ବେ ରମା ଦେବୀଙ୍କ ପ୍ରଥମ ଆରେଷ୍ଟ ) । ଅନେକ ଦିନର ସଞ୍ଚିତ ବାସନା ଆଜି ସଫଳ ହେଲା । ହଠାତ୍ ମନରେ ଟିକିଏ ଗୁଡ଼ାଏ ଆସିଗଲା, ମୂଳପଟ ଆନନ୍ଦ, ଗୌରବ ଓ ଅହଂକାର, କଷ୍ଟ ଇତ୍ୟାଦି । ଆନନ୍ଦ ତ ଉଚ୍ଛଳର କାମ୍ଫ ଦେଲା—ପରନ୍ତୁ ବେଲ୍ ପ୍ରଭୃତିଙ୍କ ସୌଭାଗ୍ୟ ଦେଲା । ଗାନ୍ଧୀଜୀଙ୍କ ସେନା ହୋଇ ଆତ୍ମବଳ ପଥରେ ଅଗ୍ରସର ହେଉଛନ୍ତି । ଗୌରବ ଓ ଅହଂକାର ନିଜର ସ୍ତ୍ରୀ ନିଜର ଭାଇ ନିଜର ଭଉଣୀ ଜେଲ୍ରେ, କଷ୍ଟ,—ବେଲ୍ ଜେଲ୍ କଷ୍ଟ ସହିପାରିବ କି ନାହିଁ, ବୁଲୁ ଚୁନା କଣ କରିବେ କିପରି ଚଳିବେ ।

ଝୁକର (ନନ୍ଦବାବୁଙ୍କର) ଖଣ୍ଡେ ଚିଠି ମଧ୍ଯ ପାଇ ସମ୍ବାଦ ପକ୍କା ହୋଇଗଲା,—ମୋର ଶାଶୁ ଆମ ଘରେ ଆସି ରହିବା ସ୍ଥିର କରିଛନ୍ତି । ଯଦି ତାହାହୁଏ ଖୁବ୍ ଭଲ ହେବ,—ବୋଉ ସେ ଦୁହେଁ ରହିବେ, ବଡ଼ ମଜା,—ଦୁହେଁ ନିଜର ପିଲାଙ୍କୁ ଜେଲ୍କୁ ପଠାଇ ବେଶ୍ ରହିବେ ।

୧୯୨୫ରେ ଜର ସମୟରେ ମୋର ସ୍ବପ୍ନ କଥା ଗୋଟି ଗୋଟି ହୋଇ ସଫଳ ହେଲପରି ଲାଗୁଛି । ସେହି ବେହୋସ୍ ଅବସ୍ଥାରେ ମୁଁ ବେଲୁ ମଯୋଉଛି ବୋଲି ସନ୍ଦେହ କରି ଝୁକକୁ ପଚାରୁଥିଲି, ମାଈ ମେ ମନା କରୁଥିଲ, ଏବଂ ପିଲା ଦୁଇଟାଙ୍କ ପାଇଁ ଭାରି ବ୍ୟସ୍ତ ହୋଇଥିଲି ବୋଲି ସମସ୍ତେ କହୁଥିଲେ, ତା ବୋଧହୁଏ ଏହି ଘଟଣାର ପୂର୍ବାଭାସ । ଆଗରୁ ଝୁକର ବିବାହ, ଗାନ୍ଧୀଜୀଙ୍କ ସଙ୍ଗେ ସମୁଦ୍ରରେ ପହଁରିବା

ଓ ଘର ଛାଡ଼ି ଅନ୍ୟତ୍ର ବାସ କରିବା (ହଜାରିବାଗ୍ ଜେଲ୍) ଏ ସମସ୍ତ ଘଟିଯାଇଛି । ଗୋଟାଏ କଥା ବାକି ଅଛି, ଗାନ୍ଧିଜୀ ଆସି ଆମ ଘରେ ଥିଲେ, ତାଙ୍କର ଚର୍ଚ୍ଚା ମୋର ମାମୁଁ, ବେଲ୍ ପ୍ରଭୃତି କରୁଥିଲେ, ଦେଖାଯାଉ ସେଇଟା ସତ୍ୟ ହେଉଛି କି ନାହିଁ । ଆଉ ଗୋଟାଏ କଥା ମଧ୍ୟ ଫଳିଗଲାଣି ଟଙ୍କା ହଜାର ହଜାର ମୋ ହାତକୁ ସାଧାରଣ ପାଣି ସ୍ୱରୂପ ଆସିବ ଏବଂ ତଥାପି ମୁଁ ଟଙ୍କା ପାଇଁ ବ୍ୟସ୍ତ ହେବି—ଦାସେ ଆପଣଙ୍କ ମୁଖରୁ ପରେ ଏସବୁ ରିଲିଫ୍ ଟଙ୍କା ଓ ଅନ୍ୟାନ୍ୟ ଚାନ୍ଦା ଉଠାଇବା ସମ୍ପର୍କରେ ଫଳି ଯାଇଛି ।

ବେଲୁର ଗ୍ରେପ୍ତାର ସଙ୍ଗେ ସଙ୍ଗେ ମୁଁ ୮ ତାରିଖ ଓ ୯ ତାରିଖମାନଙ୍କରେ ଅଦ୍ଭୁତ ସ୍ୱପ୍ନ ସବୁର ସାମଞ୍ଜସ୍ୟ ଦେଖୁଛି ଓ ସେ ଦୁଇ ଦିନଦିନ ମନ ମଧ୍ୟ ବଡ଼ ଉଦ୍‌ବିଗ୍ନ ଥିଲି ଓ ଅନେକଦିନୁ ମନରେ ଗୋଟାଏ ଧାରଣା ଜାତ ହୋଇଥିଲା ଯେ ଦିନେ ହଠାତ୍ ବେଲୁର ଗ୍ରେପ୍ତାର ଖବର ମତେ ଖବରକାଗଜରୁ ବନ୍ଧୁମାନେ ଦେଖେଇଦେବେ ।"

୧୨।୧୧।୩୦—"କାଲି ସନ୍ଧ୍ୟାରେ ବେଲୁର ଗ୍ରେପ୍ତାରରେ ମତେ Congratulate କରିବାକୁ ଅସିବା ସମୟରେ ବୃଦ୍ଧ ଗୁରୁଜୀ ନିବାରଣ (ନିବାରଣ ଚନ୍ଦ୍ର ଦାସଗୁପ୍ତ, ପୁରୁଲିଆ ଜିଲାସ୍କୁଲ୍‌ର ହେଡ୍‌ମାଷ୍ଟର, ତାଙ୍କ ଝିଅ ବାସନ୍ତୀ ଦେବୀ ଓ୍ୱାର୍ଦ୍ଧା ମହିଳାଶ୍ରମର ପରିଚାଳିକା ଥିଲେ '୧୯୩୦-୪୨, ୧୯୪୫-୪୬ରେ ପୁରୁଲିଆ ନିମ୍‌ଡିହିରେ ଆଶ୍ରମ କଲେ, ବାପ ଝିଅ ଦହେଁ ପ୍ରସିଦ୍ଧ କର୍ମୀ) ହଠାତ୍ ଆସି ଦଣ୍ଡବତଟାଏ କରି କହିଥିଲେ "ସସ୍ତ୍ରୀକ ଧର୍ମମାଚରେତ୍", ମତେ ଭାରି ଲାଜ ମାଡ଼ିଥିଲା × × ଯାହାହେଉ ସେଇଟା ମତେ ନୁହେଁ, ସ୍ତ୍ରୀ ଜାତିର ଆଦର୍ଶକୁ । ଆଉ ଗୋଟିଏ କଥା, (ତୁଳସୀ) ରାମାୟଣରେ ଦୁଇଟି ଚିଠୋଟି ଧାଡ଼ି ବଡ଼ ସୁନ୍ଦର ସ୍ୱାମୀ ସଙ୍ଗେ ଧର୍ମ ଆଚରଣ କରିବା କଥା ଲେଖାଅଛି × × ×"

୨୨।୧୧।୩୦ ଶନିବାର ୨୩।୧୧।୩୦ ରବିବାର—"ଶନିବାର ସକାଳୁ ଉଠି ରାମାୟଣ ପଢ଼ୁଛି, ହଠାତ ଗୋଟାଏ ଅଦ୍ଭୁତ ଜାତିସ୍ୱ ପତଙ୍ଗ ଅସି ରୁହିପୋଖରୀ ଉଁ ଉଁ ଶବ୍ଦ କରି ଦୁଇ ତିନିଥର ଏପରି ବୁଲି ଚାଲିଗଲା । କଟକର ସମ୍ବାଦ କିଛି ପାଇ ନ ଥିଲି, ମନ ଟିକିଏ ବ୍ୟଗ୍ର ଥିଲା, ହଠାତ୍ ଭାବିଲି କଣ ନୂଆ ସମ୍ବାଦ କିଛି ଆସିଛି କି ? ତାର ସୂଚନା ଏ ଦେଇଗଲା କି ? ଏହା ଭାବି ତ ଥିଲି, ସତକୁ ସତ, ଗାଧୋଇ ବସିଛି, ରାମପ୍ରସାଦ ଖବର ଦେଇଗଲେ ୧୬ ତାରିଖ 'ଜହର୍ ଦିବସ' ଦିନ କଟକରେ ଖୁବ୍ ମାଡ଼ଗୋଳ ଭାରି ହୈ ଚୈ ହୋଇଛି, ବୁଲ୍ ମଧ୍ୟ ମାଡ଼ ଖାଇଛି, arrested ମଧ୍ୟ ହୋଇଥିଲା, ମାଡ଼ ଦାଗ ଅଛି ମାତ୍ର ପରେ ତାକୁ ଛାଡ଼ି ଦେଇଛନ୍ତି । ଲୋକେ ମଧ୍ୟ ଖୁବ୍ ନ ଡରି ସଭା କରିଛନ୍ତି । ମନଟା ଭାରି ଖୁସି ହୋଇଗଲା । ଆଜିର

ମଧ୍ୟ ଶୁଣିଲି, ବେଲୁକୁ ୭ ମାସ, ୨୦୦ ଟଙ୍କା ବା ଆଠ ମାସ ହୋଇଛି । ମନର ଶୃଙ୍ଖଳା ତ ବେଲୁ ଗ୍ରେପ୍ତାର ହେଲାଦିନୁଁ ଆରମ୍ଭ ହୋଇଥିଲା, ଏ ଖବର ପାଇ ଟିକିଏ ବଢ଼ିଗଲା । ଗାଧୁଆ ପରେ Fundamental Problems of Marxism ପଢ଼ିଲି । ଖାଇସାରି ୩ ନମ୍ବରକୁ ଗଲି, ସେଠାରେ କଣୋଗୋବାବୁଙ୍କ ସ୍ତ୍ରୀ ଏ ସମସ୍ତ ଚିଠିରେ ଲେଖିଥିଲେ ତା ପଢ଼ିଲି । ଅନ୍ୟାନ୍ୟମାନଙ୍କ ସଙ୍ଗେ ଗଳ୍ପ କରୁ କରୁ ୩ଟା ବାଜିଗଲା । ଅପରାହ୍ନରଟା ଗଲା, ସୂତାକାଟା କ ବହୁଲେଖା ବନ୍ଦ । ତେଣୁ ଫେରି ଗାଧୁଆ ବୁଲାବୁଲି କରି ଖାଇ ହିନ୍ଦୀ ଅନୁବାଦ ଟିକିଏ କଲି ସତ୍ୟ, ମାତ୍ର ମୁଣ୍ଡଟା କାହିଁକି ଭାରି ଲାଗୁଛି, ପ୍ରାର୍ଥନା ପରେ ଶୋଇ ପଡ଼ିଲି×××"

[ଗ୍ରେଟିଆ ଡାଇରୀଟିରେ ତାଙ୍କ ବ୍ୟକ୍ତିତ୍ୱ ଓ ଚରିତ୍ର ଆପେ ଫୁଟି ଉଠିଛି, ତାଙ୍କ ମନର ନାନାଭାବ ପ୍ରତିଫଳିତ ହୋଇଛି । ଗାନ୍ଧୀ ନୀତିରେ ତାଙ୍କର ଅଟଳ ବିଶ୍ୱାସ ଥିଲା ଓ ସେ ବିଶ୍ୱାସ ଥିଲା ନିର୍ଦ୍ୱନ୍ଦ୍ୱ, ଐକାନ୍ତିକ, ତାଙ୍କ ମନରେ ଦ୍ୱିଳୋମାତ୍ର ସଂଶୟ ନ ଥିଲା । ସେହିପରି ଥିଲା ତାଙ୍କର ଈଶ୍ୱର ବିଶ୍ୱାସ । ଗୀତାର ଆଦର୍ଶ ଅନୁଯାୟୀ ସେ ଆପଣାକୁ ଗଢ଼ୁଥିଲେ । ସେ ସତ୍ୟର ସ୍ୱପ୍ନରେ ଆବଦ୍ଧ ନ ଥିଲେ, ପରିସ୍ଥିତି ପ୍ରତି ସଚେତ ଥିଲେ, ନିଜର ମଣିଷ ମନର]

"ଗୃହକର୍ତ୍ତା ଗ୍ରହଣ ମହାତ୍ମା ଗାନ୍ଧୀଙ୍କ ନୀତି ଆଦର୍ଶକୁ ଗ୍ରହଣ କଲାଦିନୁ ସଙ୍କଳ୍ପ ଥିଲା ସର୍ବତୋଭାବେ ଆପଣାକୁ, ଆପଣାର ପରିବାରକୁ ଦେଶର ମଙ୍ଗଳ ପାଇଁ ତ୍ୟାଗଯଜ୍ଞରେ ଆହୁତି ଦେବାକୁ । ସେ ତ୍ୟାଗ, ଆଦର୍ଶରେ ସୀମା ନ ଥିଲା, ଯେପରି ସତ୍ୟାଗ୍ରହୀଙ୍କ ପ୍ରାର୍ଥନା ସଙ୍ଗୀତରେ ଅଛି,

"ସତ୍ୟ ଅନୁସନ୍ଧାନେ ଆମ୍ଭର ସଂଗ୍ରାମ
ଜୀବନ ବଳିଦାନେ ଆମ୍ଭର ବିଶ୍ରାମ ।"

ରମା ଦେବୀଙ୍କ ଗିରଫ ସମ୍ବାଦ ଶୁଣି ପଣ୍ଡିତ କୃପାସିନ୍ଧୁ ହୋତା ୧୨।୧୧।୩୦ରେ ଯେତେବେଳେ ଗୋପବାବୁଙ୍କୁ କହିଲେ "ଏହାକୁ ଯେ କହନ୍ତି ତ୍ୟାଗ !" ଭାବବିହ୍ୱଳ ହୋଇ ଗଦ୍ ଗଦ୍ ହୋଇଗଲେ । ସେ ସମ୍ପର୍କରେ ୧୨।୧୧।୩୦ର ଡାଏରୀରେ ଗୋପବାବୁ ଲେଖିଛନ୍ତି,

"ମାତ୍ର ସେ ବୁଝୁନାହାନ୍ତି ଯେ ତ୍ୟାଗ ନୁହେଁ, ତ୍ୟାଗରେ ପୂର୍ବାଭାସ, ନିର୍ଭୀକତାର ପ୍ରଥମ ସୋପାନ ମାତ୍ର । ତ୍ୟାଗର ଚରମ ସୀମା ଅଦ୍ଭୁତ ସୁନ୍ଦର । ତାର ଅଲୋକ ଚତୁଃପାର୍ଶ୍ୱସ୍ଥ ସମସ୍ତଙ୍କ ଭିତରୁ ମଧ୍ୟ ଅନ୍ଧକାର ପାପ ଦୂର କରି ଦେବ, ନିଜର କଳଙ୍କ ତ୍ୟାଗରେ ପୋଡ଼ି ଜଳିସିବା ସଙ୍ଗେ ସଙ୍ଗେ ତା ସମ୍ପର୍କରେ ଯେ ଆସିବେ ତାଙ୍କର ମଳିନତାକୁ ମଧ୍ୟ ଧୋଇ ସଫା କରିଦେବ ।

ତାଏରୀରୁ ଜଣାପଡ଼େ, ସେ ପ୍ରତିଦିନ ଗୀତା, ଭାଗବତ, ରାମାୟଣ ପଢ଼ୁଥିଲେ । ଅନେକ ସମୟରେ ବାଇବେଲରୁ ପଢ଼ୁଥିଲେ । ଭଗବାନ୍ ବୁଦ୍ଧଙ୍କ ବିଷୟରେ ପଢ଼ୁଥିଲେ । ଗାନ୍ଧୀ, ଲେନିନ୍, ଶ୍ରୀ ରାମକୃଷ୍ଣ, ବିବେକାନନ୍ଦ, ଶ୍ରୀ ଅରବିନ୍ଦଙ୍କ ଉପଦେଶାବଳୀ ପଢ଼ୁଥିଲେ । ନାନା ସଦ୍‌ଗ୍ରନ୍ଥ ହିଁ ତାଙ୍କର ସେତେବେଳେ ପାଠ୍ୟ ହୋଇଥିଲା ଓ ତହିଁରେ ଯେଉଁ ନୀତି ଆଦର୍ଶ ଅଛି, ତାକୁ ଜୀବନର ବାସ୍ତବ କ୍ଷେତ୍ରରେ କିପରି ପ୍ରୟୋଗ କରିହେବ—ସେ ବିଷୟରେ ସେ ବହୁତ ଭାବୁଥିଲେ । ତ୍ୟାଗ ବିଷୟରେ ତାଙ୍କର ଧାରଣା ଶାସ୍ତ୍ରୀୟ ପାରମାର୍ଥିକ ଆଦର୍ଶ ଉପରେ ପ୍ରତିଷ୍ଠିତ ଥିଲା । ତ୍ୟାଗ ଫଳରେ ବ୍ୟକ୍ତିକୁ ଯେଉଁ ଆନନ୍ଦ ମିଳିବ ତା ବୈଷୟିକ ନୁହେଁ, ଆଧ୍ୟାତ୍ମିକ । ତ୍ୟାଗ ସାଧନା କାର୍ଯ୍ୟରେ ଅଗ୍ରସର ହେଉ ହେଉ ନିଜ ମନରେ ମମତାର ବନ୍ଧନ ଯୋଗୁଁ କେତେବେଳେ କେଉଁ ସାମୟିକ ଦୁର୍ବଳତା ଆସିଲା ତାକୁ ସେ ବାଛି ପକାଉଥିଲେ । ତା ଉପରକୁ ଉଠିବାକୁ ଚେଷ୍ଟା କରୁଥିଲେ ଓ ତାକୁ ଡାଏରୀରେ ଟିପୁଥିଲେ । ନୀତି ଆଦର୍ଶକଥା ମନେପକାଇ ନିଜକୁ ସେ ବୁଝାଉଥିଲେ, କାର୍ଯ୍ୟରେ ମନୋନିବେଶ କରୁଥିଲେ ଓ ମନର ଉଦ୍‌ବେଗକୁ ଭୁଲୁଥିଲେ ।

କିନ୍ତୁ ମଝିରେ ମଝିରେ ରମା ଦେବୀଙ୍କ ପାଇଁ ତାଙ୍କର ଯେଉଁ ଉଦ୍‌ବେଗ ହେଉଥିଲା, ପୁଣି "ଚଢ଼େଇଛୁଆ ବାଉଁଟିଙ୍କ ପାଇଁ" ଅର୍ଥାତ୍ ପୁଅ ଝିଅଙ୍କ ପାଇଁ, ଭାଇଭାଉଜଙ୍କ ପାଇଁ, ଡାଏରୀରେ ଅଳ୍ପକେ ଲେଖା ହୋଇଥିବା ସେହି ଧାଡ଼ିଗୁଡ଼ିକ ସେହି ତ୍ୟାଗୀ, ସଂଯମୀ, ସାଧକ ମନର ମନୁଷ୍ୟ-ସୁଲଭ ସଂଘର୍ଷ ମର୍ମସ୍ପର୍ଶୀ ଚିତ୍ର ଆଙ୍କିଦିଏ ।

ଡାଏରୀରେ ସେଗୁଡ଼ିକ ପ୍ରାଧାନ୍ୟ ପାଇନାହିଁ, ପ୍ରାଧାନ୍ୟ ପାଇଛି ଅନ୍ୟ କଥା । ବିଶେଷତଃ କେଉଁଦିନ କି ବହି ପଢ଼ି ସେ ବିଷୟରେ ଭାବୁ ଭାବୁ ତାଙ୍କ ମନରେ କି ବିଚାର ଆସୁଥିଲା ସେଗୁଡ଼ିକ ।

ଗାନ୍ଧୀ-ନୀତିରେ ତାଙ୍କର ଅଟଳ ବିଶ୍ୱାସ ଥିଲା ଓ ସେ ବିଶ୍ୱାସ ଥିଲା ନିର୍ଦ୍ୱନ୍ଦ ଓ ଐକାନ୍ତିକ । ତାଙ୍କ ମନରେ ତିଳେ ମାତ୍ର ସନ୍ଦେହ ନ ଥିଲା । ଆନ୍ଦୋଳନ ବିଷୟରେ ଗାନ୍ଧୀଜୀଙ୍କ ନୀତି ସ୍ପଷ୍ଟ ଥିଲା । ତାକୁ କାୟମନୋବାକ୍ୟେ ଅନୁସରଣ କରିବା ହିଁ ତାଙ୍କର ସଂକଳ୍ପ ଓ କାର୍ଯ୍ୟ ଥିଲା । ଜେଲ୍‌ରେ ଥିଲାବେଳେ ଗାନ୍ଧୀଜୀଙ୍କ ଲେଖା ସବୁ ଠିକିନିଖି କରି ପଢ଼ି, ସେ ବିଷୟରେ ଭାବି, କେଉଁ ବିଷୟରେ ଗାନ୍ଧୀଜୀ କିପରି କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ତାକୁ ଭଲ କରି ଜାଣିବାକୁ, ମନେ ରଖିବାକୁ ତାଙ୍କୁ ଅବସର ମିଳୁଥିଲା । ଗୀତା, ଭାଗବତ, ରାମାୟଣ ଓ ବାଇବେଲ୍ ପଢ଼ୁଥିଲାବେଳେ ଓ ଅନ୍ୟାନ୍ୟ ସଦ୍‌ଗ୍ରନ୍ଥ ପଢ଼ୁଥିଲାବେଳେ ସେ ସେହିକଥା ମନେ ପକାଉଥିଲେ । ଲେନିନ୍‌ଙ୍କ ବିଷୟରେ

ପଢ଼ିଲାବେଳେ, ଗାଇଲାବେଳେ ବି ସେ ସେହିକଥା ଭାବୁଥିଲେ । କେଉଁ ବିଷୟରେ ଦୁହେଁ ଏକମତ, କେଉଁଥିରେ ଭିନେ, ଯୋଡ଼ିକରୁ କାହିଁକି ସେ ଗାନ୍ଧୀମତକୁ ଗ୍ରହଣ କରୁଛନ୍ତି ତା ବି ଭାବୁଥିଲେ । ଏ ବିଷୟରେ ବି ଡାଇରିରେ ଟିପା ଅଛି । ମହାତ୍ମା ଗାନ୍ଧିଙ୍କୁ ସେ ଦେବତା ପରି ଜ୍ଞାନ କରୁଥିଲେ । ରାଜେନ୍ଦ୍ର ପ୍ରସାଦଙ୍କ ପରି ଯେଉଁମାନଙ୍କୁ ମହାତ୍ମାଜୀ ଗଢ଼ିଥିଲେ ବୋଲି ସେ ଭାବୁଥିଲେ, ଜେଲ୍‌ରେ ସେମାନଙ୍କୁ ଦେଖି ସମ୍ମାନ କରୁଥିଲେ ଓ ତାଙ୍କଠି କି ମହତ୍ତ୍ୱ ଥିବ, ଏକଥା ଭାବୁଥିଲେ । ତାଙ୍କ ସ୍ୱପ୍ନରେ ବି ଗାନ୍ଧୀ । "ମୁଁ ଗାନ୍ଧୀଙ୍କ ସଙ୍ଗେ ସମୁଦ୍ରରେ ପହଁରୁଛି", ଏଇଆ ସେ ୧୯୨୫ରେ ଝାଇଫ୍‌ଏଡ଼ରେ ପଡ଼ିଥିଲାବେଳେ ଥରେ ସ୍ୱପ୍ନ ଦେଖିଥିଲେ ଓ ସେହିକଥା ମନେ ପକାଉଥିଲେ । ସେକାଳରେ ଗାନ୍ଧୀଙ୍କ ଆଡ଼କୁ ତାଙ୍କର ସମୁଦାୟ ଚିତ୍ତବୃତ୍ତିର ଝୁଙ୍କ ଏକଲବ୍ୟଙ୍କର ଆଦ୍ୟ ସାଧନା କଥା ମନେ ପକାଇଦିଏ ।

ଜେଲ୍‌ର ବାତାବରଣ ଭିତରେ ସେ ଏକପ୍ରକାର ଆଧ୍ୟାତ୍ମିକ ବାତାବରଣ ଅନୁଭବ କରୁଥିଲେ । ସତ୍ୟାଗ୍ରହର 'ଏକାଦଶବ୍ରତ' ପାଳନ କରୁଥାନ୍ତି, ସେଥିପାଇଁ ଆପ୍ରାଣ ଚେଷ୍ଟା କରୁଥାନ୍ତି । ଶରୀର ଶ୍ରମ ସହିତ ଶାସ୍ତ୍ରାଧ୍ୟୟନ ଚାଲିଥାଏ । ଉନ୍ନତ ଚନ୍ତା ଚାଲିଥାଏ । ଦୁଇଓଳି ପ୍ରାର୍ଥନା । କବୀରଙ୍କ ଭଜନ, ସହ-ବନ୍ଦୀମାନଙ୍କର କେତେବେଳେ ତୁଳସୀ ରାମାୟଣ ଅବୃତ୍ତି, କେତେବେଳେ ନାନକଙ୍କ ଦୋହା ଭଜନ, କେତେବେଳେ ହିନାଥମେଳା, ସେ ଅନନ୍ଦରେ ବସି ଶୁଣନ୍ତି ।

ଅନ୍ୟାନ୍ୟ ରାଜନୈତିକ କର୍ମୀଙ୍କ ସଙ୍ଗେ ନାନା ପ୍ରକାର ଆଲୋଚନା ବି ହେଉଥିଲା, ରାଜନୈତିକ ଅଲୋଚନା ଓ ସଭା ହେଉଥିଲା । ସେ ବିଷୟରେ ବି ଡାଇରିରେ କିଛି କିଛି ଟିପା ଅଛି । ସାଫଲ୍ୟର ଆତ୍ମପ୍ରସାଦର ସ୍ୱପ୍ନିଳ ଭାବ-ପ୍ରବଣତାରେ ଭାସିଯିବା ସେ ଜୀବନରେ କେବେ ପସନ୍ଦ କରୁ ନ ଥିଲେ । ଉଦ୍ଦେଶ୍ୟ ଥିଲା,—ଆଦର୍ଶରେ ଅବିଚଳିତ ହେବେ. ଆଦର୍ଶକୁ ରୂପାୟିତ କରିବାକୁ କାର୍ଯ୍ୟ କରୁଥିବେ, ସେ କାର୍ଯ୍ୟରେ କୁଶଳୀ ହେବେ ଓ 'Practical' ହେବେ । ତାଙ୍କ ସମୁଦାୟ ଦୃଷ୍ଟିଭଙ୍ଗୀ ସେହିପରି । ସ୍ୱାଧୀନତା ଆନ୍ଦୋଳନ ବିଷୟରେ ବି ସେହିପରି । ତେଣୁ ନୀତି ଓ ଅନୁଷ୍ଠାନର କାର୍ଯ୍ୟରେ ସେ ଆଗ ଖୋଜୁଥିଲେ ଦୋଷତ୍ରୁଟି କେଉଁଠି ରହିଲା, କାହିଁକି ରହିଲା, କିପରି ତା ଶୁଧୁରିବ । ଯେଉଁସବୁ ଘଟଣା ପ୍ରତି ତାଙ୍କର ଦୃଷ୍ଟି ଯାଉଥିଲା, ତହିଁରେ ସାନ ବଡ଼ ଭେଦ ନ ଥିଲା, ବିଚାର ହେଉଥିଲା ଘଟଣାର ତାତ୍ପର୍ଯ୍ୟର ଗୁରୁତ୍ୱ ଅନୁସାରେ । ସେ 'ଏକାଦଶ ବ୍ରତ'ର 'ଅସ୍ୱାଦ' ବ୍ରତ ପାଳିବାକୁ ଚେଷ୍ଟା କରୁଥିଲେ, ଯେତେବେଳେ ଦେଖୁଥିଲେ କେଉଁଦିନ ତାଙ୍କର ଅଧିକ ଖାଇବାକୁ ଇଚ୍ଛା ହେଉଛି, କି ସୁଆଦିଆ ଖାଇବାକୁ ଇଚ୍ଛା ହେଉଛି, ବୁଝୁଥିଲେ ଯେ ସ୍ୱେ ଦୁର୍ବଳତା, ସ୍ଖଳନ, ନିଜକୁ ଚେତାଉଥିଲେ, ଡାଇରିରେ ଟିପୁଥିଲେ । ସେପରି, ଅନ୍ୟ ସହକର୍ମୀଙ୍କ ସମ୍ପର୍କରେ ମଧ୍ୟ । ସେ କହିବେ, ଚେତାଇଦେବେ, ଅନ୍ୟ ଜଣକ ଶୁଣୁ କି

ନ ଶୁଣୁ, ମେଢକ, ତା'ପରେ ତା ଡାଇରିରେ ଟିପା ହେଲା, ଅନ୍ୟର ଦୋଷ ଟିପି ରଖିବା ପାଇଁ ନୁହେଁ, ନିଜକୁ ଚେତାଇବା ପାଇଁ ଯେ ନିଜର ଆଉ ଏପରି ଭୁଲ୍ ନ ହେଉ । ସେ କଠୋରଭାବେ ବ୍ରହ୍ମଚର୍ଯ୍ୟ ପାଳୁଥିଲେ, ଖୋରାକ କମାଉଥିଲେ ବା ବଦଳାଉଥିଲେ, ମନକୁ ଚେତାଉଥିଲେ । ସେ ଥିଲେ ସଂସାରରେ ଯେପରି ଅଲଗା ଥାନ୍ତି । ସଫା ଲୋକ, ସବୁଥିରେ ପ୍ରକୃତରେ ନିର୍ମଳ, ଲୁଚାଇବାକୁ କିଛି ନାହିଁ । ଗୁଡ଼ାଖୁରେ ଦାନ୍ତ ଘଷିବା ଅଭ୍ୟାସ ତାଙ୍କର ବହୁଦିନୁଁ ଥିଲା, ସେହି ଗୋଟିଏ ଅମଲ ରହିଯାଇଥିଲା, ତାକୁ ଛାଡ଼ିବାକୁ ଇଚ୍ଛା ଥିଲେ ବି ପାରୁ ନ ଥିଲେ, କିନ୍ତୁ ଚେଷ୍ଟା ଚାଲିଥିଲା, ଯେତେବେଳେ ଘଷି ଦେଉଥିଲେ, ଯେତେବେଳେ ମନେ ପକାଉଥିଲେ, "ଏଇ ମୋର ଦୁର୍ବଳତା, ଏଇଠି ମୁଁ ବିଫଳ ହେଲି", ଡାଇରିରେ ଟିପୁଥିଲେ । ତାପରେ ସେହି ଜେଲ୍ ରହଣି ଭିତରେ ଶପଥ ନେଲାପରି କଠୋର ସଂକଳ୍ପ କରି ୨-୧-୩୧ରେ ତାକୁ ଛାଡ଼ିଲେ ।

ଜେଲ୍‌ରେ ଅନ୍ୟାନ୍ୟମାନଙ୍କ ସଙ୍ଗେ ରାଜନୈତିକ ଆଲୋଚନା ବେଳେ ବି ଆନ୍ଦୋଳନ କାର୍ଯ୍ୟରେ କେଉଁଠି କିଛି ଦୋଷତ୍ରୁଟି ହେଲେ, ଗାନ୍ଧୀ-ନୀତିର କଷଟିରେ କଷି ସେହି ଆଲୋଚନା କରିବାକୁ ଓ ଶୁଣିବାକୁ ତାଙ୍କୁ ଭଲ ଲାଗୁଥିଲା । ଗାନ୍ଧୀନୀତିରେ ଆନ୍ଦୋଳନର ବିଜୟ ସୁନିଶ୍ଚିତ, ସ୍ୱାଧୀନତା ଅବଶ୍ୟ ଆସିବ, ଅନ୍ୟାନ୍ୟ ଅନେକ ଦେଶପ୍ରେମୀଙ୍କ ପରି ତାଙ୍କର ବି ଏଥିରେ ଦୃଢ଼ ବିଶ୍ୱାସ ଥିଲା, କିନ୍ତୁ ଖାଲି ଆଶା କରି ସ୍ୱପ୍ନ ଦେଖି ସେ ସନ୍ତୁଷ୍ଟ ନ ଥିଲେ । ଆନ୍ଦୋଳନ ଚାଲିଲେ ବି ଗାନ୍ଧୀନୀତି ଅନୁସାରେ ଆଶାନୁରୂପ ସଂଗଠନ ଓ କାର୍ଯ୍ୟ ହୋଇପାରି ନାହିଁ, ଏଥିପାଇଁ ସେ ଚିନ୍ତିତ ହେଉଥିଲେ । ଖଦୀ କାମ ବିଷୟରେ ବି ସେହିପରି । ଗୋଟିଏ ନୀତିକୁ ଗ୍ରହଣ କଲାପରେ ତାକୁ ପାଳନ କରି ତାର ଉଦ୍ଦେଶ୍ୟ ସଫଳ କରିବାଲାଗି ନିଷ୍ଠାପର ଭାବରେ ଓ ଅବିଶ୍ରାନ୍ତ ଲାଗିପଡ଼ିବାକୁ ହେବ ବୋଲି ସେ ଭାବୁଥିଲେ । କାମ ହେଲା ହେଲେ, ମାନ୍ଦା ହେଲେ ସେ ସହିପାରନ୍ତି ନାହିଁ । ତାଙ୍କର ଅନ୍ୟାନ୍ୟ ସହକର୍ମୀଙ୍କ ସଙ୍ଗେ ଆଲୋଚନା ବିଷୟରେ ବି ଡାଇରିରେ କିଛି କିଛି ଟିପା ଅଛି ।

ନିରଭିମାନୀ, ନିଷ୍ଠାପର କର୍ମଯୋଗୀ, ମାନବ-ପ୍ରୀତିରେ ପରିପୂର୍ଣ୍ଣ । ଜେଲ୍ ବି ତାଙ୍କର ସାଧନା-ପୀଠ ।

# ବାର

## ୧୯୩୧—ଜେଲ୍‌ରୁ ଖଲାସ, ବିପୁଳ ସମ୍ବର୍ଦ୍ଧନା

୧୯୩୧ ମାର୍ଚ୍ଚ ୧୦ ତାରିଖ, ହଜାରିବାଗ୍ ଜେଲ୍‌ରୁ ଗୋପବାବୁ, ରମା ଦେବୀ ଓ ଓଡ଼ିଶାର ଅନ୍ୟାନ୍ୟ ରାଜନୈତିକ ବନ୍ଦୀ ଖଲାସ୍ ହେଲେ । ତାଙ୍କ ଭିତରେ ଥିଲେ ଯଦୁମଣି ମଙ୍ଗରାଜ ଓ ରାଜକୃଷ୍ଣ ବୋଷ ଆଦି । ଗାନ୍ଧୀ-ଇର୍‌ଓ୍ୱିନ୍ ଚୁକ୍ତି ହୋଇଥାଏ, ତାହା ଫଳରେ ହଜୁଟି ରାଜନୈତିକ ବନ୍ଦୀଙ୍କୁ ମୁକ୍ତି ଦିଆଯାଇଥାଏ ।

ଜେଲ୍‌ରୁ ବାହାରି ରେଲ୍‌ରେ ଓଡ଼ିଶା ଆସିଲେ । ଆଗରୁ ଖବର ଖେଳିଥାଏ, ବାଟେ ବାଟେ ରେଲ ଷ୍ଟେସନମାନଙ୍କରେ ବିପୁଳ ଜନତା, ଜୟଧ୍ୱନି ଦେଉଥାନ୍ତି, ପତାକା ଉଡ଼ାଉଥାନ୍ତି, ଫୁଲମାଳ ଧରିଥାନ୍ତି, ଶଙ୍ଖ ହୁଳହୁଳି ଶୁଭୁଥାଏ, ଲୋକେ ଭାବ-ବିହ୍ୱଳ, ଆନନ୍ଦରେ ପାଗଳ । ବୀର ଯୋଦ୍ଧାମାନେ ଫେରୁଛନ୍ତି, ନେତାମାନେ ଫେରୁଛନ୍ତି, ଦେଶର 'ଗଲ-ପୁଅ ବାହୁଡ଼ି ଆସିଛନ୍ତି', ଦେଶ ଉତ୍ସବ ପାଳୁଛି, ଆନନ୍ଦରେ ଲୁହ ଗଡ଼ାଉଛି, ଅଭ୍ୟର୍ଥନା ଜଣାଉଛି । ଆଗଦିନ ବାଲେଶ୍ୱରରେ ଓହ୍ଲାଇଥିଲେ, ଦିନେ ରହିଥିଲେ, ତାପରେ କଟକ ଆସିଲେ । ବାଲେଶ୍ୱରଠାରୁ ଓହ୍ଲାଇ ସେ ଶ୍ରୀଜଙ୍ଗ ଯାଇଥିଲେ, ବାଟରେ ହଜାର ହଜାର ଲୋକ ସମ୍ବର୍ଦ୍ଧନା ଜଣାଉଥାନ୍ତି, ଶ୍ରୀଜଙ୍ଗରେ ବିରାଟ ସଭା ହେଲା । କଟକରେ ସମ୍ବର୍ଦ୍ଧନା ଗୋଟିଏ ଅଭୂଲ ଘଟନା ହୋଇ ରହିଲା । କଟକ ସହରର ଲୋକସଂଖ୍ୟା ସେତେବେଳେ ପଞ୍ଚାବନ ହଜାର, ଦୂରରୁ ଦୂରରୁ ଗାଁ ଗଣ୍ଡାରୁ ଲୋକ ଉଠି ଆସିଥାନ୍ତି । କଟକ ଷ୍ଟେସନରେ, ବାହାରେ, ହଜାର ହଜାର ମଣିଷ ଦିନ୍ଦାଖିନ୍ଦ । ଦିନ ଗାଡ଼ିରେ ଦିନ ଗୋଟାଏବେଳେ ନେତାମାନେ ପହଞ୍ଚିଲେ । ଏଣେ ଜନସମୁଦ୍ର, ପତାକାମାନ ଉଡ଼ୁଛି, ହଜାର ହଜାର

କଣ୍ଠରୁ 'ଭାରତ ମାତା କୀ ଜୟ !'' "ମହାତ୍ମା ଗାନ୍ଧୀ କୀ ଜୟ !'' ପୁଣି ନେତାମାନଙ୍କ ନାଁ ଧରି ଜୟଧ୍ୱନି ଏକାଠି ଗର୍ଜନ କରି ଉଠେ ଆକାଶ କମ୍ପାଇ ଦେଉଛି । ଫୁଲମାଳ ଉପରେ ଫୁଲମାଳ ପଡ଼ିଲା, ହାତକଟା ସୂତା ଭେଟି ଦିଆଗଲା; ସୂତାରେ, ଫୁଲରେ ନେତାମାନେ ପୋତି ହୋଇ ପଡ଼ୁଥାନ୍ତି, ଶଙ୍ଖ ହୁଳହୁଳି ପଡ଼ୁଥାଏ, ସଙ୍କୀର୍ତ୍ତନ ହେଉଥାଏ, ନେତାମାନେ ଚାଲିଲେ, ପଛୁଆର ଚାଲିଲା । ଜନତାର ସେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ସମ୍ପୂର୍ଣ୍ଣଭାବେ ସ୍ୱତଃସ୍ଫୂର୍ତ୍ତି, ହାର୍ଦ୍ଦିକ, ଭାବ ଗଦ୍‌ଗଦ । ହଜାର ହଜାର ଲୋକଙ୍କର ସେ ବିରାଟ ପଛୁଆର ଚାଲିଥାଏ, ଚାଲିଲା କଟକ ଷ୍ଟେସନରୁ ସ୍ୱରାଜ ଆଶ୍ରମଯାକେ । ରାସ୍ତା ଦି ପଟେ, ଘରମାନଙ୍କ ଛାତ ଉପରେ, ବାସ୍ତାକରର ଗଛମାନଙ୍କ ଉପରେ ସବୁଠି ଲୋକ ଗହଳି । ଘର ଛାତ ଉପରୁ ଫୁଲ ପକା ହେଉଥାଏ । ଆଗେ ଆଗେ କଟକର ସେ ନାଲି ସଡ଼କ ଉପରେ ପାଣି ଛିଞ୍ଚା ହେଉଥାଏ । ଠାକୁ ଠା' ସର୍‌ବତ୍‌, ବରଫ ପାଣି, ସୋଡ଼ା ରଖା ହୋଇଥାଏ, ନେତାମାନଙ୍କୁ ଓ ଶୋଭାଯାତ୍ରାରେ ଚାଲିଥିବା ଲୋକଙ୍କୁ ବଢ଼ାଇ ଦିଆ ହେଉଥାଏ । ଅତର ଓ ଗୋଲାପ ଜଳ ଛିଞ୍ଚା ହେଉଥାଏ । ବାଜା ବାଜୁଥାଏ । ଜୟ ଜୟକାର ପଡ଼ୁଥାଏ । ଛକକୁ ଛକ ତୋରଣ, ଛକକୁ ଛକ ଅଭ୍ୟର୍ଥନା, କିଏ ଗୋଡ଼ତଳେ ପଡ଼ୁଛି, କିଏ ଭୂଇଁରେ ଲୋଟି ଯାଉଛି, କିଏ କାନ୍ଦି ପକାଉଛି, କିଏ ଆନନ୍ଦରେ କୁଣ୍ଢେଇ ପକାଉଛି, —ଅଦ୍ଭୁତ ହୃଦୟମନ୍ଥା ଦୃଶ୍ୟ ଓ ଅନୁଭୂତି ।

ସତେ ଅବା ସ୍ୱରାଜ୍ୟ ଆସିଛି, ଭାରତ ସ୍ୱାଧୀନ, ସବୁ ଅଭାବ, ସବୁ ସମସ୍ୟା ଦୂରୀଭୂତ, ଗାନ୍ଧୀବାଦ ଓ ରାମରାଜ୍ୟ ପ୍ରତିଷ୍ଠିତ ହୋଇଯାଇଛି ।

ଚାଲିଥାନ୍ତି ପୂଜ୍ୟ ଗୋପବନ୍ଧୁ ଚୌଧୁରୀ । ସବୁଦିନ ପରି ପ୍ରସନ୍ନ, ଧୀର, ଶାନ୍ତ, ଆତ୍ମସ୍ଥ ।

ସନ୍ଧ୍ୟାବେଳେ କାଠଯୋଡ଼ି ନଈବାଲିରେ ବିରାଟ ସଭା ହେଲା । ଗୋପବାବୁ ବି ଭାଷଣ ଦେଲେ । ବାନରସେନାଙ୍କ ସାହସ ଓ ତ୍ୟାଗ, ପୁଲିସର ତାଙ୍କ ଉପରେ ନିର୍ମମ ଅତ୍ୟାଚାର କଥା କହୁ କହୁ ରମା ଦେବୀ କାନ୍ଦି ପକାଇଲେ । ଜନତା ଉତ୍ତେଜିତ ହୋଇ ଉଠିଲେ ।

୧୯୩୧ ମାର୍ଚ୍ଚ ୩୧ରେ କଟକରେ ଉତ୍କଳ କଂଗ୍ରେସ୍ କମିଟି ବୈଠକ ଜୈନ ମନ୍ଦିରରେ ବସିଲା । ସଭାପତି ବସ୍ତି ହେଲେ ଆଚାର୍ଯ୍ୟ ହରିହର ଓ ମୁଖ୍ୟ ସମ୍ପାଦକ ହେଲେ ଗୋପବାବୁ ଓ ପଣ୍ଡିତ ନୀଳକଣ୍ଠ ଦାସ ।

ସେହିବର୍ଷ ନିଷ୍ପତ୍ତି ହେଲା ଯେ ନିଖିଳ ଭାରତ କଂଗ୍ରେସ କମିଟିର କରାଚୀ ଅଧିବେଶନ ପରେ ଓଡ଼ିଶାରେ ବାର୍ଷିକ ଅଧିବେଶନ ବସାଇବା ପାଇଁ ପ୍ରସ୍ତାବ ଦିଆଯିବ ।

୧୯୩୧ରେ ସେ ଜେଲ୍‌ରୁ ଫେରିଲା ପରେ ତାଙ୍କ ସହିତ କେତେ ନୂଆ ସହକର୍ମୀ ଆସି ଯୋଗଦେଲେ । ତାଙ୍କ ଭିତରୁ ଜଣେ ଅମରଣ ସଙ୍ଗୀ ଓ ସହକର୍ମୀ ହେଲେ ଶ୍ରୀ ଈଶ୍ୱରଲାଲ୍ ବ୍ୟାସ୍, —ବ୍ୟାସ୍‌ଜୀ, ପଛେ ଭୂଦାନ କାର୍ଯ୍ୟ ବେଳେ ତାଙ୍କ ଗ୍ରୁଭ ପଣ ।

ନାନା ଘଟନା

ସେହି ୧୯୩୧ ମାର୍ଚ୍ଚ ମାସରେ କରାଚୀରେ ନିଖିଳ ଭାରତ କଂଗ୍ରେସ୍ କମିଟିର ଅଧିବେଶନ ବସିଲା । ଗୋପବାବୁ ଓ ତାଙ୍କ ପରିବାରର ସମସ୍ତେ କରାଚୀ ଯାଇ ତହିଁରେ ଯୋଗଦେଲେ । କଂଗ୍ରେସ୍‌ର ଆସନ୍ତା ଅଧିବେଶନ ଓଡ଼ିଶାରେ ପୁରୀରେ ବସିବ ବୋଲି ସ୍ଥିର ହେଲା । ଗୋପବାବୁ ସେଥିପାଇଁ ପ୍ରସ୍ତାବ ଦେଇଥିଲେ ।

ସେଠୁ ଫେରିଲାବେଳେ ଗୋପବାବୁ ତାଙ୍କ ପରିବାର ସହିତ ଦିଲ୍ଲୀ, ଆଗ୍ରା ଓ ଆଲ୍ଲାହାବାଦ୍ ବୁଲି କଟକ ଫେରିଲେ ।

ଗାନ୍ଧୀ-ଇରଉଇନ୍ ଚୁକ୍ତି ଅନୁସାରେ ମଦଦୋକାନ-ପିକେଟିଂ ଓ ବିଲାତିଲୁଗା ପିକେଟିଂ କାର୍ଯ୍ୟ କଂଗ୍ରେସ୍ ପୁଣି ଆରମ୍ଭ କରିଦେଲେ । ନିଖିଳ ଭାରତ କଂଗ୍ରେସ୍ କମିଟି ଗୋଟିଏ 'ବିଦେଶୀ ବସ୍ତ୍ର ବହିଷ୍କାର କମିଟି' ଗଢ଼ି ଭାରତ ସାରା ବିଦେଶୀ ଲୁଗା ଦୋକାନ ପିକେଟିଂ କାର୍ଯ୍ୟ ଚଳାଉଥାନ୍ତି । କଟକ ମାରବାଡ଼ି ପଟିରେ ପିକେଟିଂ ଚାଲିଥାଏ । ମାରବାଡ଼ି ପଟି ଛକରେ ସ୍ୱେଚ୍ଛାସେବକମାନେ କର୍ଡନ୍ କରିଥାନ୍ତି, ପ୍ରତି ଦୋକାନର ଆଗଆଡ଼ ପଛଆଡ଼ ଜଗିଥାନ୍ତି, ପିକେଟିଂ ସଫଳ ହେଉଥାଏ । ବ୍ୟବସାୟୀମାନେ କଂଗ୍ରେସ୍ କର୍ମୀମାନଙ୍କ ସଙ୍ଗେ ରାଜି ହୋଇ ଗୋଟିଏ ନିଷ୍ପତ୍ତି କଲେ, —ସେମାନଙ୍କ ପାଖେ ଥିବା ବିଦେଶୀ ଲୁଗା ଷ୍ଟକ୍‌ରେ କଂଗ୍ରେସ୍ କର୍ମୀ ମୋହର ମାରିଦେବେ, ଦୋକାନୀ ମୋହର ଭାଙ୍ଗିବେ ନାହିଁ, ଭାଙ୍ଗିଲେ ଦୋକାନ ଆଗରେ ପୁଣି ପିକେଟିଂ ହେବ, ମୋହର ଦେଲାପରେ ପିକେଟିଂ ଉଠାଇ ନିଆହେବ । ସେହି ଅନୁସାରେ କାର୍ଯ୍ୟ ଚାଲିଲା ।

୧୯୩୧ରେ କଟକ ସ୍ୱରାଜ୍ ଆଶ୍ରମ ଘରେ 'ଶୁଦ୍ଧ ସାହିତ୍ୟ ସଂଘ' ବୋଲି ଗାନ୍ଧୀ ସାହିତ୍ୟ ପ୍ରକାଶ ଓ ପ୍ରଚାର ପାଇଁ ସେ ଗୋଟିଏ ଅନୁଷ୍ଠାନ ବସାଇଲେ । ଆଶ୍ରମର ଗୋଟିଏ ବଖରାରେ ଅନୁଷ୍ଠାନଟି ଥିଲା । ଶ୍ରୀ ଗଦାଧର ଦତ୍ତ ତାର ସମ୍ପାଦକ ଥିଲେ ।

## ପୁରୀରେ ଅ: ଭା: କଂଗ୍ରେସ୍ ଆୟୋଜନ

୧୯୩୨ ଆରମ୍ଭରେ ପୁରୀରେ କଂଗ୍ରେସ୍ ଅଧିବେଶନ ବସିବ ବୋଲି ୧୯୩୧ ଅଧାରୁ ସେଥିପାଇଁ ପ୍ରସ୍ତୁତ ଆରମ୍ଭ ହୋଇଗଲା । ସେଥିପାଇଁ ଯେଉଁ ଆବାହକ ସମିତି

ଥାଏ, ତହିଁରେ ସଭ୍ୟ ଥିଲେ ଗୋପବାବୁ, ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ମହାଶୟ, ଶଶୀଭୂଷଣ ରଥ ଓ ନନ୍ଦ କିଶୋର ଦାସ, ଆବାହକ ଥିଲେ ଗୋପବାବୁ । ସେ ପୁରୀରେ ଅଫିସ୍ ଖୋଲି ରହିଥାନ୍ତି, ଘର ତୋଳିବାଠୁଁ ଅନ୍ୟାନ୍ୟ ସବୁ ଆୟୋଜନ ତଦାରଖ କରୁଥାନ୍ତି, ସହକର୍ମୀମାନଙ୍କ ସଙ୍ଗେ ଅଧିବେଶନ କାର୍ଯ୍ୟରେ ଲାଗି ରହିଥାନ୍ତି । କଟକ ହିଁ ଓଡ଼ିଶାର ବଡ଼ ସହର, ତେଣୁ କଂଗ୍ରେସ୍ ଅଧିବେଶନ କଟକରେ ବସୁ ବୋଲି କେତେଜଣ ଚାହୁଁଥିଲେ, କିନ୍ତୁ ଗୋପବନ୍ଧୁ ଚୌଧୁରୀ ସେଠା ହୋଇଥିବା ନିଷ୍ପତ୍ତିରେ ଅଟଳ ରହିଲେ । ସେ ବିଷୟରେ କେଣ ଅପ୍ରୀତିକର ଘଟଣା ଘଟିଲି ବୋଲି 'ଆତ୍ମଶୁଦ୍ଧି' ପାଇଁ ୧୯୩୧ ସେପ୍ଟେମ୍ବର ମାସରେ ଗୋପବାବୁ ପାଞ୍ଚଦିନ ଅନଶନ କରିଥିଲେ । ଅବସ୍ଥା ଶାନ୍ତ ପଡ଼ିଗଲା, ସେ ଅନଶନ ଭାଙ୍ଗିଲେ ।

[ପୁରୀରେ କଂଗ୍ରେସ୍ ଅଧିବେଶନ ବସିବ ବୋଲି ଓଡ଼ିଶାରେ ଗୋଟିଏ ଅଭ୍ୟର୍ଥନା କମିଟି ଗଢା ହୋଇଥାଏ । ପଣ୍ଡିତ ନୀଳକଣ୍ଠ ଦାସ ତାର ସଭାପତି, ଗୋପବାବୁ ସମ୍ପାଦକ ଓ ଶ୍ରୀ ହରେକୃଷ୍ଣ ମହତାବ ତାର ସେବାକାର୍ଯ୍ୟର ଅଧକ୍ଷ ହୋଇଥିଲେ ।] ଏ ଅଧିବେଶନ ପାଇଁ ଓଡ଼ିଶାରେ ଚାନ୍ଦା ସଂଗ୍ରହ ହେଉଥାଏ, ଅଭ୍ୟର୍ଥନା ସମିତିର ସଭ୍ୟ ସଂଗ୍ରହ କରା ହେଉଥାଏ ଓ କଂଗ୍ରେସ୍ କର୍ମୀମାନେ ତତ୍ପର ହୋଇ କାର୍ଯ୍ୟ କରୁଥାନ୍ତି । ସ୍ୱୟଂ-ସେବକମାନଙ୍କୁ ତାଲିମ୍ ଦେବାପାଇଁ 'ହିନ୍ଦୁସ୍ଥାନୀ ସେବାଦଳ' ପୁରୀରେ ଗୋଟିଏ ଶିବିର ଖୋଲିଥାନ୍ତି । ସେ ଶିବିରରେ ଅନ୍ୟାନ୍ୟଙ୍କ ସହିତ ଗୋପବାବୁଙ୍କ ପୁଅ ଶ୍ରୀ ମନମୋହନ ଚୌଧୁରୀ ବି ଯୋଗ ଦେଇଥାନ୍ତି । ପୁରୀରେ ବଳିଆପଣ୍ଡାରେ ସମୁଦ୍ର ବାଲିରେ ଅଧିବେଶନ ବସିବ ବୋଲି ସେଠି ଘର ତୋଳା ଚାଲିଥାଏ ।

## ଗାନ୍ଧୀ-ଇର୍‌ୱିନ୍ ଚୁକ୍ତି

୧୯୩୧ ରେ ମହାତ୍ମା ଗାନ୍ଧୀ ବିଲାତରେ 'ଗୋଲଟେବୁଲ୍ ବୈଠକ'ରେ ଯୋଗଦେବାକୁ ଯାଇଥିଲେ । ସେଠି ଇଂରେଜ ସରକାରଙ୍କ ସଙ୍ଗେ ତାଙ୍କର କଥାବାର୍ତ୍ତା ବିଫଳ ହେଲା । ସେ ବିଫଳମନୋରଥ ହୋଇ ଫେରିଆସିଲେ, ୧୯୩୧ ଡିସେମ୍ବର ୨୮ରେ ବମ୍ବେରେ ପହଞ୍ଚିଲେ । ତାପରେ ବମ୍ବାଇରେ ନିଖିଳ ଭାରତ କଂଗ୍ରେସର ଓ୍ୱାର୍କିଂ କମିଟିର ଗୋଟିଏ ବୈଠକ ହେଲା, ସେ ସେଠିକୁ ଯାଇ ଫେରିଲେ । ସେହି ମିଟିଂରୁ ଫେରୁଥିବା ବେଳେ ସରକାର କେତେକଣ ନେତାଙ୍କୁ ହଠାତ୍ ଗିରଫ କଲେ । ଗାନ୍ଧୀ-ଇର୍‌ୱିନ୍ ଚୁକ୍ତିର ଏହିପରି ବ୍ୟତିକ୍ରମ ହେବାରୁ କଂଗ୍ରେସ୍ ପୁଣି ଆଇନ୍-ଭଙ୍ଗ ଆନ୍ଦୋଳନ ଆରମ୍ଭ କରିବାକୁ ନିଷ୍ପତ୍ତି କରିଥାନ୍ତି, ସରକାର ଧରପଗଡ଼ ଆରମ୍ଭ କଲେ । ଓଡ଼ିଶାରେ ତାର ପ୍ରଥମ ସୂଚନା ଜଣାଗଲା ଯେତେବେଳେ ପୁରୀରେ ପ୍ରସ୍ତାବିତ କଂଗ୍ରେସ୍ ଅଧିବେଶନ ପାଇଁ ପ୍ରସ୍ତୁତ ହେଉଥିବା ସେବାଦଳର କର୍ମୀମାନେ ଚାଲି ଚାଲି

ସତ୍ୟବାଦୀ ଯାଇ ସେଠୁ ଫେରୁଥିଲବେଳେ ବାଟରେ କୁମ୍ଭାରପଡ଼ା ଥାନା ପାଖେ ପୁଲିସ୍ ସେମାନଙ୍କୁ ଅଟକାଇଲା, ୧୪୪ ଧାରା ଜାରି କରା ହେଲା, ୪ ଜଣରୁ ବେଶି ଲୋକ ଗୋଟିଏ ଦଳ ହୋଇ ବାଟରେ ଯାଇପାରିବେ ନାହିଁ ବୋଲି ସେମାନଙ୍କୁ କୁହାଗଲା ଓ ସେମାନେ ଚାରି ଚାରି ଜଣ ହୋଇ ଫେରି ଆସିଲେ । ୧୯୩୨ ଜାନୁଆରି ୩ ତାରିଖ ରାତି ନ ପାହୁଣୁ ଗାନ୍ଧୀଜୀ ଗିରଫ୍ ହେଲେ । ୧୯୩୨ ଜାନୁଆରି ୪ ତାରିଖ ସକାଳେ ଖବର ବ୍ୟାପିଗଲା, ଭାରତର ଚାରିଆଡ଼େ ସତ୍ୟାଗ୍ରହ ଆରମ୍ଭ ହୋଇଗଲା ।

[ତାପରେ ଜାନୁଆରି ୧୦ ତାରିଖରେ କଟକରେ ଗୋପବାବୁଙ୍କୁ ଗିରଫ କରାଗଲା । ଜାନୁଆରି ୧୯ ତାରିଖରେ ତାଙ୍କୁ ସାତମାସ ଜେଲଦଣ୍ଡ ଦିଆଗଲା । ସେ କଟକ ଜେଲରେ ମାସେ ରହିଲା ପରେ ତାଙ୍କୁ ହଜାରିବାଗ୍ ଜେଲ୍‌କୁ ନିଆଗଲା ଓ ସେଠୁ ସେ ସେହିବର୍ଷ (୧୯୩୨) ସେପ୍ଟେମ୍ବର ପହିଲରେ ଖଲାସ ହେଲେ ।]

ଗୋପବାବୁ ବମ୍ବେରେ କଂଗ୍ରେସ୍ ଓ୍ୱାର୍କିଂ କମିଟିରେ ଯୋଗଦେବାକୁ ଯାଇଥିଲେ, ସେତେବେଳେ ସେ ତହିଁରେ ଜଣେ ସଦସ୍ୟ । ସେ ନ ଫେରୁଣୁ ଓଡ଼ିଶାରେ ପ୍ରବଳ ଉତ୍ତେଜନା ଖେଳିଗଲା, କଂଗ୍ରେସ୍ ଲୋକେ ସତ୍ୟାଗ୍ରହ ପାଇଁ ପ୍ରସ୍ତୁତ ହୋଇଗଲେ । କଟକ ଜିଲ୍ଲାର ସବୁ କଂଗ୍ରେସ୍ ଛାଉଣିରୁ କର୍ମୀମାନେ କଟକ ଆସି ଜୁଟ ହେଲେ । ଜାନୁଆରି ୫ ଦିନ କାଠଯୋଡ଼ି ନଈବାଲିରେ ବଡ଼ ସଭା ହେଲା । ଡାକ୍ତର ଅଟଲ ବିହାରୀ ଆଚାର୍ଯ୍ୟ ଆଦି ସେ ସଭାରେ ଭାଷଣ ଦେଲେ । କଂଗ୍ରେସ୍ ଅନୁଷ୍ଠାନକୁ ସରକାର ଆଗରୁ ବେଆଇନ୍ ଘୋଷଣା କରିଥାନ୍ତି ଓ ସଭାସମିତି ଉପରେ ନିଷେଧାଜ୍ଞା ଜାରି କରିଥାନ୍ତି । ତେଣୁ କଂଗ୍ରେସ୍ ନେତା ଓ କର୍ମୀଙ୍କୁ ଓଡ଼ିଶାରେ ଚାରିଆଡ଼େ ଗିରଫ କରିବାକୁ ଲାଗିଲେ ।

### ୧୯୩୨—୨ୟ ଥର ଜେଲ୍

ଗୋପବାବୁ ବମ୍ବେରୁ ଫେରିଲେ, ପୁରୀ ଚାଲିଗଲେ, ସେଠି ଆସନ୍ତା କଂଗ୍ରେସ୍ ଅଧିବେଶନର ଆୟୋଜନ ବନ୍ଦ କରିଦେଲେ, ସ୍ୱେଚ୍ଛାସେବକମାନଙ୍କୁ ବିଦା କରିଦେଲେ, କହିଲେ ଏଣିକି ଗିରଫଦାରି ଚାଲିବ, ଯେ ଗିରଫ ହେବ, ରହି, ଅନ୍ୟମାନେ ଚାଲିଯାଅ । ସେଠୁ ସେ କଟକ ଆସିଲେ । ସଙ୍ଗେ ସଙ୍ଗେ ୧୯୩୨ ଜାନୁଆରି ୫ ତାରିଖରେ ତାଙ୍କୁ ଗିରଫ କରାଗଲା । ୧୯୩୨ ଜାନୁଆରି ୧୯ ତାରିଖ ଦିନ ଗୋପବାବୁଙ୍କ ଜେଲ୍‌ଦଣ୍ଡ ଆଦେଶ ହେଲା । କଟକ ଜେଲ୍‌ରେ ସେ ମାସେ ରହିଲେ, ସେଠୁ ହଜାରିବାଗ୍ ଜେଲ୍‌କୁ ନିଆଗଲେ ।

# ତେର

## ୧୯୩୨—୨ୟ ଥର ହଜାରିବାଗ୍ ଜେଲ୍

ଜେଲ୍ ତାଙ୍କୁ କଣ ? ମାଛକୁ ପାଣି ପରି । ପୁଣି ସେଠି ନାନା ବନ୍ଧୁଙ୍କ ସଙ୍ଗେ ଭେଟ, ସେଠି ବି ସ୍ୱଦେଶପ୍ରେମୀଙ୍କ ସଙ୍ଗେ ଏକ ପରିବାରରେ ରହିଲା ପରି । **'A' class** ରାଜନୈତିକ ବନ୍ଦୀ ହୋଇ ଏକନମ୍ବର ଓ୍ୱାର୍ଡ଼୍‌ରେ ସେ ଥାଆନ୍ତି । ତାଙ୍କ ସଙ୍ଗେ ଓଡ଼ିଶାରୁ ଥିଲେ ପଣ୍ଡିତ ନୀଳକଣ୍ଠ ଦାସ, ବିହାରରୁ ଥାଆନ୍ତି ରାଜେନ୍ଦ୍ର ପ୍ରସାଦ, ବ୍ରଜକିଶୋର ବାବୁ (ପ୍ରଭାବତୀ ଦେବୀଙ୍କ ବାପା), କୃଷ୍ଣବଲ୍ଲଭ ସହାୟ, ମହାମାୟା ପ୍ରସାଦ, ସତ୍ୟନାରାୟଣ ସିଂହ । ସେ ଜେଲ୍‌ରେ ନବବାବୁ ବି ଥିଲେ, ଓଡ଼ିଶାରୁ ଅନ୍ୟମାନେ ଥିଲେ, ସେହିପରି ବିହାରର ଅନେକେ । ତାଙ୍କ ଭିତରୁ ଜଗତ୍ ନାରାୟଣ ଅନ୍ୟମାନଙ୍କୁ ଉର୍ଦ୍ଦୁ ଶିଖାଉଥିଲେ, ଗୋପବାବୁ ଓ ପରେ ତାଙ୍କ ପୁଅ ବୁଲୁବାବୁ ଉର୍ଦ୍ଦୁ ଲେଖି ପଢ଼ି ଶିଖୁଥାନ୍ତି ।

ବୁଲୁବାବୁ ଅଳ୍ପଦିନେ ସେଠି ପହଞ୍ଚିଗଲେ । ଜାନୁଆରି ୨୬ ତାରିଖ ଦିନ ରମା ଦେବୀ ଓ ସେ କଟକରେ ୧୪୪ ଧାରା ଭଙ୍ଗ କରି, ରମା ଦେବୀ ସ୍ୱାଧୀନତା ଶପଥ ପାଠ କରିଥିଲେ, ଗିରଫ ହେଲେ । ବୁଲୁବାବୁଙ୍କୁ ତିନିମାସ ଜେଲ୍ ହେଲା ତାଙ୍କୁ ହଜାରିବାଗ୍ ଜେଲ୍‌କୁ ଅଣାଗଲା, ଦ୍ୱିତୀୟ ଶ୍ରେଣୀ ବନ୍ଦୀ କରି ରଖାଗଲା, ସେ ଗୋପବାବୁ ଥିବା ଘରକୁ ଲଗି ଗୋଟିଏ ଘରେ ରହିଲେ । ତିନିମାସ ପରେ ଅପ୍ରେଲରେ ଖଲାସ ହୋଇ କଟକ ଗଲେ, କିନ୍ତୁ ଗୋପବାବୁ ଅଗଷ୍ଟ ମାସରେ ଜେଲ୍‌ରୁ ଫେରିବା ପୂର୍ବରୁ ଜୁନ୍ ମାସରେ ବୁଲୁବାବୁ ପୁଣି ଗିରଫ ହୋଇ ୬ ମାସ ଜେଲ୍ ଯାଇଥିଲେ ।

ହଜାରିବାଗ୍ ଜେଲ୍‌ରେ ଗୋପବାବୁଙ୍କୁ କୌଣସି କାମ କରିବାକୁ କୁହା ଯାଉ ନାହିଁ, ଆଗଥର ପରି ଫ୍ୟାକ୍‌ଟରୀରେ ସେ ଆଉ ଗାଲିଚା ବୁଣୁ ନଥାନ୍ତି । ସେ ତାଙ୍କର

ପୂର୍ବର ଦୈନନ୍ଦିନ ନିର୍ଘଣ୍ଟ ବଜାୟ ରଖିଥାନ୍ତି । ରାତି ୩ଟା/୪ଟାରେ ନିଦରୁ ଉଠନ୍ତି, ନିତ୍ୟକର୍ମ ସାରନ୍ତି, ବ୍ୟାୟାମ କରନ୍ତି, ନିଜ କାମ ହାତେ ହାତେ କରନ୍ତି, ତୂଳା ଭିଣନ୍ତି, ସୂତା କାଟନ୍ତି, ବହି ପଢ଼ନ୍ତି, ଲେଖନ୍ତି, ଗପ କରନ୍ତି, ଖେଳନ୍ତି, ବୁଲନ୍ତି । ଦୁଇଓଳି ପ୍ରାର୍ଥନା କରନ୍ତି । ଆଗପରି ଦୁଧକୁ ଦହି ବସାନ୍ତି, ଦହି, ଗୁଡ଼, ପାଉଁରୁଟି ଜଳଖିଆ କରନ୍ତି । ଖାଇବାକୁ ଅସୁବିଧା ନଥାଏ । ଏଥର ଜେଲ୍‌ରେ ଥିଲାବେଳେ ପ୍ରତିଦିନ ଖୁବ୍ ବ୍ୟାଡ୍‌ମିଣ୍ଟନ ଖେଳିଲେ । ଜେଲ୍ ଭିତରେ କଂଗ୍ରେସ୍ କର୍ମୀମାନେ ନାନା ବିଷୟରେ ଆଲୋଚନା କରନ୍ତି । କେତେବେଳେ କେଉଁ ଓ୍ୱାର୍ଡ୍‌ରେ ଭଜନ ହୁଏ, କେଉଁଠି ପୂଜା, କେତେବେଳେ ବା କେଉଁ ଉତ୍ସବ । 'ହୋଲି' ଆସିଲା, ବିହାରୀ ବନ୍ଦୀମାନେ 'ହୋଲି' ପାଳିଲେ, ଅଟା ଚିନିରେ 'ମାଲପୁଆ' କରାହେଲା, ସମସ୍ତେ ଖାଇଲେ ।

# ଚଉଦ

## ୧୯୩୨—କମ୍ୟୁନାଲ୍ ଆଓ୍ୱାର୍ଡ୍—ଅସ୍ପୃଶ୍ୟତା ଆନ୍ଦୋଳନ

୧୯୩୨ ସେପ୍‌ଟେମ୍ବର ୧ ତାରିଖରେ ଗୋପବାବୁ ହଜାରିବାଗ୍ ଜେଲ୍‌ରୁ ଖଲାସ୍ ହେଲେ, କଟକ ଆସିଲେ । ସେତେବେଳକୁ ତାଙ୍କ ମନରେ ଖେଳୁଥାଏ, ହରିଜନ ସେବା କାର୍ଯ୍ୟରେ ସେ ଆପଣାର ସବୁ ଶକ୍ତି ପ୍ରୟୋଗ କରିବେ । ତାର କାରଣ ଥିଲା । ମୂଳରୁ ସ୍ୱଭାବତଃ ହରିଜନଙ୍କ ପ୍ରତି ତାଙ୍କର ଖୁବ୍ ସହାନୁଭୂତି । ତାଙ୍କର ୧୯୩୦ର ଡାଇରି ପଢ଼ିଲେ ଜଣାଯାଏ, ହଜାରିବାଗ୍ ଜେଲ୍‌ର ହରିଜନ କଇଦୀଟିଏ, ଯେ ପାଇଖାନା ସଫା ବା 'ସଫେଇ' କାର୍ଯ୍ୟରେ ନିଯୁକ୍ତ ଥିଲା, ଦିନେ ଯେତେବେଳେ ଆସି ତାଙ୍କୁ ପଚାରିଲା, "ବିଜୟାଦଶମୀ ଦିନ ବାବୁମାନେ କାହିଁକି ଆମକୁ କୁଣ୍ଢୋଉଥିଲେ ? କିଣ ସେପରି କିଛି ସରକାରୀ ହୁକୁମ୍ ଆସିଲା କି ?" ସେ ଲଜ୍ଜିତ ଓ ମର୍ମାହତ ହୋଇଥିଲେ । ଲେଖିଛନ୍ତି ଯେ "କେବଳ ଗାନ୍ଧୀ ହିଁ ବୁଝିଛନ୍ତି ଏମାନଙ୍କ ଦୁଃଖ ।"

ମହାତ୍ମାଜୀ ତାର ବହୁତ ପୂର୍ବରୁ ଅସ୍ପୃଶ୍ୟତା ନିବାରଣ ବିଷୟରେ ଓ ହରିଜନଙ୍କ ସେବା କରିବା ସକାଶେ ଲେଖା ଲେଖୁଥିଲେ ଓ ଲୋକଙ୍କୁ ବୁଝାଉଥିଲେ। ତାପରେ ଆସିଥିଲା ବିଲାତରେ ୭-୯-୧୯୩୧ରେ ଆରମ୍ଭ ହୋଇଥିବା ଦ୍ୱିତୀୟ ଗୋଲଟେବୁଲ୍ ବୈଠକ୍। ସେତେବେଳେ ସାର୍ ସାମୁଏଲ୍ ହୋର୍ ଥିଲେ 'ସେକ୍ରେଟେରି ଅଫ୍ ଷ୍ଟେଟ ଫର୍ ଇଣ୍ଡିଆ' ଓ ଆଗପରି, ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ ପ୍ରାଇମ୍ ମିନିଷ୍ଟର୍। ଭାରତର ସାଂପ୍ରଦାୟିକ ସମସ୍ୟା ହିଁ ସମାଧାନ ବାଟରେ ପ୍ରଧାନ ଅଡୁଆ ସୃଷ୍ଟି କରିଥିଲା। ହରିଜନଙ୍କ ନେତା ଡକ୍ଟର ଆମ୍ବେଦକର୍ ଅଡ଼ି ବସିଥିଲେ ଯେ ହରିଜନମାନଙ୍କ ପାଇଁ ବ୍ୟବସ୍ଥାପକ ସଭାମାନଙ୍କରେ ସ୍ୱତନ୍ତ୍ର ସ୍ଥାନ ରଖାଯିବ, କିନ୍ତୁ ଗାନ୍ଧୀଜୀ ରାଜି ହୋଇ ନ ଥିଲେ। ପ୍ରଥମ, ଦ୍ୱିତୀୟ, ତୃତୀୟ ଗୋଲଟେବୁଲ୍ ବୈଠକ ଗଲା। ସାଂପ୍ରଦାୟିକ ସମସ୍ୟା ଯେଉଁ ଭୋଟ ଓ ବ୍ୟବସ୍ଥାପକସଭା ମାନଙ୍କରେ ଆସନ ବିଷୟରେ ଉପୁଜିଥିବା ସମସ୍ୟା ତୁଟିଲା ନାହିଁ। ତାପରେ ୧୬-୮-୧୯୩୨ରେ ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ୍ ତାଙ୍କର ଐତିହାସିକ 'କମ୍ୟୁନାଲ୍ ଆୱାର୍ଡ୍' ଘୋଷଣା କଲେ। ସେଥିରେ ରହିଲା ଯେ ମୁସଲମାନ, ଶିଖ୍ ଓ ୟୁରୋପିଆନ୍‌ମାନେ ଅଲଗା ହୋଇ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀରେ ଭୋଟ ଦେବେ, ସେମାନଙ୍କ ପାଇଁ ଅଲଗା ଅଲଗା ନିର୍ବାଚନ ମଣ୍ଡଳୀ ରହିବ, ସାଧାରଣ ନିର୍ବାଚନ ମଣ୍ଡଳୀଠୁଁ ଭିନ୍ନ। ଅସ୍ପୃଶ୍ୟଜାତିର ଲୋକମାନଙ୍କ ବିଷୟରେ ଥାଏ,

"ଡିପ୍ରେସ୍‌ଡ୍ କ୍ଲାସ୍ ଲୋକଙ୍କ ଭିତରୁ (ସେତେବେଳକୁ ଗାନ୍ଧୀଜୀ ନାଁ ଦେଇଥିବା 'ହରିଜନ' ଶବ୍ଦ, ଯାହା ପଛେ ଚଳିଲା, ଚଳି ନ ଥାଏ) ଯେଉଁମାନେ ଆଇନ୍ ଅନୁସାରେ ଭୋଟ୍ ଦେବାକୁ ହକ୍‌ଦାର୍, ସେମାନେ ସାଧାରଣ ନିର୍ବାଚନମଣ୍ଡଳୀ ମାନଙ୍କରେ ଭୋଟ୍ ଦେଇପାରିବେ।

କିନ୍ତୁ ଖାସ୍ କରି ସେହି ଜାତିର ଲୋକମାନଙ୍କ ପାଇଁ ବ୍ୟବସ୍ଥାପକ ସଭା-ମାନଙ୍କରେ କେତେଗୁଡ଼ିଏ ନିର୍ଦ୍ଦିଷ୍ଟସଂଖ୍ୟକ ସ୍ଥାନ ସଂରକ୍ଷିତ ହୋଇ ରହିବ, ସେପରି ସ୍ଥାନମାନଙ୍କ ତାଲିକା ଏଥିସହିତ ଦିଆଗଲା। ସେସବୁ ସ୍ଥାନରେ ପ୍ରତିନିଧି ବାଛିବାପାଇଁ ଭୋଟ୍ ଲାଗି କେତେଗୁଡ଼ିଏ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ଗଢ଼ା ହେବ ଓ ସେସବୁ ନିର୍ବାଚନମଣ୍ଡଳୀ ସକାଶେ ପ୍ରତିନିଧି ବାଛିବାକୁ ଖାଲି ସେହି ଜାତିର ଲୋକ ହିଁ ଭୋଟ ଦେଇପାରିବେ, ଅନ୍ୟମାନେ ନୁହନ୍ତି। ଯେଉଁମାନେ ସେସବୁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀରେ ପ୍ରତିନିଧି ବାଛିବା ପାଇଁ ଭୋଟ୍ ଦେବେ ସେମାନେ ସାଧାରଣ ନିର୍ବାଚନମଣ୍ଡଳୀରେ ପ୍ରତିନିଧି ନିର୍ବାଚନ ସକାଶେ ବି ଭୋଟ ଦେଇପାରିବେ।"

କମ୍ୟୁନାଲ ଆୱାର୍ଡ୍ ଘୋଷଣା କରି ଇଂରେଜ ପ୍ରଧାନମନ୍ତ୍ରୀ ଏକଥା ବି ଜଣାଇଦେଲେ ଯେ ସେ ବ୍ୟବସ୍ଥାରେ ଯେ କୌଣସି ଅଦଳବଦଳ କରିବା ସକାଶେ

ହିନ୍ଦୁମାନେ ଓ "ଡିପ୍ରେସ୍‌ଡ୍ କ୍ଲାସ୍" ଲୋକେ ନିଜ ଭିତରେ ଆପୋଷରେ ରାଜି ହୋଇ ଯେଉଁ ପ୍ରସ୍ତାବ ଦିଅନ୍ତି ସେ ତାକୁ ଗ୍ରହଣ କରିବେ ।

କଂଗ୍ରେସ୍ ଲଢ଼ୁଥିଲା ଭାରତର ପୂର୍ଣ୍ଣ ସ୍ୱାଧୀନତା ପାଇଁ । ଦ୍ୱିତୀୟ ଗୋଲଟେବୁଲ ବୈଠକରେ ବି ଗାନ୍ଧୀ ସେଇଆ ଦାବୀ କରିଥିଲେ, କହିଥିଲେ ଯେ ଭାରତର ଅଧିକାର ରହିବ ଯେ ଇଚ୍ଛା କଲେ ସେ ବ୍ରିଟିଶ ସାମ୍ରାଜ୍ୟରୁ ଅଲଗା ହୋଇପାରିବ,—ତାଙ୍କ କଥାରେ ସରକାର କାନ ଦେଲେ ନାହିଁ । ବର୍ତ୍ତମାନ କମ୍ୟୁନାଲ୍ ଆଓ୍ୱାର୍ଡ଼୍ ଗ୍ରହଣ କଲେ ସରକାରଙ୍କ କୃତ ସମ୍ବିଧାନ ଗ୍ରହଣ କଲାପରି ହୁଅନ୍ତା, ତାହା ପୂର୍ଣ୍ଣ ସ୍ୱରାଜ୍ ନୁହେଁ । ଦ୍ୱିତୀୟରେ କମ୍ୟୁନାଲ୍ ଆଓ୍ୱାର୍ଡ଼୍ ଗ୍ରହଣ କରିବା ଅର୍ଥ ଏକଥା ସ୍ୱୀକାର କରିବା ଯେ ହରିଜନ ହିନ୍ଦୁଙ୍କଠୁଁ ଭିନେ, ପୁଣି ଦୁହିଁଙ୍କ ଭିତରେ ବିଭେଦ ବଢ଼ାଇବା ଓ ସବୁଠୁ ଅସଲ କଥା,—ସ୍ୱୀକାର କରିବା ଯେ କଂଗ୍ରେସ ହରିଜନଙ୍କ ପ୍ରତିନିଧି ନୁହେଁ, ମୁସଲମାନଙ୍କର, ଶିଖ୍‌ମାନଙ୍କର କି ଭାରତୀୟ । ୟୁରୋପୀୟମାନଙ୍କର ନୁହେଁ !

୪-୧-୧୯୩୨ରେ ଗିରଫ ହୋଇ ମହାତ୍ମାଜୀ ଜେଲ୍‌ରେ ଥାନ୍ତି । ୧୭-୮-୩୨ରେ କମ୍ୟୁନାଲ୍ ଆଓ୍ୱାର୍ଡ଼୍ ଘୋଷଣା ପାଇବାମାତେ ସେ ତାକୁ ପ୍ରତ୍ୟାଖ୍ୟାନ କଲେ ଓ ଘୋଷଣା କଲେ ଯେ ଜୀବନ ଥିବା ଯାକେ ସେ ତା ବିରୁଦ୍ଧରେ ଲଢ଼ୁଥିବେ । ତା ପୂର୍ବରୁ ୧୧-୩-୩୨ରେ ସେ ସାର୍ ସାମୁଏଲ୍ ହୋର୍‌ଙ୍କୁ ଲେଖି ଜଣାଇ ଦେଇଥିଲେ ଯେ ହରିଜନମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ କଲେ ସେ ଆମରଣ ଅନଶନ କରିବେ । ବର୍ତ୍ତମାନ ସେହି ନିଷ୍ପତ୍ତି ଅନୁସାରେ ୮-୮-୧୯୩୨ରେ ସେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀଙ୍କୁ ଲେଖିଦେଲେ ଯେ ସେ ୨୦-୮-୧୯୩୨ରୁ ଆମରଣ ଅନଶନ କରିବେ ।

କାଳେ ଗାନ୍ଧୀ ମରିଯିବେ ବୋଲି ଦେଶରେ ହୁଲସ୍ଥୁଲ୍ ପଡ଼ିଗଲା । ପଣ୍ଡିତ ମଦନମୋହନ ମାଳବ୍ୟ ଆଗ ବମ୍ବେରେ ଓ ପଛେ ପୁନାରେ ଗୋଟିଏ ସମ୍ମିଳନୀ ଡାକିଲେ । ସେ ଡକ୍ଟର ଆମ୍ବେଦ୍‌କରଙ୍କୁ ବୁଝାଇ କହି ସମ୍ମିଳନୀକୁ ଅଣାଇଲେ ଓ ତାଙ୍କ ସଙ୍ଗେ କଥାଭାଷା ହେଲେ । ୨୪-୯-୧୯୩୨ରେ ପୁନାରେ ଆମ୍ବେଦ୍‌କର ବହୁତ ପ୍ରକାର ଦାବୀ ହାଙ୍କିବା ପରେ ଗୋଟିଏ ନିଷ୍ପତ୍ତିରେ ରାଜି ହେଲେ :—ଯେ ସବୁ ପ୍ରଦେଶର ବ୍ୟବସ୍ଥାପକ ସଭାରେ ମିଶି ହରିଜନ ସଭ୍ୟମାନଙ୍କ ପାଇଁ ପୂର୍ବେ ଯେଉଁ ୭୧ଟି ସ୍ଥାନ ସଂରକ୍ଷିତ ରହିବା ପ୍ରସ୍ତାବ ସରକାର ଦେଇଥିଲେ ତା ପରିବର୍ତ୍ତେ ସେମାନଙ୍କ ପାଇଁ ୧୪୮ଟି ସ୍ଥାନ ରହିବ । ତା'ଛଡ଼ା କେନ୍ଦ୍ର ବ୍ୟବସ୍ଥାପକ ସଭାରେ ସେମାନଙ୍କ ପାଇଁ ୧୮ଟି ସ୍ଥାନ ସଂରକ୍ଷିତ ରହିବ ।

ପ୍ରତି ସ୍ଥାନ ପାଇଁ ଆଗ ଖାଲି ହରିଜନମାନେ ଭୋଟ ଦେଇ ୪ ଜଣ ଲେଖାଁ ପ୍ରାର୍ଥୀ ବାଛିବେ ଓ ତା'ପରେ ଆଉଥରେ ହରିଜନ ଓ ଅନ୍ୟମାନେ ସମସ୍ତେ ମିଶି

ଭୋଟ୍ ଦେଇ କେବଳ ସେହି ପ୍ରାର୍ଥୀଙ୍କ ଭିତରୁ ଜଣକୁ ହିଁ ସଭ୍ୟପଦ ପାଇଁ ବାଛିବେ, ଅନ୍ୟ କାହାରିକି ନୁହେଁ ।

ଏହାର ନାଁ ପୁନା ପ୍ୟାକ୍ଟ । 'ହିନ୍ଦୁ ମହାସଭା' ଏଥିରେ ରାଜି ହେଲେ, ତା'ପରେ ଇଂରେଜ ସରକାର ରାଜି । ତା'ପରେ ୨୫-୯-୩୨'ରେ ପଣ୍ଡିତ ମାଳବ୍ୟ ସଭାପତି ଥାଇ ବମ୍ବେରେ ସଭା ବସିଲା । ସେଉଁ ହିନ୍ଦୁମହାସଭା ନେତାମାନେ 'ପୁନା ପ୍ୟାକ୍ଟ' କରିଥିଲେ ସେମାନେ ମିଶି ପ୍ରସ୍ତାବ ପାଶ୍ କଲେ ଯେ ଏଣିକି ଅସ୍ପୃଶ୍ୟତା ଆଉ ହିନ୍ଦୁ ସମାଜରେ ସ୍ୱୀକୃତି ପାଇବ ନାହିଁ, ରହିବ ନାହିଁ; କୂଅ, ସ୍କୁଲ୍, ସଡ଼କ, ଅନ୍ୟାନ୍ୟ ସାଧାରଣ ଅନୁଷ୍ଠାନ ସବୁ ବ୍ୟବହାର କରିବାକୁ ଅନ୍ୟାନ୍ୟ ହିନ୍ଦୁମାନଙ୍କ ପରି ହରିଜନମାନେ ସମାନ ଅଧିକାର ପାଇବେ । ସ୍ୱରାଜ୍ ପାର୍ଲ୍ୟାମେଣ୍ଟ ହେବା ପୂର୍ବରୁ ଏଥିପାଇଁ ଆଇନ୍ ନ ହୋଇଥିଲେ ସ୍ୱରାଜ୍ ପାର୍ଲ୍ୟାମେଣ୍ଟ ହେଲାକ୍ଷଣି ଆଗ ଏଥିପାଇଁ ଆଇନ୍ କରିହେବ । ଆଉ ପ୍ରସ୍ତାବ ହେଲା ଯେ ହିନ୍ଦୁ ନେତାମାନେ ଅସ୍ପୃଶ୍ୟତା ଦୂରୀକରଣ କାର୍ଯ୍ୟରେ ଲାଗିପଡ଼ିବେ ।

ଜେଲ୍‌ରେ ଥାଇ ଗାନ୍ଧୀଜୀ ଦେଶବାସୀଙ୍କୁ ନିବେଦନ ଜଣାଇଲେ ଯେ ଅସ୍ପୃଶ୍ୟତା ଦୂର ହେଉ । ଦେଶସାରା ଏହି ପ୍ରଥମଥର ଅସ୍ପୃଶ୍ୟତାବିରୋଧୀ ବାତାବରଣ ଖେଳିଗଲା । କେତେ କୂଅ, ପୋଖରୀ ବ୍ୟବହାର କରିବାକୁ ହରିଜନଙ୍କୁ ଅଧିକାର ଦିଆଗଲା ଓ କେତେ ଜାଗାରେ ସେମାନଙ୍କୁ ମନ୍ଦିର ପ୍ରବେଶ ଅଧିକାର ଦିଆଗଲା । ଏହି ସମୟରୁ ଅର୍ଥାତ୍ ସେପ୍‌ଟେମ୍ବର ୧୯୩୨ରୁ ଭାରତରେ ଅସ୍ପୃଶ୍ୟତା ନିବାରଣ ପାଇଁ ଐତିହାସିକ ଆନ୍ଦୋଳନ ଚାଲିଲା । ଗୋପବାବୁ ଜେଲ୍‌ରେ ଥାନ୍ତି ।

୧୯୩୨ ସେପ୍‌ଟେମ୍ବର ୩୦ରେ 'ନିଖିଳ ଭାରତ ଅନ୍‌ଟଚେବିଲିଟି ଲିଗ୍' ଗଢ଼ାହେଲା, ପରେ ତା ନାଁ ହେଲା 'ହରିଜନ ସେବକ ସଂଘ' । ଶ୍ରୀ ଘନଶ୍ୟାମ ଦାସ ବିଡ଼ଲା ତାର ସଭାପତି ହେଲେ ଓ ଶ୍ରୀ ଅମୃତଲାଲ୍ ଠକ୍‌କର (ଠକ୍‌କର ବାପା) ସମ୍ପାଦକ ହେଲେ । ଦିଲ୍ଲୀରେ ତା'ର ସଦର ମହକୁମା ରହିଲା । ପ୍ରତି ପ୍ରଦେଶରେ ପ୍ରାଦେଶିକ ଅଫିସ୍, ପ୍ରତି ପ୍ରଦେଶକୁ ବିଭିନ୍ନ ୟୁନିଟ୍‌ରେ ବିଭକ୍ତ କରି ସମୁଦାୟ ପ୍ରଦେଶମାନଙ୍କୁ ୮୪ଟି ୟୁନିଟ୍‌ରେ ବିଭକ୍ତ କରାଗଲା । ପ୍ରତି ୟୁନିଟ୍ ଲାଗି ବେତନ-ଭୋଗୀ କର୍ମୀ ରହିବେ, ବର୍ଷକୁ ସମୁଦାୟ ୬ ଲକ୍ଷ ଟଙ୍କା ଖର୍ଚ୍ଚ ହେବ ବୋଲି ବ୍ୟବସ୍ଥା ହେଲା । ସଂଘର ଉଦ୍ଦେଶ୍ୟ ରହିଲା ଅସ୍ପୃଶ୍ୟତା ନିରାକରଣ ଓ ହରିଜନ ଉନ୍ନୟନ ପାଇଁ ସଂଗଠନମୂଳକ କାର୍ଯ୍ୟ ।

ପୁନା ଚୁକ୍ତିରେ ଗାନ୍ଧୀଜୀ ସନ୍ତୁଷ୍ଟ ହେଲେ । ୨୬-୯-୧୯୩୨ରେ ସେ ଅନଶନ ଭାଙ୍ଗିଲେ । ସେ ଜେଲ୍‌ରେ ଥାନ୍ତି, ଅସ୍ପୃଶ୍ୟତା ନିରାକରଣ କଥା ହିଁ ଭାବୁଥାନ୍ତି ।

ପ୍ରାୟ ସାତମାସ ଗଲା ।

ହଠାତ୍ ୮-୫-୧୯୩୩ରେ ଗାନ୍ଧୀଜୀ ଘୋଷଣା କଲେ ଯେ "ହରିଜନଙ୍କ ହିତ ପାଇଁ ଆତ୍ମର ନିଘା, ଆତ୍ମର ତତ୍ପରତା କରିବା ପାଇଁ" ତାଙ୍କ ନିଜର ଓ ତାଙ୍କ ସହକର୍ମୀମାନଙ୍କର ଆତ୍ମଶୁଦ୍ଧି ସକାଶେ ସେ ପୁଣି ୨୧ ଦିନ ଅନଶନ ଆରମ୍ଭ କରିବେ । ସରକାର ସଙ୍ଗେ ସଙ୍ଗେ ଇସ୍ତାହାର ଦେଲେ ଯେ ତାଙ୍କ ଉଦ୍ଦେଶ୍ୟକୁ ବିଚାର କରି ସେମାନେ ତାଙ୍କୁ ଛାଡ଼ି ଦେଉଛନ୍ତି । ୮-୫-୧୯୩୩ରେ ଗାନ୍ଧୀ ଖଲାସ ହେଲେ ।

ଗାନ୍ଧୀ ବଡ଼ଲାଟଙ୍କୁ ଚିଠି ଲେଖିଲେ ଯେ ସେ ଅର୍ଡ଼ିନାନ୍ସଗୁଡ଼ିକ ଉଠାଇ ନିଅନ୍ତୁ ଓ ରାଜନୈତିକ ବନ୍ଦୀଙ୍କୁ ଖଲାସ କରନ୍ତୁ । ବଡ଼ଲାଟ ମନା କଲେ ।

## ଜୁଲାଇ ୧୯୩୩—ଗାନ୍ଧୀଜୀ ଅସହଯୋଗ ଆନ୍ଦୋଳନ ବନ୍ଦ କଲେ

ଅସହଯୋଗ ଆନ୍ଦୋଳନ ସାମୟିକଭାବେ ବନ୍ଦ କରିଦେବାକୁ ଗାନ୍ଧୀ କଂଗ୍ରେସ୍ ସଭାପତି ଡକ୍ଟର ଆନେଙ୍କୁ ଅନୁରୋଧ କଲେ । ସେ ଆଗ ୬ ସପ୍ତାହ ପାଇଁ, ପଛେ ଆଉ ୬ ସପ୍ତାହ ପାଇଁ ଅସହଯୋଗ ଆନ୍ଦୋଳନ ବନ୍ଦ କରିବାକୁ ନିଷ୍ପତ୍ତି ଘୋଷଣା କଲେ । ତାପରେ ୧୨-୭-୧୯୩୩ରେ ପୁନାରେ କଂଗ୍ରେସ୍‌କର୍ମୀମାନଙ୍କର ଗୋଟିଏ ବୈଠକ ବସି ନିଷ୍ପତ୍ତି ହେଲା ଯେ ଅସହଯୋଗ ଆନ୍ଦୋଳନ ବିଲ୍‌କୁଲ୍ ବନ୍ଦ ହେବ, କେବଳ ବ୍ୟକ୍ତିଗତଭାବେ ଯାହାର ଇଚ୍ଛା ହେବ ସେ ଏକୁଟିଆ ଅସହଯୋଗ ଆନ୍ଦୋଳନ କରିପାରିବ । ସେ ବ୍ୟକ୍ତିଗତଭାବେ ଆଇନ୍ ଅମାନ୍ୟ ଆରମ୍ଭ କରି ଗୁଜୁରାଟ୍‌ର ରାସ୍ ଗାଁକୁ ୧-୮-୧୯୩୩ରେ ପଦଯାତ୍ରା ଆରମ୍ଭ କରିବେ ବୋଲି ଘୋଷଣା କଲେ କିନ୍ତୁ ସେ ୩୧-୭-୩୩ରେ ତାଙ୍କ ଆଶ୍ରମରେ ଗିରଫ ହେଲେ । ୪-୮-୩୩ରେ ତାଙ୍କୁ ଛାଡ଼ି ଦିଆଗଲା ଓ ପୁନାରେ ରହିବାକୁ ଆଦେଶ ହେଲା । ସେ ସେ ଆଇନ୍ ଅମାନ୍ୟ କଲେ ଓ ସେହି ୪-୮-୩୩ରେ ଧରା ହୋଇ ବର୍ଷେ ଜେଲ୍ ଆଦେଶ ପାଇ ଜେଲ୍ ଗଲେ । ଏପରି ଶହ ଶହ ଜେଲ୍ ଗଲେ ।

୧୬-୮-୩୩ରେ ଜେଲରେ ଗାନ୍ଧୀ ଅନଶନ ଆରମ୍ଭ କଲେ । ଅସ୍ପୃଶ୍ୟତା ନିରାକରଣ ଅଭିଯାନ ଆରମ୍ଭ କରିବାକୁ ଜେଲ୍‌ରେ ତାଙ୍କୁ ସୁବିଧା ଦିଆଯିବାକୁ ସରକାର ମନା କରିଦେଲେ, ତେଣୁ ସେ ଅନଶନ କଲେ । ତାଙ୍କ ସ୍ୱାସ୍ଥ୍ୟ ଅବସ୍ଥା ଖୁବ୍ ଖରାପ ହୋଇଗଲା ତେଣୁ ସରକାର ତାଙ୍କୁ ୨୩-୮-୩୩ରେ ଖଲାସ କଲେ । କିନ୍ତୁ ଗାନ୍ଧୀ କହିଲେ ଯେ ଯେତେଦିନଯାଏ ତାଙ୍କୁ ଜେଲ୍ ହୋଇଥିଲା ସେତେଦିନ ଯାଏ ସେ ଆଉ ଆଇନ୍ ଅମାନ୍ୟ କରିବେ ନାହିଁ, ଖାଲି ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ କରିବେ । ତାପରେ ବୁଲିଲା ସାରା ଭାରତରେ ତାଙ୍କର ହରିଜନ ଗସ୍ତ ।

ଅସହଯୋଗ ଆନ୍ଦୋଳନ ୧୮-୮-୩୨ରୁ ହିଁ ମରି ଯାଇଥିଲା ବୋଲି ଧରା ହୁଏ ।

ଗୋପବାବୁ ଦ୍ୱିତୀୟଥର ହଜାରିବାଗ୍ ଜେଲ୍‌ରେ ଥିଲାବେଳେ ଜେଲ୍ ରହଣିର ଶେଷ ଆଡ଼କୁ ଓଡ଼ିଶାରେ ହରିଜନ ସେବା ହିଁ ହୋଇଥାଏ ତାଙ୍କ ଚିନ୍ତାର ମୁଖ୍ୟ ବସ୍ତୁ ।

୧୯୩୨ରୁ ଗୋପବାବୁଙ୍କ ହରିଜନ କାମ

୧୯୩୨ ପହିଲି ସେପ୍ଟେମ୍ବରରେ ଜେଲ୍‌ରୁ ଖଲାସ ହୋଇ ଗୋପବାବୁ ଓଡ଼ିଶା ପହଞ୍ଚିଲା ପରେ ଓଡ଼ିଶାରେ ବ୍ୟାପକଭାବେ ଅସ୍ପୃଶ୍ୟତା ନିବାରଣ ଓ ହରିଜନ ସେବା କାର୍ଯ୍ୟ ଆରମ୍ଭ ହେଲା । ସେହି ମାସ ୨୫ ତାରିଖରେ ତ ହରିଜନ ସେବାସଂଘ ନିଖିଳ ଭାରତୀୟ ସ୍ତରରେ ପ୍ରତିଷ୍ଠିତ ହୋଇଥାଏ ଓ ତାର ପ୍ରାଦେଶିକ ଶାଖାମାନ ଖୋଲିବାକୁ ନିଷ୍ପତ୍ତି ହୋଇଥାଏ, ଯଦିଓ ନିଜେ ମହାତ୍ମା ଗାନ୍ଧୀ ଜେଲ୍‌ରେ ଥାନ୍ତି । ଓଡ଼ିଶା ପାଇଁ ହରିଜନ ସେବକ ସେବାସଂଘ ଗଢ଼ାହେଲା । ତାର ସମ୍ପାଦକ ହେଲେ କବିରାଜ ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟ, ସେକ୍ରେଟାରୀ ହେଲେ ରମା ଦେବୀ ଓ କୋଷାଧ୍ୟକ୍ଷ ହେଲେ ସତ୍ୟନାରାୟଣ ସେନ୍‌ଗୁପ୍ତ । ଗୋପବାବୁ ତାର ନିର୍ଦ୍ଦେଶକ ସଂଚାଳକ ହୋଇ ତାର ସବୁକାର୍ଯ୍ୟ ତୁଲାଉଥାନ୍ତି । କିନ୍ତୁ ସେ ତହିଁରେ ସବୁ କରୁଥିଲେ ସୁଦ୍ଧା ଆନୁଷ୍ଠାନିକ ଭାବେ ସେ ତାର କୌଣସି କର୍ମକର୍ତ୍ତା ନ ଥିଲେ । କାରଣ, ନିର୍ଦ୍ଦେଶ ଥାଏ ଯେ ଯେଉଁମାନେ ପ୍ରତ୍ୟକ୍ଷ ରାଜନୀତିରେ ଭାଗ ନେଇ ନଥିବେ ସେଇମାନେ ହରିଜନ କାମ କରନ୍ତୁ । ତେଣୁ ରମା ଦେବୀ ସମ୍ପାଦିକା ହେଲେ ।

ଗୋପବାବୁ ସେ ସଂସ୍ଥାର ସଂଗଠନ କାର୍ଯ୍ୟ କଲେ । କଟକ ଟାଉନ୍ କମିଟିରେ ଗଦାଧର ଦତ୍ତ ଓ ଗୌରାଙ୍ଗ ଚରଣ ଦାସ ଆଦି ସଭ୍ୟ ରହିଲେ । ବିଭିନ୍ନ ଜିଲ୍ଲାରେ ଅର୍ଗାନାଇଜର ରହିଲେ, ଯଥା—ସମ୍ବଲପୁରରେ ନୃସିଂହ ଚରଣ ଗୁରୁ, ପୁରୀରେ ଲୋକନାଥ ମିଶ୍ର (ପଙ୍କବାବୁ), ଗଞ୍ଜାମରେ ବାଞ୍ଛାନିଧି ପଟ୍ଟନାଏକ, ବାଲେଶ୍ୱରରେ କରୁଣାକର ପାଣିଗ୍ରାହୀ ଇତ୍ୟାଦି । କଟକ ଭିକ୍‌ଟୋରିଆ ସ୍କୁଲ୍ ପଛଆଡ଼େ ଜଣେ ମୁସଲମାନ ଭଦ୍ରଲୋକଙ୍କର ଗୋଟିଏ ଘରେ ହରିଜନ ସେବାସଂଘର ଅଫିସ୍ ହେଲା । ସଂଘର ଆସିଷ୍ଟାଣ୍ଟ ସେକ୍ରେଟାରୀ, ଅଫିସର ସେକ୍ରେଟାରୀ, ଆକାଉଣ୍ଟାଣ୍ଟ, ଅଡ଼ିଟର ସବୁ କାମ କରୁଥିଲେ କଟକ ଜିଲ୍ଲାର କଳକଳା ଗ୍ରାମର ଅଲେଖ ପ୍ରସାଦ ଦାସ । ସେ ୧୯୨୧ରୁ କଂଗ୍ରେସରେ ମିଶିଥାନ୍ତି । ବସ୍ତୁତଃ ଓଡ଼ିଶାରେ ହରିଜନ ସେବାସଂଘ କାର୍ଯ୍ୟର ଏସବୁ ବିବରଣୀ ତାଙ୍କଠାରୁ ମିଳିଛି । ଅଗରପଡ଼ାରେ ଶ୍ରୀ ହରେକୃଷ୍ଣ ମହତାବ ତାଙ୍କ ଘରୋଇ ମନ୍ଦିରରେ ହରିଜନମାନଙ୍କୁ ପ୍ରବେଶ ଅଧିକାର ଦେବାକୁ ଘୋଷଣା କଲେ । ତାଙ୍କ ନିମନ୍ତ୍ରଣକ୍ରମେ ଗୋପବାବୁ ଯାଇ ସେ ମନ୍ଦିରରେ ହରିଜନ ପ୍ରବେଶ ଉନ୍ମୋଚନ କରିଥିଲେ । ଚାରିଆଡ଼େ ଚହଲ ପଡ଼ିଥିଲା ।

କଟକରେ ବିଭିନ୍ନ ଶାଖା କେନ୍ଦ୍ରରେ, ଯାଜପୁରରେ, ହରିଜନ ଛାତ୍ରଛାତ୍ରୀଙ୍କ ପାଇଁ ଛାତ୍ରାବାସ ହୋଇଥିଲା । ତହିଁରେ ହରିଜନ ପିଲଙ୍କୁ ରଖାଇ ପାଠପଢ଼ା ହେଉଥିଲା । ହରିଜନ ବସ୍ତିରେ କୈଶ ବିଦ୍ୟାଳୟ ସ୍କୁଲ୍ କରି ହୋଇଥିଲା । ହରିଜନ ବସ୍ତି ଓ ପାଇଖାନା ସଫେଇ କାର୍ଯ୍ୟ କରା ହେଉଥିଲା ।

ହରିଜନମାନଙ୍କୁ ଔଷଧ ବଣ୍ଟା ହେଉଥିଲା । ହରିଜନମାନଙ୍କୁ ପରିଷ୍କାର ପରିଚ୍ଛନ୍ନ ହେବା, ଘର ପରିଷ୍କାର ରଖିବା, ଭଲ ଜାତଙ୍କ ପରି ସୁରୁଚିରେ ଲୁଗା ପିନ୍ଧିବା, ମଲଗୋରୁ ନ ଖାଇବା ଇତ୍ୟାଦି ନାନା ପ୍ରକାର ତାଲିମ ଦିଆଯାଉଥିଲା ଓ ତାଙ୍କର ଉନ୍ନତ କରାଯାଉଥିଲା । ଆଳୁ, କୋବି, ମୂଳା ଆଦି ପନିପରିବା କରିବାକୁ ଶିଖାଯାଉଥିଲା । ହରିଜନମାନେ କିପରି ଆର୍ଥିକ ଦୁରବସ୍ଥାରେ ଅଛନ୍ତି ତାକୁ ଅନୁସନ୍ଧାନ କରି ପ୍ରତିକାର କରିବା ପାଇଁ ସେମାନଙ୍କର 'Economic Survey' କରାଯାଉ-ଥିଲା । ସକାଳୁ ଉଠି ଦିନରାତି ସେହି କାମ ଚାଲୁଥିଲା, ବହୁତ ଉଦ୍ଦେଶ୍ୟ ଥିଲା, ବହୁତ କାର୍ଯ୍ୟସୂଚୀ ଥିଲା । ଯଥାସମ୍ଭବ ଚେଷ୍ଟା କରାଯାଉଥିଲା, ସେତେବେଳକା ପରିସ୍ଥିତିରେ ଫଳ ଯାହା ହେଉ ।

ସେତିକିବେଳେ କଟକରେ ରମା ଦେବୀଙ୍କ ନେତୃତ୍ୱରେ ତାଙ୍କ ଝିଅ ଓ ଅନ୍ୟାନ୍ୟ ନାରୀକର୍ମୀଙ୍କ କାର୍ଯ୍ୟ ଅତି ପ୍ରଶଂସନୀୟ ଥିଲା । ରମା ଦେବୀ ନିଜେ ନାରୀ କର୍ମୀମାନଙ୍କୁ ତାଲିମ କରନ୍ତି । ଗୋପବାବୁ ଓ ନାରୀ କର୍ମୀମାନଙ୍କ ସମେତ ଅନ୍ୟାନ୍ୟ କର୍ମୀ କଟକରେ ଜୋବ୍ରାଗିରି, ମଠ ସାହି, ଝାଞ୍ଜିରିମଙ୍ଗଳା, ତେଲେଙ୍ଗାପେଣ୍ଠ ଆଦି ହରିଜନ ବସ୍ତିରେ ଏହିପ୍ରକାର ହରିଜନ ସେବା କାର୍ଯ୍ୟରେ ଅନବରତ ଲାଗିପଡ଼ିଥାନ୍ତି । କର୍ମୀମାନେ ଝାଡ଼ୁ, ଟୋକେଇ ଧରି ମେହେନ୍ତର ସାହି ସଫା କରନ୍ତି ଓ ସେହି ସାହିର ପାଇଖାନା ସଫା କରନ୍ତି । କେତେବେଳେ ମେହେନ୍ତର ମେହେନ୍ତରାଣୀଙ୍କ ସଙ୍ଗେ ସାଧାରଣ ପାଇଖାନା ବି ସଫା କରନ୍ତି ଓ ତାଙ୍କ ଦେଖାଦେଖି କେତେବେଳେ ଅନ୍ୟାନ୍ୟ ଭଦ୍ରଲୋକ ବି ସେ କାର୍ଯ୍ୟ କରନ୍ତି✳ । ନାନା ପ୍ରକାର ସେବାକାର୍ଯ୍ୟ ଚାଲିଥାଏ । କଟକରେ ଓ ନାନା ସ୍ଥାନରେ ସଭାସମିତିମାନ ବି ହେଉଥାଏ ।

---

✳ ଗାନ୍ଧୀ ଜୟନ୍ତୀ, ଜାତୀୟ ସପ୍ତାହ ଓ ଗାନ୍ଧୀଜୀଙ୍କ ସାମୟିକ ଉପବାସ ଉପଲକ୍ଷେ ଏ ଦିଗରେ ବିଶେଷ ଉଦ୍ୟମ ହେଉଥିଲା ଓ ଏସବୁ କାର୍ଯ୍ୟରେ ଛାତ୍ରଛାତ୍ରୀ-ମାନେ ଯୋଗଦାନ କରୁଥିଲେ ।

# ପନ୍ଦର

ହରିଜନ ସେବାକାର୍ଯ୍ୟରେ ଗୋପବାବୁ ୧୯୩୨ ଶେଷଯାକେ ବୁଡ଼ି ରହିଲେ । ୧୮-୮-୩୨ରୁ ଜେଲ୍‌ରୁ ଗାନ୍ଧୀ ବିଲାତ ପ୍ରଧାନମନ୍ତ୍ରୀଙ୍କୁ ଚିଠି ଲେଖିଥିଲେ ଯେ ତାଙ୍କ ପ୍ରସ୍ତାବିତ ସମ୍ବିଧାନରୁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ବ୍ୟବସ୍ଥା ଉଠାଇନେଇ ପ୍ରସ୍ତାବିତ ସମ୍ବିଧାନ ଯେପରି ଥିଲା ତାକୁ ସେପରି ରଖାଯାଉ, ନହେଲେ ସେ ଆମରଣ ଅନଶନ କରିବେ । ସେହିଦିନୁ ଦେଶବ୍ୟାପୀ ଅସହଯୋଗ ଆନ୍ଦୋଳନର ଅବସାନ ଘଟିଥିଲା ବୋଲି ଧରାଯାଇପାରେ । ସରକାରଙ୍କ ଦ୍ୱାରା ଦମନକାର୍ଯ୍ୟ ନିଷ୍ଠୁର ଭାବେ ଚାଲିଥିଲା । ବ୍ୟକ୍ତିଗତ ସତ୍ୟାଗ୍ରହ ବିଫଳ ହୋଇଥିଲା । ଗାନ୍ଧୀଜୀଙ୍କର ୧୮-୮-୩୨ର ଚିଠିର ଅର୍ଥ ହୋଇଥାନ୍ତା ଯେ ଖାଲି ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ବ୍ୟବସ୍ଥା ଉଠାଇଦେଲେ ସ୍ୱରାଜ୍ ପରିବର୍ତ୍ତେ ସେ ସରକାରଙ୍କ ପ୍ରସ୍ତାବିତ ସମ୍ବିଧାନରେ ରାଜି । ଏଥିରେ କଂଗ୍ରେସ କର୍ମୀମାନେ ଅସନ୍ତୁଷ୍ଟ ହୋଇଥିଲେ ଓ ନିରାଶ ହୋଇ ପଡ଼ିଥିଲେ ଓ ତାପରେ ଗାନ୍ଧୀଙ୍କ ନିର୍ଦ୍ଦେଶରେ ବ୍ୟକ୍ତିଗତ ସତ୍ୟାଗ୍ରହ ପନ୍ଥା ଧରା ହୋଇଥିଲା, ତାହା ବି ବିଫଳ ହେଲା । ଗାନ୍ଧୀ ରାଜନୈତିକ ଆନ୍ଦୋଳନ ସହିତ ସମ୍ପର୍କ ତୁଟାଇ ହରିଜନ ଆନ୍ଦୋଳନରେ ମନ ଦେଇଥିଲେ । ନୈରାଶ୍ୟ ଭିତରେ କଂଗ୍ରେସ ନେତାମାନେ ଓ କର୍ମୀମାନେ ପୁଣି ପୂର୍ଣ୍ଣ ସ୍ୱରାଜପ୍ରାପ୍ତି ପାଇଁ ଆନ୍ଦୋଳନ କରିବାକୁ ଅଧୀର ହୋଇ ଉଠିଥିଲେ । ଅର୍ଡିନାନ୍‌ସ ବଳରେ କଂଗ୍ରେସ ସଂସ୍ଥାକୁ ସରକାର ବେଆଇନ୍ ଘୋଷଣା କରିଥିଲେ ସୁଦ୍ଧା ଓ ସଭା ସମିତି ବନ୍ଦ କରାଯାଇଥିଲେ ସୁଦ୍ଧା ୧୯୩୩ ଜାନୁୟାରୀ ୨୬ ଦିନ ଚାରିଆଡ଼େ ପୁଲିସର ଲାଠିମାଡ଼ ଓ ଧର୍ଷଣ ଭିତରେ ମହାସମାରୋହରେ ସେହି ସ୍ମରଣୀୟ ଦିନଟି ପାଳିତ ହେଲା । ବହୁତ ଲୋକ ଗିରଫ ହେଲେ । ବଙ୍ଗଦେଶର ଠାଏ ଗୁଳିମାଡ଼ ବି ଚାଲିଲା । ଚାରିଆଡ଼େ ପ୍ରତିବାଦ, ଅଶାନ୍ତି । ଓଡ଼ିଶାରେ ମଧ୍ୟ ତାହାର ପବନ ଖେଳୁଥାଏ । ସରକାରଙ୍କ ନିଷେଧ, କଟକଣା ଓ ଦମନ ସତ୍ତ୍ୱେ

ମାର୍ଚ୍ଚ ୩୧, ୧୯୩୩ରେ ଶ୍ରୀମତୀ ନେଲି ସେନଗୁପ୍ତ ସଭାପତି ଥାଇ କଂଗ୍ରେସର ବାର୍ଷିକ ଅଧିବେଶନ ବସିବାର ସ୍ଥିର ହେଲା। ମହାତ୍ମା ଗାନ୍ଧୀ ଜେଲ୍‌ରେ ଥାନ୍ତି । ସେ ଅଧିବେଶନ ବସିଲା । ହଜାରରୁ ଅଧିକ ପ୍ରତିନିଧି ଜମା ହେଲେ, ପୁଲିସ ଲାଠିମାଡ଼ରେ ଯେତେବେଳେ ସଭାରେ ମୁଣ୍ଡ ଫାଟୁଥାଏ, ସେତେବେଳେ ୩ଟି ଲକ୍ଷ୍ୟ ସାଧନ ପାଇଁ ପ୍ରସ୍ତାବ ପାସ୍ ହେଲା : ୧—ସ୍ୱରାଜ୍ୟପ୍ରାପ୍ତି, ୨—ଅସହଯୋଗ ଆନ୍ଦୋଳନ, ୩—ବିଲାତି ଲୁଗା ଓ ବିଦେଶୀ ମାଲ ବର୍ଜ୍ଜନ ।

ଓଡ଼ିଶାରେ କଂଗ୍ରେସ୍ ଆନ୍ଦୋଳନ ଯେତେବେଳେ ନିସ୍ତେଜ ହୋଇ ପଡ଼ିଥିଲା ଜେଲରୁ ଫେରି ହରିଜନ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଗୋପବାବୁ ପୁଣି କଂଗ୍ରେସ୍ ସଂଗଠନକୁ ଆଶାସ୍ଥୀ ଓ ବଳିଷ୍ଠ କରିବାକୁ ଚେଷ୍ଟା କରିଥିଲେ ।

୨୪-୩-୧୯୩୩—ତୃତୀୟ ଥର ଗିରଫ ଓ ଜେଲ୍

୧୯୩୩ କଲିକତା କଂଗ୍ରେସକୁ ଓଡ଼ିଶାରୁ କେତେଜଣ କର୍ମୀ କଂଗ୍ରେସ୍‌ରେ ଯୋଗ ଦେବେ ବୋଲି ପ୍ରସ୍ତୁତ ହେଲେ । ଗୋପବାବୁ ଜିଦ୍ଧରି କଲେ ଯେ ସେ ଯିବେ, କିନ୍ତୁ ଚାଲି ଚାଲି ଯିବେ ଓ ସେହି ମର୍ମରେ ପ୍ରଶ୍ନପତ୍ର ବଣ୍ଟା ହେଲା । ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କୁ ବି ଗୋପବାବୁ ଚିଠି ଲେଖି ଜଣାଇଲେ । '୧୯୩୩ ମାର୍ଚ୍ଚ ୨୪ ତାରିଖରେ ସେ ଯିବେ ବୋଲି ଦିନ ଧରିଥାନ୍ତି । ବେଲ ପାଖ ହେଲା, ଜିନିଷପତ୍ର ବନ୍ଧା ହୋଇଥାଏ । ସେ ଉଠୁ ନ ଥାନ୍ତି, ଆରାମଚୌକିରେ ଚୂପ ହୋଇ ବସିଥାନ୍ତି । ପୁଲିସ୍ ପହଞ୍ଚିଗଲେ, ତାଙ୍କୁ ତାଙ୍କ କଟକ ଘରୁ ଗିରଫ କରି ନେଇଗଲେ । ତାଙ୍କୁ ବର୍ଷେ ଜେଲ୍ ହେଲା । ଅପ୍ରେଲ୍ ୨୭ କି ୨୮ ଯାକେ ତାଙ୍କୁ କଟକ ଜେଲରେ ରଖାଗଲା, ପୁଣି ତାଙ୍କୁ ହଜାରିବାଗ୍ ଜେଲ୍‌କୁ ନିଆଗଲା । ସେ ୧୯୩୪ ଜାନୁଆରିରେ ଖଲାସ୍ ହେଲେ । ସେତେବେଳେ ବିହାରରେ ଭୂମିକମ୍ପ ହେଲା ବୋଲି ରିଲିଫ କାର୍ଯ୍ୟରେ ସାହାଯ୍ୟ କରିବେ ବୋଲି ହଜାରିବାଗ୍ ଜେଲ୍‌ରୁ ରାଜନୈତିକ ବନ୍ଦୀମାନଙ୍କୁ ଛାଡ଼ି ଦିଆହୋଇଥିଲା ଓ ବର୍ଷେ ନ ପୂରୁଣୁ ସେ ଫେରି ଆସିଲେ ।

ହଜାରିବାଗ୍ ଜେଲ୍‌ରେ ସେଥର ତାଙ୍କର ତୃତୀୟଥର ରହଣି । ସେଠି ତାଙ୍କ ଅଭିଜ୍ଞତା ବିଷୟରେ ବିବରଣୀ କିଛି ମିଳି ନାହିଁ । ଅନୁମାନ କରାଯାଇପାରେ ଯେ ଜୀବନଧାରା ପୂର୍ବପରି ହୋଇଥିବ, ସଂକଳ୍ପ ଥିବ ଆହୁରି ଦୃଢ଼, ଧ୍ୟାନ ହୋଇଥିବ ଆହୁରି ନିବିଷ୍ଟ, ଚିନ୍ତନ ହୋଇଥିବ ଆହୁରି ତୀବ୍ର, —ଯାହାର ଚେରରୁ ଆରମ୍ଭ କରିବାକୁ ପଡ଼ିବ, ଆନ୍ଦୋଳନ ଚାଲିବ ନୂଆ ବାଟରେ, ସଂସ୍କାର କାର୍ଯ୍ୟ ଓ ରଚନାତ୍ମକ କାର୍ଯ୍ୟ ମାଧ୍ୟମରେ ସମାଜରେ ପରିବର୍ତ୍ତନ ଆଣି । ଆଗ ମୌଳିକ କାର୍ଯ୍ୟ । କଂଗ୍ରେସର ରାଜନୈତିକ ଆନ୍ଦୋଳନ ଆଗ ପରି ପଦାରେ ଉତ୍ତେଜନା ସୃଷ୍ଟି କରୁ ନ ଥାଏ,

ପଦାକୁ ଦିଶୁଥାଏ ଇଂରେଜ୍ ସରକାରଙ୍କ ହାତମୁଠା ଟାଣ ହୋଇଯାଇଛି, କଂଗ୍ରେସ୍ ଦବିଛି, ଆନ୍ଦୋଳନ ମାନ୍ଦା ପଡ଼ିଯାଇଛି । କିନ୍ତୁ ତା ଉହାଡ଼ରେ ଚାଲିଥାଏ ସଂଗଠନ, ପ୍ରଚାର, ବିବିଧ ରଚନାମୂଳକ କାର୍ଯ୍ୟ କରିବ । ସଙ୍ଗେ ସଙ୍ଗେ ଭାରତୀୟ ଜାତୀୟ ଜୀବନକୁ ନାନା ସମସ୍ୟା ଓ କୁସଂସ୍କାରରୁ ମୁକ୍ତ କରି ଦୃଢ଼ ଜାତୀୟ ଚରିତ୍ର ଗଢ଼ିବା ପାଇଁ ଉଦ୍ୟମ, ଆନ୍ଦୋଳନ ଶକ୍ତି ସଂଚୟ କରୁଥାଏ, ସତେ ଯେପରି ୧୯୪୨ ପାଇଁ ନିଜକୁ ପ୍ରସ୍ତୁତ କରୁଥାଏ ।

କିଛିଦିନ ପରେ ମହତାବ ବାବୁ, ରମା ଦେବୀ, ଭୁଲ୍ ବାବୁ, ଚୂନି, ସତ୍ୟନାରାୟଣ ସେନ୍‌ଗୁପ୍ତ ପୁନାରେ ହରିଜନ ସେବକ ସଂଘର ବୈଠକରେ ଯୋଗଦେଇ ଫେରିଲାବେଳେ ଗୋପବାବୁଙ୍କୁ ଦେଖିବାକୁ ହଜାରିବାଗ୍ ଗଲେ । ମହତାବ୍ ବାବୁ ଜେଲ୍ ହତା ଭିତରକୁ ବି ସିବାକୁ ଅନୁମତି ପାଇଲେ ନାହିଁ । ଅନ୍ୟମାନେ ଯାଇ ଦେଖା କଲେ । ବାପ ପୁଅ ଦେଖାଦେଖି ହେଲେ, ଘଣ୍ଟାଏ ବିତିଲା, ପୁଅ କିଛି କଥା କହିଲେ ନାହିଁ ।

ସେମାନେ ଫେରି ଆସିଲେ । ସେ ବର୍ଷ ପ୍ରବଳ ବର୍ଷା ହେଲା । କଟକରେ ଭୀଷଣ ନଈବଢ଼ି, କାଠଯୋଡ଼ି ନଈବନ୍ଧ ଟଳମଳ ହେଲା, ରାଜାବଗିଚା ପାଖେ ଅତଡ଼ା ଖାଇଲା, ବନ୍ଧ ଭାଙ୍ଗିବା ଆଶଙ୍କା ଥାଏ । ବନ୍ଧରେ ବାଲିବସ୍ତା ଲଦା ହେଉଥାଏ, ବନ୍ଧ କଡ଼ରେ ଗଛଡାଳ କାଟିଆଣି ପକା ହେଉଥାଏ । ଏସବୁ କାର୍ଯ୍ୟରେ କଂଗ୍ରେସ୍ କର୍ମୀମାନେ ଲାଗି ପଡ଼ିଥାନ୍ତି ଓ ରାତି ସାରା ବୁଲି ବୁଲି ବନ୍ଧ ଜଗିଥାନ୍ତି । ଘୋର ବର୍ଷା ବେଳେ କଟକର ସୁତାହାଟ ଆଦି ନାନା ସ୍ଥାନ ଯେତେବେଳେ ପାଣିରେ ବୁଡ଼ିଗଲା, ଲୋକଙ୍କ ଘର ଭାଙ୍ଗିଲା ଓ ରିଲିଫ୍ କାମ ଲାଗିଗଲା, କଂଗ୍ରେସ୍ ଲୋକେ ସେ କାର୍ଯ୍ୟରେ ବି ଲାଗିଥିଲେ । ବଢ଼ି ସଙ୍ଗେ ସଙ୍ଗେ ଘାଇ ଭାଙ୍ଗିଲା । କଟକ ବଞ୍ଚିଗଲା ସିନା, ଆରପାରି ବନ୍ଧରେ ପୂର୍ବ ଆଡ଼କୁ ୬ ମାଇଲ ଦୂରରେ ଖଣ୍ଡାଇତା ଗାଁ ପାଖେ ଘାଇ ଭାଙ୍ଗିଲା, ବହୁତ ଦୂରକୁ ପାଣି ମାଡିଗଲା, ବହୁତ ଜମିରେ ବାଲି ଚଢ଼ିଲା । ଖଣ୍ଡାଇତା ଘାଇର ବିଭୀଷିକା ଏବେ ବି ଲୋକଙ୍କର ମନେଅଛି । କାଠଯୋଡ଼ି ଓ ଦେବୀ ନଈ କୂଳେ କୂଳେ କେତୋଟି ସ୍ଥାନରେ ଘାଇ ହେଲା, ରିଲିଫ୍ କାର୍ଯ୍ୟ ଲାଗିଲା, କଂଗ୍ରେସ୍ କର୍ମୀମାନେ ରିଲିଫ୍ କାର୍ଯ୍ୟର ଦାୟିତ୍ୱ ନେଲେ ଓ ସେ କାର୍ଯ୍ୟରେ ଦିନରାତି ବିତେଇବାକୁ ଲାଗିଲେ । ଖଣ୍ଡାଇତା, ଝାଡ଼ପଡ଼ା, ଅନନ୍ତପୁର, କାକଟପୁର ଆଦି ସ୍ଥାନରେ ରିଲିଫ୍ କେନ୍ଦ୍ର ବସିଲା । କିନ୍ତୁ ସେତେବେଳେ ଗୋପବାବୁ ଥିଲେ ଜେଲ୍‌ରେ ।

## ଜାନୁଆରି ୧୯୩୪—ଜେଲ୍‌ରୁ ଖଲାସ—ବିହାର ଭୂମିକମ୍ପ-ସାହାଯ୍ୟ

ଜେଲ୍‌ରୁ ଫେରି ଗୋପବାବୁ ପାଟନା, ମଙ୍ଗେର, ଗୟା ଆଦି ବିହାର ଭୂମିକମ୍ପରେ ବିଧ୍ୱସ୍ତ ଅଞ୍ଚଳମାନ ବୁଲି ବୁଲି ଦେଖିଲେ ଓ ସେ ବିଷୟରେ ସେ ତାଙ୍କର ଅନୁଭୂତି ସମ୍ବାଦପତ୍ରମାନଙ୍କରେ ପ୍ରକାଶ କଲେ । ବିଭିନ୍ନ ସ୍ଥାନକୁ ଲେଖାଲେଖି କଲେ ଓ ସାହାଯ୍ୟ ପାଇଁ ନିବେଦନ ଜଣେଇଲେ ।

## ଓଡ଼ିଶାରେ ବନ୍ୟା ସାହାଯ୍ୟ

ତାପରେ ସେ ଓଡ଼ିଶାର ବନ୍ୟାବିଧ୍ୱସ୍ତ ଅଞ୍ଚଳରେ ରିଲିଫ୍ କାର୍ଯ୍ୟ କରିବାକୁ ଓଡ଼ିଶା ଚାଲି ଆସିଲେ । ସେ ବୁଲି ବୁଲି ବିଭିନ୍ନ ଅଞ୍ଚଳ ଦେଖୁଥାନ୍ତି ଓ ପ୍ରତି କେନ୍ଦ୍ରରେ ଦିନେ ଦିନେ ରହୁଥାନ୍ତି । ତାଙ୍କ ସହିତ ଡଙ୍ଗାରେ କେତେକ କଂଗ୍ରେସ କର୍ମୀ ମଧ୍ୟ ଥିଲେ ଓ ସେମାନଙ୍କ ଭିତରେ ବିଶ୍ୱନାଥ ପଣ୍ଡା ଓ ମନମୋହନ ଚୌଧୁରୀ ଥିଲେ । ଗୋପବାବୁ ବାରମ୍ବାର କହୁଥାନ୍ତି ଯେ ରିଲିଫ୍ କାର୍ଯ୍ୟରେ ଖାଲି ଚାଉଳ ବାଣ୍ଟିଲେ ଯଥେଷ୍ଟ ନୁହେଁ, ଲୋକଙ୍କୁ ସାହସ ଦେବାକୁ ପଡ଼ିବ, ତାଙ୍କ ଆତ୍ମବିଶ୍ୱାସ ଓ ଆତ୍ମ-ମର୍ଯ୍ୟାଦାବୋଧ ବଢ଼ାଇବାକୁ ପଡ଼ିବ ଓ ତାଙ୍କର ନୈତିକ ଉନ୍ନତି କରିବାକୁ ପଡ଼ିବ । ବଡ଼ ନେତା ଆସିଛନ୍ତି ବୋଲି ବଡ଼ି ଅଞ୍ଚଳରେ ଚାରିଆଡ଼ୁ ଲୋକେ ତାଙ୍କୁ ଭେଟିବାକୁ ଓ ଦୁଃଖ ଜଣାଇବାକୁ ଆସୁଥାନ୍ତି । ସେ ତାଙ୍କ ପାଇଁ ସାହାଯ୍ୟ ବ୍ୟବସ୍ଥା କରନ୍ତି, ତାଙ୍କୁ ଆଶ୍ୱାସ ଦିଅନ୍ତି ଓ ଭଗବାନଙ୍କ ଉପରେ ଦୃଢ଼ ବିଶ୍ୱାସ ରଖିବାକୁ କୁହନ୍ତି ।

ଗାନ୍ଧୀଜୀଙ୍କର ହରିଜନ ଯାତ୍ରାକ୍ରମ ଭିତରେ ସେହି କାର୍ଯ୍ୟରେ ଓଡ଼ିଶା ଯାତ୍ରା ବି ପଡ଼ିଲା । ୧୯୩୪ ମେ ମାସ ଆରମ୍ଭରୁ ସେ ଓଡ଼ିଶା ଆସିବେ । ମେ ୬ ତାରିଖରେ ଝାରସୁଗୁଡ଼ା ବାଟେ ରେଲରେ ସମ୍ବଲପୁରରେ ପହଞ୍ଚି ତାଙ୍କର ପ୍ରଥମ ରହଣି, ସେଠୁ ୭ ତାରିଖରେ ମଟରରେ ଅନୁଗୁଳ ଯିବେ, ମେରାମଣ୍ଡଳି ଯିବେ ଓ ସେହି ରାତିରେ ମେରାମଣ୍ଡଳି ଷ୍ଟେସନରେ ରେଲ ଚଢ଼ି ପୁରୀ ଯିବେ । ସେଠୁ ମଟରରେ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯିବେ ।

ଏହିପରି ଓଡ଼ିଶାରେ ତାଙ୍କର ସାତଦିନିଆ ଯାତ୍ରା । ତାଙ୍କ ସହିତ ହରିଜନ ସେବାସଂଘର ସେକ୍ରେଟାରୀ ଠକ୍କର ବାପା ମଧ୍ୟ ଆସିବେ । କେତେକ ଅନ୍ୟାନ୍ୟ ନେତା ଓ କର୍ମୀ ବି ଆସିବେ । ଆଗରୁ ସବୁ ବନ୍ଦୋବସ୍ତ କରିବାକୁ ପଡ଼ିବ, ହରିଜନ କାର୍ଯ୍ୟ ପାଇଁ ଚାନ୍ଦା ଉଠାଇ ପ୍ରତି ରହଣି ସ୍ଥାନରେ ଗାନ୍ଧୀଜୀଙ୍କୁ ଭେଟି ଦେବାକୁ ପଡ଼ିବ । ରହଣି ବନ୍ଦୋବସ୍ତ କରିବାକୁ ପଡ଼ିବ । ସଭା କାର୍ଯ୍ୟ ପାଇଁ ଆୟୋଜନ କରିବାକୁ ପଡ଼ିବ । ବ୍ୟାପକଭାବେ ହରିଜନ ସେବାକାର୍ଯ୍ୟ, ଯଥା :—ହରିଜନ ଗାଁ ଓ ବସ୍ତି ସଫେଇ, ଅଛୁଆଁ ନିବାରଣ, କୂଅ, ତୋଠ, ମନ୍ଦିର ଆଦି ସର୍ବସାଧାରଣ

ସ୍ଥାନରେ ହରିଜନ ପ୍ରବେଶ, ହରିଜନଙ୍କ ପାଇଁ ନାନା ଉନ୍ନତିକର କାର୍ଯ୍ୟ ଏସବୁ ବି ତ୍ୱରାନ୍ୱିତ କରିବାକୁ ପଡ଼ିବ । ଶ୍ରଦ୍ଧା ସଂଗ୍ରହ, କର୍ମୀ ସଂଗ୍ରହ, ସ୍ୱେଚ୍ଛାସେବକ ତାଲିମ, ଖାଦ୍ୟପେୟ ବ୍ୟବସ୍ଥା କେତେ କାମ । ତା ସହିତ ଖଦୀ ଆଦି କଂଗ୍ରେସର ବିବିଧ ରଚନାତ୍ମକ କାର୍ଯ୍ୟ । ଗୋପବାବୁ ଏସବୁ କାର୍ଯ୍ୟରେ ଦିନରାତି ଲାଗିପଡ଼ିଲେ ଓ ବୁଲିଲେ, ତାଙ୍କୁ ଫୁରୁସତ୍ ନ ଥାଏ । ଅନ୍ୟାନ୍ୟ କଂଗ୍ରେସ ନେତା ଓ କର୍ମୀମାନେ ମଧ୍ୟ ଲାଗିଥାନ୍ତି ।

## ଷୋହଳ

### ୧୯୩୪ ମେ ୭—ଗାନ୍ଧୀଜୀଙ୍କ ଓଡ଼ିଶାରେ ହରିଜନ ଗସ୍ତ—ଗୋପବାବୁ ସହଯାତ୍ରୀ

[ଗାନ୍ଧୀଜୀ ଆସିଲେ । ୧୯୩୪ ମେ ମାସ ୭ ତାରିଖ ଦିନ ଝାରସୁଗୁଡ଼ାରେ ସେ ରେଲରୁ ଓହ୍ଲାଇଲେ, ଓଡ଼ିଶାରେ ପାଦ ଦେଲେ । ଗୋପବାବୁ ତାଙ୍କ ସଙ୍ଗେ ସଙ୍ଗେ ଥିଲେ, ଦୁଇଥର ଯାକ ତାଙ୍କ ହରିଜନ ଗସ୍ତ ବେଳେ କଟକରେ ରହି ସବୁ ବ୍ୟବସ୍ଥା କରୁଥିଲେ । ତାଙ୍କ ସଙ୍ଗେ ଥିଲେ ରମା ଦେବୀ, ତାଙ୍କ ପୁଅ, ଝିଅ । ଓଡ଼ିଶାର କଂଗ୍ରେସ ନେତା ଓ କର୍ମୀମାନେ ସହଜେ ତ ଗାନ୍ଧୀଜୀଙ୍କ ଗସ୍ତରେ ଯୋଗ ଦେଉଥାନ୍ତି, ସେ ସନ୍ଧ୍ୟାନୀଙ୍କ ନାନା କାର୍ଯ୍ୟ ତୁଲାଉଥାନ୍ତି । ଆଉ ଥାନ୍ତି ଜନତା ।]

ତାଙ୍କ ଦର୍ଶନ ପାଇଁ କାହିଁ ଦୂରଦୂରାନ୍ତରୁ ଗାଁ ଗହଳି ଭିତରୁ ବାଟ କାଟିକରି ମଣିଷଧାର ଛୁଟିଥାଏ, ସ୍ତ୍ରୀ ଲୋକ, ଥୁରୁ ଥୁରୁ ବୁଢ଼ା, ଟିକି ଟିକି ପିଲା ବି ଆସୁଥାନ୍ତି । ବୁଲି ବୁଲି, କିଏ ପତାକା ଧରି ଜୟଧ୍ୱନି ଦେଇ ଦେଇ, କିଏ ଶଗଡ଼ଗାଡ଼ିରେ ବସି, କିଏ ଶଗଡ଼ରେ ଓଦର କାରମେଇରେ ବସି, ଯେ ଯେଉଁ ପ୍ରକାର କିଏ କିଣ ଭେଟି

ଦେବ ବୋଲି ଯେଉଁ ଆସିଛୁ, ଫୁଲ ଫଳ, ଛେନା ଟିକିଏ, ଗୁଡ଼ର କଖାରୁଟିଏ, ଘରମରା ଘିଅ ଟିକିଏ, କିଏ କିଛି ପଇସା କଉଡ଼ି, କେଉଁ ଭିକାରୀ କାନରେ ବାନ୍ଧି ଆଣିଛୁ ପଇସାଟିଏ, ଯାହାର ଯା ଶରଧା, ଯେବା ହେଉ ବା ନ ହେଉ । ସେମାନେ ଆସିଛନ୍ତି ଭାଗ୍ୟରେ ଥିଲେ ଟିକିଏ ଦର୍ଶନ କରିବେ, ଗୋଡ଼ତଳେ ପଡ଼ିବେ, ସେ ଚାଲିଗଲି ବାଟରୁ ଅଞ୍ଜୁଳା ଅଞ୍ଜୁଳା ଧୂଳି ନେଇ ମୁଣ୍ଡରେ ବୋଳିବେ । ହସିବେ, କାନ୍ଦିବେ, ଦୁଃଖ ଜଣାଇବେ, ଜୟ ଜୟକାର କରିବେ, "ମହାତ୍ମା ଗାନ୍ଧୀ କି ଜୟ" । ସେହି ଗୋଟିଏ ଡାକରେ ଆସମୁଦ୍ର ହିମାଚଳ ସତେ ଅବା ସମଗ୍ର ଭାରତର ଜନତାର ଆତ୍ମା ଏକ ଆତ୍ମା ହୋଇଥିଲା । ରୂପ ଯେଉଁଥିଲା ଗାନ୍ଧୀ ହୋଇ । ଯେ ତାଙ୍କ ଯେତିକି ନିକଟ, ଜନତା ଆଖିରେ ସେ ସେତିକି ବଡ଼ । ଯେ ପିନ୍ଧି ଥିଲା ଖଦଡ଼, ଜନତା ଆଖିରେ ସତେକି ତାଠି କିଛି ବିଶେଷ ଗୁଣ । ଖାଲି ପାଦ, ପାଦରେ ବିଣ୍ଡି, ଫୋଟକା, ଧୂଳି କାଦୁଅ, ଖାଲି ଦେହ, ସାନ ଖଦୀ ଖଣ୍ଡେ ପିନ୍ଧା, ଝାଳରେ ତରରେ ଭିଜି, ବାରଘର ଶୁଣି ପିଣ୍ଡା, ଗାଁ ଗହଳର ସାଧାରଣ କଂଗ୍ରେସ କର୍ମୀ, ସେତେବେଳେ ଜନତା ଆଖିରେ ଗାନ୍ଧୀ-ଲୋକ, ତେଣୁ ଗାନ୍ଧୀ ଅଂଶୀ, ତେଣୁ ସେ ସାହସ, ଆଶ୍ୱାସ ଓ ବିଶ୍ୱାସର ସ୍ଥଳ । ତା ପ୍ରତି ଲୋକଙ୍କର ସ୍ୱତଃ ସ୍ନେହ ଥିଲା, ଶ୍ରଦ୍ଧା ଥିଲା, ଭକ୍ତି ଥିଲା । ତାଙ୍କ ଆଖିରେ ସେ ଗୋଟିଏ ନିଃସ୍ୱାର୍ଥପର, ତ୍ୟାଗୀ, ଅଧା-ବାବାଜୀ । ତାଠୁ ବହୁତ ଆଶା କରାଯାଉଥିଲା । ମନ୍ତ୍ର ମୁଗର ସ୍ୱପ୍ନ, ଆକାଂକ୍ଷା ସଫଳ କରିବାକୁ ସାହାଯ୍ୟ କରିବ ସେହି ତ—ଅବଶ୍ୟ, ସମସ୍ତିଙ୍କର ଏ ବିଶ୍ୱାସ ନ ଥିଲା । ସରକାରପକ୍ଷିଆ ବି କିଛି ଲୋକ ଥିଲେ । ସଂଖ୍ୟାରେ ଅଳ୍ପ, ଧନ ଓ କ୍ଷମତାରେ ସରକାର ଭରସାରେ ବଳୀ । ଆଉ ଥିଲେ ଅନ୍ୟାନ୍ୟ ରାଜନୈତିକ ମତର ଲୋକ, ସଂଖ୍ୟାରେ ଅଳ୍ପ । ସେମାନେ ବସନ୍ତି ସହରରେ । କଂଗ୍ରେସ କର୍ମୀମାନଙ୍କ ଭିତରେ ବି ପ୍ରକାର ପ୍ରକାର ଥିଲେ । କିନ୍ତୁ ଗାନ୍ଧୀ ନାଁ ତଳେ ଲୋକଙ୍କ ବିଶ୍ୱାସ ଓ ହୃଦୟ ଭାବ ଆଗରେ ଖାଲି ଛିପ ବାରି ହେଉ ନ ଥିଲା । ଅନେକ ସରକାରୀ ଚାକିରିଆ ଦାନାପାଣି ପାଇଁ ମୁଣ୍ଡ ବିକିଥିଲେ ମଧ୍ୟ ଅନ୍ତର ଭିତରେ ଜପୁଥିଲେ ଗାନ୍ଧୀ ଓ ସ୍ୱରାଜ୍ୟ । ଛାତ୍ରମାନଙ୍କ କଥା କହିବା ବାହୁଲ୍ୟ । ପାଠ ଛାଡ଼ନ୍ତୁ ବା ସ୍କୁଲ କଲେଜରେ ପଢ଼ୁଥାନ୍ତୁ ତାଙ୍କ ଭିତରୁ ଅଧିକାଂଶ ମହାତ୍ମା ଗାନ୍ଧିଙ୍କ ସଙ୍ଗେ ଆତ୍ମିକଭାବେ ଜଡ଼ିତ ଥିଲେ । ଅସହଯୋଗ ଆନ୍ଦୋଳନ ବନ୍ଦ ହୋଇଥିଲା । ଲକ୍ଷ ଲକ୍ଷ ଲୋକ ଜେଲ୍ ଯାଇ ଠେଙ୍ଗାମାଡ଼ରେ ଲହୁଲୁହାଣ ହୋଇ, ସର୍ବସ୍ୱାନ୍ତ ହୋଇ, କେତେଲୋକ ମରି ତଥାପି ସ୍ୱରାଜ୍ୟପ୍ରାପ୍ତି ଦିଗ୍‌ବଳୟରେ ବି ଦିଶୁ ନ ଥାଏ । କିନ୍ତୁ ଦେଶବାସୀ ବିଶ୍ୱାସ ରଖିଥାନ୍ତି ଯେ ତାଙ୍କର ଗାନ୍ଧୀ ଅଛନ୍ତି, ସ୍ୱରାଜ ଅବଶ୍ୟ ମିଳିବ ।

୭-୪-୧୯୩୪ରେ ଝାରସୁଗୁଡ଼ାରେ ସମ୍ବଲପୁର ଜନତା ମହାତ୍ମା ଗାନ୍ଧୀଙ୍କୁ ଦର୍ଶନ କଲେ । ସମ୍ବଲପୁର ଅଞ୍ଚଳର ଲୋକେ ଆଗରୁ ଭାରି ଦୁଃଖ କରୁଥିଲେ ଯେ

ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାମାନଙ୍କୁ ସେ ଥରେ ଦୁଇଥର ଯାଇଥିଲେ ସୁଦ୍ଧା କେବେ ସମ୍ବଲପୁର ଆସି ନ ଥିଲେ । ୧୯୨୮ ଡିସେମ୍ବର ମାସରେ ଥରେ ଗାନ୍ଧୀଜି ବିନୋବାଜିଙ୍କ ଓ୍ୱାର୍ଦ୍ଧା ଆଶ୍ରମରେ ଥାନ୍ତି । ଡିସେମ୍ବର ୧୮ କିମ୍ବା ୧୯ ତାରିଖରେ ଗୋପବାବୁ ଯାଇ ତାଙ୍କ ସଙ୍ଗେ ଦେଖାକଲେ ଓ ସମ୍ବଲପୁରବାସୀଙ୍କ ମନର ଦୁଃଖ ତାଙ୍କୁ କହିଲେ । ସେତେବେଳେ କଲିକତାରେ କଂଗ୍ରେସ ହେବାର ଥାଏ ଓ ଗାନ୍ଧୀ କଂଗ୍ରେସ ଅଧିବେଶନକୁ ଅସିବାର ଥାଏ । ଗୋପବାବୁ ତାଙ୍କୁ ଅନୁରୋଧ କଲେ ଯେ ସେ କଲିକତା ଯିବା ବାଟରେ ସମ୍ବଲପୁର ଆସନ୍ତୁ । ସେତେବେଳେ ଗାନ୍ଧୀଜି ନିଜେ ଓଡ଼ିଶାର ଦୁଃଖ ବର୍ଣ୍ଣନା କରି କାନ୍ଦ ପକାଇଥିଲେ ।

ତା'ପରେ ଏଥର ସେ ସମ୍ବଲପୁର ଆସିଲେ । ଝାରସୁଗୁଡ଼ା ଷ୍ଟେସନରେ କେତେଗୁଡ଼ିଏ ଲୋକ ସୂତା କାଟୁଥିଲେ, ସେମାନେ ପୁରୁଣା କଟାଳି ଓ ଆଖପାଖ ବସ୍ତିରେ ତାଙ୍କର ଘର । ତାଙ୍କୁ ଦେଖି ଗାନ୍ଧୀଜି ଭାରି ଖୁସି ହେଲେ ।

ଝାରସୁଗୁଡ଼ାରେ ଗାଡ଼ି ବଦଳାଇ ଗାନ୍ଧୀଜି ସମ୍ବଲପୁରରେ ପହଞ୍ଚିଲେ । ଷ୍ଟେସନରେ ବିରାଟ ଜନତା । ସମ୍ବଲପୁରରେ ସେ ଚନ୍ଦ୍ରଶେଖର ବେହେରାଙ୍କ ଘରେ ରହିଲେ । ସେଦିନ ଯୋଡ଼ିଏ ସାଧାରଣ ସଭା ହେଲା । ବହୁତ ଲୋକ ଜମା ହେଲେ । ଗୋଟିଏ ସଭା କେବଳ ସ୍ତ୍ରୀ ଲୋକମାନଙ୍କ ପାଇଁ । ସେମାନେ ଏତେସଂଖ୍ୟାରେ ଆସିଛନ୍ତି ଦେଖି ଗାନ୍ଧୀଜି ଭାରି ଖୁସି ହେଲେ । ସେ ଆହୁରି ଖୁସି ହେଲେ ସମ୍ବଲପୁରର ଲୋକେ ବିଶେଷତଃ ସବୁ ସ୍ତ୍ରୀ ଲୋକ ହାତବୁଣା ଲୁଗା ପିନ୍ଧନ୍ତି । ସମ୍ବଲପୁରରେ ବହୁତ ଉତ୍ସାହ ଖେଳିଗଲା ।

୧୯୩୦ ମେ ୭ ତାରିଖ ଦିନ ଗାନ୍ଧୀଜି ମଟରରେ ସମ୍ବଲପୁରରୁ ଅନୁଗୁଳ ଗଲେ, ଗୋପବାବୁ ଆଦି ତାଙ୍କ ସଙ୍ଗେ ଥିଲେ । ସରକାରୀ ଡାକବଙ୍ଗଳା ତାଙ୍କୁ ମନା ହେଲା । କିନ୍ତୁ ଜନସାଧାରଣ ଓ ମୁଖ୍ୟତଃ କଣ୍ଟ୍ରାକ୍ଟର ଶ୍ରୀ ଗିରିଜା ଭୂଷଣ ଦତ୍ତ ସବୁ ପ୍ରକାର ସାହାଯ୍ୟ ଓ ସୁବିଧା କରିଦେଲେ । ଅନୁଗୁଳ ସହରତଳିରେ ଗୋଟିଏ ଆମ୍ବତୋଟାରେ ଗୋଟିଏ ପୁରୁଣା, ଧିଆଁ ଦଦରା ତମ୍ବୁ ପଡ଼ିଲା । ଖରାବେଳ ଯାକ ଗାନ୍ଧୀଜି ସେଇଠି ରହିଲେ । ସରକାରୀ କର୍ମଚାରୀ କଟକଣା ଜାରି କରିଥାନ୍ତି, ସଭା ସମିତି ନିଷେଧ କରି ହୋଇଥାଏ, କିନ୍ତୁ ହଜାର ହଜାର ଲୋକ ଜମିଥାନ୍ତି, ଦୁଇଥର ସଭା ହେଲା ।

୭-୫-୧୯୩୪ରେ ଗାନ୍ଧୀଜୀ ଅନୁଗୁଳରୁ ମଟରରେ ମେରାମଣ୍ଡଳି ଷ୍ଟେସନକୁ ଗଲେ, ସେଠି ରେଲ୍‌ରେ ବସି ରାତି ୧୦ଟାରେ ପୁରୀ ଷ୍ଟେସନରେ ଓହ୍ଲାଇଲେ । ସେଠି ବିପୁଳ ଜନତା, ବିରାଟ ସମ୍ବର୍ଦ୍ଧନା । ଗୁଳି ଗୁଳି ତାଙ୍କ ରହଣି ସ୍ଥାନ ଆଡ଼କୁ

ଗଲେ । ସେହି ଘଡ଼ିରୁ ତାଙ୍କର ମୌନବ୍ରତ ଦିବସ ଥାଏ । ସେ ଲକ୍ଷ୍ୟ କଲେ ଯେ ଭିଡ଼ରେ ବହୁତ ପୁଲିସ୍ ଅଛନ୍ତି, ସେମାନେ ତାଙ୍କ ପାଇଁ ବାଟ କରାଇ ଦେଉଛନ୍ତି ଓ ସେହି ଗହଳରେ ଚାଲିଛନ୍ତି । କାହିଁକି ପୁଲିସ୍ ଅଛନ୍ତି ସେ ବୁଝିପାରିଲେ ନାହିଁ ।

ବସାରେ ପହଞ୍ଚି କାରଣଟି ପଚାରି ବୁଝିଲେ । ସେ ବୁଝିଲେ ଯେ କାଳେ କିଏ ତାଙ୍କୁ ଆକ୍ରମଣ କରିବ ସେଥିପାଇଁ ପୁଲିସ ଆସିଛନ୍ତି । ସେ ଅସ୍ପୃଶ୍ୟତା ନିବାରଣ କରୁଛନ୍ତି, ମନ୍ଦିରରେ ଅଛୁଆଁ ଜାତିଙ୍କୁ ପୂରାଇବାକୁ ଚାହାନ୍ତି, ତେଣୁ ରକ୍ଷଣଶୀଳ ହିନ୍ଦୁମାନେ ତାଙ୍କର ବିରୋଧୀ ଓ ପୁରୀର ପଣ୍ଡାମାନେ ତାଙ୍କୁ ଆକ୍ରମଣ କରିବାର ଆଶଙ୍କା ଅଛି ବୋଲି ସ୍ଥାନୀୟ ମ୍ୟାଜିଷ୍ଟ୍ରେଟ୍ କେଉଁଠୁ ସମ୍ବାଦ ପାଇ ପୁଲିସ୍ ବ୍ୟବସ୍ଥା କରିଛନ୍ତି । ତାଙ୍କ ପ୍ରତି ବିପଦ ଡରରେ ଏପରି ହୋଇଛି ଶୁଣି ଗାନ୍ଧୀଜି ଭାରି ଦୁଃଖିତ ହେଲେ, "ସତ୍ୟାଗ୍ରହୀ ଡରିବ !" ସେ ମୌନ ଥାନ୍ତି । କିଛି କହିବାର ଥିଲେ ଲେଖି ଜଣାଉଥାନ୍ତି । ତାଙ୍କ ପାଖରେ ଠକ୍କର ବାପା ଥାନ୍ତି । ତହିଁ ଆରଦିନ ଗୋପବାବୁ ଆଦିଙ୍କୁ ଠକ୍କର ବାପା କହିଲେ, ଗାନ୍ଧୀଜି ନିଷ୍ପତ୍ତି କରିଛନ୍ତି, ଏଣିକି ଓଡ଼ିଶାରେ ତାଙ୍କର ଯେଉଁ ହରିଜନ-ଯାତ୍ରା, ସେ ପଦଯାତ୍ରା ହେବ, ଆଉ ରେଲ୍ କିମ୍ବା ମଟରରେ ନୁହେଁ ।

ଚାରିଆଡ଼େ ଚହଳି ପଡ଼ିଗଲା । ସମୁଦାୟ ତ ସାତଦିନ ଯାତ୍ରା, ଏ ନୂଆ ନିଷ୍ପତ୍ତି ଅର୍ଥ—ଯେଉଁଠିକୁ ସେ ଯିବେ ବୋଲି ଆଗରୁ ବନ୍ଦୋବସ୍ତ ହୋଇଥିଲା, ପ୍ରଚାର ହୋଇଥିଲା ତା ଆଉ ରହିବ ନାହିଁ । ସବୁ ନିର୍ଘଣ୍ଟ, ସବୁ ଆୟୋଜନ ଓଲଟପାଲଟ, ତାକୁ ବନ୍ଦ କରିବାକୁ ହେବ, ହଠାତ୍ ପୁଣି ସଙ୍ଗେ ସଙ୍ଗେ ନୂଆ ନିର୍ଘଣ୍ଟ ନୂଆ ଆୟୋଜନ କରିବାକୁ ପଡ଼ିବ । କଂଗ୍ରେସ୍ କର୍ମୀମାନେ ନିରାଶ ହେଲେ, ତାଙ୍କୁ ନିବର୍ତ୍ତାଇଲେ, କିନ୍ତୁ ସେ ଅଟଳ ରହିଲେ, ଗୋପବାବୁଙ୍କୁ କହିଲେ, "ପଦଯାତ୍ରା କରିବାକୁ ଆପଣଙ୍କ ମନ ବଳ, କିନ୍ତୁ ଦେହ ଡରୁଛି ପରା !"

"While your spirit is willing, your flesh creeps !"

ତାଙ୍କରି କଥା ରହିଲା । ଖବର ଦିଆଗଲା ଯେ ୧୯୩୪ ମେ ୯ ତାରିଖରୁ ସେ ଚାଲି ଚାଲି ପୁରୀରୁ ବାହାରିବେ । ଜଗନ୍ନାଥ ସଡ଼କରେ ଚାଲି ଚାଲି ଆଗ ଯିବେ ପୁରୀରୁ କଟକ, ଦିନକୁ ଦୁଇଥର ଚାଲିବେ, ସକାଳୁ ବାହାରି ୪।୫ ମାଇଲ, ସେଉଠୁ ଠାଏ ଗଛତଳେ ରହଣି, ସେଠି ଖିଆପିଆ, ପୁଣି ସେଠି ଉପରଓଳି ଖିଆପିଆ, ତାପରେ ଉପରଓଳି ପୁଣି ଚାଲିବେ ୪।୫ ମାଇଲ, ପୁଣି ଠାଏ ରହଣି, ରାତିରେ ସେଇଠି କେଉଁ ଖୋଲା ପଡ଼ିଆରେ ଶୋଇବେ, ସକାଳେ ଜଳଖିଆ ଖାଇ ବାହାରିବେ । ସେ-

ପଦାରୁ କିଛି ଖାଇବେ ନାହିଁ, ବାହାରୁ ଅଣା ହୋଇଥିବା ଫଳ ବି ଖାଇବେ ନାହିଁ । ଗାଁବାଲା ଯାହା ଦେବେ ସେଇଆ ଖାଇବେ । ତାଙ୍କ ପିଛା ବେଶି ଖର୍ଚ୍ଚ ହେବ ନାହିଁ, ତାଙ୍କ ଦଳରେ ବେଶି ଲୋକ ଯିବେ ନାହିଁ, ମାତ୍ର ୧୪ ଜଣ ଯିବେ, ସେ ନିଜ ବନ୍ଦୋବସ୍ତରେ ଯାଉନ୍ତୁ ତା ଭିନ୍ନେ କଥା । ଯେ ତାଙ୍କ ସଙ୍ଗେ କିଛି କଥାଭାଷା ହେବ, ଆଗରୁ ଠିକଣା ହୋଇଥିବ, ସେ ବାଟ ଚାଲିଲାବେଳେ ସେ ତା ସଙ୍ଗେ କଥା ହେବ । ପ୍ରତି ରହଣି ଜାଗା ପାଖରେ ଯେଉଁ ହରିଜନ ଗାଁ ଥିବ ସେଠିକି ସେ ବୁଲିଯିବେ । ସେ ସବୁଠିଁ ଗାଁ ସଫେଇ ହେବ, ଅସ୍ପୃଶ୍ୟତା ନିବାରଣ ହେବ । ତାଙ୍କୁ ଯାହା ଭେଟି ଦିଆଯିବ ତା ନିଲାମ ହେବ, ଟଙ୍କା ହରିଜନ କାମ ପାଣ୍ଠିକୁ ଯିବ, ସେହିପରି ଭେଟି ଟଙ୍କାତକ ।

ମେ ୭ ତାରିଖରେ ଗାନ୍ଧୀଜିଙ୍କ ପୁରୀ ରହଣିବେଳେ ପୁରୀରେ ବହୁ ଜନସମାଗମ । ଗାନ୍ଧୀଜୀ ମନ୍ଦିରକୁ ଗଲେ ନାହିଁ କାରଣ ସେଠିକୁ ହରିଜନ ଯାଆନ୍ତି ନାହିଁ, ତାଙ୍କୁ ମାନୁଥିବା କର୍ମୀଙ୍କୁ ବି ତାଙ୍କର ସେହି ନିର୍ଦ୍ଦେଶ ।

ସନ୍ଧ୍ୟାରେ ଶ୍ରୀଜଗନ୍ନାଥ ମନ୍ଦିର ଆଗରେ ସିଂହଦ୍ୱାରରେ ବିରାଟ ସଭା ହେଲା । ଗାନ୍ଧୀଜୀ ଭାଷଣ ଦେଲେ । ସେତିକିବେଳେ ବଡ଼ଦାଣ୍ଡରେ ଉତ୍କଳମଣି ଗୋପବନ୍ଧୁଙ୍କର ଗୋଟିଏ ପଥରମୂର୍ତ୍ତି ସେ ପ୍ରତିଷ୍ଠା କଲେ ।

ସଭାରେ କିଛି ଗୋଳମାଳ ହୋଇନାହିଁ । ଖାଲି ଆଖପାଖରେ ଅଳ୍ପ କେତେଟା ଘର ଛାତ ଉପରେ କଳାପତାକା ଉଡ଼ୁଥାଏ ।

୧୯୩୪ ମେ' ୯ ତାରିଖ ଭୋର୍‌ରୁ ପୁରୀରୁ ମହାତ୍ମା ଗାନ୍ଧୀଙ୍କ ହରିଜନ ପଦଯାତ୍ରା ଆରମ୍ଭ ହେଲା । ଗୋପବାବୁ, ରମା ଦେବୀ, ତାଙ୍କ ପୁଅ ମନମୋହନ ଓ ତାଙ୍କ ଝିଅ ଅନ୍ନପୂର୍ଣ୍ଣା ଗାନ୍ଧୀଜିଙ୍କ ସଙ୍ଗେ ସଙ୍ଗେ ଚାଲିଲେ । ସେତେବେଳକୁ କେତେକ ଅନ୍ୟାନ୍ୟ ନାରୀକର୍ମୀ ଓ ପୁରୁଷକର୍ମୀ ସେମାନଙ୍କ ପରିବାରଭୁକ୍ତ ହେଲେଣି, ସେମାନେ ବି ମହାତ୍ମାଙ୍କ ପଦଯାତ୍ରାରେ ଚାଲିଲେ ।

ଗାନ୍ଧୀଜିଙ୍କ ଗହଣରେ ଥାନ୍ତି ଠକ୍‌କରବାପା, ପଣ୍ଡିତ ନୀଳକଣ୍ଠ ଦାସ, ମହତାବବାବୁ ଓ ଅନ୍ୟମାନେ । ଶ୍ରୀମତୀ ମୀରା ବେନ୍, ଜୟପ୍ରକାଶ ନାରାୟଣଙ୍କ ସ୍ତ୍ରୀ ପ୍ରଭାବତୀ ଦେବୀ, ଯମୁନାଲାଲ୍ ବଜାଜ୍‌ଙ୍କ ଝିଅ ଉମା, ଶ୍ରୀମତୀ ସୁଶୀଳା ବେନ୍ ଗାନ୍ଧୀଜିଙ୍କ ସଙ୍ଗରେ ଆସିଥିଲେ ଓ ସେମାନେ ବି ଚାଲିଲେ ।

ତାଙ୍କ ସଙ୍ଗରେ ସମାଜର ଦୁଇଜଣ ପ୍ରତିନିଧି ବି ଚାଲିଲେ । ଦୁଇଜଣ ୟୁରୋପୀୟ, ତହିଁରୁ ଜଣେ ସ୍ୱିଜରଲ୍ୟାଣ୍ଡ୍‌ର ଜଣେ ଯୁବକ ଇଞ୍ଜିନିୟର ସେ ଦୁହେଁ ବି ଚାଲୁଥାନ୍ତି ।

ଅନେକ କର୍ମୀ ଚାଲିଥାନ୍ତି । ରମା ଦେବୀ କେତେଜଣ ନାରୀକର୍ମୀଙ୍କୁ ନେଇ ଚାଲିଥାନ୍ତି, ସେମାନେ ରହଣି ଜାଗାମାନଙ୍କରେ ହରିଜନ ଗାଁ ସଫେଇ ଓ ଅନ୍ୟାନ୍ୟ ହରିଜନ ସେବାକାର୍ଯ୍ୟ କରୁଥାନ୍ତି ।

ବାହାରପଡ଼ିବା ପରେ ଗାନ୍ଧୀଜୀଙ୍କ ରହଣି ସ୍ଥାନ ହେଲା ହରେକୃଷ୍ଣପୁର, ଚନ୍ଦନପୁର, ସାକ୍ଷୀଗୋପାଳ, ବୀରପୁରୁଷୋତ୍ତମପୁର, ପିପିଲି, ଶିଉଳାଚଳ, ବାଲକାଟି, ସତ୍ୟଭାମାପୁର, ବାଲିଅନ୍ତା, ତେଲେଙ୍ଗାପେଣ୍ଠ ଓ କଟକ । ବାଟେ ବାଟେ ଅସଂଖ୍ୟ ଲୋକ । ପ୍ରତି ରହଣିଠି ହରିଜନ କାମ, ଭେଟି, ସଭା, ହରିଜନଙ୍କ ସଙ୍ଗେ ପଂକ୍ତି ଭୋଜନ ଆଦି । ଗାନ୍ଧୀଜୀ ଆମ୍ବୁଦୋରୁଅ ପିଉଥାନ୍ତି, ପଇଡ଼ ପିଉଥାନ୍ତି, ଛେଳିଦୁଧ ବନ୍ଦୋବସ୍ତ ହୋଇଥାଏ, ତାଙ୍କର ଦୈନନ୍ଦିନ ଖାଦ୍ୟ ରୁଟି, ଭାତ, ଡାଲି, ତରକାରି । ବାଲିଅନ୍ତାରେ ସେ ତାଙ୍କ ରହଣିବେଳେ କୃଷ୍ଣମନ୍ଦିରରେ ହରିଜନ ପ୍ରବେଶ ହେଲା । ମୂର୍ତ୍ତିଟି ନଈ ଭିତରୁ ମିଳିଥାଏ । କଟକରେ ବିପୁଳ ସମ୍ବର୍ଦ୍ଧନା, କାଠଯୋଡ଼ି କୂଳରେ ଉପରଓଳି ଓ ସନ୍ଧ୍ୟାରେ ବିରାଟ ସଭା । ସେଠୁ ଆସି ଉତ୍କଳମଣିବାବୁଙ୍କ ହସ୍ତଶିଳ୍ପ କାରଖାନାକୁ ଗଲେ ଓ ସେଠୁ ଷ୍ଟେସନ ଚାଲିଗଲେ ।

ପାଟନାରେ ନିଃ ଭାଃ କଂଗ୍ରେସ୍ କମିଟି ବସିବାର ଥାଏ, ଗାନ୍ଧୀଜୀ ପାଟନା ଗଲେ, ସେଠୁ ଫେରି ପୁଣି ଓଡ଼ିଶାରେ ପଦଯାତ୍ରା କରିବେ । ଓଡ଼ିଶାରେ ୬ ଦିନ ପରେ ବଙ୍ଗଦେଶରେ ଗସ୍ତ ଥାଏ, କିନ୍ତୁ ଓଡ଼ିଶା କର୍ମୀଙ୍କ ଅନୁରୋଧକ୍ରମେ ବଙ୍ଗଳା କର୍ମୀମାନେ ରାଜିହେଲେ ଯେ ବଙ୍ଗଳା ଗସ୍ତରୁ କାଟି ଆଉ ୧୫ ଦିନ ଓଡ଼ିଶା ଗସ୍ତ ପାଇଁ ଦିଆଯିବ, ବଙ୍ଗଳା ହରିଜନ ସେବାସଂଘର ସମ୍ପାଦକ ସତୀଶଚନ୍ଦ୍ର ଦାସଗୁପ୍ତ ଗାନ୍ଧୀଜୀଙ୍କୁ ଦେଖିବାକୁ ଆସିଥିଲେ । ତାଙ୍କୁ କହିବାରୁ ସେ ରାଜି ହୋଇ ଏତିକ କରାଇଥିଲେ ।

ପାଟନାରୁ ଫେରି ୧୯୩୪ ମେ ୨୧ ତାରିଖରେ ଗାନ୍ଧୀଜୀ ରେଳରୁ ବୈତରଣୀ ଷ୍ଟେସନରେ ଓହ୍ଲାଇଲେ । ପୁଣି ଗୋପବାବୁ ଆଦି ତାଙ୍କ ସଙ୍ଗେ ସଙ୍ଗେ ପଦଯାତ୍ରା କଲେ । ରହଣି ସ୍ଥାନ ହେଲା ପଣ୍ଡିତ ଗୋବିନ୍ଦ ମିଶ୍ରଙ୍କ ଚମ୍ପାପୁର ଆଶ୍ରମ, ଭେଡ଼ା, ଲେଖନପୁର, ସତ୍ୟଭାମାପୁର, ସେଠି ୭ ମଧୁବାବୁଙ୍କ ଘର, ବଡ଼କୁନ୍ଦ, ଶିଶୁଆ, ଭାଗବତପୁର, କେନ୍ଦ୍ରାପଡ଼ାର ବାଲ୍ନଗର ଡାକବଙ୍ଗଳା, ବାରମୂଲ, ଇନ୍ଦୁପୁର, ଦୋମୁହାଣିଠି ନଈପାର ହୋଇ ଅନ୍ୟାସିପୁର, ବାଗ୍‌ଦା (ବଣ୍ଡି) ବାମନ ଚରଣ ଦାସଙ୍କ ଚୌପାଢ଼ି, ସାହସପୁର, ବରୁଆ ପୁରୁଷୋତ୍ତମପୁର ।

ବଣ୍ଡିରେ ସେ ଧୋଇସ୍ତ ଅଞ୍ଚଳର ଦୁର୍ଦ୍ଦଶା ବିଶେଷରେ ଶୁଣିଲେ, ବର୍ଷାଦିନେ ବାଟକରରେ ପାଣି କପର ପୁରୁଷେଠୁ ହାତେ ଉପରେ ରହେ, ଗଛରେ ଚୂନଗାର ଦିଆ ହୋଇଥିଲା ଦେଖିଲେ ।

ବରୁଆଁ ପୁରୁଷୋତ୍ତମପୁରରେ ଆଗ୍ରହିଁ ହରିହର ଓ ରମା ଦେବୀ ପହଞ୍ଚିଲେ । ଆଗ୍ରହିଁ ମହାଶୟ ଜେଲ୍‌ରୁ ଆସିଥାନ୍ତି, ଗାନ୍ଧୀଜୀ ଖୁବ ଖୁସି ହେଲେ । ରମା ଦେବୀଙ୍କ ମା ମରି ଯାଇଥାନ୍ତି, ତେଣୁ ସେ କନ୍ଦୁଚନ ହେବ ପଦଯାତ୍ରାରେ ନ ଥିଲେ, ଆସି କାନ୍ଦିଲେ, ଗାନ୍ଧୀଜୀ ତାଙ୍କୁ ବୁଝାଇଲେ ।

"ଦେଶସେବକର ନିଜ ସମସ୍ତ ଉପରେ ଅଧିକାର କାହିଁ ଯେ ସେ ତାକୁ କାନ୍ଦିବାରେ ନଷ୍ଟ କରିବ ? ପରଙ୍କ ସେବା ପାଇଁ ସେ ତ ତା ସମସ୍ତକୁ ଉତ୍ସର୍ଗ କରିଛି । କାନ୍ଦିବାକୁ ତର କାହିଁ ? କାହିଁକିବା ? କିଏ ଆଗ କିଏ ପଛ ହୋଇ ସମସ୍ତେ ତ ସେହିବାଟେ ଯିବା ।"

ପୁରୁଷୋତ୍ତମପୁରରୁ ଯାଜପୁର ଆଡ଼େ ବାହାରିଲେ । ବାଟରେ ସନ୍ତୁଳିଡ଼େ ରହଣି ବୁଢ଼ାନଈ କୂଳେ ଗୋଟିଏ ପାନ ଦୋକାନ ଗୁଳାଆରେ । ରାତିରେ ଭୀଷଣ ବର୍ଷା ହେଲା ।

୨-୬-’୩୪ରେ ଯାଜପୁର ଗଲେ, ବଡ ସଭା ହେଲା, ସେଠି ଧନେଶ୍ୱର ମହାରଣା ତାଙ୍କୁ ଗୋଟିଏ ତାଙ୍କ ହାତତିଆରି କାରୁକାର୍ଯ୍ୟମୟ ଚନ୍ଦନକାଠର ବାକ୍ସ ଭେଟି ଦେଲେ, ନିଲାମ ହେଲା, ବିରଲା ପରିବାର କେହି ଜଣେ, କଲିକତାର ଲୋକ, ତାକୁ ଟ ୫୦୦-୦୦କୁ ନେଲେ ।

ତାପରେ ରହଣି ଭଣ୍ଡାରିପୋଖରୀ, ପୁଣି ଘୋର ବର୍ଷା ହେଲା, ବାଟରେ କାଦୁଅ, ପାଣି, ଚାଲିବା କଷ୍ଟ । ସେଠୁ ଓଡଙ୍ଗ, ସେଠି ମୌନବ୍ରତ । ଓଡ଼ଙ୍ଗରୁ ଏକାଥରେ ଗାନ୍ଧୀ ୧୬ ମାଇଲ୍ ଚାଲିଗଲେ, ମଝିରେ ବାରିକପୁର ଚଟାଣରେ ଟିକିଏ ବସିଥିଲେ, ତାପରେ ଭଦ୍ରଖ, ସେଠି ୭ ଜୀବରାମ କଲ୍ୟାଣୀଙ୍କ ଆଶ୍ରମରେ ରହିଲେ । ଭଦ୍ରଖରୁ ଗାନ୍ଧୀଜୀ ଚାଲିଯିବେ ବୋଲି ସେଠିକି ଓଡ଼ିଶାର ଚାରିଆଡ଼ୁ ବହୁତ କଂଗ୍ରେସ ନେତା ଆସିଥିଲେ । ଅସହଯୋଗ ଆନ୍ଦୋଳନ ତ ବନ୍ଦ ହୋଇଥାଏ, କଂଗ୍ରେସ୍ କର୍ମୀଙ୍କ ମନରେ ଭବିଷ୍ୟତ୍ ବିଷୟରେ ନାନା ସନ୍ଦେହ ଦେଖା ଦେଇଥାଏ, ସେମାନେ ଗାନ୍ଧୀଜୀଙ୍କୁ ନାନା ପ୍ରଶ୍ନ ପଚାରିଲେ ଓ ସେ ତା ଉତ୍ତର ଦେଲେ ।

ସେତେବେଳେ ଗାନ୍ଧୀଜୀ ବୁଝାଇଥିଲେ, "ଜଣେ ସେନାପତି ଯୁଦ୍ଧରେ ସୈନ୍ୟ ଚଳାଉଛି, ଆଗକୁ ଆଗକୁ ମାଡ଼ି ଚାଲିଛି, ହଠାତ୍ ନଦୀ ଗୋଟାଏ ନଈ କି ପାହାଡ଼ ହାବୁଡ଼ିଗଲା, ତାକୁ ପାରହୋଇ ଯିବାକୁ ତାକୁ ଟିକିଏ ବେଳ ଲାଗିଲା, ତାହେଲେ କଣ ବୁଝାଯିବ ସେ ସେନାପତି ଲଢେଇରେ ହାରିଲା ?"

ଭଦ୍ରଖରେ ସେ ରେଲଷ୍ଟେସନକୁ ବାହାରିଲେ । ବାଟରେ ମହତାବବାବୁଙ୍କ ଘରେ ଟିକିଏ ରହିକରି ଗଲେ । ସେଠି ମହତାବ୍ ବାବୁଙ୍କ ସ୍ତ୍ରୀ ଖଦୀକାମରେ ଲାଗିଥିଲେ, ଦେଖି ଗାନ୍ଧୀଜୀ ଭାରି ଖୁସି ହେଲେ ।

ଭଦ୍ରଖ ଷ୍ଟେସନରେ ସେ ବିଦା ହେଲେ । ତା ଆଗରୁ ସେ ଭାଷଣ ଦେଲେ, ହରିଜନ କାମ ଓ ଗଠନମୂଳକ କାମ କରିବାକୁ କହିଲେ, ଓଡ଼ିଶାବାସୀଙ୍କୁ ଓ କର୍ମୀମାନଙ୍କୁ ଧନ୍ୟବାଦ ଦେଲେ । ଭାଷଣରେ ସେ ରମା ଦେବୀ ଓ ତାଙ୍କ ସହକର୍ମୀମାନଙ୍କ କାର୍ଯ୍ୟକୁ ଉଚ୍ଚ ପ୍ରଶଂସା କରିଗଲେ । ସେ କହିଥିଲେ :

"ପଦଯାତ୍ରା ଭିତରେ ଶ୍ରୀମତୀ ରମା ଦେବୀ ଓ ତାଙ୍କ ସହକର୍ମୀମାନେ ଯେପରି କାମ କରିଛନ୍ତି, ତା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଛି । ···ତନ୍ଧିରେ ସେମାନଙ୍କୁ ବହୁତଗୁଡ଼ିଏ ପରୀକ୍ଷା ଦେବାକୁ ପଡ଼ିଲା । ···ସରଳ ଜୀବନ ବିତାଇବାକୁ ଓ ଦୁଃଖକଷ୍ଟ ସହିବାକୁ ସେମାନେ ଶିକ୍ଷା ପାଇଛନ୍ତି । ଯାତ୍ରୀମାନେ ରହଣିସ୍ଥାନରେ ଯାଇ ପହଞ୍ଚୁଥାନ୍ତି, ସେମିତି ସଙ୍ଗେ ସଙ୍ଗେ କାମ କରିବାକୁ ଚାଲିଯାଆନ୍ତି ହରିଜନ ବସ୍ତିକୁ, ତାଙ୍କୁ କଣ ଟିକିଏ ବୋଲି ବିଶ୍ରାମ ଥାଏ ? ଏମାନେ ହରିଜନ ବସ୍ତିରେ ଯେଉଁ କାମସବୁ କରନ୍ତି, ସେଠି ଯାହା ଯାହା ଦେଖି ଆସନ୍ତି, ସବୁ ଲେଖିକରି ମତେ ଦେଇଦିଅନ୍ତି । ସେମାନେ ନିର୍ଭୟରେ ସ୍ୱାଧୀନ ଭାବରେ ହରିଜନମାନଙ୍କ ସଙ୍ଗରେ ମିଶୁଥାନ୍ତି । ଭାରତର ହଜାର ହଜାର ସ୍ତ୍ରୀଲୋକଙ୍କ ସଙ୍ଗେ ମିଶିବାକୁ ମତେ ସୁଯୋଗ ମିଳିଛି, ସେମାନଙ୍କ କାମ ବି ମୁଁ ଦେଖିଛି । କିନ୍ତୁ ରମା ଦେବୀ ଓ ତାଙ୍କ ଛୋଟିଆ ଦଳଟି ଯେମିତି କାମ କରୁଥିଲେ, ସତେ ଯେପରି ସେଭଳି କାମ କରିବା ମୂଳୋହୁଁ ତାଙ୍କ ସ୍ୱଭାବ, —ଆଉ, ଯେତେ ସୁନ୍ଦର କାମ କରୁଥିଲେ, —ସେପରି ମୁଁ ଆଉ କେବେ କେଉଁଠି ଦେଖି ନାହିଁ । ତାଙ୍କୁ କୌଣସି ଗୋଟାଏ ବିଶେଷ ଅଧିକାର ମିଳୁ ବୋଲି ବି ସେମାନେ ଲୋଡ଼ି ନାହାନ୍ତି କି ମାଗି ନାହାନ୍ତି ।"

# ସତର

## ବରୀକୁ କର୍ମକେନ୍ଦ୍ର କରିବା ନିଷ୍ପତ୍ତି

ମହାତ୍ମାଜୀ ଓଡ଼ିଶାରେ ହରିଜନ ଗସ୍ତବେଳେ କହିଥିଲେ, "ମୁଁ ଯେଉଁବାଟେ ଗଲି ସେଠି କର୍ମୀମାନେ ଠିକ୍ ବାଗରେ କାମ କଲେ ତ ପ୍ରତି ପାହୁଣ୍ଡକେ ସୁନା ଫଳନ୍ତା !"

ସେ ଯେଉଁବାଟେ ଯାଇଥିଲେ ତହିଁରୁ ଗୋଟିଏ ଥିଲା ବରୀ ଅଞ୍ଚଳ, ଗୋପବାବୁ ତାଙ୍କୁ ସେହିବାଟେ ନେଇଥିଲେ, ଯେଉଁପଟେ ସେ ଦୁନିଆଁଠୁ ବିଚ୍ଛିନ୍ନ, ଧୋହା ଅଞ୍ଚଳ, ଚଉଆଡ଼େ ନଈ, ଭିତରେ ନାଳ, ପାଟ, ବାଟଘାଟ ନାହିଁ ହଜିଲା ଗଣ୍ଡ ମଫସଲ ।

ମହାତ୍ମାଜୀ ଗୋପବାବୁଙ୍କୁ କହିଥିଲେ, "ଗାଁରେ ରହି ରଚନାତ୍ମକ କାମ କର ।" କିନ୍ତୁ ମହାତ୍ମାଜୀ ତାଙ୍କ ପାଇଁ ବରୀକୁ ବାଛିଥିଲେ ଏପରି ନୁହେଁ, ସେ ନିଜେ ବାଛିଲେ ।

ଜଗତ୍‌ପୁର ଅଞ୍ଚଳର ଲୋକେ ବହୁତ ମନଦୁଃଖ କଲେ, ସ୍ୱରୂବାବୁ ଓ ପଢ଼ିଆସି ମହାତ୍ମାଙ୍କୁ ବହୁତ ବୁଝାଇଲେ, ସେମାନେ ଚାହୁଁଥିଲେ ସେ ପୁଣି ଅଲକାଶ୍ରମକୁ ଫେରିଯାନ୍ତୁ । ୧୯୩'ରେ ଗୋପବାବୁ ଜେଲ୍‌ରେ ଥିଲାବେଳେ ପଣ୍ଡିତ ନେହେରୁ ଅଲକାଶ୍ରମ ଦେଖିବାକୁ ଆସିଥିଲେ, ସେଠି ଭାଷଣ ଦେଇଥିଲେ । ସେହିବର୍ଷ ଅଲକାଶ୍ରମର ଘର ଓ ତାକୁ ଲାଗିଥିବା ୧୫ ଏକରର ଅମ୍ବତୋଟା ସବୁ ସରକାର ବାଜ୍ୟାପ୍ତ କଲେ, ଛଣଛପର ମାଟିଘରଗୁଡ଼ିକ ତିନିବର୍ଷ ବେମରାମତି ହୋଇ ଭାଙ୍ଗିପଡ଼ି ଧୂଳିରେ ମିଶିଲା, ପୁଣି ସେ ଜମି, ଭଙ୍ଗାକୁଡ଼ ଓ ତୋଟାକୁ ୧୯୩୪ରେ ସ୍ୱରୁବାବୁଙ୍କ

ପଣ୍ଡିତବାବୁଙ୍କୁ ସରକାର ଦେଇ ଦେଇଥିଲେ । ତେଣୁ ଜଗତ୍‌ସିଂପୁର ଅଞ୍ଚଳର କଂଗ୍ରେସ୍ ନେତା ଓ କର୍ମୀ ଆଶା କରୁଥିଲେ, ଗୋପବାବୁ ପୁଣି ସେଠିକି ଫେରିଯିବେ, ସେଠି ତାଙ୍କର ଆଦ୍ୟ କର୍ମପୀଠ, ସେଠି ଏତେ ବନ୍ଧୁବାନ୍ଧବ, ତାଙ୍କ ପିତୃପୁରୁଷଙ୍କ ଗାଁ ସେଠୁ ଅଳ୍ପ ବାଟ, —ଖେରସ । ସେଠି ତାଙ୍କର ଏତେ ସହକର୍ମୀ, ପୁଣି ସେ ଅଞ୍ଚଳଯାକର ଲୋକଙ୍କ ସଙ୍ଗେ ତାଙ୍କର ଏତେ ଆତ୍ମୀୟତା, —ଦୀପ ଜାଳିଥିଲେ ସେଠି, ଫେରିବେ ନାହିଁ ?

ନା, ସେ ମନା କଲେ । ତାଙ୍କ ବିଚାରରେ ଦରିଦ୍ର ବରି, ଜଗତ୍‌ସିଂପୁର ନୁହେଁ । "Charity begins at home" ସେ କହୁଥିଲେ, କିନ୍ତୁ 'begins' ଖାଲି । ମମତା ମୋହରେ ପଡ଼ି ବାଟ ବାଛୁ ନ ଥିଲେ, ବାଛୁଥିଲେ ବିଚାର ଉପରେ ।

ପନ୍ଦରବର୍ଷ ପୂର୍ବେ ବରି ସହିତ ପ୍ରଥମଥର ଚିହ୍ନା, ଯାଜପୁରରେ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଥିଲେ, ବଢ଼ିବେଳେ ରିଲିଫ୍ କାମ କରିବାକୁ ବରି ଆସିଥିଲେ, ଦେଖିଯାଇଥିଲେ ବଢ଼ିବେଳେ ସେ ଅଞ୍ଚଳର ନିଃସହାୟ, ବିକଳ ଅବସ୍ଥା, କରୁଣ, ଭୟଙ୍କର, ସତେଅବା ସମୁଦ୍ର ଭିତରେ ଏଠିସେଠି ଖଣ୍ଡେ ଖଣ୍ଡେ ଟାପୁ, ପାଣି ଉପରେ ଶାଗପଟାଳି ପରି ଚୋଟାମାନଙ୍କ ଅଗ ଦିଶୁଥିବ, ଗୁଳାକୁ ଜାବୁଡ଼ି ମଣିଷ ଭାସି ଯାଉଥିବେ, ମାଟିଗୋବର ଗୋଳିପାଣିରେ ଭାସୁଥିବ ମଣିଷ ଆଉ ଗୋରୁଙ୍କ ସଢ଼ା ଟୋଳ ମଢ଼, ହଇଜା ବ୍ୟାପିଥିବ । ପୁଣି ପୁଣି ଆସିଥିଲେ, ଦେଖିଥିଲେ ଅଭାବ ଅସୁବିଧାଗ୍ରସ୍ତ ଅନୁନ୍ନତ ଗାଁ ଗହଳି, ସେଠି ନାନା କୁସଂସ୍କାର ଓ ସମସ୍ୟା । ଭାବିଥିଲେ, କର୍ମୀ ଗାଁରେ ରହି କାମ କଲେ ସବୁଠୁ ଜୀପଟ ଏହିପରି ଅଞ୍ଚଳ ହିଁ ଉପଯୁକ୍ତ । କଂଗ୍ରେସ୍‌ରେ ମିଶି ଆନ୍ଦୋଳନ ଓ ସଂଗଠନ ଚଳାଇଥିଲେ, ସେତେବେଳେ ବରି ଅଞ୍ଚଳ ଦେଶର ଡାକକୁ 'ଓଁ' କରିଥିଲା, ୧୯୩୦ ଲୁଣମରା ଆନ୍ଦୋଳନ ବେଳେ ବରିର ଗୋବର୍ଦ୍ଧନ ପୁହାଣ, ଅଭିରାମ ପୁହାଣ, ଭଗୀରଥ ଦାସ ଆଦି ଅନେକ ଯୁବକ ସେ ଆନ୍ଦୋଳନରେ ଯୋଗ ଦେଇଥିଲେ, କଂଗ୍ରେସ୍ ପାଇଁ ଅନେକ ସ୍ୱେଚ୍ଛାସେବକ ବାହାରିଥିଲେ, ଅନେକ ନାରୀକର୍ମୀ ବାହାରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ହରପ୍ରିୟା ଦେବୀ ଓ ବରି ପାଖ ଆନନ୍ଦପୁରର ଭଗୀରଥ ଦାସଙ୍କ ସ୍ତ୍ରୀ ପ୍ରିୟମ୍ବଦା ଦେବୀ (ଓରଫ୍ ନନ ମାଉସୀ), ଶରତ୍‌କୁମାରୀ ଦେବୀ, ଶ୍ରୀ ନନ୍ଦ କିଶୋର ଦାସ (ଓଡ଼ିଶା ବିଧାନସଭାର ଭୂତପୂର୍ବ ସ୍ପିକର୍)ଙ୍କ ସ୍ତ୍ରୀ ଆଦରମଣି ଦେବୀ । ଲୁଣମରା ଆନ୍ଦୋଳନବେଳେ କୋଟପୁଟ୍, ବାଲେଶ୍ୱରର ଇଞ୍ଚୁଡ଼ି ପଛକୁ ବରି ଅଞ୍ଚଳ ଓଡ଼ିଶା ଭିତରେ ନାଁ ଡାକ୍ । ୧୯୩୨ ଆଇନ୍ ଅମାନ୍ୟ ବେଳେ ବି ସେମାନେ ଖୁବ୍ ଆନ୍ଦୋଳନ କରିଥିଲେ ।

ତେଣୁ ବରି ହିଁ ତାଙ୍କ ପାଇଁ ଉପଯୁକ୍ତ କର୍ମକେନ୍ଦ୍ର ହେବ ବୋଲି ଜଣାଗଲା ।

# ଅଠର

## ୧୩-୮-୩୪—ଗୋପବାବୁ ସପରିବାର ବରୀକୁ ଉଠିଗଲେ

୧୯୩୪ ଅଗଷ୍ଟ ମାସ ୧୩ ତାରିଖ । ଶ୍ରାବଣ ମାସ । ଆକାଶରେ ମେଘ ଘୋଡ଼େଇଛି । ସକାଳୁ ଗୋପବାବୁ, ରମା ଦେବୀ, ତାଙ୍କ ଝିଅ ଅନ୍ନପୂର୍ଣ୍ଣା, ସେମାନଙ୍କ କଟକ ଘର ଛାଡ଼ିଦେଇ ବରୀ ବାହାରିଲେ । ମନମୋହନ (ଭୁଲୁ ବାବୁ) ନାହାନ୍ତି, କଲିକତା ଯାଇଛନ୍ତି, ସେଠୁ ଫେରିଲେ ସେ ବି ଯିବେ । ଏକ ପରିବାର ହୋଇ ଏକାପ୍ରକାର ଜୀବନ ବିତାଇବାକୁ ଯାଉଛନ୍ତି ଆଉ ଛଅଟି ଝିଅ,—କଟକର ଉତ୍କଳ ସତ୍ୟନାରାୟଣ ସେନ୍‌ଗୁପ୍ତଙ୍କ ଝିଅମାନେ ମଙ୍ଗଳା ଦେବୀ, ଗୋଦାବରୀ ଦାସ, ଶୋଭା ଦେବୀ, ମାଣିକ୍ୟ ଦେବୀ, ସୁଶୀଳା ଦେବୀ, ତୁଳସୀ ଦେବୀ, ଜଣେ ଯୁବକ, ସୁରେନ୍ଦ୍ର ପଟ୍ଟନାୟକ (ପରେ ମନ୍ତ୍ରୀ ହେଲେ) । ଆଉଜଣେ ଯୁବକ ବିନୋଦ୍ କାନନ୍‌ଗୋ (ପଛେ 'ଜ୍ଞାନମଣ୍ଡଳ' ଲେଖକ) ପ୍ରାୟ ମାସେ ପରେ ଗଲେ । ସେମାନେ ସମସ୍ତେ କଂଗ୍ରେସ୍ କର୍ମୀ, ବହୁଦିନୁଁ ଗୋପବାବୁ ଓ ରମା ଦେବୀଙ୍କ ସଙ୍ଗେ ଆତ୍ମୀୟତା, ତାଙ୍କ ସଙ୍ଗେ କାମ କରିଛନ୍ତି, ନୂଆ ଆଦର୍ଶରେ ଉଦ୍‌ବୁଦ୍ଧ ।

ବିଦା ହେବାକୁ କେତେ ଲୋକ ଆସିଥିଲେ । ଗୋପବାବୁ ଓ ତାଙ୍କ ପରିବାର କଟକ ଛାଡ଼ି, ପୈତୃକ କୋଠା ଛାଡ଼ି ଅପନ୍ତରାରେ ନୂଆ ଜୀବନ ବିତାଇବାକୁ ସବୁଦିନ ପାଇଁ ଚାଲି ଯାଉଛନ୍ତି । ୬ ଲକ୍ଷ୍ମୀ ନାରାୟଣ ସାହୁ ବିଦାଦେବାକୁ ସାଙ୍ଗରେ ବରୀ ଗଲେ । ୬ ଅନସୂୟା ପ୍ରସାଦ ପାଠକ ଲେଖିଛନ୍ତି, ଗୋପବାବୁଙ୍କ ମା କାନ୍ଦୁଥିଲେ, ନବବାବୁ, ମାଳତୀ ଦେବୀ କାନ୍ଦୁଥିଲେ, ଗ୍ରେଟିଆ ଦଳଟି ଚାଲି ଚାଲି ବାହାରି ଚାଲିଗଲେ ।

ପ୍ରତ୍ୟକ୍ଷ ରାଜନୀତିରୁ ବିଦାୟ

ପ୍ରତ୍ୟକ୍ଷ ରାଜନୀତିରୁ ବି ସେଇ ତାଙ୍କର ବିଦାୟ । * ଗୋପବାବୁ ଆଉ କଂଗ୍ରେସ କମିଟିର ସଭ୍ୟ ଥାନ୍ତି, ପରେ ବଣ୍ଠ ଅଞ୍ଚଳରେ କଂଗ୍ରେସ୍ ସଭ୍ୟ ସଂଗ୍ରହ କଲେ, ଇଲେକ୍‌ସନ୍‌ରେ ସେମାନେ କଂଗ୍ରେସ୍ ପ୍ରାର୍ଥୀ ସପକ୍ଷରେ ସେ ଅଞ୍ଚଳରେ ପ୍ରଚାର କରିଥିଲେ, ପୁଣି ୧୯୪୨ରୁ ୩ ବର୍ଷ ଗୋପବାବୁ ଜେଲ୍ ଗଲେ ଓ ସେ ବଣ୍ଠରେ ଥିଲାବେଳେ କଂଗ୍ରେସ୍ ନେତା ଓ କର୍ମୀମାନେ ତାଙ୍କ ପାଖକୁ ଆସୁଥିଲେ । କିନ୍ତୁ ୧୯୩୮ କଂଗ୍ରେସ୍‌ର ସଭାପତି ଥିବା ଛଡ଼ା, ଯାହାକୁ ସେ ଆତ୍ମଜୀବନୀରେ ଶିରୋନାମା ଲେଖିଥିଲେ 'ଠିକା ରାଜନୀତି' ସେ ନିଜେ ଆଉ କଂଗ୍ରେସ୍‌ର ନେତୃତ୍ୱ କି ପରିଚାଳନା କରି ନାହାନ୍ତି, ନିଜେ ଆଶ୍ରମ ଜୀବନଯାପନ କରି, ଅନ୍ୟମାନଙ୍କୁ ଗାନ୍ଧୀବାଦୀ ନୈତିକ ଆଦର୍ଶରେ ପ୍ରଭାବିତ କରି ସେ ବଣ୍ଠ ଅଞ୍ଚଳରେ ନାନାବିଧ ଗ୍ରାମ ସଂଗଠନ କାର୍ଯ୍ୟରେ ବ୍ୟାପୃତ ରହିଲେ । ତାଙ୍କର ଅସଂପୂର୍ଣ୍ଣ ଆତ୍ମଜୀବନୀର ବିଷୟବସ୍ତୁ ତାଲିକାଟିଠାରେ ତାଙ୍କ ବଣ୍ଠ-ଯାତ୍ରା ବିଷୟରେ ଧାଡ଼ିଟିଏ ଅଛି :—"(କ୍ରମିକସଂଖ୍ୟା) ୨୭—ଗାଁକୁ ଗଲି—ରାଜନୀତି ଛାଡ଼ିବା ।"

ଅନ୍ୟ ବିଷୟରେ ଠାଏ ସେ ଲେଖିଛନ୍ତି, "...ଆମେ ପଞ୍ଚାଏ ନିର୍ମାଣ କାର୍ଯ୍ୟର ଅନ୍ତିମ ଉଦ୍ଦେଶ୍ୟକୁ ଆଖି ଆଗରେ ରଖି ଚାଲିଛୁ...ଅହିଂସକ ସମାଜ ରଚନାର

* ଏତେବେଳକୁ କଂଗ୍ରେସ୍‌ରେ ମଧ୍ୟ ପରିବର୍ତ୍ତନ ଘଟିଥାଏ । ୧୯୩୩ ଅଗଷ୍ଟରେ ଗାନ୍ଧୀଜିଙ୍କୁ ୧ ବର୍ଷ ଜେଲ୍ ହୋଇଥିଲା, କିନ୍ତୁ ସେ ହରିଜନ କାର୍ଯ୍ୟ କରିବେ ବୋଲି ଘୋଷଣା କରିଥିବାରୁ ଓ ସେଥିପାଇଁ ତାଙ୍କୁ ଜେଲ୍‌ରେ ସୁବିଧା ଦିଆଯାଇ ନ ଥିବାରୁ ସେ ଅନଶନ ଆରମ୍ଭ କରିଥିଲେ ଓ ତହିଁର ଅଷ୍ଟମ ଦିନ ୨୩-୮-୩୩ରେ ସରକାର ତାଙ୍କୁ ଜେଲ୍‌ରୁ ଖଲାସ କରିଥିଲେ । ଗାନ୍ଧୀଜୀ ଖଲାସ ହୋଇ ଘୋଷଣା କରିଥାନ୍ତି ଯେ ସେ ବର୍ଷେ ପର୍ଯ୍ୟନ୍ତ ଆଉ ରାଜନୈତିକ ଆନ୍ଦୋଳନ କରିବେ ନାହିଁ, ହରିଜନ କାମ କରିବେ, ତାପରେ କଣ କରିବେ ଜଣାପଡ଼ି ନ ଥାଏ । ରାଜନୈତିକ ଆନ୍ଦୋଳନ ବନ୍ଦ ହୋଇଯିବାରୁ କଂଗ୍ରେସ୍ ମହଲରେ ଅନିଶ୍ଚିତତା ଘୋଟିଥାଏ, ନିରାଶା ଆସିଥାଏ । କଂଗ୍ରେସ୍ ଦ୍ୱାରା ଆଉ ସ୍ୱାଧୀନତା ଆସିପାରିବ ନାହିଁ ଭାବି କେତେ ବାମପନ୍ଥୀ କଂଗ୍ରେସ୍ ନେତା କଂଗ୍ରେସ୍ ସୋସିଆଲିଷ୍ଟ ଦଳ ଗଢ଼ିଲେ । ଓଡ଼ିଶା କଂଗ୍ରେସ୍‌ର ବି କେତେକ ନେତା ଓ କର୍ମୀ ତହିଁରେ ମିଶିଲେ । ତା ଭିତରେ ଥିଲେ ନିଜେ ଗୋପବାବୁଙ୍କ ଭାଇ ନବବାବୁ, ତାଙ୍କ ସ୍ତ୍ରୀ ମାଳତୀ ଦେବୀ ଓ ତାଙ୍କ ପୁଅ ବୁଲୁବାବୁ । କଂଗ୍ରେସ୍ ଭିତରେ ଘୋଟିଥାଏ ଦଳ ଗଢ଼ିବା ପ୍ରବୃତ୍ତି, ଫଳରେ ଦଳ ଦଳ ଭିତରେ ପ୍ରତିଦ୍ୱନ୍ଦ୍ୱିତା । ୧୯୩୪ ଅକ୍‌ଟୋବରରେ ବମ୍ବେରେ କଂଗ୍ରେସ ଅଧିବେଶନ ବସିଲା । ରାଜେନ୍ଦ୍ର ପ୍ରସାଦ ସଭାପତି । କମ୍ୟୁନାଲ ଆଓ୍ୱାର୍ଡ଼୍‌କୁ ପ୍ରତ୍ୟାଖ୍ୟାନ କରିବାକୁ

ମୂଳ କଥା, ସେ ସମାଜରେ ଶୋଷଣ ରହିବ ନାହିଁ ଏବଂ ଗାନ୍ଧୀଜୀ ଏହାର ବ୍ୟାପକ କଳ୍ପନା ପ୍ରଥମେ ଗଠନମୂଳକ କାମ ଜରିଆରେ କରିବାର କଥା କହି ଆମ ଆଗରେ କଥାଟାକୁ ବାଢ଼ିଥିଲେ । ଅହିଂସକ ସମାଜ Factory—ସମାଜରେ ଗଢ଼ି ହେବ ନାହିଁ ଏବଂ ସେଥିପାଇଁ ଗ୍ରାମ ସଭ୍ୟତା ଓ ବିଶେଷକରି ଗ୍ରାମୋଦ୍‌ଯୋଗ ଉପରେ ପ୍ରତିଷ୍ଠିତ ସଭ୍ୟତା ଆବଶ୍ୟକ, ଏହା ଗାନ୍ଧୀଜୀ କହିଯାଇଛନ୍ତି । ଉପରନ୍ତୁ ଗାନ୍ଧୀଜୀ କହିଛନ୍ତି, ବ୍ୟକ୍ତିଗତ ଭାବରେ କେହି ଅହିଂସକ ହେବାକୁ ଚାହିଁଲେ ତାଙ୍କର ଗ୍ରାମ-ମନୋଭାବ ତ ଥିବା ଚାହି, ଅଧିକନ୍ତୁ ଗାନ୍ଧୀଜୀଙ୍କ ରଚନାତ୍ମକ କାମରେ ପୂର୍ଣ୍ଣ ବିଶ୍ୱାସ ଓ ଆସ୍ଥା ରହିବା ଆବଶ୍ୟକ ।...”

ତାଙ୍କର ସେ ବିଶ୍ୱାସ ଥିଲା, ସେ ତାଙ୍କ ପରିବାରଙ୍କୁ ବି ଦୀକ୍ଷିତ କରିଥିଲେ, ତେଣୁ ଆଉ ପଛକୁ ଫେରିବା ନାହିଁ, ସେ ଚାଲିଥିଲେ ।

ଗାନ୍ଧୀବାଦୀ କର୍ମୀ ଓ ବିଶିଷ୍ଟ ସମାଜସେବୀ ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ, ବଡ଼ଚଣାର କଂଗ୍ରେସ୍ କର୍ମୀ ବୃନ୍ଦାବନ ଷଡ଼ଙ୍ଗୀ ସେମାନଙ୍କୁ ଛାଡ଼ିଦେଇ ଆସିବାକୁ ହରିଦାସପୁରଯାକେ ଯାଇଥିଲେ ।

---

ବି କଂଗ୍ରେସ୍ ଅଧିବେଶନରେ ପ୍ରସ୍ତାବ ପାଶ୍ ହେଲା ନାହିଁ । ପ୍ରସ୍ତାବ ପାଶ୍ ହେଲା, “ଆମେ ସ୍ୱାକୁ ଗ୍ରହଣ କରୁନାହୁଁ କି ପ୍ରତ୍ୟାଖ୍ୟାନ କରୁ ନାହୁଁ ।” କଂଗ୍ରେସ୍ ସଭାପତି, ଉପସଭାପତି, ସମ୍ପାଦକ, କାର୍ଯ୍ୟକାରୀ କମିଟି କିଏ ଗଢ଼ିବ ତା ନିୟମ ବଦଳାଇଲା । ପୁଣି, ଗାନ୍ଧୀଜୀ କଂଗ୍ରେସ୍ ଛାଡ଼ିଲେ, ସେ ତାର ୪ ଅଣିଆ ସଭ୍ୟ ବି ରହିଲେ ନାହିଁ । ଓଡ଼ିଶା ପ୍ରାଦେଶିକ କଂଗ୍ରେସ୍ କମିଟି ନିର୍ବାଚନରେ ଅସ୍ୱାସ୍ଥ୍ୟକର ପ୍ରତିଦ୍ୱନ୍ଦ୍ୱିତା ହେଲା । ପାଖେ ଶ୍ରୀ ମହତାବ୍, ସେ ୧୩ଟି ଭୋଟ୍ ପାଇ ଜିତିଲେ, ଆରପାଖେ ପଣ୍ଡିତ ନୀଳକଣ୍ଠ ଦାସ, ସେ ୧୨ଟି ଭୋଟ୍ ପାଇ ହାରିଲେ । ଆଉ ଗୋଟିଏ ଦଳ ବି ଜନ୍ମ ହେଲା, ‘କୃଷକ ଦଳ’ । ଆଗ ଶ୍ରୀ ମହତାବ୍ ତାର ସଭାପତି ହେଲେ, ଅଳ୍ପ ଦିନରେ ଇସ୍ତଫା ଦେଲେ । ପଣ୍ଡିତ ପଢ଼ିଆରୀ ସ୍ୱା ସଭାପତି ହେଲେ । ଏ ଦଳରେ କଂଗ୍ରେସ୍ କର୍ମୀମାନେ କାମ କରୁଥାନ୍ତି । ଜମିଦାରଙ୍କ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଲଢ଼ୁଥାନ୍ତି, କିନ୍ତୁ ଏ ଦଳ ଠିକ୍ କଂଗ୍ରେସ୍‌ର ଶୃଙ୍ଖଳା ମାନୁ ନ ଥାଏ । ଓଡ଼ିଶା କଂଗ୍ରେସ୍ ଭିତରେ ଆଗପରି ଆଉ ଶୃଙ୍ଖଳା, ଏକତା ରହିପାରିଲା ନାହିଁ । ତାପରେ ପୁଣି ପଣ୍ଡିତ ନୀଳକଣ୍ଠଙ୍କ ସମର୍ଥକ ବଢ଼ିଗଲେ ଓ ସେ ଉତ୍କଳ ପ୍ରାଦେଶିକ କମିଟିର ସଭାପତି ହେଲେ । ଦୁଇଦଳ ଭିତରେ ପ୍ରତିଦ୍ୱନ୍ଦ୍ୱିତା ବଢ଼ିଲା । ଗୋପବାବୁ ଏ ସବୁଥିରୁ ଆଡ଼େଇ ହୋଇ ରହି ବାରିରେ ରଚନାତ୍ମକ କାମରେ ଲାଗି ରହିଲେ ।

ଡଙ୍ଗାରେ ବସି ସେମାନେ ବରୀ ଗଲେ। ସେଠିଦିନ ପହଞ୍ଚିଲେ। ବରୀର ବାର୍‌ଦାରେ ବାମନ ଚରଣ ଦାସଙ୍କ ଚୌପାଢ଼ି ଘର, ସେହି ଘରେ ଗାନ୍ଧିଜୀ ରହିଥିଲେ, ସେମାନେ ବି ସେଠି ରହିଲେ। ବାମନ ଚରଣ ଦାସ ବରୀର ଜଣେ ଜମିଦାର ଓ ବିଶିଷ୍ଟ ଲୋକ। ସେ ଯାଜପୁରର ଜମିଦାର ଓ ଓକିଲ ହରିବଲ୍ଲଭ ଦାସଙ୍କ ଜ୍ୱାଇଁ। ହରିବଲ୍ଲଭ ଦାସ ଗୋପବାବୁଙ୍କ ପିତୃବନ୍ଧୁ ଥିଲେ। ବାମନ ବାବୁ ବହୁତ ମକଦ୍ଦମା କରୁଥିଲେ, ଅନ୍ୟାନ୍ୟ ସାନ ସାନ ଜମିଦାରଙ୍କ ପରି ଥିଲେ। କିନ୍ତୁ ସେ ହୋମିଓପ୍ୟାଥି, ଟୁଣୁକା, କବିରାଜି ଆଦି କରି ଲୋକଙ୍କ ଉପକାର କରୁଥିଲେ, କେହି ରାତି ଅଧରେ ଡାକିଲେ ବି ଧାଇଁ ଯାଉଥିଲେ। ସେ ଗୋପବାବୁଙ୍କୁ ଆଶ୍ରୟ ଦେଇଥିଲେ। ସେମାନେ ଘରତୋଳି ରହିବେ ବୋଲି ଜମି ଦେଇଥିଲେ ଓ ପରେ ତାଙ୍କ ପ୍ରଭାବରେ ନିଜ ଘରୋଇ ଠାକୁର ବଳଦେବଜୀଉଙ୍କ ମନ୍ଦିରରେ ହରିଜନ ପ୍ରବେଶ କରାଇଥିଲେ। ତାଙ୍କ ପୁଅ କବି ନବ କିଶୋର ଦାସ, ସେତେବେଳେ ବି.ଏ. ପାସ୍ କରି କଟକରେ ଓକିଲାତି ପଢ଼ୁଥିଲେ। ବରୀର ସାନ ସାନ ଜମିଦାରଙ୍କ ଭିତରେ ଥିଲେ ଭଗୀରଥ ଦାସ, ସମ୍ପର୍କରେ ରମା ଦେବୀଙ୍କ ଭଣୋଇ। ପୁରୁଣା ପରିବାର ଆଉ ଗୋଟିଏ ଜମିଦାର ପରିବାର। ସେହିପରି ବାର୍‌ଦାର ଚୌଧୁରୀ ପରିବାରର ପୂର୍ଣ୍ଣ ଚୌଧୁରୀ।

ପ୍ରଥମ ରହଣି 'ଚୌପାଢ଼ି'—ଆଜିକାର 'ସେବାଘର'

ଆଗ ଚୌପାଢ଼ିରେ ରହି ଗୋପବାବୁ ଘର ତୋଳିବାକୁ ଜାଗା ଖଣ୍ଡିଏ ଖୋଜିଲେ। ତାଙ୍କର ସେହିପରି ଜାଗା ଦରକାର ଯେଉଁଠି ଉପଯୁକ୍ତ କେନ୍ଦ୍ର ହୋଇପାରିବ ଅଥଚ ଜାଗା ଅନ୍ୟ କାହାର କାମରେ ଆସୁ ନ ଥିବ। ବାଛିଲେ ଗାଁ ମଶାଣି ପାଖେ ଜାଗାଟିଏ। ବରୀ ଗ୍ରାମ-ପୁଞ୍ଜର ବାଲିଆପାଲରୁ ଅରଙ୍ଗାବାଦ୍ ଯାଏ ଯେଉଁ ଗ୍ରୁଡ଼ଗ୍ରୁଡ଼ିକା ବସ୍ତି ଗୁଡ଼ିକ ତା ପଛଆଡ଼େ ବିଲ ଭିତରେ ଯାଇଛି ବରୀ ଅଞ୍ଚଳର ଏକମାତ୍ର ରାସ୍ତା, କୁଆଖିଆ ବଜାର-ବରୀ-କଳାମାଟିଆ। କୁଆଖିଆ ବଜାରଠାରୁ ୧୪ ମାଇଲ ବା ୨୩ କିଲୋମିଟର ଦୂରରେ ଓ ରାସ୍ତାକୁ ଲାଗି ଜାଗା ଖଣ୍ଡିଏ। ପ୍ରାୟ ୬ ଗୁଣ୍ଠ ପଡ଼ିଆ। ୪୦୦ ଗଜ ଭିତରେ ବ୍ରାହ୍ମଣ, କରଣ, ଭଣ୍ଡାରି ଆଦି ଜାତିଙ୍କର ଅଲଗା ଅଲଗା ମଶାଣି। ନିର୍ଘଞ୍ଚିଆ ଜାଗା, ସଞ୍ଜ ବୁଡ଼ିଲେ ଭୂତ ଡରରେ ଲୋକେ ସେଆଡ଼େ ଯାନ୍ତି ନାହିଁ। ଗୋପବାବୁ ତାକୁ ହିଁ ବାଛିଲେ। ବାମନ ଚରଣ ଦାସ ଜାଗାଟିକୁ ଆଶ୍ରମ ପାଇଁ ଦାନ କରିଦେଲେ। ପରେ ଯେତେବେଳେ ଆଶ୍ରମ ଘର ତୋଳା ହେଲା, ରାସ୍ତା କଡ଼ରେ ଆଶ୍ରମର ବିଭିନ୍ନ ରଚନାତ୍ମକ କାମ ପାଇଁ ଟ୍ୟାନାରି ଆଦି ଅନ୍ୟାନ୍ୟ ଘର ବି ହେଲା, ସବୁବେଳେ ଗହଳ ଚହଳ, ଲୋକ ଆତଯାତ, ଲୋକଙ୍କ ଭୂତ ଭୟ ସେଠୁ ତୁଟିଲା, ଆଉ କେତେଲୋକ ରାସ୍ତାକଡ଼ରେ ଆସି ଘର କଲେ।

ଉତ୍ସବରେ ଆଗ ମାଟି ମୁଠିଏ ପକାଇ ଶୁଭ ଦେଇଥିଲେ ଆଚାର୍ଯ୍ୟ ହରିହର । କାମ ଆରମ୍ଭ ହେଲା । ଗୋପବାବୁ ନିଜେ ଅନ୍ୟାନ୍ୟମାନଙ୍କ ସଙ୍ଗେ ମିଶି ମାଟି ହାଣନ୍ତି । ଟୋକେଇରେ ମାଟି ମୁଣ୍ଡେଇ ଆଣି ମୂଳଦୁଆରେ ପକାନ୍ତି । ରମା ଦେବୀ ବି ମୁଣ୍ଡରେ ମାଟି ବୋହି ପକାନ୍ତି । ସେହିପରି ଦଳର ଅନ୍ୟମାନେ ।

ସେତେବେଳେ ମହତାବ୍ ବାବୁ ଓ ତାଙ୍କ ସ୍ତ୍ରୀ ବି ସେଠିକି ଆସୁଥିଲେ । ଭିତ୍ତି ହେଲାପରେ ଶ୍ରୀମତୀ ସୁଭଦ୍ରା ମହତାବ ସେ ଉତ୍ସବରେ ଶୁଭଖୁଣ୍ଟ ପୋତିଥିଲେ । ଘରତୋଳା ଆରମ୍ଭ ହେଲା । ଗୋପବାବୁ, ରମା ଦେବୀ ଅନ୍ୟମାନଙ୍କ ସଙ୍ଗେ ମିଶି କାମ କଲେ । ଗୋପବାବୁ ଯେଉଁଭଳି ଚାହିଁଲେ ଘର ସେପରି ହେଲା, ତହିଁରେ କବାଟ ବି ବାଉଁଶର, ଛୁଅ ଓ ଶେଣୀ ବି ବାଉଁଶର, କାଠ ଆଦୌ ବ୍ୟବହାର ହୋଇ ନଥିଲା । ଲୁହା ବି ଆଦୌ ଲଗି ନ ଥିଲା । ଲୁହା କଣ୍ଟାଟିଏ ବି ନ ଥିଲା । ଗୋପବାବୁ କହିଲେ, ଏକେତ ଗାଁ ଲୋକେ ଗରିବ, ତହିଁରେ ପୁଣି, —ଯେଉଁମାନେ ସେ ଗରିବ ଲୋକଙ୍କ ସେବକ ହେବେ ବୋଲି ସେ ଗାଁରେ ରହିବେ ସେମାନଙ୍କ ଘର ବି ତ ତାଙ୍କ ଲଗି ହେବା ଦରକାର ।

ଘରତୋଳା ସରିଲା । ସେ ଘରେ ଅଳ୍ପଦିନ ଶ୍ରୀ ହରେକୃଷ୍ଣ ମହତାବ ରହିଥିଲେ, ତାପରେ ଅଗରପଡ଼ାରେ କଲେ ତାଙ୍କ କର୍ମମନ୍ଦିର । ଘରର ନାଁ କଣ ଦିଆଯିବ ମହାତ୍ମାଙ୍କୁ ପଚରାଗଲା, ସେ ଚାହିଁଲେ ତା ନାଁ ହେବ 'ସେବାଘର' । ସେଇଆ ରହିଲା । ଲୋକେ ତାକୁ 'ବଡ଼ ଆଶ୍ରମ' ବି କହନ୍ତି ।

୧୯୩୫ ଅପ୍ରେଲ୍ ୭ ତାରିଖରେ ଗୋପବାବୁ, ରମା ଦେବୀ ଆସି ସେଠିକି ଉଠିଗଲେ । ସେଇ ବଡ଼ ଆଶ୍ରମ । ସମସ୍ତେ ଗୋଟିଏ ପରିବାର । ସେ ପରିବାର ବଢ଼ୁଥାଏ । ଓଡ଼ିଶାର ଚାରିଆଡ଼ୁ କିଏ କେତେବେଳେ ଆସନ୍ତି, ବହୁତ କର୍ମୀ, ଆଶ୍ରମରେ ତାଲିମ୍ ପାଇବାକୁ ବହୁତ ଝିଅ ଆସନ୍ତି । ସେବାଘରେ ରହନ୍ତି ରମା ଦେବୀ, ଝିଅମାନେ ଓ ଗୋପବାବୁ । ଅନ୍ୟମାନେ ଚାରିଆଡ଼େ ବିଚ୍ଛେଇ ହୋଇ ରହନ୍ତି, ସେବାଘରେ ଖାଆନ୍ତି, ସେବାଘର ହିଁ ମୁଖ୍ୟ କେନ୍ଦ୍ର ।

ଋଷି ଆଶ୍ରମ । ଜମି ଅତି ଅଳ୍ପ ହେଲେ ବି ସୁନ୍ଦର ବଗିଚା, ଗଛ ଗୁଚ୍ଛ, ପବିତ୍ର ପରିବେଶ । ଯୁଆଡ଼େ ଚାହିଁଲେ ନୂଆ କିଛି ଶିଖିଲାଭଳି ଅଛି । ନାନା ଉପଯୋଗ, ନାନା ଉଦ୍ୟମ । ସବୁଠି ସୁରୁଚି, ଶୃଙ୍ଖଳା ।

ଘର କହିଲେ ତ ଧାଉଡ଼ି ଚାଳଘର, ନୂଆଣିଆ ଚାଳ, ଝାଟିମାଟି କାନ୍ଥ, ମାଟି ତଳ, କିନ୍ତୁ ସବୁ ଲିପାପୋଛା, ସବୁବେଳେ ପରିଷ୍କାର ପରିଚ୍ଛନ୍ନ ।

୧୯୩୫ ଅପ୍ରେଲ୍ ମାସରେ 'ସେବାଘର'କୁ ଉଠିଗଲା ପରେ ସେହିବର୍ଷ ହଠାତ୍ ରମା ଦେବୀ ବେମାର ପଡ଼ିଲେ । 'ନର୍ଭସ୍ ବ୍ରେକ୍ ଡାଉନ୍' ହେଲା । ସମସ୍ତେ ଚିନ୍ତିତ ହେଲେ । କଲିକତା ନେଇ ଚିକିତ୍ସା କରାଗଲା, ଭଲ ହେଲେ ନାହିଁ, ବରୀ ଫେରିଲେ । ତାପରେ କବିରାଜି ଚିକିତ୍ସାରେ ଦେହ ଭଲ ହେଲା । ଚିକିତ୍ସକ ଥିଲେ କେନ୍ଦ୍ରାପଡ଼ା ଗାର ଶ୍ରୀ ବ୍ରଜନାଥ ମିଶ୍ର (ତାଙ୍କ ପୈତୃକ ଗାଁ ଖଣ୍ଡସାହି ଓ ସେ ବୈଜ୍ଞାନିକ ଅଧ୍ୟାପକ ଡକ୍ଟର ବ୍ରହ୍ମାନନ୍ଦ ମିଶ୍ରଙ୍କ ବଡ଼ବାପା ।

# ଊଣେଇଶ

## ବରୀ ଅଞ୍ଚଳ

ବରୀ ଅଞ୍ଚଳ ବୋଲି ବୁଝାଏ ଖରସୁଆ ଓ ବିରୂପା ନଈ ମଝିରେ ଥିବା ବରୁଆଁ ହରିପୁରଠାରୁ ଇନ୍ଦୁପୁର ଯାଏ ଅଞ୍ଚଳ ଖଣ୍ଡିକୁ, ବର୍ତ୍ତମାନ ଯେଉଁ ଦକ୍ଷିଣ ବାଞ୍ଛାରପୁର ବ୍ଲକ ହୋଇଛି, ସେଇ ଅଞ୍ଚଳ ଓ ଆଉ ଟିକିଏ ବେଶି । ବାଟଘାଟ ନ ଥିଲା । ବିଲ, ପାଟ ବାଟେ ବଡ଼ କଷ୍ଟରେ ଯିବା ଆସିବା । ପଦାରୁ ବରୀକୁ ଯିବା ବା ବରୀରୁ ପଦାକୁ ଆସିବା କାଠିକର ପାଠ ।

## ବାଟ

କେହି ଯାଜପୁରରୁ ଗଲେ ବସ୍‌ରେ ସାତମାଇଲ୍ ଆସି ଅରେଇ ଛକରେ ଓହ୍ଲେଇବ । ସେଠୁ ଦୁଇମାଇଲ ଚାଲିଲେ ଗୁଆଳିରେ ନଈ ପାରି । ତାପରେ, ସାଢ଼େ ତିନିମାଇଲ ଚାଲିବାଟ ଯେ ସେଠି ପାଟ । ଖରସୁଆଁର 'ତଳୀ ଘାଇ' ବୋଲି ଘାଟବାଟେ ସେଠିକି ପାଣି ଆସେ । ଖରାଦିନେ ସେଠି ଅଳ୍ପ ପାଣି ଥାଏ, ପଣା । ବର୍ଷାଦିନେ ପାଟ ଉଚ୍ଛୁଳେ, ବଢ଼େ । ଡଙ୍ଗା ପଡ଼େ । ବଡ଼ ବଢ଼ି ହେଲେ ଖରସୁଆଁ

ବନ୍ଧରୁ ଡଙ୍ଗାରେ ବସି ସିଧା ଯାଇ ରମ୍ଭା ଗାଁ ପାଖରେ ପହଞ୍ଚି ବରୁଆଁ କଳାମାଟିଆ ସଡ଼କରେ ଓହ୍ଲାଇ ହୁଏ । ଆଉ ବେଣି ବଢ଼ି ହେଲେ ଆଶ୍ରମ ଡିହରେ ଡଙ୍ଗା ଲାଗେ । କଟକରୁ ଆସିଲେ ରେଳରେ ଯାଜପୁର ରୋଡ଼ । ରେଲ୍ ଥାଏ ରାତିରେ । ଯାଜପୁର-ବାଞ୍ଛାରପୁର ସଡ଼କ ପକ୍କା ହୋଇ ନ ଥିଲା । ଶୀତ ଓ ଖରାଦିନେ ବସରେ ବସି ଧକଡ଼ ଚକଡ଼ରେ ଆସି ଅରେଇରେ ଓହ୍ଲାଇବାକୁ ହୁଏ । ପାଦରେ ଚାଲି ଚାଲି ବଣ ପହଞ୍ଚ ପହଞ୍ଚ ଆଉ ଦୁଇଘଣ୍ଟା ଲାଗେ ।

ବସ୍ତିକୁ ଆଉ ଗୋଟିଏ ବାଟ, ହରିଦାସପୁର ଷ୍ଟେସନ ବାଟେ । ହରିଦାସପୁର ଠାରୁ ନେଉଳପୁର-ପାଟପୁର-ବନ୍ଧଡିହ-ବାଲିଆ-ଧାରପୁର ବାଟେ ଖରାଦିନେ ବସ୍ତି ୧୯ ମାଇଲ ବାଟ । ମଝିରେ ବ୍ରାହ୍ମଣୀ ଓ କେଲୁଅ ନଈ ପାରହେବାକୁ ପଡ଼େ । ବର୍ଷାଦିନେ କାଏମା ବାଟେ ଆଉ ୩ ମାଇଲ ବୁଲାଣି ଏବଂ ଏଥିରୁ ୧୧ ମାଇଲ ବିଲ ଓ କାଦୁଅ ଗାଉଁଲି ବାଟ । ଆଶ୍ରମବାସୀମାନେ ଅନେକ ସମୟରେ ଏହି ବାଟ ଧରନ୍ତି । ପାଦରେ ଚାଲି ବା ଖରାଦିନେ କ୍ୱଚିତ୍ କେହି ସାଇକେଲ୍‌ରେ ଆସନ୍ତି । ହରିଦାସପୁରରୁ ନେଉଳପୁରଠାରୁ ଜଗନ୍ନାଥ ସଡ଼କରେ ଧର୍ମଶାଳା ଯାଇ, ବ୍ରାହ୍ମଣୀ ପାରହୋଇ ହରିପୁର-ବରୁଆଁ-ସୁଜନପୁର ବାଟେ ଗଲେ ୨୨ ମାଇଲ ପଡ଼େ । ଶୀତ ଓ ଖରାଦିନେ ଗୋପବାବୁ ରାତିରେ ଖାଇସାରି ଆଠଟାବେଳକୁ ବଳଦଗାଡ଼ିରେ ବସନ୍ତି । ଗାଡ଼ି ଧର୍ମଶାଳା ଡେଇଁ ପକାରାସ୍ତା ଧରେ । ସକାଳ ୮ଟା ବେଳେ ଷ୍ଟେସନରେ ପହଞ୍ଚିଯାନ୍ତି ।

ବସ୍ତିକୁ ଆଉ ଗୋଟିଏ ବାଟ କେନ୍ଦ୍ରାପଡ଼ା ବାଟେ । ଇନ୍ଦୁପୁର ବସ୍ତିରୁ ୮ ମାଇଲ୍ । କେନ୍ଦ୍ରାପଡ଼ା ଟାଉନ୍ ଇନ୍ଦୁପୁରରୁ ୯ ମାଇଲ୍ । ଇନ୍ଦୁପୁରରୁ କେନ୍ଦ୍ରାପଡ଼ା ସେତେବେଳେ କଚ୍ଚା ରାସ୍ତା ଥିଲା । ବର୍ଷାଦିନେ କାଦୁଅରେ କେଉଁଠି ଗୋଡ଼ ଲଖିଯାଏ ବା ଗୋଡ଼ ଖସେ । ଖରାଦିନେ ଗୋରୁ ଖୁରା ଓ ଶଗଡ଼ ଚକରେ ଧୂଳାପଙ୍କ ଦାଢ଼ ଠିଆ ହୋଇଥାଏ । ଗୋଡ଼ ଛୁଣ୍ଚେ । ନଖ ଉଡ଼ିଯାଏ । କେନ୍ଦ୍ରାପଡ଼ାରୁ କଟକକୁ ବସ୍ ସଡ଼କ ବହୁତ ଖାଲ ଢିପ ଥିଲା । ବସ୍ ଘଣ୍ଟାକୁ ପାଞ୍ଚ ସାତ ମାଇଲ୍ ବେଗରେ ଯାଉଥାଏ ।

ସବୁ ବାଟ ସମାନ କଷ୍ଟ । ବାଛିବାକୁ କିଛି ନ ଥାଏ । ପ୍ରୟୋଜନ ଅନୁସାରେ ଯେତେବେଳେ ଯେଉଁ ବାଟ ବଛା ହେଉଥିଲା । ସେବାଟେ ଗଲାବେଳେ ଗୋପବାବୁ ଅନେକ ବନ୍ଧୁଙ୍କୁ ସଙ୍ଘୋଳି ଯାଉଥିଲେ । ବହୁତ ଲୋକଙ୍କ ସଙ୍ଗେ ଚିହ୍ନା ପରିଚିତ ହେଉଥିଲା ଓ ଆତ୍ମୀୟତା ବଢ଼ୁଥିଲା । ତାଙ୍କୁ ଓ ଆଶ୍ରମବାସୀଙ୍କୁ ସେମାନେ ଆତିଥ୍ୟ ଦେଉଥିଲେ । ସେହିପରି ଜଣେ ଲୋକ ହରିଦାସପୁର ଷ୍ଟେସନରେ ରାମ ଭଜନ । ରାମ ଭଜନ ଉତ୍ତର ପ୍ରଦେଶର ଜଣେ ଲୋକ । ଗୋଟିଏ ଛୋଟ ଚାଳଘରେ ତାଙ୍କ ହୋଟେଲ୍ । ଗୋପବାବୁଙ୍କର ସେ ପରମବନ୍ଧୁ ହୋଇଗଲେ । ହୋଟେଲର ସାମାନ୍ୟ

ଆଶ୍ରମରୁ ପଇସା ବଞ୍ଚାଇ ସର୍ବସାଧାରଣଙ୍କ ହିତ ପାଇଁ ସେଠି ଗୋଟିଏ କୂଅ ଖୋଳାଇଲେ ଓ ଆଉ କେତେଗୁଡ଼ିଏ କାମ କଲେ । ବସ୍ତିର କର୍ମୀମାନେ ଅନେକ ସମୟରେ ସେଠି ବସା ଉଠା କରୁଥିଲେ । ଷ୍ଟେସନର ପୂର୍ବ ଦିଗକୁ ୭ ଫର୍ଲଙ୍ଗ ଦୂରରେ କଦଳୀ ମଠ । କଦଳୀ ମଠର ମହନ୍ତ ଓ ଶ୍ରୀ ଚକ୍ରଧର ଦାସ ୧୯୨୧ରୁ କଂଗ୍ରେସ୍-ଭକ୍ତ ଓ କ୍ରମେ ବସ୍ତି ଆଶ୍ରମବାସୀଙ୍କର ଆପଣାର ଲୋକ ହୋଇଗଲେ । ତାଙ୍କ ଆଗ୍ରହରେ ସେଠାରେ ଚରଖାସଂଘର ଏକ ସୂତାକଟା କେନ୍ଦ୍ର ହୋଇଥିଲା । ଭୂଦାନ ବେଳେ ତାଙ୍କ ଗାଁ ଗ୍ରାମଦାନ ହେଲା ।

ବସ୍ତି ଅଞ୍ଚଳ ଭିତରେ ଥିଲା ଗୋଟିଏ ବୋଲି ରାସ୍ତା । ବରୁଆଁରୁ କଳାମାଟିଆ । ସେ ରାସ୍ତାରେ ସ୍ଥାନେ ସ୍ଥାନେ ଘାଇ । ବର୍ଷାଦିନେ ରାସ୍ତାର ଅଧେ ଭାଗ ପାଣିରେ ବୁଡ଼ିଯାଏ । ୧୯୩୭ରେ ଗୋପବାବୁ ବସ୍ତିରୁ ଗୁଆଳ ଘାଟକୁ ଗୋଟିଏ ରାସ୍ତା ପକାଇବାକୁ ଚେଷ୍ଟା କଲେ । ପଘିରି ଗାଁ ଭିତରେ ଗୋଟିଏ ପାଣିନାଳ ପୋତାହୋଇ ଖରାଦିନିଆ ବାଟ ଫିଟିଗଲା । ବାଟ ଭିତରେ ରାସ୍ତା ଯିବା ପାଇଁ ଲୋକେ ଜମି ଛାଡ଼ିଦେଲେ । ବନାକେତେ ଆଶ୍ରମବାସୀ ଓ ଗାଁ ଲୋକେ ଶ୍ରମଦାନ ଦେଇ ରାସ୍ତାର ଢାଞ୍ଚା ପକାଇଦେଲେ । କିନ୍ତୁ ସରକାରୀ ସାହାଯ୍ୟ ବା ଜିଲାବୋର୍ଡ୍‌ରୁ ସାହାଯ୍ୟ ମିଳି ପାରିଲା ନାହିଁ ଓ ସେ କାମ ସେପରି ଫାଟିଗଲା । ଆଶ୍ରମ ଲୋକେ ନିଜେ ଶ୍ରମଦାନ କରି ଅନ୍ୟାନ୍ୟ ଗାଁ ଲୋକଙ୍କ ସଙ୍ଗେ ମିଶି ଧାରପୁରରୁ ରାଆପଡ଼ାକୁ ବି ରାସ୍ତାଟିଏ କରାଇଥିଲେ । ରାସ୍ତା କାମ କଂଗ୍ରେସ୍ କର୍ମୀ ଗୁଣନିଧି ମହାନ୍ତିଙ୍କ ତତ୍ତ୍ୱାବଧାନରେ ହେଉଥିଲା । ସେ ଆଗେ ସରକାରୀ ଓଭରସିଅର ଥିଲେ ଓ ଆନ୍ଦୋଳନରେ ମିଶି ଚାକିରି ଛାଡ଼ିଥିଲେ ।

ନଈବଢ଼ିରେ ପଟୁ ପଡ଼ି ପଡ଼ି ବସ୍ତି ଅଞ୍ଚଳଟି ଖୁବ୍ ଉର୍ବର, କିନ୍ତୁ ସ୍ଥାନେ ସ୍ଥାନେ ନଈବଢ଼ି ବାଲି ଅଜାଡ଼ି ଯାଏ । ଘାସ ବହୁତ, ଗାଈ ଗୋରୁ ବଢ଼ାଇବା ପାଇଁ ଭଲ ଜାଗା, ପଛେ ଉନ୍ନତ ଧରଣର ଗାଈ ଗୋରୁ ସେ ଅଞ୍ଚଳରେ ବ୍ୟାପିଲେ । ସେବାଶ୍ରମ ସେ କାର୍ଯ୍ୟ ଆରମ୍ଭ କରିଥିଲେ । ସେହିପରି, ବହୁତ କିଆବଣ, ବେଣାପାଟ । ଗାଁଗୁଡ଼ିକ ଛୋଟ ଗହଳ । ବଢ଼ି ନ ଥିଲେ ଧାନ ଫସଲ ଭଲ ହୁଏ । ସରୁ ଶାରଦ ଧାନ ଅଳ୍ପ, ମୋଟା ବିଆଳୀ ହିଁ ବେଶି । କିନ୍ତୁ ମୁଗ, ବିରିହି ଆଦି ରବି ଫସଲ ବହୁତ ହୁଏ ।

## ଗାଁ ଜମିଦାର

ଗାଁମାନଙ୍କରେ ସବୁ ଜାତିର ଲୋକ ଥାନ୍ତି । ବିଶେଷରେ ଖଣ୍ଡାୟତ ଦଶଅଣା, ହରିଜନ ଚାରିଅଣା । ସେତେବେଳେ ଜମିଦାରୀ ପ୍ରଥା ଥାଏ । ଗୋଟିଏ ଗୋଟିଏ

ଜମିଦାରୀରେ ସାମାନ୍ୟ ସାମାନ୍ୟ ଅଂଶ ଥାଇ ଅନେକଗୁଡ଼ିଏ ସାନ ସାନ ଜମିଦାର । ସେମାନେ ସେତେ଼ ଧନୀ ନ ହେଲେ ସୁଦ୍ଧା ପ୍ରାଚୀନ ସାଆଁନ୍ତପଣିଆର ସବୁ ଦାଣ୍ଡ-ଦେଖାଣି ଆଡ଼ମ୍ବର ଓ ଆଧି-ବ୍ୟାଧି କରୁଥିଲେ; 'ଆମେ' ବଡ଼, 'ଆମେ' ଜମିଦାର, 'ଆମେ' ସାଆନ୍ତ ବୋଲି ଜଣେ ଜଣେକେ ଗର୍ବ ଓ ଗୌରବ ଅନୁଭବ କରୁଥିଲେ । ନିଜ ନିଜ ଭିତରେ, ପୁଣି ଅନ୍ୟମାନଙ୍କ ସଙ୍ଗେ ଖଣ୍ଡ କରୁଥିଲେ, ପରସ୍ପର ଉପରେ, ଅନ୍ୟ ରଇତଙ୍କ ଉପରେ ଦାଉ ସାଧୁଥିଲେ, ଜୁଲୁମ୍ କରୁଥିଲେ । କିଏ କାହା ଦୁଆରମୁହଁରେ ବଣ୍ଟା କୁର୍ହେଇ ଆସିଲାଣି ତ କିଏ କାହା ଘର ଆଗରେ ମଶାଣିରୁ ଗୋଟେଇ ଆଣି ମଣିଷ ମୁଣ୍ଡ ମଣିଷ ହାଡ଼ ଗୋଡ଼ ଥୁଆଇଲାଣି, ମାଡ଼ ମଗୁମର ମଝିରେ ମଝିରେ, କଲିକଜିଆରେ କାନ ଅତରା ପଡ଼େ । ଗାଁରେ ଏପରି 'ନେତା'ଙ୍କୁ ଘେନି ବାଡ଼ ବାଡ଼, କେତେବେଳେ କାହାକୁ ଜାତିରୁ ଅଟକ, ନିଆଁ ପାଣି ବନ୍ଦ । ମାଲି ମକଦମା ବହୁତ । ପରର କ୍ଷତି କରିବା ତ ଅତି ସ୍ଵାଭାବିକ, କ୍ଷେତରେ ଗୋରୁ ପୂରେଇ ଦେବା, ଗଛରୁ ଫଳ ପାରି ନେବା, ଗୁଳରୁ ବିଡା ବି ଓଟାରି ନେବା, ଜିନିଷ ଉଜାଡ଼ ଦେବା, ବୋହି ନେବା । ବିନା କାରଣରେ ମିଛରେ ବି ଲୋକେ ମକଦମା କରନ୍ତି, ସକାଳୁ ଉଠି ଯାଜପୁର କଚେରୀକୁ ଦୌଡ଼ନ୍ତି । ତୁଚ୍ଛ ଅଭିଯୋଗରେ ବି ମକଦମା ଦାଏର୍ ହୁଏ, —"ସ୍ୱେ କୁମ୍ଭାର ମୋ ଖାଲରୁ ମାଟି ନେଇଗଲା", "ସ୍ୱେ ଚମ୍ପାର ମୋ ତାଳଗଛରୁ ବାହୁଙ୍ଗା କାଟିଲା ।" ଅଳ୍ପ ଜମିଥିବା ଗରିବ ଲୋକ ଥିଲେ, ହରିଜନ ଥିଲେ । ହରିଜନଙ୍କ ଅବସ୍ଥା କହିଲେ ନ ସରେ । ଜମିବାଡ଼ି ନାହିଁ, ଯେଉଁ ଭିହରେ ଗୁଳବାନ୍ଧି ରହନ୍ତି ତା ବି ତାଙ୍କର ନୁହେଁ, ଜମିଦାରର, ସେମାନେ 'ମିନ୍ହା' ପ୍ରଜା, କଦଳୀ ଗଛଟିଏ ଲଗାଇଲେ କଦଳୀ କାନ୍ଦିକରେ ଜମିଦାରର ଦାବୀ, ଭାଗ । ପିନ୍ଧା ଛିଣ୍ଡା, ମଇଳା, ଲେଙ୍ଗୁଡ଼ି, ଫୁରୁ ଫୁରୁ ବାଳ, ରୁଢ଼, ଅସନା ଅବର୍ଜ୍ଜା, କେତେ ଜାତି ମଲା ଗୋରୁ କାଟି ଖାନ୍ତି, ଖଜୁରି 'ତାଡ଼ି' (ମଦ) ପିଅନ୍ତି, ମାତନ୍ତି । ସେମାନେ ମୂଲିଆ ମୂଲିଆଣୀ । ତାଙ୍କ ବସ୍ତି କଡ ଭିହ ଜମିଦାରର ଲେଉଟିଆ ପଟାଳି ପରି, ଯେତେବେଳେ ଯାହା ଦରକାର ଦେବେ, କରିବେ । ଜମିଦାରର ଟଙ୍କା ଦରକାର ହେଲେ 'ଅମଲ' କରିବାକୁ ଘର ୧୦ଟାରେ ବି ପହଞ୍ଚିଯାଇ ହେଣ୍ଡାଳିବ "ଆଣ୍, ଅଇ ନଗଦ, ଦେ ଯୋଉଠୁ ହେଲେ, ନହେଲେ ତୋ ଘର ଭଙ୍ଗାଯିବ, ଉଠି ଯା ଏଠୁ, ହେଇ ଦେଖ୍ ତୋ ବିଡା ଓଟାରିଲି, ଗୁଳ ଓଲାଳିଲେ ।" ବାକବାର୍ଙ୍କି କଂସା ଲୋଟା ବନ୍ଧା ପକାଇ ସେ ଦେବ ହିଁ, ଅନ୍ୟ ଗୁରା ନାହିଁ ।

କିନ୍ତୁ ଏପରି କେହି କେହି ଦୁଷ୍ଟ ଲୋକ ବି ଆଉ କେତେବେଳେ କିଛି ଭଲ କାମ କରନ୍ତି । ପୂଜା, ନାମ ସଙ୍କୀର୍ତ୍ତନ ଖୁବ୍ ହୁଏ । କାହା ବିପଦବେଳେ କିଏ ଆଗେଇ ଆସେ । କିଏ କେତେବେଳେ କେଉଁ ଗରିବକୁ କିଛି ଦିଏ, କାହାର କିଛି

ସେବା ଉପକାର କରେ । କେତେଜଣ ଅସହଯୋଗ ଆନ୍ଦୋଳନରେ ମିଶିଥିଲେ, ଅନେକେ ଗୋପବାବୁଙ୍କ ଓ କର୍ମୀମାନଙ୍କୁ ସାହାଯ୍ୟ କରୁଥିଲେ । ସେମାନେ କେହି ଅସାମାଜିକ କାର୍ଯ୍ୟ କରିବା ଯେପରିକି ପୂର୍ବର ଚଳଣି, ସଂସ୍କାର, ପୁଣି ଚଳନ୍ତି ଜୀବନଧାରା ଭିତରେ ଜୀବନ ବଞ୍ଚିବାର ବାଗ, ତାର ଉପାସ୍ଥ, —"ଆଗେ ବି ଏଇଆ ଥିଲା, ପିତୃପିତାମହଙ୍କ ଅମଳରୁ, ଏବେ ବି ସମସ୍ତେ କରନ୍ତି, ଏଇଆ ତ ସ୍ୱାଭାବିକ ଚଳଣି ।"

## କୋଡ଼ିଏ

### ଆଶ୍ରମରେ ଦୈନନ୍ଦିନ କର୍ମ ନିର୍ଘଣ୍ଟ

ଭୋର ସାଢ଼େ ଚାରିଟାରୁ ସମସ୍ତେ ଉଠି ପଡ଼ନ୍ତି, ନିତ୍ୟକର୍ମ ସାରନ୍ତି, ଏକାଠି ବସି ପ୍ରାର୍ଥନା କରନ୍ତି । ତାପରେ ଲାଗେ ମଜା-ମଜି, ସଫା-ସଫି, ଘର ଓଳିଆ, ପାଇଖାନା ସଫା, ବାସନ ମଜା, —ଘର, ଦାଣ୍ଡ, ସାହି ପରିଷ୍କାର କରିବା କାମ, ଝୋକେଇ ଗୁଞ୍ଜୁଣୀ ଧରି ନିଜେ ଏଇ କାମ କରିବାକୁ ଗୋପବାବୁ ଜୀବନସାକ ଭଲ ପାଉଥିଲେ । ଏ ଯେପରିକି ତାଙ୍କର ସଂସ୍କାର କରିବା ମନୋବୃତ୍ତିର ପ୍ରତୀକ । ସେତେବେଳେ କାମ ବି ଲାଗେ, ଆଶ୍ରମର ନାନା ଧନ୍ଦା, ଯାହାର ଯାହା ପାଳି । ଅସଲ ଧନ୍ଦା ସୂତାକଟା ଓ ତାହାର ଅନ୍ୟ ପ୍ରକ୍ରିୟା । ଏହାକୁ ଆଗେ ଦିଆଯାଉ ।

### ବଗିଚା

ତାପରେ ସମସ୍ତେ ଓହ୍ଲେଇ ପଡ଼ୁଥିଲେ ବାରିବଗିଚା କାମ କରିବାକୁ । ଘରଡିହ ଛାଡ଼ିଦେଲେ ୨।୩ ଗୁଣ୍ଠ ଜମି ଥାଏ । ରାସ୍ତାକଡ଼ ନନ୍ଦନକୋଠରୁ ଜିଲ୍ଲାବୋର୍ଡ଼ଠୁ ପାଞ୍ଚ/ସାତ ହାତ ଓସାରର ପଟିଟିଏ ନେଇଥାନ୍ତି । ଏଇତକ ମିଶି

ବଗିଚା । ଏଥିକରେ ନାନା ପ୍ରୟୋଗ କରାହେଉଥାଏ । ସର୍ଟନ କମ୍ପାନୀରୁ ମଞ୍ଜି ଆସେ । କୃଷି ବିଷୟରେ ପରାମର୍ଶ ଆସେ । ଟମାଟୋ, କୋବି, ମୂଳା, ସାଲଗମ୍ ଆଦି ଶୀତଦିନିଆ ପରିବା ବି ଖୁବ୍ ଚମତ୍କାର ହୋଇଥିଲା । ଗୋଟି ଗୋଟି ପ୍ରତ୍ୟେକ ଶାକସବ୍ଜୀ ଗଛର ଯତ୍ନ ନିଆଯାଉଥିଲା । ଟମାଟୋ ଗଛଗୁଡିକ ପାଖରେ ଖୁଣ୍ଟ ପୋତାହୋଇ ଆଡ଼ ବନ୍ଧା ହୋଇଥାଏ । ସେଥିରେ ପେନ୍ଥା ପେନ୍ଥା ଟମାଟୋ ଝୁଲୁଥାଏ । ଗୋବରା ଚଢ଼େଇ ଫଳ ଖୁମ୍ପିବାକୁ ଆସନ୍ତି । ନାନା ପ୍ରକାର ପନିପରିବା ଚାଷ ହୁଏ । ଲୋକେ ଆସି ଦେଖନ୍ତି, ଶିଖନ୍ତି । ଆନ୍ଧ୍ର ଓ ଅନ୍ୟ ଅଞ୍ଚଳରୁ ଭଲ ଜାତିର ଆମ୍ବ ଓ ଅନ୍ୟ କଲମୀ ଚାରା ସେ ବାରି ଅଞ୍ଚଳର ଲୋକଙ୍କ ପାଇଁ ଅଣାଉଥିଲେ ଏବଂ ନିଜେ ସ୍ଥାନୀୟ ଅତି ଉତ୍ତମ ଜାତିର ପଣସର ଚାରା ଉଠାଉଥିଲେ । ଥିଲାବାଲା କଲମୀଗଛ କିଣିଲେ ।

କେତେକ ହରିଜନ କୋବି, ବିଲାତି ବାଇଗଣ ଆଦି ତଳି ପକାଇବାକୁ ତାଙ୍କଠାରୁ ଶିଖିଲେ ଏବଂ ଚାଷ କଲେ । କେତେଲୋକ ପରିବା ଚାଷ ଓ ରୋଜଗାରର ଉପାୟ କଲେ । ପାଖରେ ଥିବା ହରିଜନ ସାହିର କେତେକ ଯୁବକଙ୍କୁ ଗୋପବାବୁ ବିଲାତି ଆଳୁ, କୋବି, ଟୋମାଟୋ, ପୋଟଳ ଆଦିର ଚାଷ ଓ ବଗିଚା କାମ ଶିଖାଇଥିଲେ ଓ ସେମାନେ ତାକୁ ବୃତ୍ତି ହିସାବରେ ଧରି ନେଲେ । ଅଳ୍ପ କେତେବର୍ଷ ଭିତରେ ବାରି ଅଞ୍ଚଳରେ ଏହି ପରିବା ଚାଷ ଏତେ ବ୍ୟାପିଗଲା ଯେ ସେଠୁ ଶହ ଶହ ଭାର ପରିବା ଯାଇ ଇନ୍ଦୁପୁର, କେନ୍ଦ୍ରାପଡ଼ା, ଯାଜପୁର ହାଟମାନଙ୍କରେ ବିକି ହେଲା ଏବଂ ଏବେ ସେଠୁ ଶହ ଶହ ବସ୍ତା ପୋଟଳ ଓ ଚିନାବାଦାମ ବାହାରକୁ ଟ୍ରକ୍ ଦ୍ୱାରା ରପ୍ତାନୀ ହେଉଛି । ରମ୍ପା ଡାକବଙ୍ଗଳା ପାଖ 'ମାଉଣ୍ଡ୍ ହାଟ'ରୁ ଏବେ କେବେ କେବେ ହାଟପାଳି ଦିନ (ସୋମବାର ଓ ଶୁକ୍ରବାର) ଏକାଦିନକେ ଶହେ ବସ୍ତା ଲେଖା ଛ ଛ ଟ୍ରକ୍ ପୋଟଳ ରପ୍ତାନୀ ହେବାର ଦେଖାଯାଏ ।

ନାନା କାମ

ବଗିଚା କାମ ପରେ ସୂତାକଟା, ତୂଳାଭିଣା ଆଦି ଆରମ୍ଭ ହୋଇଯାଏ । ବିନୋଦ ବାବୁ ରମ୍ପା ହରିଜନ ସାହି ଓ ସୁରେନ୍ଦ୍ର ବାବୁ ବାର୍ଦା ହରିଜନ ସାହି ଆଦିରେଥାନ୍ତି । ମଙ୍ଗଳା ଦେବୀ ଅରଙ୍ଗାବାଦ୍ ହରିଜନ ସାହିରେ କାମ କରନ୍ତି । ଶୋଭା ଦେବୀ ଏରଡ଼ା ଗୋଦାବରୀ ରହୁଗିରି । ଅନ୍ୟାନ୍ୟ କର୍ମୀମାନେ ହରିଜନ ସାହିରେ ନାନା କାମ କରିବାକୁ ଚାଲିଯାନ୍ତି । ନାନା ପ୍ରକାର ଦେହ ମେହେନତ୍ ଚାଲିଥାଏ । ଦିପହର ବେଳେ ପଢ଼ାଶୁଣା ହୁଏ, ସ୍ୱାଧ୍ୟାୟ ପାଇଁ ବୌଦ୍ଧିକ କାମ ହୁଏ, ଟିକିଏ ବିଶ୍ରାମ ବି ହୁଏ । ଉପରଓଳି ପୁଣି ବଗିଚା କାମ । ଆଶ୍ରମ ବାହାରେ ସଡ଼କ କଡ଼ରେ ଗୋଟିଏ ଟିଉବ୍‌ୱେଲ୍ ବସା ହୋଇଥାଏ । ଘରଟାବେଳେ ଗୋପବାବୁ ଯାଇ

ପାଣିକଳ ପାଖରେ ଠିଆ ହୋଇ ଡାକନ୍ତି, "ଆରେ, ବାଲ୍‌ଟି ଆଣ" । ପାଣିଢଆ ସଙ୍ଗଯାଏ ଚାଲେ ।

ଏହାର ଭିତରେ ନିୟମିତ ଭାବେ ଅନ୍ୟାନ୍ୟ କାର୍ଯ୍ୟ ବି ଚାଲିଥାଏ, ରଚନାତ୍ମକ କାର୍ଯ୍ୟର ନାନା ସୂଚୀ । ତହିଁରେ ଶରୀର ଶ୍ରମ ବି ଥାଏ, ଶରୀର ଚଳନ ଓ ଆଲୋଚନା ବି ଥାଏ । ଗୋ-ପାଳନ, ସପବୁଣା, ଲୁଗାବୁଣା ବି ଥାଏ, ଲେଖାଲେଖି ବି ଥାଏ । ବାଣ୍ଟିକୁଣ୍ଟି କାମ କଲେ ସେତିକ ସମୟରେ ବହୁତ କାମ ହୋଇପାରେ । ବହୁତ ଲୋକଙ୍କ ସଙ୍ଗେ ସମ୍ପର୍କ ରଖିବାକୁ ପଡ଼େ, ବହୁତ ଆଡ଼େ ବୁଲି ବୁଲି କାମ କରିବାକୁ ପଡ଼େ । ପଞ୍ଚା ପଞ୍ଚା ଲୋକ ଆସନ୍ତି, ନାନା କାମ, ନାନା କଥା ଆଲୋଚନା ।

ଭିଦୁଭିଢଆ ଦ୍ୱ'ପହରେ ଗୋପବାବୁ ପଦାରେ ବୁଲିବାକୁ ଚାଲିଯାନ୍ତି, ତକଲି ଧରି ସୂତା କାଟୁଥାନ୍ତି । ନଗ୍ନଛିଆ ଖରାରେ ମେଲ ଖୋଲରେ ବୁଲିବାକୁ ତାଙ୍କୁ ଭଲ ଲାଗେ । ସେତେବେଳେ ନିଜ ସଙ୍ଗେ ନିଜେ । କଳୁ ଖାଲି ସେତିକ ଲୁହେଁ । ପହଞ୍ଚନ୍ତି ଗାଈଜଗା ଟୋକାଙ୍କ ମେଳରେ, ସେତେବେଳେ ସେ ଟୋକାସୁଦ୍ଧା ତାଙ୍କର । ଦୁଃଖ ସୁଖ ପଡ଼େ, ଗାଁ ଖବର, ବିଲବାଡ଼ି ଖବର ସବୁ କାନରେ ପଡ଼େ । କେତେବେଳେ ସେ ତାଙ୍କ ସଙ୍ଗେ ଧାଇଁ ଧାଇଁ ମାଙ୍କଡ଼ ଚୁଟୁଚୁଡ଼ାନ୍ତି । କେତେବେଳେ ଜୋରୁଙ୍କ ପାଖକୁ ଯାନ୍ତି, ଦେଖନ୍ତି । ସବୁଠି ତାଙ୍କର ମନ କିଛୁ ଆକର୍ଷଣୀୟ ଜିନିଷ ପାଇପାରେ । କେତେଥର ସେ ମହୁମାଛିଙ୍କ ଭଉଁରୁ କିଘା କରିଛନ୍ତି, ତାଙ୍କ ଗୁଣଗୁଣକୁ କାନେଇଛନ୍ତି, ମହୁମାଛିଙ୍କ ଅଭ୍ୟାସ ଓ ଗତିବିଧି ଅଧ୍ୟୟନ କରୁଥିଲେ, ମହୁଚାଷ କରୁଥିଲେ । ଆଶ୍ରମରେ ମହୁଚାଷ ବିଧିବଦ୍ଧ ଭାବେ ପ୍ରବର୍ତ୍ତିତ ହୋଇବେଳେ 'ମହୁଆ ଗଣେଶ' (ରମ୍ଭାର ଶ୍ରୀ ଗଣେଶ ଚନ୍ଦ୍ର ମହାନ୍ତି) ଓ ବୁଲୁବାବୁ ମହୁଚାଷରେ ବିଶାରଦ ହେଲେ ଓ ସେମାନେ ଗଛରେ ଚଢ଼ି ରାଣୀ ମହୁମାଛି ଧରୁଥିଲେ ।

ସନ୍ଧ୍ୟା ୭ଟା ପୂର୍ବରୁ ଖିଆପିଆ ସରିଯାଉଥିଲା । ପୁଣି ପ୍ରାର୍ଥନା, ତାପରେ ଖବର କାଗଜ ପଢ଼ା, ଆଲୋଚନା, କଥାଭାଷା । ରାତି ୯ଟା ୧୦ ବେଳକୁ ସମସ୍ତେ ଶୋଇ ପଡ଼ୁଥିଲେ ।

ଆଶ୍ରମରେ ନିର୍ଘଣ୍ଟ ଅନୁସାରେ କାମ, ଖାଇବା ପୂର୍ବରୁ ବି ନିୟମିତଭାବେ ମନ୍ତ୍ର ପାଠ, ସବୁଥିରେ ଶୃଙ୍ଖଳା ।

ଖଦୀ ପିନ୍ଧା, ସରଳ ନିରାମିଷ ଖାଦ୍ୟ ଖିଆ, ଖଟଣି ଓ ଆନନ୍ଦମୟ ସୁନ୍ଦର ସରଳ ପବିତ୍ର ଆଶ୍ରମ-ଜୀବନ, ସେ ଯାହାକୁ ଛୁଇଁଛୁ ତା ଉପରେ ତା ଜୀବନଯାକ କିଛୁ ହେଲେ ପ୍ରଭାବ ରଖିଯାଇଛୁ ।

ଆଶ୍ରମର ନିତିଦିନିଆ କାର୍ଯ୍ୟଛଡ଼ା କେତେଗୁଡ଼ିଏ ବିଶିଷ୍ଟ ଦିନ ବି ଥିଲା । ଚରଖା ଜୟନ୍ତୀ (ଗାନ୍ଧୀ ଜୟନ୍ତୀ), ଉତ୍କଳମଣିଙ୍କ ଶ୍ରାଦ୍ଧ ଦିବସ, ଅପ୍ରେଲ୍ ୧୩, ୨୬ ଜାନୁଆରି ଆଦି ପାଳନ କରାଯାଉଥିଲା । ପତାକା ଉତ୍ତୋଳନ, ଜାତୀୟ ସଙ୍ଗୀତ ଗାନ ଆଦି ବିଷୟରେ ସେଠି ତାଲିମ ଦିଆ ହେଉଥିଲା ।

୧୯୩୫ରେ ବରି ଆଶ୍ରମରେ ଗୋବର୍ଦ୍ଧନ ପୃଷ୍ଟିଙ୍କ ଅଧ୍ୟକ୍ଷତାରେ କଂଗ୍ରେସ୍‌ର ରୌପ୍ୟ ଜୁବୁଲି ପାଳିତ ହୋଇଥିଲା । ଏଥିପାଇଁ ଦୁଇମାସ ଆଗରୁ ପ୍ରତିଦିନ ଗ୍ରାମରେ ଭିକ୍ଷା କରି ଅଣା ଯାଉଥିଲା । ନାଚ ଗୀତ ଆଦି ଦେଖା ହୋଇଥିଲା ।

ଅନେକ ଅତିଥି ଆସୁଥିଲେ, ଓଡ଼ିଶାଯାକର, ପୁଣି ବାହାରର । କଂଗ୍ରେସ୍ ନେତାମାନେ, କର୍ମୀମାନେ ତ ଅନେକଥର ଆସୁଥିଲେ । ସେମାନଙ୍କ ଭିତରେ ଥିଲେ ଆଚାର୍ଯ୍ୟ ମହାଶୟ,—ସେ ବୁଢ଼ା ବୟସରେ ଆଚାର୍ଯ୍ୟ ମହାଶୟେ ଅଣ ଆଗ ସାଇକଲ ଚଢ଼ି ବନ୍ଧ ଉପରେ ମାଡ଼ି ଆସୁଥିଲେ, ଆସୁଥିଲେ ମହତାବ ବାବୁ, ହରେକୃଷ୍ଣ ବାବୁ, ଶ୍ରୀ ନନ୍ଦ କିଶୋର ଦାସ, ପଢ଼ିଆରୀ ମହାଶୟ ଆଦି । ନବ ବାବୁ, ମାଳତୀ ଦେବୀ ବରି ଆଶ୍ରମରେ ନ ଥିଲେ କିନ୍ତୁ ଥରକୁ ଥର ଆସନ୍ତି ।

ଓଡ଼ିଶା ବାହାରୁ ଯେଉଁମାନେ ଆସୁଥିଲେ ତାଙ୍କ ଭିତରେ ଥିଲେ କିଶୋର ଲାଲ୍ ମଶ୍ରୁୱାଲା, କାକା କାଲେଲ୍‌କର୍, ପ୍ୟାରେଲାଲ୍, ଶଙ୍କରରାଓ ଦେଓ, ଧୋତ୍ରେଜୀ, ଠକ୍କର ବାପା, ସତୀଶ ଚନ୍ଦ୍ର ଦାସଗୁପ୍ତ, ବଦ୍ରିନାଥ ଉପାଧ୍ୟାୟ, ଆର୍ଯ୍ୟ ନାୟକମ୍, ଆଶା ଦେବୀ ଆଦି ।

# ଏକୋଇଶ

## ଗାଁ ସଫେଇ

ଖାଲି ନିଜ ଗାଁକୁ ପରିଷ୍କାର ରଖିବା ପାଇଁ ନୁହେଁ, ଗାଁରେ ସମସ୍ତିଙ୍କର ହିତ ପାଇଁ ପ୍ରତ୍ୟେକଙ୍କଠି ସମୂହ-କଲ୍ୟାଣ-ଚେତନା ଜନ୍ମାଇବା ଗାନ୍ଧିଜୀଙ୍କ ବିଚାରଧାରା ଭିତରେ ଗାଁ-ସଫେଇର ଉଦ୍ଦେଶ୍ୟ । ଗାଁରେ ସେ ଚେତନା ନ ଥିଲା ।

ଲୋକେ ବାଟରେ ଝାଡ଼ା ଫେରନ୍ତି । ରାସ୍ତା, ଗୁଡ଼, କୂଅମୂଳ, ଖାଲ ଜାଗା, ସବୁଠି ଅଳିଆ କୁଢ଼ କୁଢ଼ । ଲୋକେ ଆପଣା-ସାର୍ଥୁକା, ଗାଁ ଅସନା, ହତଶ୍ରୀ, ଦୁର୍ଗନ୍ଧ, ମାଛି ଭଣଭଣ ।

ଆଶ୍ରମର କର୍ମୀମାନେ ସକାଳୁ ଆଶ୍ରମ ସଫା କରି ପାଇଖାନା ସଫା କରି ବାହାରିଯାନ୍ତି ଗାଁ ସଫେଇ କାମରେ । କେଉଁଦିନ କେଉଁ ଗାଁ ସଫେଇ ପଡ଼େ, ନିୟମିତ ଭାବେ ସଫେଇ ଚାଲେ ଯେଉଁ ଗାଁରେ ଥାନ୍ତି ସେଠି । କ୍ରମେ ସଫେଇ କାମରେ କେହି କେହି ଗାଁ ଲୋକ ବି ମିଶିଲେ, କଳେ ଏକାଠି ହୋଇ ଗାଁ ସଫେଇ କରିବା ଅଭ୍ୟାସ କଲେ । ବୁଝିଲେ, —ତହିଁରେ ସମସ୍ତିଙ୍କର ହିତ, ସେଥିରେ ଗାଁର ଇଜ୍ଜତ୍ ରହେ, ନଜର ବି । କିନ୍ତୁ ସେଭଳି ଗାଁ ଲୋକଙ୍କ ସଂଖ୍ୟା ସୀମିତ ହିଁ ଥିଲା, ବେଶୀଭାଗ ଲୋକ ଗାଁ ସଫେଇ ପ୍ରତି ଉଦାସୀନ ହିଁ ରହୁଥିଲେ । ବସ୍ତୁତଃ ବଢି-ବସିଥିବା ଗାଁ ପୋଖରୀ ପରି ଏ ଦେଶର ଚଳଣି ବି ସେମିତି । ଯଦି କେତେବେଳେ କେଉଁ ଉଦ୍ଧୀପନା ଆସେ, ଟିକିଏ ଦୋହଲାଇ ଦିଏ, ଅଳ୍ପ ଏ ଠାଏ ନିର୍ମଳ ଦିଶେ, ତାପରେ ଆସ୍ତେ ଆସ୍ତେ ପୁଣି ଦଳ ଭାସି ଆସେ, ପାଣିକେନ୍ଦୁଆ ଫୁଟେ ।

ଆଶ୍ରମର କର୍ମୀମାନେ କଟକର ଅଲୋବାଦ୍ ବସ୍ତିର ବଣିଆସାହିକୁ ପ୍ରତିଦିନ ସଫେଇ ପାଇଁ ଯାଉଥିଲେ । ସେଠି ଲୋକେ ରାସ୍ତାରେ ଝାଡ଼ା ଫେରନ୍ତି, ପଡ଼ିଥାଏ, ନାକରେ ଲୁଗା ମାଡ଼ି ଡେଇଁ ଡେଇଁ ଯାଆନ୍ତି । କର୍ମୀମାନେ ଗାଁ ସଫେଇ କଲାବେଳେ ସେ ମଇଳାକୁ କୋଡ଼ିରେ ବା ଖୁରୁପିରେ ତାଛି ଉଠେଇ ଦିଅନ୍ତି, ରାସ୍ତା ସଫା ରହେ । କିନ୍ତୁ ଅନେକ ଦିନ ପର୍ଯ୍ୟନ୍ତ ଲୋକେ ଚେତିଲେ ନାହିଁ, ଓଲଟି ବୋଧେ ଭାବିଲେ ସଫାସଫି କରି ସେମାନେ ଝାଡ଼ା ବସିବାଲାଗି ସୁବିଧା କରିଦେବା କର୍ମୀମାନଙ୍କ କାମ । କ୍ରମେ ଏ ପ୍ରକାର ସଫେଇ ଚେଷ୍ଟା ଛାଡ଼ିଦେଇ ଅନ୍ୟ ଉପାୟ କରାଗଲା ।

ପାଇଖାନା

ଆଶ୍ରମରେ ମୂଳରୁ ଗାତ ପାଇଖାନା କରା ହୋଇଥିଲା । ପରେ ବାଲ୍ଟି ପାଇଖାନା ହେଲା । ଯୋଡ଼ିଏ ବାଲ୍ଟି ଥାଏ, ଗୋଟିଏ ପରିସ୍ରା ପାଇଁ, ଗୋଟିଏ ଝାଡ଼ା ପାଇଁ । ଝାଡ଼ା ଫେରି ମାଟି ବା ପାଉଁଶ ଘୋଡ଼େଇ ଦିଆଯାଏ । ପାଇଖାନା ଖୁବ୍ ପରିଷ୍କାର ଥିଲା । ପ୍ରତିଦିନ ସକାଳୁ ଯାହାର ପାଳି ଥାଏ, ସେ ବାଲ୍ଟି ଉଠେଇନିଏ ଓ ଆଶ୍ରମ ବଗିଚାରେ ଗାତରେ ଝାଡ଼ା ପରିସ୍ରା ପୋତା ହୋଇ ଖତ ହୁଏ । ସେଇ ଖତ ଦିଆହୋଇ ଆଶ୍ରମରେ ଏତେ ପରିବା ଓ ଏତେ ସୁନ୍ଦର ପରିବା ଫଳୁଥିଲା । ଲୋକେ ଆଗେ ପ୍ରଥମେ ଆଶ୍ରମ-ବାଡ଼ିର ସେହି ପରିବା ଖାଇବାକୁ ଘୃଣା କରୁଥିଲେ । କ୍ରମେ ସେମାନେ ଶିଖିଗଲେ । କେତେ ପରିବାର ମଧ୍ୟ ନିଜ ଘରେ ସେପରି ପାଇଖାନା କଲେ

ସେପରି ଖତ ବ୍ୟବହାର କଲେ, କିନ୍ତୁ ସେ ଧୋଇଆ ଅଞ୍ଚଳରେ ସେପରି ପାଇଖାନା ଚଳେଇବାରେ କେତେକ ଅସୁବିଧା ଥିଲା । ବର୍ଷାଦିନେ ଗୃହଆଡ଼େ ପାଣି ଭର୍ତ୍ତି ହୋଇଯାଏ । ଗାଁ ଲୋକେ ଝାଡ଼ା ଫେରିବାକୁ ଡଙ୍ଗା ଚଢ଼ିକି ଓ ଦୂରକୁ ଯାନ୍ତି । ଯାହାର ସେପରି ସୁବିଧା ନ ଥାଏ ସେ ଘରିପଟ ଉପରେ ଝାଡ଼ା ଫେରି ଭସାଇଦିଏ । ବାଟ କରରେ ଝାଡ଼ା ଫେରିବା ବି ଗାଁ ଗହଳରେ ବହୁକାଳର ଅଭ୍ୟାସ ।

ହରିଜନ କାମ

ଗୋପବାବୁ ବଣ୍ଡରେ ପହଞ୍ଚି ପହଞ୍ଚି ସେ ଅଞ୍ଚଳରେ ହରିଜନ କାମ ଆରମ୍ଭ କରି ଦେଇଥିଲେ । କର୍ମୀମାନେ ହରିଜନ ବସ୍ତିକୁ ଯାନ୍ତି, ସେଠି ଗାଁ ସଫେଇ କରନ୍ତି, ହରିଜନମାନଙ୍କୁ ସଫାସୁତୁରା କରନ୍ତି, ତାଙ୍କ ପିଲାଙ୍କ ଯତ୍ନ ନିଅନ୍ତି ଓ ଚାଟଶାଳୀ ଖୋଲି ତାଙ୍କୁ ପାଠ ପଢ଼ାନ୍ତି । ସେମାନେ ହରିଜନମାନଙ୍କୁ ଭଲ ବୁଦ୍ଧି ଦେଉଥିଲେ, ତାଙ୍କୁ ପରିଷ୍କାର ପରିଚ୍ଛନ୍ନ କରାଇଲେ । ତାଙ୍କର ମଲଗୋରୁ ଖାଇବା ଅଭ୍ୟାସ ଛଡ଼ାଇଲେ । ତାଙ୍କର ତାଡ଼ି ପିଇବା ଅଭ୍ୟାସ ଛଡ଼ାଇଲେ ଓ ୧୯୩୭ରେ କଂଗ୍ରେସ ମନ୍ତ୍ରିମଣ୍ଡଳ ହେବାରୁ ତାଙ୍କୁ କହି ତାଡ଼ି ବନ୍ଦ କରାଇଲେ । ତାଙ୍କୁ ନାନା ପ୍ରକାର ଧନ୍ଦା ବିଷୟରେ ତାଲିମ ଦେଇ ନୂଆ ନୂଆ ରୋଜଗାର ବୃତ୍ତିରେ ଲଗାଇଲେ । ବାଗ୍‌ଦାର ଯଦୁ ଜେନା ଗୋପବାବୁଙ୍କ ସଙ୍ଗେ ମିଶି ରାଜମିସ୍ତ୍ରୀ କାମ କରୁ କରୁ ନିଜେ ସେ ଅଞ୍ଚଳରେ ରାଜମିସ୍ତ୍ରୀ ବୃତ୍ତି କଲେ । ନାନା ଧନ୍ଦା ଭିତରେ କେତେଗୁଡ଼ିଏ ଥିଲା ଆଖିଦୁରୁଷିଆ । ଅଳିଅ କେତେଜଣ ହରିଜନଙ୍କୁ ବୁଲୁବାବୁ (ମନମୋହନ ଚୌଧୁରୀ) ଓ ବୈଦ୍ୟନାଥ ଦାସ ମଲଗୋରୁଠୁ ଚମଡ଼ା ଛେଲି ଛଡ଼େଇବା, ଚମଡ଼ାକୁ ପାଗ କରିବା ଓ ଟ୍ୟାନିଂ କରିବା ଓ ତହିଁରେ ଚପ୍‌ପଲ୍, ମନିବ୍ୟାଗ୍ ଆଦି କରିବା ଶିଖାଇଥିଲେ । ତାଲିମ୍ ପାଇଥିବା ହରିଜନଙ୍କ ଭିତରୁ ଶ୍ରୀ ବୁଲି ହାଡ଼ି କଟକ ଜୋବ୍ରା ଅଞ୍ଚଳରେ ଥିବା ସରକାରୀ ଟ୍ୟାନିଂ ଫ୍ୟାକ୍‌ଟରୀରେ ଚାକିରି ପାଇଲେ, ଏବେ ବି ସେ ଚାକିରିରେ ଅଛନ୍ତି । ଶ୍ରୀ ଗୁଣନିଧି ମହାନ୍ତିଙ୍କଠୁ ଖଜୁରି ରସରୁ 'ନୀରା' ତିଆରି କରିବା ଓ ଗୁଡ଼ ତିଆରି କରିବା କାମ ବଣ, ଅଟିରା, ମଲ୍ଲିଆପାଗ ପ୍ରଭୃତି ଗ୍ରାମ ପାଞ୍ଚଖଣ୍ଡି ଗାଁର ପ୍ରାୟ ୩୦ ଘର ଚମାରଜାତିର ଲୋକ ଶିଖିନେଲେ ଓ ତାଡ଼ି କରିବା ବନ୍ଦ କରିଦେଇ ନୀରା ଓ ଖଜୁରିଗୁଡ଼ କଲେ । ସେତେବେଳର (୧୯୩୭) କଂଗ୍ରେସ୍ ମନ୍ତ୍ରିମଣ୍ଡଳ ତାଡ଼ିର ଘୋର ବିରୋଧୀ ଥିଲା ଓ ସେ ଅଞ୍ଚଳର ଗୃହଆଡ଼େ ତାଡ଼ି କରିବା ଓ ପିଇବା ପ୍ରାୟ ବନ୍ଦ ହୋଇଯାଇଥିଲା । ପୁଣି ତାଡ଼ି ଲେଉଟି ଆସିଲା ପ୍ରାୟ ୧୯୬୦ ସଦିକି । ସେତେବେଳକୁ ତାଡ଼ି ବନ୍ଦ କରିବା ସରକାରୀ ନୀତି ନ ଥିଲା । ଆରପାଖେ,—'ନୀରା' ବି ସବୁଦିନିଆ କାରବାର ନୁହେଁ, ଶୀତଦିନେ ହୁଏ, କିନ୍ତୁ ଗରମ ପଡ଼ିଲେ ଖଜୁରୀ ରସ ଉଲୁଟି ତାଡ଼ି ହୋଇଯାଏ, ଖରାଦିନେ ସେ କାମ ବନ୍ଦ; ପୁଣି ଖଜୁରିଗୁଡ଼ର ଦାମ ଆଖୁଗୁଡ଼ର ଦେଢ଼ା, ସାଧାରଣ ଲୋକେ ତାକୁ କିଣିବା କଷ୍ଟ, ତାଡ଼ି ତିଆରିଭଳି ବର୍ଷକ

ବାରମାସି ଖଜୁରିଗୁଡ଼ ତିଆରି ହୁଏ ନାହିଁ, କାରଣ ସେସବୁ ବଡ଼ି ଅଞ୍ଚଳ, ଗୁଡ଼ ତିଆରିବାକୁ ବେଶି ଜାଳ ଦରକାର, ବର୍ଷାଦିନେ ଜାଳ ମିଳିବା କଷ୍ଟ । ତା ପଞ୍ଚାୟତ ବ ଲୋକଙ୍କ ଚମାରମାନେ ବର୍ଷସାରା ତାଙ୍କ ଜିବିକା ଚଳାନ୍ତି କାରଣ ଅନ୍ୟ କୌଣସି ଜିବିକା ତାଙ୍କ ପାଇଁ ଆଉ କେହି ଖୋଜି ଦେବେ ନାହିଁ । ଏହିସବୁ କାରଣରୁ ଖାଲି ସେଠି ବୋଲି ନୁହେଁ, ଓଡ଼ିଶାର ବୃଣଆଡ଼େ ଖଜୁରିଗୁଡ଼ ଯୋଜନା ମାଡ଼ ଖାଇଗଲା । କେତେକ ହରିଜନ ମହୁମାଛି ପାଳିବା, ମହୁମାଛି ରଖିବା କାମ ଶିଖି ନିଜେ ମଧ୍ୟ ସେ ଧନ୍ଦା କଲେ । ସେମାନଙ୍କ ଭିତରୁ କେତେଜଣ ବାଗ୍‌ଦା ଘାଣ ସାହିର ଅର୍ଜୁନ ଜେନା, ମୁରଲି ଜେନା, ଆନନ୍ଦପୁରର ରତ୍ନାକର ଜେନା, 'କଣୁପୋଇ' ଗାଁର ଆନନ୍ଦ ଜେନା ଆଦି । ସେମାନେ ବରି ଆଶ୍ରମରେ କେଳେ କେଳେ କାମଦାମ କରୁଥିଲେ । ବାଗ୍‌ଦା ଘାଣ ସାହିର ମୁରଲି ଜେନା ଆଶ୍ରମର ଗୋରୁ ଜଗୁଥିଲା, ସେ ଏଭଳି ଭାବେ ଦହି ବସେଇବା ଓ ଘିଅ କରିବା ଶିଖିଗଲା ଯେ ସେଥିରେ ସେ ଧୁରନ୍ଧର ହେଲା । ଶ୍ରୀ ଗୁରୁବୋଧ ମହାନ୍ତି କେତେଜଣ ହରିଜନଙ୍କୁ କଥାପତ୍ର ଓ ତାଳପତ୍ରରେ ହାତଲଗା 'ବାସ୍କେଟ' ତିଆରି ଶିଖାଇଥିଲେ । କଳଣା ଆଦି ବ ତହିଁରେ ପୂରାଇ ରଖାଯାଉଥିଲା । କଟକ ଜିଲ୍ଲା ଧାମନଗର ଥାନା କଟେଲୋପାଟଣା ପାଖେ ନଈ ଆରପାଖେ ଜଅପଡ଼ା ଗାଁରେ ଶ୍ରୀ ଅକ୍ରୂର ଜେନାଙ୍କ ଘର । ସେ ଜାତିରେ ପାଣ । ତାଙ୍କର ଆଗ୍ରହ, କଥାବାର୍ତ୍ତା, ବ୍ୟବହାର ଏଭଳି ମାର୍ଜିତ ଯେ ସେ ହରିଜନ ବୋଲି କେହି ଜାଣିପାରିବା କଷ୍ଟ । ସେ ବରି ଆଶ୍ରମରେ ୧୯୪୨ ଆନ୍ଦୋଳନ ପୂର୍ବରୁ ତ ଥିଲେ, ତାପରେ '୪୫ ମସିହାରେ ପୁଣି ଯେତେବେଳେ ବରି ଆଶ୍ରମ ଖୋଲିଲା ସେତେବେଳେ ବ ସେଠି ଥିଲେ । ବରିରେ 'ଖଦି ସରଞ୍ଜାମ କାର୍ଯ୍ୟାଳୟ' ବୋଲି କାରଖାନାଟିଏ କରି ହୋଇଥାଏ, ତା ମାର୍ଫତରେ ଥିଲେ ବୁଲୁବାବୁ । ଦୁଇଟା ଲେଥ୍ ମେସିନ୍ ଥାଏ, ତାକୁ ହାତରେ ବୁଲାଇବାକୁ ପଡ଼େ । ସେଠି ମହୁବାକସ, ଅରଟର ଭଣା, କଳଣା ତିଆରି କରିବାକୁ 'ପିଢ଼ାପଟା', 'ହତା', ତାକୁଡ଼ି (ଅରଟର ସ୍ପିଣ୍ଡଲ୍), ତକ୍‌ଲି (ଯେଉଁଟା ଅରଟରେ ଲଗେ ନାହିଁ, ଖାଲି ହାତରେ ଓହଳାଇ ବୁଲେଇ ବୁଲେଇ ତହିଁରେ ସୂତା କାଟନ୍ତି ଓ ସୂତା ପାଗ କରନ୍ତି), ଧନୁଷ୍-ତକ୍‌ଲି (ଅରଟର କାର୍ଯ୍ୟ କରୁଥିବା ଅତି ସରଳ ଉପାଦାନ, ଓଜନ ପ୍ରାୟ ଅଧସେର), ମଗନ୍ ଚରଖା ଆଦି ସେଇଠି ତିଆରି ହେଉଥିଲା । ଅର୍ଜୁନ ଜେନାଙ୍କ ଛଡ଼ା ଆଉ କେତେଜଣ ହରିଜନ ବ ସେସବୁ କାମ ଶିଖିଗଲେ । ଅର୍ଜୁନ ଜେନା, ରତ୍ନାକର ଜେନା, ଆନନ୍ଦ ଜେନା ଓ ଅନ୍ୟ ହରିଜନମାନେ ଟମାଟୋ, ନାନା ପ୍ରକାର କୋବି ଆଦି ଗଛ ଧରାଇବା ଶିଖିଥିଲେ ଓ ତାପରେ ସେହିସବୁ ପରିବା ଲଗାଇବା ଶିଖିଗଲେ, କରି ବିକଲେ, କ୍ରମେ ସେ ଅଞ୍ଚଳ ଏସବୁ ପନିପରିବା ପାଇଁ ବିଖ୍ୟାତ ହେଲା । ବରିଠୁଁ ୪ ମାଇଲ ଦୂର 'ଇନ୍ଦୁପୁର' ଗାଁହି ବ୍ରାହ୍ମଣୀ ନଈକୂଳରେ, ଏବେ ସେଠି ଶହ ଶହ ଟଙ୍କାର କୋବି ଓ ଟମାଟୋ ଗଛ ବସି ହୋଇଥାଏ ।

ସେମାନେ ଅଛୁଆଁ ପ୍ରଥା ଭାଙ୍ଗିଥିଲେ । ନିଜେ ହରିଜନମାନଙ୍କ ହାତରେ ଓ ଘରେ ଖାଉଥିଲେ । ଆଶ୍ରମରେ ତାଙ୍କୁ ନିଜ ସଙ୍ଗରେ ଏକା ପଙ୍ଗତରେ ବସାଇ ଖୁଆଉଥିଲେ ଓ କେତେକ ଗାଁ । ଗାଁରେ ସେପରି ପଂକ୍ତିଭୋଜନ କରାଉଥିଲେ । ଅନେକ ହରିଜନ ଆଶ୍ରମ କର୍ମୀଙ୍କ ସଙ୍ଗେ ମିଶି କର୍ମୀ ହୋଇଗଲେ । ୧୯୪୨ ଆନ୍ଦୋଳନବେଳେ ସେପରି ଅନେକ ହରିଜନ ଆନ୍ଦୋଳନରେ କାର୍ଯ୍ୟ କରିଥିଲେ ଓ ଜେଲ୍ ଯାଇଥିଲେ ।

ବାଗ୍‌ଦାର (ପାଣ) ହରିଜନ ସାହିରେ ଧାଡ଼ିଏ ଖାପିମାଟି ଘର ହୋଇଥିଲା । ବରି ଆଶ୍ରମରେ ରମା ଦେବୀ ଓ ନାରୀକର୍ମୀମାନେ ରହୁଥାନ୍ତି । ଏଥରେ ବାଗ୍‌ଦା ହରିଜନ ସାହିରେ ସବୁଦିନେ ଗୋପବାବୁ ଓ ଗୁଣନିଧିବାବୁ ରହୁଥିଲେ, ଅନେକଥର ଶ୍ରୀ ବଂଶୀଧର ନାୟକ ବି ରହନ୍ତି । ଏହାଛଡ଼ା ଆଚାର୍ଯ୍ୟ ମହାଶୟ, ଗୁଣନିଧି ମହାନ୍ତି, ଈଶ୍ୱରଲାଲ୍ ବ୍ୟାସ୍, ନନ୍ଦ କିଶୋର ଦାସ, ଗୋକୁଳାନନ୍ଦ ମହାନ୍ତି, ଧୋଷେଙ୍କ, ଓଡ଼ିଶା ଚରଖା ସଂଘର ଆକାଉଣ୍ଟାଣ୍ଟ୍ ଅନ୍ତର୍ଯ୍ୟାମୀ ପଣ୍ଡା ଆଦି ବରି ଆସିଲେ ରାତିରେ ସେହି ହରିଜନ ସାହି ଘରେ ରହୁଥିଲେ ।

ମୂଳରୁ ବରି ଆଶ୍ରମର ଆଦ୍ୟ ସମୟରେ ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ (ପରେ ଓଡ଼ିଶାର ଜଣେ ମନ୍ତ୍ରୀ) ଗୋପବାବୁଙ୍କ ସଙ୍ଗେ ମିଶି ବରିରେ କର୍ମୀ ହୋଇ କାର୍ଯ୍ୟ କରୁଥିଲେ । ସେ ବରି ଆଶ୍ରମରେ ନ ରହି ସେଠୁ ମାଇଲିଏ ଦୂରରେ 'ମଲିଆଯାଇ'ରେ ସାନ କୁଡ଼ିଆଟିଏ ତୋଳି ସେଠି ରହୁଥିଲେ ଓ ଗ୍ରାମ ସଂଗଠନ କାର୍ଯ୍ୟରେ ମନପ୍ରାଣ ଢାଳି ଦେଇଥିଲେ । ସେ ବେଶି ହରିଜନ କାମ କରୁଥିଲେ । ସେହିପରି ଶ୍ରୀ ବିନୋଦ୍ କାନନ୍‌ଗୋ (ପରେ 'ଜ୍ଞାନମଣ୍ଡଳ' ଲେଖକ) । ସେ ଅଲଗା 'ଆଶ୍ରମ' କରି ନ ଥିଲେ । କେତେବେଳେ ବରି ଆଶ୍ରମରେ ଖାଉଥିଲେ, କେତେବେଳେ ଆଶ୍ରମପାଖ କଣ୍ଟପୋଇ, ରତଳାଂ, ବାଗ୍‌ଦା ଆଦି କେଉଁ ପଲ୍ଲୀରେ କେଉଁ ପାଣ କି କଣ୍ଡରା ଘରେ ଖାଉଥିଲେ, କେବେ କଦବା କେଉଁ ସବର୍ଣ୍ଣ ହିନ୍ଦୁ ଡାକିଲେ ତାଙ୍କ ଘରେ ବି ଖାଉଥିଲେ । ସେ ହରିଜନ ସେବାରେ ମନପ୍ରାଣ ଢାଳି ଦେଲେ । ଏମାନେ ସମସ୍ତେ ହରିଜନଙ୍କ ସଙ୍ଗେ ଏକପ୍ରକାର ଏକାତ୍ମ ହୋଇପଡ଼ିଥିଲେ ।

ହରିଜନସେବା କାମ ୧୯୩୫ରୁ ୧୯୪୧ ପର୍ଯ୍ୟନ୍ତ ବରି ଆଶ୍ରମଠୁଁ ସାଧାରଣତଃ ମାଇଲିଏ ଭିତରେ ସୀମାଭୁକ୍ତ ହୋଇଥିଲା । ତା ଭିତରେ ପଡ଼ିବ ବରି, ରମ୍ପା, ବାଗ୍‌ଦା, କଣ୍ଟପୋଇ, ଅଟୁଆ, ରେଜାପୁର୍, ଅରଙ୍ଗାବାଦ୍—ଏହିପରି ସାତ ଆଠଖଣ୍ଡ ଗାଁ । । ଏତେ କରି ତଥାପି ଦେଖାଗଲା,—ଶ୍ରୀ ଶରତ ଚନ୍ଦ୍ର ମହାରଣା କହନ୍ତି, —ସେ ୧୯୪୦ ମାର୍ଚ୍ଚ-ଅପ୍ରେଲରେ ଯେତେବେଳେ ସେ ଅଞ୍ଚଳରେ ୧୫ଟି ଜାଗାରେ

ବେସିକ୍ (ମୌଳିକ) ସ୍କୁଲ ବସିଲା, ହରିଜନ ପିଲାଙ୍କ ସଙ୍ଗେ ସେଠି ସବର୍ଣ୍ଣ ହିନ୍ଦୁ ପିଲାଙ୍କୁ ଏକାଠି ବସି ପଢ଼ିବାକୁ ପଡ଼ିବ ଜାଣି ସବର୍ଣ୍ଣ ହିନ୍ଦୁମାନେ ତାଙ୍କ ପିଲାଙ୍କୁ ସେଠିକି ପଠାଇବାକୁ ନାରାଜ ହେଲେ । ବସ୍ତିଠୁ ହଟାଇଲା ଦୂର 'ଅଳଆପାଳ'ର ଗ୍ରାମ ଲୋକେ ଆଦୌ ତାଙ୍କ ପିଲାଙ୍କୁ ସେ ଗାଁକୁ ଲାଗିଥିବା ଧାରପୁରରେ ଥିବା ମୌଳିକ ସ୍କୁଲରେ ପଢ଼ିବାକୁ ପଠାଇଲେ ନାହିଁ ।

ହରିଜନମାନଙ୍କ ଉପରେ ଯେତେବେଳେ ଜମିଦାରମାନେ ଅତ୍ୟାଚାର କରୁଥିଲେ ଓ ତାଙ୍କ ଉପରେ ମୋକଦ୍ଦମା କରୁଥିଲେ, ସେତେବେଳେ ଗୋପବାବୁ ହରିଜନମାନଙ୍କୁ ବୁଦ୍ଧି, ସାହସ ଓ ସାହାଯ୍ୟ ଦେଉଥିଲେ ଓ ତାଙ୍କ ଦୁଃଖ ବୁଝୁଥିଲେ । ରମା ଦେବୀ ଓ ଗୋପବାବୁଙ୍କ ଉଦ୍ୟମରେ ଗୋଟିଏ ହରିଜନ ଝିଅ ସହିତ ଜଣେ ବ୍ରାହ୍ମଣ ଯୁବକର ବିବାହ ହେଲା ଓ ଯୁବକଟିର ଦାଦପୁଅ ଭାଇ ଗୋଟିଏ ଯୋଗୀ ଝିଅକୁ ବିଭା ହେଲା । କଟକ ଜିଲ୍ଲା ବଡ଼ଚଣା ଥାନାରେ ବେଣୀପୁର ପାଖେ ବାଲିପଡ଼ିଆ ବୋଲି ଗାଁ, ତା ପୂର୍ବ ନାଁ 'ପଳେଇ ବର୍ଦ୍ଧା', ସେଠି ବୃନ୍ଦାବନ ତ୍ରିପାଠୀଙ୍କ ଘର । ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ତାଙ୍କ ଦାଦପୁଅ ଭାଇ । ବୃନ୍ଦାବନ ୧୯୩୦ ରେ ନବମ ଶ୍ରେଣୀରୁ ପଢ଼ା ଛାଡ଼ିଥିଲେ, ତାପରେ କଂଗ୍ରେସ୍‌ରେ ମିଶିଥିଲେ । ୧୯୪୦ରେ ୪ ମାସ ଜେଲ ଗଲେ, ୧୯୪୨ ଆନ୍ଦୋଳନରେ ଜେଲ୍ ଯାଇ ୧୯୪୫ରେ ଖଲାସ୍ ହେଲେ, ୧୯୦୪ରେ ତାଙ୍କ ମା ମରି ଯାଇଥାନ୍ତି, ଘରେ ବାପା, ବୁଢ଼ୀ ପିଉସୀ, ଯୋଡ଼ିଏ ଭଉଣୀ, ଆଉ କେହି ନାହିଁ । ୧୯୪୫ରେ ଜେଲ୍‌ରୁ ବାହାରି ସେ କଂଗ୍ରେସ୍ ସଂଗଠନ କାମ କରୁଥାନ୍ତି, କଂଗ୍ରେସ୍‌ରୁ ବେତନ ପାଉଥାନ୍ତି, ସେହି କାର୍ଯ୍ୟ ସମ୍ପର୍କରେ ବସ୍ତି ସଙ୍ଗେ ତାଙ୍କ ସମ୍ପର୍କ ହେଲା ଓ ସେ ଗୋପବାବୁ ରମା ଦେବୀଙ୍କ ସହିତ ପରିଚିତ ହେଲେ । ୧୯୪୮ରେ ଢେଙ୍କାନାଳ ପାଖ ସାରଙ୍ଗଯୋଡ଼ିରେ ରଚନାତ୍ମକ କର୍ମୀ ସମ୍ମିଳନୀକୁ ସେ ଯାଇଥିଲେ, ସେଠି ସେ କହିଲେ ଯେ ରଚନାତ୍ମକ କର୍ମୀ ହରିଜନ ବିଭାହେବା ଉଚିତ । ଶ୍ରୀ ମନମୋହନ ଚୌଧୁରୀ ତାଙ୍କୁ ପଚାରିଲେ, ସେ ନିଜେ କଣ ରାଜି ? ସେ ହଁ କଲେ । ରମା ଦେବୀ ତାଙ୍କ ପାଇଁ ପାତ୍ରୀ ଠିକଣା କରି ତାଙ୍କୁ ଚିଠି ଲେଖିଲେ । ତାଙ୍କୁ ସମସ୍ତେ ନିରସ୍ତ କଲେ, ଅନେକେ ଗାଳି ଦେଲେ, କିନ୍ତୁ ସେ ଯାଇ ରାମଚନ୍ଦ୍ରପୁରରେ ପହଞ୍ଚିଲେ, ଗୋପବାବୁ କନ୍ୟାକୁ ଓ ତା ମାଙ୍କୁ ଡକାଇଲେ । କନ୍ୟାଟି ଜାତିରେ ପାଣ (ହରିଜନ), ଅଷ୍ଟମ ଶ୍ରେଣୀ ଯାଏ ପଢ଼ିଥିଲା, ବସ୍ତିରେ ରମା ଦେବୀଙ୍କ ପାଖେ ରହୁଥାଏ, ତା ବାପା କ୍ଷେତ୍ରବାସୀ ଜେନା, ସେ ସେହି ବସ୍ତିରେ । ୧୯୪୮ରେ ଝିଅଟି ରାମଚନ୍ଦ୍ରପୁରରେ ବେସିକ୍ କାମ କରୁଥାଏ । ବୃନ୍ଦାବନ ଝିଅକୁ ପସନ୍ଦ କଲେ, କିନ୍ତୁ ତାକୁ ଚିଠି ଲେଖିଲେ,"ମୁଁ ପଦାରେ ବୁଲିବି, ତୁମେ ବ୍ରାହ୍ମଣ ଶାସନରେ ରହିବ, ସାହସ ଅଛି ତ ?" ଝିଅ ଲେଖିଲା,"ହଁ, ମୁଁ ସବୁ ପ୍ରକାର ଦୁଃଖ କଷ୍ଟକୁ ରାଜି ।" ବୃନ୍ଦାବନଙ୍କ

ବାପା ରାଗି ମେଦିନପୁର ପଳେଇଗଲେ, ଗାଁ ଗାଁ ଲୋକ ଚିଡ଼ିଲେ, ବାଡ଼େଇବେ । ସେ ଅଞ୍ଚଳରେ ଏ ପ୍ରଥମ ବିଭାଘର । ତାଙ୍କ ଦାଦିପୁଅ ଭାଇ ପୂର୍ଣ୍ଣଚନ୍ଦ୍ର ଏକା ସଙ୍ଗେ ଜଣେ ଯୋଗୀଜାତିର ଲୋକର ଝିଅ 'ଫୁଲ୍'କୁ ବାହାହେବା ସ୍ଥିର ହେଲା । ବୃନ୍ଦାବନଙ୍କ ମାମୁଁ, ଗାଁ ବାଲା, ହାଣିବା କାଟିବା ଭୟ ଦେଖାଇଲେ । କିନ୍ତୁ ଦୁଇ ବର ଡରିଲେ ନାହିଁ । ୭।୮ ଜଣ ବରଯାତ୍ରୀ ଯୋଗାଡ଼ କରି ବାଜା ବଜେଇ ପତାକା ଉଡ଼େଇ ବାହାହେବାକୁ ଚାଲିଲେ, ବାଟେ ବାଟେ ଦଳ ଦଳ ଲୋକ ଦେଖୁଥାନ୍ତି ।

ବରି ଆଶ୍ରମରେ ଅଭ୍ୟର୍ଥନା ହେଲା । ବର ପୁରୋହିତ ହେଲେ ଶ୍ୟାମସୁନ୍ଦର ପଣ୍ଡା । କେନ୍ଦ୍ରାପଡ଼ା ନହଙ୍ଗା ନିବାସୀ, କଂଗ୍ରେସ୍ କର୍ମୀ, ପାଲାକାର, କବି, ଜେନାପୁର ପାଖ ଆଦମ୍‌ପୁରର ରାମଚନ୍ଦ୍ର ମିଶ୍ର, ସେତେବେଳେ ମୌଳିକ ସ୍କୁଲ ଶିକ୍ଷକ, ବରିର ସୁରେନ୍ଦ୍ର ପତି । କନ୍ୟା ପୁରୋହିତ ପାଣମାନେ । ବରକର୍ତ୍ତା ହେଲେ ବାଲିଡିହର କୃଷ୍ଣମୋହନ ରାଉତରାୟ, କନ୍ୟାକର୍ତ୍ତା ହେଲେ ସ୍ୱୟଂ ଗୋପବାବୁ । ବୈଦିକ ପଦ୍ଧତିରେ ବିବାହ ହେଲା । ପାଣ ଝିଅ ଓ ଯୋଗୀ ଝିଅ ଦିହେଁ ଏକାଠି ଶଗଡ଼ରେ ଆସିଲେ ।

ଗାଁରେ ଏ ଦୁଇଜଣଙ୍କୁ ପାଣି ବନ୍ଦ ହେଲା, ଜାତିରୁ ଅଟକ ହେଲା, ନାନା ପ୍ରକାର ନିର୍ଯାତନା ଓ ବାଛନ୍ଦ ହେଲା । ଧୋବା, ଭଣ୍ଡାରୀ, ପୁରୋହିତ ବନ୍ଦ ହେଲା । ଯେଉଁ କୂଅ ଖୋଳାଇ ସେମାନେ ପାଣି ପିଇଲେ ତହିଁରେ ବି ଗୋବର, ଅସନା ପକାଗଲା । ତାଙ୍କ ନାଁରେ ମାଲିମକଦମା ହେଲା । ତାଙ୍କ ସମର୍ଥକମାନେ ବି ବାଛନ୍ଦ ହେଲେ ।

କାଳକ୍ରମେ କେତେବର୍ଷ ପରେ ସେସବୁ ବନ୍ଦ ହେଲା । ଏ ଯୋଡ଼ିଏ ବିଭାଘର ଏ ଅଞ୍ଚଳରେ ଖୁବ୍ ଚହଲ ପକାଇଥିଲା ।

ଯେଉଁମାନେ ଆଶ୍ରମର କର୍ମୀମାନଙ୍କ ପ୍ରଭାବରେ ହରିଜନ ଘରେ ଖାଉଥିଲେ, ବା ତାଙ୍କ ସଙ୍ଗେ ପଂକ୍ତି ଭୋଜନରେ ବସୁଥିଲେ, ଆଗ ଆଗ ଜାତିଲୋକେ ତାଙ୍କୁ ଜାତିରୁ ଅଟକ କରୁଥିଲେ, ବହୁପ୍ରକାର ସମାଲୋଚନା କରୁଥିଲେ । କିନ୍ତୁ କ୍ରମେ ସେସବୁ ଅଭ୍ୟାସ ହୋଇଗଲା ଓ ବରି ଅଞ୍ଚଳରେ ଅଛୁଆଁ ପ୍ରଥା ଉଠିଯିବାକୁ ଲାଗିଲା । ଗୋପବାବୁ ବରିକୁ ଆସିବା ପରେ ତାଙ୍କ ପରାମର୍ଶରେ ୧୯୩୭ ସ୍ନାନପୂର୍ଣ୍ଣିମା ଦିନ ବାମନ ଚରଣ ଦାସ ତାଙ୍କ ଘରୋଇ ଠାକୁର ବଳଦେବଜୀଉଙ୍କ ମନ୍ଦିରରେ ହରିଜନ ପ୍ରବେଶ କରାଇଲେ । ସେଥିପାଇଁ ସେ ଗାଁର ବାମନ ବାବୁଙ୍କୁ ଓ ଆର୍ତ୍ତବନ୍ଧୁ ମହାନ୍ତିଙ୍କୁ ତାଙ୍କ କରଣଜାତି ଲୋକେ ଜାତିରୁ ଅଟକ କଲେ । କ୍ରମେ ସେ ଅଟକ ବି ଭାଙ୍ଗିଗଲା ।

ଏ ଅସ୍ପୃଶ୍ୟତା ଆନ୍ଦୋଳନ ବଡ଼ୀ ଅଞ୍ଚଳରୁ ଅନ୍ୟଆଡ଼େ ବ୍ୟାପିଥିଲା । ଯାଜପୁର ଥାନା ଛତ୍ରପଡ଼ା ଗାଁର ପଦ୍ମନାଭ ରାଏ ନେଇଥିଲେ ଯେ ପଂକ୍ତିଭୋଜନରେ ବସିବାରୁ ତାଙ୍କୁ ଓ ସେପରି ଲୋକଙ୍କୁ ପୁରୋହିତ, ଧୋବା ଓ ଭଣ୍ଡାରୀ ବି ବାଛନ୍ଦ ହେଲା । ତାଙ୍କ ଘରେ ଠାକୁରଙ୍କୁ ପୂଜା କରୁଥିବା ଯୋଗେନ୍ଦ୍ର ପଣ୍ଡା ମାସେକାଳ ପୂଜା ବନ୍ଦ କରିଦେଲେ । ତାଙ୍କ ଘରଲୋକେ ମନଦୁଃଖ କଲେ । ଗୋପବାବୁ ତାଙ୍କୁ ପରାମର୍ଶ ଦେଲେ ଯେ ସେ ନିଜେ ନିଜ ଠାକୁରଙ୍କ ପୂଜା କରନ୍ତୁ ଓ ସେ ସେହିପରି କରିବାକୁ ଆରମ୍ଭ କଲେ । ଅସ୍ପୃଶ୍ୟତା ପ୍ରଥାର ସଂସ୍କାର ସଙ୍ଗେ ସଙ୍ଗେ କେତେ ଲୋକ ପୁରୋହିତ ଉପରେ ନିର୍ଭର ନ କରି ଠାକୁରଙ୍କୁ ନିଜେ ପୂଜା କଲେ । ନିଜ ହାତରେ ଖିଅରହେବା ଓ ଲୁଗା କାଚିବା କାମ ଶିଖିବାରୁ ଧୋବା ଭଣ୍ଡାରୀଙ୍କ ଉପରେ ନିର୍ଭର କରି ରହିବା ଅବସ୍ଥା ଆଉ ରହିଲା ନାହିଁ । ବିବାହଘର ପଦ୍ଧତି ଆଦିରେ ମଧ୍ୟ ବିନା ପୁରୋହିତରେ ଅନୁଷ୍ଠାନ ସମ୍ପନ୍ନ କରିବା କାର୍ଯ୍ୟ ଆରମ୍ଭ କରି ଗୋପବାବୁ ନାନା ପ୍ରକାର ସମାଜ ସଂସ୍କାର କଲେ ।

## ହିନ୍ଦୁ-ମୁସଲମାନ ମୈତ୍ରୀ

ମୁସଲମାନଙ୍କ ସଙ୍ଗେ ଗୋପବାବୁଙ୍କର ଖୁବ୍ ବନ୍ଧୁତା ଥିଲା । ସେ କହି ଗର୍ବ ଅନୁଭବ କରନ୍ତି, "ମୁଁ ମୁସଲମାନ୍ ମା'ଠୁଁ ଦୁଧ ଖାଇଛି, ମୁଁ ଅଧେ ମୁସଲମାନ୍ ।" କଟକରେ ସେ ଉଚ୍ଚାଣି ପିଲା ଥିଲାବେଳେ, ଯେତେବେଳେ ସାହେବ୍‌ଜାଦା ବଜାରରେ ତାଙ୍କ ବାପା ରହୁଥିଲେ, ତାଙ୍କ ମା'ଙ୍କର ଯଥେଷ୍ଟ କ୍ଷୀର ନ ହେବାରୁ ସେହି ସାହିର ମୁସଲମାନ ବଛୁ ମିଆଁଙ୍କ ସ୍ତ୍ରୀଙ୍କଠୁଁ ସେ ଦୁଧ ପିଉଥିଲେ । ସେହିକଥାକୁ ସେ ମନେ ପକାଉଥିଲେ । ବଡ଼ିରେ ଥିଲାବେଳେ ବି ସେ ସେହି ବନ୍ଧୁତା ରଖିଥିଲେ ଓ ଗ୍ରାମେ ଗ୍ରାମେ, ବିଞ୍ଝାରପୁର ଓ ଯାଜପୁର ଅଞ୍ଚଳରେ ହିନ୍ଦୁ-ମୁସଲମାନ୍ ଏକତା ଓ ବନ୍ଧୁତା ପାଇଁ ଲୋକଙ୍କୁ ମତାଉଥିଲେ । ବଙ୍ଗଦେଶରେ ସାଂପ୍ରଦାୟିକ ଗଣ୍ଡଗୋଳ ବେଳେ ସେଠି ତା ଦେଖାଦେଇ ନାହିଁ । ଅବଶ୍ୟ, ମୂଳରୁ ଓଡ଼ିଶାରେ ହିନ୍ଦୁ ମୁସଲମାନ୍ ଭାଇବନ୍ଧ ପରି ଚଳି ଆସିଛନ୍ତି ।

## କୃଷି

ଗୋପବାବୁ ବଡ଼ୀ ଅଞ୍ଚଳରେ ହଳକୃଷି ଓ କୃଷିରେ ନାନା ନୂଆ ପ୍ରକାର ଉପଯୋଗ ଓ ସେ କାର୍ଯ୍ୟର ବିସ୍ତାର କରିଥିଲେ । ଆଶ୍ରମର ବଗିଚା ତ ଆଦର୍ଶ ବଗିଚା ହୋଇଥିଲା, ତାଛଡ଼ା ସେ ଓ ଆଶ୍ରମବାସୀମାନେ ଅନ୍ୟାନ୍ୟମାନଙ୍କ ଜମିରେ ଓ ବଗିଚାରେ କାମ କରୁଥିଲେ ଓ କରାଉଥିଲେ । ସେ ଭୁସାଓ୍ୱାଲ୍, ମର୍ତ୍ତମାନ୍, ଅମୃତପାଣି, ମୋହନବଂଶୀ, ଶିଙ୍ଗାପୁରୀ ଆଦି ଜାତିର କଦଳୀ ଆଣି ଲଗାଇଲେ, ଭଲ

ଜାତର ପକ୍ଷେ ତାଙ୍କୁ ମନାଇ ବାଣ୍ଟୁଥିଲେ ଓ ପୂର୍ବେ ଯାହା ବର୍ଣ୍ଣନା କରାଯାଇଛି, ତାହାକୁ କର୍ମୀମାନଙ୍କୁ ନାନା ପ୍ରକାର କଲମିଚାରା ମନାଇ ଲଗାଉଥିଲେ ଓ ବାଣ୍ଟୁଥିଲେ ।

ସେତେବେଳେ ସେ ଅଞ୍ଚଳରେ ଚାଷୀମାନେ ବାଡ଼ିବଗିଚାରେ ସେତେ ଖତ, ସାର ଆଦି ଦେଉ ନ ଥିଲେ, ବିଶେଷତଃ ଗରିବଚାଷୀମାନେ, ଖାଲି ହଳକରି ବୁଣିଦେଲେ ଯାହା ମିଳିଲା ସେତିକି । ଗୋପବାବୁ ଆଶ୍ରମରେ ଓ ଅନ୍ୟତ୍ର ଯେଉଁଠି କିଛି ଚାଷ କରୁଥିଲେ, ଜମିକୁ ଉପଯୁକ୍ତ ଭାବେ ଚଷୁଥିଲେ ଓ ତହିଁରେ ଖତ ଓ ସାର ଦେଉଥିଲେ । ସେଥିରୁ ଯେତେ ଉତ୍ପାଦନ ହେଉଥିଲା ତାହା ଦେଖି ଲୋକେ ଆଶ୍ଚର୍ଯ୍ୟ ହେଉଥିଲେ । ସେ ତାଙ୍କୁ ତାର କାରଣ ବୁଝାଉଥିଲେ ଓ ସେପରି ସେମାନଙ୍କ ଜମିରେ କରିବାକୁ ମନାଉଥିଲେ । ତା ଫଳରେ ଚାଷୀମାନେ ଆଗରୁ ଜମିକୁ ଅଧିକ ଭଲଭାବେ ଚାଷ କଲେ ଓ ତାଙ୍କ ଉତ୍ପାଦନ ବଢ଼ିଲା ।

ଗୋପବାବୁ ସେ ଅଞ୍ଚଳରେ କପାଚାଷ କଲେ । କିପରି ଜମିରେ ଭଲ କପାଚାଷ ହେବ ପରୀକ୍ଷା କରି ଦେଖିବାକୁ ସେ ବାଲିଆ ଜମିରେ ଓ ଅନ୍ୟ ପ୍ରକାର ପ୍ରକାର ଜମିରେ କପା ଲଗାଇ ଦେଖୁଥାନ୍ତି । ତାଙ୍କର କପାଚାଷ ଦେଖି କେତେଲୋକ ହସିଲେ, କିନ୍ତୁ କ୍ରମେ ଅନ୍ୟମାନେ ବି କଲେ, କପାଚାଷ ବଢ଼ିଲା ।

ଚାଷର ବ୍ୟାପକ ପ୍ରସାରକାର୍ଯ୍ୟ ସେ ଜେଲ୍‌ରୁ ଫେରିଲାପରେ '୯୪୭ରେ ଆରମ୍ଭ କରି ଦେଇଥିଲେ । ସେ ନିଜେ ଦୈନିକ ତିନିଘଣ୍ଟାରୁ ୮ ଘଣ୍ଟା ଯାଏ କୋଡ଼ିଧରି ହାଣୁଥିଲେ ବା ହଳ କରୁଥିଲେ ଓ ଯଥାଶକ୍ତି ସେପରି କରି ନିଜ ଦେହର ବଳ ବଢ଼ାଇବାକୁ ଅନ୍ୟମାନଙ୍କୁ ମନାଉଥିଲେ । ସେ ଦେଖିଲେ ଯେ ଆଶ୍ରମରେ ଯେପରି ପାଣି ଦିଆଯାଇପାରୁଛି ଓ ଚାଷ ପାଇଁ ଅନ୍ୟାନ୍ୟ ସୁବିଧା ଅଛି ସବୁ ଚାଷୀଙ୍କର ସେପରି ସୁବିଧା ନ ଥିବ । ତେଣୁ ସାଧାରଣ ଜମିରେ ସାଧାରଣ ଚାଷୀ କିପରି କଲେ ଭଲ ଚାଷ ହେବ ତାହା ନିଜେ ଭଲ ଚାଷୀମାନଙ୍କଠୁଁ ଶିଖି, ପରଖ କରି ଅନ୍ୟମାନଙ୍କୁ ଦେଖାଇ ଦେଉଥିଲେ । ବିକଳ ଜେନା ସେ ଅଞ୍ଚଳର ଜଣେ ଭଲ ଚାଷୀ, ଗୋପବାବୁ ତାଙ୍କ ସଙ୍ଗେ ଖୁବ୍ ଆଲୋଚନା କରୁଥିଲେ ।

ତାଙ୍କ ବୟସ ୫୦ ହୋଇଥାଏ, ଖାଲି ଦେହ, କଣ୍ଢିଆ ଖଣ୍ଡେ ପିନ୍ଧି, ମୁଣ୍ଡରେ ଟେକା ବାନ୍ଧି, କାନ୍ଧରେ କୋଡ଼ି ପକାଇ ଗୋଟିଏ ମୂଲିଆକୁ ସଙ୍ଗରେ ଘେନି ସେ କାମରେ ବାହାରନ୍ତି । ମୂଲିଆଟି ଥକିଯାଏ, ସେ କାମ କରୁଥାନ୍ତି । ଆଶ୍ରମଠୁ ଏକ ଫର୍ଲଂ ଦକ୍ଷିଣକୁ 'କନ୍ୟାକାର' ଖାଲ (ଆଗେ ବ୍ରାହ୍ମଣୀନଦୀର ଗର୍ଭ ଥିଲା, ପ୍ରାୟ ଅଧଏକର ଜାଗା) ତେଣିଁ 'ମୁଧେଇ ନାଳ' ବୋଲି ଗୋଟିଏ ଖାଇ ଥାଏ, ସେଇଟି ବ୍ରାହ୍ମଣୀ ନଈର ପୂର୍ବ ଧାର, ପ୍ରାୟ ୬୦ ବର୍ଷ ପୂର୍ବେ ନଈ ସେ ପୁରୁଣା ଧାରକୁ ଛାଡ଼ି

ପ୍ରାପ୍ତ ମାଙ୍କାଳୀ ଦୂରକୁ ଘୁଞ୍ଚି ଯାଇଥିଲା ଓ ସେ ଧାର ମୋଗଡ଼ୋଇ ପଡ଼ିଥିଲା । ସେହି ପୋଡ଼ା ନଈ ଉପରେ ତାହାର କୂଳରେ ୧୯୫୦ରେ ସେ ଜଣେଙ୍କରେ କେତେଗୁଣ୍ଠ ଜମି ନେଲେ । ସେ ଜମିରେ ସେ ଦିନକୁ ଆଠଘଣ୍ଟା ଲେଖାଁ କୋଡ଼ି ହାଣୁଥାନ୍ତି । ପୁଣି ମନମୋହନ ଚୌଧୁରୀ ଯେଉଁ ଘରେ ରହୁଥିଲେ ୧୯୫୦ ବର୍ଷରେ ସେ ଘର ଭାଙ୍ଗି ଦିବାକୁ ନୂଆଘର ତିଆରି ହେଲା ଓ ତଣ୍ଡ ଆଦି ସଫାକରି ଗୃହ ଆରମ୍ଭ ହେଲା । ଯାନ ପୋଖରୀଟିଏ ଖୋଳା ହେଲା, ନଡ଼ିଆଚାଡ଼ା ଓ ଆମ୍ବ ପଣସ ଗଛ ପଡ଼ିଲା । ଧାନ, ସୋରିଷ ଆଦି ଲଗିଲା । ଆଳୁଗୃହ ବି ଆରମ୍ଭ କରାଗଲା । ସେଥିପାଇଁ ପୋଟରୀରେ ପମ୍ପିଆର୍ ହୁଗଲି ଲଗିଲା ଓ ଅଳୁଗୃହ ଭଲ ହେଲେ । ସେତେବେଳେ ବି ସେ ଜମିରେ ୮ ଘଣ୍ଟା ଖଟୁଥିଲେ । ତାଙ୍କଠୁ ଦେଖି ଅନ୍ୟମାନେ ଶିଖୁଥିଲେ । ଅନ୍ୟଲୋକେ ମାଟରେ ନୂଆ ଖୋଳ ଅଳୁ ଗୃହ ଆରମ୍ଭ କଲେ । ୧୯୫୨ରେ ସେ ଭୂଦାନ କାମରେ ଚାଲିଯିବା ପର୍ଯ୍ୟନ୍ତ ଏ କାମ କରୁଥିଲେ ।

## ବୃକ୍ଷରୋପଣ

ଗୋପବାବୁ ସେ ଅଞ୍ଚଳରେ ଓ ଗୃହଆଡ଼େ ବ୍ୟାପକ ଆନ୍ଦୋଳନ କରି, କେତେବେଳେ ଉତ୍ସବ କରି ବୃକ୍ଷରୋପଣ କରାଉଥିଲେ, ଜାତି ଜାତି ଫଳଗଛ ଗୃହ ଅଣାଇ ବାଣ୍ଟୁଥିଲେ, ଜୋଟା କରାଉଥିଲେ ।

## ଗୋପାଳନ

ବରି ଆଶ୍ରମ ଆରମ୍ଭବେଳଠୁ ସେଠି ଶାଈଗୋରୁ ରଖା ହେଉଥିଲେ ଓ ସେ ଅଞ୍ଚଳର ଲୋକଙ୍କୁ ଆଦର୍ଶ ଗୋପାଳନ ବିଷୟରେ କାର୍ଯ୍ୟରେ ଦେଖାଇ ନାନା ଉପଦେଶ ଦିଆଯାଉଥିଲା । ଗୁହାଳ କେମିତି ହେବା ଦରକାର, ଯେ ଶସ୍ତାରେ ହେବ ଅଥଚ ସୁବିଧା ଥିବ, ଗୋରୁ ସ୍ୱାସ୍ଥ୍ୟଜନକରେ ରହିବେ, ସେଠୁ ଆରମ୍ଭ କରି ଗୋରୁଙ୍କ ଖାଇବା ପିଇବା, ସେବା ଯତ୍ନ, ଜାତିଆ ଗୋରୁ କରାଇବା ଇତ୍ୟାଦି । ଗୋପବାବୁ, ରମା ଦେବୀ ଓ ଆଶ୍ରମର ଝିଅମାନେ ଗୁହାଳ ପୋଛୁଥିଲେ, ଗୋରୁଙ୍କୁ ସଫାସୁତୁରା କରୁଥିଲେ, ତାଙ୍କୁ ଖୁଆଉଥିଲେ, ତାଙ୍କର ଯତ୍ନ ନେଉଥିଲେ । ମଝିରେ ମଝିରେ ଗୋପବାବୁ ଗୋଟାଏ ଯୋଡ଼ା ବ୍ରୁସ୍ ଧରି ଗୋରୁଙ୍କୁ ସେଥିରେ ସଫା କରନ୍ତି । ଆଶ୍ରମ ବସିଲାବେଳେ ଜଗତ୍‌ରାମ କଲ୍ୟାଣୀ ତାଙ୍କୁ ଗୋଟିଏ ନାଲି ସିନ୍ଧି ମିଶା ଗାଈ ଦେଇଥିଲେ, ତା ନାଁ 'ପାଟ', ସେ ଏଡ଼େ ଶାନ୍ତ ସୁଧାର ଯେ ଅନ୍ୟ ବାଛୁରୀ ତା ଦୁଧ ପିଇଯାନ୍ତି, ସେ ଆପତ୍ତି କରେ ନାହିଁ । ତା ପୁଅ ନାଁ ରହିଲା 'ଗଣେଶ', ସେ ଷଣ୍ଢ ହେଲା । ଗୋପବାବୁଙ୍କ ଶଳା ବେଙ୍ଗବାବୁ (ଚନ୍ଦ୍ରକିଶୋର ଦାସ) ତାଙ୍କୁ ଗୋଟିଏ ବଡ଼ ହରିଆନା ଗାଈ ଦେଲେ, ତା ନା "ସୁକୁମାରୀ" । କେତୋଟି ସ୍ଥାନୀୟ ଗାଈ ରହିଲେ,

ତାଙ୍କ ନାଁ 'କାବେରୀ', 'ଯମୁନା' ଆଦି । ପଛେ ଥରେ ଗୋପବାବୁ ବିଚାରିଲେ, ଆଶ୍ରମରେ ଏତେ ଗାଈ ରଖି ହେବ ନାହିଁ, ସୁକୁମାରୀ ଓ ଆଉ ଗୋଟିଏ ବଡ଼ ଗାଈକୁ ବେଙ୍ଗବାବୁଙ୍କ ଗାଁକୁ କୁମୁଡ଼ା ଜଇପୁର ନେଇଯିବାକୁ ପଠାଇ ଦିଆଗଲା, କିନ୍ତୁ ବାଟରେ ନଈ ପାଣିରେ ପଶି ପହଁରିବାକୁ ପଡ଼ିବାରୁ ଗାଈଯୋଡ଼ିକ ଅସୁସ୍ଥ ହେଲେ, ନେଉଥିବା ଲୋକେ ତାଙ୍କୁ ଲେଉଟାଇ ଆଣିଲେ । ସୁକୁମାରୀ ଅଳ୍ପ ସମୟ ଭିତରେ ମରିଗଲା, ଆରଟି ଆଶ୍ରମକୁ ଫେରି ଆସିଲା ।

ଘାସ ପ୍ରଚୁର ହୁଏ, ରବି ଫସଲ ଓ ରବି ଫସଲର ଚୋପା ପ୍ରଚୁର ଖାଇବାକୁ ମିଳେ ବୋଲି ବରୀ ଅଞ୍ଚଳର ଗାଈ ଓଡ଼ିଶାରେ ବିଖ୍ୟାତ, ବଡ଼ ବଡ଼ ଗାଈ ଗୋରୁ, ହୃଷ୍ଟପୁଷ୍ଟ । ଗାଈ ଖୁବ୍ ଦୁଧିଆଳୀ । କିନ୍ତୁ ତାଙ୍କ ବଂଶ ଛିଣ୍ଡି ଆସୁଥାଏ । ଲୋକେ ତାଙ୍କ ଯତ୍ନ ନେଇ ଜାଣୁ ନ ଥିଲେ, ଉତ୍ତମ ପ୍ରଜନନ ବ୍ୟବସ୍ଥା ବି ନ ଥିଲା । ଯତ୍ନ କିପରି ନିଆଯିବ ଲୋକେ ଆଶ୍ରମରୁ ଶିଖିଲେ । ଗାଈଙ୍କୁ ଲୁଣ ଖାଇବାକୁ ଦେବା, ବଳଦଙ୍କୁ ପେଟପୂରା ଖାଇବାକୁ ଦେବା, ଗୋରୁ ଗାଈଙ୍କୁ ପରିଷ୍କାର ରଖିବା ଆଦି କ୍ରମେ ଲୋକ ଶିଖିଲେ । ଭଲ ବାଛୁରୀ ଉତାରିବା କାମ ଲାଗି ଆଗ ଆଶ୍ରମର ଷଣ୍ଢ 'ଗଣେଶ' କାମରେ ଲାଗିଲା । ଆଗ ଲୋକେ ଏ ବିଷୟରେ ଧ୍ୟାନ ଦେଉ ନ ଥିଲେ, ପଛେ ଆକୃଷ୍ଟ ହେଲେ, କେତେଜଣ ତ ଋଣ ଦେଇ ମଧ୍ୟ ଗଣେଶକୁ ଉପଯୋଗ କରାଇବାକୁ ଆଗଭର ହେଲେ । ଲୋକଙ୍କର ଆଗ୍ରହ ବଢ଼ିଲା ଦେଖି ଗୋପବାବୁ ସରକାରଙ୍କ ପଶୁପାଳନ ବିଭାଗକୁ ଲେଖାଲେଖି କଲେ । ସେତେବେଳେ ୧୯୩୭, ଓଡ଼ିଶାରେ କଂଗ୍ରେସ୍ ମନ୍ତ୍ରିମଣ୍ଡଳ, ଶ୍ରୀ ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ ଥିଲେ । ସରକାରୀ ପଶୁପାଳନ ବିଭାଗରୁ 'ବିଶ୍ୱନାଥ' ବୋଲି ଗୋଟିଏ ହରିଆନା ଷଣ୍ଢ ଆସିଲା । ତାପରେ ଆଖପାଖର ଦଶ ବାର ଖଣ୍ଡ ଗାଁ ପାଇଁ ଆଉ ପାଞ୍ଚଟି ହରିଆନା ଷଣ୍ଢ ପଠା ହେଲେ । ସେମାନେ ବରୀ, ଅରଙ୍ଗାବାଦ୍, ରାମଚନ୍ଦ୍ରପୁର, ରମ୍ପା ଓ ରତ୍ନାଳଂରେ ରହିଲେ । ଏମାନଙ୍କ ପିଛା ଜଣେ ଜଣେ ଲୋକ ରହି ଯତ୍ନ ନେଉଥାନ୍ତି । ପଶୁବିଭାଗ ସଂଚାଳକ ଗୁରୁବଚନ ସିଂ ସମୁଦାୟ ଦକ୍ଷିଣ ବାଞ୍ଛାରପୁର ଅଞ୍ଚଳରେ ଗୋ-ଉନ୍ନୟନ ପାଇଁ ଗୋପବାବୁଙ୍କ ସଙ୍ଗେ ସହଯୋଗ କରି ଗୋଟିଏ ଯୋଜନା ତିଆରି କଲେ ଓ ତାହା କାର୍ଯ୍ୟକାରୀ ହେଲା । ସେ ସମୁଦାୟ ଅଞ୍ଚଳରେ ନବେ କି ପଞ୍ଚାନବେ ହରିଆନା ଷଣ୍ଢ ରଖାଗଲେ । ଗୋ-ଜାତିର ବ୍ୟାପକ ଉନ୍ନୟନ ହେଲା । ସେହିଦିନଠାରୁ ସେ ଅଞ୍ଚଳ ହରିଆନା ବଳଦ ପାଇଁ ବିଖ୍ୟାତ ହେଲା । ସୁଜନପୁରରେ ୧୫ ବର୍ଷ ହେଲା ହାଟ ବସୁଛି, ଫେବୃଆରି ସଙ୍କେ ସେଠି ଗୋରୁ ବିକ୍ରି ଆରମ୍ଭ ହୁଏ ଓ ହାଟପାଳିକେ ୫୦୦।୬୦୦ ବଳଦ ବିକ୍ରି ହୁଅନ୍ତି । ଦାମୁଡ଼ିଟିଏ ହେଲେ ପ୍ରାୟ ଟ ୬୦୦-୦୦, ବଳଦଟିଏ ହେଲେ ଟ ୧୦୦୦-୦୦ରୁ ଊଣା ନୁହେଁ, ୨ ସେର ୨୪ ସେର ଦୁଧ ଦେଉଥିବା ହରିଆନା ଗାଈ ପଡ଼େ ପ୍ରାୟ ଟ ୯୦୦-୦୦ ।

ଗୋ ଜାତି ଉନ୍ନୟନ ଲାଗି ଲୁଟୁବଚନ ସିଂହଙ୍କର ସେ ଅଞ୍ଚଳକୁ ପ୍ରଥମ ଗସ୍ତ ବେଳେ ଗୋପବାବୁ ବଡ଼ କୌତୁକପୂର୍ଣ୍ଣ ଉପାୟରେ ହଠାତ୍ ଗୋଟିଏ ଗୋ ପ୍ରଦର୍ଶନୀ କରାଇ ଦେଇଥିଲେ । ଲୁଟୁବଚନ ସିଂହ ଆସିଲାଦିନ ସେ ତିନିଜଣ ଗାଈଜଗା ଟୋକାଙ୍କୁ ଟ ୫-୦୦ ଲେଖାଁ ଦେଇ ବରଗି ଦେଇଥିଲେ ଯେ ପଡ଼ିଆରେ ଯେତେ ଗୋରୁ ଚରୁଛନ୍ତି ସେମାନଙ୍କୁ ଟୋକାମାନେ ଅଡ଼େଇ ଆଣି ଗୋଟିଏ ଜାଗାରେ ଜମା କରିଥିଲେ । ଖରାଦିନ ଥାଏ, ଗାଈଗୋରୁ ମେଲା ହୋଇ ବୁଲୁଥାନ୍ତି, ବର୍ଷା ଅଞ୍ଚଳରେ ବହୁତ ଗୋରୁ ଓ ଲୁଟୁବଚନ ସିଂ ଉପରଓଳି ପହଞ୍ଚିବେ । ସେ ଆସିଲାବେଳକୁ ଦେଖିଲେ, ଏକା ଜାଗାରେ ଶହ ଶହ ଗୋରୁ, ସତେ ଯେପରି ଗୋରୁ ମେଳା । ଗାଈଗୋରୁ ଦେଖିବାକୁ ତାଙ୍କୁ ଆଉ ଗାଁ ଗାଁ ବୁଲିବାକୁ ପଡ଼ିଲା ନାହିଁ ।

## ମହୁଚାଷ

୧୯୩୭ରେ ଶ୍ରୀ ନିତ୍ୟାନନ୍ଦ କାନନଗୋ କୋଇମ୍ବାଟୋରରୁ କା ନି ଭଣ୍ଡ ମ୍ରୁ ମହୁଚାଷ ଶିଖି ବାରି ଆଶ୍ରମକୁ ଆସିଲେ ଓ ସେଠି ତା ଶିଖାଇ ଦେଇଗଲେ । ଗୋପବାବୁ ତାଙ୍କଠୁଁ ଶିଖି ତହିଁରେ କୁଶଳୀ ହୋଇଗଲେ । ସେ ବିଷୟରେ ବହିପତ୍ର ବି ମଗା ହେଲା । ମନମୋହନ ବାବୁ କଲିକତାରୁ ଆସିଲାପରେ ସେ ବି ସେ କାର୍ଯ୍ୟରେ ଲାଗିଗଲେ । ଦୁଇବର୍ଷ ପର୍ଯ୍ୟନ୍ତ ପନ୍ଦରଦିନିଆଁ ତାଲିମ୍ ଶିବିର ସେଠି ଖୋଲାଗଲା ଓ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ବି ତାଲିମ୍ ଦିଆଗଲା । କୋଡ଼ିଏ ମହୁବାକ୍ସ ରଖାଗଲା । 'ରାଣୀ-ମହୁମାଛି' ଧରି ଆଣିବାକୁ ଗୋପବାବୁ ନିଜେ ବି ଗଲେ, ଗାଁ ଗାଁ ବୁଲିଲେ, ଗଛ ଚଢ଼ିଲେ, ଗଛ କୋରଡ଼ରୁ ମହୁମାଛି ଧରା ହୁଅନ୍ତି, ମହୁମାଛି କାମୁଡ଼ାରେ ମୁହଁ ହାତ ଫୁଲିଯାଏ । ତାଙ୍କୁ ସେ କାମ ଖୁବ୍ ଆନନ୍ଦ ଦିଏ । ଆଶ୍ରମର ଝିଅମାନେ ବି ମହୁମାଛି ପାଳି ଶିଖିଲେ । ଆଗ ଆମଦାନି ହେଲା ଦୁଇଛଟାଙ୍କି ମହୁ । ସେତକ ଗୋଟିଏ ବୋତଲରେ ପୂରାଇ ସାଇତି ରଖାଗଲା । ପରେ ସେବାଘରର ମହୁବାକ୍ସମାନଙ୍କରୁ ଶହ ଶହ ପାଉଣ୍ଡ ମହୁ ଆମଦାନି ହେଲା, କଟକ କଲିକତା ଆଦି ଦୂରକୁ ବିକି ପାଇଁ ପଠାଗଲା ।

ଗୋପବାବୁ ସେ ଅଞ୍ଚଳର ଲୋକଙ୍କୁ ମହୁଚାଷ ଦେଖାଇଲେ ଓ ଶିଖାଇଲେ, କେତେ ହରିଜନ ପିଲାଙ୍କୁ ନିଜେ ତାଲିମ୍ ଦେଲେ । ବହୁତ ଲୋକ ଶିଖିଲେ, ନିଜେ ମହୁବାକ୍ସ ରଖିଲେ, ଶହ ଶହ ଟଙ୍କା ରୋଜଗାର କଲେ । ଥରେ ଜଣେ ଚାଷୀ ବର୍ଷକେ ପାଇଥିଲା ଟ ୬୦୦-୦୦ । ପ୍ରତି ବାକସରୁ ଆଠଦିନେ ଥରେ ମହୁ ବାହାରେ, ବର୍ଷକୁ ଆୟ ହୁଏ ଟ ୭୦-୦୦ ।

କେତେଲୋକ ଈର୍ଷା ବି କଲେ, ଥରେ କେତେଗୁଡ଼ିଏ ବାକ୍ସ ଫୁଲ ଫୁଟିଥିବା ସୋରିଷ କିଆରି କି ଧନିଆ କିଆରୀରେ ଥୁଆ ହୋଇଥିବା ବେଳେ କିଏ ଦୁଷ୍ଟଲୋକ ମହୁମାଛି ବାହାରିବା ବାଟ ବୁଜି ଦେଲା, ମାଛିଗୁଡ଼ିକ ମରିଗଲେ ।

ବରୀରୁ ଓଡ଼ିଶାରେ ମହୁଚାଷ ବ୍ୟାପିଲା । ଓଡ଼ିଶାର ସବୁଆଡ଼େ ଗୋପବାବୁ ଯେଉଁ ରଚନାତ୍ମକ କେନ୍ଦ୍ରଗୁଡ଼ିକ ଖୋଲିଥିଲେ, ସେଥିରୁ କେତୋଟିରେ ମହୁବାକ୍ସ ରହିଲା । କେତେ କର୍ମୀ ତାଲିମ୍ ପାଇ ଅନ୍ୟଆଡ଼େ ମହୁଚାଷ କରାଇଲେ । ସେତେବେଳେ ଶସ୍ତା ଅମଳ, ମହୁ ପାଉଣ୍ଡକ (ଅଧସେରକ) ଏକଟଙ୍କା ଆଠଅଣା, ମହୁବାକ୍ସ ଦୁଇ ପ୍ରକାର, ଅଢ଼େଇଟଙ୍କିଆ ଓ ପାଞ୍ଚଟଙ୍କିଆ, ବରୀରେ ଆଶ୍ରମର "ସରଞ୍ଜାମ କାର୍ଯ୍ୟାଳୟ"ରେ ତିଆରି କରି ସବୁଆଡ଼େ ଯୋଗାଇ ଦିଆଗଲା ।

୧୯୩୮ରେ ଗୋପବନ୍ଧୁଙ୍କ ସମ୍ପାଦନାରେ ବରୀରୁ ବାହାରୁଥିବା "ଗାନ୍ଧୀ ସେବାସଙ୍ଘ ପତ୍ରିକା"ରେ ଏସବୁ ରଚନାତ୍ମକ କାର୍ଯ୍ୟ ବିଷୟରେ କିଛି ତଥ୍ୟ ଅଛି । ତାର ପ୍ରଥମ ସଂଖ୍ୟାରୁ ଜଣାଯାଏ ଯେ ୧୯୩୭ ବେଳକୁ ଗୋପବାବୁଙ୍କ ମହୁଚାଷ ସରକାରୀ ଦୃଷ୍ଟି ବି ଆକର୍ଷଣ କଲାଣି । ୧୯୩୬ରେ ମହୁଚାଷ ଶିକ୍ଷା ଦେଉଛି ବୋଲି ଓଡ଼ିଶା ସରକାର ବରୀ କେନ୍ଦ୍ରକୁ କିଛି ଗ୍ରାଣ୍ଟ୍ ଦେଲେ ଓ କେତେକ ଗ୍ରାମସେବକଙ୍କୁ ବିନା ଖର୍ଚ୍ଚରେ ଶିକ୍ଷା ଦିଆଯାଉଥିଲା । ୧୯୩୮ରେ ସରକାର କେଉଁଠାରେ ଓ କେମିତି ମହୁଚାଷ ଶିଖାଇବା ପାଇଁ ସାହାଯ୍ୟ ଦେବେ, ସେ ବିଷୟରେ ଡାକ୍ତର ପ୍ରଫୁଲ୍ଲ ଚନ୍ଦ୍ର ଘୋଷ **A.I.V.I.A. 249 D** ବୋହୁବଜାର ଷ୍ଟ୍ରିଟ୍ କଲିକତାଙ୍କୁ ଶିକ୍ଷାର୍ଥୀମାନେ ଲେଖନ୍ତୁ ବୋଲି ଏ ପତ୍ରିକାରେ ଜଣାଇ ଦିଆଯାଇଥିଲା । ଆଉମଧ୍ୟ କୁହାଯାଇଥିଲା ଯେ ୧୯୩୭ରେ ତାଲିମ ହୋଇଥିବା ଗରିବ ଲୋକଙ୍କୁ ମହୁବାକ୍ସ ଯୋଗାଇ ଦିଆଯିବ, ମହୁ ସେରକ ଏକଟଙ୍କା ହିସାବରେ ଦେଇ ସେମାନେ ବାକ୍ସର ଦାମ୍ ଶୁଝିବେ । ବାକ୍ସ ଦୁଇପ୍ରକାର ଥିଲା । ଗୋଟିଏ ୨॥ ଟଙ୍କିଆ ଓ ଗୋଟିଏ ୫ ଟଙ୍କିଆ । ଥୋରିଆସାହି ଆଶ୍ରମରେ ଗୁଣନିଧି ମହାନ୍ତି ଓ ବରୀ ଆଶ୍ରମରେ ମନମୋହନ ଚୌଧୁରୀ ଏ ଯୋଜନା ମାର୍ଫତରେ ଥିଲେ । ୧୯୩୮ ମାର୍ଚ୍ଚ, ଅପ୍ରେଲ, ମେ, ଏ ତିନିମାସରେ ୩ ଦଫା ଲେଖା ଶିକ୍ଷାର୍ଥୀଙ୍କୁ ବରୀରେ ମହୁଚାଷ ତାଲିମ ଦିଆଯାଇଥିଲା । ମାସକୁ ଖାଇବା ଖର୍ଚ୍ଚ ଛଡ଼ା ପ୍ରତି ଛାତ୍ର ୧୦ ଟଙ୍କା ଲେଖା ଶିଖାଇବା ଖର୍ଚ୍ଚ ଦେବାକୁ କୁହାଯାଇଥିଲା । କାରଣ ବରୀରେ ଏ ଟ୍ରେନିଂ ପାଇଁ ଆଶ୍ରମ ସରକାରଙ୍କଠାରୁ ଗ୍ରାଣ୍ଟ୍ ନେଇ ନ ଥିଲେ ।

ସେହି ସମୟରେ 'ମହୁ ସମବାୟ ସମିତି' ଗଢ଼ା ହେଲା ।

## ତାଳଗୁଡ଼ ଓ ଖଜୁରିଗୁଡ଼

ତାଳଗଛର ରସରୁ ଓ ପୂର୍ବେ ମଦ (ତାଡ଼ି) ହେଉଥିବା ଖଜୁରି ରସରୁ ଗୁଡ଼ ତିଆରି କରିବା ବି ବାରି ଆଶ୍ରମରେ ଚାଲୁ କରାହୋଇ ଅନ୍ୟମାନଙ୍କୁ ଶିଖା ହେଉଥିଲା ଓ ତାର ପ୍ରସାର ହୋଇଥିଲା । ତାହା ସଙ୍ଗେ ସଙ୍ଗେ ତାଡ଼ିଆଡ଼େ ବିଶେଷତଃ ହରିଜନମାନଙ୍କ ମଧ୍ୟରେ ତାଡ଼ି ପିଇବା ବନ୍ଦ କରା ହେଉଥିଲା ।

## ତେଲ ଘଣା

ଗୋପବାବୁ ଭଲ ଷଣ୍ଢମାନଙ୍କୁ ବାନ୍ଧିରଖି ଖୁଆଇବା ଓ ତାଙ୍କ ଯତ୍ନନେବା ଶିଖାଇବା ସଙ୍ଗେ ସଙ୍ଗେ ସେମାନଙ୍କ ଦ୍ୱାରା କିଛି କାମ କରାଇ ତାଙ୍କ ସ୍ୱାସ୍ଥ୍ୟ ଠିକ୍ ରଖିବା ଲାଗି ମନ ଦେଇଥିଲେ । ସେଥିପାଇଁ ସେ ଘଣାରେ ଷଣ୍ଢ ଯୋଚି ପରୀକ୍ଷା କରୁଥିଲେ, ଖୁବ୍ କାମ ଦେଉଥିଲା । ଆଶ୍ରମର ଘଣା ଷଣ୍ଢ ପେଲୁଥାଏ ।

## ଢିଙ୍କି-ଚକି

ସେ ଚାହୁଁଥିଲେ, ଘରେ ଘରେ ଢିଙ୍କି, ଚକି ଚାଲୁ । ମିଲ୍ ଚାଉଳ, ମିଲ୍ ଅଟା, ମିଲ୍ ତେଲର ସେ ବିରୋଧୀ ଥିଲେ ।

## କୁଟୀରଶିଳ୍ପ

କଇଆ, କାଇଁଶ, ତାଳପତ୍ର, ବାଉଁଶ, କାଇଁଚ ଫଳ ଆଦିର ସେ ଉଚିତ ସଦ୍‌ବ୍ୟବହାର ପ୍ରଚଳନ କରାଇ ନାନା ପ୍ରକାର ବୁଣାବୁଣି କାମ କରାଉଥିଲେ ଓ ପ୍ରସାର କରୁଥିଲେ ।

## ସାବୁନ୍, କାଗଜ

କଟକ ମଧୁସୂଦନ ଗ୍ରାମୋଦ୍‌ଯୋଗ କେନ୍ଦ୍ରକୁ କେତେକ କର୍ମୀଙ୍କୁ ପଠାଇ ତାଲିମ୍ ଦିଆହୋଇଥିଲା । ସେମାନେ ବର୍ଷକୁ ଫେରି ଆସି କାଗଜ ଓ ସାବୁନ୍ ତିଆରି କଲେ, ଗାଁ ଲୋକଙ୍କୁ ତାହା ଦେଖାଇଲେ ଯେ ଫୋପଡ଼ା ହେବା ଜିନିଷରୁ କିପରି ସହଜରେ ସେମାନେ କାଗଜ ତିଆରି କରିପାରିବେ ଓ ଗାଁରେ ଯେତେ ପ୍ରକାର ସାଧାରଣ ତେଲ ମିଳେ, ତହିଁରେ ସହଜରେ ସାବୁନ୍ କରିପାରିବେ । କେତେ ଗାଁଲୋକ ସାବୁନ୍ ତିଆରି କରି ଲୁଗା ସଫା କଲେ ।

## ଭାଇଣି

### ସୂତାକଟା ଓ ଖଦୀ

ଗାନ୍ଧୀଜୀଙ୍କ ଗଠନମୂଳକ ଦର୍ଶନର ମୂଳଦୁଆରେ ହିଁ ରହିଛି ହାତକଟା ସୂତା ଓ ହାତବୁଣା ଖଦଡ଼ । ୧୯୨୧ ସରକାରୀ ଚାକିରି ଛାଡ଼ି ଗାନ୍ଧୀଜୀଙ୍କ ଅନୁସରଣ କଲାଦିନୁଁ ୧୯୫୮ରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ପୂଜ୍ୟ ଗୋପବାବୁ ସୂତା କାଟୁଥିଲେ, ଖଦଡ଼ ଛଡ଼ା ଅନ୍ୟ କୌଣସି କନାରେ ତିଆରି କିଛି ବ୍ୟବହାର କରୁ ନ ଥିଲେ, ତାଙ୍କର ସମୁଦାୟ ପରିବାର ବି ସେହି ନୀତିରେ ଦୀକ୍ଷିତ । ସେ ନିଜ ହାତରେ ତୁଳି ପାଚୁଥିଲେ, କପାଚାଷ କରୁଥିଲେ । କପାଚାଷ, ସୂତାକଟା, ଖଦୀବୁଣା ଓ ଖଦୀ ବ୍ୟବହାର ଓ ପ୍ରଚାରର ପରମ ଆଗ୍ରହୀ ପ୍ରବର୍ତ୍ତକ ହୋଇ ରହିଥିଲେ ଆଜୀବନ ।

### "ଅଳକାଶ୍ରମ ଖଦୀ ପ୍ରତିଷ୍ଠାନ" ଅଖିଳ ଭାରତ ଚରଖା ସଂଘ

୧୯୨୨ରେ ଜଗତ୍‌ସିଂହପୁର ପାଖେ 'ଅଳକାଶ୍ରମ' ପ୍ରତିଷ୍ଠା ହେଲା ପରେ ସେଠି ସେ 'ଅଳକାଶ୍ରମ ଖଦୀ ପ୍ରତିଷ୍ଠାନ' ବସାଇଥିଲେ । ୧୯୨୧ ମାର୍ଚ୍ଚ ୩୧ରେ ବେଜୱାଡ଼ାଠାରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ୍ କମିଟି ଅଧିବେଶନରେ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ ଭାରତରେ ୩୦ ଜୁନ୍ ୧୯୨୧ ସୁଦ୍ଧା ଏକକୋଟି କଂଗ୍ରେସ କର୍ମୀ ସଂଗୃହୀତ ହେବେ, 'ତିଳକ ସ୍ମାରକ ପାଣ୍ଠି' ପାଇଁ ଏକକୋଟି ଟଙ୍କା ଚାନ୍ଦା ଉଠା ହେବ ଓ ଘରେ ଘରେ ଚରଖା ବସି ଏକଲକ୍ଷ ଚରଖା ଚାଲିବ । ୩୦ ଜୁନ୍ ସୁଦ୍ଧା ଦେଶରେ ପ୍ରାୟ ଲକ୍ଷେ ଚରଖା ଚାଲୁ ହୋଇଯାଇଥିଲା । ସେହିବର୍ଷ ୨୮ ଜୁଲାଇରେ ବମ୍ବାଇରେ ତାର ପରବର୍ତ୍ତୀ ଅଧିବେଶନ ବସିଲା ଓ ଦେଶର ସବୁ କଂଗ୍ରେସ ସଭ୍ୟାଙ୍କୁ ନିର୍ଦ୍ଦେଶ ପଠାହେଲା ଯେ ସେମାନେ ସୂତାକଟା ଓ ଖଦୀବୁଣା ଉପରେ ଜୋର୍ ଦେବେ । ୨୨-୯-୧୯୨୫ରେ ନିଖିଳ ଭାରତ କଂଗ୍ରେସ କମିଟି

ବୈଠକରେ ପ୍ରସ୍ତାବ ଗୃହୀତ ହୋଇ ଖଦୀ କାମ ପାଇଁ କଂଗ୍ରେସ୍ ସଂସ୍ଥାରୁ ଅଲଗା ହୋଇ "ଅଖିଳ ଭାରତ ଚରଖା ସଙ୍ଘ" (A. I. S. A.) ବୋଲି ଗୋଟିଏ ଅ-ରାଜନୈତିକ ସଂସ୍ଥା ଗଢ଼ା ହେଲା । ପଣ୍ଡିତ ନେହେରୁ, ଶଙ୍କରଲାଲ୍ ବ୍ୟାଙ୍କର, ଶୁଏବ୍ କୁରେଶୀ ଏହାର ସମ୍ପାଦକ ହେଲେ ଓ ସେଠ୍ ଯମୁନାଲାଲ୍ ବଜାଜ୍ କୋଷାଧ୍ୟକ୍ଷ ହେଲେ । ତାହାର ପ୍ରାଦେଶିକ ଶାଖାମାନ ଗଢ଼ା ହେଲା । ଓଡ଼ିଶାରେ ଅ: ଭା: ଚରଖା ସଙ୍ଘ ଶାଖାର ପ୍ରଥମ ସମ୍ପାଦକ ଥିଲେ ଗଞ୍ଜାମର ଶ୍ରୀ ନିରଞ୍ଜନ ପଟ୍ଟନାୟକ, ୧୯୩୦ ଆରମ୍ଭରୁ ସେ ସେହି ଦାୟିତ୍ୱ ଛାଡ଼ିଦେଲେ । ଗୋପବାବୁ ତାର ସମ୍ପାଦକ ହୁଅନ୍ତୁ ବୋଲି ତାଙ୍କୁ ଅନୁରୋଧ କରିବାକୁ ବଙ୍ଗଳାରୁ ଶ୍ରୀ ସତୀଶ ଚନ୍ଦ୍ର ଦାସଗୁପ୍ତ ତାଙ୍କ ପାଖକୁ ଆସିଥିଲେ କିନ୍ତୁ ଗୋପବାବୁ ରାଜି ହୋଇ ନ ଥିଲେ । ସେତେବେଳେ ସେ ଅଖିଳ ଭାରତ ଚରଖା ସଙ୍ଘର ଓଡ଼ିଶା ଶାଖାର କାର୍ଯ୍ୟ ବିଷୟରେ କେବେ କେବେ ପରାମର୍ଶ ଦେଉଥିଲେ, ନିଜେ ତାର ତତ୍ତ୍ୱାବଧାନ କରୁ ନ ଥିଲେ । ତାର କାର୍ଯ୍ୟ ସ୍ୱତନ୍ତ୍ରଭାବେ ଚାଲୁଥାଏ । କେନ୍ଦ୍ର ପାଟଣା, ବୋଲଗଡ଼ ଆଦି ତାର କେନ୍ଦ୍ର ହୋଇଥାଏ । କାଳକ୍ରମେ ୧୯୩୪ରେ ଗୋପବାବୁ ଅ: ଭା: ଚରଖା ସଙ୍ଘର ସେକ୍ରେଟେରୀ ହୋଇଥିଲେ, ପରେ ଅ: ଭା: ଚରଖା ସଙ୍ଘର ଟ୍ରଷ୍ଟି ବି ଥିଲେ ।

## ଗାନ୍ଧୀ ସେବାସଂଘ ଓ ଖଦୀକାମ

୧୯୨୩ରେ 'ଗାନ୍ଧୀ ସେବାସଙ୍ଘ' ଗଢ଼ା ହୋଇଥିଲା । ତାର ସଭ୍ୟଙ୍କ ଉଦ୍ଦେଶ୍ୟ ଥିଲା ମହାତ୍ମା ଗାନ୍ଧୀଙ୍କ ଆଦର୍ଶ ଅନୁସରଣ କରିବା ସକାଶେ ଜୀବନ ଉତ୍ସର୍ଗ କରିବା ଓ ସେହି ଆଦର୍ଶ ଅନୁଯାୟୀ ନିଜ ଜୀବନ ବିତାଇବା ଓ ସେହି ମତ ଓ ଆଚରଣର ପ୍ରଚାର କରାଇବା । ଗାନ୍ଧୀମତରେ ଖଦୀକାମର ଅତି ବିଶିଷ୍ଟ ସ୍ଥାନ ଅଛି । 'ଗାନ୍ଧୀ ସେବାସଙ୍ଘ' ବିଭିନ୍ନ ପ୍ରଦେଶରେ କାମ କରୁଥିଲା । ୧୯୨୮ରେ ମହାତ୍ମାଜୀ ତାର ଓଡ଼ିଶା ଶାଖା କାର୍ଯ୍ୟର ପରିଚାଳନା ଭାର ଗୋପବାବୁଙ୍କୁ ଦେଲେ । ଓଡ଼ିଶାରେ ଖଦୀକାମ କରିବା ପାଇଁ ଶ୍ରୀ ଜୀବରାମ କଲ୍ୟାଣୀ ତାଙ୍କର ସମସ୍ତ ସଞ୍ଚିତ ଅର୍ଥ ଏକଲକ୍ଷ ଟଙ୍କା ଗାନ୍ଧୀଜୀଙ୍କ ପରାମର୍ଶରେ 'ଗାନ୍ଧୀ ସେବାସଙ୍ଘ'କୁ ଦେଲେ ଓ ସେହି ଟଙ୍କାକୁ ଭିତ୍ତିକରି ଓଡ଼ିଶାରେ 'ଗାନ୍ଧୀ ସେବାସଙ୍ଘ' କାର୍ଯ୍ୟ କଲେ । ଗୋପବାବୁ ତ ତାର ସଭ୍ୟ ଥିଲେ, ଓଡ଼ିଶାରେ ତାର ପରିଚାଳନା ଦାୟିତ୍ୱ ନେଲେ । ଗାନ୍ଧୀ ସେବାସଙ୍ଘର କାର୍ଯ୍ୟକାରୀ ସମିତିର ସଭ୍ୟ ଥିଲେ ଓ ୨୮-୬-୪୦ରେ ତାର 'ଟ୍ରଷ୍ଟୀ' ବି ହେଲେ । ସୂତାକଟା, କପାଚାଷ, ହାତତନ୍ତରେ ଖଦଡ଼ ବୁଣା, ଖଦଡ଼ ବ୍ୟବହାର, ବିକ୍ରି, ପ୍ରଚାର ଓ ପ୍ରସାର ଆଦି ହେଲା 'ଖଦୀକାମ' । ଓଡ଼ିଶାର ନାନା ସ୍ଥାନରେ ଗାନ୍ଧୀ ସେବାସଙ୍ଘର କେନ୍ଦ୍ର ବସିଲା ଓ ସେଠି ଏ କାର୍ଯ୍ୟ ଚାଲିଲା । ତାହାଛଡ଼ା ଗ୍ରାମୋଦ୍ୟୋଗର ନାନା କାର୍ଯ୍ୟ, ଅଶିକ୍ଷା ନିବାରଣ, ଅସ୍ପୃଶ୍ୟତା ନିବାରଣ ଆଦି ମଧ୍ୟ ବହୁତ ବ୍ୟାପିଲା । 'ଅଖିଳ ଭାରତ ଚରଖା

ସଂଘ' ତାଙ୍କର ଓଡ଼ିଶା ଶାଖା ଜରିଆରେ ଏସବୁ କାର୍ଯ୍ୟ କରି ଆସୁଥିଲେ । ୧୯୪୫ରେ ଗାନ୍ଧୀଜୀ ଜେଲ୍‌ରୁ ଫେରିଲାପରେ ସେ କାର୍ଯ୍ୟକୁ ବିକେନ୍ଦ୍ରିତ କରିବାକୁ ନିଷ୍ପତ୍ତି ନେଲେ ଓ ପରେ ସେହି ଅନୁସାରେ ଚରଖା ସଂଘର ନବ ସଂସ୍କରଣ,—ଗୋଟିଏ ଅଲଗା ସଂସ୍ଥା 'ଉତ୍କଳ ଖଦୀମଣ୍ଡଳ' ଭାର ଦାୟିତ୍ୱ ନେଲେ ।

## ସ୍ୱାବଲମ୍ବୀ ଖଦୀ କେନ୍ଦ୍ର

ଗୋପବାବୁ ଓଡ଼ିଶାରେ 'ଗାନ୍ଧୀ ସେବାସଂଘ' କାର୍ଯ୍ୟର ପରିଚାଳନା ଦାୟିତ୍ୱ ନେଇ କାର୍ଯ୍ୟ କରୁଥିଲେ ମହାତ୍ମାଙ୍କ ନିର୍ଦ୍ଦେଶକ୍ରମେ ସେହି ସଂଘର ଗଠନମୂଳକ କାର୍ଯ୍ୟମାନଙ୍କ ପ୍ରସାର ପାଇଁ 'ଗାନ୍ଧୀ ସେବାସଂଘ'ର ପୁନର୍ଗଠନ ହୋଇଥାଏ । 'ଖଦୀ'ର ଧାରଣା ସହିତ ଜଡ଼ିତ ଥିଲା 'ସ୍ୱାବଲମ୍ବିତା', ଖଦୀ-କେନ୍ଦ୍ରଗୁଡ଼ିକ 'ସ୍ୱାବଲମ୍ବୀ ଖଦୀ କେନ୍ଦ୍ର' ହେଉ, ମହାତ୍ମା ଗାନ୍ଧୀଙ୍କର ନିଷ୍ପତ୍ତି ଏଇଆ ହେଲା । ମହାତ୍ମାଙ୍କ ସୂଚନା ଅନୁସାରେ ତାକୁ ଚଳାଇବା ପାଇଁ ଗୋଟିଏ ଯୋଜନା ତିଆରି ହେଲା ଓ କର୍ମୀମାନଙ୍କୁ ନିର୍ଦ୍ଦେଶ ଦିଆଗଲା ଯେ ସେମାନେ ନିଜେ ଶ୍ରମ କରି ଓ କରାଇ ଗବେଷଣା କରିବେ ଯେ ନାନା ପ୍ରକାର ଗ୍ରାମ-ଉଦ୍ୟୋଗ ଭିତରୁ ଗୋଟିଏ ଗୋଟିଏ ଉଦ୍ୟୋଗରେ ଦିନକୁ କେତେ ଘଣ୍ଟା ଭଲ କରି କାମ କଲେ ଓ କେତେ କାମ କଲେ ଘଣ୍ଟାକୁ ଅଣାଏ ଲେଖାଁ ମୂଲ ପାଇଲେ ମୂଲିଆ ପୋଷି ହେବ; ଉଦ୍ଦେଶ୍ୟ ଥାଏ ଯେ ସବୁ ପ୍ରକାର ସବୁ ଧନ୍ଦାରେ ମୂଲିଆଙ୍କ ମୂଲ ସମାନ ହେବା ଉଚିତ, ଘଣ୍ଟାକୁ ଅନ୍ତତଃ ଅଣାଏଁ ମିଳିବା ଉଚିତ ଓ ଦୈନିକ ମଜୁରିରେ ମୂଲିଆ ପୋଷି ହେବା ଉଚିତ କାରଣ ମୂଲ ଥାଏ ଦୈନିକ ୨ ଅଣାରୁ ୩ ଅଣା ।

ଗୋପବାବୁ ବଣ୍ଟରେ କର୍ମକେନ୍ଦ୍ର ଖୋଲିଲା ପରେ ଏହା ପରୀକ୍ଷା ହେଉଥାଏ । ଗୋପବାବୁ, ରମା ଦେବୀ, ତାଙ୍କ ଝିଅ ଅନ୍ନପୂର୍ଣ୍ଣା ନିଜ ଇଚ୍ଛାରେ ମୂଲିଆ ମୂଲିଆଣୀଙ୍କ ସଙ୍ଗେ ମିଶି ବଣ୍ଟରେ ପର ଜମିରେ ମୂଲ ଲାଗିଥିଲେ, ସେମାନେ ନିଜେ ଧାନ କାଟି ମୁଣ୍ଡରେ ମୁଣ୍ଡେଇ ଫେରୁଥିବା ଦୃଶ୍ୟ ଲୋକଙ୍କର ମନେଅଛି । ବଣ୍ଟର କର୍ମୀମାନେ ଗୋପବାବୁଙ୍କ ନିର୍ଦ୍ଦେଶ ଅନୁସାରେ ନାନା ଧନ୍ଦାରେ ନିଜେ ଖଟି ଏଭଳି ପରୀକ୍ଷା କରୁଥାନ୍ତି । ଯେଉଁଠି କେନ୍ଦ୍ର ଖୋଲାହୁଏ, ଉଦ୍ଦେଶ୍ୟଥାଏ ଯେ କର୍ମୀ ଯଥାସାଧ୍ୟ ସ୍ୱାବଲମ୍ବୀ ହେବେ, ତାଙ୍କ କେନ୍ଦ୍ର ବି ଯଥାସାଧ୍ୟ ନିଜ ଆୟରୁ ଚଳି ପାରିବ ।

## ଅଳକାଶ୍ରମ ଖଦୀ ପ୍ରତିଷ୍ଠାନ

୧୯୨୧ରେ ଗୋପବାବୁ "ଅଳକାଶ୍ରମ ଖଦୀ ପ୍ରତିଷ୍ଠାନ" ବସାଇଥିଲେ । ୧୯୨୧-୨୭ ଯାକେ ଅଳକାଶ୍ରମ ଥିଲା ଓ ସେଠି ତାକୁ କେନ୍ଦ୍ର କରି ଅନ୍ୟତ୍ର ନାନା ସ୍ଥାନରେ ଖଦୀ କାମ ଚାଲିଥିଲା ।

## କଟକ ଡ଼ିଷ୍ଟ୍ରିକ୍ଟ ବୋର୍ଡ଼୍‌ରେ ସୂତାକଟା ଓ ଖଦୀକାମ

୧୯୨୪ରେ ଗୋପବାବୁ ଯେତେବେଳେ କଟକ ଡ଼ିଷ୍ଟ୍ରିକ୍ଟବୋର୍ଡ଼୍‌ ଚେଆରମ୍ୟାନ୍ ହେଲେ ସେତେବେଳେ କଟକ ଜିଲ୍ଲାରେ ଚାରିଅଡ଼େ ଅରଟ ଓ ସୂତାକଟା, ଲୁଗାବୁଣା, ଖଦଡ଼ ବ୍ୟବହାର ଆଦି କାର୍ଯ୍ୟର ପ୍ରସାର ଓ ପ୍ରଚାର ଉପରେ ଜୋର୍ ଦେଇ ଉଦ୍ୟମ ଚଳାଉଥିଲେ ।

## କଟକ ଖଦୀ ସଂଘ

ସେ ଜିଲ୍ଲାବୋର୍ଡ଼୍ ଛାଡ଼ିବାପରେ ଟ ୩୦୦୦-୦୦ ମୂଳଧନ ଖଟାଇ କଟକରେ 'କଟକ ଖଦୀ ସଂଘ' ଗଢ଼ି ବ୍ୟବସାୟ ସୂତ୍ରରେ ଖଦୀର ପ୍ରସାର କରାଉଥିଲେ ।

## 'ଦରିଦ୍ର ନାରାୟଣ ସେବାସଂଘ'

୧୯୨୮ରେ ପୂଜ୍ୟ ୬ ଉତ୍କଳମଣିଙ୍କ ମହାପ୍ରୟାଣ ହେଲା । ତାଙ୍କର ପବିତ୍ର ସ୍ମୃତିରେ ସତ୍ୟବାଦୀରେ 'ଦରିଦ୍ର ନାରାୟଣ ସେବାସଂଘ' ପ୍ରତିଷ୍ଠିତ ହୋଇ ଖଦୀ ଉତ୍ପାଦନ, ବିକ୍ରି ଓ ପ୍ରଚାର କାର୍ଯ୍ୟ କରୁଥାଏ । ଓଡ଼ିଶାରେ ଖଦୀ କ୍ଷେତ୍ରରେ ଏହା ମଧ୍ୟ ଗୋଟିଏ ପ୍ରାଚୀନ ଅନୁଷ୍ଠାନ ।

## ଗାନ୍ଧୀ ସେବାସଂଘ

୧୯୨୩ରେ 'ଗାନ୍ଧୀ ସେବାସଂଘ' ଗଢ଼ା ହେଲାବେଳେ ତାର ଅଧ୍ୟକ୍ଷ ଥିଲେ ୬ ଜମୁନାଲାଲ୍ ବଜାଜ୍ । ପରେ ସେ ନିଜକୁ ଏ କାର୍ଯ୍ୟ ପାଇଁ ଅଯୋଗ୍ୟ ମନେକଲେ ଓ ସଭାପତି ଦାୟିତ୍ୱ ଛାଡ଼ିଦେଲେ । ତେଣୁ ୧୯୩୪ରେ ଶ୍ରୀ କିଶୋରଲାଲ ମଶ୍ରୁୱାଲା ଏହାର ସଭାପତି ହେଲେ ଓ ତାଙ୍କ ପରେ ୧୯୪୦ରେ ଶ୍ରୀ କୃଷ୍ଣଦାସ ଦାଜୁ ସଭାପତି ହେଲେ, ଶ୍ରୀ ରଘୁନାଥ ଶ୍ରୀଧର ଧୋତ୍ରେ ସମ୍ପାଦକ ହେଲେ । ଚରଖା ସଂଘ କାର୍ଯ୍ୟଭଳି ରଚନାତ୍ମକ କାର୍ଯ୍ୟ ସହିତ 'ଅହିଂସା'ର ଯେ ସମ୍ବନ୍ଧ ଅଛି ତାକୁ ନିରୀକ୍ଷଣ କରିବା ଓ ଆବଶ୍ୟକମତେ ସଂଶୋଧନ କରିବା ଗାନ୍ଧୀ ସେବାସଂଘର କାର୍ଯ୍ୟ ଥିଲା । ୧୯୪୧ ପରେ ଏହାର ସ୍ୱରୂପ ଭିନ୍ନ ପ୍ରକାର ହେଲା । ମହାତ୍ମାଜୀ କହିଲେ "ଆମକୁ ନୀରବରେ କାର୍ଯ୍ୟ କରିବାକୁ ପଡ଼ିବ, କେହି ଯେପରି ନ କହନ୍ତି ଯେ ଅମୁକ ବ୍ୟକ୍ତି ଗାନ୍ଧୀର ଅନୁଚର" ଇତ୍ୟାଦି ('ସତ୍ୟାଗ୍ରହୀ' ୨ୟ ବର୍ଷ, ୧ମ ସଂଖ୍ୟା) । ୧୯୪୨ରେ ଏହାର କାର୍ଯ୍ୟ ବନ୍ଦ ରହିଲା, କାରଣ ଅଧିକାଂଶ ସଦସ୍ୟ ଜେଲ୍ ଗଲେ । ବର୍ତ୍ତମାନ ଏହାର ଗୋଟିଏ ବଡ଼ ଲାଇବ୍ରେରୀ 'ସେବାଗ୍ରାମ'ରେ ଅଛି ।

"ଗାନ୍ଧୀ ସେବାସଂଘ" ଗୋଟିଏ ସମ୍ମାନାସ୍ପଦ ଅନୁଷ୍ଠାନ । ସମଗ୍ର ଭାରତରୁ ଯେଉଁ ଅଳ୍ପସଂଖ୍ୟକ ବ୍ୟକ୍ତି ଏହାର ସଭ୍ୟ ଭାବରେ ଥିଲେ ବା ଅଛନ୍ତି, ସେମାନଙ୍କ

କିଶୋରଲାଲ୍ ମଶ୍ରୁୱାଲା, ଆଚାର୍ଯ୍ୟ କାକାସାହେବ୍ କାଲେଲ୍କର, ଦାଦା ଧର୍ମାଧିକାରୀ, ମହାଦେବ ଦେଶାଇ, କୃଷ୍ଣଦାସ ଦାଦୁ, ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ଘୋଷ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍, ଆଚାର୍ଯ୍ୟ ଜେ. ବି. କୃପାଲାନି, ଆନ୍ନା ସାହେବ ସହସ୍ରବୁଦ୍ଧେ, କ୍ଷିତୀଶଚନ୍ଦ୍ର ଦାସ୍ଗୁପ୍ତ, ଆର୍. ଆର୍. ଦିବାକର, ଗଙ୍ଗାଧର ରାଓ ଦେଶପାଣ୍ଡେ, ମାମା ସାହେବ୍ ଫାଡ଼୍କେ, ଅପ୍ପା ସାହେବ୍ ପଟ୍ବର୍ଦ୍ଧନ, ଆଚାର୍ଯ୍ୟ ହରିହର ଦାସ, ରମା ଦେବୀ, ଗୋପବନ୍ଧୁ ଚୌଧୁରୀ, ଜମୁନାଲାଲ୍ ବଜାଜ୍ ଆଦି ।

ଓଡ଼ିଶାରେ ୧୯୩୪ରୁ ୧୯୪୨ ସମୟକାଳ ଭିତରେ ଗାନ୍ଧୀ ସେବାସଂଘ ତରଫରୁ ନାନା ସ୍ଥାନରେ ଅନ୍ତତଃ ତେଇଶିଟି କେନ୍ଦ୍ର କାର୍ଯ୍ୟ କରୁଥିଲା । କର୍ମୀଟିଏ ମିଳିଲେ କେନ୍ଦ୍ର ଖୋଲିହୁଏ । 'ଗାନ୍ଧୀ ସେବାସଂଘ ପତ୍ରିକା'ରୁ ଜଣାଯାଏ ଯେ ୧୯୩୮ ଶେଷସୁଦ୍ଧା ଅନ୍ତତଃ ନିମ୍ନୋକ୍ତ କେନ୍ଦ୍ରଗୁଡ଼ିକ କାର୍ଯ୍ୟ କରୁଥିଲା; [ସଞ୍ଚାଳକମାନଙ୍କ ନାମ ବନ୍ଧନୀ ଭିତରେ ଦିଆଗଲା]—ଡେଲାଂ ବେରବୋଇ (ପଣ୍ଡିତ କୃପାସିନ୍ଧୁ ହୋତା), ବରୀ (ଶ୍ରୀମତୀ ରମା ଦେବୀ), ଅଳି (ଶ୍ରୀ ଈଶ୍ୱର ଲାଲ୍ ବ୍ୟାସ୍), ଗଣେଶ୍ୱରପୁର—କଟକ ଜିଲ୍ଲା ଏରସମା ପାଖ (ଶ୍ରୀ ହରେକୃଷ୍ଣ ବିଶ୍ୱାଳ), ରାଇପୁର (ଶ୍ରୀ ପରମାନନ୍ଦ ପଟ୍ଟନାୟକ), ଝାଡ଼୍ପିପ୍ପଳି—ବାଲେଶ୍ୱର ଜିଲ୍ଲା—(ଶ୍ରୀ ଗଙ୍ଗାନାରାୟଣ ଦାସ), ସୋରୋ (ଶ୍ରୀମତୀ ପୁରି ବାଈ), ତଣ୍ଡିକଣା (ଶ୍ରୀ ବିଶ୍ୱନାଥ ପରିଡ଼ା), ଅଗରପଡ଼ା (ଶ୍ରୀ ହରେକୃଷ୍ଣ ମହତାବ), ଟାଙ୍ଗିଲୋ, ଓଳଙ୍ଗ । ଏହାଛଡ଼ା ଏ ପ୍ରତ୍ୟେକ କେନ୍ଦ୍ରର ଆନୁକୂଲ୍ୟରେ ସାହାଯ୍ୟପ୍ରାପ୍ତ କେନ୍ଦ୍ରଗୁଡ଼ିଏ କାର୍ଯ୍ୟ କରୁଥିଲା ।

୧୯୩୮ରେ ୨୨ଟି କେନ୍ଦ୍ରରେ ୯ ଜଣ ପୁରୁଷ କର୍ମୀ ଓ ୨ ଜଣ ନାରୀକର୍ମୀ ଥିଲେ, ୭୨ଟି ଗ୍ରାମରେ କାର୍ଯ୍ୟ ହେଉଥିଲା, ୫୪୦ଟି ଅରଟ ଚାଲୁଥିଲା, ହାରାହାରି ୧୪, ୧୬ ଓ ୧୭ ନମ୍ବର ସୂତା କଟା ହେଉଥିଲା, ୮୫୨୦ ଗଜ ଖଦୀ ବୁଣା ହୋଇଥିଲା, ୧୯.୮୦ ଏକର ଜମିରେ କପାଚାଷ କରାଯାଇ ୨୬ ମହଣ ୨ ସେର କପା ଆମଦାନୀ ହୋଇଥିଲା । ୧୯୩୮ ମାର୍ଚ୍ଚ ମାସରୁ ଜୁଲାଇ ମାସ ଭିତରେ ଏକା ବରୀ କେନ୍ଦ୍ରରେ ୭୨ ଲକ୍ଷ ଗଜ ସୂତା କଟା ହୋଇଥିଲା, ଡେଲାଂ ବେରବୋଇରେ ୫୧,୨୦୦ ଗଜ ସୂତା । ୧୯୩୮ରେ ଓଡ଼ିଶା ସରକାର ବେରବୋଇରେ ଦୁଇଥର ସୂତାକଟା ପରୀକ୍ଷା କରାଇଥିଲେ, ପ୍ରଥମଥର ପରୀକ୍ଷାରେ ୧୯ ଜଣ ଯୋଗ ଦେଇଥିଲେ, ଶ୍ରୀମତୀ ରମା ଦେବୀ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ଦ୍ୱିତୀୟଥର ଯେଉଁ ପରୀକ୍ଷା ହେଲା ତହିଁରେ ୨୫ ଜଣ ଯୋଗଦେଲେ ଓ ଶ୍ରୀମତୀ ସ୍ୱର୍ଣ୍ଣକୁମାରୀ ଦେବୀ ପ୍ରଥମ ସ୍ଥାନ ଅଧିକାର କଲେ । ଏହାଛଡ଼ା ଅନ୍ୟାନ୍ୟ କେନ୍ଦ୍ର ବି ଖୋଲିଯାଇ କାର୍ଯ୍ୟ କଲା । ସେଗୁଡ଼ିକ ପରପୃଷ୍ଠାରେ ଦିଆଗଲା—

ଫଳଗାଡ଼ିଆ—ଶ୍ରୀ ମାୟାଧର ଖଣ୍ଡିଆ, କୃଷ୍ଣାଣିଆ (ଢାଙ୍କେଣ୍ଡି)—ଶ୍ରୀ ଗୋକୁଳାନନ୍ଦ ମହାନ୍ତି ଓ ଶ୍ରୀମତୀ କନକ ଦେବୀ, ଦାଢ଼ା (ବାରଂ)—ଶ୍ରୀ ଗୁଣନିଧି ମହାନ୍ତି, ସରମଙ୍ଗା—ଶ୍ରୀ ଭୋଳାନାଥ ମହାପାତ୍ର, ରହ୍ମଗିରି—ଶ୍ରୀମତୀ ଗୋଦାବରୀ ଦେବୀ; କାଇପଡ଼ା, ବ୍ରହ୍ମଗିରି, ଟାଙ୍ଗିଲୋ, ରତଲାଂ—ଶ୍ରୀମତୀ ମଙ୍ଗଳା ଦେବୀ ଓ ଶ୍ରୀ ନିକୁଞ୍ଜ ବେହେରା; ଗୁଆଳି, ଏରେଡ଼ା, ସୁବର୍ଣ୍ଣପୁର (ଚନ୍ଦ୍ରାମ)—ଶ୍ରୀମତୀ ଶୋଭା ଦେବୀ, ବୀର ନରସିଂହପୁର—ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀ; ରାମପୁର, ନୀଳାପଦା—ଶ୍ରୀମତୀ ସୁଶୀଳା ଦେବୀ, ଇନ୍ଦ୍ରପୁର—ଶ୍ରୀ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ, ଚକଣା—ଶ୍ରୀ ଗୋପୀନାଥ ସାହୁ ଓ ଶ୍ରୀ ବୈଦ୍ୟନାଥ ଦାସ, ସମଲଇପଦର (ସମ୍ବଲପୁର ଜିଲା) ଶ୍ରୀ ରାମଚନ୍ଦ୍ର ପୁରୀ ଓ ଶ୍ରୀମତୀ ଅମୃତ ଦେବୀ, କୁଜେନ୍ଦ୍ରୀ (କୋରାପୁଟ ଜିଲା)—ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଧାରପୁର—ଶ୍ରୀମତୀ ହୀରାମଣି ଦେବୀ, ସାରଙ୍ଗଯୋଡ଼ି—ଶ୍ରୀମତୀ ଲକ୍ଷ୍ମୀ ଦେବୀ, ଆନନ୍ଦପୁର—ଶ୍ରୀ ବିନୋଦ କାନନ୍‌ଗୋ, ବାଗ୍‌ଦା—ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ ।

୧୯୩୪ରେ ଗୋପବାବୁ ବସି ଆସି ସେଠି ରହି କାର୍ଯ୍ୟ ଆରମ୍ଭ କଲେ । ସୂତାକଟା, କପାଗୁଡ, ହାତତନ୍ତରେ ଖଦୀବୁଣା, ଖଦଡ଼ ବ୍ୟବହାର ଓ ପ୍ରଚାର ଉପରେ ଖୁବ ଜୋର ଦେଲେ, ଗ୍ରାମଆଡ଼େ ସେହି କାର୍ଯ୍ୟ ବ୍ୟାପିଲା, ଗ୍ରାମଆଡ଼େ ଦଶିଲେ ଖଦଡ଼ ପିନ୍ଧା ଲୋକ, ଘରେ ଘରେ ଚାଲୁଛି ଅରଟ ଗୁଣାଳ । ଅନେକ ଗରିବ ଲୋକ ଏଥିରେ ଯୋଗ ଦେଲେ । ପୂର୍ବେ ଅନେକେ ଯେଉଁ ସମୟ ଆଳସ୍ୟରେ କଟାଉଥିଲେ ବା ଯେତେବେଳେ ଗୃହକାର୍ଯ୍ୟ ନ ଥିଲା ସେ ସମୟରେ ସୂତାକାଟି ରୋଜଗାର କଲେ ।

୧୯୩୫-୩୬ରେ ମହାତ୍ମାଜୀ ଖଦୀକାମକୁ ନୂଆ ମୋଡ଼ ଦେଲେ ଓ ଖଦୀ ପ୍ରସାରର ଇତିହାସର ଦ୍ୱିତୀୟ ଅଧ୍ୟାୟ ଆରମ୍ଭ ହୋଇଗଲା । ମହାତ୍ମା ଗାନ୍ଧୀ କହିଲେ ଯେ ଖଦୀ କେବଳ ଲୁଗା ନୁହେଁ, ତାହା ସ୍ୱରାଜ ସାଧନର ଅସ୍ତ୍ର ଓ ନୂଆ ସମାଜର ମୂଳଦୁଆ, ତେଣୁ ତାର ମୂଲ୍ୟ ବଜାର ଦର ଅନୁସାରେ ହିସାବ କରାଯିବ ନାହିଁ, ତା ଆଦର୍ଶ ବହୁତ ବଡ଼ । ଅତଏବ ଖଦୀ ପଛେ ମହଙ୍ଗା ହେଉ, କଟାଳୀ ଏପରି ମଜୁରି ପାଉ ଯହିଁରେ ତା ପେଟ ପୂରିବ । ଫଳରେ କଟାଳୀ ମଜୁରି ବଢ଼ିଲା, ଖଦୀ ଦାମ୍ ବଢ଼ିଲା, କିନ୍ତୁ ଖଦୀର ବହୁଳ ବ୍ୟବହାର ଓ ପ୍ରସାର ବି ହେଲା ।

## କେନ୍ଦ୍ର ପ୍ରତିଷ୍ଠାର ନମୁନା—'କୁଜେନ୍ଦ୍ରୀ'

ନୂଆ ନୂଆ କେନ୍ଦ୍ରମାନ ବଢ଼ି ବଢ଼ି ଗୁଲାଲ । ତାର ଗୋଟିଏ ନମୁନା କୋରାପୁଟ୍ ଜିଲ୍ଲାରେ ଗୁଣୁପୁର ତାଲୁକ୍‌ରେ 'ସଓରା' ଆଦିବାସୀଙ୍କ ଗାଁ 'କୁଜେନ୍ଦ୍ରୀ'ରେ ୧୯୪୧ରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ପ୍ରତିଷ୍ଠା କରିଥିବା କେନ୍ଦ୍ରଟି । କର୍ମୀ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ପ୍ରାୟ ଦୁଇବର୍ଷ ବାରିରେ ରହିଲେ, ଖଦୀ ଓ ଗ୍ରାମୋଦ୍ୟୋଗ ସମ୍ପର୍କୀୟ ସବୁ କାମ ଶିଖିଲେ । ଗୋପବାବୁଙ୍କଠାରୁ ତାଲିମ୍ ନେଲେ । ତାପରେ ସେ

ଗୋଟିଏ କର୍ମକେନ୍ଦ୍ର ଖୋଲିବା ପାଇଁ ଗୁଣୁପୁର ଗଲେ । ଗୁଣୁପୁର ଖଦୀ ଭଣ୍ଡାରରେ କିଛିଦିନ ରହିଲେ, ଘୁରିଆଡ଼ ବୁଲି ଦେଖିଲେ ଓ 'କୁଜେନ୍ଦ୍ରୀ' ଗାଁକୁ ବାଛିଲେ । ସେଠାକୁ ଯାଇ ଗାଁ ମୁଣ୍ଡି ଅଲି ବୈରୁ ଗମାଂ (ସଓରା)ଙ୍କ ଘରେ ଆଗ ରହିଲେ, ତାଙ୍କ ସାହାଯ୍ୟ ନେଲେ ଓ ୧୯୪୧ରେ କୁଜେନ୍ଦ୍ରୀ କେନ୍ଦ୍ର ଖୋଲିଲେ । ଗୋପବାବୁ ତାଙ୍କୁ ସମୟେ ସମୟେ ନିର୍ଦ୍ଦେଶ ଦେଉଥାନ୍ତି । ଗୋପବାବୁ ତାଙ୍କୁ ଲେଖିଥିବା ପତ୍ରମାନଙ୍କରୁ ସେସବୁ ନିର୍ଦ୍ଦେଶର ନାନା କ୍ରମ ବି ବୁଝାଯାଏ, ଯଥା—ଆଗ ସେ ଗୁଣୁପୁରରେ ରହି କୁଜେନ୍ଦ୍ରୀ ଯାଉଥିବେ, ଦିନେ ଦୁଇଦିନ ରହି ଗୁଣୁପୁର ଫେରି ଆସୁଥିବେ । ସଓରାଙ୍କ ସଙ୍ଗେ ଚିହ୍ନା ହେଉଥିବେ । ସେ ଅଞ୍ଚଳର ସଓରାମାନେ ପୂର୍ବେ କପା ଲଗାଉଥିଲେ, ସୂତା କାଟୁଥିଲେ, ଲୁଗା ବୁଣୁଥିଲେ, ସେସବୁ ଛାଡ଼ି ଦେଇଥିଲେ, ତେଣୁ ଗୋପବାବୁ ଲେଖିଥାନ୍ତି ଯେ ସେ (ଶ୍ରୀ ବିଶ୍ୱନାଥ ପଟ୍ଟନାୟକ) ଆଗ ସେମାନଙ୍କ 'ଗୁରୁ' ନ ହୋଇ 'ଶିଷ୍ୟ' ହେବେ, ସେମାନେ କେମିତି କଣ କରନ୍ତି ସେସବୁ ତାଙ୍କଠୁଁ ନିଜେ ଶିଖି ନେବେ, ତାପରେ ସେହି ପାରମ୍ପରିକ ରୀତି ଓ ବିଶ୍ୱନାଥ ବାହାରୁ ଶିଖି ଯାଇଥିବା ରୀତି ଏ ଦୁଇ ରୀତିର ଉପକାରିତା ତୁଳନା କରି କେଉଁ ରୀତିଟା ଭଲ ତାହା ଠିକଣା କରିବେ ଓ ଖାଲି ସେତିକି ନୁହେଁ; ଆଦିବାସୀଙ୍କ ପାରମ୍ପରିକ ରୀତି ଓ ଅଭ୍ୟାସକୁ କରି ସ୍ୱନାଇବ ସେକଥା ବି ମନେ ରଖିବେ, ସେହି ଅନୁସାରେ ସେମାନଙ୍କୁ ସେ ଶିଖାଇବେ । ତାଙ୍କୁ ଅରଟ, ଓ୍ୱାର୍ଦ୍ଧା କପାଖଇ ଆଦି ସରଞ୍ଜାମ ଯୋଗାଇ ଦିଆ ହେଉଥାଏ । ଉନ୍ନତ ପ୍ରକାରର କପା ମଞ୍ଜି ବି ଯୋଗାଇ ଦିଆହେଉଥାଏ, କିନ୍ତୁ ଗୋପବାବୁ ତାଙ୍କୁ ନିର୍ଦ୍ଦେଶ ଦେଉଥାନ୍ତି ଯେ ସେ ମଞ୍ଜିକୁ ନାନା ପ୍ରକାର ଜମିରେ ଅଲଗ ଅଲଗ କରି ଲଗାଇ ଆଗ ପରୀକ୍ଷା କରନ୍ତୁ । ଏଣେ, ତାଙ୍କୁ ଟଙ୍କା ପଠାହେଉଥାଏ ଯେ ସେ ଅଞ୍ଚଳକୁ ସେ ଯେତେ ପାରନ୍ତି ସେତେ କପାମଞ୍ଜି କିଣି ବାହାରେ ପଠାନ୍ତୁ, ସେ ମଞ୍ଜିକୁ ଅନ୍ୟାନ୍ୟ କେନ୍ଦ୍ରକୁ ପଠାଯାଉଥାଏ । ଗୋପବାବୁ କପାମଞ୍ଜି ଯୋଗାଣ ପାଇଁ ସରକାରଙ୍କ ଉପରେ ନିର୍ଭର କରୁ ନ ଥାନ୍ତି, ଯେଉଁ ମଞ୍ଜି ସୁ-ପରୀକ୍ଷିତ, ଏ ଦେଶରେ ଚଳି ଆସିଛି, ଏ ଦେଶରେ ଆମଦାନୀ ହୁଏ, ତାକୁହିଁ ସେ ସଂଗ୍ରହ କରୁଥାନ୍ତି । ମଞ୍ଜିକୁ କିପରି ଶୁଖାଇବାକୁ ପଡ଼େ, ସଂରକ୍ଷଣ କରିବାକୁ ପଡ଼େ ତାହା ସେ ବିଶ୍ୱନାଥ ପଟ୍ଟନାୟକଙ୍କୁ ଲେଖିଥାନ୍ତି । ଗୋପବାବୁ ନଭେମ୍ବର ୧୪, ୧୯୪୧ରେ ଗୁଣୁପୁର ଯାଇଥିଲେ, କୁଜେନ୍ଦ୍ରୀ ବୁଲି ୧୬ ତାରିଖରେ ଫେରିଲେ, ସେହିଦିନଠୁଁ ସେ କୋରାପୁଟ ଜିଲ୍ଲାରେ ଅନେକଥର ଗସ୍ତ କରିଛନ୍ତି । ବିଶ୍ୱନାଥ ପଟ୍ଟନାୟକଙ୍କୁ ସେ ପୁତ୍ରତୁଲ୍ୟ ମଣୁଥିଲେ, ଖୁବ୍ ସ୍ନେହ କରୁଥିଲେ ।

ତାଲିମ୍

ଗୋପବାବୁଙ୍କ ବଡ଼ି କର୍ମକେନ୍ଦ୍ର ହିଁ ହେଲା ଖଦୀ ଗ୍ରାମୋଦ୍ୟୋଗ ଆଦି ନାନା ରଚନାତ୍ମକ କାର୍ଯ୍ୟ ତୁଲାଇବାଲାଗି କର୍ମୀ ତାଲିମ୍ ପାଇଁ ପ୍ରଧାନ କେନ୍ଦ୍ର । ଏକା

ବିଶ୍ୱନାଥ ପଟ୍ଟନାୟକ ନୁହଁନ୍ତି, ଅନେକେ ଯେଉଁମାନେ ନାନା ସ୍ଥାନରେ ନାନା କେନ୍ଦ୍ର ଖୋଲି କର୍ମ କଲେ, ସେମାନେ ଆଗ ବରୀରେ ତାଲିମ୍ ପାଇଲେ ଓ ଗୋପବାବୁଙ୍କ ଠାରୁ ପରାମର୍ଶ ନେଉଥିଲେ । କେତେଠି ତାଲିମ୍ କେନ୍ଦ୍ର ଓ ଅନ୍ୟତ୍ର ତାଲିମ୍ ଶିବିର ଖୋଲିଲେ । ୧୯୩୯ ଜାନୁଆରୀ ସଂଖ୍ୟା 'ଗାନ୍ଧୀ ସେବାସଂଘ ପତ୍ରିକା'ରୁ ଜଣାପଡ଼େ ଯେ ସେବର୍ଷ ଜାନୁଆରୀରୁ ମାର୍ଚ୍ଚ ଯାକେ ବରୀ ତାଲିମ୍ କେନ୍ଦ୍ରର ମୁଖ୍ୟ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ ଶ୍ରୀମତୀ ପ୍ରଫୁଲ୍ଲ କୁମାରୀ ଦେବୀ ଚୁଡଙ୍ଗ କେନ୍ଦ୍ରରେ ଖଦୀ କାମ ଶିକ୍ଷା ଦେବାକୁ ପଠା ହୋଇଥିଲେ । ସେତିକବେଳେ ବାଞ୍ଛାପୁରରୁ ୦ ଜଣଙ୍କୁ ଖଦୀ ତାଲିମ୍ ଦେବା ପାଇଁ ବରୀରେ ସେମାନଙ୍କ ପାଇଁ ତାଲିମ୍ କେନ୍ଦ୍ରଟିଏ ହୋଇଥିଲା ଓ ୨୫ ଜଣଙ୍କୁ ଖଦୀ କାମ ତାଲିମ୍ ଦେବା ପାଇଁ ବାଲେଶ୍ୱର ଜିଲ୍ଲାର 'ସୋରୋ'ରେ ତାଲିମ୍ କେନ୍ଦ୍ରଟିଏ ଖୋଲା ହୋଇଥିଲା ।

## ସେବାଘରର ଶିକ୍ଷାର୍ଥିନୀ

ବରୀର 'ସେବାଘରେ' ରମା ଦେବୀଙ୍କ ତତ୍ତ୍ୱାବଧାନରେ କିଛି ଛାତ୍ରୀ, ଶିକ୍ଷାର୍ଥିନୀ ଓ ନାରୀକର୍ମୀ ଥାଆନ୍ତି । ୧୯୩୮ ଅଗଷ୍ଟ ସଂଖ୍ୟା 'ଗାନ୍ଧୀ ସେବାସଂଘ ପତ୍ରିକା'ରୁ ଜଣାପଡ଼େ ଯେ ସେତେବେଳେ ସେଠି ଥିଲେ ୭ ଜଣ ବାଳିକା ବିଦ୍ୟାର୍ଥିନୀ, ୪ ଜଣ ଶିକ୍ଷାର୍ଥିନୀ, ତନ୍ମଧ୍ୟରୁ ୩ ଜଣ ଥିଲେ କର୍ମୀଙ୍କ ପତ୍ନୀ, ନିଜ ଖର୍ଚ୍ଚରେ ରହି ଶିକ୍ଷା ପାଉଥିଲେ । ତାଙ୍କ ଉଦ୍ଦେଶ୍ୟ ଥିଲା ଯେ ଶିକ୍ଷା ସରିଗଲେ ନିଜ ନିଜ ସ୍ୱାମୀଙ୍କ ସଙ୍ଗେ ତାଙ୍କ କେନ୍ଦ୍ରରେ ରହି ରଚନାତ୍ମକ କାର୍ଯ୍ୟ କରିବେ ଓ ୨ ଜଣ ନାରୀକର୍ମୀ ସେବାଘରେ ରହୁଥିଲେ । ସେବର୍ଷ ସେପ୍ଟେମ୍ବର ମାସରେ ବରୀରେ ମହିଳା ଟ୍ରେନିଂ କ୍ୟାମ୍ପଟିଏ ଖୋଲିବା ବ୍ୟବସ୍ଥା ହେଲା, କେତେ କର୍ମୀ ନିଜ ନିଜ ସ୍ତ୍ରୀଙ୍କୁ ସେଠିକି ପଠାଇବେ ବୋଲି ଚିଠି ଲେଖିଥାନ୍ତି, ଗୋପବାବୁ ଏ କାର୍ଯ୍ୟକୁ ଖୁବ୍ ଉତ୍ସାହିତ କରୁଥାନ୍ତି । ସେ କହୁଥାନ୍ତି, ସବୁ କର୍ମୀଙ୍କ ପରିବାର ଏ କାର୍ଯ୍ୟରେ ଲାଗି ଯାଉନ୍ତୁ । ଫଳରେ, କର୍ମୀସଂଖ୍ୟା ଓଡ଼ିଶାରେ ବଢ଼ି ଚାଲିଥାଏ, କର୍ମୀମାନଙ୍କ ସଂଗଠନ ବଢ଼ୁଥାଏ, ତାଙ୍କ ଆତ୍ମବିଶ୍ୱାସ ଓ ଏକାଗ୍ରତା ବଢ଼ୁଥାଏ । 'ସେବାଘରେ' ସ୍ଥାନୀୟ ଝିଅମାନଙ୍କୁ ଓ ଓଡ଼ିଶାର ଗ୍ରାମାଞ୍ଚଳରୁ ଝିଅମାନଙ୍କୁ ଆଣି ରଖି ତାଲିମ୍ ଦିଆଯାଉଥାଏ ଓ ଶିକ୍ଷା ଦିଆଯାଉଥାଏ । ରମା ଦେବୀ ସେମାନଙ୍କୁ ମା'ଠୁ ବଳି ସ୍ନେହ କରନ୍ତି, ଗୋପବାବୁ ତାଙ୍କର ଖୁବ୍ ସ୍ନେହ କରନ୍ତି, ନିଜେ ସାନପିଲାଙ୍କୁ ଚିତ୍ର ଅଙ୍କାନ୍ତି, ଗପ କହନ୍ତି, ପଢ଼ାନ୍ତି, ତାଙ୍କ ସଙ୍ଗେ ଖେଳନ୍ତି, ତାଙ୍କୁ ବୁଲେଇ ନିଅନ୍ତି । ଝିଅମାନେ ବଡ଼ିଗଲେ ଡଙ୍ଗା ବାହିବ ଶିଖନ୍ତି । ସେମାନେ ରୋଷେଇ, ଗାର୍ହସ୍ଥ୍ୟ ବିଜ୍ଞାନ, ଶିଶୁ ପାଳନ, ଗୋ ସେବା, ବିବିଧ ରଚନାତ୍ମକ କାମ, ମହୁଚାଷ, ସୂତାକଟା, ପାଠପଢ଼ା ଓ ରମା ଦେବୀଙ୍କଠୁ ସବୁ ପ୍ରକାର ସଦ୍‌ଗୁଣ ଓ ସଦାଚରଣ ଶିଖନ୍ତି । ସମ୍ବଲପୁରର ଶ୍ରୀ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ଝିଅ

କୁଇ, ଶ୍ରୀ ଅନ୍ତର୍ଯ୍ୟାମୀ ପଣ୍ଡାଙ୍କ ଝିଅ ଗାୟତ୍ରୀ, ରଘୁନାଥପୁରର ଶ୍ରୀ ବୈଦ୍ୟନାଥ ରାୟଙ୍କ ଝିଅ କରଣବାଳା, ଅଟଗଡ଼ର ଶ୍ରୀମତୀ ଶରତ୍ କୁମାରୀ ଦେବୀଙ୍କ ଝିଅ ହେମ ସେଠି ଥିଲେ । କଟକର ଶ୍ରୀ ଦେବେନ୍ଦ୍ର କିଶୋର ଦାସଙ୍କ ଝିଅ ମିନା (ପରେ ଓଡ଼ିଶାର ଚିଫ୍ ଇଞ୍ଜିନିୟର ଶ୍ରୀ ଅକ୍ଷୟବନ୍ଧୁ ମହାନ୍ତିଙ୍କ ସ୍ତ୍ରୀ) ସେଠି ଦୁଇବର୍ଷ ରହି ତାଲିମ୍ ପାଇଥିଲେ । ସ୍ଥାନୀୟ ଝିଅଙ୍କ ଭିତରେ ଥିଲେ ବରୀର ଜଣେ ଜମିଦାର ଶ୍ରୀ ଗୌରୀଶ୍ୟାମ ମହାନ୍ତିଙ୍କ ଝିଅ ଶକୁନ୍ତଳା, ସେତେବେଳେ ୭ ବର୍ଷ ବୟସ୍କା । ୧୯୪୦ରେ ଜେଲ୍ ଗଲେ । ଫେରି ପୁଣି ଆଶ୍ରମରେ ରହିଲେ । ଶ୍ରୀ ଶଶିଶେଖର ଦାସ ନାମକ ଜଣେ ଯୁବକ ୧୯୪୨ରେ କଲେଜ୍ ପଢ଼ା ଛାଡ଼ି ଜେଲ୍ ଗଲେ, ଫେରି ଗୋପବାବୁଙ୍କ ପାଖେ ରହି କର୍ମୀ ହେଲେ । ଗୋପବାବୁ ତାଙ୍କ ସଙ୍ଗେ ଝିଅଟିର ବିଭା ଦେଲେ । ଝିଅମାନଙ୍କୁ ସାକ୍ଷୀଗୋପାଳର ଜଣେ ଶିକ୍ଷକ ଆସି ପାଠ ପଢ଼ାଉଥିଲେ । ସେମାନଙ୍କୁ ସଙ୍ଗୀତ ବି ଶିକ୍ଷା ଦିଆଯାଉଥିଲା । ଅରଙ୍ଗାବାଦ୍‌ର ଦୁର୍ଯ୍ୟୋଧନ ସାହୁଙ୍କ ମା ଆସି ସେମାନଙ୍କୁ ଓ ଗାଁରେ ଝିଅବୋହୂଙ୍କୁ ଚଟା ପକାଇବା ଆଦି ସୁନ୍ଦର ସୁନ୍ଦର କଳା ଶିଖାଉଥିଲେ ।

## ପୁରୁଷକର୍ମୀଙ୍କ ତାଲିମ୍—ବୃନ୍ଦୁବାବୁ

ବରୀରେ ପୁରୁଷ କର୍ମୀଙ୍କ ତାଲିମ୍ ପାଇଁ ଥାଏ 'ତାଲିମ୍ କେନ୍ଦ୍ର' । ନିଜେ ଗୋପବାବୁ ତାର ତତ୍ତ୍ୱାବଧାରକ । ସେ ପ୍ରତିଦିନ ଖଦୀ ତାଲିମ୍ କ୍ଲାସ ନେଇ ଶିକ୍ଷା ଦେଉଥିଲେ । ତାଲିମ୍ କେନ୍ଦ୍ରର ସଂଚାଳକ ଥିଲେ ଶ୍ରୀ ବ୍ରଜମୋହନ ସିଂହ, ଡାକ ନାଁ ବୃନ୍ଦୁବାବୁ । ସେ ହେଲେ ପରେ ଭୂଦାନ କାମରେ ଗୋପବାବୁଙ୍କର ଜଣେ ନମ୍ବର ଡାକ୍ ସହକର୍ମୀ । ପୂଜ୍ୟ ଆଚାର୍ଯ୍ୟ ମହାଶୟ, ଈଶ୍ୱରଲାଲ ବ୍ୟାସ୍, ଗୁଣନିଧି ମହାନ୍ତି, ପଣ୍ଡିତ କୃପାସିନ୍ଧୁ ହୋତା, ଶ୍ରୀ ଗୋକୁଳାନନ୍ଦ ମହାନ୍ତି, ଶ୍ରୀ ବିଶ୍ୱନାଥ ପଣ୍ଡା, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଆଦିଙ୍କ ନାମ ସଙ୍ଗେ ତାଙ୍କ ନାମ ବାରମ୍ବାର ଆସେ । ତାଙ୍କ ଘର କଟକ ଜିଲ୍ଲା କିଶୋର ନଗର । ୧୯୩୬ରେ କଟକ ଜୈନ ମନ୍ଦିରରେ ଯୋଡ଼ିଏ ତନ୍ତ ପକାଇ ତନ୍ତୀଟିଏ ରଖି ସେ ଲୁଗାବୁଣା କାମ କରୁଥିଲେ । ସେ ଅବିବାହିତ, ତ୍ୟାଗୀ, ଦେଶପ୍ରେମୀ, କଲେଜ୍ ପଢ଼ା ଛାଡ଼ି ତା ଆଗରୁ ଦେଶକାମରେ ଲାଗିଥାନ୍ତି । ଶ୍ରୀ ସତ୍ୟନାରାୟଣ ସେନ୍‌ଗୁପ୍ତ, ଶ୍ରୀ ନନ୍ଦ କିଶୋର ଦାସ ଆଦି ତାଙ୍କୁ ଚମଡ଼ା ଟ୍ୟାନିଂ ଶିଖାଇବାକୁ କଲିକତା ସୋଦ୍‌ପୁରରେ ଶ୍ରୀ ସତୀଶଚନ୍ଦ୍ର ଦାସଗୁପ୍ତଙ୍କ ଆଶ୍ରମକୁ ପଠାଇବା ବନ୍ଦୋବସ୍ତ କରି ସାରିଥିଲେ, ଗୋପବାବୁ ତାଙ୍କୁ ଡକାଇନେଲେ, ସେ ଗୋପବାବୁଙ୍କ ପ୍ରତି ଆକୃଷ୍ଟ ହେଲେ, ବରୀରେ କର୍ମୀ ତାଲିମ୍ କାମରେ ରହିଲେ । ସେଠି ଟ୍ରେନିଂ କ୍ୟାମ୍ପ ହୁଏ, ବହୁତ ପୁରୁଷ ଓ ନାରୀକର୍ମୀ ତାଲିମ୍ ପାଇଁ ଆସନ୍ତି, ଶିଖନ୍ତି ବୌଦ୍ଧିକ ଜ୍ଞାନ, ସୂତାକଟା, ଲୁଗାବୁଣା, ବଢ଼େଇ କାମ, କମ୍ମାର କାମ, ଗ୍ରାମ ସଫେଇ, ନାନା ପ୍ରକାର ଅରଟରେ କିପରି ସୂତା କାଟିବାକୁ ପଡ଼େ, କପା ଗ୍ରୁପ,

ନାନା ଗଠନାତ୍ମକ ଗ୍ରାମୋଦ୍ୟୋଗ କାମ, ପ୍ରାକୃତିକ ଚିକିତ୍ସା, ଏପରି ନାନା କାର୍ଯ୍ୟ ଶିକ୍ଷା ଦିଆହେଉଥାଏ । (ଗୁଣ୍ଟୁବାବୁ) ଶ୍ରୀ ବ୍ରଜମୋହନ ସିଂହ ସେହି ତାଲିମ୍ କେନ୍ଦ୍ରର ସଞ୍ଚାଳକ ଓ ତତ୍ତ୍ୱାବଧାରକ ଥିଲେ । ତାଲିମ୍ ଦେବା କାର୍ଯ୍ୟରେ ତାଙ୍କ ନିଷ୍ଠାପରତା, ଅନୁରକ୍ତି ଓ ବିଚକ୍ଷଣତାକୁ ତାଙ୍କର ସବୁ ଗୁଣି ପ୍ରଶଂସା କରନ୍ତି । ସେ ପ୍ରତି କଥା ଠିକଣାଗି କରି ଦେଖୁଥିଲେ, କର୍ମୀମାନଙ୍କ ଅଭ୍ୟାସ ବି ବଦଳାଇ ଦେଉଥିଲେ ଓ ସେମାନଙ୍କ ଉପରେ ତାଙ୍କ ଅସାଧାରଣ ବ୍ୟକ୍ତିତ୍ୱର ପ୍ରଭାବ ପଡ଼ୁଥିଲା । 'ଗାନ୍ଧୀ ସେବାସଂଘ ପତ୍ରିକା'ର ୪ର୍ଥ ସଂଖ୍ୟାରୁ ଜଣାପଡ଼େ ଯେ ୧୯୩୮ ନଭେମ୍ବର ଶେଷ ସୁଦ୍ଧା ବରୀ ଶିକ୍ଷା କେନ୍ଦ୍ରରୁ ୨ ଦଫା ଗୁଣି ଶିକ୍ଷା ପାଇ ସାରିଲେଣି ଓ ସେତେବେଳେ ସେଠି ତୃତୀୟ ଦଫା ଗୁଣିଙ୍କ ତାଲିମ୍ ଚାଲିଛି, ଯେଉଁମାନେ ଶିକ୍ଷା ପାଇସାରିଲେଣି ଜଣକୁ ଛାଡ଼ି ଅନ୍ୟ ସମସ୍ତେ କାର୍ଯ୍ୟରେ ଲାଗିଗଲେଣି, କିଏ ସ୍ୱାଧୀନ ଭାବେ, କିଏ କାହା ଆନୁକୂଲ୍ୟରେ ।

"ଅଦ୍ୱୈତ ସରକାରଙ୍କ ରଙ୍ଗ ବିଭାଗରେ, ରାମମୋହନ 'ଚରଖା ସଂଘ'ରେ, ଈଶ୍ୱର ଖଣ୍ଡିଆରେ, ମଧୁ ରାହାମାରେ, ଶ୍ୟାମ ଓ ଗୋପୀ ଚକଣାରେ ରହି କାର୍ଯ୍ୟ କରୁଛନ୍ତି । ନିକୁଞ୍ଜ ଓ କୃଷ୍ଣ ସାମନ୍ତସିଂହାର କେନ୍ଦ୍ରରେ କାର୍ଯ୍ୟ କରୁଛନ୍ତି । ନୂଆ ଶିକ୍ଷାର୍ଥୀଙ୍କ ଭିତରୁ କୋରାପୁଟ୍ ଜିଲ୍ଲା କଂଗ୍ରେସ୍ କମିଟି ତରଫରୁ ୩ ଜଣ, ସୋରେ କଂଗ୍ରେସ୍ କମିଟି ତରଫରୁ ୩ ଜଣ ଓ ଭଦ୍ରଖରୁ ଜଣେ ପ୍ରାଥମିକ ଖଦୀ କାମ ଶିଖିବାକୁ ଆସିଛନ୍ତି ।"

## ତନ୍ତ ତିଆରି ଓ ବୁଣା ଶିକ୍ଷା

ସୂତଆଡ଼େ କାଟାଳି ସଂଖ୍ୟା ବଢ଼ୁଥାଏ କିନ୍ତୁ ପ୍ରଧାନ ଅଭାବ ଥାଏ ତନ୍ତୀ । ଯେଉଁମାନେ ତନ୍ତବୁଣି ପାରୁଥିଲେ ଅଥଚ ତାଙ୍କ ହାତରେ କାମ ନ ଥିଲା ସେମାନେ ଓସାରିଆ ଖଦୀ ବୁଣି ଜାଣି ନ ଥିଲେ । ତାଙ୍କୁ ଖୋଜି ଗୋଟେଇ ଡାକି ଆଣି ବଖରେ ବିନା ଖର୍ଚ୍ଚରେ 'ଠକଠକି'ରେ କାମ କରିବାକୁ ତାଲିମ୍ ଦିଆଗଲା, ବେଶି ବେଶି 'ପାନିଆ' ଓ 'ଠକଠକି' ତିଆରି କରି ସୂତଆଡ଼କୁ ଯୋଗାଇ ଦିଆଯାଉଥାଏ । କର୍ମୀମାନଙ୍କୁ ନିର୍ଦ୍ଦେଶ ଥାଏ ଯେ ପ୍ରତି କେନ୍ଦ୍ର ପାଖରେ ଥିବା ତମ୍ମ ସାହିରୁ ବା ହାଡ଼ି ସାହିରୁ ସେମାନେ ଗୋଟିଏ ଦୁଇଟି ଲୋକଙ୍କୁ ବାଛନ୍ତୁ ଓ ତନ୍ତବୁଣା ଶିଖିବାକୁ ସେମାନଙ୍କୁ କଟକ ପଠାଇଦିଅନ୍ତୁ । କଟକରେ 'କଟକଚଣ୍ଡୀ' ପାଖେ କଂଗ୍ରେସ୍ ସରକାର 'ମଧୁସୂଦନ ଗ୍ରାମୋଦ୍ୟୋଗ କେନ୍ଦ୍ର' ବସାଇଥାନ୍ତି, କଟକ ଜିଲା କେନ୍ଦ୍ରାପଡ଼ା ଅଞ୍ଚଳର ଗୁନ୍ଦୋଳ ଗ୍ରାମର ଶ୍ରୀ ଅକ୍ଷୟ କୁମାର ଚକ୍ରବର୍ତ୍ତୀ ତାର ପରିଚାଳକ ଥିଲେ । ସେଠି ତନ୍ତବୁଣା ଶିଖାଇବାକୁ ବିହାରରୁ ଜଣେ ଶିକ୍ଷକ ଆସିଥାନ୍ତି ଓ ବହୁତ ତନ୍ତ ଓ ମହୁବାକ୍ସ ତିଆରି ହେଉଥାଏ । କେତେ ଲୋକ ଆସି ତନ୍ତ ତିଆରି କରିବା ବି ଶିଖି

ଗ୍ଭଲିଗଲେ । ସେହି କେନ୍ଦ୍ରର ମାଗ୍ଭମ୍ ଡଥାଣ ଓ କାଗଜ ଡଥାଣ ଶାଖା କଟକରେ ଯୋଉଥା ସାହିରେ ଶ୍ରୀ ଗୁଣନିଧି ମହାନ୍ତିଙ୍କ ତତ୍ତ୍ୱରେ ବସିଥିଲା । ଗ୍ରାମୋଦ୍‌ଯୋଗ କେନ୍ଦ୍ର ୧୯୪୫ରେ ଭାଙ୍ଗିଗଲା ।

ତାଲିମ୍ ପାଇବା ପାଇଁ କେତେ କର୍ମୀ ଓ୍ୱାର୍ଦ୍ଧା ବି ଯାଉଥାନ୍ତି । ଗ୍ଭଟୁବାବୁ ଓ ଶ୍ରୀ ଶ୍ୟାମସୁନ୍ଦର ନାଏକ ଓ୍ୱାର୍ଦ୍ଧାରେ ଟ୍ରେନିଂ ପାଇ ୧୯୩୮ରେ ଫେରିଲେ ।

**ବାଉଁଶ ଚରଖା**

ଖଦୀର ପ୍ରସାର ବଢ଼ାଇବା ଲାଗି ଗୋପବାବୁ ଗୋଟିଏ ବାଉଁଶ ତିଆରି ଶସ୍ତା ଅରଟ ପ୍ରଚଳନ କରାଇଲେ । ତାକୁ ବରି ଆଶ୍ରମ ତିଆରି କରି ଯୋଗାଇଦିଏ ଓ ପ୍ରତି ଚରଖାର ଦାମ୍ ପଡ଼େ ଦଶ ଅଣା ।

**ଖଦୀ ସରଞ୍ଜାମ କାର୍ଯ୍ୟାଳୟ**

୧୯୩୮ରେ 'ଗାନ୍ଧୀ ସେବାସଂଘ' ତରଫରୁ ବରିରେ ଗୋପବାବୁ ଗୋଟିଏ 'ଖଦୀ ସରଞ୍ଜାମ କାର୍ଯ୍ୟାଳୟ' ବସାଇଲେ । ଶ୍ରୀ ମନମୋହନ ଚୌଧୁରୀ ତାହାର ତତ୍ତ୍ୱାବଧାନରେ ରହିଲେ । ଗାଁ ବଢ଼େଇ ଚଞ୍ଚଳ ଚଞ୍ଚଳ କାମ କରି ଜାଣନ୍ତି ନାହିଁ, ମଠ ମଠ କରନ୍ତି, ମାପରେ ଭୁଲ୍ କରନ୍ତି, ମୋଟାସୋଟା କରି ଲଙ୍ଗଳମୁଣ୍ଡା ହାଣିବା, ପିଢ଼ା କବାଟ ଚୌକାଠ କରିବା, ଏତିକ ଜାଣନ୍ତି । ପୁରୁଣା ଅମଳର ସୂକ୍ଷ୍ମ କାରିଗରୀ ଲୋପପାଇ ସାଉଥାଏ, ବଢ଼େଇମାନଙ୍କ ଯେତିକ ଜଣାଥାଏ ସେତିକରେ ତାଙ୍କ ରୋଜଗାର ଦିନକୁ ନ'ଅଣା, ଅଧିକା ନୁହେଁ । ସରଞ୍ଜାମ କାର୍ଯ୍ୟାଳୟରେ ସେମାନେ ଆଧୁନିକ ପ୍ରଣାଳୀରେ କାମ କରି ଶିଖିଲେ, ବହୁତ ରୋଜଗାର କଲେ । ସରଞ୍ଜାମ କାର୍ଯ୍ୟାଳୟରେ ଅରଟ, ତାକୁଡ଼ି, ମହୁବାକ୍ସ ଆଦି ବିବିଧ ଜିନିଷ ତିଆରି ହେଲା । ଖଦୀର ବିବିଧ ସରଞ୍ଜାମ ତିଆରି ହୋଇ ସେଠୁ ଅନ୍ୟାନ୍ୟ କେନ୍ଦ୍ରକୁ ପଠାଗଲା । ୧୯୪୨ର ଆନ୍ଦୋଳନବେଳେ 'ପୁଲିସ୍ କାମ' ଗ୍ଭଲିଲାବେଳେ ବରୀର ସରଞ୍ଜାମ କାର୍ଯ୍ୟାଳୟ ଧ୍ୱଂସ ହେଲା, ତାପରେ ଉଠିଗଲା କେନ୍ଦ୍ର ପାଟଣା ।

**ଗ୍ରାମସେବା ତାଲିମ୍ କେନ୍ଦ୍ର**

ସୂତାକଟା, ଖଦୀ ଓ ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟ କରିବା ଓ କରାଇବା ପାଇଁ ଗାଁରେ ଅହିଂସ ଶୋଷଣହୀନ ସ୍ୱାବଲମ୍ବୀ ସମାଜ ଗଠନ ପାଇଁ ଉଦ୍ୟମ କରିବା ପାଇଁ ବରିରେ 'ଗ୍ରାମସେବା ତାଲିମ୍ କେନ୍ଦ୍ର' ଆୟୋଜନ କରାଯାଇଥାଏ । ତାଲିମ୍ କେନ୍ଦ୍ର ୧୫ ଦିନର । ପ୍ରତି ଗ୍ରାମରୁ ଜଣେ ବରୁ ହୋଇ ତାଲିମ୍ ନେବେ । ୧୯୩୯ ବେଳକୁ

ବରୀରେ ଏପରି କେନ୍ଦ୍ର କାର୍ଯ୍ୟ କଲଣି ବୋଲି 'ଗାନ୍ଧୀ ସେବାସଂଘ ପତ୍ରିକା'ରୁ ଜଣାଯାଏ ।

## ହିନ୍ଦୀ ଶିକ୍ଷା—ଗୋପବାବୁଙ୍କ ଦ୍ୱାରା 'କର୍ମୀ' ତିଆରି

କର୍ମୀମାନେ ନାନା ପ୍ରକାର ଶିକ୍ଷା ପାଆନ୍ତି । ତାଙ୍କର ବିଦ୍ୟା, ସାଧାରଣଜ୍ଞାନ, ରାଜନୈତିକ ଚେତନା ବି ଖୁବ୍ ବଢ଼େ । ସେମାନେ ରାଷ୍ଟ୍ରଭାଷା ହିନ୍ଦୀ ବି ଶିଖିଲେ । ବରୀ ଆଶ୍ରମରେ, ବରୀ ପାଖ ଧାରପୁର ଗାଁରେ ବରୀ ଏମ୍. ଇ. ସ୍କୁଲ୍‌ରେ, ବରୀ ପାଖ ରାମଚନ୍ଦ୍ରପୁରରେ ହିନ୍ଦୀ ପଢ଼ାଇବା ପାଇଁ ଗୋପବାବୁଙ୍କ ଉଦ୍ୟମରେ କେନ୍ଦ୍ର ବସିଲା । ୭ ଅନସୂୟା ପ୍ରସାଦ ପାଠକ ଏଥିପାଇଁ ବ୍ୟବସ୍ଥା କଲେ । ପଣ୍ଡିତ ହୃଷିକେଶ ମିଶ୍ର ଓ ପଣ୍ଡିତ ରଘୁନାଥ ପୁରୋହିତ ହିନ୍ଦୀ ପଢ଼ାଇଲେ । କର୍ମୀମାନଙ୍କୁ ନାନା କାର୍ଯ୍ୟ କରିବାକୁ ଉପଦେଶ ଦିଆଯାଉଥାଏ । ଗୋପବାବୁ ଭାବୁଥିଲେ କର୍ମୀ ତିଆରି କରିବା ହିଁ ଅସଲ କାମ । କର୍ମୀ ହେଲେ ସେମାନେ କଣ କଣ ଖାଇବେ, କି ଉପାୟରେ ସ୍ୱାସ୍ଥ୍ୟ ଠିକ୍ ରଖିବେ, କଣ ପଢ଼ିବେ, କଣ ଅଭ୍ୟାସ କରିବେ, କେମିତି ନିଜ ମନକୁ ଓ ନିଜ ଚରିତ୍ରକୁ ମୋଡ଼ ଦେବେ, କି କି କାମ କରିବେ, କେଉଁ ବାଟରେ କାମ କରିବେ, ଏସବୁ ସେ ଚିନ୍ତାକରି କରି ଭାବୁଥିଲେ ଓ କର୍ମୀମାନଙ୍କୁ ନିଜେ ଗଢ଼ୁଥିଲେ । ସେମାନଙ୍କୁ ସେ ନିଜ ପୁଅ ପରି, ଭାଇ ପରି ଭଲ ପାଉଥିଲେ, ବସ୍ତୁତଃ ସେହିମାନେ ହିଁ ତାଙ୍କର ସବୁ । ସେମାନଙ୍କୁ ସେ ପଦେ ପଦେ ବାଟ ଦେଖାଉଥିଲେ । ତାଙ୍କ ନେତୃତ୍ୱର ଚମତ୍କାର-ବଳ ସେମାନଙ୍କ ଉପରେ କାର୍ଯ୍ୟ କରୁଥିଲା । ତାଙ୍କୁ ଉପଦେଶ ଦେବାକୁ ଥିଲେ ତାଙ୍କ 'ଧର୍ମ ଭଉଣୀ', ପ୍ରିୟବ୍ରତମ ଆଚାର୍ଯ୍ୟ ହରିହର, ତାଙ୍କ ପତ୍ନୀ ରମା ଦେବୀ ଓ ଅନ୍ୟ କେତେଜଣ ସହକର୍ମୀ ଯେଉଁମାନେ ଥିଲେ ତାଙ୍କ ଭାଇ ପରି । ସେ ଓ ଶ୍ରୀମତୀ ରମା ଦେବୀ କଣ କଣ କରୁଛନ୍ତି, କିପରି ଚଳନ୍ତି, ତାହା ନିଜେ କର୍ମୀମାନଙ୍କ ଶିକ୍ଷା ପାଇଁ ଜ୍ୱଳନ୍ତ ଆଦର୍ଶ ହୋଇଥାଏ । ସମସ୍ତେ ପ୍ରେରଣା ପାଉଥାନ୍ତି ।

ଆଶ୍ରମରେ ସମସ୍ତେ ଦିନକୁ ଅନ୍ତତଃ ୨।୩ ଘଣ୍ଟା ଯାକେ ସୂତା କାଟନ୍ତି, କେବେ କେବେ ଆହୁରି ବେଶି ବେଳ ୫।୬ ଘଣ୍ଟା ଯାକେ । ଗୋପବାବୁ ନିଜେ ଦିନକୁ ୫୦୦ ଗଜ ସୂତା କାଟୁଥିଲେ, ସେ ପ୍ରତିଦିନ ସୂତା କାଟନ୍ତି ।

୧୯୪୨ ଆନ୍ଦୋଳନ, ସବୁ ରଚନାତ୍ମକ କାର୍ଯ୍ୟକୁ ବ୍ୟାହତ କରିଦେଲା, ସରକାରୀ ଦମନ କାର୍ଯ୍ୟଦ୍ୱାରା କେନ୍ଦ୍ରସବୁ ଧ୍ୱଂସ ହେଲା, ନେତାମାନେ ଓ କର୍ମୀମାନେ ଆନ୍ଦୋଳନ କରି ଜେଲ୍ ଗଲେ ।

## ଚରଖା ସଂଘର ନବ ସଂସ୍କରଣ—'ଉତ୍କଳ ଖଦୀ ମଣ୍ଡଳ' ଗଠନ

ସେମାନେ ଜେଲ୍‌ରୁ ଫେରିଲାପରେ ୧୯୪୫ରେ ପୁଣି ସେ ରଚନାତ୍ମକ କାମ ଚାଲିଲା, ଆହୁରି ବଢ଼ିଲା, ବ୍ୟାପିଲା । ଗାନ୍ଧୀଜୀ ଜେଲ୍‌ରୁ ଫେରି ଖଦୀ ସଂସ୍ଥାକୁ ବିକେନ୍ଦ୍ରିତ କରାଇବାକୁ ନିଷ୍ପତ୍ତି ଘୋଷଣା କଲେ । ନୂଆ ନିଷ୍ପତ୍ତି ହେଲା ଯେ ଏଣିକି ପ୍ରତି ପ୍ରଦେଶରେ ଖଦୀ କାମ ପାଇଁ ସ୍ୱତନ୍ତ୍ର ସଂସ୍ଥା ରହିବ ଓ ସେ ସଂସ୍ଥା ସ୍ୱାବଲମ୍ବୀ ହେବ । ପ୍ରତି ପ୍ରଦେଶର ସେହି 'ଚରଖା ସଂଘ' ଆଉ 'ଅଖିଳ ଭାରତ ଚରଖା ସଂଘ'ର ପ୍ରାଦେଶିକ ଶାଖା ହେବ ନାହିଁ, 'ଅଖିଳ ଭାରତ ଚରଖା ସଂଘ'ଠୁ ସେ ଅଲଗା ହୋଇଯିବ । ୧୯୪୫ରେ ଭାରତରେ ପୁଣି 'ଗାନ୍ଧୀ ଜୟନ୍ତୀ' ପଡ଼ୁଥାଏ । ସେହି ଉପଲକ୍ଷରେ ଗାନ୍ଧୀଜୀଙ୍କୁ ଭେଟି ଦେବାପାଇଁ ଓଡ଼ିଶାରୁ ସୂତାଭେଟି ସଂଗ୍ରହ କରାଯାଉଥାଏ । ୨ ମାସରେ ପ୍ରାୟ ଟ ୫୦,୦୦୦-୦୦ ଚାନ୍ଦା ଉଠିଥାଏ । ସେହି ଚାନ୍ଦା ଟଙ୍କାକୁ ମୂଳଧନ କରି ଗୋଟିଏ ପାଣ୍ଠି ଗଢ଼ା ହେଲା । ସେ ପାଣ୍ଠି ଉପରି ଖର୍ଚ୍ଚ କରାଯିବ ସେଥିପାଇଁ ଗୋଟିଏ କମିଟି ତିଆରି ହେଲା, ତାର ସଭାପତି ହେଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ । ସଦସ୍ୟମାନେ ହେଲେ ଶ୍ରୀମତୀ ରମା ଦେବୀ, ସର୍ବଶ୍ରୀ ମନମୋହନ ଚୌଧୁରୀ, ଗୋକୁଳାନନ୍ଦ ମହାନ୍ତି, ବିଶ୍ୱନାଥ ପଟ୍ଟନାୟକ, ବୈଦ୍ୟନାଥ ଦାସ, ପଦ୍ମନାଭ ରାୟ, ବୀରବର ରଥ, ତ୍ରୈଲୋକ୍ୟନାଥ ଦାସ । ୨୦-୪-୪୬ରେ ବରୀରେ ସମିତିର ବୈଠକ ବସିଲା । ଶ୍ରୀ ଗୋକୁଳାନନ୍ଦ ମହାନ୍ତି ସଦସ୍ୟ ରହିବାକୁ ମନା କଲେ ଓ ତାଙ୍କ ସ୍ଥାନରେ ଶ୍ରୀ ନୀଳାମ୍ବର ଦାସ ସଦସ୍ୟ ରହିଲେ । ନିଷ୍ପତ୍ତି ହେଲା ଯେ ସେହି ସମିତିର ନାଁ ରହିବ "ଉତ୍କଳ ଖଦୀ ମଣ୍ଡଳ", ଅଖିଳ ଭାରତ ଚରଖା ସଂଘ ବିକେନ୍ଦ୍ରିତ ହେଉଥିବାରୁ ତାର ଓଡ଼ିଶା ଶାଖାକୁ ଭାଙ୍ଗି ଦିଆଯିବ, ତାର ସବୁ କାର୍ଯ୍ୟର ଦାୟିତ୍ୱ ନେବ 'ଉତ୍କଳ ଖଦୀ ମଣ୍ଡଳ', 'ଅଖିଳ ଭାରତ ଚରଖା ସଂଘ'ଠୁ ତାହା ଗୋଟିଏ ଅଲଗା ଓ ସ୍ୱତନ୍ତ୍ର ସଂସ୍ଥା ହେବ । ଗୃନ୍ଦା ଉଠି "ଉତ୍କଳ ଖଦୀ ମଣ୍ଡଳ" ଗଢ଼ା ହେଲା । ୧୯୪୭ରେ ବି ତାହା କାର୍ଯ୍ୟକାରୀ ହୋଇପାରି ନଥାଏ ଓ ଅ: ଭା: ଚରଖା ସଂଘର ପ୍ରାଦେଶିକ ଶାଖା ଓଡ଼ିଶାରେ ଖଦୀ କାମ କରୁଥାଏ । ସେ କାର୍ଯ୍ୟ 'ସ୍ୱାବଲମ୍ବୀ ଖଦୀ ସମିତି' ବୁଝୁଥାନ୍ତି । ୧୯୪୬ରେ ଗାନ୍ଧୀଜୀ 'ଉତ୍କଳ ଖଦୀ ମଣ୍ଡଳ' ଗଢ଼ା ହେବା ପାଇଁ ଅନୁମତି ଦେଲେ ।

## ଅ: ଭା: ଚରଖା ସଂଘରୁ ଗୋପବାବୁଙ୍କ ଇସ୍ତଫା

ଗୋପବାବୁ 'ଉତ୍କଳ ଖଦୀ ମଣ୍ଡଳ'ର ସଭାପତି ଓ ମୁଖ୍ୟ ପରିଚାଳକ ହୋଇଥିବାରୁ ସେ "ଅଖିଳ ଭାରତ ଚରଖା ସଂଘ"ର ଟ୍ରଷ୍ଟି ପଦରୁ ଇସ୍ତଫା ଦେଲେ । ଦିଲ୍ଲୀରେ ୯-୧୨-୪୬ରେ ଅ: ଭା: ଚରଖା ସଂଘର ବୈଠକରେ ଯୋଗଦେଇ ସେଇଠି ସେ ଇସ୍ତଫା ଦେଲେ ।

ସେତେବେଳେ ଓଡ଼ିଶାର ଲାଟ୍‌ସାହେବ୍ ଥିଲେ ଶ୍ରୀ କୈଳାସ ନାଥ କାଟ୍‌ଜୁ । ସେ ଖଦୀପ୍ରେମୀ ଥିଲେ । ତାଙ୍କ ପ୍ରେରଣାରେ କଟକରେ ଲାଟ୍ ଭବନରେ (ସେତେବେଳେ ଲାଲ୍‌ବାଗ୍ କୋଠିରେ ଲାଟ୍ ଭବନ ହୋଇଥିଲା) ୧୯୪୭ ଅକ୍ଟୋବର ୨୧ରେ ସୂତାକଟା କେନ୍ଦ୍ରଟିଏ ଖୋଲିଲା, ପ୍ରତିଦିନ ୪୦।୫୦ ଜଣ ଲୋକ ସେଠିକୁ ଯାଇ ସୂତାକଟା ଶିଖିଲେ ।

ଗୋପବାବୁଙ୍କ ପୈତୃକ ଘରେ କଟକରେ ଆଉ ଗୋଟିଏ ସୂତାକଟା କେନ୍ଦ୍ର ରହିଥାଏ ।

ଭଦ୍ରଖରେ ଡା କରମ ଜି କଲ୍ୟାଣୀଜୀଙ୍କର 'ବାଳାଶ୍ରମ'ରେ ସୂତାକଟା ଓ ତନ୍ତରେ ଲୁଗାବୁଣା ଶିକ୍ଷା ହେଉଥାଏ । ଲୁଗାବୁଣା ଶିଖିବାକୁ ଅନ୍ୟାନ୍ୟ ଆଶ୍ରମ କର୍ମୀମାନଙ୍କୁ ସେଠାକୁ ପଠାହେଉଥାଏ । ସେ ଅନୁଷ୍ଠାନର ନାମ ଥିଲା "ଭଦ୍ରଖ ବୟନ ବିଦ୍ୟାଳୟ" ଓ "ଗାନ୍ଧୀ ସେବାସଂଘ"ର ଟଙ୍କାରେ ଶ୍ରୀ ଈଶ୍ୱରଲାଲ ବ୍ୟାସ ତାକୁ ଖୋଲିଥିଲେ । ସେଠି ଲୁଗାବୁଣା ଶିଖାଉଥାନ୍ତି ଓ ସେ ଅନୁଷ୍ଠାନକୁ ଚଳାଉଥାନ୍ତି ଶ୍ରୀ କପିଳ ଚରଣ ଦାସ । ସେ ୧୯୪୭ରେ ଓ୍ୱାର୍ଦ୍ଧାରୁ ଲୁଗାବୁଣା ଶିଖିଥିଲେ, ତାଙ୍କ ସଙ୍ଗେ ଅନ୍ୟ ଦୁଇଜଣ ମଧ୍ୟ ଲୁଗାବୁଣା ଶିଖିବାକୁ ଓ୍ୱାର୍ଦ୍ଧା ପଠାହୋଇଥିଲେ । ଏ ଅନୁଷ୍ଠାନରେ ଶିକ୍ଷାକାଳ ୬ ମାସ ଥିଲା । ୧୯୪୮ ରେ ଏଠି ୧୩ ଜଣ ଛାତ୍ର ବୃତ୍ତି ପାଇ ଲୁଗା ବୁଣା ଶିଖୁଥାନ୍ତି ।

କୋରାପୁଟ୍ ଜିଲ୍ଲାର କୁଜେନ୍ଦ୍ରୀରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଯେଉଁ କର୍ମକେନ୍ଦ୍ର ବସାଇଥିଲେ, ସେଠି ଗୋଟିଏ ବ୍ୟାପକ ଯୋଜନା କାର୍ଯ୍ୟକାରୀ କରାଯାଉଥାଏ । ତାହାଛଡ଼ା ୧୯୪୭ ମାର୍ଚ୍ଚରୁ ୩ ମାସ ପର୍ଯ୍ୟନ୍ତ ଏଠି ଗୋଟିଏ ଶିକ୍ଷା ଶିବିର ଚାଲିଲା, ୨୫ ଜଣଙ୍କୁ ଶିକ୍ଷା ଦିଆଗଲା । ଶିକ୍ଷାର ବିଷୟମାନଙ୍କ ଭିତରେ ଥିଲା କପା ଖୁଆଇବା, ତୁଳା ଭିଣିବା, ସୂତା କାଟିବା, ଜଙ୍ଗଲରୁ 'ଶରକାଠି' ଓ ବାଉଁଶ ଆଦି ଆଣି 'ପାନିଆ' ବାନ୍ଧିବା, ପାଠ ପଢ଼ିବା, ଜାତୀୟ ସଙ୍ଗୀତ ଗାଇବା, ଡ୍ରିଲ୍, ନାଚ ଆଦି ।

ସେତେବେଳକୁ ଓଡ଼ିଶାରେ ୧୩ଟି 'ସ୍ୱାବଲମ୍ବୀ କେନ୍ଦ୍ର' ଚାଲୁଥାଏ । ଜିଲ୍ଲାଓ୍ୱାରି ଦେଖିଲେ କଟକ ଜିଲ୍ଲାରେ-୪, ବାଲେଶ୍ୱର-୩, ପୁରୀ-୨, ଗଞ୍ଜାମ-୧, ସମ୍ବଲପୁର-୧ ।

ଗୋପବାବୁ ଖଦୀ ପ୍ରଚାର କାର୍ଯ୍ୟରେ ଲାଗି ପଡ଼ିଥାନ୍ତି । ୧୯୪୭ ସେପ୍ଟେମ୍ବରରେ ୧୨ ବିଶ୍ୱା ଜମିରେ ସେ 'କାମ୍ବୋଡ଼ିଆ କପା' ତଳି ପକାଇଲେ, ଅକ୍ଟୋବରରେ ରୋଇଲେ, ଫେବୃଆରି ଶେଷବେଳକୁ କପା ଫୁଲ ଫୁଟିଲା । ସେ

ହେଲା ତାଙ୍କର ଗୋଟିଏ ଉଲ୍ଲାସକର ସଫଳ 'ଏକ୍‌ସପେରିମେଣ୍ଟ'। ୧୯୪୭ରେ ସେ ଅତି ଆନନ୍ଦରେ ସେ ବିଷୟରେ ନିଜ ଅଭିଜ୍ଞତା ବର୍ଣ୍ଣନା କରି ଗ୍ରାମସେବକ, ମାର୍ଚ୍ଚ, ୪୭, ୩ୟ ସଂଖ୍ୟାରେ ଲେଖାଟିଏ ଲେଖିଲେ, ଆରମ୍ଭ "ଆମ କପା ଫୁଟିଲାଣି"। କାମ୍ବୋଡ଼ିଆ କପା ଗୋଟିଏ ଚମତ୍କାର କପା, ଖାଲି ତାକୁ ଠିକ୍ ବାଗରେ ଖାଇରେ ଖୁଆଇବା ଯେଉଁ ଟିକିଏ ଅସୁବିଧା ଥାଏ, ସେ ସେଥିପାଇଁ ଉପାୟ ଭାବୁଥାନ୍ତି ଓ ଚେଷ୍ଟା କରୁଥାନ୍ତି। ସେ ତାକୁ ସୁଧାରି ଆଗକୁ ଚଳାଇଥିଲେ।

୧୯୪୭ରୁ ସେ ଜାଣି ଜାଣି ଅନ୍ଧାରରେ ସୂତାକଟା ଅଭ୍ୟାସ କଲେ। ସେ ଭାବିଲେ, ସେପରି କଲେ ଖୁବ ଲାଭ, କେରୋସିନ ଖର୍ଚ୍ଚ ହେବ ନାହିଁ, ଯେଉଁମାନଙ୍କର ଆଲୁଅ ନ ଥାଏ ସେମାନେ ବି କାମ କରି ପାରିବେ, ସବୁ ଅବସ୍ଥାରେ ସବୁଠି ସୂତା କାଟି ହେବ। ପୂର୍ବେ ତାଙ୍କ ଅଭ୍ୟାସ ଥିଲା ଦିନରେ ପଦାରେ କାମ, ସନ୍ଧ ହେଲେ ବଳଣା ବଳି ଥୋଇ ଦିଅନ୍ତି, ପାହାନ୍ତାକୁ ସେତକ ବଳଣାରେ ସୂତା କାଟନ୍ତି। ହଠାତ୍ ତାଙ୍କର ଅନ୍ଧାରରେ ସୂତା କାଟିବାକୁ ମନ ହେଲା। ଦେଖିଥିଲେ, ୧୯୨୧-୨୨ରେ ଅନ୍ଧ ଝିଅଟିଏ ଅଲକାଶ୍ରମକୁ ସୂତାକାଟି ଆଣି ଦେଉଥିଲା, ଅଉ କେହି କେହି ବି କାଟୁଥିଲେ। ସେ ଅଭ୍ୟାସ କଲେ। କର୍ମୀମାନେ ଅଭ୍ୟାସ କରନ୍ତୁ ବୋଲି ଉପଦେଶ ଦେଇ, ଅନ୍ଧାରରେ ସୂତା କାଟିବା ବାଗ ବତାଇ 'ଗ୍ରାମ ସେବକ' ୭ମ ସଂଖ୍ୟା ଜୁଲାଇ ୧୯୪୭ରେ ସେ ଲେଖିଛନ୍ତି—

"...ଚଣମା କାଢ଼ି ସୂତା କାଟିଲି। ଆଖି ବୁଜିବାକୁ ଚେଷ୍ଟା କଲି। ରମା ଦେବୀ ଘରେ ଅନ୍ୟ କାମରେ ଲଣ୍ଠନ ଟିକିଏ ଏଣେତେଣେ ନେଇଗଲେ କଟା ବନ୍ଦ ନ କରି କାଟିଲି। କ୍ରମେ ଅଭ୍ୟାସ ହେଲା। ସାହସ ହେଲା। ସୂତା କାଟିଯାଉଛି। ମଜବୁତ୍ ହେଉଛି, ସମ୍ଭବତଃ ବେଶି ହେଉଛି। ସୂତାର ନମ୍ବର ଠିକ ରହୁଛି। ଗତି ଟିକିଏ କମ୍ ହେଉଛି, ବେଶି କମ୍ ନୁହେଁ, ଘଣ୍ଟାକେ ୪୦୦ ଜାଗାରେ ୩୦୦ରୁ ୩୫୦ ଭିତରେ ରହୁଛି।"

ଉତ୍କଳ ଖଦୀ ମଣ୍ଡଳ କାମ ଆରମ୍ଭ ହେଲା। "ଅଃ ଭାଃ ଚରଖା ସଂଘ" ଯେଉଁ ଲକ୍ଷେ ଟଙ୍କା ଦେଇଥିଲେ ଓ ଓଡ଼ିଶାରେ କାମ ଚାଲିଥିଲା, ତା ହିସାବ ବୁଝାଇ ଦିଆଗଲା।

'ଗାନ୍ଧୀ ସେବାସଂଘ'ର 'ନବଜୀବନ ପାଣ୍ଠି' ବାର୍ଷିକ ୧୨ ପର୍ସେଣ୍ଟ୍ ସୁଧରେ 'ଉତ୍କଳ ଖଦୀ ମଣ୍ଡଳ'କୁ ଟ ୭୦୦୦-୦୦ ଉଧାର ଦେଲେ। ସଙ୍ଗେ ସଙ୍ଗେ,

(୧) ଖଦୀର ଉତ୍ପାଦନ ଓ ବିକ୍ରି ସମ୍ବନ୍ଧୀୟ ବ୍ୟବସାୟୀ କାମ ବନ୍ଦ କରି ଦିଆଗଲା, ଖାଲି, ବାକି ପଡ଼ିଥିବା ମାଲ୍ ବିକ୍ରି କରିବାପାଇଁ କଟକ, ବାଲେଶ୍ୱର ଓ ବ୍ରହ୍ମପୁରର କେନ୍ଦ୍ର ଗୁଡ଼ିକ ଖୋଲା ରହିଥିବ।

(୨) ଝେଗାକୁ ସ୍ୱାବଲମ୍ବୀ କରିବା କାର୍ଯ୍ୟରେ ସବୁ ଶକ୍ତି ବିନିଯୋଗ କରାଗଲା।

(୩) ମଜୁରି ଦେଇ ସୂତା କଟାଇବା ବନ୍ଦ ହେଲା।

୧୯୪୭ ଆଗରୁ 'ସ୍ୱାବଲମ୍ବୀ କାମ' କହିଲେ ବୁଝାଉଥିଲା 'ସୂତାକଟା ଭୁଲାଇଣା ଶିଖାଇବା'। କିନ୍ତୁ କଣ୍ଟ୍ରୋଲ୍ ଅମଳରେ କଣ୍ଟ୍ରୋଲ୍ ରେଟ୍‌ରେ ମିଲ୍ ସୂତା କିଣି ବୁଣିବାଦ୍ୱାରା ତନ୍ତୀମାନେ ବେଶି ଲଭ କଲେ, ଝେଢ଼ ବୁଣିବାକୁ ରାଜି ହେଲେ ନାହିଁ। ତେଣୁ କର୍ମୀମାନେ ଭଲ ସୂତା ତିଆରି କରି ଶିଖନ୍ତୁ ଓ ଲୁଗା ବୁଣି ଶିଖନ୍ତୁ ବୋଲି ଜୋର୍ ଦିଆଗଲା। ଉତ୍ପାଦନ ଓ ସ୍ୱାବଲମ୍ବନ କାମ କରୁଥିବା ସବୁ କର୍ମୀଙ୍କୁ ତାଲିମ୍ ପାଇଁ ପଠାଇବା ବନ୍ଦୋବସ୍ତ ହେଲା।

୧୯୪୮ ଆରମ୍ଭରୁ 'ଉତ୍କଳ ଖଦୀ ମଣ୍ଡଳ' କାମ କଲେ। ସେତେବେଳେ 'ସ୍ୱାବଲମ୍ବନ କେନ୍ଦ୍ର'ର କର୍ମୀଙ୍କ ପାଇଁ ନୂଆ ବ୍ୟବସ୍ଥା ହେଲା। କର୍ମୀ ବୁଣି ଝେଦୀ ବିକିବେ, ଦୈନିକ ୬ ଘଣ୍ଟା ବୁଣିବେ, ମାସକୁ ଅନ୍ତତଃ ୬୦।୬୫ ଗଜ, ଯାହା ଲଭ ମିଳିବ ତହିଁରେ ଚଳିବେ, ସ୍ଥାନୀୟ ଲୋକଙ୍କଠୁ ସାହାଯ୍ୟ ଭିକ୍ଷା ବି କରିବେ। ଚଳିବା ପାଇଁ ଯାହା ନିଅଣ୍ଟ ପଡ଼ିବ କେବଳ ସେତିକି ତାଙ୍କୁ ସାହାଯ୍ୟ ସ୍ୱରୂପରେ ଦେବେ 'ଉତ୍କଳ ଝେଦୀ ମଣ୍ଡଳ'। କେନ୍ଦ୍ରର କର୍ମୀଙ୍କର ଅଧିକାଂଶ ବେଳ ଖଦୀ ବୁଣାରେ କଟେ। ଅନ୍ୟବେଳେ ସେମାନେ ସୂତାକଟା ପ୍ରଚାର କରନ୍ତି, ଗାଁ ସଫେଇ କରନ୍ତି, ବିବିଧ ରଚନାତ୍ମକ କର୍ମ କରନ୍ତି। କିନ୍ତୁ 'ସ୍ୱାବଲମ୍ବୀ କେନ୍ଦ୍ର' ଝେଦୀ ଉତ୍ପାଦନ ଦିଗରୁ ଆଶାନୁରୂପ ସାଫଲ୍ୟ ପାଇଲା ନାହିଁ, ତତ୍ପରେ—ସରକାରୀ ଖଦୀ ବୋର୍ଡ୍ ଗଢ଼ା ହେଲାପରେ ଓ ସେ ଝେଦୀ ଉତ୍ପାଦନ ଓ ବିକ୍ରି ଭାର ନେଲାପରେ ଓ ବେସରକାରୀ ଉତ୍କଳ ଝେଦୀ ମଣ୍ଡଳ 'ସ୍ୱାବଲମ୍ବୀ' ପନ୍ଥା ଆଶ୍ରୟ କରିବାରୁ 'ସ୍ୱାବଲମ୍ବୀ କେନ୍ଦ୍ର'ଗୁଡ଼ିକ କାଳକ୍ରମେ ନିଷ୍କ୍ରିୟ ହୋଇଗଲା।

ଆଗରୁ ତ ବିବିଧ ରଚନାତ୍ମକ କାର୍ଯ୍ୟ ପାଇଁ କେତୋଟି ଗାଁରେ 'କେନ୍ଦ୍ର' ଗୁଡ଼ିଏ ଥିଲା। ଏବେ ଆହୁରି ହେଲା। କପାଗୃଷ, ସୂତାକଟା, ଝେଦୀ ଗ୍ରାମୋଦ୍‌ଯୋଗ, ନୂତନ ମୂଲ୍ୟବୋଧ ପ୍ରଚାର ଆଦି ରଚନାତ୍ମକ କାର୍ଯ୍ୟ, ପରେ ଭୂଦାନ ଆଦି ଗୋପବାବୁଙ୍କ କର୍ମମୟ ଜୀବନର ନାନା ସାଧନା ସହିତ ଏଇ 'କେନ୍ଦ୍ର'ମାନେ, ତାର କର୍ମୀମାନେ, ତହିଁ ସହିତ ସମ୍ପୃକ୍ତ ଲୋକେ ଘନିଷ୍ଠଭାବେ ସଂଶ୍ଳିଷ୍ଟ।

ବଙ୍ଗର 'ସେବାଘର' ସେତେବେଳେ 'କସ୍ତୁରବା କେନ୍ଦ୍ର', ତାହାଛଡ଼ା ବେରବୋଇ, ଆଳି. ଗଣେଶ୍ୱରପୁର, ଚମ୍ପାପୁର, ବାଡ଼ପିପ୍‌ପଳ, ସୋରୋ, ଡେଲଙ୍ଗ, ତଣ୍ଡିକଣା, ଓଲାସନ, ଟାଙ୍ଗିଯାନ, ଅଗରପଡ଼ା, ଚେଲୋ, ଛୋଁଆ ସ, ନାଷ୍ଟାମରେ ପଞ୍ଚଭୂଧ, କାଟେକାଳାଟରେ ଆଉ ବ୍ରାହ୍ମଣୀ ଗାଁ, ନିଙ୍କାରେଇ, ମିଶ୍ର ମୁଣ୍ଡେଙ୍କା, ମାଳକାଣୁପୁର

ଆଉ କେନ୍ଦ୍ର ବହୁତ ଆଗରୁ ତ ଥିଲା, ୧୯୪୧ରେ ହୋଇଥିଲା କୁକେନ୍ଦ୍ର । 'ଗ୍ରାମସେବକ' ପତ୍ରିକାରୁ ମିଳୁଛି ଯେ ୧୯୪୮ ବେଳକୁ ନିମ୍ନୋକ୍ତ କେନ୍ଦ୍ରଗୁଡ଼ିକ ଥିଲା ।

## ସମଗ୍ର ଗ୍ରାମସେବା କେନ୍ଦ୍ର

'ସମଗ୍ର ଗ୍ରାମସେବା କେନ୍ଦ୍ର' କର୍ମୀମାନେ ଅ: ଭା: ଚରଖା ସଂଘରୁ ମାସିକ ସାହାଯ୍ୟ ପାଉଥିଲେ ।

(୧) ୧୯୪୫ରୁ କଟକ ଜିଲ୍ଲା କିଶୋରନଗର ପାଖ ମଲ୍ଲିକାପୁରରେ ଶ୍ରୀ ବିନୋଦ୍ କାନନ୍‌ଗୋଙ୍କ କେନ୍ଦ୍ର ।

(୨) ୧୯୪୫ରୁ କଟକ ଜିଲ୍ଲା ଚନ୍ଦଣା ଗାଁରେ ଶ୍ରୀ ବୈଦ୍ୟନାଥ ଦାସଙ୍କ କେନ୍ଦ୍ର

(୩) ବାଲି ପାଖ ଉତଲାଂରେ ୧୯୪୮ ଆରମ୍ଭରୁ ଶ୍ରୀ ଶଶିଶେଖର ଦାସଙ୍କ କେନ୍ଦ୍ର ।

(୪) ସମ୍ବଲପୁର ଜିଲ୍ଲାରେ ସମଲେଇପଦରରେ ବିଶିଷ୍ଟ ରଚନାତ୍ମକ କର୍ମୀ ଶ୍ରୀ ରାମଚନ୍ଦ୍ର ପୁରୀଙ୍କ କେନ୍ଦ୍ର । ୧୯୪୮ ମେ' ବେଳକୁ ସେଠି ଜଣେ ବୁଣା କର୍ମୀ, ୨ ଜଣ ନାରୀ କର୍ମୀ ।

(୫) ୧୯୪୯ରୁ ବଲାଙ୍ଗିର ଜିଲ୍ଲା ସଇଁଲୋ ଥାନାରେ କମ୍‌ସର୍‌ରେ ଶ୍ରୀ ଅଲେଖ ପାତ୍ରଙ୍କ ଘର ।

## ଆଦିବାସୀ ସେବା କେନ୍ଦ୍ର

୧୯୪୧ରୁ ଏକମାତ୍ର କୁକେନ୍ଦ୍ର । ୧୯୪୮ ମେ' ସୁଦ୍ଧା ଅନ୍ୟ କେଉଁଠି ନ ଥାଏ । ସେତେବେଳେ କୁକେନ୍ଦ୍ରରେ ଏକା ୫ ଖଣ୍ଡ ତନ୍ତ ଚାଲୁଥାଏ, ଅନ୍ୟାନ୍ୟ କାର୍ଯ୍ୟ ତ ଥାଏ ।

## 'ସ୍ୱାବଲମ୍ବୀ' କେନ୍ଦ୍ର

୧୯୪୮ ମେ' ବେଳକୁ ଏଥିରୁ ଦୁଇ ପ୍ରକାର ଥାଏ, (୧) 'ବୁଣା କେନ୍ଦ୍ର', ଯେଉଁଠି ସ୍ୱାବଲମ୍ବୀ ଖଦୀକର୍ମୀଙ୍କ ମୁଖ୍ୟ କାର୍ଯ୍ୟ ଖଦୀ ବୁଣି ବିକିବା, (୨) 'ଖଦୀ ଓ ଗ୍ରାମସେବା' କେନ୍ଦ୍ର, ଯେଉଁଠି ଖଦୀବୁଣା ଓ ବିକ୍ରି ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟ ମଧ୍ୟ ପ୍ରାଧାନ୍ୟ ପାଏ । ସେତେବେଳେ ପ୍ରଥମ ପ୍ରକାରର ୭ଟି, ପଛେ ସେଥି ୧୯୪୮ରେ ଆଉ ୫ଟି, ମୋଟ ୧୨ଟି ଓ 'ଖଦୀ ଓ ଗ୍ରାମସେବା କେନ୍ଦ୍ର' ୧୨ଟି 'ଉତ୍କଳ ଖଦୀମଣ୍ଡଳ' ତତ୍ତ୍ୱାବଧାନରେ ଥିଲା :—

| କ୍ରମିକ | ଜିଲ୍ଲା | ଗ୍ରାମ | କର୍ମୀ |
|---|---|---|---|
| ୧ | ପୁରୀ | ରେଣ୍ଟ | ଶ୍ରୀ ରଘୁନାଥ ବାରିକ |
| ୨ | କଟକ (ପାଟକୁରା ଥାନା | ଅଗରବନ୍ଧା | ଶ୍ରୀ ଅନ୍ତୁର ଜେନା |
| ୩ | କଟକ (କେନ୍ଦ୍ରାପଡ଼ା) | ଇନ୍ଦ୍ରପୁର | ଶ୍ରୀ ଅଜୟ ଚନ୍ଦ୍ର ଘୋଷ |
| ୪ | କଟକ | କଟକ ଲଟ ଭବନ | ଶ୍ରୀ ଚକ୍ରଧର ମହାପାତ୍ର |
| ୫ | ବାଲେଶ୍ୱର (ଭଦ୍ରଖ) | ଫୁଲ୍‌ଗାଡ଼ିଆ | ଶ୍ରୀ ମାୟାଧର ଖୁଣ୍ଟିଆ |
| ୬ | ବାଲେଶ୍ୱର (ଭଦ୍ରଖ) | ଛରମ୍ | ଶ୍ରୀ ଗଣେଶ୍ୱର ତ୍ରିପାଠୀ |
| ୭ | ସମ୍ବଲପୁର | ସମଲେଇପଦର | ଶ୍ରୀ କୁବେର ଗିରି |
| (୧୯୪୮ରେ, ମେ' ପରେ) | | | |
| ୮ | ଗଞ୍ଜାମ | ଯାଜା | ଶ୍ରୀ ରାମମୋହନ ଦାସ |
| ୯ | ପୁରୀ | ମଧୁବନ | ଶ୍ରୀମତୀ ଲକ୍ଷ୍ମୀ ଦେବୀ |
| ୧୦ | କଟକ | କଲ୍ୟାଣପୁର | ଶ୍ରୀ ନନ୍ଦ କିଶୋର ଦାସ |
| ୧୧ | କଟକ | ବ୍ରାହ୍ମଣୀ ଗାଁ | ଶ୍ରୀ ବୈଦ୍ୟନାଥ ଦାସ |
| ୧୨ | କଟକ | ସିଂପୁର | ଶ୍ରୀ ନିଶାକର ଦାସ |

## ଖଦୀ ଓ ଗ୍ରାମସେବା କେନ୍ଦ୍ର

| | | | |
|---|---|---|---|
| ୧ | କଟକ | ଏରସମା | ଶ୍ରୀମତୀ ବେଲ ଦେବୀ |
| ୨ | କଟକ | ବାଗଲପୁର | ଶ୍ରୀମତୀ କ୍ଷେତ୍ରମଣି ଦେବୀ |
| ୩ | ପୁରୀ (ଗୋପ) | ସୁବର୍ଣ୍ଣପୁର | ଶ୍ରୀମତୀ ସୁବର୍ଣ୍ଣ ଦେବୀ |
| ୪ | ପୁରୀ | ସାରଂଯୋଡ଼ି | ଶ୍ରୀମତୀ ଲକ୍ଷ୍ମୀ ଦେବୀ |
| ୫ | ପୁରୀ | ସେବାସଦନ | |
| ୬ | ପୁରୀ | ସାକ୍ଷୀଗୋପାଳ | ଶ୍ରୀମତୀ ସୁନାମଣି ଦେବୀ |
| ୭ | ପୁରୀ (କାକଟପୁର) | ଦନ୍ଧୁଖିଆ | ଶ୍ରୀମତୀ ବିମଳା ଦେବୀ |
| ୮ | ଅନୁଗୁଳ | ଅନୁଗୁଳ | ଶ୍ରୀମତୀ ଅମୃତ ଦେବୀ<br>ଶ୍ରୀମତୀ ସୀତା ଦେବୀ |
| ୯ | ଗଞ୍ଜାମ (ଚିକିଟି) | ସୁବର୍ଣ୍ଣପୁର | ଶ୍ରୀମତୀ ଶୋଭା ଦେବୀ |
| ୧୦ | କୋରାପୁଟ୍ | ନନ୍ଦପୁର | ଶ୍ରୀମତୀ ଚନ୍ଦ୍ରଭାନୁ ଦେବୀ |
| ୧୧ | ବାଲେଶ୍ୱର | ସୋରେ | ଶ୍ରୀମତୀ କୃଷ୍ଣପ୍ରିୟା ଦେବୀ |
| ୧୨ | ସମ୍ବଲପୁର | ସମଲେଇପଦର | ଶ୍ରୀମତୀ ଅମୃତ ଦେବୀ |

ଅନୁଗୁଳ କେନ୍ଦ୍ର ନାୟକର୍ମୀ ଉହେଁ ସେଠି 'ବାଳିକା ଶିକ୍ଷା ମନ୍ଦିର'ଟିଏ ବି ଖୋଲିଥିଲେ ।

ଖଦୀର ପ୍ରସାର ବହୁତ ବଢ଼ିଗଲା । ଶିଳଫ୍ କାମରେ ବି ସୂତାକଟା ପ୍ରୟୋଗ ହେଲା । ବ୍ରହ୍ମଗିରି ଅଞ୍ଚଳରେ ବଢ଼ି ହେଲା, କର୍ମୀମାନେ ଗଲେ । ସରକାର ଟ ୪୦୦୦-୦୦ ଦେଲେ । କର୍ମୀ ଗୋଟାଏ ଗୋଟାଏ ଅଞ୍ଚଳରେ ତୂଳା ଯୋଗାନ୍ତି, ଅରଟ ଦିଅନ୍ତି, ଲୋକେ ସୂତା କାଟିଲେ ଟ ୧-୦୦ର ସୂତାକୁ ଟ ୪-୦୦ ଦିଆହୁଏ, ଲୋକଙ୍କ ଆତ୍ମବିଶ୍ୱାସ ଓ ଆତ୍ମମର୍ଯ୍ୟାଦାରେ ଧକ୍କା ରଖାହୁଏ । ସେହିପରି କରାହୋଇଥିଲା ତାଳଚେର 'ହିଜରତ୍' ବେଳେ, ୧୯୩୮ରେ ଯେତେବେଳେ ତାଳଚେରରୁ ୧୫,୦୦୦ ଶରଣାର୍ଥୀ ଅନୁଗୁଳକୁ ପଳାଇ ଆସି ଚନ୍ଦନୋଟି କ୍ୟାମ୍ପ୍‌ରେ ଗଦା ହେଲେ ।

## 'ଗ୍ରାମସେବକ ପତ୍ରିକା'

ଖଦୀ ଥିଲା ତାଙ୍କ ଆଖିରେ ସବୁ ରଚନାତ୍ମକ କାର୍ଯ୍ୟର କେନ୍ଦ୍ର । ରଚନାତ୍ମକ କାମର ଉଦ୍ଦେଶ୍ୟ ଥିଲା ହିଂସା ଦ୍ୱେଷ ଶୋଷଣ ଦୂର କରି ସମାଜକୁ ନୂଆ କରି ଗଢ଼ିବା । ତାହାରି ମୁଖପତ୍ର ହୋଇ '୧୯୪୭ ଜାନୁଆରିରେ କଟକରୁ ତାଙ୍କ ଉଦ୍ୟମରେ 'ଗ୍ରାମସେବକ' ପତ୍ରିକା ବାହାରିଲା, ଯେତେବେଳେ ଥିଲା 'ନିଖିଳ ଭାରତ ଚରଖା ସଂଘର ମୁଖପତ୍ର' । ତାଙ୍କ ଆଖିରେ, ଖଦୀ ସ୍ୱରାଜ୍ୟ ପାଇଁ ଅପରିହାର୍ଯ୍ୟ ଅସ୍ତ୍ର । ୧୭-୪-୪୦ର 'ସତ୍ୟାଗ୍ରହୀ' ପତ୍ରିକାର 'ସମ୍ପାଦକୀୟ'ରେ ସେ 'ଖଦୀକାମ' ଶିରୋନାମା ଦେଇ ସେକଥା ସ୍ପଷ୍ଟ କରି ବୁଝାଇ ଦେଇଥିଲେ । ସେ ଲେଖିଥିଲେ—

"...[ମୁଁ ଖଦୀକାମ କହିଲେ କଣ ବୁଝେ ସ୍ପଷ୍ଟ ଜଣାଇଦେବା ଉଚିତ । ମୁଁ ରାଜନୈତିକ କ୍ଷେତ୍ରରେ କଂଗ୍ରେସର କୌଣସି କମିଟିର ସଭ୍ୟ ବା ପଦାଧିକାରୀ ନ ଥିଲେ ସୁଦ୍ଧା ବରାବର ଚାରିଅଣିଆ କଂଗ୍ରେସ ସଭ୍ୟ ହୋଇ ରହିଛି ଏବଂ ଆମ ଅଞ୍ଚଳର କଂଗ୍ରେସ କାମର ପ୍ରସାରଣରେ ମଧ୍ୟ]"

"କଂଗ୍ରେସକୁ ଚିକ୍କଣ ମଜବୁତ୍ କରିବା ପାଇଁ ଖଦୀ କାମ ଏକମାତ୍ର ଅବ୍ୟର୍ଥ ଉପାୟ ବୋଲି ମୁଁ ମନେ କରେ । ଖଦୀ କାମ ମୁଠି-ଭିଉଲା ବାଣ୍ଟିବା ଭଳି ବା କୌଣସି ଶିଳ୍ପ ବିଭାଗର କାମ ଭଳି ଚାଲିଲେ ସେଥିରେ ମୋର ଆନନ୍ଦ ହୁଏ ନାହିଁ, ସେଥିପ୍ରତି ମୋର ଶ୍ରଦ୍ଧା ରହେ ନାହିଁ । ଭାରତରେ ସ୍ୱରାଜ ଅହିଂସା ଦ୍ୱାରା ମିଳିବା ସମ୍ଭବ, ଏବଂ ଅନ୍ୟ ବାଟେ ମିଳିବା ସମ୍ଭବ ନୁହେଁ । ଅନ୍ୟବାଟେ ଯାହା ମିଳିବ ତାହା ପ୍ରକୃତରେ ଗରିବଙ୍କ ସ୍ୱରାଜ ହେବ ନାହିଁ, ଏ ଧାରଣା ମନରେ ଦୃଢ଼ ହେଉଛି ଏବଂ ଏହି ଅହିଂସାର ପ୍ରତୀକ ହେଉଛି ଖଦୀ କାମ ଏବଂ ଖଦୀ କାମ ବଢ଼ିଲେ ଅହିଂସା ବାୟୁମଣ୍ଡଳ ସୃଷ୍ଟି ହେବାରେ ସାହାଯ୍ୟ କରିବ, ଏ ବିଶ୍ୱାସ ମଧ୍ୟ ଅଛି ।

ସେଥିପାଇଁ ଖଦୀ କାମରେ ମନ ଲଗାଇଥାଏଁ । ଯାହାକୁ ସୂତାକଟା ଶିଖାଇଥାଏଁ ବା ଯେଉଁ କଟାଳିଙ୍କ ସଙ୍ଗେ ପ୍ରତ୍ୟକ୍ଷ ବା ପରୋକ୍ଷ ସମ୍ବନ୍ଧ ଥାଏ, ସେଠି

କଟାଳୀ କେମିତି କମେ ଅହିଂସାରେ ବିଶ୍ୱାସ କରିବ, ସ୍ୱରାଜ୍ୟର ଆବଶ୍ୟକତା ବୁଝିବ, ନିଜର ଡର ଓ ଅଜ୍ଞତା ଦୂର କରିବ, କଂଗ୍ରେସର ସଂଗଠନ ତଥା ଅହିଂସ ଯୁଦ୍ଧରେ ଯୋଗ ଦେବ ବା ସାହାଯ୍ୟ କରିବ, ଏହି ଆଶାରେ ଖଦୀ କାମକୁ ନିୟନ୍ତ୍ରିତ କରିଥାଏଁ ।...''

ଗାନ୍ଧୀ ସେବାସଂଘ ପତ୍ରିକାର ଦ୍ୱାଦଶ ସଂଖ୍ୟାରେ (୧୯୩୯, ସେପ୍ଟେମ୍ବର—ଅକ୍ଟୋବର) ଗୋପବାବୁ କର୍ମୀ ଓ ସଦସ୍ୟମାନଙ୍କ ଉଦ୍ଦେଶ୍ୟରେ ଗୋଟିଏ ପରିପତ୍ର (ସାର୍କୁଲର୍) ଛପାଇଥିଲେ । ସେ ଲେଖିଥିଲେ :—

''ଆମର ବର୍ତ୍ତମାନ ଲକ୍ଷ୍ୟ 'ସ୍ୱାବଲମ୍ବୀ ଖଦୀ' ହେଲେ ସୁଦ୍ଧା ଆମର ଚରମ ଲକ୍ଷ୍ୟ 'ସତ୍ୟାଗ୍ରହୀ' ଗଢ଼ିବା, ଏଥିରେ କୌଣସି ସନ୍ଦେହ ନାହିଁ ।''

ସୂତା କଟାଇବା, କପା ଲଗାଇବା, ନିଶା ନିବାରଣ କଥା ତ ସେ କହୁଛନ୍ତି, ତାହାଛଡ଼ା କହୁଛନ୍ତି ଯେ ପ୍ରତ୍ୟେକ କଟାଳୀକୁ ଜଣେ ଆଦର୍ଶ ଦେଶବାସୀ କରି ଗଢ଼ିବାକୁ ପଡ଼ିବ;

[କ] ୩ ମାସ ମଧ୍ୟରେ ତାକୁ ସାକ୍ଷର କରାଯିବ,

[ଖ] ଗ୍ରାମୋଦ୍‌ଯୋଗ ସଂଘର ଆଦର୍ଶ ଅନୁଯାୟୀ ପ୍ରତି କଟାଳୀର ଖାଦ୍ୟ, ପେୟ, ସଫାଇରେ ପରିବର୍ତ୍ତନ କରାଯିବ,

[ଗ] ତାକୁ କଂଗ୍ରେସର ସଭ୍ୟ କରାଯିବ ଓ ଚରଖା ସଂଘର ସଭ୍ୟ କରାଯିବ,

[ଘ] ମହିଳା ହୋଇଥିଲେ ତାଙ୍କୁ ପର୍ଦ୍ଦା ଛଡ଼ାଯିବ,

[ଙ] ପ୍ରତି କଟାଳୀ ଅସ୍ପୃଶ୍ୟତା ବର୍ଜନ କରିବେ । ହିନ୍ଦୁ ମୁସଲମାନ ଯେ ଏକ, ସେ ଏଥିରେ ବିଶ୍ୱାସ କରିବେ ।

[ଚ] ସେ ଗ୍ରାମର ସମବେତସେବା କାର୍ଯ୍ୟରେ ଯୋଗ ଦେବେ ।
(ସାର୍କୁଲର) ପରିପତ୍ରର ତାରିଖ ୨୩-୮-୧୯୩୯ ।

କେନ୍ଦ୍ର ମାନଙ୍କରେ କର୍ମୀମାନେ ବୁଲି ଗ୍ରାମ ସଫେଇ କରନ୍ତି, ଗାଁ ପରିଷ୍କାର ରଖିବାକୁ , ଘର ପରିଷ୍କାର, ଲୁଗାପଟା ପରିଷ୍କାର ରଖିବାକୁ ଲୋକଙ୍କୁ ଶିଖାନ୍ତି । ଲୋକେ ଯେ ପଡ଼ିଆରେ ବା ବାଟକରରେ ଝାଡ଼ା ବସି ପଡ଼ୁଥିଲେ, ଯେପରି ତା ବନ୍ଦ ହୁଏ ସେଥିପାଇଁ ଉଦ୍ୟମ କରିବାକୁ କହନ୍ତି । ଗୋପବାବୁ ଖାତ (ଟ୍ରେଞ୍ଚ) ପାଇଖାନା ବ୍ୟବହାର ଚାରିଆଡ଼େ ଚଲାଇବାକୁ କର୍ମୀମାନଙ୍କୁ କହୁଥିଲେ । 'ଗାନ୍ଧୀ ସେବାସଂଘ' ପତ୍ର କାରେ ବାହାରିଥାଏ ଯେ (୧୯୩୮ ଜୁଲାଇରେ) ବେରବୋଇ ଅଞ୍ଚଳରେ ବାବୁ

କ୍ଷେତ୍ରମୋହନ ନାୟକ ନିଜ ଘରେ ସେପରି ପାଇଖାନାଟିଏ କରି ବ୍ୟବହାର କଲେଣି ।

କର୍ମୀମାନଙ୍କୁ ଦିଆହେଉଥିବା ନାନା ନିର୍ଦ୍ଦେଶ ଭିତରେ ଥାଏ :—

[୧] ଦେଶର ଗ୍ରାମାଞ୍ଚଳରେ ସେମାନେ କୂଅ, ପୋଖରୀ, ଖୋଳାଇବେ, ସଫା କରାଇବେ, ସେଗୁଡ଼ିକ ସମ୍ଭାଳିବା ପାଇଁ ବ୍ୟବସ୍ଥା କରିବେ, ଏଥିପାଇଁ ଲୋକଙ୍କୁ କୁହାପୋଛା କରୁଥିବେ,

[୨] ସେମାନେ ପ୍ରତି ଗାଁରେ ଖେଳପଡ଼ିଆ, ଡୋଟା, ବଗିଚା କରନ୍ତୁ

[୩] ଗାଁ ସଫେଇ, ଗାଁ ରାସ୍ତା ସଫେଇ, ଗାଁ ରାସ୍ତା ମରାମତି କରନ୍ତୁ

[୪] ଝାଡ଼ା ଫେରିବା ପାଇଁ ଗାନ୍ଧିଙ୍କ ପାଇଖାନା ('ଜଣାମ'), ଖାତ (ଟ୍ରେଞ୍ଚ୍) ପାଇଖାନା ଚଳାନ୍ତୁ

[୫] ଗୋବର ଉତ୍କୃଷ୍ଟ ଖତ, ତାକୁ ଘଷି କରି ଜାଳିଦେବା ବଦ୍‌ଅଭ୍ୟାସ ଛଡ଼ାନ୍ତୁ

[୬] କର୍ମୀମାନେ ଗୋ-ଶାସ୍ତ୍ର ପଢ଼ନ୍ତୁ, ଗୋପାଳନ ଶିଖନ୍ତୁ, ପଢ଼ା ବିଦ୍ୟାକୁ କାର୍ଯ୍ୟରେ ଲଗାନ୍ତୁ, ଗୋଧନର ଉନ୍ନତି ପାଇଁ ଯଥାଶକ୍ତି ଚେଷ୍ଟା କରନ୍ତୁ

[୭] ସେମାନେ ହରିଜନଙ୍କ ସଙ୍ଗେ ମିଶନ୍ତୁ, ଅସ୍ପୃଶ୍ୟତା ଉଠାନ୍ତୁ, ପ୍ରତି କର୍ମୀ ନିଜ ଘରେ ଗୋଟିଏ ହରିଜନ ପିଲାକୁ ରଖି ପାଳନ୍ତୁ; କର୍ମୀମାନେ କେବେ କେବେବେଳେ ହରିଜନ ଘରେ କୁଣିଆଁ ହୋଇ ତାଙ୍କ ଘରେ ତାଙ୍କ ରୋଷେଇରେ ଖାଆନ୍ତୁ

[୮] ସେମାନେ ଔଷଧ ବାଣ୍ଟନ୍ତୁ (ଏଲୋପ୍ୟାଥି ପେଟେଣ୍ଟ୍ ମେଡ଼ିସିନ୍‌ମାନ, କବିରାଜି, ହୋମିଓପ୍ୟାଥି ଔଷଧ କେନ୍ଦ୍ରମାନଙ୍କୁ ଯୋଗା ହେଉଥାଏ), ରୋଗୀସେବା କରନ୍ତୁ

[୯] ସେମାନେ ଚାଟଶାଳୀ ଖୋଲି ଗାଁର ପିଲାମାନଙ୍କୁ ପଢ଼ାନ୍ତୁ, ସନ୍ଧ୍ୟାବେଳେ ପ୍ରୌଢ଼ମାନଙ୍କୁ ପଢ଼ାନ୍ତୁ; ନାରୀକର୍ମୀ ଥିଲେ ବା ସେ ଅଞ୍ଚଳରେ କେହି ପାଠୋଇ ଝିଅ ବୋହୂ ଏ କାର୍ଯ୍ୟ କରିବାକୁ ବାହାରିଲେ ତାଙ୍କୁ ସାହାଯ୍ୟ କରି ତାଙ୍କ ଦ୍ୱାରା ଝିଅପିଲାଙ୍କୁ ପାଠ ପଢ଼ାଇବା ବ୍ୟବସ୍ଥା କରନ୍ତୁ । ଗାଁ ଗାଁକେ ପୋଥିପଢ଼ା, ଖବର କାଗଜ ପଢ଼ା, ଗାନ୍ଧୀ-ବହି ପଢ଼ା, ଅନ୍ୟାନ୍ୟ ବହିପଢ଼ା ଚାଲୁ, ପାଠାଗାର ବସୁ । ଏସବୁ

ଉପଦେଶ ଯଥାସାଧ୍ୟ ପାଳନ କରାଯାଉଥାଏ । ନିରକ୍ଷରତା ଦୂରୀକରଣ ବରି ଅଞ୍ଚଳରେ ଖୁବ୍ ସଫଳ ହେଲା । ରତଲାଂ, ଧାରପୁର, ଚନ୍ଦନପୁର, ବରି, ଅରଙ୍ଗାବାଦ୍‌ରେ ଖୁବ୍ ଭଲ କାମ ହେଲା । ନାନା ସ୍ଥାନରେ ବିବିଧ କାର୍ଯ୍ୟକ୍ରମ ଉଲ୍ଲେଖନୀୟ ହେଉଥାଏ, ନୂଆ ଉତ୍ସାହ ଖେଳୁଥାଏ ।

## ନୂଆପୁଟ୍

ନାନା ସ୍ଥାନରେ କର୍ମୀ ତାଲିମ୍ ଶିବିରମାନ ଚାଲିଥାଏ । କେତେଠି ଜିଲ୍ଲା କଂଗ୍ରେସ କମିଟିମାନେ ଖଦୀ ତାଲିମ୍ ଓ ରଚନାତ୍ମକ ତାଲିମ୍ ପାଇଁ କେନ୍ଦ୍ର ଖୋଲିଲେ । ୧୯ ୭ ଡିସେମ୍ବରରେ କୋରାପୁଟ୍‌ର କଂଗ୍ରେସ ନେତା ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ଜୟପୁର ପାଖ ନୂଆପୁଟ୍‌ରେ ଗୋଟିଏ ତାଲିମ୍ କେନ୍ଦ୍ର ଖୋଲାଇଲେ । ସେ କୋରାପୁଟ ଜିଲ୍ଲା କଂଗ୍ରେସ କମିଟିର ସଭାପତି ଓ ଓଡ଼ିଶାରେ ଏମ୍. ଏଲ୍. ଏ. ଥାନ୍ତି, ଶ୍ରୀ ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ । କେନ୍ଦ୍ରରେ ୬୫୦ ଜଣ ଅନୁନ୍ନତ ଶ୍ରେଣୀ (ଆଦିବାସୀ ଓ ହରିଜନ) କର୍ମୀଙ୍କୁ ଖଦି ଓ ବିଭିନ୍ନ ବିଷୟରେ ତାଲିମ୍ ଦେବା ବ୍ୟବସ୍ଥା ହୋଇଥାଏ । ଶ୍ରୀ ବିଶ୍ୱାସ ରାୟଙ୍କ ନିମନ୍ତ୍ରଣ ପାଇ ଗୋପବାବୁ ଯାଇ ସେ ତାଲିମ୍ କେନ୍ଦ୍ରଟି ଉଦ୍‌ଘାଟନ କରିଥିଲେ । ଗୋପବାବୁଙ୍କ ଅନୁରୋଧରେ ଆଚାର୍ଯ୍ୟ ହରିହର ଓ ଶ୍ରୀ ଗୋକୁଳାନନ୍ଦ ମହାନ୍ତି ସେଠିକୁ ଯାଇ କିଛିଦିନ ରହିଥିଲେ ଓ ତାଲିମ୍ କେନ୍ଦ୍ରର ତତ୍ତ୍ୱାବଧାନ କରିଥିଲେ ।

## ନାନା ସମ୍ମିଳନୀ ଆଦି

ନାନା ସ୍ଥାନରେ ଥରକୁ ଥର ରଚନାତ୍ମକ କର୍ମୀ ସମ୍ମିଳନୀ, ଖଦୀଧାରୀ ସମ୍ମିଳନୀ, କତାଳୀ ସମ୍ମିଳନୀ, 'ବସ୍ତ୍ର ସ୍ୱାବଲମ୍ବୀ ସମ୍ମିଳନୀ' ଶ୍ରମ ଶିବିର ଆଦି ହେଉଥାଏ, ବାର୍ଷିକ ସମ୍ମିଳନୀ ବି ହେଉଥାଏ, ଗୋପବାବୁ ଯାଆନ୍ତି । କେତେବେଳେ କେଉଁଠିକୁ ତାଙ୍କର ଗସ୍ତ, କେଉଁ ଅଞ୍ଚଳରେ ପଦଯାତ୍ରା, ପୁଣି ପ୍ରତିବର୍ଷ ଭାରତ ଭିତରେ ନାନା ସ୍ଥାନକୁ ପଡ଼ୁଥାଏ ।

## ଖଦୀ ଯାତ୍ରା

୧୯୫୯ରେ ବରି, ପାଟପୁର ଓ ଯାଜପୁରରେ ଗୋପବାବୁ 'ଖଦୀ ଯାତ୍ରା' କରାଇଲେ । 'ଯାତ୍ରା' ଜାଗା ଓ ତାରିଖ ସ୍ଥିର ହେଉଥିଲା, ନାନା ଆଡ଼ୁ ଖଦୀ କତାଳୀ ବା ଖଦୀ ପିନ୍ଧାଳୀ ସେଠିକି ଆସୁଥିଲେ, ଦଳକେ ୦।୧ ଜଣ ଲେଖାଁ, ସମସ୍ତେ ନିଜ ନିଜ ସୂତୁଳି, ତାଲି ଆଦି ମଞ୍ଚରେ ବାନ୍ଧିଥିବେ, 'ଯାତ୍ରା' ସ୍ଥଳରେ ନିଜ ହାତକୁ

ଖାଇବେ । ସେଠି ପ୍ରାର୍ଥନା, ସତ୍‌ସଙ୍ଗ, ସୂତ୍ରଯଜ୍ଞ, ଗାନ୍ଧୀ-ବିଚାର ଆଦି ହେଉଥିଲା । ସେହି 'ଯାତ୍ରା', ବିନା ଖର୍ଚ୍ଚରେ ସମ୍ମିଳନୀ ।

ବରୀରେ ଶିଶୁ ମେଳା, ହରିଜନ ମେଳା, କୃଷି-ଗ୍ରାମୋଦ୍‌ଯୋଗ, ମଦ୍ୟଗୃଷ, ମୌଳିକ-ଶିକ୍ଷା ଆଦିର ପ୍ରଦର୍ଶନୀମାନ ହେଉଥିଲା । ଗାନ୍ଧୀଜୀ ହରିଜନ ଗସ୍ତ ବେଳେ ୧୯୩୪ ମେ' ୩୧ରେ ବରୀ ଆସିଥିଲେ, ତାହାର ସ୍ମରଣରେ ୧୯୩୫ ମେ' ୩୧ରେ ହରିଜନ ମେଳା ହୋଇଥିଲା, କୃଷି ଗ୍ରାମୋଦ୍‌ଯୋଗ ପ୍ରଦର୍ଶନୀ ହୋଇଥିଲା । ଓଡ଼ିଶାର ଅନେକ ନେତା ଓ କଂଗ୍ରେସ କର୍ମୀ ଆସିଥିଲେ । ମୁଖ୍ୟଅତିଥି ହୋଇଥିଲେ ଶ୍ରୀ ସତୀଶ ଚନ୍ଦ୍ର ଦାଶଗୁପ୍ତ । ସେ ମେଳା ବି ପ୍ରତିବର୍ଷ ହେଉଥିଲା ।

# ତେଇଶ

## ମୌଳିକ ଶିକ୍ଷା

୧୯୩୭ରେ କଂଗ୍ରେସ୍ ମନ୍ତ୍ରିମଣ୍ଡଳ ଗଢ଼ାହେଲା ପରେ ଗାନ୍ଧୀଜୀ ଦେଶରେ ସ୍ୱାବଲମ୍ବୀ ଶିକ୍ଷାପଦ୍ଧତି ପ୍ରବର୍ତ୍ତନ କରିବା ବିଷୟରେ ଗୁରୁତ୍ୱ ଦେଲେ । ଅକ୍ଟୋବର ୨୨, ୨୩, ୧୯୩୭ରେ ୱାର୍ଦ୍ଧାରେ ରାଷ୍ଟ୍ରୀୟ ଶିକ୍ଷା ପରିଷଦ ବସିଲା । ଗାନ୍ଧୀଜୀ ଓ ଭାରତର ବିଶିଷ୍ଟ ଶିକ୍ଷାବିତ୍‌ମାନେ ଆଦର୍ଶ ଶିକ୍ଷା ବିଷୟରେ ଆଲୋଚନା କରି ସେଭଳି ଗୋଟିଏ ଶିକ୍ଷାପଦ୍ଧତି ପ୍ରସ୍ତୁତ କରିବାକୁ 'ଜାକୀର ହୁସେନ୍ କମିଟି' ନିଯୁକ୍ତ ହେଲେ । ସେମାନେ ଯେଉଁ ଶିକ୍ଷାପଦ୍ଧତି ଓ ତାର ପାଠ୍ୟକ୍ରମ ପ୍ରସ୍ତୁତ କଲେ ତା ନାଁ ହେଲା "ଶିକ୍ଷାଲାଗି ୱାର୍ଦ୍ଧା ପଦ୍ଧତି" Wardha Scheme of Education । ଏହାର ଅନ୍ୟ ନାମ 'ବେସିକ୍ ଏଡ଼ୁକେସନ' ବା 'ମୌଳିକ ଶିକ୍ଷା ପ୍ରଣାଳୀ' । ୧୯୩୮ରେ ହରିପୁରା କଂଗ୍ରେସ୍‌ରେ ଗୋଟିଏ ଦୀର୍ଘ ପ୍ରସ୍ତାବରେ ଏହା ଗୃହୀତ ହେଲା । ପ୍ରସ୍ତାବରେ

ରହିଲା ଯେ ପ୍ରାଇମେରୀ ଓ ସେକେଣ୍ଡେରୀ ଏ ଉଭୟ ସ୍ତରରେ ବେସିକ୍ ଶିକ୍ଷା ପ୍ରବର୍ତ୍ତିତ ହେବ । ମୂଳ ନୀତି ହେବ :—

[୧] ସାରା ଦେଶରେ ବିନା ଦରମାରେ ଓ ବାଧ୍ୟତାମୂଳକ ଭାବେ ସାତବର୍ଷ ପର୍ଯ୍ୟନ୍ତ ଶିକ୍ଷା ଦେବାକୁ ବ୍ୟବସ୍ଥା ରହିବ ।

[୨] ଶିକ୍ଷାର ମାଧ୍ୟମ ରହିବ ଛାତ୍ରର ନିଜ ମାତୃଭାଷା

[୩] ଶିକ୍ଷାକାଳ ଭିତରେ କୌଣସି ପ୍ରକାର ଶାରୀରିକ ପରିଶ୍ରମ ଓ ଉତ୍ପାଦକ କାର୍ଯ୍ୟକୁ କେନ୍ଦ୍ର କରି ଶିକ୍ଷା ଦିଆଯିବ, ଅନ୍ୟାନ୍ୟ ସବୁ କାମ ଓ ତାଲିମ୍ ଦିଆଯିବ ଯଥାସମ୍ଭବ ସେହି ଗୋଟିଏ ଉଦ୍ୟୋଗ ସହିତ ସମ୍ବନ୍ଧ ରଖି ଛାତ୍ରର ପାରିପାର୍ଶ୍ୱିକ ଅବସ୍ଥାକୁ ଆଖି ଆଗରେ ରଖି ।

ଏହାକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ୧୯୩୮ରେ ଗୋଟିଏ ସର୍ବଭାରତୀୟ ପରିଷଦ ଗଢ଼ା ହେଲା । ତା ନାଁ ରହିଲା "ହିନ୍ଦୁସ୍ତାନୀ ତାଲିମୀ ସଂଘ" ।

## ଓଡ଼ିଶାରେ ପ୍ରଥମ ପର୍ଯ୍ୟାୟ (୧୯୪୨ ପୂର୍ବରୁ)

ଓଡ଼ିଶାରୁ ସର୍ବଶ୍ରୀ ମହେଶ ପ୍ରଧାନ, ରଘୁନାଥ ମହାନ୍ତି ଓ ଶରତ୍ ଚନ୍ଦ୍ର ମହାରଣା ଏ ବିଷୟରେ ଓ୍ୱାର୍ଦ୍ଧାରୁ ସବୁକଥା ବୁଝି ଆସିଲେ । ପଛେ ଅନ୍ୟମାନେ ତାଲିମ୍ ପାଇ ଆସିଲେ, ସେମାନଙ୍କ ଭିତରେ ଲାଲ୍‌ବିହାରୀ ପଟ୍ଟନାୟକ, କିଶୋରଚନ୍ଦ୍ର ପଣ୍ଡା, ଶ୍ରୀନିବାସ ମିଶ୍ର, କାହ୍ନୁ ଚରଣ ମହାନ୍ତି, ଡକ୍ଟର ରାମକୃଷ୍ଣ ପଟ୍ଟନାୟକ, ଅନ୍ନପୂର୍ଣ୍ଣା ଚୌଧୁରୀ ଆଦି ।

ଭାରତରେ ଯେଉଁ ପ୍ରଦେଶମାନଙ୍କରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଥାଏ ସେଠି ମୌଳିକ ଶିକ୍ଷାକୁ ସେ ପ୍ରଦେଶର ସରକାର ପ୍ରୟୋଗ ଆରମ୍ଭ କଲେ ।

ଓଡ଼ିଶାରେ ମୌଳିକ ଶିକ୍ଷା ପ୍ରଚଳନ ବିଷୟରେ ଅନୁସନ୍ଧାନ କରିବାକୁ ଗୋଟିଏ ତିନିଜଣିଆ କମିଟି ଗଢ଼ା ହେଲା । ସେଥିରେ ରହିଲେ ସେତେବେଳର ଡ. ପି. ଆଇ. ଶ୍ରୀ ଶ୍ୟାମ ଚରଣ ତ୍ରିପାଠୀ, କଟକ ଟ୍ରେନିଂ କଲେଜ୍ ପ୍ରିନ୍‌ସିପାଲ୍ ଶ୍ରୀ ମହେଶ ଚନ୍ଦ୍ର ପ୍ରଧାନ ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀ । କମିଟି ନାନା ଅଞ୍ଚଳ ବୁଲିଲେ ଓ ବାରି ଅଞ୍ଚଳକୁ ବାଛି ସୁପାରସ୍ କଲେ । ସରକାର ନିଷ୍ପତ୍ତି କଲେ ବାରି ଅଞ୍ଚଳରେ ପ୍ରୟୋଗ ଆରମ୍ଭ ହେବ । ସେହି ୧୯୩୮ରେ ଓଡ଼ିଶା ସରକାରଙ୍କ Board of Basic Education ଗଢ଼ା ହେଲା ଓ ଗୋପବାବୁ ତାର ଅଧ୍ୟକ୍ଷ ରହିଲେ ।

## ରାମଚନ୍ଦ୍ରପୁର

ବରୀରୁ ୩ ମାଇଲ୍ ଦୂରରେ ବ୍ରାହ୍ମଣୀ ନଦୀକୂଳରେ ରାମଚନ୍ଦ୍ରପୁର । ସେଠି ସୁନ୍ଦର ତୋଟାଳିଆ ସ୍ଥାନଟିଏ ବଛା ହେଲା । ଜଣେ ଭୂତପୂର୍ବ ଅଭିଜ୍ଞ ଓଭରସିଅର ଶ୍ରୀ ଗୁଣନିଧି ମହାନ୍ତି ସରକାରୀ ଚାକିରି ଛାଡ଼ି ଆଜୀବନ କଂଗ୍ରେସ୍ କର୍ମୀ ହୋଇଥାନ୍ତି ଓ ଗୋପବାବୁଙ୍କ ସହିତ ରଚନା ସଂଗଠନ କାର୍ଯ୍ୟ କରୁଥାନ୍ତି । ତାଙ୍କର ତତ୍ତ୍ୱାବଧାନରେ ସେଠି ଘରତୋଳା ଆରମ୍ଭ ହେଲା । [illegible]-୭-୧୯୩୯ରେ ସେଠି 'ଶିକ୍ଷକ ତାଲିମ୍ ବିଦ୍ୟାଳୟ' ଖୋଲିଲା ଓ ଏ ନୂଆ ଶିକ୍ଷା ପଦ୍ଧତିରେ ପିଲାଙ୍କୁ କିପରି ପାଠ ପଢ଼ାଇବେ, ଶିକ୍ଷକମାନେ ସେ ବିଷୟରେ ତାଲିମ୍ ପାଇଲେ । କ୍ରମେ ରାମଚନ୍ଦ୍ରପୁରରେ ଓ ବରୀ ଅଞ୍ଚଳର ଆଉ ୧୪ଟି ସ୍ଥାନରେ ମୌଳିକ ବିଦ୍ୟାଳୟ ବସିଗଲା, ସରକାର ପରିଚାଳନା କରୁଥାନ୍ତି ।

ଭାରତର ଅଭିଜ୍ଞ, ବିଚକ୍ଷଣ ଶିକ୍ଷାବିତ୍‌ମାନେ ମହାତ୍ମା ଗାନ୍ଧୀଙ୍କ ଚିନ୍ତାଧାରା ପ୍ରକାରେ ଉଦ୍ଭାବନ କରିଥିବା 'ମୌଳିକ ଶିକ୍ଷା' ପଦ୍ଧତି ଶିକ୍ଷା କ୍ଷେତ୍ରରେ ଗୋଟିଏ ବିପ୍ଳବ ହିଁ ଥିଲା । ଛାତ୍ରଛାତ୍ରୀଙ୍କର ସର୍ବାଙ୍ଗୀନ ବିକାଶ ହେବ, ଚରିତ୍ର ଗଠନ ହେବ, ସେମାନେ ସ୍ୱାବଲମ୍ବୀ ହେବାକୁ ଶିଖିବେ, ସମାଜର ଉପଯୁକ୍ତ ନାଗରିକ ହେବେ, ପାଠପଢ଼ା ସାରି ପରମୁଖାପେକ୍ଷୀ ହେବେ ନାହିଁ, ଚାକିରିକୁ ଅନେଇଁ ବସିବେ ନାହିଁ, ବେକାର ରହିବେ ନାହିଁ, ଏ ଯୋଜନା ପଛଆଡ଼େ ଏହିପରି ମହତ୍ ଆଦର୍ଶମାନ ଥିଲା । ଗତାନୁଗତିକ ପାଠପଢ଼ା ପଦ୍ଧତିଠୁଁ ଏହା ଥିଲା ଭିନେ । ପିଲାଙ୍କୁ ମାଡ଼ ଗାଳି ନାହିଁ, ତାଙ୍କ ମନରେ ପଢ଼େ ବିକୃତି ଜନ୍ମାଇଲା ଭଳି ଭୟ ରହିବ ନାହିଁ, ଆଗ୍ରହ ଓ ଆନନ୍ଦରେ ସେମାନେ ଶିଖିବେ, ଜାଣିବେ, ପଢ଼ିବେ, ଏଥିପାଇଁ କିଭଳି ଉପାୟ କରି ହେବ ତାହା ମୌଳିକ ଚିନ୍ତାରୁ ଉଦ୍ଭାବନ କରିବାକୁ ଗୋପବାବୁ ଆଜୀବନ ଚେଷ୍ଟିତ ଥିଲେ ।

ଆଗ ଆଗ ମୌଳିକ ବିଦ୍ୟାଳୟଗୁଡ଼ିକରେ ଟିକିଏ ଅଡୁଆ ଦେଖାଯାଉଥିଲା । ଗାଁ ଲୋକଙ୍କ ଦୃଷ୍ଟିରେ ସେଠି ପ୍ରଥମ ଅସୁବିଧା, ସେଠି ଛୁଆଁ ଅଛୁଆ ଭେଦ ନ ଥିଲା, ବଡ଼ ଜାତି ସାନ ଜାତି ଅନୁସାରେ ମର୍ଯ୍ୟାଦା କି ଆଦରରେ ତାରତମ୍ୟ ନ ଥିଲା, ସମସ୍ତେ ସମାନ । କିନ୍ତୁ ବରୀ ଅଞ୍ଚଳରେ ଗୋପବାବୁ ଓ ଅନ୍ୟ କର୍ମୀମାନେ ସେତେବେଳେ ହରିଜନ କାମ ଉପରେ ଜୋର୍ ଦେଇଥାନ୍ତି, ଅଛୁଆଁ ନିବାରଣ ଚାଲିଥାଏ । ଛୁଆଁ ଅଛୁଆଁ ଭେଦ ନ ଥିବା ଯୋଗୁଁ ମୌଳିକ ବିଦ୍ୟାଳୟମାନଙ୍କ ପ୍ରତି ଯେଉଁ ବିତୃଷ୍ଣା ତା ଦୂର ହେଲା ।

ଗ୍ରାମବାସୀ ଦେଖିଥାନ୍ତି ପିଲାଏ ମାଷ୍ଟରଙ୍କୁ ଡରୁ ନାହାନ୍ତି, ସାନ ପିଲା ମାଷ୍ଟରଙ୍କୁ ବାପ ଭାଇ ଭାବି ତାଙ୍କ ପିଠିରେ ନାଉ ହେଉଛନ୍ତି, ତାଙ୍କ ସଙ୍ଗେ ଖେଳୁଛନ୍ତି । ସନ୍ଧ୍ୟା

ସେମାନେ ଦେଖିଲେ ଯେ ଏ ବାଗରେ ପିଲାଏ ଚ୍ରକୃତରେ ପଢ଼ୁଛନ୍ତି, ନାନା ଭଲ କଥା ନାନା କାମଦାମ ଶିଖୁଛନ୍ତି, ବୁଝିଆ ହେଉଛନ୍ତି, ତାଙ୍କର ସନ୍ଦେହ ଦୂର ହେଲା । ମୌଳିକ ବିଦ୍ୟାଳୟ ଗୁଡ଼ିକ ଜନପ୍ରିୟ ହେଲା । ସେପ୍ଟେମ୍ବର ୧୯୩୯ରେ ଓଡ଼ିଶାରେ କଂଗ୍ରେସ୍ ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା । ଓଡ଼ିଶା ସରକାରଙ୍କ ଚିଫ୍ ସେକ୍ରେଟେରି ଶ୍ରୀଯୁକ୍ତ ମ୍ୟାନ୍ସଫିଲ୍ଡ (ବଡ଼ସାହେବ) ରାମଚନ୍ଦ୍ରପୁର ଆସିଲେ, ମୌଳିକ ଶିକ୍ଷା କିପରି ହେଉଛି ଦେଖିଲେ, ଗୋପବାବୁଙ୍କ ସଙ୍ଗେ ଆଲୋଚନା କଲେ ଓ ମୌଳିକ ଶିକ୍ଷାର ଉପାଦେୟତା ବିଷୟରେ ବୁଝି ଲେଉଟିଗଲେ ।

କିନ୍ତୁ ୧୯୪୦ରେ ସରକାର ତାଙ୍କ ନିଷ୍ପତ୍ତି ଜଣାଇଦେଲେ ଯେ କେବଳ ଆଉ ବର୍ଷକ ପାଇଁ ଅର୍ଥାତ୍ ୨୮-୨-୧୯୪୧ ଯାକେ ସେ ମୌଳିକ ସ୍କୁଲ୍‌ମାନଙ୍କୁ ଆର୍ଥିକ ସାହାଯ୍ୟ ଦେବେ, ତାପରେ ଆଉ ଦେବେ ନାହିଁ । କର୍ମୀମାନେ ଭାବିଲେ ଯେ ସରକାର ବୋଧହୁଏ ଆଶଙ୍କା କରୁଛନ୍ତି ଯେ ମୌଳିକ ବିଦ୍ୟାଳୟ ଅଛି ବୋଲି ସରକାର ବିରୋଧୀ ମନୋଭାବ ଓ କାର୍ଯ୍ୟର ପ୍ରଚାର ହେଉଛି । ଗୋପବାବୁ ଓ କର୍ମୀମାନେ ଗାଁ ଲୋକଙ୍କ ସାହାଯ୍ୟରେ ମୌଳିକ ବିଦ୍ୟାଳୟ ଗୁଡ଼ିକ ଚଳାଇବାକୁ ନିଷ୍ପତ୍ତି କଲେ । ଗାଁ ଲୋକେ ରାଜି ହେଲେ ଯେ ୧୪ଟି ପରିବର୍ତ୍ତେ ୭ଟି ସ୍କୁଲ୍ ଚଳିପାରିଲାଭଳି ଭାର ସେମାନେ ନେବେ, ସେଥିପାଇଁ ଖର୍ଚ୍ଚ ଦେବେ । ଶିକ୍ଷକମାନେ ରାଜିହେଲେ ଯେ ଯେତିକି ଅଳ୍ପ ବେତନ ମିଳୁ ସେମାନେ କାମ କରିବେ । ସେହିଠାରେବେଳେ, ୧୯୪୧ ଫେବୃଆରିରେ ସେତେବେଳେ ଓଡ଼ିଶା ସରକାରଙ୍କ 'ଅର୍ଗାନାଇଜର୍ ଅଫ୍ ବେସିକ୍ ଏଡୁକେସନ୍' ପଦରେ ଥିବା ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ତାଙ୍କ ଚାକିରି ଇସ୍ତଫା ଦେଲେ ଓ ଗୋପବାବୁ ଓ ଆଚାର୍ଯ୍ୟ ହରିହର ମୌଳିକ ଶିକ୍ଷାର ଯେଉଁ ମାର୍ଗ ଦେଖାଉଥିଲେ ସେହି ମାର୍ଗକୁ ଓ ସଂଗଠନ କାର୍ଯ୍ୟକୁ ଗ୍ରହଣ କରି କାର୍ଯ୍ୟ କରିବାକୁ ଲାଗିଲେ ।

୯-୮-୧୯୪୧ରେ "ଉତ୍କଳ ମୌଳିକ ଶିକ୍ଷା ପରିଷଦ" ଗଢ଼ା ହେଲା । ତାହା ସମ୍ପୂର୍ଣ୍ଣ ବେସରକାରୀ ସଂସ୍ଥା । ତାର ସଭାପତି ହେଲେ ଆଚାର୍ଯ୍ୟ ହରିହର ଓ ସମ୍ପାଦକ ହେଲେ ଗୋପବାବୁ । ଯେଉଁ ଶିକ୍ଷକମାନେ ବେସରକାରୀଭାବେ ମୌଳିକ ଶିକ୍ଷା ଚଳାଇବାକୁ ରାଜି ହେଲେ ସେମାନଙ୍କ ଭିତରେ ଥିଲେ ସର୍ବଶ୍ରୀ ମଧୁସୂଦନ ମିଶ୍ର, ମଧୁସୂଦନ ଜେନା, ଗୋପୀନାଥ ଦାସ, ବ୍ରହ୍ମାନନ୍ଦ ସାହୁ, କୃଷ୍ଣଚନ୍ଦ୍ର ସାହୁ, ଗୋଲକ ଚନ୍ଦ୍ର ନାୟକ, କାହ୍ନୁଚରଣ ଜେନା, ରାମଚନ୍ଦ୍ର ମିଶ୍ର, ନାରାୟଣ ମିଶ୍ର ଇତ୍ୟାଦି ।

ଏ ମୌଳିକ ବିଦ୍ୟାଳୟଗୁଡ଼ିକୁ ଚଳାଇବା ପାଇଁ ଗାଁ ଲୋକେ ଡାଲି, ଚାଉଳ, କାଠ ଭେଦା କରି ଦେଲେ । ସହରରୁ ବି କିଛି ଚାନ୍ଦା ଉଠିଲା । ଗାନ୍ଧିଜୀ ଏ ବେସରକାରୀ ଉଦ୍ୟମକୁ ପ୍ରଶଂସା କରି ଶ୍ରୀମତୀ ରମା ଦେବୀଙ୍କୁ ପତ୍ର ଲେଖିଲେ ।

୧୯୩୯ରେ ହିନ୍ଦୁସ୍ଥାନୀ ତାଲିମୀ ସଂଘ କେନ୍ଦ୍ର ସମ୍ପାଦକ ଶ୍ରୀ ଆର୍ଯ୍ୟ ନାୟକମ୍ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ଆଶା ଦେବୀ ଆସି ଏ କାର୍ଯ୍ୟ ଦେଖିଗଲେ ଓ ଖୁବ୍ ଖୁସି ହେଲେ । ପ୍ରାୟ ଆଠମାସ ପରେ ଆର୍ଥିକ ସାହାଯ୍ୟ ଦେଲେ । ଓଡ଼ିଶାରେ ମୌଳିକ ଶିକ୍ଷା ପାଇଁ ହିନ୍ଦୁସ୍ଥାନୀ ତାଲିମ୍ ସଂଘ ପାଖେ ଟଙ୍କା ନ ଥାଏ, ସେ ଅଭାବ ଗାନ୍ଧୀଜୀ ପୂରଣ କଲେ; ସି. ଏଫ୍. ଆଣ୍ଡ୍ରୁଜଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଚାନ୍ଦା ଉଠିଥାଏ, ସେଥିପାଇଁ ପାଞ୍ଚଲକ୍ଷ ଟଙ୍କା ରଖି ଗାନ୍ଧୀଜୀ ତହିଁରୁ ବଳକା ଟଙ୍କା ହିନ୍ଦୁସ୍ଥାନୀ ତାଲିମୀ ସଂଘକୁ ଦେଲେ, ତହିଁରୁ ସାହାଯ୍ୟ ମିଳିଲା ।

ମୌଳିକ ଶିକ୍ଷାପଦ୍ଧତି ଲାଗି ଗୋପବାବୁ ନାନା ଉପାୟ ଉଦ୍ଭାବନ କରିବାକୁ ଚେଷ୍ଟା କରୁଥାନ୍ତି । ଜ୍ୟୋତିର୍ବିଦ୍ୟା ପ୍ରତି ତାଙ୍କର ଖୁବ ଆଗ୍ରହ ଥାଏ, ପିଲାଙ୍କୁ ସେଥିପାଇଁ ସେ ଆଗ୍ରହୀ କରାଉଥାନ୍ତି । ସେଥିପାଇଁ ନାନା ପୁସ୍ତକ ରଖିଥାନ୍ତି । ଷ୍ଟାର୍-ଗ୍ଲୋବ୍ ଦ୍ୱାରା ପିଲାଙ୍କୁ ଆକାଶରେ ତାରା ଚହ୍ନାଇବାକୁ ସେ ଯନ୍ତ୍ରଟିଏ କଲେ । ପିଲାଙ୍କୁ ସେ ନିଜେ ଏକାଠି ଡ୍ରିଲ୍ କରାନ୍ତି । ସ୍କୁଲ ଘରଟିଏ ସେ ନିଜେ ସଜାଇଲେ । ତାର ମାଟିକାନ୍ଥକୁ ନିଜେ ସଜାଇଲେ । ତା ଚଟାଣରେ ଧାନ, ଗହମ, ମାଣ୍ଡିଆ, କୋଳଥ, ମୁଗ, ବର୍ହ୍ମ ଆଦି ନାନା ଶସ୍ୟ ଖଞ୍ଜି କାରୁକାର୍ଯ୍ୟ କରାଇଲେ । କି ଉପାୟରେ ପଢ଼ାଇଲେ ପିଲାଙ୍କ ଆଗ୍ରହ ଓ କୁତୂହଳ ବଢ଼ିବ, ମନର ଓ ଦେହର ବିକାଶ ହେବ ସେ ବିଷୟରେ ସେ ନାନା ପରଖ କରୁଥାନ୍ତି ।

ଆସିଲା ୧୯୪୨, ସବୁ ଶିକ୍ଷକ ଜେଲ୍ ଗଲେ । ମୌଳିକ ଶିକ୍ଷା କାର୍ଯ୍ୟ ପୁଣି ଚାଲିଲା ସେମାନେ ଜେଲରୁ ଫେରିଲାପରେ ।

# ଚବିଶି

## ଚିକିତ୍ସା

ବସ୍ତିରେ ଥାଇ ଗୋପବାବୁ ଯେତେ ପ୍ରକାର ଓ ଯାହା ଯାହା ଲୋକହିତକର କାର୍ଯ୍ୟ କରୁଥିଲେ ତନ୍ମଧ୍ୟରେ ଅନ୍ୟତମ ଥିଲା ଚିକିତ୍ସା, ରୋଗୀଙ୍କୁ ଔଷଧ ବଣ୍ଟା, ସେବା ଶୁଶ୍ରୂଷା ।

## ପ୍ରାକୃତିକ ଚିକିତ୍ସା

'ପ୍ରାକୃତିକ ଚିକିତ୍ସା' ସେ ନିଜେ ଶିଖି ଅଭ୍ୟାସ କରନ୍ତି, ନିଜ ଉପରେ ଆଜୀବନ ପ୍ରୟୋଗ କଲେ, ମରିବାର ଅଧଘଣ୍ଟାଏ ପୂର୍ବରୁ ବି । ସ୍ୱାସ୍ଥ୍ୟ କିପରି ଠିକ୍ ରଖିବାକୁ ହେବ ସେ ବିଷୟରେ ସେ ଅନେକ ଲେଖା ଛପାଇଛନ୍ତି, ନିଜ ଅଭିଜ୍ଞତାରୁ କିଛି ଲେଖି ବି ଯାଇଛନ୍ତି, କାଲେ ଅନ୍ୟମାନେ ବି ସେପରି କରିବେ, ଭଲ ସ୍ୱାସ୍ଥ୍ୟ ରଖିବେ । ତାଙ୍କ ନିଜ ସ୍ୱାସ୍ଥ୍ୟ ଖୁବ୍ ଭଲ ଥିଲା । ସବୁଦିନେ ବଳିଷ୍ଠ ଚେହେରା, ଅତି କାର୍ଯ୍ୟକ୍ଷମ, ଅତି ପରିଶ୍ରମୀ, ଶ୍ରମ ଆଦୌ ବାଧେ ନାହିଁ, କ୍ଲାନ୍ତ ହୁଅନ୍ତି ନାହିଁ, ବେମାର୍ ପଡ଼ନ୍ତି କ୍ୱଚିତ୍ । କେବେ ତେଲ ଲଗାନ୍ତି ନାହିଁ । ସ୍ନୋ, କ୍ରୀମ୍, ପାଉଡରର ଘୃଣା କରନ୍ତି । କିନ୍ତୁ ମୁଣ୍ଡ ଦିଶେ ତେଲ ଜିକ୍ ଜିକ୍, ଦେହରୁ ମାଛି ଖସି ପଡ଼ିବ, ମୁହଁ ସବୁବେଳେ ଚକ୍ ଚକ୍, ଦିଶନ୍ତି ସାକ୍ଷାତ୍ ଜୀବନର ପ୍ରତିମୂର୍ତ୍ତି ପରି, 'ନୀରୋଗ ସୁସ୍ଥ ବଳିଷ୍ଠ ଶରୀର ଓ ସୁସ୍ଥ ମନ' । ନିଜ ଦେହ ଅସୁସ୍ଥ ହେଲେ ସେ ତାଙ୍କ 'ପ୍ରାକୃତିକ ଚିକିତ୍ସା' ଅନୁସାରେ କେତେବେଳେ 'ନାଭି ସ୍ନାନ' (ପାଣି ଟବ୍‌ରେ ବସି), କେତେବେଳେ ପାଣି ପଟି, କେତେବେଳେ ପେଟ ଉପରେ କାଦୁଅ ଲଦି ଶୋଇ ପଡ଼ିବା, ଏହି ପ୍ରକାର ଚିକିତ୍ସା କରି ଭଲ ହୁଅନ୍ତି, ଡାକ୍ତରୀ ଔଷଧ ଖାଆନ୍ତି ନାହିଁ । ଉପାସ, ଏକାଦଶୀ, ସ୍ୱାସ୍ଥ୍ୟକର ଅଭ୍ୟାସ, ସଂଯମ, ଶ୍ରମ, ନିୟମାନୁବର୍ତ୍ତିତା,

ପରିଚ୍ଛନ୍ନତା, ବିଶେଷ ସରଳତମ 'ବିଶୁଦ୍ଧ' ପ୍ରାକୃତିକ ଖାଦ୍ୟ, ଯେପରି ଶସ୍ତାରେ ସହଜରେ ମିଳେ, ତାର ପରିମାଣ ଓ ପ୍ରକାରରେ ପରିବର୍ତ୍ତନ, ଆଲୁଅ, ଖୋଲା ପବନ, ବିଓଲି ଗାଧୁଆ, ପ୍ରାର୍ଥନା, ମନବଳ,—ଦେହ ଭଲ ରଖିବା, ରୋଗ ଭଲ କରିବାପାଇଁ ଏସବୁ ତାଙ୍କର ଅତ୍ୟନ୍ତ ଉପାସ୍ୟ ଭିତରେ । ଖାଲି କଳା ତୁଳସୀପତ୍ର ଖୁଆଇ, ବେଲପତ୍ର ଗୋବେଇବାକୁ କନ୍ଦ, ଫଳ, ପତ୍ର, ଚେରମୂଳ ହୋଇ ଏମିତି କେତେ ଦେଶୀ ଚିକିତ୍ସା କରାଇ ସେ ରୋଗ ଭଲ କରନ୍ତି, ଶିଖିଥିଲେ, ନିଜ ଉପରେ ପରୀକ୍ଷା କରିଥିଲେ, ଶିଖାଇଥିଲେ ।

ତାଛଡ଼ା ସେ ରଖି ବଣ୍ଟାଉଥିଲେ ଏଲୋପ୍ୟାଥି, କବିରାଜି ଓ ହୋମିଓପ୍ୟାଥି ଔଷଧମାନ, ନିଜେ ବି କିଛି ହୋମିଓପ୍ୟାଥି ଜାଣିଥିଲେ, କର୍ମୀମାନଙ୍କୁ ତାଲିମ୍ ଦିଆଇଥିଲେ, ଔଷଧ ଯୋଗାଉଥିଲେ । ସେହିସବୁ ଚିକିତ୍ସା ଜାଣିଥିବା ଡାକ୍ତର ଓ କବିରାଜଙ୍କୁ ଡକାଇ ଆଣି ଗାଁ ଗାଁକେ ରୋଗୀ ଚିକିତ୍ସା କରାଉଥିଲେ । ବରୀର ଶ୍ରୀ ବାମନ ଚରଣ ଦାସ ଜମିଦାର କିଛି ଟୁଣୁକା ଓ ହୋମିଓପ୍ୟାଥି ଜାଣିଥିଲେ । କେହି ଚିକିତ୍ସା ପାଇଁ ଡକାଇଲେ ରାତି ଅଧରେ ବି ଯାଆନ୍ତି, ଗୋପବାବୁ ତାଙ୍କୁ ବି ଡକାଉଥିଲେ, ଯାଜପୁରରୁ ଡାକ୍ତର ଡକାଇ ଗାଁ ଗାଁକେ ରୋଗୀ ଚିକିତ୍ସା କରାଉଥିଲେ ।

ଅଲକାଶ୍ରମରେ ହଇଜା କାମ ସରି ବରୀ ଆଶ୍ରମ କର୍ମୀମାନେ ବି ହଇଜା ବେଳେ ଗାଁ ଗାଁକେ ବୁଲି ରୋଗୀ-ସେବା କରନ୍ତି, ଔଷଧ ଦିଅନ୍ତି । ଏଠି ବି ଗାଁ ଗାଁକେ କୋଳୁଆଭସ୍ମ, ହରିଧ୍ୱନି, ପଣା, ଠାକୁରାଣୀ ମାଜଣା, 'କାଳିସୀ',— ଗୋପବାବୁ ଅନ୍ଧବିଶ୍ୱାସ ବିରୁଦ୍ଧରେ ପ୍ରଚାର କରାନ୍ତି, ପ୍ରତିଷେଧକ, ଔଷଧ ଆଦି ବ୍ୟବସ୍ଥା କରାନ୍ତି, ସେବା ଶୁଶ୍ରୂଷା କରାନ୍ତି । କି ରାତି ଅଧ, କି ଝଡ଼ ବର୍ଷା, ବଢ଼ି, ଶୀତ, ବିଲ ଘାଟବାଟ ଅଣ୍ଟାଏ ପାଣି, ସେ ନିଜେ, ତାଙ୍କ ପୁଅ ଝିଅ, ଜ୍ୱାଇଁ, କର୍ମୀମାନେ, ପୁରୁଷ କର୍ମୀ, ନାରୀ କର୍ମୀ ବୁଲି ବୁଲି ରୋଗୀ ଦେଖନ୍ତି, ଔଷଧ ଦିଅନ୍ତି, ଝାଡ଼ା, ବାନ୍ତି, ଲୁଗାପଟା ସଫା କରନ୍ତି, ରୋଗୀସେବା କରନ୍ତି । ସେମାନେ ଭୟ ଛଡ଼ାନ୍ତି, ସାହସ ଦିଅନ୍ତି, ରୋଗୀ ଭଲ କରନ୍ତି । ପଥ୍ୟ କରି ଦିଆନ୍ତି, ପଥ୍ୟ ରାନ୍ଧିବା ଶିଖାନ୍ତି, ସେବା ଶୁଶ୍ରୂଷା ଶିଖାନ୍ତି । ଏ ବିଷୟରେ ନାରୀ କର୍ମୀମାନେ ଗାଁର ଝିଅ ବୋହୂଙ୍କୁ ତାଲିମ୍ କରାଉଥିଲେ ।

ବଢ଼ି କାମ

ଆପଣାର କର୍ମସ୍ଥଳୀ ସକାଶେ ଜାଣି ଜାଣି ସେ ସେହି ବଢ଼ି ଅଞ୍ଚଳକୁ ହିଁ ବାଛିଥିଲେ । ସେଠି ପ୍ରତିବର୍ଷ ବଢ଼ି ହୁଏ । ଲୋକେ ଅବଶ୍ୟ ବଢ଼ିକୁ ଅଭ୍ୟସ୍ତ । ଜାଣନ୍ତି,

ବଢ଼ି ପାଣି ଆସିବ, ଗୃହଆଡ଼ ଜଳାର୍ଣ୍ଣବ ହେବ । ତେଣୁ ଘରଗୁଡ଼ିକ ଖୁବ୍ ଉଚ୍ଚ ଡିହ ଉପରେ ତୋଳା ହୋଇଥାଏ । ମାଟିକାନ୍ଥ ପରିବର୍ତ୍ତେ ଝାଟିମାଟି କାନ୍ଥ, କାନ୍ଥ ଧୁଳ୍‌ଧାଲ୍ ପଡ଼ିବ ନାହିଁ, ଘରେ ପାଣି ପଶିଲେ ଗୃହଳରେ ବସନ୍ତି, ପିଲାଙ୍କୁ ଗୃହଳରେ ବାନ୍ଧି ଦିଅନ୍ତି, ଗୋରୁ ଗାଈଙ୍କି ବାନ୍ଧି ଦିଅନ୍ତି କାନ୍ଥରେ ଥିବା ବାଉଁଶ ଖୁଣ୍ଟରେ, ଯେପରି ଭାସି ନ ଯାଉଥିବେ । କନ୍ଥି ନଈବନ୍ଧ ଭାଙ୍ଗିଲେ, ବଡ଼ ବଢ଼ି ଆସିଲେ ଭୟଙ୍କର ହୁଏ, ଧନଜୀବନ ନଷ୍ଟ ହୁଏ । ସାଧାରଣ ବଢ଼ିରେ ବି ଗାଁ ଠୁ ଗାଁ ପାଣିରେ କଟିଯାଏ, ଗାଁ ଗୋହିରୀରେ ଡଙ୍ଗା ଚାଲେ, ଗାଁ ଦାଣ୍ଡରେ ମୁହାଁମୁହିଁ ଦି ଧାଡ଼ି ଘରର ଲୋକେ ମୂକ ମୃକ ମୂର୍ତ୍ତି ହୋଇ ନିଜ ନିଜ ଘରେ ବସିଥାନ୍ତି, ପାଖକୁ ଯିବାକୁ ଉପାୟ ନାହିଁ । କାହା ସୌଭାଗ୍ୟକୁ ଯଦି କେଉଁଠି ଡଙ୍ଗାଟିଏ ଥାଏ, କାମରେ ଆସେ ।

ଆଶ୍ରମର ଲୋକେ ସେତେବେଳେ ସେ ଅଞ୍ଚଳର ଲୋକଙ୍କୁ ସନ୍ତୋଷାଳବାକୁ ବାହାରନ୍ତି, ତାଙ୍କ ଦୁଃଖସୁଖ ବୁଝନ୍ତି, ତାଙ୍କ ପାଇଁ ବଜାର ସଉଦା କିଣି ଦିଅନ୍ତି, ଯାହାର ଦରକାର ସାହାଯ୍ୟ ବାଣ୍ଟନ୍ତି, ନାନା ପ୍ରକାର ସାହାଯ୍ୟ କରନ୍ତି । ସେତେବେଳେ ରୋଗୀ ଚକିତ୍ସା, ରୋଗୀଙ୍କ ସେବା ଶୁଶ୍ରୂଷା, ଲୁଆଙ୍କ ପାଇଁ ଆହାର, ଗୋରୁଙ୍କ ପାଇଁ ଖାଦ୍ୟ ବି ଦରକାର ପଡ଼େ, ଯୋଗାନ୍ତି । ଗୋପବାବୁ ନିଜେ ଏ କାର୍ଯ୍ୟରେ ବୁଲି ବୁଲି କାମ କରୁଥାନ୍ତି ।

ନାନା ପ୍ରକାର ସାହାଯ୍ୟ

ସେବା ହିଁ ତାଙ୍କର ବ୍ରତ । କେହି କେଉଁ ପ୍ରକାର ବିପଦରେ ପଡ଼ିଛି ଶୁଣିଲେ ସେ ସାହାଯ୍ୟ କରିବାକୁ ଧାଆନ୍ତି । ତାଙ୍କ ଆଶ୍ରମର ବି ଆଭିମୁଖ୍ୟ ସେଇଆ । ସେ ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନରେ ଯେଉଁମାନେ ଜେଲ୍ ଯାଉଥିଲେ, ଆଶ୍ରମ ପକ୍ଷରୁ ସେମାନଙ୍କର ପରିବାରଙ୍କୁ ସାହାଯ୍ୟ କରା ହେଉଥିଲା । ଗୋଟିଏ ଉଦାହରଣ; ଛତ୍ରପଡ଼ା ଗାଁର ଶ୍ରୀ ପଦ୍ମନାଭ ଗୁପ୍ତ ୧୯୪୨ ଆନ୍ଦୋଳନରେ ଜେଲ୍ ଗଲେ, ରମା ଦେବୀ ତାଙ୍କ ଝିଅର ପାଠପଢ଼ା ବନ୍ଦୋବସ୍ତ କରିଦେଲେ, ଗୋପବାବୁ ରମା ଦେବୀ ତାଙ୍କ ପରିବାରକୁ ସାହାଯ୍ୟ କଲେ । ଏହିପରି ଅନେକ ଘଟଣା ।

ଧାନଗୋଲା

ବରୀ ଅଞ୍ଚଳରେ ଓ ଅନ୍ୟାନ୍ୟ 'କେନ୍ଦ୍ର' ଅଞ୍ଚଳରେ ଲୋକଙ୍କଠୁ ଭେଦା ଉଠାଇ ତାଙ୍କରି ପାଇଁ ଗୋପବାବୁ ସମବାୟ ଢଙ୍ଗରେ 'ଧାନଗୋଲା' କରାଇଥିଲେ, ଯେପରି ଦରକାର ବେଳେ ସେଠୁ ସୁବିଧାରେ କରଜ ପାଇବେ ।

## ସମବାୟ ଭଣ୍ଡାର

୧୯୩୪ ସନରେ ଗୋପବାବୁ ବକ୍ସରେ ଗୋଟିଏ ମଲ୍‌ଟିପର୍ପସ୍ କୋଅପରେଟିଭ୍ ଷ୍ଟୋର ବସାଇଥିଲେ ।

## ହାଟ

ତାହାପରେ ଗୋପବାବୁ ବକ୍ସରେ ଗୋଟିଏ ହାଟ ବସାଇଲେ । ହାଟଟି ସପ୍ତାହରେ ଦୁଇଥର ବସେ, ସୋମବାର ଓ ଶୁକ୍ରବାର ଦିନ । ନିକଟ ସେ ହାଟରୁ ପଢ଼ିବା କିଣି ରମା ଦେବୀ ହାଟଟିକୁ ଉଦ୍‌ଘାଟନ କରିଥିଲେ । ହାଟରେ 'ତୋଳା' ଅସୁଲ କରା ହେଉ ନ ଥିଲା ।

ହାଟ ବସିବା ବିଷୟରେ ଗୋଟିଏ କାହାଣୀ ଅଛି । ଗୋପବାବୁ ସମ୍ବଲପୁର ଗସ୍ତରୁ ଫେରି ବରୀ ଆଶ୍ରମରେ ସନ୍ତ୍ରବୁଢ଼ି ବସି ସୂତା କାଟୁଥାନ୍ତି । କର୍ମୀ ଗଣେଶବାବୁ ସେଠି ଥିଲେ, ତାଙ୍କୁ କହିଲେ, ଏଠି ଆମେ ଗୋଟିଏ ହାଟ ବସେଇ ପାରିବା ନାହିଁ ? ବାଲିଆପାଳ ହାଟ ଏଠୁ ଦୁଇମାଇଲ୍ ଦୂର ପଡ଼ୁଛି । ସମ୍ବଲପୁରରେ ଦେଖିଲି, ଘଣ୍ଟାଏ ଦିଘଣ୍ଟିଆ ହାଟ ବସେ, ଲୋକେ ପରିବାପତ୍ର ବିକନ୍ତି, ତା ବଦଳରେ ଅନ୍ୟ ଜିନିଷ କିଛି କିଣି ନିଅନ୍ତି । ହାଟ ବସିଲେ ଲୋକଙ୍କ ଉତ୍ପାଦନ ବି ବଢ଼ିବ । ବସୁ ହାଟଟିଏ ।

ଗଣେଶବାବୁ କହିଲେ, "ବିନା ପଇସାରେ କଣ ହାଟ ବସେଇ ହେବ ?"

"ହେବ । ପଇସା ଖର୍ଚ୍ଚ ହେବ ନାହିଁ । ସରକାରଙ୍କ ଅନୁମତି ଦରକାର ନାହିଁ । କାଲି ଡେଙ୍ଗୁରା ପିଟାଅ, ଏଠିକା ବଡ଼ ହାଟ ପୂର୍ବଦିନ ଆମ ହାଟ ହେବ, ହାଟରେ ତୋଳା ନିଆଯିବ ନାହିଁ । ସ୍ଥାନୀୟ ଭଦ୍ରଲୋକଙ୍କୁ ନିମନ୍ତ୍ରଣ କର, କହ କିଛି କିଛି ପଇସା ଆଣିଥିବେ ଜିନିଷ କିଣିବେ ।"

ସେହିପରି କରାଗଲା । ହାଟ ବସିଲା ।

## ସାମ୍ପ୍ରଦାୟିକତା ଦୂରୀକରଣ

ଆରମ୍ଭରୁ ହିଁ ଗୋପବାବୁ ସାଂପ୍ରଦାୟିକତାକୁ ବିଷ ଭଳି ମଣୁଥିଲେ । ନିଜେ ତ ଜାତି, ଧର୍ମ, ଭାଷା, ପ୍ରାଦେଶିକତା, ଅଛୁଆଁ ସବୁ ଭାଙ୍ଗିଥିଲେ, ଲୋକଙ୍କୁ ସେଇଆ ବୁଝାଉଥିଲେ । ସେ ମୁସଲମାନମାନଙ୍କ ସହିତ ଖୁବ୍ ମିଶୁଥିଲେ, ତାଙ୍କର ପରମବନ୍ଧୁ ଥିଲେ, ହିନ୍ଦୁ-ମୁସଲମାନ୍ ଏକ, ଏହିକଥା ସେ ଓ ତାଙ୍କ କର୍ମୀମାନେ ଘରେ ଘରେ ଗାଁଏ ଗାଁଏ ବୁଝାଉଥିଲେ, ପଙ୍‌କ୍ତିଭୋଜନ, ଏକାଠି ବସାଉଠା କରାଉଥିଲେ ।

ଜେଲ୍‌ରୁ ଫେରି ଦ୍ୱିତୀୟଥର ବାରିରେ ରହିଲାବେଳେ, ଯେପରି କେଉଁଠି ହିନ୍ଦୁ, ମୁସଲମାନ୍ ସଂଘର୍ଷ ନ ଲାଗେ ସେଥିପାଇଁ ଆଗରୁ ଶାନ୍ତି କମିଟି ଗଠନ, ହିନ୍ଦୁଙ୍କୁ ମୁସଲମାନଙ୍କ ନିରାପତ୍ତା ଦାୟିତ୍ୱ ଦେବା ଆଦି କରାଉଥିଲେ । ବାରି, ବାଲିଆପୁର, ଯାଜପୁରରେ ଏଭଳି କମିଟିମାନ ସକ୍ରିୟ ରହିଥିଲେ । ଭାରତରେ ଅନ୍ୟତ୍ର ହିନ୍ଦୁ, ମୁସଲମାନ୍ ସଂଘର୍ଷ ଲାଗିଲେ ବି ଗୋପବାବୁ ଓ ତାଙ୍କ ସହକର୍ମୀମାନଙ୍କ ଉଦ୍ୟମ ଫଳରେ ଏ ଅଞ୍ଚଳ ତହିଁରୁ ମୁକ୍ତ ରହିଲା ।

## ଗାଁର ସାମାଜିକ ଅବସ୍ଥା ପରିଶୋଧନ

ଗୋପବାବୁ ବାରି ଆସିଲାବେଳକୁ ସେ ଅଞ୍ଚଳରେ ନାନା କୁସଂସ୍କାର, ଅନ୍ଧ-ବିଶ୍ୱାସ, —ଘୃଣ୍ୟ ଜାଗଡ଼, ପୁରୁଣା ଯାଆନ୍ତିଆ ସଂସ୍ଥା, ଗରିବଙ୍କ ଉପରେ ତାର ଜୁଲୁମ୍, ଅତ୍ୟାଚାର, ଗାଁ ଗାଁକେ କଳି ଦଙ୍ଗା, ମାଲି ମକଦ୍ଦମା, ସମାଜରେ ମନର ସଙ୍କୀର୍ଣ୍ଣତା, ହିଂସା, ଦ୍ୱେଷ, ସେ ଗୋଟିଏ ଦସ୍ତୁମସ୍ତ ଅନ୍ଧାର ଅଞ୍ଚଳ, ସବୁଥିରେ ଅସୁସ୍ଥ । ସେ ଅଞ୍ଚଳକୁ ସେ କର୍ମସ୍ଥଳୀ କଲାପରେ ଏ ଅବସ୍ଥା ବଦଳି ଯାଇଥିଲା ।

## "ମୁଁ ଗୋବିନ୍ଦ ସାମଲ"—ଜଣେ କର୍ମୀ ତୁଣ୍ଡରେ ବର୍ଣ୍ଣନା

ରାମପୁର ଗାଁର ଶ୍ରୀ ଗୋବିନ୍ଦ ସାମଲ ବାରି ଆଶ୍ରମ ପ୍ରଭାବରେ ପଡ଼ି ସେଠି କର୍ମୀ ହୋଇଥିଲେ, ଗୋପବାବୁଙ୍କର ପାଖେ ପାଖେ ଥିଲେ । ସେ ଜଣେ ଅତି ଅଳ୍ପ ପଢ଼ା ଗାଉଁଲି ଚାଷୀ-ମୂଲିଆ ଲୋକ, ତାଙ୍କ ଝିଅ ସୁଶୀଳା ଦେବୀ କଂଗ୍ରେସ୍‌ରେ ମିଶିଲା ପରେ ଜେଲ୍ ଯାଇ ଫେରିଲାପରେ ସେ ବି କଂଗ୍ରେସ୍ କାମ କରୁଥିଲେ । ସେ ଖଦୀ ବିକି ବୁଲନ୍ତି, କଂଗ୍ରେସ୍ ପ୍ରଚାର କରନ୍ତି, କଂଗ୍ରେସ୍ ସଭ୍ୟ ସଂଗ୍ରହ କରନ୍ତି, ଆଶ୍ରମ ପାଇଁ ପଇସା, ଚାଉଳ, ପରିବା, ଛଣ ଆଦି ଚାନ୍ଦା ଆଣନ୍ତି, ଭାର ବୁହନ୍ତି, ନାନା କାର୍ଯ୍ୟ କରନ୍ତି । ସେ ତାଙ୍କ ଅଟଳା ଗାଉଁଲି ଭାଷାରେ ବାରି କାମ ବିଷୟରେ ତାଙ୍କ ନିଜ ଅନୁଭୂତି ଅଭିଜ୍ଞତା ଆଦି କିଛି ଲେଖି ପକାଇଛନ୍ତି । ଲୋକଙ୍କ ପାଖକୁ ଯାଇ ବୁଝାଇ ଭେଲାଇ ସେ ଗୋପବାବୁଙ୍କ ରଚନାତ୍ମକ କାର୍ଯ୍ୟରେ ସାହାଯ୍ୟ କରୁଥିଲେ, ସଂଗଠନ କାମରେ ଦକ୍ଷ ଥିଲେ, ପରିଶ୍ରମୀ, ବୁଦ୍ଧିମାନ୍, ନିଡରୁଆ, ସରଳ ବିଶ୍ୱାସୀ ଲୋକ । ଗୋପବାବୁ ରମା ଦେବୀଙ୍କୁ ସେ ଦେବତା ପରି ମାନନ୍ତି, ତାଙ୍କ କଥା ମାନି ସେ ସଂସ୍କାରମୁକ୍ତ ନିର୍ଭୀକ ଓ ଦେଶପ୍ରେମୀ ହୋଇଥିଲେ ।

ସେ ଲେଖିଛନ୍ତି ଯେ ସେ ବହୁତ କଂଗ୍ରେସ ସଭ୍ୟ ସଂଗ୍ରହ କରିଥିଲେ, "୫୦୦ ଜଣରୁ ବେଶି ହେଲେ ଗୋଟିଏ ପ୍ରାଇମେରୀ କଂଗ୍ରେସ୍ କମିଟି ହୁଏ । ବାଲିଆପୁର ଥାନା ୫ ନମ୍ବର ଓ ୬ ନମ୍ବର ୟୁନିଅନ୍ ଦୁଇଟି ଗୋବିନ୍ଦ ଭାଗରେ କାମ କରିବାକୁ ଦିଆ ହୋଇଥାଏ, ଏଥିରେ ୧୬ଟି ଅସ୍ଥାୟୀ କଂଗ୍ରେସ୍ କମିଟି ହୋଇଥାଏ ।

ତହିଁରୁ ଧାରପୁର ଅସ୍ଥାୟୀ କଂଗ୍ରେସ୍ କମିଟିରେ ବୀରବାବୁ (ବୀରଭଦ୍ର ରଥ) ସଭାପତି, ମୁଁ ଗୋବିନ୍ଦ, ସେକ୍ରେଟେରୀ…

ଗୋପବାବୁଙ୍କ ଆଶ୍ରମରେ ଟ୍ରେନିଂ ପାଇବା ପାଇଁ ବାରଟା କମିଟିର ସଭାପତି, ସେକ୍ରେଟେରୀ ଏପରି ୨୪ ଜଣ ଆସି ତିନିମାସ ଲେଖା ଟ୍ରେନିଂ ପାଇ ଯାଇଛନ୍ତି । ତାଙ୍କୁ ଅରଟ ଦୁଇଖଣ୍ଡ ଲେଖା, ସୂତାକଟା ଶିଖାଇବା ପାଇଁ ଗ୍ରାମର ଲୋକଙ୍କୁ ଗୋଟାଏ ଲେଖାଏଁ ତିରଙ୍ଗା ପତାକା ଦିଆହୁଏ । ଏହି କଂଗ୍ରେସ ମେମ୍ବର ପଇସାରୁ ଖରଚ ହୁଏ, ଚୂନା ମଗା ହୁଏ । ନିରକ୍ଷରତା ଦୂରୀକରଣ ପାଇଁ ବର୍ଣ୍ଣବୋଧ, ବହି ସିଲଟ, ହାରିକେନ, କିରାସିନ ତେଲ ଦିଆଯାଏ । ଗୋବିନ୍ଦ ଟୀକା ସ୍ଥାନରେ କାନ୍ଥେଇ କରି ବାଣ୍ଟି ଦେଇଆସେ । ରାତିରେ ଗ୍ରାମର ଲୋକେ ପଢ଼ନ୍ତି, ରାତିରେ ଗୋବିନ୍ଦ ବୁଲି ଦେଖେ ।

**କଳିଭଙ୍ଗା ପଞ୍ଚାଏତ୍**

ଗୋପବାବୁ ୧୨ଟା ଗ୍ରାମପଞ୍ଚାୟତ ଗଢ଼ି ଦେଇଥାନ୍ତି । ସେ ପଞ୍ଚାୟତର ମେମ୍ବରମାନେ ମକଦମା ବିଚାର କରିଦେବେ । ଗୋଟିଏ ଟଙ୍କାରୁ ବେଶି ଜୋରିମାନା ହେବ ନାହିଁ । ସେ ଜୋରିମାନା ସେହି ଗ୍ରାମର କମିଟିରେ ଜମା ରହେ…ଗ୍ରାମର କଳିକଜିଆ ନିଷ୍ପତ୍ତି କରିବା ପାଇଁ ବାଦୀ ବିବାଦୀଙ୍କଠାରୁ ଦରଖାସ୍ତ ଜବାବ୍ ନେଇ ପଞ୍ଚାଏତ ଭଦ୍ରଲୋକଙ୍କୁ ଡାକି ଏକ-ଜାଗା କରାଇ ନିଷ୍ପତ୍ତି କରାଇବା । ଯେଉଁ ଅଞ୍ଚଳରେ କଳିକଜିଆ ସେହି ଅଞ୍ଚଳରେ ନିଷ୍ପତ୍ତି ହେଉଥିଲା । ତାର ନାମ ଥିଲା 'ବାରଙ୍ଗା ପଞ୍ଚାଏତ୍ ବୋର୍ଡ଼୍' । …ଗୋବିନ୍ଦ ଉପରେ କାମ ଥିଲା…(ଇତ୍ୟାଦି)… ଯେଉଁ ଗ୍ରାମରେ ଜମିଦାରଙ୍କ ଉପଦ୍ରବ ହେଉଥିଲା ସେଠିକି ଯାଇ ଲୋକଙ୍କୁ ସଙ୍ଗକୁ ଡକାଇ ସଭା କରାଇବା । ସେତେବେଳେ ବିନୋଦ୍ କାନନ୍‌ଗୋ, ସୁରେନ୍ଦ୍ର ପଟ୍ଟନାୟକ, ଭଗୀରଥ ଦାସ, ବାଲେଶ୍ୱର ଜିଲ୍ଲାର ନନ୍ଦ କିଶୋର ଦାସ, ଏମାନେ ସଭାରେ ବୁଝାଉଥିଲେ । ସଭା କରାଇବା କାମ ଗୋବିନ୍ଦର ।

…ପ୍ରତି ରବିବାର ରାମଚନ୍ଦ୍ରପୁର ଇସ୍କୁଲରେ ସଭା ହୁଏ, ଶିକ୍ଷା ସପ୍ତା(ହ) ହୁଏ, ଶିକ୍ଷା ସପ୍ତାକୁ ସବୁ ଇସ୍କୁଲ୍‌ର ପିଲାମାନେ ଆସନ୍ତି । ଏ ଅଞ୍ଚଳରେ ପ୍ରତି ଗ୍ରାମକୁ ନିମନ୍ତ୍ରଣ ଯାଏ, ଜମିଦାରମାନଙ୍କୁ, ସବୁ ସାମନ୍ତମାନଙ୍କୁ ନିମନ୍ତ୍ରଣ ଯାଏ, ସେମାନେ ଡାଲି, ଚାଉଳ, ପରିବା, ଚୂଡ଼ା, ଗୁଡ଼, ଦହି, ପାଚିଲା କଦଳୀ, ଚିନି, କିଏ ଘରେ, କିଏ ଦଶଘରର ପାଞ୍ଚଘର, କେହି ବଡ଼ ଲୋକମାନେ ଗାଡ଼ିରେ ଲଦି ପଠାନ୍ତି, ପିତଳ ହାଣ୍ଡି, କଡ଼ା, ସାମିଆନା ଜିନିଷ ସବୁ ପଠାନ୍ତି । କେବଳ ଗୋପବାବୁଙ୍କ ନିମନ୍ତ୍ରଣ ଚିଠି ପାଇ ସେମାନେ ଦିଅନ୍ତି । ଫୁଲକୁଣ୍ଡ ହରିପୁରଠାରୁ ମହାକାଳପଡ଼ା ନୀଳପଦା

କଳାମାଟିଆ, ବାରଙ୍ଗ ସ୍ଥା ମଧ୍ୟରେ ଯେତେ ଗ୍ରାମ ଅଛି···ସବୁ ଗ୍ରାମକୁ ଚିଠି ନିମନ୍ତ୍ରଣ ଯାଏ, ସବୁ ଗ୍ରାମଲୋକେ ଖବର ପଠାନ୍ତି, ହଜାର ହଜାର ଲୋକ ଖାଇବାକୁ ଆସନ୍ତି ।

ହରିଜନମାନେ—ପଂକ୍ତି ଭୋଜନ କରାଯାଏ । ସବୁ କାମ ବଣ୍ଟା ହୋଇଥାଏ । ଗୋବିନ୍ଦ ଭାଗରେ, —ନିମନ୍ତ୍ରଣ କରିବା, ଗୋପବାବୁଙ୍କ ଚିଠି ନେଇଯିବା, ଏ ଜିନିଷପତ୍ର ଆସିବା ଖବର (?), ପୂଝାରି ଯୋଗେଇବା, ପୂଝାରିଙ୍କ ପାଖକୁ ହରିଜନଙ୍କ ହାତରେ ପାଣି ବୁହାଇବା, ରାତି ୧୨ଟା ବେଳୁ ରୋଷେଇ କରେଇବା, ଦିନ ଏଗାରଟା ବେଳେ ଖୁଆଇବା, ଏ ଅଞ୍ଚଳ ଲୋକଙ୍କୁ ଚିହ୍ନିବା, ମୁଁ ଗୋବିନ୍ଦ, ଯିଏ ଯେଉଁପରି ଭାବରେ ବସି ଖାଇବେ ତାଙ୍କୁ ସେହିପରି ଭାବରେ ଖୁଆଇବା, ପଣୀକା, ଡଙ୍କା, ଚଟୁ, ପରିବା ଓହ୍ଲେଇବା, ଝିଅପିଲା ଓ କେତେକ ସ୍ତ୍ରୀଲୋକ ଯୋଗାଡ଼ କରେ, ଡାକ ଆଣି କରେଇବା । ପୂଝାରି ରାମପୁର ବ୍ରାହ୍ମଣମାନଙ୍କୁ ଡାକ ଜବାବ୍ କରିଥାଏଁ "ତୁମମାନଙ୍କୁ ଜଣକା ୫ ଟଙ୍କା ଦିଆଯିବ, ରାତି ୧୨ଟା ବେଳୁ ରୋଷେଇ ହେବ, ତୁମମାନଙ୍କ ପାଖରୁ ଯୋଗାଡ଼—ପାଣି ହରିଜନ ଦଶଜଣ ରହିବେ, କେବଳ ପାଣି ବୋହିବେ, ବାଟଣା ବାଟିଦେବେ, ହାଣ୍ଡି ଓହ୍ଲେଇବେ । ତାଙ୍କୁ ମଜୁରି ବାରଅଣା ଲେଖା ଦିଆଯିବ । ତୁମ ପୂଝାରି ୮ ଜଣଙ୍କୁ ଖାଇବାକୁ ଦିଆହେବ ନାହିଁ ।"···ବ୍ରାହ୍ମଣ ପୂଝାରି ଡରୁଥାନ୍ତି ଜାତି ଲାଗି, ସେଥିପାଇଁ ଗୋବିନ୍ଦ କଣ ନିୟମ କରିଥାଏ ନା "ଖାଇବାକୁ ତୁମକୁ ଦିଆଯିବ ନାହିଁ ।···"

"(ପୂଝାରିମାନେ) ରାମଚନ୍ଦ୍ରପୁରରେ ଯାଇ ଦେଖନ୍ତି ବିରାଟ ସମ୍ଭାର କାମ । କଦଳୀ, ଚିନି, ଦହି, ଦୁଧ, ଚୂଡ଼ା, ଗୁଡ଼, ଚିନାବାଦାମ, ନଡ଼ିଆ, ପଇଡ଼··· ବଡ଼ଲୋକ ଖାଉଛନ୍ତି, ଶହ ଶହ ପିଲା ଖାଉଛନ୍ତି, ସବୁ ଗ୍ରାମଲୋକେ ପୂଝାରିମାନେ ଦେଖୁଛନ୍ତି, ଶହ ଶହ ମହଣ ଖାଇବା ଜିନିଷ ଜମା ହୋଇଛି, ଏ ଜିନିଷର ହିପାଜତ୍ କରିବା କାମ ଗୋବିନ୍ଦ ଉପରେ ବେଶି ଥାଏ ।···

ପୂଝାରିମାନଙ୍କୁ କହେଁ, 'ତୁମେମାନେ ଏତେ ପ୍ରକାର ଡାଲି, ତରକାରି, ଖିରି, ପଲଉ କରିଛ, ହଜାର ହଜାର ଲୋକଙ୍କୁ ଖୁଆଇବ, ଯଦି ଲୁଣିଆ, ଅଲଣା କି ଧୂଆଁ ଗନ୍ଧିଆ ହୋଇଯିବ ତୁମେମାନେ ନିନ୍ଦା ପାଇବ, ତୁମ ପାରିଶ୍ରମିକ ଦିଆଯିବ ନାହିଁ, ସବୁଥିରୁ ଟିକିଏ ଟିକିଏ ଚାଖ, ତୁମକୁ ଖାଇବାକୁ ଦିଆଯିବ ନାହିଁ, ତୁମ ଘରେ ଖାଇବ ତୁମ ସଙ୍ଗେ ଜବାବ୍ ହୋଇଛି ।'

ସେମାନେ ଚାଖନ୍ତି । ଚାଖିବା କାମ ହୁଏ । ତାଙ୍କର ଖାଇବା କଣ ନିଅନ୍ତି । ମୁଁ ଭାରି ଖୁସି । ଶେଷରେ ତାଙ୍କ ଘରକୁ ମାଇପଙ୍କ ପାଇଁ ଭଲ ତରକାରି ଖିରି ଭାତ ନିଅନ୍ତି । ପାଣି ଛୁଇଁବା କଥା ଭୁଲିଗଲେଣି ।

## ଜମିଦାରଙ୍କ ନମୁନା, ପୂର୍ବେ ଓ ଆଶ୍ରମ ହେବାପରେ

...(ଅମୁକ) ଗ୍ରାମରେ (ଅମୁକ) ଜେନା ଜମିଦାର । ତାଙ୍କର କାମ ହେଉଛି, ସେ ଗ୍ରାମର କଳିକଜିଆ ନିଷ୍ପତ୍ତି କରି ଜୋରିମାନା ନିଅନ୍ତି, ଗୋଲମାନଙ୍କ ହାତରେ ମାଗଣା ଘର ଛପର କରନ୍ତି, ଗୋଲମାନେ ତାଙ୍କ ବାଡ଼ିରୁ ବାଉଁଶ ହାଣି ବତା କରି ନିଅନ୍ତି, ଘର ଗ୍ରୁହଣି କରିବା, ତାଙ୍କ ଗଣେଶ ପୂଜା, ସପ୍ତା ଠାକୁର କରନ୍ତି । ଗୋଲମାନେ ମାଗେଣା ଯାତ୍ରା କରନ୍ତି । ତାଙ୍କ ନିଜ ଘରୁ ଖାଇକରି ଯାଆନ୍ତି ବେଠି କରିବାକୁ, ସବୁଦିନେ । ଗୋଟିଏ ଯାତ୍ରାଦଳ କରିଥାନ୍ତି । ସବୁ ଲୋକଙ୍କଠାରୁ ଗୋଟିଏ ଲେଖା ହ୍ୟାଣ୍ଡ୍‌ନୋଟ୍ ତମସୁକ ଅଲେଖା ଦଲିଲ୍ ରଖିଥାନ୍ତି । ଓସ୍ତାଦ୍ ତିନିଜଣ ରହନ୍ତି । ସେ ଯାତ୍ରାଦଳଙ୍କ ଉପରେ ଟ ୫୦୦-୦୦ କରଜ ଥାଏ । ଓସ୍ତାଦମାନଙ୍କୁ ଦରମା ପ୍ରତି ମାସକୁ ପ୍ରତି ଓସ୍ତାଦ୍‌କୁ ଟ ୧୦-୦୦ ଦିଅନ୍ତି, କହନ୍ତି ଟ ୨୦-୦୦ ଲେଖା ଦେଉଛି । ଯାତ୍ରାରେ ଯେତେ ରୋଜଗାର ହେଲେ ସୁଦ୍ଧା କରଜ ରହିବା କଥା ।... ଗଉଡ଼ମାନେ ଘିଅ ଦୁଧ ଦହି ସବୁଦିନେ ମାଗଣା ଦିଅନ୍ତି, ମାଗଣା ଶୁଆରି କାନ୍ଧାନ୍ତି, ବୋଲହାକ କରନ୍ତି, ଯୋଡ଼ିଏ ପିଆଦା ଥାନ୍ତି, ଅମଠପୁରର (ଅମୁକ) ସିଂ ଓ ମହାକାଳପଡ଼ାର (ଅମୁକ) ମଲିକ । ...ଜାତି-ନୀତି କଥା ଘାରି ଧରନ୍ତି । ଗହ୍ମା ପୂର୍ଣ୍ଣିମୀକି, ପୁଷ ପୂର୍ଣ୍ଣିମୀକି ଅଭିଷେକ କରନ୍ତି ଓ ଏହି ଲୋକମାନେ ବେଠି କରନ୍ତି ।

## ମଠ ଗୋସେଇଁ

ଗଉଡ଼ମାନଙ୍କର ଗୋଟିଏ 'ଗୋସେଇଁ' ଅଛନ୍ତି । ସେ ବର୍ଷକେ ଥରେ ଆସନ୍ତି । ଗୋପାଳଙ୍କର କିଛି ନୀତି ଅନୀତି ହେଲେ ମୁଣ୍ଡ ଉପରେ ଗୁଆଟିଏ ଥୋଇ ତା ଉପରେ ପାଣିମାଠିଆ ମୁଣ୍ଡେଇ କରି ଦୌଡ଼ାନ୍ତି, ଗୋଡ଼ତଳେ ପକାନ୍ତି, ଜୋରିମାନା ନିଅନ୍ତି ।

ସେ ଗ୍ରାମକୁ ମୁଁ ଗୋବିନ୍ଦ ସାମଲ କଂଗ୍ରେସ କାମ କରିବାକୁ ଯାଏ, ସେ ଲୋକଙ୍କୁ ପରାମର୍ଶ ଦିଏଁ, ତାଙ୍କୁ ସବୁ କଂଗ୍ରେସ ମେମ୍ବର କରାଏଁ । ଗୋଲମାନଙ୍କ ଘରେ ମୁଁ ଖାଏଁ । ତାଙ୍କ ସଙ୍ଗରେ ସଦ୍‌ଭାବ ପ୍ରେମ-ଆଳାପ କରେ, ଗୋପାଳମାନଙ୍କ ସଙ୍ଗରେ ସେହିପରି ଆଳାପ କରେଁ, ଗାନ୍ଧୀକଥା ବୁଝାଏ —

## କଳିଗୋଳ ଛାଡ଼ିବା, ଏକତା

ତୁମେମାନେ ମିଳିମିଶି ଚାଲ । ଜମିଦାରଙ୍କ ପାଖକୁ ଯାଅ ନାହିଁ । ତୁମ ଭିତରେ ଏକାଠି ବସି ଯାହାର ଦୋଷ ହେବ ଟ ୧-୨୦ ଜୋରିମାନା କରି ତୁମ କମିଟିରେ ରଖ । ନିତି ଏକାଠି ବସ, ସଭା କର, ଜାତି ନୀତି ବାର ନାହିଁ, ଆମେ

ମଣିଷ ଜାତି ଗୋଟିଏ ହେବା । ତୁମେମାନେ ବେଠି କର ନାହିଁ । ମଣିଷକୁ ମଣିଷ କହାନା । ତୁମେମାନେ ମଣିଷ, ଏକା ରକ୍ତ ।

ଏହିପରି ଅନେକ କଥା କୁହେଁ ।

## ଜମିଦାରଙ୍କୁ ଅସହଯୋଗ ଓ ସଂସ୍କାର ଭଙ୍ଗ

ସେମାନେ ବୁଝିଗଲେ । ଜମିଦାର—ଜେନା ଆସିଲେ କେହି କଥା କହନ୍ତି ନାହିଁ, ତାଙ୍କ ପାଖରେ ବସନ୍ତି ନାହିଁ, ଦଣ୍ଡବତ ହୁଅନ୍ତି ନାହିଁ, ତାଙ୍କ ପାଖରେ କଣାପ ପକାନ୍ତି ନାହିଁ । ସବୁ ଜାତି ଏକା ସମାଜ କରି ଖାଆନ୍ତି, ଜାତି କଥା ଉଠେଇ ଦେଲେ । ଜେନାଙ୍କୁ ମାନଲେ ନାହିଁ ।

ଗୋପାଳମାନଙ୍କର ଗୋସେଇଁ ଆସିଲେ (ଗୋପାଳମାନେ) ପଚାରନ୍ତି— ତୁମେତ ଗୋଟିଏ ମହାନ୍ତି, ତୁମେ କିପରି ଆମ ଗୋସେଇଁ ହୋଇଛ ? ଆମ ଅଚ୍ୟୁତାନନ୍ଦ ମହାପୁରୁଷଙ୍କର ତୁମେ କିଏ ? ତାଙ୍କ ଶଳା ନା ଶଶୁର ?' ତାଙ୍କୁ ଆଉ ମାନଲେ ନାହିଁ । ···ଗୋପାଳମାନେ ପଗଡ଼ି ପକାଇଲେ, କାନ୍ଧେଇଲେ ନାହିଁ, ଗୋଳ, ଗୌଡ଼, ଚମାର ଏମାନେ ବେଠି କଲେ ନାହିଁ । ବାଡ଼ରେ ଯେଉଁ ଗଛ ଥିଲା ସେଥିରୁ (ଜେନା ଜମିଦାର) ଭାଗ ଅଧେ ନଅନ୍ତି, ଖଜଣା ପୂରା ନଅନ୍ତି । ପ୍ରଜାମାନେ ଭାଗ ଦେଲେ ନାହିଁ, ପାଣ-କଣ୍ଡରଙ୍କ ସଙ୍ଗେ ମିଳାମିଶି ଚଳିଲେ ପ୍ରାୟଶ୍ଚିତ୍ତ ହେଲେ ନାହିଁ । ଯେଉଁ ଲୋକେ କଣ ରଖନ୍ତି, (ଜେନା ଜମିଦାର) ସେ ଲୋକଙ୍କଠୁ କୋଡ଼ମୋନା ନଅନ୍ତି, ଯେଉଁମାନେ ପାଣିପାଟିଆ ଲଗାଇ ଘର କରନ୍ତି, ତାଙ୍କଠୁ କୋଡ଼ମୋନା ନଅନ୍ତି, ଲୋକେ ଆଉ ଏସବୁ କଥା ମାନଲେ ନାହିଁ ।

(ଜମିଦାର) ଜେନା ଭାରି ରାଗିଲେ । ଗୋଲା ଗଉଡ଼ମାନଙ୍କୁ ଅଟକ ରଖେଇଲେ । ଧୋବା, ଭଣ୍ଡାରି, ବ୍ରାହ୍ମଣ, ନାହାକ ଓ ଝଣ୍ଡାଏତମାନଙ୍କୁ ମଡାଇ ସଭା କରି କହିଲେ, —ତାଙ୍କ ଗୋରୁ ଆମ ବିଲରେ ଚରାଇ ଦେବା ନାହିଁ, କାଞ୍ଜିଆଉଦାକୁ ନେବା ।

ବଣ୍ଟି ଆଶ୍ରମ ଏ ଗୋଳମାଳ ବି ଶାନ୍ତିରେ ତୁଟାଉଥାଏ । ଗୋବିନ୍ଦ ଲେଖିଛନ୍ତି—

## ଜମିଦାରଙ୍କ ଜୁଲୁମ୍

"ଏ ବଣ୍ଟି ଅଞ୍ଚଳରେ ଜମିଦାରମାନେ ପ୍ରଜାଙ୍କୁ ବେଠି ଖଟାନ୍ତି, ମାଡ଼ ମାରନ୍ତି, ବିନା ପଇସାରେ ଗଉଡ଼ମାନେ ଦୁଧ ଘିଅ ଦଅନ୍ତି, ମାଗଣା ଶୁଆରେ କାନ୍ଧାନ୍ତି,

ମାଗଣା ଘର ଛପର କରନ୍ତି, ମାଗଣା ପାଣମାନେ ବାଜା ବଜାନ୍ତି, ଗିରସ୍ତ ଝିଅ ବା କନିଆ ଲଗିଲେ (ଜମିଦାର) କୋଣମାନା ନିଅନ୍ତି, ଲୋକେ ନଡ଼ିଆଗଛ ପକାନ୍ତି ନାହିଁ, ...ଜମିଦାରଙ୍କ ଭୟରେ ହାଟୁଆମାନେ ଘରେ ପାଣିପାଚିଆ ଲଗାନ୍ତି ନାହିଁ, ଜଣ ରଖନ୍ତି ନାହିଁ, ଆମ୍ବ ଗଛରେ ଆମ୍ବ ପାଚିଥିଲେ (ଜମିଦାର) ଗଛ ଗୁଣ୍ଡିରେ ଖୋବା ବାନ୍ଧିଦେଇ ପାଲଦଉଡ଼ି ବାନ୍ଧି ପାଣଙ୍କ ହାତରେ ଜମା ଦେଇଦେଲେ ଜମିଦାରଙ୍କ ଭୟରେ ତା ଭିତରକୁ କେହି ପଶି ପାରନ୍ତି ନାହିଁ, ଦରକାର ପଡ଼ିଲେ (ଜମିଦାର ସେ ଗଛ ଫଳକୁ) ପାଣଙ୍କୁ ବିକି ଦିଅନ୍ତି, ଛେଳି ଗୋରୁ ପରି ।

ଗୋପବାବୁ ବଣ୍ଡି ଅଞ୍ଚଳକୁ ଆସିଲାଦିନୁ ଏସବୁ କାମ ବନ୍ଦ ହୋଇଛି । ଲୋକମାନଙ୍କ ସାହସ ବଢ଼ିଛି ।..."

## ଗଡ଼ଜାତ ପ୍ରଜା ଆନ୍ଦୋଳନ

ଓଡ଼ିଶା ଗଡ଼ଜାତମାନଙ୍କରେ ଅନ୍ଧାର ଶାସନ ଚାଲିଥାଏ । ଅନ୍ୟାୟ, ଅତ୍ୟାଚାର, ବେଠି ବେଗାରି । ଏପାଖେ କଂଗ୍ରେସ ଶାସନ, ମୁକ୍ତି ଆନ୍ଦୋଳନ, ତା ପବନ ସେ ଅନ୍ଧାରରେ ବି ବାଜିଲାଣି, ପ୍ରଜା ଉଠିଲେଣି । ୧୯୩୭ ଜୁନ୍ ୨୪ରେ ଗଡ଼ଜାତ ପ୍ରଜାମାନେ ସଭା କଲେ, ସଭାରେ ସଭାପତି ଶ୍ରୀ ପଟ୍ଟାଭି ସୀତାରାମାୟା, ଦାବିମାନ ଆଗତ କରାଗଲା, ଅଭିଯୋଗ ବଡ଼ପାଟିରେ କୁହାଗଲା । ଅନ୍ଧାରି ଶାସନରେ ପ୍ରଜାଙ୍କ ଦୁରବସ୍ଥା ଅନୁସନ୍ଧାନ ପାଇଁ କମିଟିଟିଏ ଗଢ଼ା ହେଲା, ତା ସଭାପତି ଡକ୍ଟର ମହତାବ୍, ସଭ୍ୟ ଶ୍ରୀ ବଳବନ୍ତରାୟ ମେହେଟା ଓ ଶ୍ରୀ ଲାଲ୍‌ମୋହନ ପଟ୍ଟନାୟକ । କମିଟି ରିପୋର୍ଟ୍ ଦେଲେ । ପ୍ରଜା ଆନ୍ଦୋଳନ ତେଜିଲା । ହେଲା ଗଢ଼ା 'ପ୍ରଜା-ମଣ୍ଡଳ' । ତାକୁ ଦବେଇଦେବାକୁ ରାଜାମାନେ ନାନା ଉଦ୍ୟମ କଲେ, ଦମନ ଆରମ୍ଭ କଲେ, ଇଂରେଜ୍ ସରକାର ସେମାନଙ୍କୁ ସୈନ୍ୟ ସାହାଯ୍ୟ ଦେଲେ ।

ପ୍ରଜାମଣ୍ଡଳ ଆନ୍ଦୋଳନ ବେଳେ ଗୋପବାବୁ ଉଃ ପ୍ରାଃ କଃ କଃ ସଭାପତି ପଦରୁ ଇସ୍ତଫା ଦେଲେ । ଯେଉଁ ଯେଉଁ କାରଣରୁ ଇସ୍ତଫା ଦେଲେ ବୋଲି ସେ ଜନସାଧାରଣଙ୍କୁ ବିବୃତ୍ତି ଦେଇଥିଲେ ତହିଁରୁ ଗୋଟିଏ କାରଣ ଥିଲା ଯେ ସେ କେତେ ଲୋକଙ୍କଠୁ ଶୁଣିଛନ୍ତି ଯେ ଢେଙ୍କାନାଳ ଆନ୍ଦୋଳନ ସତ୍ୟ ଅହିଂସା ନୀତିକୁ ନିଷ୍ଠାପର ଭାବେ ମାନୁ ନାହିଁ, ଉଃ ପ୍ରାଃ କଃ କଃର ସଭାପତି ହିସାବରେ ସେ ଅନୁଭବ କରୁଛନ୍ତି ଯେ ଏ କଥାର ସତ୍ୟାସତ୍ୟ ସେ ଅନୁସନ୍ଧାନ କରିବା ଉଚିତ, କିନ୍ତୁ ସେ ଦେଖିଲେଣି ଯେ ସେପରି ଅନୁସନ୍ଧାନ କରିବାକୁ ତାଙ୍କର ବେଳ ନାହିଁ କି ଶକ୍ତି ନାହିଁ, ସେ ସ୍ୱେଚ୍ଛା ଦାୟିତ୍ୱ ତୁଲେଇପାରୁ ନାହାନ୍ତି ।

ଢେଙ୍କାନାଳ ରାଜ୍ୟରେ ପ୍ରଜାଙ୍କ ଉପରେ ଫଉଜ ଗୁଳି ଚଳାଇଲେ, ଅଠର ଜଣ ମଲେ, ଗୋପବାବୁ ଖବର କାଗଜମାନଙ୍କରେ ଇଂରେଜୀରେ, ଓଡ଼ିଆରେ ବିବୃତ୍ତି ଦେଇ ସେ ଦମନଲୀଳାକୁ ଘୋର ନିନ୍ଦା କଲେ । ସେ ଲେଖିଲେ ଯେ ସେ ନିର୍ମମ କାଣ୍ଡ ପାଇଁ ନିଜେ ଇଂରେଜ୍ ସରକାର ବି ଦାୟୀ କାରଣ ରାଜାମାନଙ୍କୁ ତ ସେ ସରକାର ସୈନ୍ୟବଳ ଯୋଗାଇ ଦେଉଛନ୍ତି, ସରକାର ଏଭଳି କାଣ୍ଡ ଘଟିବାକୁ ଦେଉଛନ୍ତି । ଇଂରେଜୀରେ ଗୋଟିଏ ଷ୍ଟେଟ୍‌ମେଣ୍ଟ୍‌ରେ ସେ ତାଙ୍କର ଏ ଅଭିମତ ଛପାଇ ଆହୁରି ଲେଖିଥିଲେ :

"ଇଂରେଜ୍ ସରକାର ବୁଝିବା ଦରକାର ଯେ ସେ ଗଡ଼ଜାତ ରାଜାଙ୍କ ସଙ୍ଗେ କଥାଭାଷା ହୋଇ କିଛି ମୀମାଂସା କରି ପକାଇଲେ ତା ଅର୍ଥ ହେବ ନାହିଁ ଯେ ସେ ପ୍ରଜାଙ୍କ ସଙ୍ଗେ କଥାଭାଷା ହୋଇ କିଛି ମୀମାଂସା କରିଦେଲେ । ଗଡ଼ଜାତର ପ୍ରଜା ବି ଭାରତବାସୀ, ସରକାର ତାଙ୍କ ସଙ୍ଗେ କଥାଭାଷା ହୋଇ ବିବାଦ ତୁଟାଇବା ଉଚିତ ।

ଗଡ଼ଜାତରେ ପ୍ରଜା ଆନ୍ଦୋଳନକୁ କଂଗ୍ରେସ୍ ଅନୁଷ୍ଠାନ ସଂଗଠନ କରିନାହିଁ । ଆଖପାଖ ଜିଲ୍ଲାରେ କଂଗ୍ରେସ କାମ ହେବା ଫଳରେ ଗଡ଼ଜାତବାସୀ ଆନ୍ଦୋଳନ କରିଥାଇ ପାରନ୍ତି । ସେମାନେ ବ୍ୟକ୍ତିଗତଭାବେ ହୁଏତ କଂଗ୍ରେସ୍ ଲୋକଙ୍କଠାରୁ ପରାମର୍ଶ ନେଉଥିବେ, କିନ୍ତୁ କଂଗ୍ରେସ୍ ତା ନିଜ ନୀତି ଜଗିଛି, ତେଣୁ ବର୍ତ୍ତମାନ ଗଡ଼ଜାତ ଆନ୍ଦୋଳନରେ କଂଗ୍ରେସ୍ ହସ୍ତକ୍ଷେପ କରୁନାହିଁ । କିନ୍ତୁ ଗଡ଼ଜାତ ରାଜାମାନଙ୍କ ଅନ୍ୟାୟ ଅତ୍ୟାଚାର କବଳରୁ ନିଜକୁ ମୁକ୍ତ କରିବାକୁ ଗଡ଼ଜାତ ପ୍ରଜାଏ ସତ୍ୟ-ଅହିଂସାମୂଳକ ଆନ୍ଦୋଳନ କରୁଛନ୍ତି ଓ ସେ ଆନ୍ଦୋଳନ ପ୍ରତି କଂଗ୍ରେସର ସହାନୁଭୂତି ଅଛି । ସେମାନଙ୍କ ମୁକ୍ତି ସେମାନଙ୍କ ସାହସ ଉପରେ ଓ ତ୍ୟାଗ ଉପରେ ନିର୍ଭର କରୁଛି ଓ ସମ୍ପୂର୍ଣ୍ଣଭାବେ ସେମାନେ ସତ୍ୟ ଅହିଂସାମାର୍ଗରେ ଚାଲିବା ଉପରେ ନିର୍ଭର କରୁଛି ।

ରାଜାମାନେ ବି ମନେ ରଖିଥାନ୍ତୁ, ଗଡ଼ଜାତ ପ୍ରଜା ଯେଉଁ ନ୍ୟାୟସଙ୍ଗତ ଦାବୀମାନ କରୁଛନ୍ତି ତା ପଛଆଡ଼େ ଭାରତର ଦେଶବାସୀଙ୍କର ସବୁବେଳେ ସମର୍ଥନ ରହିଛି । ଆହୁରି ମନେରଖନ୍ତୁ, କଂଗ୍ରେସ ଏ ପର୍ଯ୍ୟନ୍ତ ଯେଉଁ ନୀତିରେ ଚାଲିଛି ତାକୁ ବଦଳାଇ ଦେବାକୁ କଂଗ୍ରେସର ଅଧିକାର ଅଛି ।"

ଗଡ଼ଜାତ ପ୍ରଜା ଆନ୍ଦୋଳନ ବିଷୟରେ ତାଙ୍କର ସ୍ପଷ୍ଟ ଆଭିମୁଖ୍ୟ ଏଥିରୁ ଜଣାପଡ଼ିବ ।

## ହିଜରାତ୍

୧୯୩୮ରେ ତାଳଚେର ରାଜ୍ୟରେ ନିର୍ମମ ଦମନଲୀଳା ଚାଲିଲା, ଭୟରେ ସେହି ୧୯୩୮ ନଭେମ୍ବର ମାସରେ ତାଳଚେରର ୨୫ ହଜାରରୁ ଅଧିକ ପ୍ରଜା ସେ

ରାଜ୍ୟସୀମା ଡେଇଁ ଓଡ଼ିଶାର ଅନୁକୂଳ ସନ୍ଦେହଦକୁ ପଳାଇ ଆସିଲେ, ଉଦ୍ୟୋତି ସ୍ଥାପଣି ହେଲ, କୋଣଲା, କମଣଲ, ପାଣିଓଲା । ଲୋକେ ଗଛମୂଳେ ପଡ଼ିଲେ, ପଛେ ପଦକୁଡ଼ିଆ କଲେ । ଏତେ ଲୋକ, ଅଭାବ, ଅବ୍ୟବସ୍ଥା, ଅସନା, ରୋଗ, ମୃତ୍ୟୁ, ସବୁ ଏକାଠି । ଶ୍ରୀ ସାରଙ୍ଗଧର ଦାସ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ପବନମୋହନ ପ୍ରଧାନ ଆଦି ନେତାମାନେ ଓ ଅନେକ କର୍ମୀ, ସ୍ୱେଚ୍ଛାସେବକ, ସେମାନଙ୍କ ପାଇଁ ସାହାଯ୍ୟ ଯୋଗାଡ଼ କରୁଥାନ୍ତି । ଉଃ ପ୍ରାଃ କଃ କଃ ସାହାଯ୍ୟ ଦେଉଥାନ୍ତି । ସେତେବେଳେ ସେଠିକି ଗୋପବାବୁ ବଣ୍ଡ ଆଶ୍ରମରୁ ନାରୀକର୍ମୀଙ୍କୁ ଓ ପୁରୁଷକର୍ମୀଙ୍କୁ ପଠାଇଲେ, ସେମାନେ ସେ ଶରଣାର୍ଥୀଙ୍କ ସେବାରେ ଲଗିଗଲେ । ସେମାନଙ୍କ ସ୍ୱାସ୍ଥ୍ୟ, ସୁବିଧାଅସୁବିଧାର ଯତ୍ନ ନିଆଗଲା । ନାରୀ କର୍ମୀମାନେ ସୂତାକଟା ଶିଖାଇଲେ, ଧନ୍ଦା ଶିଖାଇଲେ, ସୂତାକଟା, ଦଉଡ଼ିବୁଣା, ଝୋଲପଡ଼ ବୁଣା ଆଦି କାମ ଚାଲିଲା, ମା ଓ ପିଲାଙ୍କ ଯତ୍ନ ନିଆଗଲା, ପାଠପଢ଼ା ଗଲା । ମଇଲା ଉଠେଇବା, ସବୁବେଳେ ସଫେଇ ଏସବୁ ତ କରାଯାଉଥାଏ । 'ଗାନ୍ଧୀ ସେବାସଂଘ' ୫୪୦୦୦-୦୦ ସାହାଯ୍ୟ ଦେଲେ, ତହିଁରେ ତୁଳା ଯୋଗାଇ ସୂତା କଟାଇ ସୂତାର ଦାମ୍ ବଜାର ଦାମ୍ଠୁ ଦୋହରା ଦେଇ ଶରଣାର୍ଥୀମାନଙ୍କୁ ସାହାଯ୍ୟ ଦେବାଦ୍ୱାରା ତାଙ୍କୁ କାମ ଦିଆଗଲା ।

## ପଚିଶି

### ଡେଲାଂ ସମ୍ମିଳନୀ

୧୯୩୮ ମାର୍ଚ୍ଚ ୨୫ ତାରିଖରେ ପୁରୀ ଜିଲ୍ଲାର ଡେଲାଂ ଷ୍ଟେସନ ପାଖ ବେରବୋଇଠାରେ ଗାନ୍ଧୀ ସେବାସଂଘର ବାର୍ଷିକ ଅଖିଳ ଭାରତୀୟ ସମ୍ମିଳନୀ ବସିଥିଲା । ଓଡ଼ିଶାରେ ତାହା ପ୍ରଥମ ସର୍ବଭାରତୀୟ ସମ୍ମିଳନୀ । ଗୋପବାବୁ ଗାନ୍ଧୀ ସେବାସଂଘର ସଭ୍ୟ ଥାନ୍ତି, ତାର ଓଡ଼ିଶା ଶାଖାର ବିଭିନ୍ନ କେନ୍ଦ୍ରର ପରିଚାଳନା

କରୁଥାନ୍ତି, ନାନା ପ୍ରକାର ଗ୍ରାମୋଦ୍‌ଯୋଗ କାର୍ଯ୍ୟ ଚାଲିଥାଏ । ଗାନ୍ଧୀଜୀ ଆସିବେ, ସର୍ବଭାରତୀୟ ନେତାମାନେ ଆସିବେ, ଗୋଟିଏ ବିରାଟ ପ୍ରଦର୍ଶନୀ ହେବ, ସହସ୍ର ସହସ୍ର ଲୋକ ଜମା ହେବେ, ଅନ୍ୟମାନଙ୍କ ସଙ୍ଗେ ମିଶି ଏ ବିରାଟ ସମ୍ମିଳନୀ କାର୍ଯ୍ୟ ଚାଲଇବା ପାଇଁ ଆୟୋଜନ ବ୍ୟବସ୍ଥାରେ ସେ ଓ ରମା ଦେବୀ ସମସ୍ତେ ଦିନରାତି ଲାଗିପଡ଼ିଲେ । ଓଡ଼ିଶାର କଂଗ୍ରେସ୍ ନେତାମାନେ, କର୍ମୀମାନେ, ଓଡ଼ିଶାର ଜନସାଧାରଣ ଏ କାର୍ଯ୍ୟରେ ପୂର୍ଣ୍ଣ ସହଯୋଗ କଲେ, ଅପୂର୍ବ ଉତ୍ସାହ ଖେଳିଗଲା ।

ବେରବୋଇରେ ତ ଆଗରୁ ପଣ୍ଡିତ କୃପାସିନ୍ଧୁ ହୋତାଙ୍କର ଗୋଟିଏ 'ସେବ... କୁଟୀର' ଥିଲା ଓ ସେଠି ସେ ଗୋଟିଏ କର୍ମକେନ୍ଦ୍ର ଖୋଲିଥିଲେ, ତାହା 'ଗାନ୍ଧୀ ସେବାଧ...'ର କେନ୍ଦ୍ରଟିଏ । ସମ୍ମିଳନୀ ସେହି ସ୍ଥାନରେ ବସିଲା । ସମ୍ମିଳନୀକୁ ଆସୁଥିବା କର୍ମୀମାନଙ୍କ ... ପଡ଼ିଆରେ ତାଟିଘର ହୋଇଥାଏ, ତାହାର ଭିତରେ ଗାନ୍ଧୀଜୀଙ୍କ ପାଇଁ ମଧ୍ୟ କୁଡ଼ିଆଟିଏ ହୋଇଥାଏ, ତହିଁରେ ଗାନ୍ଧୀଜୀ ସାତଦିନ ରହିଥିଲେ, ସମ୍ମିଳନୀ ସାତଦିନ ପର୍ଯ୍ୟନ୍ତ ଚାଲିଲା । ସେତେବେଳେ ଭାରତର ଯେତେ ସୁନାମଧନ୍ୟ ନେତା ତହିଁରୁ ଅଧିକାଂଶ ସେଠାକୁ ଆସିଥିଲେ । ଗାନ୍ଧୀଜୀଙ୍କ ଛଡ଼ା ସେମାନଙ୍କ ମଧ୍ୟରେ ଥିଲେ ସର୍ଦ୍ଦାର ପଟେଲ୍, ମୌଲାନା ଆଜାଦ୍, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ଶ୍ରୀ ଶଙ୍କରରାଓ ଦେଓ, ଶ୍ରୀ ଜମନାଲାଲ୍ ବଜାଜ୍, କାକା କାଲେଲ୍‌କର, ଶ୍ରୀ ଜୟପ୍ରକାଶ ନାରାୟଣ ଆଦି । ଭାରତର ବିଭିନ୍ନ ବହୁ ଅନ୍ୟାନ୍ୟ ବରେଣ୍ୟ ଅତିଥି ଆସିଥିଲେ ।

ମାର୍ଚ୍ଚ ୨୫ ତାରିଖରେ ସର୍ଦ୍ଦାର ପଟେଲ ପତାକା ଉତ୍ତୋଳନ କଲେ । ତାପରେ ଗାନ୍ଧୀଜୀ ପ୍ରଦର୍ଶନୀ ଉଦ୍‌ଘାଟନ କଲେ । ଚମତ୍କାର ବିଶାଳ ପ୍ରଦର୍ଶନୀ । ତାକୁ ଉଦ୍‌ଘାଟନ କରିବା ପୂର୍ବରୁ ଗାନ୍ଧୀଜୀ ତାକୁ ତନ୍ନ ତନ୍ନ କରି ବୁଲି ବୁଲି ଦେଖିଥିଲେ । ତାହାପରେ ସାତଦିନ ବ୍ୟାପୀ ସମ୍ମିଳନୀ ଚାଲିଲା । ହଜାର ହଜାର ଲୋକ, ଗାଁ ଗହଳରୁ ଦୂର ଦୂରାନ୍ତରୁ ଲୋକ ଉଠି ଆସିଥାନ୍ତି । ପ୍ରଦର୍ଶନୀ ଦେଖିବାକୁ ଟିକଟ ଥିଲା ଦୁଇ ପଇସା । ଓଡ଼ିଶାର ସବୁ ଅଞ୍ଚଳର ଖଦୀ ଓ ଗ୍ରାମୋଦ୍‌ଯୋଗର ନମୁନା ସେଠି ରଖା ହୋଇଥିଲା, ଅତି ଚିତ୍ତାକର୍ଷକ ହୋଇଥିଲା । ପ୍ରକୃତରେ କାର୍ଯ୍ୟ କରୁଥିବା ଅବସ୍ଥାର ପ୍ରଦର୍ଶନୀ ବିଭାଗ, ସେଠି ଓଡ଼ିଶାର ସବୁ ଅଞ୍ଚଳର କାରିଗର ନିଜ ନିଜ କାମ କରୁଥାନ୍ତି ଓ ଜିନିଷ ତିଆରି କରୁଥାନ୍ତି ।

ଏହି ସମ୍ମିଳନୀରେ ଓଡ଼ିଶା କଂଗ୍ରେସରେ ଦଳାଦଳି ବିଷୟ ସର୍ଦ୍ଦାର ପଟେଲଙ୍କ ସମକ୍ଷରେ ଆଲୋଚିତ ହୋଇଥିଲା, ତାଙ୍କ ପରାମର୍ଶ ଅନୁସାରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓଡ଼ିଶା ପ୍ରାଦେଶିକ କଂଗ୍ରେସର ସଭାପତି ହେବାକୁ ରାଜି ହେଲେ, ସେ ପର୍ଯ୍ୟନ୍ତ ସେ ମନା କରି ଆସୁଥିଲେ ।

ଏତେ ଲୋକ, ଏତେ କାମ, କେତେ ପ୍ରକାର ଦାୟିତ୍ୱ, ସବୁଠୁ ଆଶ୍ଚର୍ଯ୍ୟ କଥାଟି ଯେ ସମ୍ମିଳନୀ ଏତେ ସୁରୁଖୁରୁରେ ହୋଇଗଲା, ଟିକିଏ ବି ଅବ୍ୟବସ୍ଥା ହେଲା ନାହିଁ, ସେଥିପାଇଁ ଗୋପବାବୁ ଓ ରମା ଦେବୀଙ୍କ ଅବଦାନ ଅବିସ୍ମରଣୀୟ । ହଜାର ହଜାର ଲୋକଙ୍କୁ ରାନ୍ଧିବାଢ଼ି ଖୁଆଇବା ଦାୟିତ୍ୱ ଥିଲା ରମା ଦେବୀଙ୍କର । ସେ କାର୍ଯ୍ୟ ଏତେ ସୁରୁଖୁରୁରେ ହୋଇଗଲା ଯେ ସମସ୍ତେ ଧନ୍ୟ ଧନ୍ୟ କଲେ, ତାଙ୍କୁ ବହୁତ ପ୍ରଶଂସା କଲେ, ସ୍ୱୟଂ ମହାତ୍ମାଜୀ ସେଥିପାଇଁ ରମା ଦେବୀଙ୍କୁ ବହୁତ ପ୍ରଶଂସା କଲେ ।

ଡେଲାଙ୍ଗ ସମ୍ମିଳନୀର ବିସ୍ତୃତ ବିବରଣୀ ଅନେକେ ଲେଖିଛନ୍ତି, ତେଣୁ ଏଠାରେ ତାହା ଦିଆଯିବା ଅନାବଶ୍ୟକ ଲାଗିଲା ।

## ଛବିଶି

## ଆଦର୍ଶ କର୍ମୀ ବିଷୟରେ ଗୋପବାବୁଙ୍କ ଦୃଷ୍ଟିଭଙ୍ଗୀର ନମୁନା—ଗୋଟିଏ ଚିଠିରୁ

ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ବାରିରୁ ତାଲିମ୍ ପାଇ ଯାଇ ଆଦିବାସୀବହୁଳ କୋରାପୁଟ୍ ଜିଲ୍ଲାରେ ପ୍ରଥମ କେନ୍ଦ୍ର ଖୋଲିଥାନ୍ତି 'କୁଜେନ୍ଦ୍ରି' ଗାଁରେ, ସଓରା ଆଦିବାସୀଙ୍କ ଅଞ୍ଚଳରେ । ଗୋପବାବୁ ତାଙ୍କୁ ପରାମର୍ଶ ଦେଇ ଦେଇ ନାନା ଚିଠି ଲେଖୁଥାନ୍ତି । ୨୫-୧୧-୪୫ରେ ତାଙ୍କ ପାଖକୁ ଗୋପବାବୁ ଲେଖିଥିବା ଗୋଟିଏ ଚିଠିର କିଛି ଉଦ୍ଧୃତାଂଶ ଏହିପରି :

"ସ୍ୱାବଲମ୍ବୀ ହେବାକଥା ବିଗ୍ରଣିଛ । ତମ ସେଠା ଅବସ୍ଥା ସ୍ୱତନ୍ତ୍ର । ଏଠାରେ ତ' ଲୋକଙ୍କୁ କଲିକତା ନ ଯାଇ ସତ୍ ଉପାୟରେ ଘରେ ରହି କାହାକୁ ନ ଠକି

କପରି ଜୀବନଯାପନ କରିବାକୁ ହେବ ତାହା ଦେଖାଇବା ଦରକାର ପଡ଼ିଲଣି । ମୁଁ ତ ମନେକରେ ଜଣେ କର୍ମୀ ଯଦି ଫଚ୍ଚା କଂଗ୍ରେସ ଲୋକ ହେବ ତେବେ ସେତକ ଦେଖାଇପାରିଲେ ବହୁତ କାମ ହେବ । ଆମେ ତ ଅହିଂସ ସ୍ୱରାଜ୍ ସ୍ୱରାଜ୍ ବହୁତ ପାଟି କରୁଛୁ, କିନ୍ତୁ ଆମେ ନିଜେ ଅହିଂସ ଜୀବନଯାପନ କପରି କରିବାକୁ ହେବ ଏବଂ ଲୋକେ ଯାହାକୁ ଆଦର୍ଶ କରି ଚଳିବେ ତାହା ଦେଖାଇପାରୁ ନାହୁଁ । ଅତଏବ ମୋ ମତରେ କୌଣସି ଶିଳ୍ପ ଓ କୃଷି ଦ୍ୱାରା ସ୍ୱାବଲମ୍ବୀ ହେବାରେ ଦୋଷ ନାହିଁ, ଯଦି ସେହି କାମ କରିବାଦ୍ୱାରା ନିଜ ପେଟ ପୋଷିବା ସଙ୍ଗେ ସଙ୍ଗେ ଗାଁବାଲାଙ୍କ ଶିଳ୍ପ ଓ କୃଷି ବଢ଼ିବ । ଗାଁବାଲା ଖାଇବାକୁ ଦେଲେ ବି ଆମକୁ କଠିନ ୮ ଘଣ୍ଟା ଶ୍ରମ କରିବାକୁ ହେବ । ନଚେତ୍ ଗାଁବାଲା ପରା ସବୁବେଳେ କହୁଛନ୍ତି "ତମର କଣ ଅଛି ? ପିଲାଛୁଆ ଅଛନ୍ତି ନା ମୁଣ୍ଡଝାଳ ତୁଣ୍ଡରେ ମାରୁଛ ? ତୁମେ ବାବାଜୀ ପଣ୍ଡାଏ, ଆମେ କଣ ତାହା କରି ପାରିବା ?" ଇତ୍ୟାଦି ।

ଅତି ସାଧାରଣ ମୂର୍ଖଲୋକ ବି ଦେଶମାତୃକାର ଠିକ୍ ସେବା କରିପାରିବ । ତାର ସତ୍ ବୁଦ୍ଧି, ସତ୍ ସାହସ ଥିଲେ ସେ ଯଥେଷ୍ଟ କରିପାରିବ । ଜ୍ଞାନ ତାର ଯେତିକି ଅଛି ସେତିକି ସେ ଲୋକଙ୍କୁ ଦେଉଥିବ, ଲୋକଙ୍କ ପାଇଁ ଯାହା ଯେତେବେଳେ ପାଇବ ଆଣିଦେବ ।

ଆମେ ଜ୍ଞାନୀ ହେବା, ତେବେଯାଇ ଲୋକଙ୍କୁ ଜ୍ଞାନର ଫଳ ଦେବା, ଆମେ ଧନୀ ହେବା, ତେବେ ଯାଇ ଲୋକଙ୍କୁ ସାହାଯ୍ୟ କରିବା,—ଏ ଧାରା ଆଗକାଳେ ଥିଲା, ଗାନ୍ଧୀ ତାକୁ ବଦଳାଇଛି । ଯେ ଯେଉଁ ଅବସ୍ଥାରେ ଥାଉ ଦେଶସେବା କରିପାରିବ, ସ୍ୱରାଜ୍ୟ ଲଢ଼େଇରେ ସୈନିକ କାହିଁକି ସେନାପତି ହୋଇପାରିବ ଏତିକି ଶକ୍ତି ଓ ଭାବନା ଲୋକଙ୍କୁ ଦେଇଛି ବୋଲି ଆଜି ଏ ଜାଗରଣ···"

# ସଢେଇଣି

## ବରୀରେ ଘରୋଇ ଜୀବନ

ବସ୍ତିରେ ସୁଖ ଦୁଃଖର ଦିନ ଗ୍ଭଲିଥାଏ । ହସ, ଖେଳ କାମ । ଗୋପବାବୁ କଥା କଥାକରେ ରହସ୍ୟ ଲଗାନ୍ତି । ଯେତେ ବଡ଼ ସମସ୍ୟା ହୋଇଥାଉ ଅଳ୍ପ ଦିପଦ ବଙ୍କା ବଙ୍କା କହିଦେଇ ହସ ଲଗାଇ ଦିଅନ୍ତି । ନସବାଘରେ ସାନ ସାନ ଝିଅଟିମାନେ କାହା ସଙ୍ଗେ ଅଜା ନାତୁଣୀ ଅଛନ୍ତି, କିଏ ଟିକିଏ ବଡ଼, ଝିଅପରି । ଯାହାର ଯାହା ଅଭ୍ୟାସ ତାକୁ ଛଡ଼ାଇବା ପାଇଁ ବ୍ୟଙ୍ଗଚିତ୍ର ଆଙ୍କି ସେ ଦେଖିଲାଭଳି କାନ୍ଥରେ ଝୁଲାଇ ଦେଇଥାନ୍ତି । କିଏ ଦୁଧ ପିଇଲେ ତା ପାଟି ଖରାପ ହୋଇଯାଏ । ତେଣୁ ଦୁଧ ପିଇସାରି ପାଟିରେ ଲଗାଇବ ବୋଲି ଲୁଗ୍ଭଇ କରି ଟିକିଏ ଅଳ୍ପ ଭରତା ଆଣି ରଖିଛୁ, ସେତକ ସେ ଆସି ଖାଇଦେଲେଣି । ଛୁଆଙ୍କ ସଙ୍ଗେ ଗୋଡ଼ିଆଗୋଡ଼ି ଖେଳନ୍ତି । ସବୁଦିନେ ସେ ସେହିପରି । ଭାରି ନବଜଆ । କବି ବୀରକିଶୋର ଦାସ ଲେଖିଛନ୍ତି—ଜେଲ୍‌ରେ ଥିଲାବେଳେ ତାଙ୍କର ଗୁଡ଼ାଖୁ ଘଷା ଅଭ୍ୟାସ ଥିଲାବେଳେ ସେ ବୀରବାବୁଙ୍କୁ ଦେଖିଲେ ହାତପାତିବେ ଓ ପଚ୍ଚାରିବେ "ମାଲ ଅଛି ?" ପଣ୍ଡିତ ଗୋବିନ୍ଦ ମିଶ୍ର ଲେଖିଛନ୍ତି, ଯେ ୧୯୨୩ରେ ଥରେ ଦେଶକାମରେ ତିନି ସପ୍ତାହ ଜେଲ୍ ଭୋଗି ସେ ସ୍ୱରାଜ୍ୟ ଆଶ୍ରମରେ ପହଞ୍ଚିଲା ବେଳକୁ, —ସେ ସେତେବେଳେ ସ୍ୱରାଜ୍ୟାଶ୍ରମରେ ଗୋଟିଏ ଘରେ ରହୁଥିଲେ ।

"ଗୋପବାବୁ ମୋ ଘରୁ ତିନୋଟି ବଡ଼ ଆମ୍ବ ଆଣ୍ଟିର ଆଣି—ସେଥିରୁ ଗୋଟିଏ ମୁହଁରେ କାମୁଡ଼ି ଆଉ ଦୁଇଟି ଦୁଇ ହାତରେ ଧରି ମତେ ସ୍ୱାଗତ କରିବାକୁ ମୋ ମୁହଁ ଆଗରେ ଆଣ୍ଟିର ଧରି ପଛଘୁଞ୍ଚା ଦେଉଥାନ୍ତି ।" ସେହିପରି ସବୁଦିନେ, ସବୁ କ୍ଷେତ୍ରରେ । ଗାଁର ମୂଳିଆ ଗ୍ଭଷୀଠୁ ଯେ ସହରର ବଡ଼ ବଡ଼ ଲୋକ ସଙ୍ଗେ ଅତି

ଗମ୍ଭୀର ପରିସ୍ଥିତିରେ । ଥରେ ଜଣେ ମନ୍ତ୍ରୀ ଅନ୍ୟାନ୍ୟ କର୍ମୀଙ୍କ ପରି ତାଙ୍କୁ ବାପା ବୋଲି ଡାକିଲେ । ଏମାନେ ଖଦଡ଼ ପିନ୍ଧିଲେ ବି ସୂତା ବି କାଟନ୍ତି ନାହିଁ, ଗାନ୍ଧୀ ନୀତିରେ ବି ଚଳନ୍ତି ନାହିଁ ବୋଲି ଗୋପବାବୁ ତ ଆଗରୁ କ୍ଷୁବ୍ଧ ଥିଲେ, ମନ୍ତ୍ରୀ ଚାଲିଗଲା ପରେ ଗୋପବାବୁ କହିଲେ "ଆମେ ଏଙ୍କ ବାପା କେବେ ହେଲୁ ?"

## ଗୋପବାବୁଙ୍କ ଭେକ—ତାଙ୍କ ଚଳଣି

ଆଶ୍ରମରେ, ସଭାରେ, କ୍ଷେତବାଡ଼ିରେ, ଗାଁରେ, ହରିଜନ ବସ୍ତିରେ, ରାସ୍ତାରେ ଅଥବା ବଡ଼ ବଡ଼ ସଭାରେ ସହରର ଧୋବଧାଉଳିଆଙ୍କ ଆଗରେ ଠିଆ ହୋଇ ଯେତେବେଳେ ସେ ବକ୍ତୃତା ଦେଉଥାନ୍ତି ସେତେବେଳେ ସେ ସାଧାରଣ ଖଟିଖିଆ ମଲାମୁଣ୍ଡିଆଙ୍କ ଭିତରୁ ଜଣେ । ସବୁବେଳେ ପରିଷ୍କାର, କିନ୍ତୁ ସେମିତି ବେଶ, ସେମିତି ଖାଇବା, ପିଇବା, ଶୋଇବା । ଖଣ୍ଡେ ଧୋତି, ଖୋଲା ଦେହ ଉପରେ କ୍ୱଚିତ୍ ଚାଦର, ନ ହେଲେ ଯାନ ପୋଛା ଖଣ୍ଡେ— ଖରାବେଳେ ମୁଣ୍ଡରେ ଠେକା ବା ଗାମୁଛା, ବାଟରେ, ପିଠିରେ ଟଣ୍ଡିରା, ଛତା, ଲଲ୍‌ଟେଣ, ମୁଣ୍ଡରେ ବୋଝ । ଭୂଇଁରେ ବସିବେ, ଛପା ଥିଲେ ଛପା ଉପରେ ନ ହେଲେ କାନ ପାରି ଭୂଇଁରେ ଶୋଇବେ । ହରିଜନ ବସ୍ତିରେ ରହୁଥିଲାବେଳେ ଶୀତଦିନେ ହେଂସ ଘୋଡ଼େଇ ହେଉଥିଲେ । ଖାଇବେ ଚୂଡ଼ା, ଗୁଡ଼, କଦଳୀ, ହୁଡ଼ୁମ୍, ସିଝା ପରିବା, ଗାଉଁଲି ପିଠା, ବଗଡ଼ା ଭାତ, ଶାଗ, ପଖାଳ, ପିଆଜ, ଗରିବ ଗାଁ ଲୋକ ଯାହା ଖାଏ । ବସିପଡ଼ିବେ ବାଟ କରରେ । ଦଆଣ୍ଟୁ ଯୋଡ଼ି ତାକୁ ଟେବୁଲ କରି ତା ଉପରେ ଲେଖିବେ ।

ଶ୍ରୀ ଅଲେଖ ପ୍ରସାଦ ଦାସ ବସ୍ତାରେ ଥିଲେ । ଲେଖିଛନ୍ତି ଯେ ଦିନେ ଜର୍ଧୂମ ଖରାବେଳେ ବାଲିରେ ଚାଲି ଚାଲି ଗୋପବାବୁ ନୂଆଳି ଘାଟରୁ ବସ୍ତା ଫେରୁଥିଲେ; ସେ ଓ୍ୱାଇଁରୁ ଆସୁଥାନ୍ତି, ମୁଣ୍ଡରେ ଗାମୁଛା ପକାଇ ଥାନ୍ତି, ପିଠିରେ ପଡ଼ିଥାଏ ଟଣ୍ଡିରା, ହାତରେ ଅରଟ ।

ଏ ଆକାଶୀ ଆଦର୍ଶର ଅନୁସରଣରେ ପୂଜ୍ୟ ୰ ଗୋପବାବୁ ଆପଣାକୁ ଗାଁ ମାଟିର ସାଧାରଣ ଖଟିଖିଆ ମଲାମୁଣ୍ଡିଆଠୁଁ ଅଭିନ୍ନ କରି ପାରୁଥିଲେ ?

ସେ ଆଦର୍ଶ ଗାନ୍ଧୀ-ଈଶ୍ୱରର, —ନେତା ସମାଜର ହୀନତମ ବ୍ୟକ୍ତିର ପ୍ରତୀକ ହେବ, ନିଜେ ସେପରି ବଞ୍ଚି ତାର କାର୍ଯ୍ୟରେ ଦେଖାଇଦେବ ଯେ ସାଧାରଣ ମଣିଷ ବି ତାର ସୀମିତ ସରଳତମ ଉପାଦାନରେ ଚଳି କର୍ମନିରତ ରହି ସ୍ୱାବଲମ୍ବୀ ହୋଇପାରିବ, ସ୍ୱାଧୀନଭାବେ ଜୀବନ ଉପଭୋଗ କରି ପାରିବ, ନାନା ସଦ୍‌ଗୁଣରେ ଅଧିକାରୀ ହୋଇପାରିବ, ଆଦର୍ଶ ମନୁଷ୍ୟ ହେବ, ତାହାହେଲେ ଯାଇ ଅହିଂସ,

ଶୋଷଣହୀନ ସମାଜ ପ୍ରତିଷ୍ଠିତ ହେବ, ଅନ୍ୟଥା ନୁହେଁ । ନେତା ଅନ୍ୟମାନଙ୍କ ପାଇଁ ଆଦର୍ଶ ହେବ ।

## ଗୋପବାବୁଙ୍କ ଝିଅ ବାହାଘର

ଗୋପବାବୁଙ୍କ ସ୍ୱାଧୀନ ଚିନ୍ତା ଓ କାର୍ଯ୍ୟର ଗୋଟିଏ ନମୁନା ତାଙ୍କର ଏକମାତ୍ର ଝିଅ ଅନ୍ନପୂର୍ଣ୍ଣାଙ୍କ ପାଇଁ ପାତ୍ର ବାଛିବା ଓ ତାଙ୍କ ବିଭାଘର । ଗୋପବାବୁ କରଣ ଜାତିର ଗୋଟିଏ ସମ୍ଭ୍ରାନ୍ତ ଅଭିଜାତ ବଂଶର ସନ୍ତାନ, ନିଜ ଜାତିରେ ହିଁ ନିଜ ସନ୍ତାନମାନଙ୍କୁ ବିଭାଦେବା ସାମାଜିକ ଚଳଣି ହୋଇ ଆସିଥିଲା । କରଣ ଜାତିର ଅନେକ ନାଁ ଡାକ୍ ଘରର ଲୋକେ ଅନ୍ନପୂର୍ଣ୍ଣାଙ୍କୁ ବୋହୂ କରିବାକୁ ଆଗ୍ରହୀ ଥିଲେ, କିନ୍ତୁ ଗୋପବାବୁ ଜାତି ମାନନ୍ତି ନାହିଁ, ଗୁଣ ଚିହ୍ନନ୍ତି । ସେ ବାଛିଲେ ସ୍ୱନାମଧନ୍ୟ ୬ ଚନ୍ଦ୍ରମୋହନ ମହାରଣାଙ୍କ ପୁଅ ଶ୍ରୀ ଶରତ୍ ଚନ୍ଦ୍ର ମହାରଣାଙ୍କୁ । ସେ ଜାତିରେ 'ସୁନାରି ବଣିଆଁ' ।

ଶରତ୍ ବାବୁ ବି. ଏ. ଓ ଏମ୍. ଇଡ଼. ପାଶ୍ କରିଥିଲେ । ଉତ୍କଳ ଗ୍ରାଜ ଥିଲେ । ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ଅଧୀନରେ ଚାକିରି କରୁଥିଲେ । ସେ କଟକ ସହର ପାଇଁ ସ୍କୁଲ୍ ସବ୍ଇନସ୍ପେକ୍ଟର ହୋଇଥିଲେ, ସୁଦକ୍ଷ କର୍ମଚାରୀ ଥିଲେ । ୧୯୩୯ରେ ଓ୍ୱାର୍ଦ୍ଧାରେ ଟ୍ରେନିଂ ନେବାକୁ ପଠା ହୋଇଥିଲେ । ସେଠୁ ଫେରି ବରି ପାଖ ରାମଚନ୍ଦ୍ରପୁରରେ ଓଡ଼ିଶାପାଇଁ "Organiser of Basic Education" ହୋଇ ଉପସ୍ଥାପିତ ହୋଇଥିଲେ । ୧୨-୩-୪୯ରେ ଇସ୍ତଫା ଦେଇ ସେହି ରାମଚନ୍ଦ୍ରପୁରରେ "ଉତ୍କଳ ମୌଳିକ ଶିକ୍ଷା ପରିଷଦ"ର ସେକ୍ରେଟେରୀ ହୋଇଥିଲେ, ସଭାପତି ଥିଲେ ଆଚାର୍ଯ୍ୟ ହରିହର ଦାସ ।

ବିଭାଘରଟି ବରିରେ ହୋଇଥିଲା ଫଲ୍ଗୁଦଶମୀ, ୨୫-୨-୧୯୪୨ ଦିନ । ଶରତ୍ ବାବୁ ଜଣେ ନାନା ସଦ୍‌ଗୁଣମଣ୍ଡିତ ଆଦର୍ଶ ବ୍ୟକ୍ତି । ସେ ଆଦର୍ଶ କର୍ମୀ ହିସାବରେ ପ୍ରସିଦ୍ଧ ହେଲେ । ଗୋପବାବୁଙ୍କର ଅତ୍ୟନ୍ତ ଅନୁଗତ ସହକର୍ମୀ ହେଲେ ଓ ନାନା କର୍ମର ବଡ଼ ବଡ଼ ଦାୟିତ୍ୱ ତୁଲାଇଲେ ।

ନବବାବୁଙ୍କ ବିଭାଘର ପରେ ତାଙ୍କ ଘରେ ଏହି ଦ୍ୱିତୀୟ ଅସବର୍ଣ୍ଣ ବିବାହ । ଆପତ୍ତି, ବିରୋଧ ବି ଟିକିଏ ହେଲା, ଗୋପବାବୁ ନିଜ ମତରୁ ଟଳିଲେ ନାହିଁ । ରହସ୍ୟ ବି ଟିକିଏ ଲାଗିଲା । 'ମହାରଣା' ପଦବୀ ଦେଖି ପିଲାଏ ଭାବିଥିଲେ ସେ 'ବଢ଼େଇ', ଥଟ୍ଟା-ଗୀତ ଛପାଇ ବାଣ୍ଟିଲେ,—

"ଶରତ, ନେ କରତ" ।

ସରଳ, ନିରାଡମ୍ବର ଭାବେ ବିଭାଘର କାର୍ଯ୍ୟ ହେଲା । ବନ୍ଧୁବାନ୍ଧବମାନେ, ବଡ଼ ବଡ଼ ଲୋକେ ଚାରିଆଡ଼ୁ ବସାରେ ରୁଣ୍ଡିଲେ । କିନ୍ତୁ ନାହାକ ଯୋଗ ଦେଇ ନାହିଁ, ହବନ ଧର ନାହିଁ, ନାହାକ ନାହିଁ । ଜାତକ ଦେଖା ହେଲା ନାହିଁ । କନ୍ୟାପକ୍ଷଙ୍କ ଭିତରେ ହରିଜନମାନେ, ସବୁ ଜାତି, ବାରଣ ନାହିଁ । ସବୁ ଧର୍ମର ଲୋକେ, ହିନ୍ଦୁ ମୁସଲମାନ । 'ପଙ୍ଗତ' ଏକାଠି । ବୈଦୀକର୍ମ ହେଲା, ପୁରୋହିତ କଲେ । ଫୁଲପତ୍ର ସଜେଇ ବସା ସେବାଘର ଦୁଆରମୁହଁରେ ତୋରଣ ହୋଇଥିଲା । କାନ୍ଥରେ ଚିତ୍ରା ପଡ଼ିଥିଲା । ବାଣ ନାହିଁ, ରୋଶନି ନାହିଁ, ଭୋଜିବି ସରଳ । ବିଭାଘର ପରେ ବରକନ୍ୟା ସବାରିରେ ଗଲେ ନାହିଁ, ଗାଡ଼ିରେ ଗଲେ ନାହିଁ, ଚାଲି ଚାଲି ଦାଣ୍ଡେ ଦାଣ୍ଡେ ଗଲେ ଲୋକଙ୍କ ଆଖି ଆଗରେ, ଗଲେ ରାମଚନ୍ଦ୍ରପୁର । ତିନି ମାଇଲ୍ ବସାରୁ । ସେଠି ଦି ଦିନ ରହି ରେମୁଣା ଗଲେ ।

## ଗୋପବାବୁଙ୍କ ପୁଅ ବାହାଘର

ଗୋପବାବୁ ଜେଲ୍‌ରୁ ଫେରିଲା ପରେ ୧୯୪୭ ଫେବୃଆରି ୧୬ ତାରିଖରେ ତାଙ୍କ ପୁଅ ମନମୋହନ (ବୁଲ୍‌ବାବୁ)ଙ୍କର ବିଭା ଦେଲେ, ପୁଣି ଅସବର୍ଣ୍ଣ ବିବାହ । କନ୍ୟା ଶ୍ରୀମତୀ ସୁମିତ୍ରା ଦେବୀ, ସେବାଗ୍ରାମରେ ରହି ମୌଳିକ ଶିକ୍ଷା ପାଉଥାନ୍ତି । କନ୍ୟାପିତା ଶ୍ରୀ ବିଭୂତି ଭୂଷଣ ବନ୍ଦ୍ୟୋପାଧ୍ୟାୟ, ବଙ୍ଗ ଦେଶର ବ୍ରାହ୍ମଣ, ଗୋପବାବୁଙ୍କ ସହପାଠୀ ଥିଲେ । କନ୍ୟା ବାଛି ଶ୍ରୀ ଆର୍ଯ୍ୟନାୟକମ୍‌ଙ୍କ ସ୍ତ୍ରୀ ଶ୍ରୀମତୀ ଆଶା ଦେବୀ ଗୋପବାବୁଙ୍କୁ ଚିଠି ଲେଖିଲେ । ଗୋପବାବୁ ପୁଅକୁ ସେବାଗ୍ରାମ୍ ପଠାଇଲେ, ଯାଇ ପାତ୍ରୀକୁ ନିଜେ ଦେଖି ତା ସଙ୍ଗେ କଥା ହୋଇସାରି ଦୁହିଁଙ୍କ ମତ ତାଙ୍କୁ ଜଣାଇବାକୁ କହିଲେ । ମନମୋହନ ବାବୁ ଗଲେ, ସେବାଗ୍ରାମରେ ମାସେ ରହିଲେ, ତାପରେ ଦୁହେଁ ବିଭାହେବାକୁ ସ୍ଥିର କଲେ, ଆଶା ଦେବୀଙ୍କୁ କହିଲେ, ସେ ଗୋପବାବୁଙ୍କୁ ଲେଖିଲେ ।

ମନମୋହନ ବାବୁ ଫେରି ଆସିଲେ । ପାତ୍ରୀଙ୍କ ମାମୁଁଅଜାଙ୍କ ପାଖକୁ ମନମୋହନ ବାବୁ ଓ ନିତ୍ୟାନନ୍ଦ କାନନଗୋ କୃଷ୍ଣନଗର ଯାଇ ପ୍ରସ୍ତାବ ପକ୍କା କଲେ ।

ତାପରେ ସେବାଗ୍ରାମରେ ବିଭାଘର ହେଲା । ସେଠିକି ଗୋପବାବୁ, ରମା ଦେବୀ, ନବବାବୁ, ମାଳତୀ ଦେବୀ ଓ ମନମୋହନ ବାବୁ ଗଲେ । ଆଶ୍ରମ ପଦ୍ଧତି ଓ ପୁରୋହିତ ପଦ୍ଧତି ମିଶାମିଶି ପଦ୍ଧତିରେ ବିଭାଘର ହେଲା । ସକାଳୁ ବରକନ୍ୟା ଉପବାସ କଲେ । ପାଇଖାନା ସଫା, କୂଅ ପାଖ ସଫା, ରୋଷେଇ କରିବା, ପରଷିବା, ଗଛଟିଏ ଲଗାଇବା, ସୂତା କାଟିବା ଆଦି ବରକନ୍ୟା ୬ଟି କାମ ବା

'ସପ୍ତଶ୍ରମ' କଲେ । ଗୀତା, କୋରାନ୍, ବାଇବଲ୍ ଆଦି ପଢ଼ା ହେଲା । ପୁରୋହିତ ମନ୍ତ୍ର ପଢ଼ି ବିଭାଘର କଲେ ।

ଯେଉଁ ବିଭାଘରରେ ଗୋଟିଏ ପକ୍ଷ ହରିଜନ ହୋଇଥିବ ଗାନ୍ଧୀଜୀ ଖାଲି ସେହି ବିଭାଘରକୁ ଯିବେ ବୋଲି ନିଷ୍ପତ୍ତି କରିଥାନ୍ତି । ଏ ବିଭାଘରରେ ସେ ଆଶୀର୍ବାଦ ଦେଇଥିଲେ । ବରକନ୍ୟା ତାଙ୍କୁ ଦଣ୍ଡବତ କଲାବେଳେ ସେ କହିଥିଲେ "ସେବାମୟ ଜୀବନ ବିତାଅ" ।

ଡକ୍ଟର ଜାକର ହୁସେନ, ସୁଚେତା କୃପାଲନୀ ଆଦି ବିଭାଘରରେ ଯୋଗ ଦେଇଥିଲେ ।

ବିଭାଘର ପାଣ ସେମାନେ କଟକ ଫେରିଲେ । ବହୁତ ବନ୍ଧୁବାନ୍ଧବଙ୍କୁ ଡାକି ଭୋଜି ଦିଆହେଲା । ଭୋଜି ଖାଲି ସେଓ, ଡାଲ୍‌ମୁଠ୍ ଓ ଗୁ ସରବତ୍ ।

# ଅଠେଇଶି

## ଗୋପବାବୁ ଓ କଂଗ୍ରେସ୍

ନୈତିକ, ସାମାଜିକ, ଅର୍ଥନୈତିକ ଓ ରାଜନୈତିକ କ୍ଷେତ୍ରରେ ଗୋପବାବୁ ତାଙ୍କର ବିଚାର ଓ କାର୍ଯ୍ୟରେ ଥିଲେ ବିଶୁଦ୍ଧ ନିଷ୍ଠାପର ଗାନ୍ଧୀବାଦୀ, ଗାନ୍ଧୀ ବିଚାର ବିଷୟରେ ତାଙ୍କ ମନରେ ତିଳେମାତ୍ର ସନ୍ଦେହ ନ ଥିଲା କି ସେଥିରୁ ସେ ତିଳେମାତ୍ର ଏପଟ ସେପଟ ହୋଇ ନାହାନ୍ତି ।

୧୯୩୩ରେ ମହାତ୍ମାଜୀ ରାଜନୈତିକ ଆନ୍ଦୋଳନ ବନ୍ଦ କରି ତାର ଯାହା ଅସଲ ମୂଳଦୁଆ, —ଲୋକ, ତାଙ୍କ ଚରିତ୍ର, ମନ, ତାଙ୍କ ସମାଜ, ଅସ୍ପୃଶ୍ୟତା,

ଶୋଷଣ, ବଭେଦ, ହିଂସା, କୁସଂସ୍କାର, ଅଜ୍ଞାନ, ଦାରିଦ୍ର୍ୟ, ପରମୁଖାପେକ୍ଷିତା ଆଦି ତାର ବିଭିନ୍ନ ସମସ୍ୟା, —ସେହିଆଡ଼କୁ ମନ ଦେଲେ, ସେ ବି ସେଇଆ କଲେ, ରଚନାତ୍ମକ କାର୍ଯ୍ୟକୁ ପ୍ରାଧାନ୍ୟ ଦେଲେ ।

କିନ୍ତୁ କଂଗ୍ରେସରେ ହିଁ ତାଙ୍କ ସାଧାରଣ ଜୀବନର ଆରମ୍ଭ, ତାର ଜନ୍ମ, ଭାରତର ସ୍ୱାଧୀନତାପ୍ରାପ୍ତି ତାଙ୍କର ଲକ୍ଷ୍ୟ, ସେ କଂଗ୍ରେସ୍ ଲୋକ ହିଁ ଥିଲେ । କଂଗ୍ରେସ୍ କହିଲେ ସେ ବୁଝନ୍ତି ସମୁଦାୟ ଗାନ୍ଧୀବାଦୀ ଅର୍ଥ ସମନ୍ୱିତ କଂଗ୍ରେସ୍ । ଗାନ୍ଧୀବାଦଠୁଁ ଦୂରେଇ ଗଲେ, ସେ ଭିନେ କଥା ହେବ ।

ଖଦୀ ଓ ରଚନାତ୍ମକ କାମ ବାଟେ ସେ କଂଗ୍ରେସ୍‌ର ମୂଳଦୁଆ ଗଢ଼ୁଥିଲେ, କଂଗ୍ରେସ୍ ପ୍ରଚାର କରୁଥିଲେ, ଲୋକଙ୍କୁ କଂଗ୍ରେସ୍ ଆଡ଼କୁ ଓ ସବୁ ବିଷୟରେ ତାର ଗାନ୍ଧୀବାଦୀ ନୀତି, ଆଦର୍ଶ ଆଡ଼କୁ ଟାଣୁଥିଲେ, ତାଙ୍କୁ ଦୀକ୍ଷିତ କରୁଥିଲେ । ସେ ବରି ଆସିଲା ବେଳେ ଅନେକ କଂଗ୍ରେସ ନେତା ତାଙ୍କ ପାଖକୁ ଆସୁଥିଲେ, ତାଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କ ରଖୁଥିଲେ । ସେମାନଙ୍କ ଭିତରେ ଥିଲେ ଡକ୍ଟର ହରେକୃଷ୍ଣ ମହତାବ । ସେ ନିଜେ ରଚନାତ୍ମକ କର୍ମମାନ କରୁଥିଲେ, କରାଉଥିଲେ, ଅଗରପଡ଼ାରେ ଗଢ଼ିଥିଲେ 'କର୍ମମନ୍ଦିର', ଭଲ ସୂତା କାଟନ୍ତି, ଖୁବ୍ ଫୁର୍ତ୍ତି ଓ ବହୁତ କାଟି ପାରନ୍ତି ବୋଲି ତାଙ୍କର ନାଁ ଥିଲା । ପଛେ ସେ ରାଜନୀତିକୁ ପ୍ରାଧାନ୍ୟ ଦେଲେ, ଦେଶ ପକ୍ଷରେ ତାହା ଉନ୍ନୟନ ଲାଗି ଜଣେ ହିତକର ଓ ଆବଶ୍ୟକ ସେ ବିଷୟରେ ବି ତାଙ୍କର ଭିନେ ମତ ହେଲା ।

କଂଗ୍ରେସ ସଙ୍ଗଠନକୁ ଦୃଢ଼ କରିବା ପାଇଁ ଗୋପବାବୁ ଚେଷ୍ଟା କରୁଥିଲେ । ବହୁସଂଖ୍ୟାରେ ସେ କଂଗ୍ରେସ ସଭ୍ୟ କରାଉଥିଲେ, ପ୍ରାଥମିକ କମିଟି ଗଢ଼ାଉଥିଲେ, ନୂଆ କଂଗ୍ରେସ କର୍ମୀଙ୍କୁ ତାଲିମ୍ ଦିଆଉଥିଲେ ଓ ପୁରୁଖାମାନଙ୍କୁ ପରାମର୍ଶ ଦେଉଥିଲେ । ଗାଁ ଗାଁ ସଭା ସମ୍ମିଳନୀ କରି କଂଗ୍ରେସର ଉଦ୍ଦେଶ୍ୟ ଓ ଗାନ୍ଧୀଜୀଙ୍କ ବିଚାର, ଦେଶର ଅବସ୍ଥା ଇତ୍ୟାଦି ବୁଝାଉଥିଲେ । ତାଙ୍କ ପରିଚାଳନାରେ ରାଜନୈତିକ କର୍ମୀଙ୍କ ତାଲିମ୍ ଶିବିର ବରିରେ ବସୁଥାଏ, ରାଜନୈତିକ କର୍ମୀ ସମ୍ମିଳନୀ ହେଉଥାଏ । ବରିର ମୁଖ୍ୟ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ସେତେବେଳେ ଶ୍ରୀ ଭଗୀରଥ ଦାସ ଜଣେ ଥିଲେ, ଗୋପବାବୁଙ୍କ ସଙ୍ଗେ ତାଙ୍କର ଘନିଷ୍ଠତା ଥାଏ ।

ଜିଲ୍ଲାବୋର୍ଡ୍ ନିର୍ବାଚନ ହେଲା । କଂଗ୍ରେସ ତରଫରୁ ପ୍ରାର୍ଥୀ ହେଲେ ଶ୍ରୀ ଭଗୀରଥ ଦାସ । ଗୋପବାବୁ ଓ ତାଙ୍କ କର୍ମୀସଂସ୍ଥା ତାଙ୍କ ପାଇଁ ନିର୍ବାଚନ ପ୍ରଚାର କଲେ, ଲାଗି ପଡ଼ିଲେ, ସେ ଜିତିଲେ ।

କିନ୍ତୁ ଗୋପବାବୁ ନିଜେ କ୍ଷମତା ଖୋଜୁ ନ ଥିଲେ କି ଗଠନାତ୍ମକ କର୍ମର ଦାୟିତ୍ୱ ଛାଡ଼ି ରାଜନୈତିକ ଦଳାଦଳି ଭିତରେ ପଶିବାକୁ ଚାହୁଁ ନ ଥିଲେ ।

୧୯୩୫ ଶେଷବେଳକୁ ଉ: ପ୍ରା: କ: କ: ନିର୍ବାଚନରେ କଂଗ୍ରେସ୍ ଦଳ ଭିତରେ ମତାନ୍ତର, ମନାନ୍ତର ଓ ସଂଘର୍ଷ ଦେଖାଦେଲା । ଗୋପବାବୁ କ୍ଷୁବ୍ଧ ହେଲେ । ତାଙ୍କୁ ଲାଗିଲା, ଏସବୁ ଗାନ୍ଧୀ ଚାହୁଁଥିବା ଭଲ ମନୋବୃତ୍ତି କି ଆଗ୍ରହ ନୁହେଁ ।

ଉ: ପ୍ରା: କ: କ: ଓ ରାଜନୈତିକ ପରିସ୍ଥିତିରେ କେତେଗୁଡ଼ିଏ ଉଲ୍ଲେଖଯୋଗ୍ୟ ଘଟଣା ହେଲା । ଉ: ପ୍ରା: କ: କ:ର ସଭାପତି ନିର୍ବାଚନରେ ବହୁ ସଭ୍ୟଙ୍କ ସମର୍ଥନ ପାଇ ପ୍ରତିଦ୍ୱନ୍ଦ୍ୱିତାରେ ଜିତି ପଣ୍ଡିତ ନୀଳକଣ୍ଠ ଦାସ ସଭାପତି ହେଲେ । ପ୍ରାଦେଶିକ ଆସେମ୍ବ୍ଲି ନିର୍ବାଚନରେ କଂଗ୍ରେସ୍ ଲଢ଼ିବ ବୋଲି ପଣ୍ଡିତ ନୀଳକଣ୍ଠ ଦାସ ଚାହିଁଲେ, କିନ୍ତୁ କଂଗ୍ରେସ୍ ନ ଲଢ଼ୁ ବୋଲି ଶ୍ରୀ ମହତାବ୍, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀ ମାନଧାତା ଗୋରାଚାନ୍ଦ ପଟ୍ଟନାୟକ ତିନହେଁ ଏକାଠି ଗୋଟିଏ ବିବୃତ୍ତି ଦେଲେ । ପଣ୍ଡିତ ନୀଳକଣ୍ଠ ତାର ଘୋର ପ୍ରତିବାଦ କଲେ । ଦୁଇଦଳ ହୋଇଗଲା, ପୁଣି ମିଳାମିଶା ହେଲା, ପଣ୍ଡିତ ନୀଳକଣ୍ଠ ଦାସ ଉ: ପ୍ରା: କ: କ:ର ସଭାପତି ରହିଲେ, ଶ୍ରୀ ରଘୁନାଥ ମହାପାତ୍ର ସମ୍ପାଦକ ପଦରୁ ଇସ୍ତଫା ଦେଲେ, ତାଙ୍କ ସ୍ଥାନରେ ଶ୍ରୀ ଭଗୀରଥୀ ମହାପାତ୍ର ସାଧାରଣ ସମ୍ପାଦକ ହେଲେ । ନିର୍ବାଚନ ପାଇଁ ପ୍ରସ୍ତୁତି ଚାଲିଲା । ପ୍ରାର୍ଥୀ ବଛା ହେଲେ । ପଣ୍ଡିତ ନୀଳକଣ୍ଠ ଦାସ ବିଚକ୍ଷଣତା ସହକାରେ ନିର୍ବାଚନ ଲଢ଼େଇ ଚଳାଇଲେ । ଓଡ଼ିଶାରେ ନିର୍ବାଚନ ପାଇଁ ୩୮ଟି ସ୍ଥାନ ଥାଏ, କଂଗ୍ରେସ୍ ୩୬ଟି ସ୍ଥାନ ପାଇଁ ପ୍ରାର୍ଥୀ ଠିଆ କରାଇଲେ, ତହିଁରୁ ୩୬ଟି ପ୍ରାର୍ଥୀ ଜିତିଲେ ।

ଏ ନିର୍ବାଚନରେ ପଣ୍ଡିତ ନୀଳକଣ୍ଠଙ୍କ ଅଧ୍ୟକ୍ଷତାରେ କଂଗ୍ରେସ୍‌ର ବିପୁଳ ବିଜୟ ହେଲା । ଓଡ଼ିଶାରେ କଂଗ୍ରେସ୍ ଆସେମ୍ବ୍ଲି ଲାଗି ସଂଖ୍ୟାଗରିଷ୍ଠ ଦଳ ହେଲେ । କନିକା ରାଜାଙ୍କ ଦଳର ଜଣେ ବି ଜିତିଲେ ନାହିଁ । ପାରଳା ମହାରାଜାଙ୍କ ଦଳ ବି ହାରିଗଲା । ମହାରାଜା ନିର୍ବାଚିତ ହେଲେ ।

ନିୟମ ଥିଲା ଯେ ଯେଉଁ ବ୍ୟକ୍ତିମାନେ କଂଗ୍ରେସ୍ ଟିକେଟ୍‌ରେ ନିର୍ବାଚିତ ହୋଇଛନ୍ତି କେବଳ ସେହି ନିର୍ବାଚିତ ପ୍ରତିନିଧିମାନଙ୍କ ଭିତରୁ ହିଁ ବ୍ୟବସ୍ଥାପକ ଦଳର ମନ୍ତ୍ରୀ ଆଦି କର୍ମକର୍ତ୍ତା ବଛା ହେବେ, ତା ବାହାରୁ ନୁହେଁ । ପଣ୍ଡିତ ନୀଳକଣ୍ଠ ଦାସ ତେଣୁ ବ୍ୟବସ୍ଥାପକ ଦଳର ନେତା ହୋଇ ପାରିଲେ ନାହିଁ । ଦଳକୁ ଯୁଦ୍ଧରେ ଜିତାଇ ସାରିଲାପରେ ନିଜେ ସେନାପତି ଆଉ ତା ଦଳପତି ହୋଇ ପାରିଲେ ନାହିଁ । ତାଙ୍କ ଦଳର ସମର୍ଥନ ପାଇ ନିର୍ବାଚିତମାନଙ୍କ ଭିତରୁ ଶ୍ରୀ ବିଶ୍ୱନାଥ ଦାସ ସେ ଦଳର ନେତା ହେଲେ । ସେଥିପାଇଁ ବି ନିର୍ବାଚିତ କଂଗ୍ରେସ୍ ପ୍ରତିନିଧିମାନଙ୍କ ଭିତରେ

ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲା । କିନ୍ତୁ ୫୭ ଜଣ ଅର୍ଥାତ୍ ୫୭ଟି ଭୋଟ୍‌ରୁ ଶ୍ରୀ ବିଶ୍ୱନାଥ ଦାସ ପାଇଲେ ୨° ଭୋଟ୍, ଶ୍ରୀ ନିତ୍ୟାନନ୍ଦ କାନନ୍‌ଗୋ ୭ଟି ଭୋଟ୍, ଶ୍ରୀ ଗୋଦାବରୀଶ ମିଶ୍ର ୪ଟି ଭୋଟ୍, ଶ୍ରୀ ଭୁବନାନନ୍ଦ ଦାସ ୪ଟି ଭୋଟ୍ । ଏଇଠୁ ଓଡ଼ିଶାର ରାଜନୈତିକ ନେତୃତ୍ୱରେ ଏକ ପ୍ରକାର ନୂଆଯୁଗ ଆରମ୍ଭ ହେଲା ।

କିନ୍ତୁ ହଠାତ୍ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିଲେ ନାହିଁ । ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ୧୯୩୫ରେ ବ୍ୟବସ୍ଥା ଥାଏ ଯେ ମନ୍ତ୍ରିମଣ୍ଡଳର ନିଷ୍ପତ୍ତି ବଦଳାଇ ଦେବାକୁ ପ୍ରାଦେଶିକ ଲାଟଙ୍କର କ୍ଷମତା ରହିବ; ଏ ବ୍ୟବସ୍ଥା ନ ଉଠିଲା ଯାଏ କଂଗ୍ରେସ୍ ମନ୍ତ୍ରିତ୍ୱ ନେବେ ନାହିଁ ବୋଲି ମନା କଲେ । ଓଡ଼ିଶାରେ ଅଣ-କଂଗ୍ରେସ୍ ମନ୍ତ୍ରିମଣ୍ଡଳ ହେଲା । ମୁଖ୍ୟମନ୍ତ୍ରୀ ପାରଳା ମହାରାଜା, ଆଉ ଦୁହେଁ—ଶ୍ରୀ ମାନଧାତା ଗୋରାଚାନ୍ଦ୍ ପଟ୍ଟନାଏକ ଓ ଶ୍ରୀ ଲତିଫୁର୍ ରହମନ୍ । ପଛେ ଭାରତ ସରକାର କଂଗ୍ରେସର ଦାବୀ ମାନିଲେ, ଘୋଷଣା କଲେ ଯେ ଲାଟ୍‌ମାନେ ଅତିରିକ୍ତ କ୍ଷମତା ପ୍ରୟୋଗ କରିବେ ନାହିଁ ।

ତାପରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଦାୟିତ୍ୱ ନେଲେ; ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ, ଆଉ ଦୁଇଜଣ, ଶ୍ରୀ ନିତ୍ୟାନନ୍ଦ କାନନ୍‌ଗୋ ଓ ଶ୍ରୀ ବୋଧରାମ ଦୁବେ; ଆସେମ୍ବ୍ଲି ସେକ୍ରେଟେରୀ : ସର୍ବଶ୍ରୀ ଯଦୁମଣି ମଙ୍ଗରାଜ, ଜଗନ୍ନାଥ ମିଶ୍ର, ରାଜକୃଷ୍ଣ ବୋଷ, ରାଧାକୃଷ୍ଣ ବିଶ୍ୱାସରାୟ, ବାଚସ୍ପତି ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ ।

ପ୍ରାଦେଶିକ ବ୍ୟବସ୍ଥାପକ ସଭା ଲାଗି ଗୋପବାବୁ ଠିଆ ହୋଇ ନ ଥିଲେ । ସେତେବେଳେ ଓ୍ୱାର୍ଦ୍ଧାରୁ ଫେରି ସେ ଆଚାର୍ଯ୍ୟ ମହାଶୟଙ୍କୁ ଚିଠି ଲେଖିଥିଲେ—

"...ମୁଁ ତ ପ୍ରାଦେଶିକକୁ ଠିଆ ନ ହେବା ମନସ୍ଥ କଲି । ଗୋଟିଏ ଦଳ ଗଢ଼ିବାକୁ ହେବ, ସେ କୌଣସି କମିଟିକୁ ଯିବେ ନାହିଁ ବା ବୋର୍ଡ଼ ପ୍ରଭୃତିକୁ ଯିବେ ନାହିଁ, ସାମାନ୍ୟ କଂଗ୍ରେସ୍ କର୍ମୀ ହୋଇ ରହିବେ ଏବଂ କଂଗ୍ରେସର ବଳ ବଢ଼ାଇବା ପାଇଁ ସର୍ବସ୍ୱ ଦେବେ ।

ହୁଏତ ତାଙ୍କ ପିଠିରେ ଗୋଡ଼ଦେଇ ଅନ୍ୟମାନେ ନିଜ ନିଜର ପ୍ରତିଷ୍ଠା ହାସଲ କରିନେବେ । ଏ ଦଳରେ କିଏ ଯୋଗ ଦେବେ ତାହା ଜାଣେ ନାହିଁ, ନ ହେଲେ ତ ଏକାହିଁ ଦଳ । ତେବେ ଆପଣଙ୍କର ବି ମତ ସେହିଆ ଥିଲା । ...

... ନିକଟ ଭବିଷ୍ୟତ୍‌ରେ ଗୋଟାଏ Fightର ସ୍ୱପ୍ନ କାହିଁକି ମୁଁ ଦେଖୁଛି । ନହେଲେ ମଧ୍ୟ ଏ ଆୟୋଜନ ତ ଗଠନମୂଳକ କାମ ପାଇଁ ଲୋଡ଼ା । ..."

କଂଗ୍ରେସ ଯଦି ମନ୍ତ୍ରିତ୍ୱ ନେବ, ଦାୟିତ୍ୱ ତୁଲେଇବାକୁ ଯଥେଷ୍ଟ କର୍ମୀ ନାହାନ୍ତି । ଉପଯୁକ୍ତ କର୍ମୀ ବି ଅଭାବ, ତେଣୁ ଯେ ଭାବୁଥିଲେ, ତହିଁରେ ଲାଭ ହେବ

ନାହିଁ । ୧୫-୭-୧୯୩୭ରେ ବମ୍ବେରୁ ଆଚାର୍ଯ୍ୟ ମହାଦେବଙ୍କ ପାଖକୁ ସେହିକଥା ଲେଖିଥିଲେ ।

"କଂଗ୍ରେସ ମନ୍ତ୍ରିତ୍ୱ ଗ୍ରହଣ କରିବା ଫଳରେ ଲାଭ ହେବ ବୋଲି ମୋର ତ ଟିକିଏ ବିଶ୍ୱାସ ହେଉନାହିଁ । କଂଗ୍ରେସ ଶାସନ-ଗାଡ଼ିକୁ ପୁଣି କାର୍ଯ୍ୟରେ ପରିଣତ କରିବା ପାଇଁ ତ କର୍ମୀ ଲୋଡ଼ା ? କାହାନ୍ତି ? ଯଦି କେହି ଦରମାଦିଆ ଗ୍ରହର ଭଣା କର୍ମଚାରୀଙ୍କ ଦ୍ୱାରା କରାଇବେ ବୋଲି ଭାବୁଛନ୍ତି, ସେଥିରେ କେତେଦୂର ସଫଳତା ହେବ କିଏ ଜାଣେ ?

ଯେଉଁମାନେ ରାଜନୈତିକ ହେଉ, ଗଠନମୂଳକ ହେଉ, କାମ ନେଇଛନ୍ତି, ତାଙ୍କ ଦାୟିତ୍ୱ ବଢ଼ିଗଲା । ..."

ଏ ଚିଠିରେ ଗାନ୍ଧୀଜୀଙ୍କର ଗୋଟିଏ ଲେଖାକୁ ଉଲ୍ଲେଖ କରି ସେ କହିଛନ୍ତି ଯେ ଅସଲ କାମ, —"ଲୋକମତ ଜାଗ୍ରତ କରିବା ।"

କଂଗ୍ରେସ ଭିତରେ ଦଳାଦଳି ଥାଏ । ଶ୍ରୀ ଭାଗୀରଥୀ ମହାପାତ୍ର ଆଦି କେତେକ ନେତା ଗୋପବାବୁଙ୍କୁ ଖୁବ୍ କୁହାଗୋଳା କରୁଥାନ୍ତି ଯେ ସେ ପୁଣି କଂଗ୍ରେସର ରାଜନୈତିକ ସଂଗଠନର ଦାୟିତ୍ୱ ନିଅନ୍ତୁ, ସବୁ ଅନ୍ତୁଆ ଧରାଇଦିଅନ୍ତୁ । ସେ ମନା କରୁଥାନ୍ତି । ବହୁତ ବୁଝାଇଲା ପରେ, ଅନ୍ୟାନ୍ୟ ନେତାମାନେ ରାଜି ହେଲାପରେ, ୧୯୩୭ ଶେଷଆଡ଼କୁ ସେ ରାଜି ହେଲେ ଯେ ସେ ପୁଣି ସଂଗଠନ କଥା ବୁଝିବେ । ସେତେବେଳେ ଶ୍ରୀ ଭାଗୀରଥୀ ମହାପାତ୍ର ଆବାହକ ହୋଇ କଟକରେ କଟକ ଜିଲ୍ଲା କଂଗ୍ରେସ କମିଟି ସମ୍ମିଳନୀ ହେଲା, ଗୋପବାବୁ ତା ସଭାପତି ହେଲେ । ସେ ପୁଣି ସକ୍ରିୟ ରାଜନୀତିକୁ ଫେରୁଛନ୍ତି ଶୁଣି ବିପୁଳ ଜନସମାଗମ ହେଲା ।

୧୯୩୮ରେ ଡେଲାଙ୍ଗରେ ସମ୍ମିଳନୀ ହେଲା । ସର୍ବଭାରତୀୟ ନେତାମାନେ ଆସିଲେ । ଓଡ଼ିଶା କଂଗ୍ରେସ ଭିତରେ ବିବାଦ କଥା ଯେତି ପଡ଼ିଲା । ଦୁଇଜଣ ମୁଖ୍ୟ କଂଗ୍ରେସ ନେତାଙ୍କ ଭିତରେ [ପଣ୍ଡିତ ନୀଳକଣ୍ଠ ଦାସ ଓ ଡ: ମହତାବଙ୍କ] ମତାନ୍ତର ବିଷୟ ଅନୁସନ୍ଧାନ ପାଇଁ ଗୋପବାବୁଙ୍କୁ କୁହାଗଲା । ସର୍ବଭାରତୀୟ ନେତାମାନେ ଓ ଓଡ଼ିଶାର କଂଗ୍ରେସ ନେତାମାନେ ତାଙ୍କୁ ବଳାଇଲେ ଯେ ସେ ଉ: ପ୍ରା: କ: କା:ର ସଭାପତି ହୁଅନ୍ତୁ । ସେତେବେଳଯାଏ ଡକ୍ଟର ମହତାବ ଉ: ପ୍ରା: କ: କା:ର ସଭାପତି ଥାନ୍ତି । ଗୋପବାବୁ ରାଜି ହେଲେ । ଡ: ମହତାବ ସଭାପତି ପଦରୁ ଇସ୍ତଫା ଦେଲେ । ଗୋପବାବୁ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେଲେ ।

ସେହି କାମରେ ସେ ରହିଥିଲେ ପ୍ରାୟ ବର୍ଷେ । ସେ ଅବସ୍ଥାକୁ ସେ ନିଜର 'ଠିକା ରାଜନୀତି' ଶିରୋନାମା ଦେଇ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଟିପିଥିଲେ, ସେ ଅଧ୍ୟାୟ ଲେଖିପାରି ନାହାନ୍ତି, ଲେଖାଟି ଅଳକାଶ୍ରମ ସମୟରୁ ଅସମ୍ପୂର୍ଣ୍ଣ । ଆଗ ସେ ଡ: ମହତାବ ଓ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଭିତରେ ମନୋମାଳିନ୍ୟ ଛୁଟାଇଦେଲେ । ତାପରେ ଧାଁ ଦୌଡ଼ କରି ଆପ୍ରାଣ ଚେଷ୍ଟା କଲେ ସଂଗଠନକୁ କେମିତି ଟାଣ କରିବେ, ସବୁ ଅଡ଼ୁଆ ସଜାଡ଼ିବେ । କିନ୍ତୁ ସମୟ ବଦଳିଗଲାଣି, କଂଗ୍ରେସ ଭିତରେ ସମସ୍ତେ ଏକମନ ହୋଇପାରନ୍ତି ନାହିଁ । ଗାନ୍ଧୀବାଦୀର କଣ ସେ ବିଷୟରେ ଧାରଣା ବି ଏକା ହୁଏ ନାହିଁ । ସେ ପାରିଲେ ନାହିଁ । ଇସ୍ତଫା ଦେଇ ରଚନାତ୍ମକ କାର୍ଯ୍ୟ କ୍ଷେତ୍ରରେ ସମୁଦାୟ ମନ ଓ ସମୟ ଦେବାକୁ ଲେଉଟିଗଲେ ।

ସେ ଉ: ପ୍ରା: କଂଗ୍ରେସ ସଭାପତି ଥିବାବେଳେ କି ତା ପରେ, ଶ୍ରୀ ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ ଥିଲାବେଳେ, —ସେ ଥରେ ସର୍ଦ୍ଦାର ପଟେଲଙ୍କୁ ଚିଠିଟିଏ ଦେଇଥିଲେ । ତହିଁରେ ଓଡ଼ିଶା କଂଗ୍ରେସ ଅନୁଷ୍ଠାନର ଓ ମନ୍ତ୍ରିମଣ୍ଡଳର କାର୍ଯ୍ୟରେ କେତେକ ତ୍ରୁଟି ଦେଖାଇଥିଲେ ।

ସର୍ଦ୍ଦାର ପଟେଲ ତା ଉତ୍ତରରେ ଲେଖିଲେ ଯେ ସିଦ ସେ ନିଜେ ମୁଖ୍ୟମନ୍ତ୍ରୀ ହେବାକୁ ଚାହାନ୍ତି ହୁଅନ୍ତୁ । ଗୋପବାବୁ ଖୁବ ରାଗିଗଲେ, ମହାତ୍ମା ଗାନ୍ଧୀଙ୍କୁ ଓ ସର୍ଦ୍ଦାର ପଟେଲଙ୍କୁ ଲେଖିଲେ । ମନ୍ତ୍ରୀତ୍ୱ କାମନା ତାଙ୍କର କେବେ ଆଦୌ ନଥିଲା, ସେଭଳି ଇଙ୍ଗିତ ସୁଦ୍ଧା ତାଙ୍କ ପ୍ରତି ଅନ୍ୟାୟ ଓ ଅପମାନ । ସର୍ଦ୍ଦାର ପଟେଲ ବୁଝାଇଦେଲେ ଯେ ସେଭଳି ଇଙ୍ଗିତ ଦେବା ତାଙ୍କର ଆଦୌ ଅଭିପ୍ରାୟ ନ ଥିଲା, ସେ ଇଂରେଜୀରେ ଲେଖିଥିଲେ, ଯେଉଁ ବ୍ୟବହାର କଲାବେଳେ ଭୁଲ୍ ଅର୍ଥ ହୋଇଥିବ ।

## 'ଗାନ୍ଧୀ ସେବାସଂଘ ପତ୍ରିକା'

କଂଗ୍ରେସ ସମ୍ପର୍କରେ ଗୋପବାବୁଙ୍କର କିଛି ମତାମତ ତାଙ୍କ ଦ୍ୱାରା ସମ୍ପାଦିତ 'ଗାନ୍ଧୀ ସେବାସଂଘ ପତ୍ରିକା' ଓ 'ସତ୍ୟାଗ୍ରହୀ' ପତ୍ରିକାରୁ ମିଳିବ । ତେଲିଂ ସମ୍ପର୍କ ଲମ୍ବା ହେଲା ବର୍ଷ ୧୯୩୮ ଅଗଷ୍ଟରେ 'ଗାନ୍ଧୀ ସେବାସଂଘ ପତ୍ରିକା'ର ପ୍ରଥମ ଅଙ୍କ କଟକସ୍ଥ 'ସତ୍ୟବାଦୀ ପ୍ରେସ'ରେ ଛପା ହୋଇ ବରିରୁ ବାହାରିଥିଲା । ତାର ରେଜିଷ୍ଟାର୍ଡ୍ ନମ୍ବର ଥିଲା ୨୯୭ । ପତ୍ରିକାଟି ବର୍ଷେ ଚାଲି ବନ୍ଦ ହୋଇଗଲା ।

କଂଗ୍ରେସର ନୂଆ ବିଧାନ ଓ ନିୟମ ଅନୁଯାୟୀ ଅନେକଗୁଡ଼ିଏ ପ୍ରାଇମେରୀ କମିଟି ୧୯୩୮ରେ ଗଠିତ ହୋଇଥାଏ, ତହିଁରେ ଅନେକ ନୂଆ ଲୋକ ସଭାପତି ଓ ସମ୍ପାଦକ ହୋଇ କାମ କରୁଥାନ୍ତି, ସେମାନେ ଓ କେତେକ ଅନ୍ୟାନ୍ୟ କର୍ମୀମାନେ ରାଜନୈତିକ ଶିକ୍ଷା ପାଇ ନଥାନ୍ତି, ତେଣୁ ୧୯୩୮ ଅକ୍ଟୋବର

ଠାରୁ ବର୍ଷରେ ୬ ମାସ ପାଇଁ ରାଜନୈତିକ ଶିକ୍ଷା ଦେବାଲାଗି ଗୋଟିଏ ବିଦ୍ୟାଳୟ ଖୋଲିଲି । ଆଚାର୍ଯ୍ୟ ହରିହର, ଶ୍ରୀ ନନ୍ଦ କିଶୋର ଦାସ ଆଦି ଶିକ୍ଷାର ଭାର ନେଇଥିଲେ ।

୧୯୬୮ର ୧୨, ୧୩, ୧୪ ନଭେମ୍ବରରେ ସୋରୋ କେନ୍ଦ୍ରରେ ଗାନ୍ଧୀ ସେବାସଂଘର ଉତ୍କଳ ଶାଖାର ବାର୍ଷିକ ସମ୍ମିଳନୀ ହେବା ସ୍ଥିର ହୋଇଥିଲା ।

ପତ୍ରିକାରେ ଗାନ୍ଧୀ, ବିନୋବା, ମଶ୍ରୁବାଲା, ରାଜେନ୍ଦ୍ର ପ୍ରସାଦ, କାକା କାଲେଲ୍‌କର, ଦାଦା ଧର୍ମାଧିକାରୀ ଆଦିଙ୍କ ଲେଖାରୁ ଅନୁବାଦ ବାହାରୁଥାଏ; ବେଶି ଗାନ୍ଧୀଜୀଙ୍କ ନାନା ଉପଦେଶ ବାହାରୁଥାଏ ।

ସେ ପତ୍ରିକାର ଦ୍ୱିତୀୟ ସଂଖ୍ୟାରେ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କର ଗୋଟିଏ ଲେଖାର ଅନୁବାଦ ବାହାରିଲା—"କଂଗ୍ରେସରୁ କିପରି ଅନୀତି ଦୂର ହେବ ।"

ସେଥିରେ ଲେଖାଥାଏ ଯେ ୧୯୩୪ରେ କଂଗ୍ରେସର ବମ୍ବେ ବୈଠକରେ ଗାନ୍ଧୀଜୀଙ୍କ ପ୍ରେରଣାରେ କଂଗ୍ରେସର ବିଧିବିଧାନ ତ ବଦଳିଥିଲା, କଂଗ୍ରେସର ପ୍ରତିନିଧି ସଂଖ୍ୟା ପ୍ରଦେଶର ଜନସଂଖ୍ୟା ଉପରେ ନିର୍ଭର ନ କରି ପ୍ରଦେଶର କଂଗ୍ରେସ ସଭ୍ୟଙ୍କ ଉପରେ ନିର୍ଭର କଲେ । କଂଗ୍ରେସର ସଭ୍ୟସଂଖ୍ୟା ଆଗ ତୁଳନାରେ ବହୁତ ବଢ଼ିଥିଲା । କିନ୍ତୁ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଲେଖିଛନ୍ତି ଯେ ଏହା ସଙ୍ଗେ ସଙ୍ଗେ ସଭ୍ୟ ସଂଗ୍ରହ କରିବାରେ କେତେକ ଅନୀତି ପଶି ଯାଇଥିଲା, ସ୍ଥାନେ ସ୍ଥାନେ ଦଳାଦଳି ଯୋଗୁଁ କିମ୍ବା କଂଗ୍ରେସରେ କେହି କ୍ଷମତା ପାଇବାକୁ ଇଚ୍ଛା କରିବାରୁ କଂଗ୍ରେସ ସଭ୍ୟ ସଂଗ୍ରହ କାର୍ଯ୍ୟକୁ ମଧ୍ୟ ନିଜ ସୁବିଧା ଅନୁସାରେ ବିଗାଡ଼ୁଥିଲେ, ଆପଣା ବିରୋଧୀଦଳକୁ ସଭ୍ୟ ସଂଗ୍ରହ କରିବା ସୁବିଧା ନ ଦେଇ ନିଜ ଦଳକୁ ବେଆଇନ୍ ସୁବିଧା ଦେଇଥିଲେ, ନିର୍ବାଚନ କାର୍ଯ୍ୟରେ ମଧ୍ୟ କେଉଁଠି କେଉଁଠି ମାଡ଼ଗୋଳ ମଧ୍ୟ ହୋଇ ଯାଉଥିଲା । ଡକ୍ଟର ରାଜେନ୍ଦ୍ର ପ୍ରସାଦ ଲେଖିଛନ୍ତି :

"ଯେଉଁ ପର୍ଯ୍ୟନ୍ତ କଂଗ୍ରେସ ହାତରେ କୌଣସି କ୍ଷମତା ନ ଥିଲା ବା କଂଗ୍ରେସ ଦ୍ୱାରା କ୍ଷମତା ପାଇବାର ଆଶା ନ ଥିଲା, ସେ ପର୍ଯ୍ୟନ୍ତ ଉଚ୍ଚାଭିଳାଷୀ ଲୋକଙ୍କର କଂଗ୍ରେସ ନିର୍ବାଚନରୁ କିଛି ସୁଖ ମିଳୁ ନ ଥିଲା । ଯଦି କେତେବେଳେ କେଉଁଠି ଗୋଳମାଳ ଘଟୁଥିଲା ତାହା ବେଶୀ ଆଡ଼େ ବିସ୍ତାରୁ ନ ଥିଲା । ଏବେ କିଛି ସ୍ୱାର୍ଥ ଆସିଯିବାରୁ ଉଚ୍ଚାଭିଳାଷୀ ଲୋକଙ୍କ ମନ ଝକଝକ ହେବା ସ୍ୱାଭାବିକ । ଏଭଳି ନିର୍ବାଚନ ତ ଭାରତବର୍ଷରେ ନୂଆ..."

('ସର୍ବୋଦୟ'ରୁ)

'ଗାନ୍ଧୀ ସେବାସଂଘ ପତ୍ରିକା'ର ପ୍ରଥମ ସଂଖ୍ୟାରେ ୧୯୩୮ ଅଗଷ୍ଟରେ ଗୋପବାବୁ ମୂଳ ହିନ୍ଦୀ ଲେଖାର ଏହି ଓଡ଼ିଆ ଅନୁବାଦଟି କାହିଁକି ପ୍ରକାଶ କଲେ ତାହାର ବିଶେଷ ତାତ୍ପର୍ଯ୍ୟ ଥିଲପରି ଲାଗେ। ସେତେବେଳେ ସେ ଉତ୍କଳ ପ୍ରାଦେଶିକ କମିଟିର ସଭାପତି ହୋଇଥାନ୍ତି ଓ ତାହାର ନାନା ସାଙ୍ଗଠନିକ ସମସ୍ୟା ସୁଧାରିବାରେ ଲାଗିଥାନ୍ତି।

ସେହି ପତ୍ରିକାର ଅନ୍ୟ ସଂଖ୍ୟାରୁ ଜଣାପଡ଼େ ଯେ ୧୯୩୯ର ଅଗଷ୍ଟ ବେଳକୁ ଶ୍ରୀ ସୁଭାଷ ଚନ୍ଦ୍ର ବୋଷଙ୍କ ଫରୱାର୍ଡ଼ ବ୍ଲକ୍ ତାଙ୍କ ପ୍ରଚାର ଆରମ୍ଭ କରି ଦେଇଥିଲେ। ସୁଭାଷବାବୁଙ୍କ ଉପରେ କଂଗ୍ରେସ ଶାସ୍ତି ବିଧାନ କରିଥାନ୍ତି, ତଥାପି ସୁଭାଷବାବୁଙ୍କର ଓ ତାଙ୍କ ଦଳର ମତବାଦ ପ୍ରଚାର ଚାଲିଥାଏ। ଗାନ୍ଧୀଜୀଙ୍କ ମତ ଥିଲ ଯେ ସେତେବେଳେ ସତ୍ୟାଗ୍ରହ ଆନ୍ଦୋଳନ ଚଳାଇବା ବେଳ ଆସି ନ ଥାଏ, ସେଥିପାଇଁ ଏ ଦେଶ ପ୍ରସ୍ତୁତ ନୁହେଁ, ଅହିଂସାର ବାତାବରଣ ନାହିଁ, କଂଗ୍ରେସ ଭିତରେ ଦ୍ୱେଷ, କଳି, ମିଥ୍ୟାଚରଣ ଓ ବିଶୃଙ୍ଖଳତା ଦେଖାଦେଉଛି। କିନ୍ତୁ ସୁଭାଷବାବୁ କହୁଥାନ୍ତି ଯେ ସତ୍ୟାଗ୍ରହ ବେଳ ଆସିଗଲାଣି, ଦେଶ ପ୍ରସ୍ତୁତ ଅଛି, ସତ୍ୟାଗ୍ରହ ପାଇଁ ଯେଉଁ ଅହିଂସାର ବାତାବରଣ ଦରକାର ସେ ବାତାବରଣ ଅଛି, କି କି ସର୍ତ୍ତ ପୂରଣ କଲେ ସତ୍ୟାଗ୍ରହ ହେବ ତାହା ଉପରେ ଏବେ ଜୋର ଦେବା ଦରକାର ନାହିଁ, କଂଗ୍ରେସ ଭିତରେ ଏ ଯାହା ଅନୀତି ଅଛି ସେଇଟା ଏତେବଡ଼ କଥା ନୁହେଁ, ବରଂ ସତ୍ୟାଗ୍ରହ ଆରମ୍ଭ ହେଲେ ଏସବୁ ଅନୀତି ବନ୍ଦ ହୋଇଯିବ। ଏ ବିଷୟରେ ଗାନ୍ଧୀଜୀ ଓ ସୁଭାଷ ବୋଷଙ୍କ ଭିତରେ ମତ ପାର୍ଥକ୍ୟ ଦେଖି କେତେ କଂଗ୍ରେସ କର୍ମୀଙ୍କ ମନରେ ସନ୍ଦେହ ଉପୁଜିଲା। ୧୫-୮-୧୯୩୯ରେ ଗୋଟିଏ ଲେଖାରେ ଗୋପବାବୁ ଏକଥା ଲେଖି ଏ ବିଷୟରେ ଗୋଟିଏ ସର୍କୁଲାର ପଠାଇଥିଲେ ଓ 'ଗାନ୍ଧୀ ସେବାସଂଘ ପତ୍ରିକା'ର ଦ୍ୱାଦଶ ସଂଖ୍ୟାରେ ତାହା ଛପା ହୋଇଥିଲା। ସେ ଲେଖିଥିଲେ ଯେ ଏ ଦୁଇମତକୁ ଭଲ କରି ବୁଝିବା ଦରକାର ଓ ଲୋକଙ୍କୁ ବୁଝାଇବା ଦରକାର। କର୍ମୀମାନେ ନିଜେ କାମ କରି ଲୋକଙ୍କୁ ବୁଝାଇବା ଦରକାର ଯେ ଗାନ୍ଧୀଜୀ, ଯେ ସତ୍ୟାଗ୍ରହ ଆନ୍ଦୋଳନର ଜନ୍ମଦାତା, ଯେ ସତ୍ୟାଗ୍ରହକୁ ବରାବର ପ୍ରୟୋଗ କରୁଛନ୍ତି; ଆମେ ତାଙ୍କ କଥା ମାନିବା ନା ସୁଭାଷବାବୁଙ୍କ କଥା ମାନିବା ?

ଗାନ୍ଧୀଜୀ ଓ ସୁଭାଷବାବୁଙ୍କର ସେତେବେଳର ମତାନ୍ତରର ପୃଷ୍ଠଭୂମିରେ ରହିଛି ୧୯୩୯ରେ ଆରମ୍ଭ ହୋଇଥିବା ଦ୍ୱିତୀୟ ମହାଯୁଦ୍ଧ। ଶ୍ରୀ ସୁଭାଷ ବୋଷଙ୍କ ମତ ଥିଲା, ଏତିକିବେଳେ ଇଂରେଜ୍ ସରକାର ବିରୁଦ୍ଧରେ ଲଗିବା ଦରକାର, ସେ ଅଡ଼ୁଆରେ ପଡ଼ିଛି।

ସୁଭାଷବାବୁଙ୍କ ମତ ଥିଲା—ଇଂଲଣ୍ଡର ସେତେବେଳେ ପ୍ରୟୋଜନ ବେଳ, ସେତିକିବେଳେ ଭାରତବର୍ଷ ପାଇଁ ସୁଯୋଗର ବେଳ । ୧୯୩୫ରେ ବ ସେ

ଇଂରେଜମାନଙ୍କ ଶତ୍ରୁଙ୍କଠାରୁ ଭାରତ ସାହାଯ୍ୟ ପାଇବାର ସମ୍ଭାବନା ବିଷୟରେ ବିଚାର କରୁଥାନ୍ତି, କିନ୍ତୁ ଗାନ୍ଧୀଜୀ ଓ ପଣ୍ଡିତ ନେହେରୁଙ୍କ ମନରେ ବ୍ରିଟେନ୍ ପ୍ରତି ଟିକିଏ ମମତା ଥିଲା । ଇଂରେଜ୍ ଦେଶ ଯେତେବେଳେ ବିପଦରେ ପଡ଼ିଛି ଓ ଜର୍ମାନୀ ସଙ୍ଗେ ଯୁଦ୍ଧରେ ବ୍ୟାପୃତ, ବେଳ ଜାଣି ସେତିକିବେଳେ ଇଂରେଜ୍ ସରକାରର ଦୁର୍ଦ୍ଦଶାରୁ ଫାଇଦା ଉଠାଇବା, —ଏ ଧାରଣା ବିରୁଦ୍ଧରେ ଗାନ୍ଧୀ ଓ ନେହେରୁଙ୍କର ଦୃଢ଼ ମତ ଥିଲା । ୧୯୩୯ ସେପ୍‌ଟେମ୍ବର ପହିଲାରେ ଜର୍ମାନୀ ପୋଲାଣ୍ଡ୍ ଆକ୍ରମଣ କଲା ଓ ସେପ୍‌ଟେମ୍ବର ୩ ତାରିଖରେ ଇଂଲଣ୍ଡ୍ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା, ଦ୍ୱିତୀୟ ପୃଥିବୀବ୍ୟାପୀ ଯୁଦ୍ଧ ଆରମ୍ଭ ହୋଇଗଲା ।

"ଗାନ୍ଧୀ ସେବାସଂଘ ପତ୍ରିକା" ବନ୍ଦ ହୋଇଗଲା । ତାପରେ ୨୩-୧-୧୯୪୦ରୁ ଗୋପବାବୁ ପୁଣି 'ସତ୍ୟାଗ୍ରହୀ' ପତ୍ରିକା ବାହାର କଲେ, ସେଥିର ପ୍ରଥମ ସଂଖ୍ୟାରେ ସେ ଲେଖିଛନ୍ତି :

" 'ସତ୍ୟାଗ୍ରହୀ' ସାପ୍ତାହିକ ପତ୍ରିକାଟି ୧୯୨୧ରେ ପ୍ରକାଶିତ ହେଉଥିଲା । 'ଆଇନ୍ ଅମାନ୍ୟ' ଆରମ୍ଭ ହୋଇସିବାରୁ ତାହା ବନ୍ଦ ହୋଇଗଲା । ··· (ବର୍ତ୍ତମାନ) ଏହାର ପ୍ରକାଶର ପ୍ରଧାନ ଉଦ୍ଦେଶ୍ୟ ହେଉଛି, —'ହରିଜନ' ପ୍ରଭୃତିରୁ ଗାନ୍ଧୀଜୀଙ୍କ ଲେଖାଗୁଡ଼ିକର ଅନୁବାଦ କରି ଓଡ଼ିଆ ପାଠକଙ୍କୁ ଯୋଗାଇବା । ଏଥିରେ ଗାନ୍ଧୀ ସେବାସଂଘର କାର୍ଯ୍ୟ ବା ସଂବାଦ ମଧ୍ୟ ପ୍ରକାଶ ପାଇବ ।"

କିନ୍ତୁ ୧୯୩୯ ଅକ୍‌ଟୋବରରେ ଗାନ୍ଧୀଜୀଙ୍କ ନିର୍ଦ୍ଦେଶକ୍ରମେ ପ୍ରଥମ ସତ୍ୟାଗ୍ରହୀ ବିନୋବା ସତ୍ୟାଗ୍ରହ ଆରମ୍ଭ କରି ବନ୍ଦୀ ହେବାରୁ ସରକାର ପ୍ରେସ-ସେନ୍‌ସର୍‌ସିପ୍ ଆରମ୍ଭ କରିଦେଲେ । 'ହରିଜନ' ଆଦି ବନ୍ଦ ହେଲା ଓ ତେଣୁ ୩୦-୧୦-୪୦ରେ 'ସତ୍ୟାଗ୍ରହୀ'ର ଗୋଟିଏ ବିଶେଷ ସଂଖ୍ୟାରେ ଏହି କାରଣ ଲେଖି 'ସତ୍ୟାଗ୍ରହୀ' ପତ୍ରିକାଟି ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ ରହିଲା ବୋଲି ସମ୍ପାଦକ ଗୋପବାବୁ ସମସ୍ତଙ୍କୁ ଜଣାଇଦେଲେ । ଆଉ ସେ ବାହାର ନାହିଁ ।

'ସତ୍ୟାଗ୍ରହୀ' ପତ୍ରିକାରେ ମୁଖ୍ୟତଃ ସତ୍ୟାଗ୍ରହ ଓ ସତ୍ୟାଗ୍ରହୀଙ୍କ ସମ୍ବନ୍ଧରେ ଗାନ୍ଧୀଜୀଙ୍କ ମତାମତ ଓ ନାନା ନିର୍ଦ୍ଦେଶ ବାହାରୁଥାଏ । ଗଠନମୂଳକ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ସତ୍ୟାଗ୍ରହୀ କିଭଳି ତାହାର ମାଧ୍ୟମରେ ନିଜକୁ ଅହିଂସ ସ୍ୱାଧୀନତା ସଂଗ୍ରାମ ପାଇଁ ପ୍ରସ୍ତୁତ କରିବ ଓ ଶୋଷଣହୀନ ସମାଜ ପ୍ରତିଷ୍ଠା କାର୍ଯ୍ୟରେ ସାହାଯ୍ୟ କରିବା, ସେସବୁ ଲେଖାର ତାହାହିଁ ଉଦ୍ଦେଶ୍ୟ । 'ଗାନ୍ଧୀ ସେବାସଂଘ' ପତ୍ରିକାରେ ଯେପରି ଓଡ଼ିଶାରେ ସଂଗଠନ କାର୍ଯ୍ୟ ବିଷୟରେ ସମ୍ବାଦ ବାହାରୁଥିଲା ଏଥିରେ ସେପରି ନ ଥିଲା । ବେଳେ ବେଳେ ଗୋପବାବୁ ବା ରମା ଦେବୀ କୌଣସି କୌଣସି ବିଷୟରେ ନିଜର ଅଭିଜ୍ଞତା ବା ମତାମତ ଏଥିରେ ଛପାଇଥିଲେ ।

ଗୋପବାବୁଙ୍କର କେତେକ ଲେଖାରୁ ଜଣାପଡ଼ୁଛି ଯେ ସେତେବେଳେ ଓଡ଼ିଶାରେ କେତେ କଂଗ୍ରେସ ଲୋକ ସୂତାକଟା ଆଦି ରଚନାତ୍ମକ କାର୍ଯ୍ୟକୁ ଆନ୍ଦୋଳନ ପାଇଁ ଅପରିହାର୍ଯ୍ୟ ବୋଲି ଭାବୁ ନ ଥିଲେ ଅଥବା ସେମାନେ ଭାବୁଥିଲେ ଯେ ଆନ୍ଦୋଳନ ଲାଗି ସେସବୁ ଅବାନ୍ତର । ଗୋପବାବୁ ସେପରି ଧାରଣାକୁ ଦୂର କରିବା ପାଇଁ ଲେଖା ଛପାଉଥିଲେ । ସେ କଂଗ୍ରେସ ପ୍ରତି ଅନୁରକ୍ତ ଥିଲେ । କଂଗ୍ରେସ ସଭ୍ୟ ସଂଗ୍ରହ ଉପରେ ଜୋର ଦେଉଥିଲେ ଓ ଖଦୀ କାମ ଆଦି ରଚନାତ୍ମକ କାର୍ଯ୍ୟ କରିବା ଦ୍ୱାରା ହିଁ କଂଗ୍ରେସ ବଳଶାଳୀ ହେବ ବୋଲି ଭାବୁଥିଲେ । 'ସତ୍ୟାଗ୍ରହୀ'ରୁ ଜଣାଯାଉଛି ଯେ କେତେଗୁଡ଼ିଏ 'ରାଜନୈତିକ ଶିକ୍ଷା ଶିବିର' ଖୋଲି କର୍ମୀମାନଙ୍କୁ ତାଲିମ୍ ଦେବା କାମ ୧୯୩୯ରେ ବି ଚାଲୁ ରହିଥିଲା, ସେଥିରେ ସେ ଉତ୍ସାହ ଦେଖାଉଥିଲେ । ସେହି ଶିକ୍ଷା ଶିବିରମାନଙ୍କ ପାଇଁ ଗୋଟିଏ **Hand Book** ଲେଖା ହେଉ ବୋଲି ତାଙ୍କର ଇଚ୍ଛା ଥିଲା । ସେ ଆଉ ଉ: ପ୍ରା: କ: କ:ର ସଭାପତି ନ ଥିଲେ ସୁଦ୍ଧା କଂଗ୍ରେସ ଅନୁଷ୍ଠାନ ଭିତରେ କିପରି ଏକତା ରହିବ, ସେ ବିଷୟରେ ଚିନ୍ତା କରୁଥିଲେ; ଗାଁରେ କିପରି ଦଳାଦଳି କମିବ, କଂଗ୍ରେସ ପ୍ରାଥମିକ କମିଟିର ସଭ୍ୟମାନେ ଦଳାଦଳି କାର୍ଯ୍ୟରେ ବ୍ୟାପୃତ ନ ହେବେ, ସେ ବିଷୟରେ ବି ସେ ଲେଖିଥିଲେ । ୧୩-୨-୪୦ର 'ସତ୍ୟାଗ୍ରହୀ'ରେ 'ମାଲିକ ଓ ଚାକର' ବୋଲି ତାଙ୍କର ଲେଖାଟିଏ ଅଛି । ଲେଖିଛନ୍ତି :

"କଂଗ୍ରେସ ପ୍ରତିନିଧି ନିର୍ବାଚନ ସମ୍ପର୍କରେ ନାନା ପ୍ରକାର ଅନୁଭୂତି ହୋଇଛି । ତନ୍ମଧ୍ୟରୁ ଗୋଟିଏ ବନ୍ଧୁଙ୍କଠାରୁ ନିମ୍ନଲିଖିତ ଚିଠି ଖଣ୍ଡି ପାଇଛି—

ଭୋଟର ଆନ୍ଦୋଳନ ନେଇ ଆମ୍ଭେମାନେ ବିଶେଷ ସନ୍ଦେହରେ ପଡ଼ୁଛୁ । ଗଲା କାଲି ବାବୁମାନେ ବହୁତ ସମସ୍ତ ଖୁବ୍ ପ୍ରଚାର କରୁଥିଲେ । ପୂର୍ବେ ଭୋଟ୍‌ରେ କଂଗ୍ରେସ ଓ ବେ-କଂଗ୍ରେସ ବୋଲି ଦୁଇଟା ଥିଲା । ଲୋକେ ଆଖିବୁଜି କଂଗ୍ରେସରେ ଭୋଟ ଦେଇ ଆସିଲେ । ଆଜି କଂଗ୍ରେସ ଭିତରେ କି ଭେଦ ଉପୁଜିଛି କେଜାଣି, ଗାଁ ଗହଳରେ ଦଳ ଦଳ ବୋଲି ଜଣାପଡ଼ୁଛି, ମଧ୍ୟ ସେହିପରି ପ୍ରଚାର କାର୍ଯ୍ୟମାନ ଚାଲିଛି । କଂଗ୍ରେସର ଅନ୍ତର ଭେଦ ଭାବ କଅଣ କିଛି ଜାଣି ନାହୁଁ ।

ପ୍ରକାଶ ଥାଉକି, ଉପସ୍ଥିତ ଭୋଟଗ୍ରହୀତାଙ୍କୁ ଆମର ବିଶ୍ୱାସ ନାହିଁ । ଆପଣ ତ ଜଣେ ଚାରିଅଣିଆ କଂଗ୍ରେସ ମେମ୍ବର । ଯେଉଁ ବାକ୍‌ସରେ ଭୋଟ ଦେବେ ଜାଣିପାରିଲେ ଯଥେଷ୍ଟ ହେବ ଓ ପ୍ରକୃତ ପଥ ମଧ୍ୟ ପାଇବୁଁ ।

ଏ ମର୍ମରେ ଅନେକ ଅନ୍ୟ ଗ୍ରାମବାସୀ ବନ୍ଧୁଙ୍କଠାରୁ ମୌଖିକ ପ୍ରଶ୍ନ ମଧ୍ୟ ଶୁଣିଛି । ମୁଁ ଉତ୍ତର ତ ସମସ୍ତିଙ୍କୁ ଦେଉଛି ।

ଏ ଭୋଟ ଲଢ଼େଇକୁ ଭୋଟରମାନେ ଯେଉଁ ଦୃଷ୍ଟିରେ ଦେଖିବେ ତାହା ସେହି ଆକାର ଧାରଣ କରିବ । ଭେଦଭାବ ବଢ଼େଇବା, କଳି କରିବା ଭାବ ଆଣିବାକୁ ଇଚ୍ଛା କଲେ ସେହି ବାତାବରଣ ସୃଷ୍ଟି ହେବ । ଭୋଟର ମତଦାତାଙ୍କ ହାତରେ ସବୁ ରହିଛି । ପ୍ରକୃତରେ ଦେଖିଲେ ଏଥିରେ କଳି ନାହିଁ । ···

ପତ୍ରପ୍ରେରକ ଯେ ଲେଖିଛନ୍ତି ଆଖିବୁଜି ସବୁ କରି ଯାଉଥିବେ ସେଭଳି 'ମେଣ୍ଢାପଲ ବୁଦ୍ଧି' ଆଉ ଫଳବତୀ ତ ହେବ ନାହିଁ ବରଂ ତାହା ବିପଦଜନକ । କେଉଁ କାମ ପାଇଁ କ୍ଷମତାପତ୍ର ଦିଆଯାଉଛି ସେତକ ନ ବୁଝିଲେ ସମସ୍ତଙ୍କର କ୍ଷତି । ଯେତେବେଳେ ଯେଉଁ କାମ ପାଇଁ ପ୍ରତିନିଧି ଦରକାର ସେତେବେଳେ ସେହି କାମ ପାଇଁ ଚାକରଟିଏ ବାଛିବାକୁ ହେବ ।

କଂଗ୍ରେସ ପ୍ରତିନିଧି ଭୋଟ ଯଦି ହେଉଛି, ବୁଝିବା ଦରକାର ଏ ପ୍ରତିନିଧିଙ୍କ ପ୍ରଧାନ କାମ କଣ ଏବଂ ସେହି କାମ କରିବା ପାଇଁ ଯୋଗ୍ୟତା ଯେଉଁ ଚାକରଙ୍କ ପାଖେ ଥିବ ସେହିମାନଙ୍କୁ ବାଛିବା । ···

ମାତ୍ର ଅସଲ ଅଡୁଆ ହୁଏ ଏଇଥିଯୋଗୁଁ; ଚାକରମାନେ ଠିକ୍ ଚାକିରି କରି ନ ଥାନ୍ତି, ଏପରିକି ମାଲିକଙ୍କ ସଙ୍ଗେ ପରିଚିତ ହୋଇ ନ ଥାନ୍ତି । କେବଳ ପୁରୁଣା ଚାକର ପ୍ରାର୍ଥୀ ହୋଇଥିଲେ ବାଛିବା ସୁବିଧା ହୋଇଥାଏ । ନୂଆ ପ୍ରାର୍ଥୀ ଆସି ଉମିଦାର୍ ହେଲେ ତାଙ୍କ ଯୋଗ୍ୟତା ଜାଣିବାରେ ମାଲିକମାନଙ୍କର ଅସୁବିଧା ହୋଇଥାଏ । ଆଜି ନିର୍ବାଚନ ଦ୍ୱନ୍ଦ୍ୱମାନଙ୍କରେ ଯେତେ ପ୍ରକାର ମିଥ୍ୟାଚାର, ମିଥ୍ୟା ଯୁକ୍ତିର ପ୍ରୟୋଗ ହେଉଛି, ସେସବୁ ଦିନକରେ ବନ୍ଦ ହୋଇଯିବ, ଯଦି ଭୋଟର ମତଦାତାମାନେ ବୁଝିବେ ସେମାନେ ମାଲିକ ଓ ଆପଣା କାମ ପାଇଁ ଚାକର ବାଛିବାକୁ ପଡ଼ୁଛି । ···"

ସେତେବେଳେ ଓଡ଼ିଶା କଂଗ୍ରେସର ପରିସ୍ଥିତି ଓ ସେ ବିଷୟ ପ୍ରତି ତାଙ୍କର କିଛି ବିଚାର ଏଥିରୁ ଜଣାପଡ଼ୁଛି । ଏ ବିଚାର ନୂଆ ନୁହେଁ, ଗାନ୍ଧୀ ବିନୋବା ବି କହୁଥିଲେ, ମାଲିକ୍ ଦେଶବାସୀ, ପ୍ରତିନିଧି ତାଙ୍କର ସେବକ ।

ସେହି ସଂଖ୍ୟାରେ ଅନ୍ୟତ୍ରରେ ଲେଖିଛନ୍ତି ଯେ ଏତିକିବେଳେ (୧୩-୨-୪୦) ଲୋକଙ୍କ ହାତରେ ଧାନ ଚାଉଳ ଗଣ୍ଡିଏ ଅଛି, ସତ ନାହିଁ, ନୂଆ ବର୍ଷ ପାଇଁ କଂଗ୍ରେସ କମିଟିମାନେ ଶୀଘ୍ର ଖାତା ପଠାଇ କଂଗ୍ରେସ ସଭ୍ୟ ସଂଗ୍ରହ ଆରମ୍ଭ କରି ଦିଅନ୍ତୁ । ସେ କଂଗ୍ରେସର ବଳ ବଢ଼ାଇବା ପାଇଁ ହିଁ ଚେଷ୍ଟା କରୁଥିଲେ ।

କଂଗ୍ରେସ ପ୍ରତିନିଧି ନିର୍ବାଚନ ଚାଲିଥାଏ, କଂଗ୍ରେସ ସଭ୍ୟମାନେ ବହୁ ସଂଖ୍ୟାରେ ଭୋଟ ଦେବାକୁ ଆସୁଥାନ୍ତି । ସାଧାରଣ ଲୋକେ ଭୋଟ ଦେବାକୁ ଅଧିକାର

ଦାନ କରିବାକୁ ବ୍ୟଗ୍ର ହେଲେଣି ଭାବି ସେ ଖୁବ୍ ଖୁସି ହେଉଥିଲେ । ୨୦-୨-୪୦ରେ ଏ ବିଷୟରେ ସେ ଲେଖିଥିଲେ, "କେବଳ ପ୍ରାର୍ଥୀମାନଙ୍କ ଉଦ୍ୟମରେ ଏତେ କଂଗ୍ରେସ ସଭ୍ୟ ଭୋଟ୍ ଦେବାକୁ ଆସିଛନ୍ତି, ତାହା କହିବା ଠିକ୍ ନୁହେଁ । ... ଚାରିଅଣା ପଇସା ଦେଇଥାଇଁ, ଗୋଟାଏ ଅଧିକାର ମିଳିଛି, ଚାଲ ସେଇ ଅଧିକାରରେ ଭୋଟଟାଏ ଦେଇ ଆସିବା, ଏ ମନୋଭାବରେ କେବଳ ଏ ଆଗ୍ରହ ବଢ଼ି ନାହିଁ । ବରଂ ସେ ବ୍ୟଗ୍ରତାଟା ଭୋଟ ଦେବାରେ ସରି ନ ଯାଇ, ଭୋଟ ଦେବା ଅଧିକାର ପାଇବା ପାଇଁ ବ୍ୟଗ୍ରତାରେ ବିକଶିତ ହୋଇଛି ।"

ତାପରେ ସେ ଆଲୋଚନା କଲେ କଂଗ୍ରେସର 'ସାବାଳକ୍ ଭୋଟ୍ ଅଧିକାର' ଦାବୀ ବିଷୟରେ । ଲେଖିଲେ—

"ଏହି ଯେ ସାବାଳକ୍ ମତାଧିକାର କଥା ଆସି ପଡ଼ିଲାଣି ତାହା ତ ଦିନେ ଆସିବ । ସେଥିପାଇଁ ଲୋକଙ୍କୁ ତୟାର କରିବ କିଏ ? ମୁଷ୍ଟିମେୟ କଂଗ୍ରେସ ନେତା ବା କର୍ମୀଙ୍କର ସେ କାମ ନୁହେଁ । ସାଧାରଣ କଂଗ୍ରେସ ଲୋକମାନେ ଏ ତୟାରିର, ଏ ସ୍ୱାଭାବିକ ଅଧିକାରଲମ୍ବାର ଏ ବିକାଶ କରାଉଛନ୍ତି ଓ କରିବେ । କଂଗ୍ରେସ ଲୋକମାନେ ଏତିକି ବୁଝିଲେଣି, ସେମାନେ ମାଲିକ୍ ଏବଂ ଦେଶର ଭଲ ମନ୍ଦରେ ମତ ଦେବା ତାଙ୍କର ମାଲିକସ୍ୱତ୍ୱ । ସାଧାରଣ ମାଲିକସ୍ୱତ୍ୱରେ ମାଲିକଙ୍କ ସଂଖ୍ୟା ବା ଅଂଶୀଦାରଙ୍କ ସଂଖ୍ୟା କମିଲେ ସ୍ୱତ୍ୱଟା ବଢ଼େ ବୋଲି ଲୋକେ ବିଚାରିଥାନ୍ତି । ମାତ୍ର ସ୍ୱରାଜ୍ୟଲାଗି ଏ ଯେ ସ୍ୱାଭାବିକ ସ୍ୱତ୍ୱ ବା ଅଧିକାର ମନୁଷ୍ୟର ଅଛି ସେ ସ୍ୱତ୍ୱ କେବଳ ବଢ଼ିବ ଯେତେବେଳେ ମାଲିକ ଅଂଶୀଦାର ବଢ଼ିବେ । ଚଉଦଲକ୍ଷ କଂଗ୍ରେସ ସଭ୍ୟଙ୍କ ସଙ୍ଗେ ଯେତେବେଳେ ପନ୍ଦର କୋଟି ସାବଳକ୍ ଇଜ୍‌ମାଲି ଅଂଶୀଦାର ହେବେ, ତାଙ୍କର ଭଲ ଏ ଅଧିକାର କଥା ବୁଝି ତାକୁ ହାସଲ କରିବେ, ସେତେବେଳେ ଏ ସ୍ୱତ୍ୱର ପ୍ରକୃତ ପୂର୍ଣ୍ଣତା ପ୍ରାପ୍ତ ହେବ । କ୍ଷମତାକୁ ସୀମାବଦ୍ଧ କରି ମୁଷ୍ଟିମେୟ ବା ଅଳ୍ପ ସଂଖ୍ୟକଙ୍କ ହାତରେ ରଖିବାର ପ୍ରୟାସ ହିଂସା-ସଂଗଠନର ଚିହ୍ନ । ଅହିଂସା ସଂଗଠନରେ, ସମସ୍ତଙ୍କୁ କ୍ଷମତା ବା ଅଧିକାରର ସ୍ୱଭାବସିଦ୍ଧ କଥା ବୁଝାଇ, ତାଙ୍କର ସେ ଅଧିକାର ଭୋଗର ଲିପ୍‌ସା ଜାଗ୍ରତ କରି, ତାଙ୍କୁ ସେ କ୍ଷମତା ଦେଇ ଓ ସମସ୍ତିଙ୍କୁ ଅଂଶୀଦାର କରି ନେବା ହିଁ ଏକମାତ୍ର ପନ୍ଥା । ଅହିଂସା ସଂଗଠନରେ କ୍ଷମତାଠାରୁ କର୍ତ୍ତବ୍ୟର ଯେଭଳି ଉଚ୍ଚ ସ୍ଥାନ, ତା ସଙ୍ଗେ କ୍ଷମତା ବାଣ୍ଟିନେବା ନୀତି ଖାପିଯାଏ । ବର୍ତ୍ତମାନ ଯେ କଂଗ୍ରେସ ସଭ୍ୟ ହୋଇଛନ୍ତି ସେହିମାନେ ଲାଗିପଡ଼ିଲେ, ଏ ଅହିଂସା ସଂଗଠନକୁ ବଢ଼ାଇ ପାରିବେ ଓ ସ୍ୱରାଜ୍ୟର ଭୂଇଁଆଦିକୁ ପକ୍‌କା କରି ପାରିବେ ।"

୫-୪-୩୯ରେ ସତ୍ୟାଗ୍ରହୀରେ 'ଗାଁ ପଞ୍ଚାୟତ' ଶିରୋନାମା ତଳେ ସେ ଲେଖିଥିଲେ—

"... ଜାତିର ମୁକ୍ତି ସଂଗ୍ରାମ ତ ବନ୍ଦ ହୋଇନାହିଁ ସତ୍ୟ, ମାତ୍ର ସେହି ସଂଗ୍ରାମ ପୁଣି ଅଧିକ ଜୋରରେ ଚାଲିବାର ସମ୍ଭାବନା ରହିଛି । ଦେଶ ମଧ୍ୟ ସେହି ଉଦ୍ଦେଶ୍ୟରେ ପ୍ରସ୍ତୁତ ହେଉଛି । ସୁଏନ୍ତ କଂଗ୍ରେସ ପୁଣି ସବିନୟ ଆଇନ୍ ଅମାନ୍ୟ ପାଇଁ ନିର୍ଦ୍ଦେଶ ଦେଇପାରେ । କଂଗ୍ରେସ ଆଜି ଗାନ୍ଧୀଜୀଙ୍କୁ ସେନାପତି କରିଛି । ଗାନ୍ଧୀଜୀଙ୍କ ହାତରେ କ୍ଷମତା ଦିଆହୋଇଛି, ସେ ଉପଯୁକ୍ତ ସମୟ ଦେଖି ସଂଗ୍ରାମରେ ଚରମ ଅସ୍ତ୍ର ପ୍ରୟୋଗ କରିବାକୁ ଆଦେଶ ଦେବେ । ମାତ୍ର, ଦେଶ ସେଥିପାଇଁ ପ୍ରସ୍ତୁତ କି ନା ଜାଣିବା ପାଇଁ ସେନାପତି କେତୋଟି ସର୍ତ୍ତ ନିର୍ଦ୍ଦିଷ୍ଟ କରି ଦେଇଛନ୍ତି । ସର୍ତ୍ତଗୁଡ଼ିକ ନୂଆ ନୁହେଁ, —ସୂତାକଟା, ସାଂପ୍ରଦାୟିକ ଐକ୍ୟ ଓ ଅସ୍ପୃଶ୍ୟତା ନିବାରଣ ..."

'ସତ୍ୟାଗ୍ରହୀ'ର ପ୍ରାୟ ପ୍ରତ୍ୟେକ ସଂଖ୍ୟାରେ ସେ ସ୍ୱାଧୀନତା ସଂଗ୍ରାମ ଲାଗି ଦେଶକୁ ପ୍ରସ୍ତୁତ କରିବା କାର୍ଯ୍ୟରେ ଦୂରଦର୍ଶୀ, ବିଚାରଶୀଳ ଓ ସ୍ୱଦେଶାନୁରାଗରେ ଆପ୍ଲୁତ ରାଜନୈତିକ ଆଲୋଚନା ପ୍ରକାଶ କରୁଥିଲେ ।

'ସତ୍ୟାଗ୍ରହୀ'ର ୧୭-୯-୧୯୪୦ ତାରିଖର ସଂଖ୍ୟାରେ 'ଖଦୀକାମ' ବୋଲି ତାଙ୍କ ଲେଖା ସମ୍ପାଦକୀୟଟିଏ ବାହାରିଲା । ବାଲେଶ୍ୱର ଜିଲ୍ଲାର କୁମ୍ଭାରିଆରେ ସେ ତାକୁ ୧୨-୪-୪୦ରେ ଲେଖିଥିବାର ତାରିଖ ଦେଇଛନ୍ତି ।

ଲେଖାଟି ପଢ଼ିଲେ ଲାଗୁଛି ଯେ ୧୯୪୦ ଅପ୍ରେଲ ବେଳକୁ ଓଡ଼ିଶା କଂଗ୍ରେସ୍ ଭିତରେ କେହି କେହି କଂଗ୍ରେସର ଉଦ୍ଦେଶ୍ୟ ଓ କାର୍ଯ୍ୟ ବିଷୟରେ ତାଙ୍କ ମତାମତ ଶୁଣି ବିରକ୍ତ ହେଲେଣି, ସେମାନେ ଭାବିଲେଣି, —'ସେ ତ ଖଦୀକାମ କରିବା ଲୋକ, ସେ କଂଗ୍ରେସର ସଭାପତି କି ସମ୍ପାଦକ କିଛି ନୁହନ୍ତି, ରାଜନୈତିକ ବିଷୟରେ ସେ କାହିଁକି ପାଟି ଫିଟାଉଛନ୍ତି, ଅନ୍ୟମାନଙ୍କୁ କହୁଛନ୍ତି ?' ଜଣାପଡ଼ୁଛି ଯେ ସେମାନେ ଧରୁଛନ୍ତି, —'କଂଗ୍ରେସର କାମ ରାଜନୀତି କରିବା, ସେ ସେଥିରେ ନାହାନ୍ତି, ଖଦୀ କାମର କଂଗ୍ରେସର ରାଜନୀତି କାମ ସଙ୍ଗେ କିଛି ସମ୍ବନ୍ଧ ନାହିଁ ।'

ଏ କଥାକୁ ଗୋପବାବୁ ଛାଡ଼ି କରିଥିବେ ନିଶ୍ଚୟ, ପୁଣି ତାଙ୍କ ସ୍ତରର ତାଙ୍କ ଦଳର କଂଗ୍ରେସ ନେତା ! କିନ୍ତୁ ଲାଗୁଛି, —ଖଦୀ ଓ ଅନ୍ୟାନ୍ୟ ରଚନାତ୍ମକ କାମର ରାଜନୀତି ସଙ୍ଗେ କି ସମ୍ବନ୍ଧ, କେମିତି ତାହା କଂଗ୍ରେସର ଯେଉଁ ରାଜନୈତିକ ଲକ୍ଷ୍ୟ, ସ୍ୱରାଜ୍ୟପ୍ରାପ୍ତି, ତାର ମୂଳକୁଆ, ସେଥିପାଇଁ ଅପରିହାର୍ଯ୍ୟ ଅବ୍ୟର୍ଥ ଉପାୟ, —ମହାତ୍ମା ଗାନ୍ଧୀଙ୍କ ଅନୁଚର ବୋଲାଉଥିବା କେତେକ କଂଗ୍ରେସ କର୍ମୀ ବା ନେତା ତାର ଅ' ଆ' ବି ଜାଣନ୍ତି ନାହିଁ ବା ଭୁଲିଲେଣି, ସେକଥା ଭାବି ସେ ମର୍ମାହତ ହେଲେ । ତାଙ୍କ ଲେଖାରୁ ତାତ୍ପର୍ଯ୍ୟ ଜଣାପଡ଼ୁଛି ଯେ ସେ ଭାବୁଛନ୍ତି, —"କଂଗ୍ରେସ ସତ୍ୟାଗ୍ରହ ଆନ୍ଦୋଳନର ଯେ ଜନ୍ମଦାତା ଏମାନେ କଂଗ୍ରେସ ଲୋକ ହୋଇ ଯଦି ତାଙ୍କ

ଉଦ୍ଦେଶ୍ୟରୁ ଓହରି ଯିବେ, କଂଗ୍ରେସରୁ ଯଦି ଗାନ୍ଧୀବାଦୀ ଆଦର୍ଶ ଲୋପ ହେବ, ତାହେଲେ ସ୍ୱେ କଂଗ୍ରେସର କଣ ହେବ ?'

ସବୁବେଳେ ତାଙ୍କ ଲେଖାର ଆକ୍ଷରିକ **ଅର୍ଥ** ଉହାଡ଼ରେ ଥାଏ ତା ଭିତରେ କିଛି ବିଶେଷ ତାତ୍ପର୍ଯ୍ୟ ଓ ଉପଯୋଗିତା । ତାଙ୍କ ଆଖିରେ ଖଦୀ କଣ ଏ କଥା ଲେଖିଲାବେଳେ ଏ ଲେଖାଟିରୁ କିଛି ଅଂଶ ଉଦ୍ଧୃତ କରା ହୋଇଛି । ଏଠି ତହିଁରୁ ଆଉ କିଛି ଦିଆଗଲା :

"ମୁଁ ମଧ୍ୟେ ମଧ୍ୟେ ଭିନ୍ନ ଭିନ୍ନ କେନ୍ଦ୍ର ଦେଖିବାକୁ ଯାଇଥାଏଁ । ବିଶେଷକରି, ଯେଉଁଠାରେ କଂଗ୍ରେସ କମିଟି ତରଫରୁ ସତ୍ୟାଗ୍ରହୀମାନଙ୍କ ଦ୍ୱାରା ଖଦୀକାମ ହେଉଛି ତାହା ଦେଖିବାକୁ ଯାଇଥାଏଁ । ସହକର୍ମୀଙ୍କ ସଙ୍ଗେ ବର୍ତ୍ତମାନ ପରିସ୍ଥିତି ବିଷୟରେ ସ୍ୱତଃ ଆଲୋଚନା ହୋଇଥାଏ । ଏଥିରେ ଜଣେ ସହକର୍ମୀ କୁଆଡ଼େ କହିବାର ଶୁଣିଲି ଯେ ମୁଁ ଖଦୀକାମ ସମ୍ବନ୍ଧରେ ଆଲୋଚନା କରି ବୁଲିଲେ କ୍ଷତି ନାହିଁ, କିନ୍ତୁ ଅନ୍ୟ ରାଜନୈତିକ ବିଷୟରେ ହସ୍ତକ୍ଷେପ କଲେ ଭଲ ହେବ ନାହିଁ ।

ଏପରିସ୍ଥଳେ, ମୁଁ ଖଦୀକାମ କହିଲେ କଣ ବୁଝେଁ, ସ୍ପଷ୍ଟ ଜଣାଇଦେବା ଉଚିତ । ମୁଁ ରାଜନୈତିକ କ୍ଷେତ୍ରରେ କଂଗ୍ରେସର କୌଣସି କମିଟିର ସଭ୍ୟ ବା ପଦାଧିକାରୀ ନ ଥିଲେ ମଧ୍ୟ ବରାବର ଚାରିଅଣିଆ କଂଗ୍ରେସ ସଭ୍ୟ ହୋଇ ରହିଛି ଏବଂ ଆମ ଅଞ୍ଚଳର କଂଗ୍ରେସ କାମର ପ୍ରସାରରେ ମଧ୍ୟେ ମଧ୍ୟେ ପରାମର୍ଶ ଦେଇଥାଏଁ । କଂଗ୍ରେସର ଉଦ୍ଦେଶ୍ୟ ଓ କାର୍ଯ୍ୟକ୍ରମ ବୁଝାଇବାରେ ମଧ୍ୟେ ମଧ୍ୟେ ସାଧାରଣ ସଭା ସମିତି ମଧ୍ୟ କରିଥାଏଁ ।

ଜନସାଧାରଣଙ୍କ ସେବା କରିବାର ପ୍ରଥମ ଉଦ୍ୟମ ଆମେ କଂଗ୍ରେସ ଭିତର ଦେଇ କରିଛୁ, ସେଥିପାଇଁ କଂଗ୍ରେସ ଯୋଗୁ ଆମର ସାଧାରଣ କ୍ଷେତ୍ରରେ ଜନ୍ମ, କହିଲେ ଅତ୍ୟୁକ୍ତି ହେବ ନାହିଁ । ସେଥିଯୋଗୁଁ କଂଗ୍ରେସକୁ ଛାଡ଼ି ରହିବା ସମ୍ଭବ ନୁହେଁ । ଯଦିବା କେବେ ଛାଡ଼ିବାକୁ ପଡ଼େ ତାହା କଂଗ୍ରେସର ମଙ୍ଗଳ ପାଇଁ ଛାଡ଼ିବାକୁ ହେବ, ତାକୁ ଅଧିକ ଶୁଦ୍ଧ ଓ ଶକ୍ତିଶାଳୀ କରିବା ଉଦ୍ଦେଶ୍ୟରେ ଛାଡ଼ିବାକୁ ପଡ଼ିବ ।

ଏହି କଂଗ୍ରେସକୁ ଠିକ୍ ମଜବୁତ୍ କରିବା ପାଇଁ ଖଦୀକାମ ଏକମାତ୍ର ଅବ୍ୟର୍ଥ ଉପାୟ ବୋଲି ମୁଁ ମନେକରେ । . . .

ଆଜି ତ ଗାନ୍ଧୀ ସେ ବିଷୟ ସ୍ପଷ୍ଟ କରି ଦେଇଛନ୍ତି । ଗଠନମୂଳକ କାମର ତେରଟି ପାଦ ନିର୍ଦ୍ଦେଶ କରିଛନ୍ତି । ସେଥିରେ ପ୍ରଥମ ୧୨ଟି—ଖଦୀକାମ ପ୍ରଭୃତି କେତୋଟି କାମ । ତ୍ରୟୋଦଶଟି ରଖିଛନ୍ତି 'ଆର୍ଥିକ ସମାନତା', ଏବଂ କହିଛନ୍ତି,

ଏଇଟି ନ ହେଲେ ପ୍ରଥମଗୁଡ଼ିକର କିଛି ତାତ୍ପର୍ଯ୍ୟ ରହିବ ନାହିଁ ଏବଂ ଆର୍ଥିକ ସମାନତା ପାଇଁ ମଧ୍ୟ ଏଗୁଡ଼ିକ ଦରକାର । ଆର୍ଥିକ ସମାନତା ପ୍ରତିଷ୍ଠା ପାଇଁ ଅହିଂସ ଅସହଯୋଗ, ଅହିଂସ ପ୍ରତିରୋଧ ବା ସବିନୟ ଆଇନ୍ ଅମାନ୍ୟ, —ଏକଥା ମଧ୍ୟ ଗାନ୍ଧୀଜୀ ସୂଚିତ କରିଛନ୍ତି ।

ଏଥିରେ (ମୋର) ବିଶ୍ୱାସ ଥିବାରୁ, ଯେତେବେଳେ ସତ୍ୟାଗ୍ରହୀ ଖଦୀକର୍ମୀଙ୍କ ସଙ୍ଗେ ଆଲୋଚନା ହୋଇଥାଏ, ତାଙ୍କ ସଙ୍ଗେ ଏସବୁ କଥା ପଡ଼େ । କଂଗ୍ରେସ କାମ ଭିତରେ ଖଦୀକାମ ଯେ ମୁଖ୍ୟ କାମ ଏବଂ ଅନ୍ୟ କାମ ଗୌଣ କାମ, ତାହା ବୁଝାଇଥାଏ ଏବଂ ଏପରି ମନୋଭାବ ନେଇ କଂଗ୍ରେସ କାମ ନ କଲେ ବା ଖଦୀ କାମ ନ କଲେ କଂଗ୍ରେସର ଦୁର୍ବଳତା ଯିବ ନାହିଁ, ଏହା ମଧ୍ୟ ଏବେ ବୁଝାଇବାକୁ ପଡ଼ୁଥାଏ ।

ଏ ପର୍ଯ୍ୟନ୍ତ ଦେଖାଯାଉଛି, ସାଧାରଣ ଲୋକେ ଏ ପର୍ଯ୍ୟନ୍ତ କଂଗ୍ରେସକୁ ପୂରାପୂରି ଆପଣାର ବୋଲି ଭାବୁ ନାହାନ୍ତି, କଂଗ୍ରେସ ବୋଲି ସ୍ୱତନ୍ତ୍ର କିଏ ପଞ୍ଚାଏ ଅଛନ୍ତି, କଂଗ୍ରେସ ଏକ ବଡ଼ ଦାତାଙ୍କ ଭଳି, ଲୋକଙ୍କ ପାଇଁ ଲଢ଼ୁଛି, ଏ ଭାବ ରହିଛି । ଏ ଭାବ ନ ଯିବାଯାଏ ମଙ୍ଗଳ ନାହିଁ । · · · ପ୍ରକୃତ ଖଦୀକାମ ଦ୍ୱାରା ଏ ଭାବ ଦୂର ହେବ ବୋଲି ମୋର ବିଶ୍ୱାସ ।”

ଏ ଲେଖାରୁ ସେତେବେଳେ ଓଡ଼ିଶା କଂଗ୍ରେସ ସମ୍ବନ୍ଧରେ ତାଙ୍କର ଧାରଣା ବି କିଛି ଜଣାପଡ଼ୁଛି । ସେ ଭାବୁଛନ୍ତି, କଂଗ୍ରେସ ଭିତରେ ଦୁର୍ବଳତା ଦେଖା ଦେଲାଣି, ତାର କାରଣ—ଖଦୀ ଆଦି କାମକୁ ଯଥେଷ୍ଟ ଗୁରୁତ୍ୱ ଦିଆହେଉ ନାହିଁ । କଂଗ୍ରେସ ଓ ଗରିବ ଲୋକେ ଏ ଦିହିଙ୍କ ସ୍ୱାର୍ଥ ଯେ ଏକ, ସାଧାରଣ ଲୋକଙ୍କ ପାଇଁ ହିଁ କଂଗ୍ରେସ, କଂଗ୍ରେସର ଏ ଯେଉଁ ମୌଳିକ ଚରିତ୍ର ୧୯୨୧ରୁ ୧୯୩୪ ଯାକେ ସେ ଦେଖି ଆସିଲେ, ୧୯୪୦ ଅପ୍ରେଲ ବେଳକୁ ସେ ତାକୁ ଆଉ ଦେଖୁ ନାହାନ୍ତି, —ଗୋଟିଏ ସତର୍କଘଣ୍ଟି ବଜାଇଲା ଭଳି ସେ ଏକଥା ଲେଖିଥିଲେ । କାରଣ କଂଗ୍ରେସ ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ଥିଲା ।

# ଅଣତିରିଶ

## ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ କଂଗ୍ରେସର ଲକ୍ଷ୍ୟ

ଇଂରେଜ୍ ରାଜତ୍ୱ ଅଧୀନସ୍ଥ ଭାରତରେ **The Government of India Act 1935** ଅନୁସାରେ ୧୯୩୬-୩୭ରେ ନିର୍ବାଚନ ହୋଇ ଓଡ଼ିଶା, ବିହାର, ୟୁପି, ମଧ୍ୟପ୍ରଦେଶ ଓ ମାଡ୍ରାସ୍ ପ୍ରଦେଶମାନଙ୍କରେ କଂଗ୍ରେସ ଦଳ ନିର୍ବାଚନ ଜିତି ୧୯୩୭ ଜୁଲାଇ ବେଳକୁ ମନ୍ତ୍ରିମଣ୍ଡଳ ଗଢ଼ିଥାଏ, ପୁଣି ଆଉ ଚାରୋଟି ପ୍ରଦେଶରେ ଯଥା ବମ୍ବେ, ବଙ୍ଗଦେଶ, ଆସାମ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ, —କଂଗ୍ରେସ ଦଳର ସଂଖ୍ୟା ସବୁଠୁ ବେଶି ଥାଏ ଓ ମିଳିତ ମନ୍ତ୍ରିମଣ୍ଡଳ ହୋଇଥାଏ, ଯଦିଓ ସିନ୍ଧ୍ ଓ ପଞ୍ଜାବରେ ଏହା ସଂଖ୍ୟାନ୍ୟୂନ ଥାଏ । ଏହି ଅବସ୍ଥାରେ ୟୁରୋପରେ ଯୁଦ୍ଧର ମେଘ ଦେଖାଦେଲା, ଜର୍ମାନୀର ଅଭ୍ୟୁଦୟ ଯୋଗୁଁ । କିନ୍ତୁ ସେତେବେଳେ ବି, ଯେତେବେଳେ ପ୍ରକୃତରେ ଯୁଦ୍ଧ ଲାଗି ନ ଥିଲା, —କଂଗ୍ରେସର ମତ ଥିଲା ଯେ ସାମ୍ରାଜ୍ୟବାଦୀ ଯୁଦ୍ଧ ସହିତ ଭାରତ କୌଣସି ସମ୍ପର୍କ ରଖିବ ନାହିଁ, ତାକୁ ସାହାଯ୍ୟ କରିବ ନାହିଁ । ତା ପୂର୍ବରୁ ୧-୪-୩୬ରେ ଲକ୍ଷ୍ନୌ କଂଗ୍ରେସ ଅଧିବେଶନରେ ତାର ସଭାପତି ପଣ୍ଡିତ ନେହେରୁ ତାହା ଘୋଷଣା କରିଥିଲେ ଓ ନିର୍ବାଚନ ବେଳେ କଂଗ୍ରେସ ଇସ୍ତାହାରରେ ସେହି ମତ ଘୋଷଣା କରାଯାଇଥିଲା । କଂଗ୍ରେସର ଚିର ଆକାଙ୍କ୍ଷିତ ଲକ୍ଷ୍ୟ ଥାଏ ଆଗ ଭାରତର ସ୍ୱାଧୀନତା ।

## ଦ୍ୱିତୀୟ ମହାଯୁଦ୍ଧ ସମୟ—ଯୁଦ୍ଧ ପ୍ରତି କଂଗ୍ରେସର ମନୋଭାବ

ପ୍ରକୃତରେ ଦ୍ୱିତୀୟ ମହାଯୁଦ୍ଧ ୧-୯-୩୯ରୁ ଲାଗିଗଲା, ଯେତେବେଳେ ଜର୍ମାନୀ ପୋଲାଣ୍ଡ୍ ଆକ୍ରମଣ କଲା । ୩-୯-୩୯ରେ ଇଂଲଣ୍ଡ୍ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା

କଲା । ଦ୍ୱିତୀୟ ପୃଥିବୀ-ମହାଯୁଦ୍ଧରେ 'ମିତ୍ରଶକ୍ତି' ଲିପ୍ତ ହେଲେ, ଭାରତ ଇଂରେଜ ସାମ୍ରାଜ୍ୟର ଅଂଶ ବିଶେଷ ହୋଇ ରହିଥିଲା, ତାର ସ୍ୱାଧୀନ ରାଜନୈତିକ ସତ୍ତା ନଥିଲା, ତେଣୁ ଭାରତ ମଧ୍ୟ ଇଂରେଜ୍ ପକ୍ଷେ ରହି ଯୁଦ୍ଧରେ ପଶିଲା ବୋଲି ଇଂରେଜ୍ ସରକାର ଧରିନେଲେ ଓ ଯୁଦ୍ଧରେ ଜିଣିବା ସକାଶେ ଭାରତରୁ ଧନ, ଜନ, ସାହାଯ୍ୟ, ସହାନୁଭୂତି ଆଦି ନାନା ପ୍ରକାର ସାହାଯ୍ୟ ସଂଗ୍ରହ କରିବାକୁ ତତ୍ପର ହେଲେ । କିନ୍ତୁ କଂଗ୍ରେସ ତା ମତ ଓ ନୀତିରେ ଅଟଳ ରହିଲା ଯେ ଏ ଯୁଦ୍ଧ ଭାରତବାସୀ ଗ୍ରହି ନାହାନ୍ତି, କରି ନାହାନ୍ତି, ସେମାନଙ୍କର ଏ ଯୁଦ୍ଧ ସହିତ ସମ୍ପର୍କ ନାହିଁ, ଭାରତକୁ ଆଗ ସ୍ୱାଧୀନତା ଦିଆଯାଉ, ତାପରେ ତାକୁ ବୁଝାଇ ଦିଆଯାଉ ଯେ ଏ ଯୁଦ୍ଧରେ ପଶିବା ଆବଶ୍ୟକ କି ? ଭାରତ ସ୍ୱାଧୀନ ହୋଇସାରି ଯଦି ଭାବିବ ଯେ ଏ ଯୁଦ୍ଧରେ ପଶିବା ଦରକାର ତେବେ ଯାଇ ପଶିବ । ଯଦି ଯୁଦ୍ଧର ଉଦ୍ଦେଶ୍ୟ ସାମ୍ରାଜ୍ୟବାଦୀଙ୍କ ଦ୍ୱାରା ଅଧିକୃତ ପରଦେଶ ଉପରେ ନିଜର ଦଖଲଭୋଗ ଅତୁଟ ରଖିବା, ନିଜ ଧନସମ୍ପଦ ସ୍ୱାର୍ଥ ବଢ଼ାଇବା । ତେବେ ଏ ଯୁଦ୍ଧ ସହିତ ଭାରତର ଆଦୌ ସଂପୃକ୍ତ ହେବା କଥା ନୁହେଁ । ଯଦିବା ଭାରତ ଏ ଯୁଦ୍ଧରେ ମିତ୍ରଶକ୍ତିଙ୍କୁ ସାହାଯ୍ୟ କରିବାକୁ ଇଚ୍ଛା କରିବ, ବିନା ଇଂରେଜ କବଳରୁ ମୁକ୍ତ ହୋଇ 'ସ୍ୱାଧୀନ' ଘୋଷିତ ନ ହେବାଯାଏ ସେପରି ନିଷ୍ପତ୍ତି ନେବା ଓ ସାହାଯ୍ୟ ଦେବା ତା ପକ୍ଷରେ ସମ୍ଭବ ହେବ ବା କିପରି ? ଭାରତକୁ ସ୍ୱାଧୀନତା ନ ମିଳିବାଯାଏ ଭାରତ ଏ ଯୁଦ୍ଧରେ ଇଂରେଜ ପକ୍ଷକୁ କୌଣସି ପ୍ରକାର ସାହାଯ୍ୟ ଦେବ ନାହିଁ, ଏଇଆ ହେଲା ଭାରତୀୟ ଜାତୀୟ କଂଗ୍ରେସର ମତ । ଯୁଦ୍ଧ ଲାଗିଗଲା ମାତ୍ରେ ଏହି ମର୍ମରେ କଂଗ୍ରେସ ବିଭିନ୍ନ ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳକୁ ଲିଖିତ ନିର୍ଦ୍ଦେଶ ଦେଲେ ଓ ଆହୁରିମଧ୍ୟ ଲେଖିଲେ ଯେ ସେମାନେ ଦରକାର ପଡ଼ିଲେ ଇସ୍ତଫା ଦେବେ ।

ଅବଶ୍ୟ ମହାତ୍ମା ଗାନ୍ଧୀ ଓ ପଣ୍ଡିତ ନେହେରୁ ଉଭୟଙ୍କର ବ୍ୟକ୍ତିଗତ ଭାବେ ଇଂଲଣ୍ଡ ପ୍ରତି କିଛି ମମତା ଓ ସହାନୁଭୂତି ଥିଲା । ପଣ୍ଡିତ ନେହେରୁ ତ ଆଗ ଆଗ କହୁଥିଲେ ଯେ ଭାରତ ସର୍ବତୋଭାବେ ଇଂରେଜ୍ ପକ୍ଷକୁ ପୂରା ସାହାଯ୍ୟ କରିବା ଉଚିତ କାରଣ ତାହେଲେ ଡେମୋକ୍ରାସିକୁ ସାହାଯ୍ୟ କରିବା ହେବ । ଶ୍ରୀ ସୁଭାଷ ଚନ୍ଦ୍ର ବୋଷ ଏ ମତର ବିରୋଧ କରୁଥିଲେ । ସେ କହୁଥିଲେ ସାହାଯ୍ୟ ଦେବା କଥା ତ ଆଦୌ ଉଠୁ ନାହିଁ, ବରଂ ଏଇ ବେଳ ଯେତେବେଳେ ଗଣ ଆନ୍ଦୋଳନ ଚଳାଇ ଇଂରେଜ୍ ବିରୁଦ୍ଧରେ ବିଦ୍ରୋହ କରି ସ୍ୱାଧୀନତା ହାସଲ କରିବାକୁ ପଡ଼ିବ ।

କଂଗ୍ରେସର ଉପର ମହଲ କଂଗ୍ରେସ ନୀତିରେ ଅଟଳ ରହିଲେ, କାହାରି ବ୍ୟକ୍ତିଗତ ମତଭାବ ନିଜ ନୀତିରୁ ଓହରିଲେ ନାହିଁ । ୧୪-୯-୩୯ରେ କଂଗ୍ରେସ ଓ୍ୱାର୍କିଂ କମିଟି ଗୋଟିଏ ଦୀର୍ଘ ପ୍ରସ୍ତାବ ଗ୍ରହଣ କଲେ, ପଣ୍ଡିତ ନେହେରୁ ତାକୁ ଟଠା

କରିଥିଲେ । ତହିଁରେ ଫାସିଜମ୍, ନାଜିଜମ୍, ଜର୍ମାନୀର ପୋଲଣ୍ଡ ଆକ୍ରମଣର ତୀବ୍ର ନିନ୍ଦା କରାଯାଇଥିଲା । କିନ୍ତୁ ଭାରତର ମତ ନ ନେଇ ବଡ଼ଲାଟ ଯେ ଯୁଦ୍ଧ ଘୋଷଣା କରିଦେଲେ, ନାନା ଆଇନ୍ ଅର୍ଡ଼ିନାନ୍ସ କଲେ, ସେଥିପାଇଁ ମଧ୍ୟ ଗଭୀର କ୍ଷୋଭ ଓ ଉଦ୍‌ବେଗ ପ୍ରକାଶ କଲେ । "ଏକମାତ୍ର ଭାରତର ଜନତା ହିଁ ଶାନ୍ତି ଓ ଯୁଦ୍ଧ ବିଷୟରେ ନିଷ୍ପତ୍ତି ନେଇ ପାରିବେ", ତହିଁରେ ଲେଖାଗଲା, "ସାମ୍ରାଜ୍ୟବାଦୀ ଉଦ୍ଦେଶ୍ୟରେ ତାଙ୍କର ସମ୍ବଳ ଶୋଷିତ ହେଉ, ବିନିଯୁକ୍ତ ହେଉ ଏହା ସେମାନେ କରାଇ ଦେଇ ନ ପାରନ୍ତି । ଯଦି ସହଯୋଗ ଲୋଡ଼ା, ତା ହେବ ସମାନ ସମାନଙ୍କ ଭିତରେ, ଦୁଇପକ୍ଷର ରାଜିରେ ଓ ସେହିଭଳି ଉଦ୍ଦେଶ୍ୟରେ ଯାହା ଦୁଇ ପକ୍ଷଙ୍କ ମନଃପୂତ । କୁହାଯାଉଛି, ଏ ଯୁଦ୍ଧଟା ଡେମୋକ୍ରାସି ସମର୍ଥକ ସ୍ୱାଧୀନତା ସକାଶେ, କିନ୍ତୁ ଯେତେବେଳେ ଭାରତକୁ ସେ ସ୍ୱାଧୀନତା ଦିଆଯାଉ ନାହିଁ ବରଂ ଯେଉଁ ଅଳ୍ପ ଟିକିକ ଅଛି ତାହା ଛଡ଼ାଇ ନିଆଯାଉଛି, ଭାରତ ସେପରି ଯୁଦ୍ଧ ସହିତ କୌଣସି ସମ୍ପର୍କ ରଖିବ ନାହିଁ । ··· ଯଦି ଏ ଯୁଦ୍ଧର ଉଦ୍ଦେଶ୍ୟ ହୁଏ ସାମ୍ରାଜ୍ୟବାଦୀଙ୍କ ସମ୍ପତ୍ତି, ଦଖଲ, କଲୋନି, ନିହିତ ସ୍ୱାର୍ଥ, ନାନା ପ୍ରକାର ଲାଭ ସୁବିଧା ଆଦି ରକ୍ଷା କରିବା ତେବେ ଭାରତର ତା ସହିତ କୌଣସି ସମ୍ପର୍କ ଥାଇ ନ ପାରେ ।" ···

୧୦-୧୦-୩୯ରେ ଅ: ଭା: କ: କ: ଏ ଘୋଷଣାକୁ ସମର୍ଥନ ତ କଲେ, ଆହୁରି କହିଲେ, "ଇଂରେଜ୍ ସରକାର ଭାରତକୁ ସ୍ୱାଧୀନ ବୋଲି ଘୋଷଣା କରନ୍ତୁ ଓ ସଙ୍ଗେ ସଙ୍ଗେ, ଯେତେ ଅଧିକ ପରିମାଣରେ ସମ୍ଭବ, ସେତେ ଅଧିକ ପରିମାଣରେ ତାର ସ୍ୱାଧୀନତା କାର୍ଯ୍ୟକାରୀ କରନ୍ତୁ ।"

## କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍

ଜିନ୍ନାଙ୍କ ନେତୃତ୍ୱରେ ମୁସ୍‌ଲିମ୍ ଲିଗ୍ କଂଗ୍ରେସର ବିରୋଧ କରୁଥାଏ । ୧୯୩୭ରେ ନିର୍ବାଚନ ପରଠୁଁ ଏ ବିରୋଧ ବଢ଼ି ଯାଇଥିଲା । କଂଗ୍ରେସ ପ୍ରତି ମୁସ୍‌ଲିମ୍ ଲିଗ୍‌ର ସନ୍ଦେହ ଆରମ୍ଭ ହୋଇଥିଲା ୟୁ. ପି. (ଉତ୍ତର ପ୍ରଦେଶ)ର ମନ୍ତ୍ରିମଣ୍ଡଳ ଗଢ଼ିବା ବେଳୁଁ । ନିର୍ବାଚନ ପୂର୍ବରୁ କଂଗ୍ରେସ ଓ ଲିଗ୍ ଭିତରେ ଏକ ପ୍ରକାର ବୁଝାମଣା ଥିଲା ଯେ କଂଗ୍ରେସ ଜିତିଲେ ୨ ଜଣ ମୁସ୍‌ଲିମ୍ ଲିଗ୍ ଲୋକଙ୍କୁ ମନ୍ତ୍ରିମଣ୍ଡଳରେ ସ୍ଥାନ ଦେବ । କିନ୍ତୁ ଜିତିଲା ପରେ କଂଗ୍ରେସ କହିଲା ଯେ ତା ସେ କରିବ ଯଦି ୟୁ. ପି. ବିଧାନସଭାରେ 'ମୁସ୍‌ଲିମ୍ ଲିଗ୍'ର ସଭ୍ୟମାନେ କଂଗ୍ରେସ ପାର୍ଟିରେ ସାମିଲ୍ ହୋଇଯିବେ ଓ ସେ ବିଧାନସଭାରେ 'ମୁସ୍‌ଲିମ୍ ଲିଗ୍' ବୋଲି ଗୋଟିଏ ଅଲଗା ଦଳ ରହିବ ନାହିଁ, ତେବେ । ମୁସ୍‌ଲିମ୍ ଲିଗ୍ ରାଜି ତ ହେଲା ନାହିଁ, ସେହି ସମୟରୁ ତାର ଧାରଣା ବଦ୍ଧମୂଳ ହେଲା ଯେ ମୁସଲମାନ ବୋଲି ଗୋଟିଏ ସ୍ୱତନ୍ତ୍ର ସଂପ୍ରଦାୟ ହିସାବରେ ଭାରତରେ

ତାର ଭବିଷ୍ୟତ କିଛି ନାହିଁ । ସେହି ସମୟରୁ ସେ ହେଲେ କଂଗ୍ରେସର ଶତ୍ରୁ । ଇଲେକ୍‌ସନ୍ ସତ୍ତ୍ୱ ସବୁ ସେ ମୁସଲମାନମାନଙ୍କୁ ମତାଇବାକୁ ଲଗିଲେ ଯେ ମୁସ୍‌ଲିମ୍ ଲିଗ୍ ବାନା ତଳେ ଏକାଠି ନ ହେଲେ ହିନ୍ଦୁ-ପ୍ରଧାନ ଭାରତରେ ସେମାନଙ୍କର ସ୍ୱତନ୍ତ୍ର ଧର୍ମ ଓ ଆଦର୍ଶର ଅନୁସାରେ ଯେଉଁ ଅଲଗା ସମ୍ପ୍ରଦାୟ ତାର ସ୍ୱତନ୍ତ୍ର ସତ୍ତା ରହିବ ନାହିଁ । ତେଣୁ ଯାହାପକ୍ଷେ ହେଉ ତାଙ୍କ ସାଂପ୍ରଦାୟିକ ସଙ୍ଗଠନକୁ ଟାଣୁଆ କରିବାକୁ ପଡ଼ିବ । ସେ କହିବାକୁ ଲଗିଲେ ଯେ, ମୁସଲମାନ୍‌ମାନଙ୍କ ହିତାହିତ ବିଷୟରେ ଯାହାକିଛି ନିଷ୍ପତ୍ତି ହେବ ତାକୁ କରିବାକୁ ଲିଗ୍ ହିଁ ହକ୍‌ଦାର୍, ଆଉ କେହି ନୁହେଁ । ମୁସଲମାନ୍‌ମାନେ ଯାହା କଂଗ୍ରେସକୁ ସମର୍ଥନ କରି ଆସିଥିଲେ, ଏଣିକି ଜିନ୍ନାଙ୍କ ସଙ୍ଗେ ହିଁ ଅନେକ ମିଶିଲେ ଓ ସେମାନଙ୍କର ସେ ଅବସମ୍ବାଦୀ ପ୍ରତିନିଧିରୂପେ ଗଣ୍ୟ ହେବାକୁ ଲଗିଲେ । କ୍ରମେ ଜିନ୍ନା ଲେଡ଼ିବାକୁ ଲଗିଲେ ଭାରତର ଶାସନ ବ୍ୟବସ୍ଥା ଭିତରେ ମୁସଲମାନ ଗୋଷ୍ଠୀ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଓ ଅଧ୍ୟନ ଓ ୧୯୪୦ ମାର୍ଚ୍ଚରେ ଲହୋରରେ ମୁସଲିମ୍ ଲିଗ୍‌ର ଅଧିବେଶନରେ ଲକ୍ଷେ ସଭ୍ୟଙ୍କ ଆଗରେ ପ୍ରସ୍ତାବ ପାଶ୍ କରାଇଲେ ଯେ ଯେଉଁ ଯେଉଁ ଅଞ୍ଚଳ ମୁସଲମାନ ବହୁଳ ଓ ଲଗାଲଗି ତାକୁ ଏକାଠି କରି ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଓ ସ୍ୱାଧୀନ ରାଜ୍ୟ କରାଯାଉ, —ପଦେ କଥାରେ, ଭାରତ ଭାଗ ଭାଗ ହେଉ । ୧୯୩୦ରେ ମୁସ୍‌ଲିମ୍ ଲିଗ୍‌ର ଆଲ୍ଲାହାବାଦ ଅଧିବେଶନରେ କବି ଇକ୍‌ବାଲ୍ ସଭାପତି ଥାଇ 'ପାକିସ୍ତାନ୍' ନାଁ ପ୍ରଥମେ ବାହାର କରିଥିଲେ ଓ ରହମତ୍ ଆଲି ବୋଲି ଜଣେ ଯୁବକଙ୍କ ନେତୃତ୍ୱରେ ଅଳ୍ପ କେତେଜଣ ଯୁବକ ଗୋଟାଏ 'ପାକିସ୍ତାନ୍ ଜାତୀୟ ଆନ୍ଦୋଳନ' ଆରମ୍ଭ କରିଥିଲେ ଓ ବିବିଧ ମୁସଲମାନ ବହୁଳ ପ୍ରଦେଶଙ୍କୁ ଏକାଠି କରି ଗୋଟିଏ 'ପାକିସ୍ତାନ୍ ଫେଡ଼େରେସନ୍' କରାଯାଉ ବୋଲି ପ୍ରସ୍ତାବ ଦେଲେ । ମୁସ୍‌ଲିମ୍ ନେତାମାନେ ଏ ପ୍ରସ୍ତାବରେ କାନ ଦେଇ ନ ଥିଲେ, କିନ୍ତୁ ୧୯୪୦ ମାର୍ଚ୍ଚରେ ଲିଗ୍‌ର ପ୍ରସ୍ତାବ ପରଠୁଁ ସେଭଳି ଦାବୀ ବାସ୍ତବ ହୋଇଉଠିଲା ।

## କଂଗ୍ରେସ ଓ ଇଂରେଜ ସରକାର

ସେପ୍‌ଟେମ୍ବର ୧୫, ୧୯୩୯ରେ ଯେମିତି କଂଗ୍ରେସ ଓ୍ୱାର୍କିଂ କମିଟି ଭାରତର ସ୍ୱାଧୀନତା ପ୍ରାପ୍ତି ଉପରେ ଜୋର୍ ଦେଲେ; ସେମିତି ୧୮ ତାରିଖରେ ମୁସ୍‌ଲିମ୍ ଲିଗ୍ ପ୍ରସ୍ତାବ ପାଶ୍ କଲେ ଯେ ଯଦି ତାଙ୍କର ଯୋଡ଼ିଏ ସର୍ତ୍ତ ପୂରଣ ହେବ ତେବେ ସେମାନେ ଯୁଦ୍ଧରେ ସରକାରଙ୍କୁ ସବୁ ପ୍ରକାର ସାହାଯ୍ୟ ଦେବେ; (୧) କଂଗ୍ରେସ ଶାସିତ ପ୍ରଦେଶମାନଙ୍କରେ ଯେମିତି ମୁସଲମାନମାନଙ୍କୁ ନ୍ୟାୟ ମିଳିବ ଓ ନ୍ୟାୟୋଚିତ ବ୍ୟବହାର ମିଳିବ ତାର ବ୍ୟବସ୍ଥା କରିବେ (୨) ମୁସ୍‌ଲିମ୍ ଲିଗ୍ ରାଜି ନ ହେଲେ ବ୍ରିଟିଶ୍ ସରକାର ଭାରତର ସାମ୍ବିଧାନିକ ବ୍ୟବସ୍ଥାର ଉନ୍ନତି ବିଷୟରେ କୌଣସି

ଘୋଷଣା କରିବେ ନାହିଁ କି କୌଣସି ନୂଆ ସାମ୍ବିଧାନିକ ବ୍ୟବସ୍ଥା କରିବେ ନାହିଁ ବୋଲି ପ୍ରତିଶ୍ରୁତି ଦେବେ ।

### ପ୍ରଦେଶମାନଙ୍କରେ କଂଗ୍ରେସ ମନ୍ତ୍ରିମଣ୍ଡଳମାନଙ୍କ ଇସ୍ତଫା

୧୦-୧୦-୩୯ରେ ଅ: ଭା: କ: କ: ସରକାର ଭାରତକୁ ସ୍ୱାଧୀନତା ଦିଆଯିବା ଘୋଷଣା କରନ୍ତୁ ବୋଲି ପ୍ରସ୍ତାବ ପାଶ୍ କଲାପରେ ୧୭-୧୦-୩୯ରେ ବଡ଼ଲାଟ ଲର୍ଡ଼ ଲିନ୍ ଲିଥ୍ ଗୋ ବିବୃତ୍ତିଟିଏ ପ୍ରକାଶ କଲେ ଯେ '୧୯୩୫ର ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟରେ ଯେତିକ ବ୍ୟବସ୍ଥା କରାଯାଇଛି ବର୍ତ୍ତମାନ ପାଇଁ ତାଠୁ ଆଉ ଅଧିକ କିଛି ମିଳିବ ନାହିଁ ଓ ଯୁଦ୍ଧ ସରିଲେ ଦେଖାଯିବ । ତାଙ୍କର ଏ ଘୋଷଣାରେ କଂଗ୍ରେସ ନିରାଶ ହେଲେ, ଓ୍ୱାର୍କିଂ କମିଟି ନିଷ୍ପତ୍ତି କଲେ ଯେ ଏହା ଝିଅ ଇଂରେଜର ସାମ୍ରାଜ୍ୟବାଦୀ ନୀତିକୁ ଅକ୍ଷୁଣ୍ଣ ରଖିବା । ସେ ବିଭିନ୍ନ ପ୍ରଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ ସେମାନେ ଇସ୍ତଫା ଦିଅନ୍ତୁ । ସେହି ନିର୍ଦ୍ଦେଶ ଅନୁସାରେ ୧୯୩୯ର ଅକ୍ଟୋବର ୨୭ରୁ ନଭେମ୍ବର ୧୫ ଭିତରେ ପ୍ରାଦେଶିକ କଂଗ୍ରେସ ମନ୍ତ୍ରିମଣ୍ଡଳମାନେ ଇସ୍ତଫା ଦେଲେ ।

### ଯୁଦ୍ଧ ବିରୁଦ୍ଧରେ କଂଗ୍ରେସର ପ୍ରତିବାଦ ଓ ଭାରତ ସ୍ୱାଧୀନତା ଦାବୀ

୧୯୪୦ ମାର୍ଚ୍ଚମାସ ୧୯ ଓ ୨୦, ରାମଗଡ଼ କଂଗ୍ରେସ ଅଧିବେଶନରେ ଗୋଟିଏ ପ୍ରସ୍ତାବ ଗୃହୀତ ହେଲା, ମୌଲନା ଆଜାଦ୍ ସଭାପତି ଥିଲେ । ଭାରତର ଲୋକଙ୍କୁ ନ ପଚାରି ଭାରତକୁ 'ଯୁଦ୍ଧରେ ବ୍ୟାପୃତ' ବୋଲି ଇଂରେଜ ସରକାର ଘୋଷଣା କରିଥିବାରୁ ତା ବିରୁଦ୍ଧରେ ଏ ପ୍ରସ୍ତାବରେ ଘୋର ପ୍ରତିବାଦ କରାଗଲା । ଘୋଷଣା କରାଗଲା ଯେ ପୂର୍ଣ୍ଣ ସ୍ୱାଧୀନତା ଛଡ଼ା ଆଉ କିଛି ଗ୍ରହଣୀୟ ନୁହେଁ ଓ ସାବାଳକ୍ ଭୋଟ୍ ପ୍ରଥା ଦ୍ୱାରା ଗୋଟିଏ Constituent Assembly ଗଢ଼ିଲେ କେବଳ ସେହି କନଷ୍ଟିଚୁଏଣ୍ଟ ଆସେମ୍ବ୍ଲିର ହିଁ ଅଧିକାର ରହିବ ଯେ ସେ ପୃଥିବୀର ଅନ୍ୟାନ୍ୟ ଦେଶ ସହିତ ଭାରତର ସମ୍ପର୍କ କଣ ରହିବ ତା ସ୍ଥିର କରିବ, ସେ ଅଧିକାର ଅନ୍ୟ କାହାରି ନାହିଁ, (ଇଂରେଜ ସରକାରର ନାହିଁ) ।

୧୯୪୦ ଜୁଲାଇ ୩ ଓ ୭ରେ ଦିଲ୍ଲୀରେ କଂଗ୍ରେସ କମିଟି ଅଧିବେଶନରେ ପୁଣି ସେହି ରାମଗଡ଼ ପ୍ରସ୍ତାବ ହିଁ ଘୋଷିତ ହେଲା ଓ କେନ୍ଦ୍ରରେ ଗୋଟିଏ 'ଜାତୀୟ ସରକାର' ଗଢ଼ା ହେଉ; ତେବେ ଭାରତର ପ୍ରତିରକ୍ଷା ପାଇଁ କଂଗ୍ରେସ ପୂରା ଜୋର୍ ଦେଇ ଲାଗିଯିବ ବୋଲି କୁହାଗଲା ।

୧୯୪୦ ଜୁଲାଇ ୨୭ ଓ ୨୮ ତାରିଖରେ ପୁନାରେ ଅ: ଭା: କ: କ: ଅଧିବେଶନରେ ସେହି ପ୍ରସ୍ତାବ ଗୃହୀତ ହେଲା ।

ଜୁନ୍ ୧୯୪୦ ବେଳକୁ ମୁସ୍‌ଲିମ୍ ଲିଗ୍ ପ୍ରତି ଗାନ୍ଧୀଜୀଙ୍କର ପୂର୍ବର ମନୋଭାବ ବଦଳିଗଲା । ହରିଜନ ପତ୍ରିକାରେ ଲେଖିଲେ ଯେ ମୁସ୍‌ଲିମ୍ ଲିଗ୍ ଓ କଂଗ୍ରେସ କୌଣସି ପ୍ରସ୍ତାବରେ ଏକମତ ହେବେ, ଏ ଆଶା ନାହିଁ ଓ ତେଣୁ ସବୁ ଦଳ ରାଜି ହେଲେ ଯାଇ ଭାରତ ପାଇଁ ସାମ୍ବିଧାନିକ ଉନ୍ନତି କରାଯିବ ଏ ଆଶା ବୃଥା । ନାନା ବାଧା ସତ୍ତ୍ୱେ କଂଗ୍ରେସ ବଢ଼ି ବଢ଼ି ଉଠିଛି, ଧୈର୍ଯ୍ୟ ଧରିଲେ ଓ ଦୁର୍ବଳ ନ ହେଲେ ଭାରତର ସ୍ୱାଧୀନତା ସେ ହିଁ ଗ୍ରହଣ କରି ପାରିବ ।

ଯୁଦ୍ଧରେ 'ମିତ୍ରପକ୍ଷ' ଅବସ୍ଥା ଖରାପ ହୋଇ ଚାଲିଥାଏ । କଂଗ୍ରେସର ବାରମ୍ବାର ଦାବୀ ଦେଖି ବଡ଼ଲାଟ ୧୯୪୦ ଅଗଷ୍ଟ ୮ରେ ଗୋଟାଏ ନୂଆ ନୀତି ଘୋଷଣା କଲେ । ସେ କହିଲେ ଯେ ଲାଟସଭାରେ ସଭ୍ୟସଂଖ୍ୟା ବଢ଼ିବ, ଗୋଟାଏ ଯୁଦ୍ଧ ପରାମର୍ଶଦାତା କମିଟି ରହିବ, ଯେଉଁମାନେ ସଂଖ୍ୟାନ୍ୟୂନ ସମ୍ପ୍ରଦାୟ, ତାଙ୍କ ସ୍ୱାର୍ଥହାନି ହେଲାଭଳିଆ କୌଣସି ଶାସନ ପଦ୍ଧତି ହେବ ନାହିଁ, ଯୁଦ୍ଧ ପରେ ଗୋଟିଏ ସର୍ବଭାରତୀୟ ପ୍ରତିନିଧି ମଣ୍ଡଳ ଗଢ଼ା ହୋଇ ନୂଆ ସମ୍ବିଧାନ ତିଆରି ହେବ। ଲାଟସାହେବଙ୍କ ଘୋଷଣାରେ କଂଗ୍ରେସ ବା ମୁସ୍‌ଲିମ୍-ଲିଗ୍-କେହି ସନ୍ତୁଷ୍ଟ-ହେଲେ ନାହିଁ । ମୁସ୍‌ଲିମ୍ ଲିଗ୍ ଭାରତ ଭାଗ ଭାଗ ହେଉ ବୋଲି ଦାବୀ କଲା ।

କଂଗ୍ରେସ ନିଷ୍ପତ୍ତି କଲା ଯେ ଗାନ୍ଧୀଜୀଙ୍କ ନେତୃତ୍ୱରେ ଆଇନ୍ ଅମାନ୍ୟ ଗଣ ଆନ୍ଦୋଳନ ପୁଣି ଆରମ୍ଭ କରାଯିବ କିନ୍ତୁ ଗାନ୍ଧୀଜୀ ନିଜେ ନିଷ୍ପତ୍ତି ନେଲେ ଯେ ଆନ୍ଦୋଳନ ସ୍ୱାଧୀନତାପ୍ରାପ୍ତି ଉଦ୍ଦେଶ୍ୟରେ ହେବ ତା ନୁହେଁ, ଯୁଦ୍ଧ ବିରୁଦ୍ଧରେ ପ୍ରଚାର କରିବାକୁ ଭାରତର ଲୋକଙ୍କର ଅଧିକାର ଅଛି, ସେହି ଅଧିକାର ପାଇଁ ଆନ୍ଦୋଳନଟା ହେବ । ଆଗ ସେ କହିଲେ ଯେ ସେଇଟା ହେବ 'ବ୍ୟକ୍ତିଗତ ସତ୍ୟାଗ୍ରହ' ଜଣ ଜଣ ହୋଇ ଲୋକେ ଯୁଦ୍ଧ ବିରୁଦ୍ଧରେ ଧ୍ୱନି ଦେବେ, ପରେ ସାନ ସାନ ଦଳ ହୋଇ ଧ୍ୱନି ଦେବେ ।

## ବ୍ୟକ୍ତିଗତ ସତ୍ୟାଗ୍ରହ

'ବ୍ୟକ୍ତିଗତ ସତ୍ୟାଗ୍ରହ' ଅକ୍ଟୋବର ୧୭, ୧୯୪୦ରେ ଆରମ୍ଭ ହେଲା । ଜଣେ ଧ୍ୱନିଦେଇ ଗିରଫ ହେଲାମାତ୍ରେ ଆଉଜଣେ ଧ୍ୱନିଦେଇ ଗିରଫ ହେଉଥିଲା । ଧ୍ୱନି ଏତିକ, "ଇଂରେଜ ସରକାରଙ୍କର ଯୁଦ୍ଧ ଉଦ୍ୟମରେ ଧନ ବା ଜନ ଦେଇ ସାହାଯ୍ୟ କରିବା ପାପ ।" କିଏ ସତ୍ୟାଗ୍ରହ କରିବେ ତା ତାଲିକା ଗାନ୍ଧୀଜୀ ନିଜେ ଦେଖି ମଞ୍ଜୁର କରୁଥିଲେ । ଏଥିରେ ଓଡ଼ିଶାରୁ ପ୍ରାୟ ୫୦୦ ଜଣ ସତ୍ୟାଗ୍ରହ କରି ଗିରଫ ହୋଇଥିଲେ, କୋରାପୁଟ୍ ଜିଲ୍ଲାର ସଂଖ୍ୟା ସବୁଠୁଁ ବେଶି ।

ବ୍ୟକ୍ତିଗତ ସତ୍ୟାଗ୍ରହ କରିବାକୁ ଗୋପବାବୁ ନିଷ୍ପତ୍ତି ନେଲେ, ଗାନ୍ଧୀଜୀଙ୍କ ଅନୁମତି ମାଗିଲେ । ଗାନ୍ଧୀଜୀ ମନାକଲେ ଓ ରଚନାତ୍ମକ କାର୍ଯ୍ୟ କରିବାକୁ ତାଙ୍କୁ ନିର୍ଦ୍ଦେଶ ଦେଲେ, ସେ ସେହିପରି କଲେ ।

୧୯୪୦ ଡିସେମ୍ବର ୧୭ରେ 'ବ୍ୟକ୍ତିଗତ ସତ୍ୟାଗ୍ରହ' ବନ୍ଦ କରି ଦିଆଗଲା, ପୁଣି ୧୯୪୧ ଜାନୁଆରୀ ୫ରେ ଆରମ୍ଭ କରାଗଲା, ୨୦ ହଜାରରୁ ବେଶି ଲୋକ ଜେଲ୍ ଗଲେ ।

## ଆଶୁ ସ୍ୱାଧୀନତା ଦାବୀକୁ ଇଂରେଜ ସରକାରଙ୍କ ପ୍ରତ୍ୟାଖ୍ୟାନ

ଯୁଦ୍ଧର ଗତି ମିତ୍ରପକ୍ଷଙ୍କ ବିରୁଦ୍ଧରେ ଯାଉଥାଏ, ବ୍ରିଟେନ୍ ଓ ଯୁକ୍ତରାଷ୍ଟ୍ର ଆମେରିକା 'ଆଟ୍‌ଲାଣ୍ଟିକ୍ ଚାର୍ଟର୍' ବୋଲି ଏକ ଘୋଷଣାରେ କହିଲେ ଯେ ପ୍ରତି ଦେଶର ଲୋକ କି ପ୍ରକାର ଶାସନରେ ଚଳିବେ ତାହା ନିର୍ଦ୍ଧାରଣ କରିବା ଅଧିକାର ପ୍ରତ୍ୟେକ ଦେଶର ଅଛି, ସେ ଅଧିକାରକୁ ସମ୍ମାନ କରାଯିବ । ଯେଉଁ ଦେଶମାନଙ୍କର ସେ ଅଧିକାର ଓ ସ୍ୱାଧୀନତା ବଳପୂର୍ବକ ଛଡ଼ାଇ ନିଆଯାଇଛି ତାକୁ ପୁଣି ସେମାନଙ୍କୁ ଫେରାଇ ଦେବା ହେଉଛି ଇଂରେଜ ସରକାର ଓ ଯୁକ୍ତରାଷ୍ଟ୍ର ସରକାରଙ୍କ ଉଦ୍ଦେଶ୍ୟ । ଏ ଘୋଷଣା ଭାରତବାସୀଙ୍କ ମନରେ ଆଶା ଓ ଉତ୍ସାହ ଖେଳାଇଦେଲା, କିନ୍ତୁ ୧୯୪୧ ସେପ୍‌ଟେମ୍ବର ୯ରେ ବ୍ରିଟିଶ୍ ପାର୍ଲିମେଣ୍ଟରେ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ୍ ଘୋଷଣା କଲେ ଯେ ସେ ଘୋଷଣା ଭାରତକୁ ଲାଗୁ ହେବ ନାହିଁ, ଅଗଷ୍ଟ ମାସରେ ଭାରତକୁ ଯେତିକି ବାଲିକା ବ୍ୟବସ୍ଥା ଦିଆଯାଇଛି ସେତିକି ମିଳିବ, ଅଧିକା ନୁହେଁ । ଫଳତଃ ନୈରାଶ୍ୟ ଖେଳିଗଲା, ଯେତେ ମାଗିଲେ ଇଂରେଜ୍ ଭାରତକୁ ସ୍ୱାଧୀନତା ଦେବେ ଏ ଆଶା ରହିଲା ନାହିଁ ।

## କଂଗ୍ରେସର ପ୍ରତିକ୍ରିୟା

ଜାପାନ୍ ଯୁଦ୍ଧରେ ପଶିଲା, ଡିସେମ୍ବର ୭, ୧୯୪୧ରେ ପାର୍ଲ୍ ହାର୍ବର୍‌ରେ ବୋମାମାଡ଼ କଲା, ଡିସେମ୍ବର ୮ରେ ଇଂଲଣ୍ଡ୍ ତା ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ୧୯୪୨ ଫେବୃଆରି ୧୫ରେ ଜାପାନ୍ ନେଲା ସିଙ୍ଗାପୁର, ମାଲୟ ଦଖଲ କଲା, ବର୍ମାରେ ପଶିଲା । ବର୍ମା ଓ ମଣିପୁର ବାଟେ ଜାପାନ୍ ଭାରତ ଭିତରକୁ ଯେ ପଶିବ ଏହା ଜଳଜଳ ଦିଶିଲା । ଇଂରେଜ୍ ଆଶଙ୍କା କରୁଥାନ୍ତି ଯେ ଜାପାନ୍ ଭାରତକୁ ମାଡ଼ି ଆସିବ । ଭାରତୀୟ ଧାରଣା ଓ ବିଶ୍ୱାସ ଖେଳୁଥାଏ ଏ ଯୁଦ୍ଧରେ ଇଂରେଜ ହାରିଯିବେ, ହାରୁଛନ୍ତି ତ' । କଂଗ୍ରେସ୍ ଚାହୁଁଥାଏ ଇଂରେଜ ଭାରତକୁ ସ୍ୱାଧୀନତା ଦେଉ, ବୁଝୁଥାନ୍ତି ଇଂରେଜ୍ ଜାପାନୀ ଆକ୍ରମଣରୁ ତାଙ୍କୁ ରକ୍ଷା କରିବାକୁ ଅସମର୍ଥ ହେଲେଣି, ତାହେଲେ ଭାରତ ନିଜ ବାଟ ଧରିବ । ଗାନ୍ଧୀଜୀଙ୍କ ବିଶ୍ୱାସଥାଏ, ଇଂରେଜ୍ ଭାରତରୁ

ଚାଲିଗଲେ ଆଉ ଜାପାନ୍ ଭାରତକୁ ଆକ୍ରମଣ କରିବ ନାହିଁ । ତାଙ୍କର ଦୃଢ଼ ମତ, ଯଦି ଜାପାନ୍ ମାଡ଼ି ଆସେ, ଭାରତ ନିଶ୍ଚୟ ତାର ପ୍ରତିରୋଧ କରିବ, ଅବଶ୍ୟ, ଯଥାସାଧ୍ୟ ଅହିଂସ ଅସହଯୋଗ ମାର୍ଗରେ । ସିଙ୍ଗାପୁରର ପତନ ପରେ ଆମେରିକା ଚାହିଁଲା ଯେ ବ୍ରିଟେନ୍ ଭାରତ ସହିତ ଗୋଟାଏ କିଛି ମିଳାମିଶା କରୁ । ଆମେରିକାର ଚାପ ଫଳରେ ଇଂରେଜ ସରକାର ଭାରତକୁ 'କ୍ରିପ୍ସ୍ ମିସନ୍'କୁ ପଠାଇଲେ ।

## କ୍ରିପ୍ସ୍ ମିସନ୍ ଓ ତାର ବିଫଳତା

ସାର୍ ଷ୍ଟାଫୋର୍ଡ୍ କ୍ରିପ୍ସ୍ ଥିଲେ ଇଂଲଣ୍ଡର ଲର୍ଡ୍ ପ୍ରିଭି ସୀଲ୍ ଓ ଯୁଦ୍ଧ କ୍ୟାବିନେଟର ସଭ୍ୟ । ତାଙ୍କ ସଙ୍ଗେ ଗୋଟିଏ କମିଟିରେ ସଭ୍ୟ ହୋଇ ରହିଲେ ଆଟ୍‌ଲି, ଆମେରି ଓ ସାଇମନ । ସେମାନେ ବ୍ରିଟିଶ୍ ସରକାର ତରଫରୁ ଭାରତର ଶାସନିକ ବ୍ୟବସ୍ଥା ବିଷୟରେ ଗୁଡ଼ିଏ ପ୍ରସ୍ତାବ ଘେନି ମାର୍ଚ୍ଚ ୨୩, ୧୯୪୨ରେ ଦିଲ୍ଲୀ ପହଞ୍ଚିଲେ । ପ୍ରସ୍ତାବମାନଙ୍କ ସାରାଂଶ ହେଲା :

୧—ଯେତେ ଶୀଘ୍ର ସମ୍ଭବ ସେତେ ଶୀଘ୍ର ଭାରତକୁ ସ୍ୱାୟତ୍ତ ଶାସନ ଦିଆଯିବ । ଆଗ ଗୋଟିଏ ନୂଆ "ଇଣ୍ଡିଆନ୍ ୟୁନିଅନ୍" ଗଢ଼ାଯିବ, ତାହା ପୂର୍ଣ୍ଣ 'ଡୋମିନିଅନ୍'ର ଶ୍ରେଣୀ-ଅଧିକାର ପାଇବ ।

୨—ଯୁଦ୍ଧ ସରିଲାମାତ୍ରେ ନୂଆ ସମ୍ବିଧାନ ତିଆରି କରିବାକୁ ଗୋଟିଏ ପରିଷଦ ଗଢ଼ା ହେବ ।

୩—ସେ ପରିଷଦ ଯେଉଁ ସମ୍ବିଧାନ ଗଢ଼ି ଦେବେ ଇଂରେଜ ସରକାର ତାକୁ ମାନିନେବେ ଓ କାର୍ଯ୍ୟକାରୀ କରିବେ, କିନ୍ତୁ ସର୍ତ୍ତ ଯୋଡ଼ିଏ :

(୧) ଯେ କୌଣସି ପ୍ରଦେଶ ବା ଗଡ଼ଜାତ ରାଜ୍ୟ ସେ ସମ୍ବିଧାନକୁ ନ ଚାହିଁବ ସେ ତାର ଅଲଗା ସମ୍ବିଧାନ କରିବ,

(୨) ସମ୍ବିଧାନ ଗଢ଼ୁଥିବା ପରିଷଦ ଓ ଇଂରେଜ ସରକାର ଏ ଦୁହିଁଙ୍କ ଭିତରେ ଗୋଟିଏ ଚୁକ୍ତିପତ୍ର ହେବ, ଇଂରେଜ ସରକାର ହାତରୁ ଭାରତ ହାତକୁ କ୍ଷମତା ହସ୍ତାନ୍ତର ସମ୍ପର୍କୀୟ ସବୁ ବିଷୟ ତହିଁରେ ରହିବ, ବିଶେଷତଃ ଧର୍ମ ଓ ଗୋଷ୍ଠୀ ଭିତ୍ତିରେ ଯେଉଁମାନେ ସଂଖ୍ୟାନ୍ୟୂନ, ସେମାନଙ୍କ ସ୍ୱାର୍ଥରକ୍ଷା ବିଷୟରେ ସବୁ ବିଷୟ ।

ସେତେବେଳେ ଇଂରେଜ ପ୍ରତି ଭାରତୀୟଙ୍କର ବିଦ୍ୱେଷ ବଢ଼ି ଉଠିଥାଏ, ତାଙ୍କ କଥାରେ ବିଶ୍ୱାସ ନ ଥାଏ, ସେମାନେ ଯୁଦ୍ଧରେ ହାରିବେ ବୋଲି ଧାରଣା

ହୋଇନଥାଏ। ପୁଣି କ୍ରିପ୍ସ୍ ପ୍ରସ୍ତାବରେ ନାନା ଅଡୁଆ ଥାଏ, ପ୍ରଧାନ କଥା ତହିଁରେ ଭାରତ ଭାଗ ଭାଗ ହେବାର ବାଟ ଥାଏ ଓ ଗଡଜାତମାନଙ୍କର ଭବିଷ୍ୟତର ଭାର ଲୋକଙ୍କ ଉପରେ ନ ଦେଇ ରଜା ମହାରାଜାଙ୍କ ଉପରେ ଛାଡ଼ିଦେବା ବ୍ୟବସ୍ଥା ଥାଏ। କୌଣସି ରାଜନୈତିକ ଦଳ ସନ୍ତୁଷ୍ଟ ହେଲେ ନାହିଁ, କ୍ରିପ୍ସ୍ ପ୍ରସ୍ତାବ ଭାସି ଭାସି ଗଲା।

## ‘ଭାରତ ଛାଡ଼’ ପ୍ରସ୍ତାବ

୧୯୪୨ ଅପ୍ରେଲ ବେଳକୁ ମହାତ୍ମା ଗାନ୍ଧୀ ପୁଣି କଂଗ୍ରେସର ନେତୃତ୍ୱ ନେଲେ, ସେ ଅଲଗ ହୋଇ ରହିଥିଲେ, କ୍ରିପ୍ସ୍ ମିସନ ଆସିଲାବେଳେ ବି। ୧୯୪୨ରେ ଅପ୍ରେଲ୍ ୨୯ରୁ ମେ’ ୨ ଯାଏ ଆଲ୍ଲାହାବାଦରେ ଅ: ଭା: କ: କ: ଅଧିବେଶନ ବସିଲା ଓ ପୁଣି ଦାବୀ ହେଲା ଯେ ଇଂରେଜ ଭାରତକୁ ସ୍ୱାଧୀନତା ଦେଇ, ଛାଡ଼ି ଚାଲିଯାଉ, ସ୍ୱାଧୀନ ହେଲେ ଯାଇ ଭାରତ ବ୍ରିଟେନ୍ ଓ ଅନ୍ୟାନ୍ୟ ଦେଶମାନଙ୍କ ସହିତ ଯେପରି ସମ୍ପର୍କ ରଖିବାକୁ ଚାହିଁବ ସେପରି ରଖିବ ଓ କାର୍ଯ୍ୟ କରିବ। ଗାନ୍ଧୀଜୀ ନାନା ଲେଖା ଛପାଇଲେ, ତାର ସାର ହେଲା, “ଇଂରେଜ, ଭାରତ ଛାଡ଼” ଏହି ଆନ୍ଦୋଳନ। ୧୯୪୨ ମେ’ ୨୪ରେ ସେ ଲେଖିଲେ “ଭାରତକୁ ଭଗବାନଙ୍କ ହାତରେ ଛାଡ଼ି ଦିଅ।”

ଯୁଦ୍ଧଲାଗିବା ଦିନୁଁ ଏତେକାଳ ଗାନ୍ଧୀଜୀ ଗଣ-ଆନ୍ଦୋଳନ ନ କରିବା ନୀତି ନେଇଥିଲେ, ଇଂରେଜର ବିପଦବେଳେ ସେ ଇଂରେଜ ସରକାରର ଦୁରବସ୍ଥାର ସୁଯୋଗ ନେବା ଧାରଣାକୁ ବିରୋଧ କରୁଥିଲେ। କିନ୍ତୁ ବର୍ତ୍ତମାନ ସେ ପୁଣି ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିବାକୁ ଚାହୁଁଲେଣି ଜଣାଯାଉଥାଏ। ଦେଶରେ ଉତ୍ତେଜନା ଖେଳୁଥାଏ।

୧୯୪୨ ଜୁଲାଇ ୭ରେ ଓ୍ୱାର୍ଦ୍ଧାରେ କଂଗ୍ରେସ ଓ୍ୱାର୍କିଂ କମିଟି ମିଟିଂ ବସିଲା, ଗାନ୍ଧୀଜୀ ମତ ବ୍ୟକ୍ତ କଲେ ଯେ ପ୍ରକାଶ୍ୟ ଭାବରେ ଓ ଅହିଂସ ଉପାୟରେ ଇଂରେଜ ସରକାର ବିରୁଦ୍ଧରେ ବିଦ୍ରୋହ କରାଯିବ। ଜୁଲାଇ ୧୪ରେ ଓ୍ୱାର୍କିଂ କମିଟି ‘ଭାରତ ଛାଡ଼’ ପ୍ରସ୍ତାବ ପାସ୍ କଲେ। ପ୍ରସ୍ତାବ ହେଲା “ଭାରତରେ ବ୍ରିଟିଶ୍ ଶାସନ ତତ୍କ୍ଷଣାତ୍ ଶେଷ ହେଉ। ବ୍ରିଟିଶ ସରକାର ରାଜି ନ ହେଲେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଦେଶବ୍ୟାପୀ ଅହିଂସ ସଂଗ୍ରାମ ଆରମ୍ଭ ହେବ।” ଅଗଷ୍ଟ ୭ରେ ବମ୍ବେରେ ଅ: ଭା: କ: କ: ଅଧିବେଶନ ବସିଲା, ଅଗଷ୍ଟ ୮ରେ ବି ବଡ଼ ଅଧରାତିକେ ଚାଲିଲା। ସେହି ପ୍ରସ୍ତାବ ହିଁ ଗୃହୀତ ହେଲା। ସେଥିରେ କୁହାଗଲା ଯେ ଇଂରେଜ ଭାରତ ଛାଡ଼ନ୍ତୁ, ସ୍ୱାଧୀନ ଭାରତ ପୂର୍ଣ୍ଣ ଶକ୍ତିସମ୍ପନ୍ନ ବିନିଯୋଗ କରି ଏ ଯୁଦ୍ଧରେ ମିତ୍ରଶକ୍ତିକୁ ସାହାଯ୍ୟ

କରିବ । ଇଂରେଜ ରାଜ ନ ହେଲେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ପ୍ରାପ୍ତି ପାଇଁ ଦେଶବ୍ୟାପୀ ଅହିଂସ ଗଣ ସଂଗ୍ରାମ କରାଯିବ । ଯେଉଁବେଳେ ଆନ୍ଦୋଳନ ଚଳାଇବାକୁ କଂଗ୍ରେସ କମିଟି ନିର୍ଦ୍ଦେଶ ଦେବାକୁ ସମର୍ଥ ହେବ ନାହିଁ, କାରଣ ନେତାମାନେ ନ ଥିବେ, ସେତେବେଳେ ଗଣ ଅନ୍ଦୋଳନରେ ଭାଗ ନେଉଥିବା ପ୍ରତ୍ୟେକ ଲୋକ, ସ୍ତ୍ରୀ କି ପୁରୁଷ, କଂଗ୍ରେସ କମିଟିର ପ୍ରଚଳିତ ସାଧାରଣ ନିର୍ଦ୍ଦେଶ ଅନୁଯାୟୀ ନିଜେ ନିଜକୁ ପରିଚାଳିତ କରି ଆନ୍ଦୋଳନ ଚଳାଇବେ ।

## ୧୯୪୨ ଆନ୍ଦୋଳନ

୧୯୪୨ ଅଗଷ୍ଟ ୮ ତାରିଖ ରାତିରେ ସମ୍ମେଳନ ସରିଲା ପରେ ସକାଳ ନ ପାହୁଣୁ ମହାତ୍ମା ଗାନ୍ଧୀ, ମୌଲନା ଆଜାଦ୍ ଓ ଅନ୍ୟାନ୍ୟ ବଡ ବଡ ନେତାମାନେ ଗିରଫ ହୋଇଗଲେ । ସାତଦିନ ଭିତରେ କଂଗ୍ରେସର ପ୍ରାୟ ସବୁ ନେତୃସ୍ଥାନୀୟ ବ୍ୟକ୍ତି ଗିରଫ ହୋଇ ବନ୍ଦୀ ହେଲେ ।

୧୯୪୨ ଅଗଷ୍ଟ ୯ରେ ଗୋପବାବୁ କଟକରେ ଗିରଫ ହେଲେ । ଶ୍ରୀମତୀ ରମା ଦେବୀ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଦେବୀ, ଶ୍ରୀ ମନମୋହନ ଚୌଧୁରୀ, ଗୋପବାବୁଙ୍କର ବୁଢ଼ୀ ମା ଓ ମାଳତୀ ଦେବୀଙ୍କର ୩୮୪ ବର୍ଷର ଝିଅକୁ ଛାଡ଼ି, ତାଙ୍କ ପରିବାରର ସମସ୍ତେ, ତାଙ୍କ ସହକର୍ମୀମାନେ ସମସ୍ତେ ଗିରଫ ହୋଇ ଜେଲରେ ରହିଲେ ।

## ୧୯୪୨ ଅଗଷ୍ଟ ବିପ୍ଳବ

୧୯୪୨ ଅଗଷ୍ଟ ୯ ତାରିଖ ଆରମ୍ଭରୁ ଗାନ୍ଧୀଜି ଓ ବଡ ବଡ କଂଗ୍ରେସ ନେତାମାନେ ଗିରଫ ହେବା ପଛେ ପଛେ ସାରା ଭାରତରେ ଐତିହାସିକ 'ଅଗଷ୍ଟ ବିପ୍ଳବ' ଆରମ୍ଭ ହୋଇଗଲା । ଇଂରେଜ ସରକାର କଂଗ୍ରେସ ଓ ତାର ସବୁ ଅନୁଷ୍ଠାନକୁ ବେଆଇନ ଘୋଷଣା କଲେ । ଅଳ୍ପ କେତେଜଣ, ଯେଉଁମାନେ ଆତ୍ମଗୋପନ କଲେ, ସେମାନଙ୍କ ଛଡା ଅନ୍ୟ ଯେ ଯେଉଁଠି କଂଗ୍ରେସର ନେତା ବା ନେତୃସ୍ଥାନୀୟ ଥିଲେ, ବା କଂଗ୍ରେସ ଆନ୍ଦୋଳନ ସହିତ ସକ୍ରିୟ ଭାବେ ସାମାନ୍ୟ ଅଂଶରେ ବି ଜଡିତ ଥିଲେ ସମସ୍ତଙ୍କୁ ଗିରଫ କରି ଜେଲରେ ପୂରାଇଲେ, କଂଗ୍ରେସ ଅଫିସଗୁଡ଼ିକ ତାଲା ପକାଇଲେ, ତାର କାଗଜପତ୍ର ଜବତ କଲେ, ନାନା କଟକଣା ଜାରି କଲେ, ଖବର କାଗଜମାନଙ୍କ ମୁହଁ ବନ୍ଦ କଲେ, ସଭାସମିତି ବେଆଇନ୍ ଘୋଷଣା କଲେ, ଧରପଗଡ଼, ଖାନତଲାସ, ସମ୍ପତ୍ତି ବାଜ୍ୟାପ୍ତି, ନାନା ପ୍ରକାର ଦମନଲୀଳା ଆରମ୍ଭ କଲେ । ଉଦ୍ଦେଶ୍ୟ ରହିଲା କଂଗ୍ରେସ ଓ ସ୍ୱାଧୀନତା ଆନ୍ଦୋଳନକୁ ମୂଳପୋଛ

କରିଦେବା । ଯେତେବେଳେ ପ୍ରତିବାଦ ହେଲା, ସେତେବେଳେ ଲାଠିମାଡ଼, ଗୁଳିମାଡ଼, ନାନା ନିର୍ଯ୍ୟାତନା, ଗିରଫଦାରୀ, ଜେଲ୍, ଆହୁରି ଖାନତଲାସ୍, ସମ୍ପତ୍ତି ଧ୍ୱଂସ, ସମ୍ପତ୍ତି ବାଜ୍ୟାପ୍ତି, ଭୟ ପ୍ରଦର୍ଶନ, ନିଷ୍ଠୁର ଦମନନୀତି ଆଦି କରି କୋକୁଆଭୟ ସୃଷ୍ଟି କରିବାକୁ ଲାଗି ପଡ଼ିଲେ ।

'ଅଗଷ୍ଟ ବିପ୍ଳବ' ବିଷୟରେ ନାନା ପୁସ୍ତକ ଓ ନାନା ବିବରଣୀ ରହିଛି । ଭାରତ ଇତିହାସରେ ତାହା ଗୋଟିଏ ବିଶିଷ୍ଟ ପର୍ଯ୍ୟାୟ । ଏଠାରେ ତାହାର ବିଶଦ ପୁନରାବୃତ୍ତି ଅନାବଶ୍ୟକ । ୰ ଗୋପବନ୍ଧୁ ଚୌଧୁରୀଙ୍କର ତାହା ସହିତ ପ୍ରତ୍ୟକ୍ଷ ସମ୍ପର୍କ ନ ଥିଲା, ସେ ଆରମ୍ଭରୁ ଅଗଷ୍ଟ ୯ରୁ ଜେଲ୍‌କୁ ନିଆଗଲେ । ଜେଲ୍‌ରେ ଥାଇ ସେ ତାହା ସହିତ ପରୋକ୍ଷ ସମ୍ପର୍କ ବି ରଖି ନ ଥିଲେ ।

ମହାତ୍ମାଜୀ ଓ ଅନ୍ୟାନ୍ୟ ନେତାମାନଙ୍କୁ ଇଂରେଜ ସରକାର ଗିରଫ କରି ନେବା ସଙ୍ଗେ ସଙ୍ଗେ ଯେ ଏହି ଭାରତବ୍ୟାପୀ ଗଣ-ବିପ୍ଳବ ଆରମ୍ଭ ହୋଇଗଲା ଏଥିରୁ ସହଜେ ଅନୁମିତ ହେବ ଯେ ଏହା ଥିଲା ସ୍ୱାଧୀନତାକାମୀ ଭାରତବାସୀଙ୍କ ମନର ସ୍ୱାଭାବିକ ପ୍ରତିକ୍ରିୟା । ଗାନ୍ଧୀଜୀଙ୍କ ନେତୃତ୍ୱରେ ଅହିଂସ ଆନ୍ଦୋଳନ ଚଳାଇ ସେମାନେ ବହୁକାଳରୁ ଆଶା କରିଥିଲେ ଯେ ଇଂରେଜ ଯିବ, ଭାରତକୁ ସ୍ୱାଧୀନତା ଦେଇ ଚାଲିଯିବ, ସେହି ଦାବୀ ସେହି ଆଶା ବଢ଼ି ବଢ଼ି ଉଠିଥିଲା, ଉତ୍ତେଜନା ଓ ସ୍ୱପ୍ନ ସୃଷ୍ଟି କରିଥିଲା । ସେତିକିବେଳେ ହଠାତ୍ ସରକାର ତରଫରୁ ସେହି ଆଶା ମୂଳରେ କୁଠାରାଘାତ, ଖାଲି ସେତିକି ନୁହେଁ, ପ୍ରିୟ ନେତାମାନଙ୍କ ନିରାପତ୍ତା ଘେନି ଉଦ୍‌ବେଗର କାରଣ ସୃଷ୍ଟି, ଫଳରେ ନୈରାଶ୍ୟ, କ୍ଷୋଭ, କ୍ରୋଧ ଓ 'କରିବୁଁ ଅବା ମରିବୁଁ' ବୋଲି ଏକ ଶେଷ ଚେଷ୍ଟା ପାଇଁ ନିଜ ଅନ୍ତର ଭିତରୁ ତାଡ଼ନା । 'କର ବା ମର', ଗାନ୍ଧୀଜୀ ଗିରଫ ନ ହୋଇଥିବା ବେଳେ ଏ ବାଣୀ ଥିଲା ତାଙ୍କର ।

କିନ୍ତୁ ଅଗଷ୍ଟ ଆନ୍ଦୋଳନର ଆଉ ଗୋଟିଏ ଦିଗ ବି ଥିଲା । ଗାନ୍ଧୀ 'ଅହିଂସା' ନୀତିକୁ ଅବଲମ୍ବନ କରିଥିଲେ ଆଜୀବନ, ତାଙ୍କ ବିପ୍ଳବ ଅହିଂସ ବିପ୍ଳବ, ସେ ହିଂସାତ୍ମକ ଆନ୍ଦୋଳନର ବିରୋଧୀ ଥିଲେ । କିନ୍ତୁ ଅଗଷ୍ଟ ବିପ୍ଳବରେ କେଉଁଠି ଅହିଂସ ଆନ୍ଦୋଳନ ଘଟିଥିଲା ତ କେଉଁଠି ହିଂସାତ୍ମକ ଆନ୍ଦୋଳନ ଘଟିଥିଲା । ଦେଶରେ ସ୍ୱାଧୀନତା ଆନ୍ଦୋଳନ ହେଲାଦିନୁଁ ବ୍ୟାପକଭାବେ ନାନା ସ୍ଥାନରେ କେବେ ଆନ୍ଦୋଳନକାରୀ-ମାନେ ହିଂସାକାଣ୍ଡ କରି ନ ଥିଲେ । ସେସବୁ କାଣ୍ଡ ଗାନ୍ଧୀ-ନିର୍ଦ୍ଦିଷ୍ଟ କି ଗାନ୍ଧୀ-ସମର୍ଥିତ ଆଦୌ ନ ଥିଲା, ସେ ନିଷ୍ପତ୍ତି ସ୍ଥାନେ ସ୍ଥାନେ ଉତ୍ତ୍ୟକ୍ତ ଜନତା ନିଜେ ନେଇଥିଲେ ଓ ଦ୍ୱିତୀୟତଃ, ନେତାମାନଙ୍କର ଜେଲ୍‌ବାସ ଯୋଗୁଁ ଅନୁପସ୍ଥିତି ହେତୁ କେତେସ୍ଥାନରେ କଂଗ୍ରେସ ଦଳର କେଉଁ ଗୋଷ୍ଠୀ, କେଉଁଠି ବା ସ୍ଥାନୀୟ କଂଗ୍ରେସ କମିଟି ସେଭଳି କିଛି

ଗୁପ୍ତ ନିର୍ଦ୍ଦେଶ ପ୍ରଚାର କରିଥିଲେ, ନିଜ ଦାୟିତ୍ୱରେ । ନେତା ତ ନ ଥିଲେ, କାଳେ ବେଳ ଆସିବ, ନିର୍ଦ୍ଦେଶ ଦେବାକୁ ନେତା ନ ଥିବେ, ଏ ଅବସ୍ଥାକୁ ଆଗରୁ ଭାବି ଅଗଷ୍ଟ ୭, ୮ରେ ବମ୍ବେରେ ଅ: ଭା: କ: କ: ପରିଷଦର ଭାବେ ନିର୍ଦ୍ଦେଶ ଦେଇଥିଲେ ଯେ ଯେପରି ବେଳ ଆସିଲେ ଲୋକେ ପ୍ରତ୍ୟେକେ ନିଜକୁ ହିଁ ନେତା ମଣି ଅହିଂସ ଗଣ ଆନ୍ଦୋଳନ ଚାଲୁ ରଖିବାକୁ ବହୁତ କାର୍ଯ୍ୟ କରିପିବେ । ସେମାନେ ନିଜକୁ ନେତା ମଣି ଆନ୍ଦୋଳନ କଲେ, କିନ୍ତୁ ସର୍ବଦା ଗାନ୍ଧୀନୀତିରେ ନୁହେଁ, ଅହିଂସା ମାର୍ଗରେ ନୁହେଁ । ସେହି ଆନ୍ଦୋଳନ ଚଳାଇବାକୁ ତାହାର ଭିତରୁ ସ୍ଥାନୀୟ ନେତା ହୋଇ କେହି କେହି ବାହାରିଲେ । କିନ୍ତୁ ଆଉ ଗୋଟିଏ ବିଶେଷତ୍ୱ ବାହାରି ହୋଇପଡ଼ିଲା, —ଯେତେବେଳେ ଭାରତରେ ଗୋଟିଏ ସ୍ଥାନରେ କିଛି ଘଟୁଛି ଆଉ ଗୋଟିଏ ସ୍ଥାନରେ ତା ସମ୍ବାଦ ପହଞ୍ଚିବାକୁ ସୁବିଧା ହିଁ ନ ଥିଲା, ଖବର କାଗଜ ଓ ସମ୍ବାଦ ବ୍ୟବସ୍ଥା ଉପରେ ଟାଣ କଟକଣା, ଖବର ପହଞ୍ଚିବାକୁ ବେଳ ବି ନାହିଁ, ସେତେବେଳେ ନାନା ଦୂର ଦୂର ସ୍ଥାନରେ କେତେକ ଏକା ପ୍ରକାର ଘଟଣା ଘଟିଲା, —ଯୋଗାଯୋଗ ବିଚ୍ଛିନ୍ନ କରିବା ଉପାୟ କରାଯାଉଥାଏ, ରେଲ୍ ଲାଇନ୍ ଉଠେଇଦେବା, ଟେଲିଫୋନ୍ ଟେଲିଗ୍ରାଫ୍ ତାର କାଟି ଦେବା, ରେଲ୍, ବସ୍, ଟ୍ରାମ୍ ଆଦି ଉପରେ ଚଢ଼ାଉ କରିବା ଯେପରି ଯାନବାହନ ଚଳାଚଳ ବନ୍ଦ ହେବ, ରେଲ୍ ଷ୍ଟେସନ, ଥାନା, ଡାକଘର, ସରକାରୀ ଅଫିସ୍ ଆଦି ଉପରେ ଚଢ଼ାଉ, କେତେକ ସରକାରୀ କୋଠା ଉପରେ ଆକ୍ରମଣ, ଇତ୍ୟାଦି । ଏଥିପାଇଁ ମହାତ୍ମା ଗାନ୍ଧୀ କି ଗାନ୍ଧୀବାଦୀ ନେତାମାନେ ନିର୍ଦ୍ଦେଶ ଦେଇ ନ ଥିଲେ, କିନ୍ତୁ କଂଗ୍ରେସ ଭିତରର 'କଂଗ୍ରେସ ସୋସିଏଲିଷ୍ଟ୍' ଦଳର କେହି କେହି ନେତା ପାତାଳୀ (ଅଣ୍ଡର୍ ଗ୍ରାଉଣ୍ଡ୍) ହୋଇ ଗୁପ୍ତରେ ନିର୍ଦ୍ଦେଶପତ୍ର ଛପାଇ ବାଣ୍ଟି, କିଛି ସଂଗଠନ କରି ଆନ୍ଦୋଳନ କରାଉଥିଲେ । ଓଡ଼ିଶାରେ ଅଗଷ୍ଟ ବିପ୍ଳବର ପ୍ରଧାନ ନେତା ହୋଇଥିଲେ କଂଗ୍ରେସ ସୋସିଏଲିଷ୍ଟ୍ ଦଳର ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀ । ତାଙ୍କ "ଅଗଷ୍ଟ ବିପ୍ଳବ" ନାମକ ପୁସ୍ତକରେ ସେ ତାଙ୍କର ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି ।

ଉତ୍ତର ପ୍ରଦେଶ, ବିହାର, ମଧ୍ୟ ପ୍ରଦେଶ ଓ ବଙ୍ଗ ଦେଶ ପରି ଓଡ଼ିଶାରେ ଅଗଷ୍ଟ ବିପ୍ଳବ ଏତେ ହିଂସ୍ର ଓ ଉଗ୍ର ହୋଇ ନ ଥିଲା କିନ୍ତୁ ବିପ୍ଳବ ଘଟିଥିଲା ଚାରିଆଡ଼େ । ଛାତ୍ରମାନେ ଓ ସାଧାରଣ ଜନତା ମାତି ଉଠିଥିଲେ, ନାନା ସ୍ଥାନରେ ହରତାଳ, ପଟୁଆର, ସଭା, ଛାତ୍ରାନୁଷ୍ଠାନ ଓ ଅଫିସ୍ କଚେରୀ ବର୍ଜନ, ଖଜଣା ଓ ଟିକସ ବନ୍ଦ, ଥାନା ଓ ଡାକଘର ଉପରେ ଚଢ଼ାଉ, ସରକାରୀ କାଗଜପତ୍ର ପୋଡ଼ା, ଥାନା ପୋଡ଼ା, ସରକାରୀ ଅଫିସ୍‌ମାନ ଦଖଲ, ପୋଡ଼ା, ଭଙ୍ଗାରୁଜା, ଡାକବଙ୍ଗଳା ଦଖଲ, ରେଲ୍ ଲାଇନ୍ ଭଙ୍ଗା, ଟେଲିଗ୍ରାଫ୍ ତାର କଟା, ସଡ଼କ କଟା, ପୋଲ ଭଙ୍ଗା, ରାସ୍ତା ବନ୍ଦ, ଯାନବାହନ ଅଟକା, ମଦ, ଅଫିମ, ଗଞ୍ଜେଇ ଦୋକାନ ଉପରେ ଚଢ଼ାଉ, ଗାଁ

ଚୌକିଆ ଓ ଦଫାଦାରଙ୍କ ପୋଷାକ ଓ ପଗଡ଼ି ପୋଡ଼ା, ପୁଲିସ୍‌ଙ୍କୁ ଘେରାଉ, ସରକାରୀ କର୍ମଚାରୀଙ୍କୁ ଘେରାଉ କରି ସରକାର ଛାଡ଼ିବାକୁ ବାଧ୍ୟ କରିବା, "ଆମ ଦେଶ ସ୍ୱାଧୀନ ହୋଇଗଲା, ଆମେ ଏ ସରକାରକୁ ମାନୁ ନାହିଁ କି ଏ ସରକାରର କୌଣସି ନିୟମ କାନୁନ୍‌କୁ ମାନୁ ନାହିଁ" ବୋଲି ଘୋଷଣା, ସରକାରୀ ଅଫିସ୍ ଓ ସବୁ ସରକାରୀ ଅନୁଷ୍ଠାନ ଉପରେ ସ୍ୱାଧୀନ ପତାକା ଉଡ଼ାଇବା, ସରକାରୀ ପତାକାକୁ ଓଟାରି ପୋଡ଼ିବା, କେଉଁଠି କେଉଁଠି ପୁଲିସ୍‌ଙ୍କ ଅସ୍ତ୍ର ଛଡ଼ାଇ କର୍ମଚାରୀଙ୍କୁ ମାରପିଟ୍, ଜଳ ପ୍ରତିରୋଧ, ସ୍ଥାନେ ସ୍ଥାନେ ପଞ୍ଚାୟତ ଗଢ଼ି ତାହାର ଜରିଆରେ ସ୍ଥାନୀୟ ଶାସନଭାର ବୁଝିବା ଓ ତାହାର ନିଷ୍ପତ୍ତିକୁ ମାନି ଚଳିବା, —ଏହିସବୁ ଥିଲା ଓଡ଼ିଶାରେ ଅଗଷ୍ଟ ବିପ୍ଳବ ବେଳେ ଘଟିଥିବା କାର୍ଯ୍ୟାବଳୀର ଅନ୍ତର୍ଭୁକ୍ତ । ଉଦ୍ଦେଶ୍ୟ ଗୋଟିଏ, —ଇଂରେଜର ଶାସନକୁ ସମ୍ପୂର୍ଣ୍ଣ ଅଚଳ କରିଦେବା, ସରକାରକୁ କୌଣସି ପ୍ରକାର ସାହାଯ୍ୟ କି ସହଯୋଗ ନ ଦେବା । ଇଂରେଜ ଯୁଦ୍ଧ ମୁହଁରେ ହାରୁଛି, ଜାପାନ ମାଡ଼ି ଆସୁଛି, ଆନ୍ଦୋଳନ କଲେ ସ୍ୱାଧୀନତା ନିଶ୍ଚୟ ମିଳିବ ବୋଲି ଲୋକଙ୍କର ଆଶା ବି ତେଜି ଥିଲା । ସରକାରଙ୍କ ତରଫରୁ ଲାଗି ରହିଲା ଧମାଧମ 'କାର୍ଯ୍ୟାନୁଷ୍ଠାନ', ଧରପଗଡ଼, ଗିରଫ, ଖାନତଲାସି, ସମ୍ପତ୍ତି ବାଜ୍ୟାପ୍ତି, ସମ୍ପତ୍ତି ଧ୍ୱଂସ, ନାନା କଟକଣା ଜାରି, ଲାଠିମାଡ଼, ଗୁଳିକାଣ୍ଡ, ଧମକଚମକ, ନାନା ପ୍ରକାର ନିଷ୍ଠୁର ଦମନଲୀଳା, ଅତ୍ୟାଚାର, ଜୋରିମାନା, ଜେଲ୍ ସବୁ ଭର୍ତ୍ତି ହେଲା, ସାମୟିକ ଜେଲ୍ ସୃଷ୍ଟି ହେଲା, ଚାରିଆଡ଼େ ଭୟ ସୃଷ୍ଟି କରିବାକୁ ପୋଷାକ ପିନ୍ଧି ବନ୍ଧୁକ କାନ୍ଧେଇ ସୈନ୍ୟ 'ମାର୍ଚ୍ଚ' କଲେ । କେତେବେଳେ ପଟୁଲେଇ, ଲୁଚି ଲୁଚି, କେତେବେଳେ ସିଧାକୁ ସିଧା ମୁହାଁମୁହିଁ ହୋଇ କେତେଠି ଉତ୍ତେଜିତ ଆନ୍ଦୋଳନକାରୀ ତା ପ୍ରତିକ୍ରିୟା ସ୍ୱରୂପ ଏକ ପ୍ରକାର 'ଗେରିଲା' ଖଣ୍ଡଯୁଦ୍ଧ ମଧ୍ୟ ଚଳେଇଲେ ଯଦିଓ ହାତରେ ବନ୍ଧୁକ ନ ଥିଲା । ହଜାର ହଜାର ସ୍ତ୍ରୀ ପୁରୁଷ ଜେଲ୍ ଗଲେ, ଶହ ଶହ ଆହତ ହେଲେ, ନାନା ସ୍ଥାନରେ ଗୁଳିମାଡ଼ରେ ଶହ ଶହ ଲୋକ ମଲେ, ନାନା ଲୋକ ସର୍ବସ୍ୱାନ୍ତ ହେଲେ । ଲୋକେ "ଭାରତ ! ଭାରତ ! ସ୍ୱାଧୀନତା ! ସ୍ୱାଧୀନତା !" ହୋଇ ମାତି ଉଠିଥିଲେ, ନିଜ ଜୀବନକୁ ବି 'ତୁଚ୍ଛ' କରି ଦେଇଥିଲେ । ନେତାମାନେ ତ ଜେଲ୍‌ରେ, ଗୋଟିଏ ସୁନିୟନ୍ତ୍ରିତ ଆନ୍ଦୋଳନ ଚଳାଇବାକୁ ନିର୍ଦ୍ଦେଶ ବା ଦିଅନ୍ତା କିଏ? ସ୍ଥାନେ ସ୍ଥାନେ ଲୋକମାନେ ନିଜ ବୁଦ୍ଧି ବିଚାର ଉପରେ ନିର୍ଭର କରି ଯାହା ତାଙ୍କୁ ଠିକ ମନେହେଲା କଲେ । କେଉଁଠି କେଉଁ ଗୁପ୍ତ ସଂଗଠନ ଲୁଚି ଲୁଚି ବୁଲେଟିନ ଓ ପ୍ରଚାରପତ୍ର ଛପାଇ ପଠାଉଥାଏ କି ଲୋକଙ୍କ ମାଧ୍ୟମରେ ନିର୍ଦ୍ଦେଶ ପଠାଉଥାଏ, ସେହି ନିର୍ଦ୍ଦେଶ ପାଇପାରିଲେ ଲୋକେ ସେହିପରି କରୁଥାନ୍ତି । ପୁଲିସ୍ ସେସବୁ ସଂଗଠନର ଖୋଜ କରୁଥାଏ, ଧରପଗଡ଼ ଚଳାଉଥାଏ, ତଥାପି ଗୁପ୍ତରେ ନିର୍ଦ୍ଦେଶ ଓ ପ୍ରଚାର ବି ଚାଲିଥାଏ । ଚାଲିଥାଏ ମେଳ, ଗୁପ୍ତ ସଭା, ଗୁପ୍ତ ମନ୍ତ୍ରଣା, ପାତାଳୀ ସଂଗଠନ, ଷଡ଼ଯନ୍ତ୍ର, ନାହିଁ ନ ଥିବା ଉତ୍ତେଜନା, ଗଣ୍ଡ ମଫସଲରେ ସୁଦ୍ଧା ସାଧାରଣ ଲୋକେ

କିମ୍ବା ଥିବା ନାନା ଦୁଃସାହସିକ କାର୍ଯ୍ୟର ଓ ଆତ୍ମତ୍ୟାଗର କାହାଣୀ ଲୋକମୁଖରେ ଚଳୁଥାଏ ।

ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀ ଓଡ଼ିଶାରେ ଅଗଷ୍ଟ ବିପ୍ଳବର କେନ୍ଦ୍ରସ୍ୱରୂପ ଥିଲେ ଓ 'ପାତାଳୀ' ରହି ତାକୁ ଯଥାସମ୍ଭବ ସଂଗଠିତ କରୁଥିଲେ ଓ ପରିଚାଳନା କରୁଥିଲେ । ସେ କାର୍ଯ୍ୟରେ ତାଙ୍କର ସହଯୋଗୀ ଓ ସହାୟକମାନଙ୍କ ଭିତରେ ଥିଲେ କଟକର ଶ୍ରୀ ମଥୁରାନନ୍ଦ ସାହୁ, ଶ୍ରୀ ରାଧାନାଥ ପଣ୍ଡିତ, ଶ୍ରୀ ବିଶ୍ୱନାଥ ପଣ୍ଡିତ, ଶ୍ରୀ ବନମାଳି ମିଶ୍ର, ଶ୍ରୀ ଅମଳ କୁମାର ଘୋଷ, ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ଆଦି । ବିଖ୍ୟାତ ନେତାମାନଙ୍କ ମଧ୍ୟରେ ଥିଲେ ଢେଙ୍କାନାଳର ଶ୍ରୀ ବୈଷ୍ଣବ ପଟ୍ଟନାୟକ, ବାଲେଶ୍ୱରର ଶ୍ରୀ ଗୌରଚନ୍ଦ୍ର ଦାସ, ଶ୍ରୀ ବୈଷ୍ଣବ ଚରଣ ନାୟକ, ଶ୍ରୀ ପ୍ୟାରିମୋହନ ଦାସ, ଶ୍ରୀ ଦୁଃଖୀଶ୍ୟାମ ପାଢ଼ୀ, ଶ୍ରୀ ନବଘନ ବେହେରା, କଟକର ଶ୍ରୀ ଗୌରାଙ୍ଗ ଚରଣ ଦାସ, ଶ୍ରୀ ଗୌରିଶ୍ୟାମ ନାଏକ, ଶ୍ରୀ ଲୋକନାଥ ମିଶ୍ର, ଶ୍ରୀ ନଶାମଣି ଝୁଣ୍ଟିଆ, ଶ୍ରୀ ବାଞ୍ଛାନିଧି ଦାସ, ଶ୍ରୀ ଭୈରବ ଚନ୍ଦ୍ର ମହାନ୍ତି, ଶ୍ରୀ ନରସିଂହ ଚରଣ ମହାନ୍ତି, ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାନ୍ତି, ଶ୍ରୀ ବିଶ୍ୱନାଥ ପରିଡ଼ା, ଶ୍ରୀ ଘନଶ୍ୟାମ ପଟ୍ଟନାୟକ, ଶ୍ରୀ ପଦ୍ମନାଭ ରାୟ, ଶ୍ରୀ ମାଧବାନନ୍ଦ ସିଂହ, ଶ୍ରୀ ଯଦୁମଣି ଜେନା ଆଦି । କୋରାପୁଟ ଜିଲ୍ଲାର ନାନା ଆଦିବାସୀ ନେତା, ଓଡ଼ିଶାର ନାନା ସ୍ଥାନର ନାନା ସ୍ୱାଧୀନତାପ୍ରେମୀ ନେତା, ଯଥା ମାଲ୍‌କାନଗିରିର ଶ୍ରୀ ଲକ୍ଷ୍ମଣ ନାଏକ ଆଦି ।

ମହାତ୍ମା ଗାନ୍ଧୀ ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ପରି ଗାନ୍ଧୀବାଦୀମାନେ କେବେହେଲେ ଦେଶଲୋକଙ୍କୁ ଶିଖାଇ ନ ଥିଲେ କି କହି ନ ଥିଲେ ଯେ ସେମାନେ କୌଣସି ପ୍ରକାରର ହିଂସାତ୍ମକ ଆନ୍ଦୋଳନ କରନ୍ତୁ କିମ୍ବା ଅଗଷ୍ଟ ଆନ୍ଦୋଳନରେ ଯେତେ ଯାହା ସବୁ ହେଲା, ସେହି ଉପାୟରେ ସ୍ୱାଧୀନତା ପାଇଁ ଆନ୍ଦୋଳନ କରନ୍ତୁ । କିନ୍ତୁ ଯେଉଁ ସ୍ୱଦେଶପ୍ରୀତି, ରାଜନୈତିକ ଗଣ-ଚେତନା, ସାହସ, ଜିଦ୍‌ଖୋରପଣ, ଆଶା, ଉତ୍ସାହ, ଦେଶ ପାଇଁ ଆତ୍ମତ୍ୟାଗର ପ୍ରେରଣା ଜନସମାଜରେ ଚେର ନ ଲଗାଇଥିଲେ ଅଗଷ୍ଟ ବିପ୍ଳବ ଭଳି ଦୁଃସାହସିକ ଗଣବିଦ୍ରୋହ ଏ ଦେଶରେ ସମ୍ଭବ ହୋଇ ନ ଥାନ୍ତା ତାକୁ ହିଁ ସଞ୍ଚାର କରିଥିଲେ ସେମାନେ, ସେମାନେ ମଣିଷ ଗଢ଼ିଥିଲେ, ମଣିଷକୁ ମଣିଷ ସଙ୍ଗେ ଯୋଡ଼ିଥିଲେ । ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀ ତାଙ୍କ 'ଅଗଷ୍ଟ ବିପ୍ଳବ'ରେ ଲେଖିଛନ୍ତି ( ସେ ପୁସ୍ତକର ପୃ ୧୬୦) ।

ବାସ୍ତବିକ, କଟକ ଜିଲ୍ଲାରେ—ବିଶେଷତଃ ଯାଜପୁର, ବରି ଆଦି ଅଞ୍ଚଳରେ—ଯେଉଁ ପ୍ରବଳ ଆନ୍ଦୋଳନ ହେଲା, ତାହା ବହୁ ପରିମାଣରେ ଗୋପବନ୍ଧୁ ଚୌଧୁରୀଙ୍କର ବରି ଆଶ୍ରମର ପ୍ରଭାବ ଯୋଗୁ । ଆଶ୍ରମକୁ ସରକାର କବଜ କଲେ—ଘରଦ୍ୱାର

ଭାଙ୍ଗିଲେ; ପାଖଆଖର ଲୋକେ ତାର ପ୍ରତିରୋଧ କଲେ । ଯେଉଁମାନେ ଭାବୁଥିଲେ ଯେ ରଚନାତ୍ମକ କାର୍ଯ୍ୟ ଆମର ସ୍ୱାଧୀନତା ଆନ୍ଦୋଳନକୁ ବିଶେଷ ସହାୟକ ହେବ ନାହିଁ, ସେମାନଙ୍କର ଧାରଣା ଭୁଲ୍ ବୋଲି ପ୍ରମାଣିତ ହେଲା ।

ଯାଜପୁର ଅଞ୍ଚଳରେ ନାନା କାଣ୍ଡ ହୋଇଥିଲା । ବିଞ୍ଝାରପୁର ପୁଲିସ୍ ଥାନା ଉପରେ ଆକ୍ରମଣ, ଚାରିଆଡ଼େ ଟେଲିଗ୍ରାଫ ତାର କଟା, ଯାଜପୁର ପାଖ ରାମ୍‌ବାଗ୍ ଡାକଘର ପୋଡ଼ା ଆଦି । ଶ୍ରୀ ପଦ୍ମନାଭ ରାୟଙ୍କ ନେତୃତ୍ୱରେ ପ୍ରାୟ ତିନିହଜାର ଲୋକ ଯାଇ ଯାଜପୁର ଏସ୍. ଡି. ଓ. ଅଫିସ୍‌ରେ ପହଞ୍ଚିଗଲେ, ଗୋଟିଏ ଇସ୍ତଫାପତ୍ରରେ ଦସ୍ତଖତ୍ କରିବାକୁ ଓ ଜନତା ସହିତ ମିଶିବାକୁ ବାଧ୍ୟ କଲେ । ପୁଲିସ୍ କିଛି କରିବାକୁ ଉପାୟ ନ ଥିଲା । ଯୋଗାଯୋଗ କଟିଥିବାରୁ ବାହାରୁ ଫଉଜ ସାହାଯ୍ୟ ଆସି ପାରିଲେ ନାହିଁ । ଗୋଟାଏ ଉଡ଼ାଜାହାଜ ଆସି ଉପରୁ ବୋମା ଫୋପାଡ଼ିଲା, ସେତେବେଳେ ଯାଇ ଲୋକେ ଚାଲିଗଲେ ।

## ବରୀରେ ଅଗଷ୍ଟ ବିପ୍ଳବ

କିନ୍ତୁ ବରୀ ଅଞ୍ଚଳରେ ପୋଡ଼ିବାକୁ ଥାନାଟିଏ ବି ନ ଥାଏ, ଥାଆନ୍ତି ଗାଁ ଚୌକିଦାରମାନେ ଓ ଦଫାଦାର । ତାଙ୍କ ପଗଡ଼ି ଓ ପୋଷାକ ପୋଡ଼ାଗଲା, ତାଙ୍କୁ ଚାକିରି ଛାଡ଼ିବାକୁ ମନାଗଲା । ସେତେବେଳେ ସରକାରୀ ଅନୁଷ୍ଠାନ କହିଲେ ବରୀର ଡାକଘରଟିଏ ଥାଏ । ପୋଷ୍ଟମାଷ୍ଟର ବାବୁଟି ଜନପ୍ରିୟ । ଲୋକେ ତାଙ୍କୁ କହିଲେ, "ଯାହା ମନିଅର୍ଡ଼ର, ରେଜିଷ୍ଟ୍ରି ଓ ଚିଠି ଡାକଘରେ ଅଛି ତାକୁ ଶୀଘ୍ର ବାଣ୍ଟି ଦିଅନ୍ତୁ, ବାକି କାଗଜପତ୍ର ଆମକୁ ଦେଇଦିଅନ୍ତୁ, ଆମେ ସେସବୁ ପୋଡ଼ିବୁ ।" ସେ ଅଲେଖା ପୁରୁଣା ଫର୍ମ୍ କୁଢ଼ାଏ ବଢ଼େଇ ଦେଲେ, ଲୋକେ ତାକୁ ନେଇ ପୋଡ଼ିଲେ । ସେ ଡାକଘରେ ତାଲା ପକାଇ ଦେଇ ରିପୋର୍ଟ୍ ପଠାଇଦେଲେ । ବରୀରେ ସରକାରଙ୍କଠୁ ଲାଇସେନ୍ସପ୍ରାପ୍ତ ଅଫିମ, ଗଞ୍ଜେଇ ଦୋକାନ ଥିଲା । ତା କାଗଜପତ୍ର ବି ନଷ୍ଟ କରା ହେଲା । ଯାଜପୁର ସହରରେ ଯେଉଁ ବିଶାଳ ଗଣ-ସମାବେଶ ହେଲା, ସଭା ହେଲା, ପଟୁଆର ହେଲା, ବରୀ ଅଞ୍ଚଳର ଲୋକେ ଏକାଠି ହୋଇ ସେଠିକି ବି ଯାଇଥିଲେ । ବରୀ ଅଞ୍ଚଳଯାକ ଗାଁ ଗାଁକେ ଲୋକେ ସଭା କରୁଥାନ୍ତି । ପ୍ରଚାର ଚାଲିଥାଏ ସରକାରକୁ ନ ମାନିବାକୁ ଓ ସରକାରୀ ଆଇନ୍ ବିରୋଧୀ କାମ କରିବାକୁ ।

ବରୀ ଅଞ୍ଚଳର ସେ ସମୟର ଅବସ୍ଥା ବିଷୟରେ ଶ୍ରୀ ଗୋବିନ୍ଦ ସାମଲ ବୋଲି ଜଣେ ସ୍ଥାନୀୟ ନିପଟ ମଫସଲିଆ ଲୋକ, ଅଳ୍ପ ପାଠପଢ଼ା, ସାଧାରଣ ଚାଷୀ ମୂଲିଆ ଶ୍ରେଣୀର, କିନ୍ତୁ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀଙ୍କ ଦ୍ୱାରା ଉଦ୍‌ବୁଦ୍ଧ ଓ ପ୍ରଭାବିତ କର୍ମୀଟିଏ ନିଜର ଗୋଟିଏ ଡାଇରୀରେ ଲେଖିଛନ୍ତି :

"ଆଗରୁ ଆମେ ସବୁ ଜାଣିଥିଲୁ ଆନ୍ଦୋଳନ ଉପରେ ହେବ । ସାନ ସାନ ନେତାମାନେ ବାହାରେ ଥିଲେ । ସୁରେନ୍ଦ୍ର ଦ୍ୱିବେଦୀ, ନିଶାମଣି ଖୁଣ୍ଟିଆ, ସୁରେନ୍ଦ୍ର ପଟ୍ଟନାୟକ, ବିନୋଦ କାନନ୍‌ଗୋ, ଭଗୀରଥ ଦାସ, କୃଷ୍ଣ ରାଉତ, ଏହିପରି କେତେକ କର୍ମୀଙ୍କ ଦ୍ୱାରା ଆନ୍ଦୋଳନ କରାଇଥିଲେ । ଗ୍ରେଷ୍ଟ ଗ୍ରେଷ୍ଟ ମେସିନ୍ ଦ୍ୱାରା ବୁଲେଟିନ୍ ଛପାଇ ପଠାଇଥିଲେ । ଯେଉଁ କର୍ମୀମାନେ ଗ୍ରାମରେ ଥିଲେ ସେମାନଙ୍କ ପାଖକୁ ପଠାଇଲେ । ସେଥିରେ ଲେଖା ହୋଇଥିଲା ସବୁ ବେ-ଆଇନ୍ କାମ କରିବାକୁ । ଥାନା, କଚେରି, ଚୌକିଆ ହୁଦା, ପଗଡ଼, ଦଫାଦାର ହୁଦା ପଗଡ଼, ପ୍ରେସିଡେଣ୍ଟଙ୍କ ହସ୍ତରୁ କାଗଜପତ୍ର ଏସବୁ ପୋଡ଼ି ଦେବା ପାଇଁ । ଗଞ୍ଜେଇ ଦୋକାନ, ଅଫିମ ଦୋକାନ, ଡାକଘର କାଗଜପତ୍ର ପୋଡ଼ି ଦେବା ପାଇଁ, ଗୋଚର ଅନାବାଦୀରେ ଗଛ ହାଣି ଜାଳ କରିବା ପାଇଁ, ଧନୀଘର ଲୁଟ୍‌ତରାଜ୍ କରିବା ପାଇଁ ।

ସେ କାଗଜରୁ ବଡ଼ାଏ ଗୋବିନ୍ଦ ପାଖକୁ ପଠାଇଥିଲେ । ଗୋବିନ୍ଦ ସାମଲ ସେ କାଗଜ ପଢ଼ି ମନ ଭାରି ଉତ୍ତେଜ ହେଲା । ରାତରେ ନିଦ ହେଲା ନାହିଁ, ଭୋକ କଲା ନାହିଁ, ମରିବାକୁ ଭୟ ହେଲା ନାହିଁ, ଗାଁଆଡ଼େ ବୁଲି ଏହିକଥା ପ୍ରଚାର କଲା । ଗୋଟାଏ ନାଗରାବାଲାକୁ ଡାକିଲା । ସେ ଲୋକ ଡରିଲା । ଗୋବିନ୍ଦ ଗୋଟିଏ ନାଗରା ଖରିଦ କରି ବଜାଇ ଏ ଅଞ୍ଚଳରେ ସବୁ ଗ୍ରାମରେ ବଲବାଡ଼ରେ ସବୁଆଡ଼େ ଏହିକଥା କହିଲୁ । ଆଗରୁ ସବୁ ଗ୍ରାମରେ ବୁଲି ବହୁତ ଗ୍ରାମରେ କାମ କରିଥିଲୁଁ, ଲୋକେ ଭାରି ବିଶ୍ୱାସ କରୁଥିଲେ । କହିଲାମାତ୍ରେ ଅନେକ ଲୋକ ମାତି ଉଠିଲେ ।

ପୋଡ଼ାପୋଡ଼ି କାମ ବହୁତ ହୋଇଗଲା । ଅଜାଣ ପଡ଼ିଆରେ ଗୋଟିଏ ବଡ଼ ସଭା ହୁଏ । ଛ' ନମ୍ବର ୟୁନିଅନ, ପାଞ୍ଚ ନମ୍ବର ୟୁନିଅନ, ସାତ ନମ୍ବର ୟୁନିଅନ ଲୋକେ କୀର୍ତ୍ତନ ସହ ଦଳକୁ ଦଳ ସଭାକୁ ଆସନ୍ତି, ସଭାରେ ଚର୍ଚ୍ଚିଲ୍, ଆମେରି ରୁଅ ଛବିରେ କରି ଚଉକିଆ ହୁଦା ପଗଡ଼ ସେଥିରେ ବାନ୍ଧି ପୋଡ଼ି ଦେଉଥିଲୁଁ, ଅଫିମ ଗଞ୍ଜେଇ, ମଦ ଦୋକାନ, ଡାକଘର, କାଞ୍ଜି ଆହୁଦା ପୋଡ଼ି ହଥା ହେଉଥିଲା ।

ଗ୍ରାମ ଗ୍ରାମ ବୁଲି ସଭା କରାଉଥିଲୁଁ । ଭଗୀରଥ ଦାସ, ହରେକ୍ଷେନ୍ଦ୍ର ଦାସ, ଗଙ୍ଗାଧର ଦାସ, ଧ୍ରୁବ ରାୟ, ବିଚିତ୍ର ଶୁକ୍ଳ, ଗୋବିନ୍ଦ ସାମଲ, ବସୁଦେବ ସାମଲ, ଭୁବନାନନ୍ଦ ସ୍ୱାଇଁ, ଚୂନୀ ଦେବୀ, ଶରତ୍ ଚନ୍ଦ୍ର ମହାରଣା, ଋଷି ବେହେରା, କାଙ୍କୁ ଚରଣ ଦାସ, ଓ୍ୱାଙ୍କି ଇସ୍କୁଲ ମାଷ୍ଟରମାନେ, ରାମଚନ୍ଦ୍ର ମିଶ୍ର, ରାଧାକୃଷ୍ଣ ସାମଲ, ଶୋଭା ଦେବୀ, ସୁଶୀଳା ଦେବୀ, ହାରାମଣି ଦେବୀ, ଉଷା ଦେବୀ, କୃଷ୍ଣଚନ୍ଦ୍ର ସାହୁ, ବହୁତ ଲୋକ, ଆଲିଆବାଦ ମଧୁ ଦାସ, ଜଗବନ୍ଧୁ ଜେନା, ଦେବେନ୍ଦ୍ର ପାଢ଼ି, ବୀରବର ରଥ, ନୃସିଂହ ସାମଲ, ହୃଷୀକେଶ ସାମଲ ଆଦି ବହୁତ ଲୋକ କାମ କରୁଥିଲେ ।"

ଏମାନେ ସମସ୍ତେ ଗୋପବାବୁଙ୍କ ରଚନାତ୍ମକ କର୍ମ ସନ୍ଦର୍ଭେ ସମ୍ପୃକ୍ତ ଥିଲେ । ଗାନ୍ଧୀଜୀଙ୍କର ଓ ଗୋପବାବୁଙ୍କର ଗିରଫ ପରେ ଉତ୍‌କ୍ଷିପ୍ତ ହୋଇଥିଲେ ।

ତା' ପରେ ଘଟିଥିଲା ବଣ୍ଡପାଖ କାଇମାଟିଆରେ ପୁଲିସ୍‌ର ବନ୍ଧୁକ ଓ ପୁଲିସ୍‌ର ସଙ୍ଗୀନ୍‌ମୂନ କେଞ୍ଚାରେ ମାଧ୍ୱାଧର ଭୂୟାଁଙ୍କ ମୃତ୍ୟୁ । ପୁଲିସ୍ ଗୁଳିରେ ଆନନ୍ଦ ସ୍ୱାଇଁ, ହାଡ଼ିବନ୍ଧୁ ପାଉଣ୍ଡିଙ୍କ ମୃତ୍ୟୁ, ପୁଲିସ୍ ଭୟରେ ପ୍ରାଣ ବିକଳରେ ଧାଇଁ ପଳାଉ ପଳାଉ ପାଣିରେ ପଡ଼ି ଗୋଟିଏ ସାନ ଝିଅର ମୃତ୍ୟୁ, ଏହିପରି ଚାରିଜଣ ଶହୀଦ୍ ହେଲେ ।

ସେଦିନ ଥିଲା ଗହ୍ମା ପୂନେଇଁ, ଗୋଟିଏ ପର୍ବର ଦିନ, ଘରେ ଘରେ ପିଠାପଣା ହୁଏ । ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ଓ ଶ୍ରୀ ରୃଷି ବେହେରା ଆଦି କାଇମାଟିଆ ଯାଇଥାନ୍ତି, ସେହି ଗାଁରେ ଥାନ୍ତି । ଗାଁଠୁ ଖଣ୍ଡେ ଦୂରରେ ଟେଗ୍ସୂଆଁ ନଈ ବନ୍ଧ । ନଈ ସେପାରିରୁ ଗୋଟିଏ ଡଙ୍ଗାରେ ଚଢ଼ି ପୁଲିସ୍ ଆସିଲେ, ଏପାଖେ ଠାଏ ନଈବନ୍ଧରେ ବସି ଅଳ୍ପ କେତେଜଣ ଲୋକ ସେମାନଙ୍କ ଗତିବିଧି ଲକ୍ଷ୍ୟ କରୁଥାନ୍ତି । ପୁଲିସ ପହଞ୍ଚିଯାଇ ବିନା କାରଣରେ ସେମାନଙ୍କୁ ଗିରଫ କଲେ । ଗାଁକୁ ଖବର ସଙ୍ଗେ ସଙ୍ଗେ ଚାଲିଗଲା ଓ ଲୋକେ ଧାଇଁ ପଡ଼ିଲେ । ନଈ ବନ୍ଧଠୁ ଖଣ୍ଡେ ଦୂରରେ ସେମାନେ ଜମିଲେ, ବହୁତ ଲୋକ, ସଭା କଲେ । ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ଓ ଶ୍ରୀ ରୃଷି ବେହେରା ସେ ସଭାକୁ ଯାଇ ଲୋକଙ୍କୁ ବହୁତ ବୁଝାଇଲେ ଯେ ସେମାନେ ଅଳ୍ପ କେତେଜଣ ପୁଲିସ୍ ପାଖକୁ ଯିବେ, ପୁଲିସ୍‌କୁ ବୁଝାଇ କହିବେ ଯେ ନିର୍ଦ୍ଦୋଷ ଲୋକଙ୍କୁ କାହିଁକି ଧରି ନିଆ ହେଉଛି, ତାଙ୍କୁ ଛାଡ଼ି ଦିଅ, କହିପୋଛି ସେ ଭାଇମାନଙ୍କୁ ମୁକ୍ତ କରି ଫେରାଇ ଆଣିବେ, ଆଉ ଅଧିକ ଲୋକ ପୁଲିସ୍ ପାଖକୁ ଯାଆନ୍ତୁ ନାହିଁ । ଉତ୍ତେଜିତ ଲୋକେ ତାଙ୍କ କଥା ମାନିଲେ ନାହିଁ, ଧାଇଁ ଗଲେ । ସବାଆଗରେ ମାଧ୍ୱାଧର ଭୂୟାଁ ।

ଏତେ ଲୋକ ମାଡ଼ି ଆସୁଛନ୍ତି, କାଳେ ଆକ୍ରମଣ କରିବେ ଭାବି ପୁଲିସ୍ ଗୁଳି ଫାୟାର୍ କଲେ । ମାଧ୍ୱାଧର ଭୂୟାଁ ଜଣକ ହାତରୁ ବନ୍ଧୁକଟା ଧରି ଝିଙ୍କିଲେ, ଧସ୍ତାଧସ୍ତି ଲାଗିଲା, ମାଧ୍ୱାଧର ପଛକୁ ପେଲି ହେଉ ହେଉ ପଡ଼ିଗଲେ, ଏତିକିବେଳେ ତାଙ୍କ ତଣ୍ଟିରେ ପୁଲିସ୍ ବନ୍ଧୁକର ସଙ୍ଗୀନ୍‌ମୂନ ଭୁଷି ଦେଲେ, ରକ୍ତ ପିଚ୍ ପିଚ୍ ବାହାରିଲା, ସେହି ଆଘାତରେ ସେ ମରିଗଲେ । ମାଧ୍ୱାଧରଙ୍କୁ ଆଘାତ କରିବା ସଙ୍ଗେ ସଙ୍ଗେ ତିନି ରାଉଣ୍ଡ୍ ଗୁଳି ଫାୟାର ହେଲା, ଆନନ୍ଦ ସ୍ୱାଇଁ ଓ ହାଡ଼ିବନ୍ଧୁ ପାଉଣ୍ଡି ଗୁଳିଚୋଟରେ ମଲେ । ସାନ ଝିଅଟିଏ ପଳାଉ ପଳାଉ ପାଣିରେ ପଡ଼ିଯାଇ ମଲା । କେତେ ଲୋକ ଆହତ ହେଲେ । ଲୋକେ ପଳାଇଲେ । ମାଧ୍ୱାଧର ଓ ଅନ୍ୟାନ୍ୟ ହତାହତଙ୍କୁ ଛାଡ଼ି ପୁଲିସ୍ ଗିରଫ ହୋଇଥିବା ଲୋକଙ୍କୁ ନେଇ ନାହାରେ ବସି ଚାଲିଗଲେ ।

ତାପରେ ପୁଲିସ୍ ଫଉଜ ନେଇ ଆସିଲେ । ଖୋଜାଖୋଜି, ଧରପଗଡ଼, ଅତ୍ୟାଚାର, ନିର୍ଯ୍ୟାତନା, ଧ୍ୱଂସ ଓ ଦମନଲୀଳା ଚଳାଇଲେ । ଏହି ସମୟରେ ବରି-ଅରଙ୍ଗାବାଦ୍ ଗାଁରେ ଦୁଇଟା ପରିବାର ଭିତରେ ଘରୋଇ ବିବାଦ ଯୋଗୁଁ ଗଣ୍ଡଗୋଳ ଉପୁଜିଥାଏ । ଜଣକର ଲୋକ ଅନ୍ୟ ଜଣକର ନଡ଼ିଆଗଛରୁ ନଡ଼ିଆ ପାରି ନେଇଥାନ୍ତି ଓ ତା ଦୋକାନ ଲୁଟିଥାନ୍ତି, ଘର ପୋଡ଼ିଥାନ୍ତି, ସେଇଟା ଥିଲା ସେହି ଦୁଇ ପରିବାରଙ୍କ ବ୍ୟକ୍ତିଗତ କଳହ, ତାର ଅଗଷ୍ଟ ବିପ୍ଳବ କି ସ୍ୱାଧୀନତା ଆନ୍ଦୋଳନ ସହିତ କୌଣସି ସମ୍ବନ୍ଧ ନ ଥିଲା । କିନ୍ତୁ ସେହି ଘଟନାକୁ ଗୋଟାଏ ଆଳ କରି ସରକାର ବରି ଅଞ୍ଚଳରୁ ଟ ୬୫୦୦-୦୦ ସମୂହ ଜୋରିମାନା ଆଦାୟ କଲେ ଓ ପ୍ରତିବାଦ କରୁଥିବା କଂଗ୍ରେସ୍ ଲୋକଙ୍କୁ ଗିରଫ କଲେ । ପରେ ୧୯୪୪ରେ ଶ୍ରୀମତୀ ରମା ଦେବୀଙ୍କଠାରୁ ଗାନ୍ଧିଜୀ ସବୁକଥା ଶୁଣିଲେ ଓ ଗାନ୍ଧୀଜୀଙ୍କ ନିର୍ଦ୍ଦେଶକ୍ରମେ ବିଖ୍ୟାତ ବାରିଷ୍ଟର ଓ ନେତା ଶ୍ରୀ ଭୁଲାଭାଇ ଦେଶାଇ ଲୋକଙ୍କ ପକ୍ଷରୁ ଗୋଟିଏ ଆପିଲ୍ ଡ୍ରାଫ୍ଟ୍ କରିଦେଲେ । ଲୋକେ ସରକାରଙ୍କ ଉପରେ ମକଦ୍ଦମା କଲେ । ଜୋରିମାନା ଟଙ୍କା ବି ପରେ ଫେରସ୍ତ ଦିଆଗଲା ।

ଗାଁ ଗାଁ ଅନ୍ଧସନ୍ଧି ବୁଲି ଖୋଜି ଖୋଜି ବହୁତ ଲୋକଙ୍କୁ ଧରି ମାଡ଼ପିଟି ଗିରଫ କରି ନେଇ ଜେଲ୍ ଦିଆ ହେଉଥାଏ, କେତେ ଲୋକ ଘରୁ ପଳେଇଥାନ୍ତି, କିଏ କୁଆଡ଼େ ଲୁଚି ଲୁଚି ବୁଲୁଥାନ୍ତି, ସେମିତି ଦିନେ ଧରା ହୋଇ ଜେଲ୍ ଗଲେ ଗୋବିନ୍ଦ ସାମଲ ।

## ବରୀ ଆଶ୍ରମ ଧ୍ୱଂସ

କିଛିଦିନ ପରେ ପୁଲିସ୍ ଫୌଜ୍ ନେଇ ବରିରେ ପହଞ୍ଚିଗଲେ ଶ୍ରୀ ମୁସାଏବ୍ ଖାଁ, ସେତେବେଳେ ଯାଜପୁରର ଏସ୍. ଡି. ଓ. । ସେତେବେଳକୁ ବୋଧହୁଏ ଜଣେ 'ଖାଁ ସାହେବ୍' ଉପାଧିଧାରୀ, ପରେ 'ଖାଁ ବାହାଦୁର୍' । ସେ ସରକାରଙ୍କର ବିଶ୍ୱସ୍ତ ଓ ଅତି ଅନୁରକ୍ତ କର୍ମଚାରୀ, ଅତିମାତ୍ରାରେ କଂଗ୍ରେସ୍-ବିଦ୍ୱେଷୀ, ଆନ୍ଦୋଳନ-ବିଦ୍ୱେଷୀ । ବରିର ସେବାଘର ଓ ତା ସହିତ ସଂପୃକ୍ତ ନାନା ରଚନାତ୍ମକ ଅନୁଷ୍ଠାନକୁ ଧ୍ୱସ୍ତବିଧ୍ୱସ୍ତ କରିବା ଓ ତା ସହିତ ସେ ଅଞ୍ଚଳର କଂଗ୍ରେସ୍ ସଂଗଠନକୁ ମୂଳପୋଛି କରିବା ତାଙ୍କର ପ୍ରଶାସନିକ ଆଭିମୁଖ୍ୟ ଥିଲା ଭଳି ଜଣାପଡ଼େ । ହଠାତ୍ ପହଞ୍ଚିଯାଇ ସେ ଓ ଫଉଜ୍ ବରିରେ ରହିଲେ । ନାନା ଧରପଗଡ଼ ଆଦି ତ ହେଲା । ସେବାଘର ଘେରାଉ କରି ତଲାସ କରି ଜିନିଷପତ୍ର ଓଲଟପାଲଟ ଫୋପଡ଼ାଫିଙ୍ଗା ଧ୍ୱଂସ କାଗଜପତ୍ର ଆଦି ଜବତ୍ ଓ କେତେକ ଭଙ୍ଗାରୁଜା କାର୍ଯ୍ୟ ଚାଲିଲା । ବରିର ସେବାଘର, ତା ସହିତ ସଂପୃକ୍ତଥିବା ଚମଡ଼ା କାରଖାନା ଆଦି ସବୁ ଅନୁଷ୍ଠାନ ଧ୍ୱଂସ କରାଗଲା । କେତେ ମୂଲ୍ୟବାନ୍ ଜିନିଷ, କେତେ ବହିପତ୍ର କୁଆଡ଼େ ଗଲା । ଶୁଣାଯାଏ, ପୁଲିସ୍‌ମାନେ ସେବାଘର ଚୁଲିରେ ନିଆଁ

ଲଗାଇବାକୁ ଚେଷ୍ଟା କରିଥିଲେ, କିନ୍ତୁ ବର୍ଷା ହୋଇ ନଡ଼ା ଓଦା ଥିବାରୁ ନିଆଁ ଧରିଲା ନାହିଁ । ଆଶ୍ରମ ଖାନତଲାସ ବେଳେ ଗୋଟିଏ କୌତୁକପ୍ରଦ ଘଟନା ଘଟିଥିଲା । ଖାନତଲାସ କରୁ କରୁ ପୁଲିସ୍‌ମାନେ ମହୁବାକ୍ସ ଗୁଡ଼ିକ ଖୋଲିଦେଲେ । ହଜାର ହଜାର ମହୁମାଛି ଉତ୍ତ୍ୟକ୍ତ ହୋଇ ବାହାରି ସେମାନଙ୍କୁ କାମୁଡ଼ି ଗୋଡ଼େଇଲେ, ସନ୍ଧ୍ୟା ହେବାରୁ ଶାନ୍ତି ମିଳିଲା ।

# ତରଣି

## ଗୋପବାବୁଙ୍କ ଜେଲ୍ ଜୀବନ

୧୯୪୨ ଅଗଷ୍ଟରୁ ୧୯୪୫ ଜୁନ୍ ପର୍ଯ୍ୟନ୍ତ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଜେଲ୍‌ରେ ବନ୍ଦୀ ହୋଇ ରହିଲେ । ଆଗ ତାଙ୍କୁ ରଖା ହୋଇଥିଲା କଟକ ଜେଲରେ । ଓଡ଼ିଶାର ବହୁ କଂଗ୍ରେସ୍ ନେତା କଟକ ଜେଲ୍‌ରେ ଥାନ୍ତି । ପୁରୁଷ ରାଜବନ୍ଦୀମାନେ ରହୁଥାନ୍ତି ୧୫ ନଂ, ୧୬ ନଂ ଓ ୧୭ ନଂ ୱାର୍ଡ୍‌ରେ ଓ ମହିଳା ରାଜବନ୍ଦିନୀମାନେ ୧୨ ନଂ ୱାର୍ଡ୍‌ରେ ।

ଗୋପବାବୁ, ଆଚାର୍ଯ୍ୟ ମହାଶୟ, ରାଧୁବାବୁ ଓ ସେମାନଙ୍କର ଆଉ କେତେଜଣ ସହକର୍ମୀ ସେମାନଙ୍କ ଭୋଜନ ବ୍ୟବସ୍ଥା ପାଇଁ ଗୋଟିଏ ଅଲଗା 'ମେସ୍' କରିଥାନ୍ତି । ପ୍ରଥମୋକ୍ତ ତିନିଜଣଙ୍କ ଆଦ୍ୟ ଅକ୍ଷର ତିନୋଟିକୁ ଯୋଡ଼ି ସେ ମେସର ନାଁ ରହିଥାଏ 'ଗୋ-ଆ-ରା' ମେସ୍ । ସେମାନେ ଜେଲରୁ ଅଟା ନିଅନ୍ତି ନାହିଁ, ଗହମ ନିଅନ୍ତି, ତାକୁ ପରିଷ୍କାର କରି, ଚକିରେ ପେଷି ଅଟା କରନ୍ତି । ସେମାନେ ତେଲ, ଘିଅ ଖାଆନ୍ତି ନାହିଁ, ତା ପରିବର୍ତ୍ତେ ଗୋଟାନଡ଼ିଆ ମଗାଇ, ନଡ଼ିଆ କୋରି ଡାଲ୍‌ମା କି ସିଝା ତରକାରିରେ ପକାନ୍ତି । ସେମାନେ ବ୍ୟବହାର କରନ୍ତି 'ଶୁଦ୍ଧ ଖାଦ୍ୟ' । ସେମାନେ

ନିଜ ନିଜ ଯାବତୀୟ କାର୍ଯ୍ୟ ନିଜ ହାତରେ କରନ୍ତି । ଜେଲ୍‌ରେ ଯେ ବ୍ୟବସ୍ଥା ଥାଏ ଯେ ନିମ୍ନ ଶ୍ରେଣୀର କଇଦୀ ଉପର ଶ୍ରେଣୀର ବନ୍ଦୀଙ୍କର ନାନା ପ୍ରକାର ସେବା କରିବେ, ତାର ସୁଯୋଗ ସେମାନେ ନେବାକୁ ମନା କରନ୍ତି । ସେମାନେ ନିୟମିତ ଭାବେ ବ୍ୟାୟାମ ଓ ଅନ୍ୟାନ୍ୟ ଶାରୀରିକ ଶ୍ରମ କରନ୍ତି । ତାହା ସେମାନଙ୍କ ଦୈନନ୍ଦିନ କାର୍ଯ୍ୟନିର୍ଘଣ୍ଟର ସବୁଦିନେ ଅନ୍ତର୍ଭୁକ୍ତ ଥିଲା । ସେହିପରି, ପ୍ରତିଦିନ ସନ୍ଧ୍ୟାକାଳୀନ, ପ୍ରତିଦିନ ଦୁଇଓଳି ପ୍ରାର୍ଥନା । ଜେଲ୍‌ରେ ଥାଇ ବି ସେମାନେ ଆଶ୍ରମଜୀବନ ଯାପନ କରୁଥାନ୍ତି ।

ଅଳ୍ପକାଳ ପରେ ଗୋପବାବୁ, ଆଚାର୍ଯ୍ୟ ହରିହର, ପଣ୍ଡିତ କୃପାସିନ୍ଧୁ ହୋତା, ରାଧାନାଥ ରଥବାବୁ, ଶ୍ରୀ ବୈଦ୍ୟନାଥ ଦାସ, ଶ୍ରୀ ସୁରେନ୍ଦ୍ର ନାଥ ଦାସ, ଶ୍ରୀ ଫକୀର ମିଶ୍ର, ଶ୍ରୀ ଅକ୍ରୂର ଜେନା, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ମନମୋହନ ଚୌଧୁରୀ, ଅନ୍ୟାନ୍ୟ ନେତା ଓ କର୍ମୀମାନଙ୍କ ସହିତ ବ୍ରହ୍ମପୁର ଜେଲ୍‌ରେ ରଖାଗଲେ । ଓଡ଼ିଶାର ସବୁଅଞ୍ଚଳ ରାଜନୈତିକ ଅଟକବନ୍ଦୀମାନଙ୍କୁ ଆଣି ଏଠାରେ ରଖାହୋଇଥାଏ । ବହୁତ ନେତା, ବହୁତ କର୍ମୀ, ସମସ୍ତେ କଂଗ୍ରେସ-ପନ୍ଥୀ ନୁହନ୍ତି, ନାନା ରାଜନୈତିକ ମତବାଦ ଓ ଦଳର, ଯଦିଚ ଅଧିକାଂଶ ହିଁ କଂଗ୍ରେସ-ପନ୍ଥୀ । ଏତେ ଲୋକଙ୍କ ପାଇଁ ସ୍ଥାନ ଯୋଗାଇବାକୁ '୧୪'ରେ ବ୍ରହ୍ମପୁର ଜେଲ୍‌ର ହତାକୁ ବଢ଼ାଇ ନଅ ଧାଡ଼ି ଲମ୍ବ ଲମ୍ବ ଚାଳଘର ତୋଳି ରାଜବନ୍ଦୀମାନଙ୍କ ପାଇଁ "କ୍ୟାମ୍ପ୍ ଜେଲ୍" ହୋଇଥିଲା । ପ୍ରତି ଧାଡ଼ିରେ ଯୋଡ଼ାଏ ଲେଖା ଲମ୍ବ ବଖରା, ପ୍ରତି ବଖରାରେ ପ୍ରାୟ ଚାଳିଶ ଜଣ ବନ୍ଦୀ ରହିବା ପାଇଁ ବ୍ୟବସ୍ଥା । ଏଠି ପ୍ରଥମ ଶ୍ରେଣୀ ଓ ଦ୍ୱିତୀୟ ଶ୍ରେଣୀର ରାଜବନ୍ଦୀମାନେ ରଖାହେଉଥାନ୍ତି, ସବୁ ୱାର୍ଡ୍ ମିଶି ଗୋଟିଏ ହତା ହୋଇଥାଏ, ମଝିରେ ପାଚେରି କି ବାଡ଼ ନ ଥାଏ । ସନ୍ଧ୍ୟାରେ ଜେଲ୍ ଜମାଦାର ଆସି ବନ୍ଦୀମାନଙ୍କୁ ଗଣତି କରି ଚାଲି ଯାଆନ୍ତି, କିନ୍ତୁ ରାତିରେ ଘର ବନ୍ଦ କରିବା ବ୍ୟବସ୍ଥା ଉଠିଯାଇଥାଏ, ତେଣୁ ଦିନ ରାତି ଯେତେବେଳେ ଇଚ୍ଛା, ଯେଉଁ ବନ୍ଦୀ ମନ କରିବେ, ସେ ହତା ଭିତରେ ଯେଉଁଠିକି ହେଲେ ଯାଇପାରିବେ । ବନ୍ଦୀମାନଙ୍କ ରୋଷେଇ ସେମାନଙ୍କ ନିଜ ତତ୍ତ୍ୱାବଧାନରେ ହୁଏ, ପଚିଶ ପାଠିଏ ଜଣଙ୍କର ଗୋଟିଏ ଲେଖା ଅଲଗା 'ମେସ୍' । କିଏ କାହା ସଙ୍ଗେ କେଉଁ ୱାର୍ଡ୍‌ରେ ଓ କେଉଁ ବଖରାରେ ରହିବେ ତାହା ତାଙ୍କ ନିଜ ରୁଚି ଅନୁସାରେ । ଉଚ୍ଚ ଶ୍ରେଣୀର ଏହି ବନ୍ଦୀମାନଙ୍କ ପାଇଁ ଘର ଓଳେଇଦେବା, ପାଣି ଆଣି ଦେବା, ଲୁଗା କାଚି ଦେବା, ବାସନ ମାଜିବା ଆଦି କାମ କରିବା ପାଇଁ ତଳଶ୍ରେଣୀର କଇଦୀମାନଙ୍କୁ ନିଯୁକ୍ତ କରା ହୋଇଥାଏ କିନ୍ତୁ ଗୋପବାବୁ ଆଦି ଯେଉଁ ୱାର୍ଡ୍‌ରେ ରହିଥାନ୍ତି,—କଟକ ଜେଲ୍‌ରେ ଥିଲାବେଳ ପରି ବ୍ରହ୍ମପୁରରେ ବି ତାଙ୍କ ମେସ୍‌ର ନାଁ ଦେଇଥାନ୍ତି "ଗୋ-ଆ-ଗୃ" ମେସ୍ ଓ ସେହିପରି "ଗୋଆଗୃ ୱାର୍ଡ୍" । ସେ ୱାର୍ଡ୍‌ର ବନ୍ଦୀମାନେ ନିଜ କାମ ନିଜ ହାତରେ କରନ୍ତି, ପର ହାତରୁ ସେବା ନିଅନ୍ତି

ନାହିଁ, କେବଳ ରୋଷେଇ କାର୍ଯ୍ୟ କଲାବେଳେ ଦୁଇଜଣ ଲୋକ ସେମାନଙ୍କୁ ସାହାଯ୍ୟ କରୁଥିଲେ ।

୧୯୫୨ରୁ ୧୯୫୪ ଯାଏ ଶ୍ରୀ ଗୋପବନ୍ଧୁ ଚୌଧୁରୀ ବ୍ରହ୍ମପୁର ଜେଲ୍‌ରେ ରହିଲେ, ତାପରେ ୧୯୫୪ରେ ପୁଣି ଆସିଗଲେ କଟକ ଜେଲ୍‌କୁ ଓ ସେଠୁ ୧୯୫୫ରେ ଖଲାସ ହେଲେ ।

ତାଙ୍କର ଏହି ସମୁଦାୟ ଜେଲ୍ ଜୀବନ ଭିତରେ ଚାଲିଥିଲା 'ଗୋ-ଆ-ଗ୍ରା' ମେସ୍ ଓ 'ଶୁଦ୍ଧ ଖାଦ୍ୟ', ମିଶା ଜିନିଷ ଖାଇବେ ନାହିଁ, ଗହମକୁ ନିଜେ ହାତ ଚକିରେ ପେଷି ଅଟା କରିବେ, ଇତ୍ୟାଦି । କି ଉପାୟ କଲେ ସମସ୍ତ ଖର୍ଚ୍ଚ ଅନୁପାତରେ ବେଶି ଅଟା କରି ହେବ, ପରିଶ୍ରମ କମ୍ ଲାଗିବ, କାମଟି ସହଜ ହେବ, ସେଥିପାଇଁ ସେ ଓ ତାଙ୍କ ସହକର୍ମୀମାନେ ଜେଲ୍‌ରେ ଥାଇ ଚିନ୍ତା ଓ ବୁଦ୍ଧି ପ୍ରୟୋଗ କଲେ ଓ ପରୀକ୍ଷା କରି କରି ଅଟାପେଷା ଚକିରେ କେତେକ ପରିବର୍ତ୍ତନ କଲେ, ତଦ୍ଦ୍ୱାରା ସେମାନେ ଦେଖିଲେ ଯେ ସେମାନଙ୍କ ଦ୍ୱାରା ଅଟା ଉତ୍ପାଦନ ବଢ଼ି ପାରିଲା ଓ ସେମାନେ ଘଣ୍ଟାକୁ ଚାରି ପାଞ୍ଚ ସେର ଗହମ ପେଷି ପାରିଲେ । ରୁଟି ଗରମ ରହିଥିଲେ ଖାଇବାକୁ ଭଲ ଲାଗେ, ତେଣୁ କି ଉପାୟ କଲେ ସାଧାରଣ ଉପକରଣ ଲଗାଇ ସେଥିପାଇଁ ସେମାନେ ଗୋଟିଏ ବ୍ୟବସ୍ଥା କରିପାରିବେ, ସେ ବିଷୟରେ ଚିନ୍ତା ଓ ପରୀକ୍ଷା ପ୍ରୟୋଗ କଲେ । ଶେଷରେ ଯେ କାର୍ଯ୍ୟ କରିପାରିଲେ ଗୋଟିଏ "ତାପରକ୍ଷକ ବାକ୍ସ" ତିଆରି କରି । ତହିଁରେ କାଠ ଉପରେ କମ୍ବଳର ପରସ୍ତ (ଲାଇନିଂ) ଦେଲେ । ରୁଟିକରି ତା ଭିତରେ ରଖିଲେ ରୁଟି ଉଷୁମ୍ ରହିଲା । ତାଙ୍କ ଦୈନନ୍ଦିନ ଜୀବନରେ ଏହି ସାଧାରଣ କଥାଟିମାନ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ହାତପାଆନ୍ତା ସାଧାରଣ ଉପାଦାନରେ ସରଳ ଉପାୟରେ କିପରି ସାଧାରଣ ଲୋକେ ନିଜର ସାଧାରଣ ଆବଶ୍ୟକ ମେଣ୍ଟାଇବା ବିଷୟରେ ଆଗଠଁ ଆହି ଟିକିଏ ସୁବିଧା କରିପାରିବେ ଏ ବିଚାର ଓ ଏ ଢଗରେ କାର୍ଯ୍ୟ ଗାନ୍ଧୀବାଦୀ ରଚନାତ୍ମକ ଦୃଷ୍ଟିଭଙ୍ଗୀର ଅନ୍ତର୍ଭୁକ୍ତ । ତାଙ୍କ ମେସ୍‌ରେ ବଡ଼ି ଓ ଆଚାର ବି ସେମାନେ ନିଜ ହାତରେ ତିଆରି କଲେ । ସବୁଥିରେ ଯଥାସାଧ୍ୟ ସ୍ୱାବଲମ୍ବୀ ହେବା ଉଦ୍ୟମ ରଚନାତ୍ମକ କାର୍ଯ୍ୟର ବିଚାରର ମୂଳଦୁଆ । ଅନ୍ୟମାନଙ୍କ ପାଇଁ କୌତୁକପୂର୍ଣ୍ଣ ହୁଏ ଯେତେବେଳେ ଗୋପବାବୁ ଓ ଆଉଜଣେ ଦୁହେଁ ଧନୁଶର କି ବାଟୁଲିଖଡ଼ା ଧରି କାଉ ହୁରୁଡ଼େଇବାକୁ ବାହାରି ପଡ଼ନ୍ତି । ବଡ଼ି ଆଚାର ଖରାରେ ଶୁଖୁଥାଏ, ଜଗନ୍ତି । ଖରାବେଳେ ସମସ୍ତେ ବସି ସୂତା କାଟୁଥିବା ବାଛନ୍ତି, ସଙ୍ଗେ ସଙ୍ଗେ ଗାନ୍ଧୀ ସାହିତ୍ୟ ଆଲୋଚନା କରୁଥାନ୍ତି । ଜେଲ୍‌ରେ ଥାଇ ସୁଦ୍ଧା ଗୋପବାବୁ ଓ ତାଙ୍କ ସହକର୍ମୀମାନେ ନିର୍ଘଣ୍ଟ ଅନୁସାରେ ଆଶ୍ରମ-ଜୀବନଯାପନ କରୁଥାନ୍ତି । ପ୍ରାର୍ଥନା, ଶରୀରଶ୍ରମ, ବ୍ୟାୟାମ, ସୂତାକଟା, ସଦ୍‌ଗ୍ରନ୍ଥ ପାଠ, ପଢ଼ା, ଲେଖା, ବିଚାର ଓ ଆଲୋଚନା ନିୟମିତଭାବେ

ଗ୍ଭଲିଥାଏ । ଗୋପବାବୁ ଲୁଗା ବୁଣୁଥିଲେ ଓ ବଢ଼େଇକାମ ବି କରୁଥିଲେ । ଏହି ଜେଲ୍‌ଜୀବନ ଭିତରେ ଗୋପବାବୁ ବହୁତ ବହି ପଢ଼ିଲେ । ସେତେବେଳେ ସେ ଯାହାସବୁ ଲେଖୁଥିଲେ ତହିଁରୁ ତିନିଖଣ୍ଡି ଖାତା ଅଛି, ତାହା (୧) ଗୋଟିଏ ଅସମ୍ପୂର୍ଣ୍ଣ ଗୁଜରାଟି-ଓଡ଼ିଆ ଅଭିଧାନ ଓ (୨) ଗ୍ରାମସେବା କରିବାକୁ ଚାହାଁଥିବା କର୍ମୀ ପାଇଁ ପୁସ୍ତିକାଟିଏ, ସେଥିରେ ଅଛି ଯେ ସେ ବିଷୟରେ ଗାନ୍ଧୀଜୀ କଣ କହିଛନ୍ତି ଓ ଗୋପବାବୁଙ୍କ ନିଜ ଅନୁଭୂତି କଣ । କଟକ ଜେଲ୍‌କୁ ଆସି ୧୯୪୫ରେ ଆଚାର୍ଯ୍ୟ ମହାଶୟ, ଗୋପବାବୁ, ଶ୍ରୀ ଭାଗୀରଥୀ ମହାପାତ୍ର ଓ ଶ୍ରୀ ଲୋକନାଥ ମିଶ୍ର ମିଶି ଭଗବଦ୍‌ ଗୀତାକୁ ଓଡ଼ିଆ ପଦ୍ୟରେ ଅନୁବାଦ କରିଥିଲେ ।

ଜେଲ୍‌କୁ ଆସିବାର ପରେ ଗୋପବାବୁ ଓ ତାଙ୍କ ସହକର୍ମୀମାନେ ବିଚାର ଓ ଆଲୋଚନା କରୁଥାନ୍ତି ଯେ ଏହାପରେ ସେମାନେ ଜେଲ୍‌ରୁ ଖଲାସ୍ ହେଲେ କଣ କରିବେ । ଜେଲରେ, ବିଶେଷତଃ ବିଶାଳ ବ୍ରହ୍ମପୁର ଜେଲ୍‌ରେ ଯେଉଁଠି ନାନା ଭିନ୍ନ ମତାବଲମ୍ବୀ ରାଜନୈତିକ ଅଟକବନ୍ଦୀ ଥାନ୍ତି, ନାନା ଉତ୍ତେଜନାମୂଳକ ବିଚାର ଖେଳୁଥାଏ । ଗୋପବାବୁ ତହିଁରେ ନିର୍ଲିପ୍ତ ରହିଥାନ୍ତି, ଶାନ୍ତ ସମାହିତ ହୋଇ ଆପଣା ବିଚାରରେ ଅଟଳ ରହିଥାନ୍ତି । ତାଙ୍କ ମନରେ ପ୍ରଧାନ ହୋଇଥିଲା ଗାନ୍ଧୀ ବିଚାର ଓ ଗ୍ରାମ ସେବା, —ନାନା ରଚନାତ୍ମକ କାର୍ଯ୍ୟ । ଦଳ ଗଢ଼ିବା, ଦଳ ଦଳ ଭିତରେ ଦଳ କଷାକଷି ହେବା, କ୍ଷମତା ରାଜନୀତିରେ ପଶିବା, ଏସବୁ ସାତ ପାଞ୍ଚ ବିଚାର କ ଧାରଣାଠୁ ମଧ୍ୟ ସେ ନିଜକୁ ଦୂରେଇ ରଖନ୍ତି । ସେ ଭାବୁଥାନ୍ତି ଯେ ସର୍ବୋଦୟ କର୍ମୀମାନଙ୍କ ପରିବାରଙ୍କୁ ଘେନି ସେ ଗୋଟିଏ ନୂଆ, ସ୍ୱାବଲମ୍ବୀ, ଗ୍ରାମ-କୈନ୍ଦ୍ରିକ ସମାଜ ଗଢ଼ିବାରେ ଲାଗିଯିବେ ଓ ସେ ସେହି ବିଷୟରେ ଆଲୋଚନା କରୁଥାନ୍ତି । ସେ ଓ ତାଙ୍କର ସହକର୍ମୀମାନେ 'ମୌଳିକ ଶିକ୍ଷା'ର ପ୍ରସାର ବିଷୟରେ ଆଲୋଚନା ଓ ଯୋଜନା କରୁଥାନ୍ତି । ତାଙ୍କର ବିଚାର ଖେଳୁଥାଏ କିପରି ପିଲାଦିନରୁ ଆରମ୍ଭ କରି ଏକ ମୂଳରୁ ଆରମ୍ଭ କରି ସମାଜର ଏକକ ଯେ ଦେଶର ସାଧାରଣ ମନୁଷ୍ୟ, ତାହାର ବିଚାର ଓ ଆଚରଣକୁ ନୂଆ ମୋଡ଼ ଦେଇ ମହାତ୍ମାଗାନ୍ଧୀଙ୍କ ପରିକଳ୍ପନାର ସ୍ୱାଧୀନ ଅହିଂସ ସ୍ୱାବଲମ୍ବୀ ସୁସ୍ଥ ସମାଜ ଗଢ଼ା ହୋଇ ପାରିବ ।

ଜେଲ୍ ବାହାରେ ଦେଶରେ ନାନା ଉତ୍ତେଜକ ଘଟଣା, ଦୁଇମାସ ପରେ ଅଗଷ୍ଟ ବିପ୍ଳବ ଭାଙ୍ଗିଗଲେ ବି ଲୁଚି ଛପିରେ ସ୍ଥାନେ ସ୍ଥାନେ ବିକ୍ଷୋଭ, ତଳେ ତଳେ ଇଂରେଜ୍ ବିରୋଧୀ ତୀବ୍ର ବିଦ୍ୱେଷର ସ୍ରୋତ, ସରକାର ପକ୍ଷରୁ ଦମନଲୀଳା ଓ 'ଆତଙ୍କରାଜ'ର ନାନା ଘଟଣା, ତହିଁରେ ପୁଣି ଯୁଦ୍ଧକାଳୀନ ଅବସ୍ଥା, ଯୁଦ୍ଧର ଖବର, ସମୁଦ୍ର ଉପକୂଳରେ କେଉଁଠି କେଉଁଠି ଜାପାନୀ ବୋମା ପଡ଼ିବା ଖବର, ଜାପାନର ମାଡ଼ ଆସିବା ଖବର, —ଯେତେ କଟକଣା ଥାଉ ନାନା ଉପାୟରେ ନାନା ଖବର

ନାନା ଗୁଜବ ଜେଲ୍ କାନ୍ଥ ଭେଦ କରି ଶୁଭିଆସେ । ଭିତରେ ନାନା ଉତ୍ତେଜନା, କଳ୍ପନାଜଳ୍ପନା । ବ୍ରହ୍ମପୁର ଜେଲ୍‌ରେ ଅନେକ ରାଜନୈତିକ ବନ୍ଦୀ, ବିଶେଷତଃ ଯୁବକମାନେ, କେତେବେଳେ ଜେଲ୍ କର୍ତ୍ତୃପକ୍ଷଙ୍କ ପାଇଁ ନାନା ସମସ୍ୟା ସୃଷ୍ଟି କରୁଥାନ୍ତି । ୧୯୪୨ ଅକ୍ଟୋବରରେ ଓଡ଼ିଶାରେ ପ୍ରବଳ ବତାସ ହେଲା । ବ୍ରହ୍ମପୁର ସମୁଦ୍ରକୂଳ ପାଖ, ତେଣୁ ସେଠି ବତାସର ରୂପ ଆହୁରି ବେଶି ପଡ଼ିଲା, ବ୍ରହ୍ମପୁର ଜେଲଖାନାର ଗୋଟାଏ ପାଖ କାନ୍ଥ ଭାଙ୍ଗି ପଡ଼ିଲା, କେତେଜଣ ବନ୍ଦୀ ଖସି ପଳାଇଗଲେ । ସେହି ତୋଫାନରେ କ୍ୟାମ୍ପ ଜେଲ୍‌ର ଚାଳଘରଗୁଡ଼ିକର ଖୁବ୍ କ୍ଷତି ହୋଇଥିଲା ।

## ଶ୍ରୀ ଲକ୍ଷ୍ମଣ ନାଏକଙ୍କ ଫାଶି

ଗୋପବାବୁ ବ୍ରହ୍ମପୁର ଜେଲରେ ଥିଲାବେଳେ ସେଠି ଥିବା ରାଜନୈତିକ ବନ୍ଦୀମାନଙ୍କ ପକ୍ଷରେ ଗୋଟିଏ ଅବିସ୍ମରଣୀୟ ଘଟନା ହୋଇ ରହିଲା ସେତେବେଳେ ବ୍ରହ୍ମପୁର ଜେଲ୍‌ରେ କୋରାପୁଟ୍ ଜିଲ୍ଲାର ନିବିଡ଼ ଅଭ୍ୟନ୍ତର ଘନ ଅରଣ୍ୟମୟ ମାଲ୍‌କାନ୍‌ଗିରି ତାଲୁକର ଅଗଷ୍ଟ ବିପ୍ଳବର ନେତା ଶ୍ରୀ ଲକ୍ଷ୍ମଣ ନାଏକଙ୍କ ଫାଶି । ଶ୍ରୀ ଲକ୍ଷ୍ମଣ ନାଏକ ଗୋଟିଏ ଅତି ଅନୁନ୍ନତ ଆଦିବାସୀବହୁଳ ଅଞ୍ଚଳର ଲୋକ, ତାଙ୍କ ନିଜର କିଛି ଚାଷ ଜମି ଥାଏ, ନିଜେ ହଳିଆଙ୍କ ସଙ୍ଗେ ମିଶି ଚାଷ କରନ୍ତି, ଖାଇପିଇ ବର୍ଷକ ଚଳିଯାଏ । ଜୟପୁରର ଜମିଦାର (ପଦବୀ 'ମହାରାଜା') ତାଙ୍କ ବାପାଙ୍କୁ ଗାଁର 'ମୁସ୍ତାଜାର ନାଇକ' ପଦରେ ନିଯୁକ୍ତ କରିଥିଲେ, ତାପରେ ତାଙ୍କୁ, 'ନାଇକ', ଗାଁର ମୁଖିଆ । ତାଙ୍କ କାମ ପ୍ରଜାଙ୍କଠୁ ଖଜଣା ନେଇ 'ରଜାଘରେ' ଅର୍ଥାତ୍ ଜମିଦାରଙ୍କ ସମ୍ପୃକ୍ତ କର୍ମଚାରୀଙ୍କୁ ଦେଇ ଦେବା ଓ ଯେତେବେଳେ କୌଣସି କର୍ମଚାରୀ ଗସ୍ତରେ ଆସିବେ, ତାଙ୍କ ପାଇଁ ଖାଦ୍ୟ ଓ ରସଦପତ୍ର ଯୋଗାଡ଼ କରିଦେବା । ସେ ଗାଁର ମୁଖିଆ ଓ ମୁରବିସ୍ଥାନୀୟ ବୋଲି ଗାଁଲୋକଙ୍କ ଦୃଷ୍ଟିରେ ତାଙ୍କର ସମ୍ମାନ ଓ ପ୍ରତିପତ୍ତି ଥାଏ । ଶ୍ରୀ ଲକ୍ଷ୍ମଣ ନାଏକ ନିଜ ଚେଷ୍ଟାରେ ଓଡ଼ିଆ ପଢ଼ିଥିଲେ । ସେ ବୁଝିଥିଲେ ତାଙ୍କ ବାପାଙ୍କ ପରି ସୁଖରେ ଜୀବନ ବିତାଇ ପାରିଥାନ୍ତେ । ସେ ଶାନ୍ତ, ବିନୀତ, ଅମାୟିକ, ସରଳ, ନିରାଡମ୍ବର ମଣିଷଟିଏ, ଖୁବ୍ ଜନପ୍ରିୟ ଥିଲେ ଓ ଜମିଦାରଙ୍କ କର୍ମଚାରୀମାନେ ବି ତାଙ୍କୁ ପ୍ରଶଂସା କରୁଥିଲେ । ଶ୍ରୀ ଲକ୍ଷ୍ମଣ ନାଏକ ମୂଳରୁ ପରୋପକାରୀ ଥିଲେ, ଲୋକଙ୍କ ଦୁଃଖ ଦେଖିଲେ ସହି ପାରନ୍ତି ନାହିଁ, ସାହାଯ୍ୟ କରନ୍ତି । ସେ କିଛି ଦେଶୀ ଚିକିତ୍ସା ବି ଶିଖିଥିଲେ ଓ ସୁବିଧା ପାଇଲେ ଜଡ଼ିବୁଟି ଔଷଧ ଦେଉଥିଲେ । ସ୍ୱଦେଶପ୍ରୀତି ଓ ସ୍ୱାଧୀନତା ଆନ୍ଦୋଳନରେ ସେ କାଳକ୍ରମେ ଉଦ୍‌ବୁଦ୍ଧ ହୋଇ ଉଠିଲେ । କୋରାପୁଟ୍ ଜିଲ୍ଲାରେ ସେତେବେଳେ କଂଗ୍ରେସ ନେତାମାନଙ୍କ ଭିତରେ ପ୍ରଧାନ ଥିଲେ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ, ଶ୍ରୀ ସଦାଶିବ ମିଶ୍ର, ଶ୍ରୀ ରାଧାମୋହନ ସାହୁ ଆଦି ।

ଶ୍ରୀ ଲକ୍ଷ୍ମଣ ନାଏକ ସେହିମାନଙ୍କ ଠାରୁ ପରାମର୍ଶ ନେଲେ, ଜୟପୁର ପାଖେ ନୂଆଗାଁରେ ଯେଉଁ କଂଗ୍ରେସ ଶିବିର ହେଲା ତହିଁରେ ଯୋଗଦେଲେ, ଗାନ୍ଧୀ ବିଚାର ସମ୍ପର୍କୀୟ ଲେଖାମାନ ପଢ଼ିଲେ ଓ ବୁଲି ବୁଲି ସ୍ୱାଧୀନତା ଆନ୍ଦୋଳନର ବିବିଧ ସଂଗଠନ ଓ କାର୍ଯ୍ୟ କରିବାକୁ ଲାଗିଲେ । ପ୍ରକାର ପ୍ରକାର କର୍ମଚାରୀଙ୍କ ଜୁଲମ୍ ଓ 'ମାମୁଲ୍'ମାନ ବନ୍ଦ କରାଇବା, ହାଟମାନଙ୍କରେ ଅନ୍ୟାୟ ଟିକସ ଆଦାୟ ବନ୍ଦ କରାଇବା, ବେଠି ବନ୍ଦ କରାଇବା, ମଦ ଗଞ୍ଜେଇ ଅଫିମ ଦୋକାନମାନ ବନ୍ଦ କରାଇବା, ଲୋକଙ୍କ ଭୟ ଛଡ଼ାଇବା, ଲୋକଙ୍କୁ ସଂଗଠିତ କରାଇବା, ଲୋକଙ୍କ ଭିତରେ ଭାରତର ସ୍ୱାଧୀନତା ପାଇଁ ଆବେଗମୟ କାମନା ସୃଷ୍ଟି କରାଇବା, ସ୍ୱାଧୀନତାର ବାଣୀ ପ୍ରଚାର କରି ବୁଲିବା, ଏହିସବୁ ଥିଲା ତାଙ୍କ କାର୍ଯ୍ୟାବଳୀର ଅନ୍ତର୍ଭୁକ୍ତ । ଲୋକଙ୍କ ଭିତରେ କଳିକଜିଆ ଲାଗିଲେ ସେ ନିଜେ ତାକୁ ତୁଟାଇ ଦେଉଥିଲେ, ତାଙ୍କ ପ୍ରତି ଲୋକଙ୍କର ବିଶ୍ୱାସ ଥିଲା । ଆନ୍ଦୋଳନ ବେଳ ଆସିଲା, ସେ ପ୍ରଚାର କରି ବୁଲିଲେ—"ସରକାର କି ସରକାରୀ ଲୋକଙ୍କ ସଙ୍ଗେ ସହଯୋଗ କର ନାହିଁ, 'ଯୁଦ୍ଧ ଚାନ୍ଦା' ଦିଅ ନାହିଁ, ଯୁଦ୍ଧକୁ ସାହାଯ୍ୟ କର ନାହିଁ, ସରକାରକୁ କି ସରକାରୀ ଆଇନ୍‌କୁ ମାନ ନାହିଁ", ଇତ୍ୟାଦି । ବିଚାରରେ, କାର୍ଯ୍ୟରେ ସେ ଶାନ୍ତିପ୍ରିୟ ଓ ଅହିଂସ, ସରଳ ନିରୀହ ମଣିଷଟିଏ । ବୁଲି ବୁଲି ବଣ ପାହାଡ଼ ଭେଦି ବହୁତ ଦୂରକୁ ଦୂରକୁ ଯାଆନ୍ତି, ବହୁତ ପରିଶ୍ରମ କରନ୍ତି, ନାନା ଦୁଃଖ କଷ୍ଟ ସହନ୍ତି କିନ୍ତୁ ଲାଗି ରହିଥାନ୍ତି । ନାନା ସ୍ଥାନରେ ସଭା କରୁଥାନ୍ତି । ପ୍ରଶଂସା ପାଇବା, ନେତା ହେବା, ପ୍ରତାପ କି ପ୍ରତିପତ୍ତି ଅର୍ଜିବା କେବେ ତାଙ୍କର କଳ୍ପନାରେ ବି ନ ଥିଲା, ନିଜକୁ ମଣୁଥିଲେ ଦେଶ ପାଇଁ ଉତ୍ସର୍ଗୀକୃତ ସାଧାରଣ କର୍ମୀଟିଏ । ସେ ଅତ୍ୟନ୍ତ ଜନପ୍ରିୟ ହେଲେ । ଏଣେ,—ଯେଉଁମାନେ ଶୋଷକ, ଅତ୍ୟାଚାରୀ, ଜୁଲମ୍‌ବାଜ, 'ମାମୁଲ୍' ପିପାସୁ, ଯେପରି ସାହୁକାରମାନେ, ଧନୀମାନେ, ବ୍ୟବସାୟୀମାନେ, ବିଶେଷତଃ ସେହିପରି ସରକାରୀ ଲୋକେ ଯାହାଙ୍କ ଲାଭ-ଲୋଭରେ ବାଧା ପଡ଼ିଲା, ସେମାନେ ସମସ୍ତେ ଏହି ମରଳ, ସରଳବିଶ୍ୱାସୀ, ନିର୍ଭୀକ ମଲାମୁଣ୍ଡି ଆଡ଼ି ଉପରେ ରକ୍ତଚାଡ଼ିଲା ଦେଖାଉଥାନ୍ତି ।

କ୍ରମେ ଏପରି ଯୋଗପଡ଼ିଲା ଯେ ମାଲ୍‌କାନ୍‌ଗିରି ତାଲୁକ୍‌ର ମାଥିଲି ଥାନାକୁ ଆକ୍ରମଣ କରିବାକୁ ଯେତେବେଳେ ଦଳେ ଲୋକ ଗଲେ, ଗୋଳମାଳରେ ଜଣେ ଫରେଷ୍ଟ୍ ଗାର୍ଡ୍ ମଲେ, ପୁଲିସ୍ ଗୁଳିରେ ଜନତା ଭିତରୁ ଚାରିଜଣ ମଲେ, ବହୁତ ଲୋକଙ୍କ ବିରୁଦ୍ଧରେ ପୁଲିସ୍ ମକଦ୍ଦମା କଲେ ଓ ବହୁତ ଲୋକଙ୍କୁ ଦଣ୍ଡ ହୋଇଗଲା, ସେହି ମକଦ୍ଦମାରେ ପ୍ରଧାନ ଆସାମୀ ବୋଲି ଧାର୍ଯ୍ୟ ହୋଇ ଶ୍ରୀ ଲକ୍ଷ୍ମଣ ନାଏକଙ୍କୁ ଫାଶିଦଣ୍ଡ ଆଦେଶ ହାଇକୋର୍ଟରେ କାଏମ ରହିଲା । ବ୍ରହ୍ମପୁର ଜେଲ୍‌ରେ ତୋପବାରୁ ଥିଲାବେଳେ ସେହି ଆଦେଶ ପାଳନ କରାଯାଇଥିଲା ।

ଶେଷଯାକେ ଶ୍ରୀ ଲକ୍ଷ୍ମଣ ନାଏକ ଥିଲେ ନିର୍ଭୀକ, ଈଶ୍ୱରବିଶ୍ୱାସୀ, ସ୍ୱଚ୍ଚନ୍ଦର ସ୍ୱାଧୀନତାପ୍ରେମୀ, ମହାତ୍ମା ଗାନ୍ଧୀଙ୍କ ପ୍ରତି ତାଙ୍କର ଗଭୀର ଅନୁରକ୍ତି । ଜେଲ୍ କୋଠରୀରେ ସେ ଶ୍ରୀ ଜଗନ୍ନାଥ ଦାସଙ୍କ ଭାଗବତ ବହି ପଢ଼ୁଥିଲେ । ଆବୃତ୍ତି କରୁଥିଲେ । ତାଙ୍କୁ ଫାଶି ଦିଆଯିବ ଶୁଣି ବ୍ରହ୍ମପୁର ଜେଲ୍‌ରେ ସବୁ ରାଜବନ୍ଦୀ ମର୍ମାହତ, ଶୋକାଚ୍ଛନ୍ନ ଓ ଉତ୍ତେଜିତ ହେଲେ । ସେମାନେ ସମସ୍ତେ ରାତିରେ ଜେଗି ରହି ରାତିସାରା ପ୍ରାର୍ଥନା କରିଥିଲେ । ରାତି ଶେଷ ହୋଇ ଆସୁଥାଏ, ଫାଶି ଦେବାବେଳ ପାଖ ହୋଇ ଆସୁଥାଏ ଜାଣି ସେମାନେ ସମସ୍ତେ ଉତ୍ତେଜିତ ହୋଇ ସମସ୍ୱରରେ ବାରମ୍ବାର ଧ୍ୱନି ଦେଉଥିଲେ ।

ତାପରେ ଗୋପବାବୁ ଅତି ଧୀର ଓ କରୁଣ ସ୍ୱରରେ କହିଲେ, "ଆଉ କାହିଁକି ? ତାକୁ ଶୁଣାଯିବ ନାହିଁ ।"

## ଏକଡାଲିରଣ

୧୯୪୪ ଜୁଲାଇ ମାସରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ କଟକ ଜେଲରୁ ଖଲାସ ହେଲେ, କିନ୍ତୁ ତାଙ୍କ ଉପରେ କେତେକ ସରକାରୀ ନିଷେଧ-ଆଜ୍ଞା ଜାରି କରା-ହୋଇଥାଏ ଓ ସେ ଜେଲ୍‌ରୁ ବାହାରି ନଜେ ଜାଣି ଜାଣି ସେ ନିଷେଧ ଆଜ୍ଞାକୁ ଭାଙ୍ଗିଲେ, ଫଳରେ ସେ ପୁଣି ଗିରଫ ହେଲେ ଓ ଏହିପରି ଦୁଇଥର ତାଙ୍କୁ ଛ' ମାସ ଲେଖାଁ ଜେଲ୍ ଆଦେଶ ହେଲା । ସେ ସେହି କଟକ ଜେଲ୍‌ରେ ରଖାଗଲେ ଓ ୧୯୪୫ ଜୁନ୍ ଆଡ଼କୁ ଶେଷଥର ଜେଲ୍‌ରୁ ଖଲାସ ହେଲେ । ସେ ଆଉ ଜେଲ୍ ଯାଇନାହାନ୍ତି ।

ତିନିବର୍ଷ ଜେଲ୍-ଜୀବନ ପରେ ସେ ଯାଇ ବରୀରେ ପହଞ୍ଚିଲେ, ସମୁଦାୟ ପରିବାରଟି ପୁଣି ସେଠି ଏକାଠି ହେଲେ । କିନ୍ତୁ ପୂର୍ବର 'ସେବାଘର' ଆଶ୍ରମ ଆଉ

ନ ଥାଏ, ୧୯୪୨ ଅଗଷ୍ଟ ଆନ୍ଦୋଳନବେଳେ ଯେତେବେଳେ ପୁଲିସ୍ ଫଣ୍ଡ୍ ଯୋନ ଏସ୍. ଡ. ଓ. ଖାଁ ସାହେବ୍ ମୁସାହେବ୍ ଆସି ପହଞ୍ଚି ଯାଇଥିଲେ ସେହି ସରକାରୀ ଦମନ କାର୍ଯ୍ୟାନୁଷ୍ଠାନ ଫଳରେ ଧ୍ୱଂସ ହୋଇଥାଏ, ଖାଲି ଭିହ ପଡ଼ି ରହିଥାଏ । ତେଣୁ ସେମାନେ ଆଉ ସେଠି ରହିପାରିଲେ ନାହିଁ । ବଗ୍ଗିର ଅରଙ୍ଗାବାଦ୍ ଗାଁରେ କଂଗ୍ରେସ୍ କର୍ମୀ ଗୋବର୍ଦ୍ଧନ ପୃହାଙ୍କର ଘର ଆଗରେ ଦେଢ଼ବଖରା ବାହାରଘର ଥାଏ, ସେମା ଦେବା, ଗୋପବାବୁ ସେହି ଘରେ ରହିଲେ ।

## ଗୋପବାବୁ 'ସ୍ୱାବଲମ୍ବୀ' ହେଲେ

ଏଥର ବଗ୍ଗି ଫେରିଆସି ଗୋପବାବୁ ନିଷ୍ପତ୍ତି ନେଲେ ଯେ ଏଣିକି ସେ ନିଜ ଶରୀର-ଶ୍ରମରେ ହିଁ ବଞ୍ଚିବେ, ଅନ୍ୟ କାହାଠୁଁ ସାହାଯ୍ୟ ନେଇ ଚଳିବେ ନାହିଁ, ଅନ୍ୟ କାହାର ଖାଇବେ ନାହିଁ । ସେ ନିଜେ ପ୍ରତିଦିନ ସୂତାକାଟି ରୋଜଗାର କରନ୍ତି, ତାହା ଉପରେ ପ୍ରତିଦିନ ପୂରା ଆଠଘଣ୍ଟା ଲେଖାଁ ମାଟି ହାଣନ୍ତି ବା ହଳ କରନ୍ତି । ଅତି ଅଳ୍ପ ଖର୍ଚ୍ଚରେ ଚଳନ୍ତି । ତାଙ୍କ ଲୁଗା ତ ନିଜ ହାତକଟା ସୂତାରେ ତିଆରି ହୁଏ, ନିଜ ହାତରେ ବୁଣନ୍ତି । ସେ ଚିନି ନ ଖାଇ ଗୁଡ଼ ଖାଆନ୍ତି । କଣ୍ଟ୍ରୋଲ୍ ଜିନିଷ ବୋଲନ୍ତେ ଏକମାତ୍ର କିରାସିନ ହିଁ କିଣିବାକୁ ପଡ଼େ, ସେ ବାବଦ ଖର୍ଚ୍ଚକୁ କମାଇବା ପାଇଁ ବେଳ ନ ବୁଡ଼ୁଣୁ ଖିଆପିଆ କାମ ଶେଷ କଲେ ଓ ଆଲୁଅ ନ ଜାଳି ଅନ୍ଧାରରେ ସୂତା କାଟିଲେ । ଅଲିକାତ୍ରମରେ ଥିଲାବେଳେ ଅନ୍ଧାରରେ ସୂତା କାଟିବା ଅଭ୍ୟାସ କରିଥିଲେ । ଖର୍ଚ୍ଚ କମାଇବାକୁ ଯାଇ ବେଶି ଚିଠି ଲେଖିବା ବନ୍ଦ କଲେ । କୋରାପୁଟ୍ ଜିଲ୍ଲା କୁନ୍ଦେନ୍ଦ୍ରିରେ ନାନା ରଚନାତ୍ମକ କାର୍ଯ୍ୟ କରୁଥିବା ତାଙ୍କର ପ୍ରିୟ ଶିଷ୍ୟ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ସେହିକଥା ସେ ଗୋଟିଏ ପୋଷ୍ଟକାର୍ଡ୍ ଚିଠିରେ ଜଣାଇଦେଇ ଲେଖିଥିଲେ ଯେ ଏଣିକି ସେ ଆଉ ବେଶି ଚିଠି ଲେଖି ପାରିବେ ନାହିଁ, ଦରକାର ନାହିଁ କି ପଇସା ବି ନାହିଁ ।

ଜେଲ୍‌ରେ ଥିଲାବେଳେ ବି ସେ ଭାବୁଥିଲେ ଯେ ଖାଲି "ଆମେ ବି ସାଧାରଣ କୃଷୀ ମୂଲିଆଙ୍କ ପରି ଶ୍ରମ କରୁଛୁଁ ବୋଲି" ଘଣ୍ଟାଏ ଅଧଘଣ୍ଟାଏ ଖଟି ନମୁନା ଦେଖାଇବାକୁ ନୁହେଁ, ସେମାନଙ୍କ ସଙ୍ଗେ ସମ୍ପୂର୍ଣ୍ଣ ଏକରୂପ ହେବା ଦରକାର ଓ ସେମାନଙ୍କ ପରିଶ୍ରମ କରି ନିଜ ଅର୍ଜନରେ ପୋଷି ହେବା ଦରକାର । ତାହେଲେ ଯାଇ ସେମାନଙ୍କ ମନ ଓ ଅବସ୍ଥାକୁ ବୁଝି ହେବ, କର୍ମୀର କଥା ଉପରେ ସେମାନଙ୍କ ବିଶ୍ୱାସ ଆସିବ, ସ୍ୱରାଜ୍ୟ ପାଇଁ ଉଦ୍ୟମ ସଫଳ ଓ ସାର୍ଥକ ହେବ ଓ ଅହିଂସ, ସ୍ୱାବଲମ୍ବୀ ସମାଜ ଗଢ଼ି ହେବ । ବ୍ରହ୍ମପୁର ଜେଲ୍‌ରେ ଥିବାବେଳେ ସେ ତାଙ୍କର 'କୃଷୀ ମୂଲିଆ ଗାନ୍ଧୀ' ପୁସ୍ତକଟି ଲେଖିଥିଲେ ଓ ତହିଁରେ ତାଙ୍କର ଏହି ଦୃଷ୍ଟିକୋଣ ଜଣାପଡ଼େ । ଜୀବନର

ବିକାଶ ପାଇଁ ସେ 'Bread Labour', 'ଶରୀର ଶ୍ରମ' ଆଦି ବିଷୟକୁ ଅଗ୍ରାଧିକାର ଦେଉଥିଲେ ।

ପୂର୍ବେ ବି ତାଙ୍କର ଏହି ଧାରଣା ଥିଲା ଓ ସେ, ତାଙ୍କ ପରିବାର, ସାଧାରଣ ଶ୍ରମିକଙ୍କ ପରି ଶ୍ରମ କରୁଥିଲେ, ସେହିପରି ଜୀବନ ବଞ୍ଚୁଥିଲେ, ସେମାନଙ୍କଠାରୁ ଅଧିକା ସୁଖ ସ୍ୱାଚ୍ଛନ୍ଦ୍ୟ ଖୋଜୁ ନ ଥିଲେ । ସେପରି ମୂଲିଆ ମୂଲିଆଣୀ ହୋଇ ଖଟି ସେମାନେ ପରଖି କରି ପାରିଥିଲେ କେତେଘଣ୍ଟା ଖଟିଲେ କେତେ କାମ ହୁଏ, ଦୈନିକ କେତେ ମୂଲ ମୂଲିଆଙ୍କୁ ମିଳେ, କେତେ ମିଳିଲେ ସେମାନେ ପୋଷି ହେବେ ।

କିନ୍ତୁ ଏହି ଦ୍ୱିତୀୟଥର ବଡ଼ି ଜୀବନରେ ତାଙ୍କର କାର୍ଯ୍ୟକ୍ରମର ପ୍ରଧାନ ବୈଶିଷ୍ଟ୍ୟ ହିଁ ହେଲା ଶରୀର ଶ୍ରମ କରି ସ୍ୱାବଲମ୍ବୀ ହେବା । ବଡ଼ିଠୁ ଅଧମାଇଲ୍ ଦୂରରେ ଯେଉଁଠି ପୂର୍ବର 'ବୁଧେଇ କେନାଲ' ପୋତିହୋଇ ପଡ଼ିଥାଏ, ପୂର୍ବର ବ୍ରହ୍ମାଣୀ ନଈ ଧାରଟିଏ ପୋତିହୋଇ ପଡ଼ିଥାଏ, ସେଠି ଋଷଯୋଗ୍ୟ ପ୍ରାୟ ୭° ଏକର ଜମି କିଣିବାକୁ ମିଳୁଥାଏ, ଗୋପବାବୁ ସେଠି ଅଳ୍ପ ଜମି କିଣିଲେ, ନିଜ ହାତରେ ହଳ ପେଲି ମାଟି ହାଣି ନିୟମିତ ଭାବେ ଦୈନିକ ଆଠଘଣ୍ଟା ଦଶଘଣ୍ଟା ଯାକେ ମହା ଉତ୍ସାହରେ ଖଟିବାକୁ ଲାଗିଲେ, ଋଷ କଲେ । ରମା ଦେବୀ ବି ତାଙ୍କ ସଙ୍ଗେ ମିଶୁଥାନ୍ତି । ଏ କାର୍ଯ୍ୟ 'ବାବୁମାନଙ୍କ ସଉକ୍' ନ ଥିଲା, ଖବର କାଗଜରେ ଯେପରି ଫଟୋ ଉଠେ, ନା ଡାକ୍ ଲେକେ 'ଶ୍ରମଦାନ' କରୁଛନ୍ତି, ତା ନ ଥିଲା, ସେ ଥିଲା ନିତା ବୃତ୍ତି-କାମ, ଦେଶର ସାଧାରଣ ଋଷୀଟିଏ ଯେପରି ଋଷ କରି ନିଜ ମେହେନତରେ କୁଟୁମ୍ବ ପୋଷେ, ସେହି କାମ, 'ସ୍ୱାବଲମ୍ବୀ' ଜୀବନଯାତ୍ରା ନିର୍ବାହ ।

'ସ୍ୱାବଲମ୍ବୀ ଋଷ' ସହିତ 'ସ୍ୱାବଲମ୍ବୀ ସୂତା କଟା' ସେ ଧରିଥାନ୍ତି । ସୂତା କାଟୁଥିଲେ ଘଣ୍ଟା ଘଣ୍ଟା ଯାକେ, ଯେପରି ତହିଁରେ ସବୁ ଲୁଗାପଟା ଆବଶ୍ୟକ ମେଣ୍ଟେଇ ହେବ, ଅର୍ଜନ କରି ହେବ, ସେ ହୋଇପାରିବ 'ବୃତ୍ତି', ଲୋକଦେଖାଣିଆକୁ ଅଳ୍ପ ସମୟ ପାଇଁ ନୁହେ । ଲୁଗାପଟାରେ ମାଟି ଲାଗିଯିବ ବୋଲି ଡରି ଡରି ଜଗି ଜଗି ଅଧଘଣ୍ଟାଏ ମାଟିହଣା କି ମାଟିବୁହା କରିବା, ଅଧଘଣ୍ଟାଏ ଖଣ୍ଡେ ସୂତା କାଟି ପକାଇବା, —ଏସବୁ କାର୍ଯ୍ୟକୁ ସେ ହସରେ ଉଡ଼ାଉଥିଲେ ।

କର୍ମୀମାନଙ୍କୁ ସେ ଏହି ଆଦର୍ଶରେ ଅନୁପ୍ରାଣିତ କରୁଥିଲେ । ଏହାର ଦୃଷ୍ଟାନ୍ତ ଥରେ ପ୍ରାଦେଶିକ କର୍ମୀ ସମ୍ମିଳନୀମାନଙ୍କରେ । ସେଠି ଖାଲି ବକ୍ତୃତା, ଆଲୋଚନା, ପ୍ରସ୍ତାବ ହେଲା ତା ନୁହେଁ, ପ୍ରତିଦିନ ସକାଳଓଳି ୪ ଘଣ୍ଟା ନିତା ଦେହ ମେହେନତ, ନହିରେ ଆଦ ରୋହିଏ ପୋଖରୀ ଖୋଳିବା ଓ ମାଟିବୁହା । ପ୍ରତିଦିନ ଯେତେ କାମ ହୁଏ ତାକୁ ହିସାବ କରିଯାଏ, କେତେ ଘନଫୁଟ୍ ମାଟିକାମ ହେଲା, ଦକ୍ଷିଣୀ ମୂଲିଆ

ଯଦି କାମ କରୁଥାନ୍ତେ ତେବେ ସେମାନଙ୍କ କାମ କେତେଜଣ ମୂଲିଆ ଏକାଦିନକେ କରୁଥାନ୍ତେ, ଠିକାଦାର୍ ମୂଲିଆଙ୍କୁ ଦୈନିକ ମଜୁରି କେତେ ଦିଏ, ସେହି ଅନୁସାରେ ସମୁଦାୟ କେତେ ମଜୁରି ମିଳିଥାନ୍ତା । ତାହା ସଙ୍ଗେ ସଙ୍ଗେ ହିସାବ କରାଯାଏ, ସେଦିନ ଖାଇବା ଖର୍ଚ୍ଚ କେତେ ପଡ଼ିଛି, ଅତଏବ ସେ ଖର୍ଚ୍ଚର କେତେଭାଗ ଶ୍ରମ ଅର୍ଜନରୁ ମିଳିଛି । ଯେଉଁଦିନ ଦୁଇପଟ ହିସାବ ସମାନ ହୁଏ ସେଦିନ କର୍ମୀମାନଙ୍କର ଭାରି ଆନନ୍ଦ । ପ୍ରତି ସମ୍ମିଳନୀରେ ଏହିପରି ଆଠ ଦଶଦିନ ଲେଖାଏଁ 'ଶ୍ରମ-ଶିବିର' ହୁଏ । ପ୍ରତିଦିନ ଉପରଓଳି ଆଲୋଚନା ଆଦି ହୁଏ ।

ଆଗରୁ ସେ 'ବସ୍ତ୍ର ସ୍ୱାବଲମ୍ବୀ' ସମ୍ମିଳନୀ ଡକାଇଥିଲେ । ଜେଲ୍‌ରୁ ଫେରି ୧୯୪୫ ଅକ୍ଟୋବର ମାସରେ କେନ୍ଦ୍ର ପାଟଣାରେ ସ୍ୱାବଲମ୍ବୀ କମିଟିର ବୈଠକକୁ ଗଲେ । ଆଚାର୍ଯ୍ୟ ମହାଶୟ, ଶ୍ରୀ ଗୋକୁଳାନନ୍ଦ ମହାନ୍ତି, ଶ୍ରୀ ମନମୋହନ ଚୌଧୁରୀ ପ୍ରଭୃତି ଥାଇ ଗୋଟିଏ କମିଟି ଗଢ଼ାଗଲା ଓ ନିୟମାବଳୀ ତିଆରି କରିବାକୁ ସେ କମିଟିକୁ କୁହାଗଲା । ଗୋଟିଏ 'ଗ୍ରାମସେବକ ସମାଜ' ଗଢ଼ିବାକୁ ପ୍ରସ୍ତାବ ହୋଇଥାଏ । କମିଟି ଯେଉଁ ନିୟମାବଳୀ କରିଦେଲେ ତାକୁ ପ୍ରତ୍ୟେକ ଗ୍ରାମ-କର୍ମୀଙ୍କ ପାଖକୁ ପଠାଇ ଦିଆଗଲା ।

## କର୍ମୀ ତାଲିମ୍

ପ୍ରଧାନ କାମ, କର୍ମୀ ତାଲିମ । କର୍ମୀକୁ ଗଢ଼ିବା, ବାଟ ବତେଇବା । ଜେଲ୍‌ରେ ଥିଲାବେଳେ '୪୫ରେ ସେଥିପାଇଁ ସେ ପୁସ୍ତିକାଟିଏ ଲେଖିଥିଲେ । ପାଣ୍ଡୁଲିପିର ମୁଖବନ୍ଧରେ ଥିଲା,—"ଗାଁରେ ଗାଁ କର୍ମୀକୁ କଣ କରିବାକୁ ହେବ, ଗାଁ କାମ କିପରି ଆରମ୍ଭ କରିବାକୁ ହେବ, ଇତ୍ୟାଦି ବିଷୟରେ ଗାନ୍ଧୀ କଣ କହିଛନ୍ତି ଏବଂ ସେ ବିଷୟରେ ମୋର ନିଜର କଣ ଅନୁଭୂତି ଅଛି, ତାହା ଲେଖି ପକାଇବାକୁ ମୋର କେତେକ ସାଥୀ ଅନେକଦିନୁ ଲଗାଇଛନ୍ତି ।

ପୁସ୍ତିକାଟିରେ ତିନୋଟି ବିଭାଗ ଅଛି : (୧) ବର୍ତ୍ତମାନ ୧୯୩୪ରୁ ୧୯୪୫ ମଧ୍ୟରେ ଗ୍ରାମସେବା ସମ୍ବନ୍ଧରେ ଗାନ୍ଧୀଙ୍କର କେତେକ ଲେଖା ଓ କଥାବାର୍ତ୍ତା ସଂଗ୍ରହ କରି ଏ ପୁସ୍ତକର ପ୍ରଥମ ଭାଗରେ ଦେଲି । ... (୨) ଦ୍ୱିତୀୟ ଭାଗରେ ଗାଁ କାମ ସମ୍ବନ୍ଧରେ କେତେକ ଟିପ୍ପଣୀ ମଧ୍ୟ ଦିଆଗଲା । ଏ ଟିପ୍ପଣୀ ଉପରେ ନିଜର ଅନୁଭୂତିର ଛାପ ପଡ଼ିଛି । ଦଶବର୍ଷ ହେଲା ଗାଁରେ ଯାଇ ରହିଲେ ସୁଦ୍ଧା ଅନୁଷ୍ଠାନଗତ କାମରେ ଜଡ଼ିତ ହୋଇ ପ୍ରତ୍ୟକ୍ଷ ଗାଁ କାମ ବା ଗାଁ ଲୋକଙ୍କ ପ୍ରତ୍ୟକ୍ଷ ନିରବଚ୍ଛିନ୍ନ ସମ୍ବନ୍ଧରୁ ବଞ୍ଚିତ ହୋଇଛି । ତେବେ, କର୍ମୀମାନଙ୍କର କାମ ଦେଖିଛି ଏବଂ ଏଥର ଦୀର୍ଘ ଜେଲ୍‌ବାସରେ କର୍ମୀମାନଙ୍କଠାରୁ ତାଙ୍କ ନିଜର ଅନୁଭୂତି ଶୁଣିବାର ସୁଯୋଗ ପାଇଛି ।

ଏସବୁର ଭାର ମଧ୍ୟ ଏ ଟିପ୍ପଣୀ ଉପରେ ନ୍ୟସ୍ତ ପଡ଼ୁଛି। (ଗ) ପୁସ୍ତିକାର ତୃତୀୟ ଭାଗରେ ଗାଁ କର୍ମୀଙ୍କ ତାଲିମ୍ ପାଇଁ ଚରଖା ସଂଘ ଯେଉଁ ଶିକ୍ଷାକ୍ରମ କରିଛି ତାହା ଓଡ଼ିଆରେ ଦିଆଗଲା।"

ଗାନ୍ଧୀଜୀଙ୍କ ନୂଆ ଯୋଜନା ଅନୁସାରେ "ଅଖିଳ ଭାରତ ଚରଖା ସଂଘ" ଗୋଟିଏ ବର୍ଷିକିଆ ତାଲିମ୍ ବ୍ୟବସ୍ଥା ଚାଲୁ କରିଥାନ୍ତି। ପୁସ୍ତିକାର ତୃତୀୟ ଭାଗରେ ତାହାର ଶିକ୍ଷାକ୍ରମ ବିଷୟରେ ଉଲ୍ଲେଖ ଅଛି। ଆଗରୁ ବଙ୍କରେ ଶ୍ରୀ ବ୍ରଜମୋହନ ସିଂହ (ଛୋଟୁବାବୁ)ଙ୍କ ପରିଚାଳନାରେ ଚାଲୁଥିବା 'କର୍ମୀ ତାଲିମ୍ କେନ୍ଦ୍ର'ରେ ଓ ଶ୍ରୀମତୀ ରମା ଦେବୀଙ୍କ ଦ୍ୱାରା ପରିଚାଳିତ 'ନାରୀକର୍ମୀ ତାଲିମ୍ କେନ୍ଦ୍ର'ରେ କର୍ମୀମାନଙ୍କୁ ନାନା ବିଷୟରେ ତାଲିମ୍ ଦିଆ ହେଉଥିଲା।

ଗୋପବାବୁ କର୍ମୀମାନଙ୍କ ତାଲିମ୍ ପ୍ରତି ବହୁତ ଧ୍ୟାନ ଦେଉଥିଲେ, ଜଣେ ସେ ବିଷୟରେ ବହୁତ ଭାବୁଥିଲେ। ପୁସ୍ତିକାର ତୃତୀୟ ଭାଗରେ କର୍ମୀଙ୍କ ତାଲିମ୍ ବିଷୟରେ ଥିଲା :

(୧) ରୋଷେଇ—ସରଘରର ନାନା ବ୍ୟବସ୍ଥା, ଖାଦ୍ୟଶସ୍ୟ ପାଛୁଡ଼ିବା, ଶୁଖାଇବା ବାଛିବା ଆଦି, ନାନା ଉପାୟରେ ଚାଉଳ ଛଡ଼ାଣ, ପେଷିବା, ରୋଷେଇ ଘର, ଚୁଲି, ପରିବା କାଟିବା, ରାନ୍ଧିବାରେ ନାନା ଯନ୍ତ୍ର ଓ ଉପାୟ, ପରଶା, ଖାଇବା ନିୟମ ଓ କ୍ରମ, ବାସନମଜା, ବଜାର ସଉଦା କରିବା।

(୨) ସଫେଇ—ଶାରୀରିକ ସଫେଇ, ପରିବା ସଫେଇ, ରୋଷେଇ ସଫେଇ, ଲୁଗା ସଫେଇ, ଗାଁ ସଫେଇ।

(୩) କୃଷି, (୪) ଗୋପାଳନ, —ଟିକିନିଖି କଥା।

(୪) ବସ୍ତ୍ରବିଦ୍ୟା—ସୂତାକଟା, ଧୁଣା, ବଳା, ସିଲେଇ, ତାକୁଡ଼ି ସିଧା କରିବା, ଅନ୍ୟାନ୍ୟ।

(୫) ଶାସ୍ତ୍ରଜ୍ଞାନ—[୧] ଗଣିତ—ସୂତା ନମ୍ବର, ବ୍ୟାସ, ପାକଲ, ସମାନତା ଆଦି—ତୁଳା, ବଳଣି ଓ ସୂତାରେ ନିର୍ଣ୍ଣୟ, ଲୁଗାର ଓସାର, ସରଞ୍ଜାମରେ ନିର୍ଣ୍ଣୟ।

[୨] ଯନ୍ତ୍ରଶାସ୍ତ୍ର—"ପ୍ରାଥମିକ ସିଦ୍ଧାନ୍ତ"

[୩] କପା—ତାର ନାନା ଜାତି

(୬) ଗଠନମୂଳକ କାମର ବିଭିନ୍ନ ବିଷୟରେ ଗାନ୍ଧୀ, ରାଜେନ୍ଦ୍ର ପ୍ରସାଦ,
କିଶୋରଲାଲ୍ ମଶ୍ରୁୱାଲା ଓ ୧୯୪୪ରେ ଚରଖା ସଂଘର ନବ ସଂସ୍କରଣ
ଆଧାର କରି ବୁଝେଇବା, —ଚରଖା ସଂଘ ଆଦି ବିଭିନ୍ନ ଅନୁଷ୍ଠାନର
ଇତିହାସ ।

(୭) ପ୍ରଧାନ ପ୍ରଧାନ ଧର୍ମର ଶିକ୍ଷା

(୮) ହିନ୍ଦୁସ୍ଥାନର ଇତିହାସ ଓ ଧର୍ମର ପରିଚୟ

(୯) ମାନବ ସଭ୍ୟତା ବିକାଶର ପରିଚୟ

(୧୦) ଗ୍ରାମ ସମସ୍ୟା ବିଷୟରେ ଶିକ୍ଷା, —ଆର୍ଥିକ, ସାଂସ୍କୃତିକ, ସାମାଜିକ,
ସ୍ୱାସ୍ଥ୍ୟ, ସଫେଇ, ସ୍ୱଚ୍ଛତା, —ସ୍ତ୍ରୀଲୋକଙ୍କ ସମସ୍ୟା

(୧୧) ନାଗରିକ ଶାସ୍ତ୍ର ଓ (୧୨) ହିନ୍ଦୁସ୍ଥାନୀ ଶିକ୍ଷା ।

ଗାଁରେ କର୍ମୀ ହୋଇ କାମ କରିବାକୁ ଯିବା ପାଇଁ ଲୋକେ କିପରି ତାଲିମ୍ ହେବା ଉଚିତ ବୋଲି ଗୋପବାବୁ ଭାବୁଥିଲେ, ଗାଁ ଲୋକଙ୍କୁ ସେମାନେ କଣ ଶିଖାଇବେ ବୋଲି ସେ ଭାବୁଥିଲେ ଓ ତାଙ୍କ ପରିଚାଳନାରେ ଗାଁ କାମ କେଉଁଆଡ଼େ ମୋଡ଼ି ଥିଲି ଏଥିରୁ ତାର କିଛି ଧାରଣା ମିଳି ପାରିବ । ଅଧିକନ୍ତୁ ତାତ୍ପର୍ଯ୍ୟପୂର୍ଣ୍ଣ, —ସେ ଏ ବିଷୟକୁ ଏତେ ଗୁରୁତ୍ୱ ଦେଉଥିଲେ ଯେ ଜେଲ୍‌ରେ ଥାଇ ସେହି କଥା ଭାବୁଥିଲେ, ସେ ବିଷୟରେ ପଢ଼ୁଥିଲେ, ଅନ୍ୟାନ୍ୟ କର୍ମୀ ବନ୍ଦୀଙ୍କ ସଙ୍ଗେ ଆଲୋଚନା କରୁଥିଲେ ।

ପୂର୍ବୋକ୍ତ ଡାଏରୀର ଦ୍ୱିତୀୟ ଭାଗରେ ସେ ଯାହା ନିଜ ଅଭିଜ୍ଞତାରୁ କର୍ମୀମାନଙ୍କୁ ବୁଝାଇଛନ୍ତି ତହିଁରୁ ବି କେତୋଟି କଥା ହଠାତ୍ ମନକୁ ଛୁଏଁ । ଆଗ, —ସେ କହିଛନ୍ତି ଯେ କର୍ମୀ ନିଜ ସ୍ତ୍ରୀ ଓ ପରିବାରଙ୍କୁ ଘେନି ଗାଁ କାମରେ ଲାଗିଯିବା ଦରକାର, ନିଜ ପରିବାର ଉପରେ ସେ ପ୍ରଭାବ ନ ପକାଇ ପାରିଲେ ଆଉ କାହା ଉପରେ ପ୍ରଭାବ ପକାଇ ପାରିବ, ତାର ବା ମୂଲ୍ୟ କଣ ?

"ବିବାହିତ କର୍ମୀ ନା ଅବିବାହିତ କର୍ମୀ ? :—

ବିବାହିତ କର୍ମୀ ସପରିବାର ଯାଇ ଗାଁରେ ବସିଲେ କାମ କରିବାରେ ଅଧିକା ସୁବିଧା ମିଳିବାର ଆଶା । କାରଣ, ସେ ଯଦି ନିଜର ସ୍ତ୍ରୀ ଓ ପରିବାରଙ୍କ ଉପରେ ଠିକ୍ ପ୍ରଭାବ ପକାଇଥିବ ଓ ଆପଣାର ଗାଁ କାମରେ ଓ ଆଦର୍ଶରେ ତାଙ୍କଠୁ ସହଯୋଗ ପାଇପାରୁଥିବ ତେବେ ଗାଁବାଲାଙ୍କ ଉପରେ ତାଙ୍କ ପ୍ରଭାବ ଶୀଘ୍ର ପଡ଼ିବ । ତାହା ନହେଲେ, ନିଜର ପରିବାରଙ୍କ ମନ ବଦଳାଇ ନ ଥିଲେ ବାହାରେ ଅନ୍ୟ

ଲୋକଙ୍କୁ କିଏ ବଦଳାଇବ ? ଲୋକେ କହୁଥାନ୍ତି "ସେ ବାବାଜୀ ଲୋକ, ତାଙ୍କର କଣ ପିଲାଛୁଆ ଅଛନ୍ତି ନା ଘରଦୁଆର ଜଞ୍ଜାଳ ଅଛି ? ତାଙ୍କ କଥା, ଆଉ ଆମ କଥା !" ପରିବାରକୁ ନିଜର ଆଦର୍ଶରେ ଗଢ଼ିଥିଲେ ଏ ସବୁ ଯୁକ୍ତିର ମୁହଁ ବନ୍ଦ ହୋଇଯାଏ ଏବଂ ଗାଁ ଲୋକେ ଆଦର୍ଶଟାକୁ ସହଜ ମଣିଥାନ୍ତି ।"

ଦେଶ କାମରେ ଯୋଗଦେଲା ଦିନଠୁଁ ଏତିକି ତାଙ୍କ ନିଜର ବ୍ୟକ୍ତିଗତ ଅଭିଜ୍ଞତା ।

ସେ ଆହୁରି ବୁଝାଇଛନ୍ତି, ଗାଁରେ କିଛି ଅଛପା ରହେ ନାହିଁ, ଗାଁ ଲୋକଙ୍କୁ କିଛି ଲୁଚେଇ ହେବ ନାହିଁ, ଆଗ ସେ କର୍ମୀଙ୍କୁ ପରଖିବେ, ତାର ପ୍ରତି କଥା ତାର ବ୍ୟବହାର ସବୁ ଜାଣିବେ, ତା କାମ ଦେଖିବେ, ପଛେ ତାକୁ ବିଶ୍ୱାସ କରିବେ । ତାର ମନ ସଫା ହେବା ଦରକାର, ଆଚରଣରେ ବାଛିବାକୁ କିଛି ନ ଥିବ, କିଛି ସେ ଲୁଚେଇବ ନାହିଁ, ଘର ବି ଖୋଲା, ସମସ୍ତିଙ୍କ ସଙ୍ଗେ ମିଶିବ । ସେ ଗାଁର ସାଧାରଣ ଗରିବ ଲୋକଙ୍କ ପରି ଚଳିବ, ଯାହା କହିବ, ତାକୁ କାମ କରି ଦେଖାଇବ । ଠାଏ ଲେଖିଛନ୍ତି,

"କହି ବୁଲିଲେ ପ୍ରଚାର ଠିକ୍ ହୁଏ ନାହିଁ । କରି ଦେଖାଇବା ଅସଲ ପ୍ରଚାର । ... ...

ଋଣ ସମିତିରେ ବିଶେଷ ଲାଭ ମଧ୍ୟ ନାହିଁ ବରଂ ବିପଦର ସମ୍ଭାବନା । ସେଥିରେ ଗୃହୀ ମୂଲିଆ ଅନଭ୍ୟସ୍ତ, ସହଜରେ ଟାଉଟରିଆ ଶ୍ରେଣୀର ଲୋକେ ସେଥିରେ ଆଗୁଆ ହୋଇ ସବୁ ପଣ୍ଡ କରି ଦିଅନ୍ତି ।"

କର୍ମୀ ନାଁ ଦଳାଦଳିରେ ମିଶିବ ନାହିଁ, ଅହିଂସ ଉପାୟରେ ଅନ୍ୟାୟର ପ୍ରତିରୋଧ କରିବ, କରାଇବ ।

"ଟାଉଟରଙ୍କୁ ଏକଦମ୍ ଛାଡ଼ିଦେବାର ନୁହେଁ, ତାଙ୍କ ଉପରେ ନଜର ରଖି ତାଙ୍କର ମତିଗତି ବଦଳାଇବାକୁ ଚେଷ୍ଟା କରୁଥିବ, ମାତ୍ର ସବୁବେଳେ ତାଙ୍କର ପଛରେ ପଡ଼ି ରହିଲେ ଚଳିବ ନାହିଁ । ପଥରକୁ ତରଳେଇବା ପାଇଁ ଶୁଭ ମୁହୂର୍ତ୍ତ ଦରକାର, ଭଗବାନଙ୍କ ଆଶୀର୍ବାଦ ଲୋଡ଼ା । ... ..."

ବସ୍ତିରେ ସେପରି ସେ ବହୁତ କରିଥିଲେ ।

ଗାଁ ସଫେଇ, ଗାଁରେ ରୋଗ ଚିକିତ୍ସା, କୁସଂସ୍କାର ବଦଳାଇବା ଓ ଭାଙ୍ଗିବା, ପାଠଶାଳା ଖୋଲିବା, ପ୍ରୌଢ଼ ଶିକ୍ଷା ଦେବା, କର୍ମୀର ସ୍ତ୍ରୀ ଦ୍ୱାରା ନାରୀ ଶିକ୍ଷା, ନାରୀ

ଜାଗରଣ ପ୍ରଚାର କରିବା, ସ୍ତ୍ରୀ ଲୋକଙ୍କୁ କାମରେ ଲଗାଇବା, କୃଷି କାମରେ ଉନ୍ନତି କରିବା, ଗୋରୁ ଗାଈ ପାଳିବା, ଗୋବର ନ ଜାଳିବା, ନୂଆ ଧନ୍ଦା କରାଇବା, ନାନା ବିଷୟରେ ସେ କର୍ମୀମାନଙ୍କୁ ସରଳ ଭାବେ କାର୍ଯ୍ୟକାରୀ ଉପଦେଶ ଦେଇ ଲେଖିଛନ୍ତି । ସହଯୋଗ ଓ ସମବାୟ ଉପରେ ସେ ଗୁରୁତ୍ୱ ଦେଉଥିଲେ । ଖେଳ କସରତ୍, ସଙ୍ଗୀତ, ଚିତ୍ର, କଳା ଆଦି ବିଷୟରେ ବି କର୍ମୀ ଧ୍ୟାନ ଦେବ, ସେ ଖୋଜିବ ଗାଁରେ ଆଗେ କଣ ସବୁ ଥିଲା, ଲୋପ ହୋଇଯାଉଛି, ତାର ପୁନରୁଦ୍ଧାର କରିବ । ଲେଖିଛନ୍ତି :

"କର୍ମୀ ଏ ଦିଗରେ ପୁରୁଣା କଣ କେଉଁଠି ଭଲ ଥିଲା ଖୋଜି ତାକୁ ଗରିବଙ୍କ ବିନା ଶୋଷଣରେ ପୁଣି ଜିଆଇବାକୁ ଚେଷ୍ଟା କରିବେ । କାରଣ ଆଜି ଅନେକ ପୁରୁଣା ପ୍ରଥା ଅଛି ଯାହା ସେଥିରେ ଗରିବଙ୍କ ଶୋଷଣ ପଶିଗଲାଣି । ଗୋଟାଏ ଉଦାହରଣ, ଆଗେ ନାଟ ଗାଁରେ ସରଳ ଲୋକେ କରନ୍ତି, ସାଧାରଣ ଗରିବ ଲୋକେ ଦେଖନ୍ତି । ଏବେ ସମ୍ପନ୍ନଙ୍କ ଚନ୍ଦା ହେବାରେ ଗରିବଙ୍କ ଉପରେ ଜୁଲୁମ୍ ହେଉଥିବାର ଦେଖାଯାଉଛି ।

ଜମ୍ଭା ଗାଁରେ ଜମିଦାର ମହାଜନ ନାଟ ଆଖଡ଼ା ଧରି କରାଇ ମଝିରେ ଲାଭ ମାରୁଛନ୍ତି ଏବଂ ଏମିତି ପେଞ୍ଚପାଞ୍ଚ କରୁଛନ୍ତି ଯେଉଁଥିରେ ଗରିବ ଲୋକେ ବାଧ୍ୟ ହୋଇ ନିଜର ଭଲ ଗାଇ ପାରୁଥିବା ପିଲାକୁ ସେ ଦଳରେ ଛାଡ଼ୁଛନ୍ତି ଏବଂ ଘରକୁ ଯେ ଦି ପଇସା ଉପାୟ କରି ଦିଅନ୍ତା ସେଥିରୁ ବଞ୍ଚିତ ହେଉଛନ୍ତି ।"

କର୍ମୀ ନିଜ ପିଲାଙ୍କୁ ବି ପାଠପଢ଼ା ଆଦି ବିଷୟରେ ଗାଁ ଲୋକଙ୍କ ପିଲାଙ୍କଠୁ ବଳକା ସୁବିଧା କରିଦେବ ନାହିଁ । ଲେଖିଛନ୍ତି :

"ସାଧାରଣ ଗ୍ରାମବାସୀଙ୍କୁ ଯେଉଁ ସୁବିଧା ମିଳେ ନାହିଁ, ସେଭଳି ସୁବିଧା କର୍ମୀ ନେବା ଉଚିତ ନୁହେଁ । ବନ୍ଧୁବାନ୍ଧବଙ୍କ ଆଗ୍ରହରେ ବା ଆର୍ଥିକ ସାହାଯ୍ୟରେ ହେଉ ନିଜର ପିଲାଙ୍କୁ ବାହାରେ ଉଚ୍ଚ ଶିକ୍ଷା ଦେବାର ଚେଷ୍ଟା କରିବା ନିଜ କାମରେ ଅନ୍ତରାୟ ହେଲାପରି ଜଣାପଡ଼େ ।

କର୍ମୀ ନିଜର ପିଲାଙ୍କ ଶିକ୍ଷାର ବ୍ୟବସ୍ଥା ସଙ୍ଗେ ସଙ୍ଗେ ସାହିପଡ଼ିଶାଙ୍କ ପିଲାଙ୍କ ଶିକ୍ଷାର ବ୍ୟବସ୍ଥା କରିବା ଉଚିତ । ନିଜର ପିଲାଙ୍କୁ ଗାଁ ପିଲାଙ୍କ ସଙ୍ଗେ ମିଶିବାକୁ ଦେବ । ସଫା ସୁତୁରା ରଖିବ ସତ, ମାତ୍ର ସୌଖିନ୍ ଭାବ ବା ଢଙ୍ଗକୁ ପ୍ରଶ୍ରୟ ଦେବ ନାହିଁ ।"

## ୧୯୪୭, ଗୋପବାବୁଙ୍କ ପ୍ରଥମ ନାତି

୧୯୪୭ ଅକ୍ଟୋବର ୩୧ରେ କଟକରେ ଗୋପବାବୁଙ୍କ ଝିଅ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣାଙ୍କର ପୁଅଟିଏ ହେଲା (ପରେ ସେ ପ୍ରସିଦ୍ଧ ପଦାର୍ଥବିତ୍ ଗବେଷକ ଓ

ଅଧ୍ୟାପକ ଡକ୍ଟର ଜ୍ଞାନଦେବ ମହାରଣା) । ଗୋପବାବୁ ନିଜ ଆଦର୍ଶ ଓ ଉପଦେଶ ଅନୁଯାୟୀ ଝିଅକୁ ଓ ତା ଉତ୍ତାଣି ପିଲାକୁ ବରି ଅଣାଇ ପାଖରେ ରଖିଲେ । ବଣ ମଫସଲ, ବାଟଘାଟ ନାହିଁ, ରୋଗମଡ଼କ ଲାଗି ରହୁଥାଏ, କଟକ ସହର ଭଳି ଆଧୁନିକ ଚିକିତ୍ସା ଲାଗି ସୁବିଧା ନାହିଁ । ନ ଥାଉ । ଗୋପବାବୁ କହୁଲେ ହେ ସାଧାରଣ ଗ୍ରାମବାସୀଟିଏ ହେଲେ କି ଗ୍ରାମରେ କାର୍ଯ୍ୟ କରୁଥିବା କର୍ମୀଟିଏ ହେଲେ ତା ଘରେ କାହାର ପିଲା ଜନ୍ମ ହେଲେ ସେଠି ମା' ଝିଆ ଯେମିତି ଚଳନ୍ତି, ତାଙ୍କ ଝିଅ ଓ ନାତି ବି ଚଳିବେ ସେହିପରି, ସେମାନଙ୍କ ପାଇଁ କୌଣସି ସ୍ୱତନ୍ତ୍ର ବ୍ୟବସ୍ଥା କରାଯିବ ନାହିଁ । ତାଙ୍କର ନାତି ନାତୁଣୀମାନଙ୍କ ପାଠ ପଢ଼ିବା ବୟସ ହେଲା ତ' ଗୋପବାବୁ ସେମାନଙ୍କୁ ବରିରେ ରଖି ମୌଳିକ ସ୍କୁଲରେ ପାଠ ପଢ଼ାଉଥିଲେ । ସବୁଦିନେ ସେ ପାଳନ କରିଥିଲେ, 'ତ୍ରି-ସତ୍ୟ', 'ଯାହା ମନରେ ଭାବିଥିବ, ତୁଣ୍ଡରେ ସେଇଆ କହିବ, କାର୍ଯ୍ୟରେ ସେଇଆ କରିବ ।'

## ଦ୍ୱିତୀୟଥର ବରୀରେ କର୍ମ ଆରମ୍ଭ

୧୯୪୫ରେ ସେ ଜେଲରୁ ଖଲାସ ହେଲାବେଳକୁ ଅଗଷ୍ଟ ଆନ୍ଦୋଳନ ବେଳେ ସରକାରଙ୍କ 'କାର୍ଯ୍ୟାନୁଷ୍ଠାନ' ଫଳରେ ଧରପଗଡ଼ ଭଙ୍ଗାରୁଜା ଓ ପ୍ରାୟ ସବୁ କର୍ମୀଙ୍କୁ ଗିରଫ କରି ନେଇ ଦୀର୍ଘକାଳ ଜେଲ୍ ଦେବା ଫଳରେ ରଚନାତ୍ମକ କାର୍ଯ୍ୟର ପେଣ୍ଠସବୁ ପ୍ରାୟ ଅଚଳ ହୋଇ ପଡ଼ିଥାଏ, କେଉଁଠି କେଉଁଠି ଅଳ୍ପ ଅଳ୍ପ କିଛି କାର୍ଯ୍ୟ ଚାଲିଥାଏ । ଗୋପବାବୁଙ୍କର ଆଗ କାମ ହେଲା, ସବୁ କର୍ମୀଙ୍କୁ ଭେଳେଇ ପୁଣି କେନ୍ଦ୍ରଗୁଡ଼ିକୁ ଚାଲୁ କରାଇବା, ଆଗରୁ ଆହୁରି ଦମ୍ଭ, ଆହୁରି କ୍ରିୟାଶୀଳ କରିବା, ଆଗରୁ ନୂଆ ନୂଆ କାମ କରିବା ଓ ଚାରିଆଡ଼େ ବହୁ ସଂଖ୍ୟାରେ ଓ ଆଗରୁ ବହୁଗୁଣେ ଅଧିକ ସକ୍ରିୟ କର୍ମକେନ୍ଦ୍ର ଆରମ୍ଭ କରିବା । ଚାରିଆଡ଼େ ଉତ୍ସାହ ଖେଳିଥାଏ, ପୁଣି ଚାରିଆଡ଼ କର୍ମମୁଖର ହୋଇ ପଡ଼ିଲା । ବରି ଓ ତାର ଆଖପାଖ ଅଞ୍ଚଳରେ ନାନା ରଚନାତ୍ମକ କାର୍ଯ୍ୟର ପୁନରୁଦ୍ଧାର, ମୌଳିକ ଶିକ୍ଷାର ପୁନଃ ପ୍ରତିଷ୍ଠା ଆଦି କାର୍ଯ୍ୟ ସଙ୍ଗେ ସଙ୍ଗେ ଆରମ୍ଭ ହୋଇଗଲା । କ୍ରମେ ସେସବୁ କାର୍ଯ୍ୟକୁ ସେ ଓଡ଼ିଶାର ଚାରିଆଡ଼େ କରାଇଲେ । ଏହିସବୁ କାର୍ଯ୍ୟ ପାଇଁ ପ୍ରଚାର, ନୂତନ କର୍ମୀ ସଂଗ୍ରହ, ସହକର୍ମୀ ଓ କର୍ମୀଙ୍କ ସଙ୍ଗେ ସମ୍ପର୍କ ରଖିବା, କର୍ମୀ ତାଲିମ୍, ସଂଗଠନ, ସମ୍ମିଳନୀ, ସଭା, ପଦଯାତ୍ରା ଓ ଏହି ଉଦ୍ଦେଶ୍ୟରେ ବରି ଅଞ୍ଚଳରେ, ଓଡ଼ିଶାର ଚାରିଆଡ଼େ ଓ ଭାରତସାରା ଗସ୍ତ କରି ବୁଲିବା ଆରମ୍ଭ ହୋଇଗଲା ।

ବେ-ସରକାରୀ 'ମୌଳିକ ସ୍କୁଲ' ଗୁଡ଼ିକ ବନ୍ଦ ହୋଇ ଯାଇଥିଲା, ତାର ଶିକ୍ଷକମାନେ ଆନ୍ଦୋଳନ କରି ଜେଲ୍ ଯାଇଥିଲେ, କେତେ ଘର ଭାଙ୍ଗି ପଡ଼ିଥିଲା,

ଘର ସବୁ ପୁଣି ଠିଆ ହେଲା, ନୂଆ ଘର ତୋଳା ହେଲା, ଶିକ୍ଷକମାନେ ଆସିଲେ, ନୂଆ ଉତ୍ସାହରେ କାମ ଚାଲିଲା ।

## ଗୋପବାବୁଙ୍କ ଲେଖାଲେଖି—ଗାନ୍ଧୀଜୀଙ୍କ 'ଆତ୍ମକଥା'

ଏତେ କାମ ଭିତରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଲେଖାଲେଖି ବି କରୁଥାନ୍ତି । ୧୯୪୬ରୁ ୧୯୪୭ ଭିତରେ ସେ ଗାନ୍ଧୀଜୀଙ୍କ 'ଆତ୍ମକଥା' ପୁସ୍ତକଟିକୁ ମୂଳ ଗୁଜରାଟୀରୁ ସିଧା ଓଡ଼ିଆରେ ଅନୁବାଦ କଲେ । ସେ ଗୁଜରାଟୀ ଭାଷା ଜାଣିଥିଲେ ଓ ଅନୁବାଦଟି ଚମତ୍କାର ହୋଇଛି ।

## 'ଗ୍ରାମସେବକ' ପତ୍ରିକା ପ୍ରକାଶ

ଗୋପବାବୁଙ୍କ ପ୍ରେରଣାରେ ୧୯୪୭ ଜାନୁଆରୀରେ କଟକରୁ 'ଗ୍ରାମସେବକ' ପତ୍ରିକା ବାହାରିଲା, ତାର ସମ୍ପାଦକ ଶ୍ରୀ ମନମୋହନ ଚୌଧୁରୀ । ଆଗ ସେଇଟି ମାସିକ ପତ୍ରିକା ଥିଲା, ପରେ ସାପ୍ତାହିକ ପତ୍ରିକା ହେଲା, ପରେ ଦଶଦିନରେ ଥରେ ବାହାରିଲା । ତହିଁରେ ଗୋପବାବୁଙ୍କ ଲେଖା ବାହାରୁଥାଏ । ସେଥିରେ ତାଙ୍କର ପ୍ରଥମ ପ୍ରକାଶିତ ହୋଇଥିବା ଲେଖା 'ସେବା ଓ କ୍ଷମତା' (୧୯୪୮ ଜାନୁଆରୀ ସଂଖ୍ୟା) ତା'ପରେ ୧୯୪୯ରେ ୧୮ଟି ଲେଖା, ୧୯୫୦ରେ ଯୋଡ଼ିଏ, ୧୯୫୧ରେ ୪ଟି, ୧୯୫୩ରେ ୨୯ଟି, ୧୯୫୪ରେ ୭ଟି, ୧୯୫୫ରେ ୯ଟି, ଇତ୍ୟାଦି ।

# ବତିଶି

## ଓଡ଼ିଶାରେ ଯୁଦ୍ଧବେଳ ମନ୍ତ୍ରୀମଣ୍ଡଳ

୧୯୩୯, ନଭେମ୍ବର ପରେ ଭାରତରେ କେଉଁଠି ହେଲେ ଆଉ କଂଗ୍ରେସ ମନ୍ତ୍ରୀମଣ୍ଡଳ ନ ଥିଲେ, ସେମାନେ ଇସ୍ତଫା ଦେଇ ସାରିଥିଲେ । ଦ୍ୱିତୀୟ ମହାଯୁଦ୍ଧ

ବେଳେ ଇଂରେଜ ପକ୍ଷକୁ ଭାରତ ସେ ଯୁଦ୍ଧରେ ସାହାଯ୍ୟ କରୁ ବୋଲି ପ୍ରସ୍ତାବକୁ କଂଗ୍ରେସ ବିରୋଧ କରୁଥିଲାବେଳେ, ଆଗ ଅବିଳମ୍ବେ ଭାରତକୁ ସ୍ୱାଧୀନତା ଦିଆଯାଉ ବୋଲି କାଟମ୍ବାର ଦାବି ଓ ଆନ୍ଦୋଳନ କରୁଥିଲାବେଳେ ୧୯୪୧ ଡିସେମ୍ବର · ରେ ଜାପାନ ପାର୍ଲ୍ ହାର୍ବର ଆକ୍ରମଣ କଲା ଓ ତହିଁଆରଦିନ ଇଂରେଜ ସରକାର ଜାପାନ୍ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ତାପରେ ଇଂରେଜର ଯୁଦ୍ଧ ଉଦ୍ୟମକୁ ସାହାଯ୍ୟ କରିବା ମୁଖ୍ୟ ଉଦ୍ଦେଶ୍ୟ ଥାଇ ଓଡ଼ିଶାରେ ଗଢ଼ା ହୋଇଥିଲା ଗୋଟିଏ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ, ମୁଖ୍ୟମନ୍ତ୍ରୀ—ପାରଳାଖେମୁଣ୍ଡି ମହାରାଜା, ଆଉ ଦୁଇଜଣ ମନ୍ତ୍ରୀ,—ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଶ୍ରୀ ଅବଦୁସ୍ ଶୋଭାନ୍ ଖାଁ, ପାର୍ଲାମେଣ୍ଟାରୀ ସେକ୍ରେଟେରୀ—ଶ୍ରୀ ପ୍ୟାରୀଶଙ୍କର ରାୟ । ପଣ୍ଡିତ ନୀଳକଣ୍ଠ ମିଶ୍ର ଏ ମନ୍ତ୍ରିମଣ୍ଡଳ ଗଠନରେ ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ ଓ ଯୁଦ୍ଧସାହାଯ୍ୟ ଲାଗି ପ୍ରଚାର କରୁଥିଲେ । ଶ୍ରୀ ଯଦୁମଣି ମଙ୍ଗରାଜ, ଶ୍ରୀ ଦିବାକର ପଟ୍ଟନାୟକ, ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ ଆଦି କେତେଜଣ ପୁରୁଣା କଂଗ୍ରେସ ନେତା ବି ଏ ମନ୍ତ୍ରିମଣ୍ଡଳକୁ ସମର୍ଥନ କରୁଥିଲେ । ଯେତେବେଳେ ଅଗଣିତ କଂଗ୍ରେସ ନେତା ଓ କର୍ମୀ ଗିରଫ ହେଲେ, ଜେଲ୍‌ରେ ରହିଲେ, ଅଗଷ୍ଟ ଆନ୍ଦୋଳନ ଲାଗିଲା ହୁ ହୁ ବ୍ୟାପିଲା, ସରକାରଙ୍କ ତରଫରୁ କଠୋର ଓ ନିର୍ମମ କାର୍ଯ୍ୟାନୁଷ୍ଠାନ ଚାଲୁ ରହିଲା, ଓଡ଼ିଶାରେ ସେତେବେଳେ ସେହି ମନ୍ତ୍ରିମଣ୍ଡଳ ରହିଥିଲା ।

## ଯୁଦ୍ଧ ପରେ ନୂଆ ନିର୍ବାଚନ

ଜନୁ ୧୯୪୫ ଅଗଷ୍ଟ ୯ରେ ଜାପାନର ହିରୋସିମା ଉପରେ ଆଣବିକ ବୋମା ପଡ଼ିଲା, ଅଗଷ୍ଟ ୧୦ରେ ଜାପାନ ପରାଜୟ ସ୍ୱୀକାର କଲା, ଅଗଷ୍ଟ ୧୫ରେ ଆତ୍ମସମର୍ପଣ କଲା । ଇଂରେଜ ପକ୍ଷ ଅର୍ଥାତ୍ 'ମିତ୍ରପକ୍ଷ' ଯୁଦ୍ଧରେ ଜିତଲେ, ଦ୍ୱିତୀୟ ମହାଯୁଦ୍ଧ ଶେଷ ହେଲା । ତାର ଅଳ୍ପଦିନ ପୂର୍ବରୁ ବିଲାତରେ ଚର୍ଚ୍ଚିଲ୍ ସାହେବଙ୍କ ଜାତିଦଳର ପତନ ଘଟିଥାଏ ଓ ଶାସନଭାର ଆସିଥାଏ ଶ୍ରମିକ ଦଳ ହାତକୁ । ନୂଆ ପ୍ରଧାନମନ୍ତ୍ରୀ ମିଷ୍ଟର କ୍ଲେମେଣ୍ଟ ଆଟ୍‌ଲି । ବିଲାତର ନୂଆ ଶାସକଦଳ ୧୯୪୫ ଅଗଷ୍ଟ ୨୧ରେ ଘୋଷଣା କଲେ ଯେ ଆସନ୍ତା ଶୀତଋତୁରେ ଭାରତରେ ସବୁ ପ୍ରାଦେଶିକ ବ୍ୟବସ୍ଥାପକ ସଭା ପାଇଁ ଓ କେନ୍ଦ୍ର ଆସେମ୍ବ୍ଲି ପାଇଁ ସାଧାରଣ ନିର୍ବାଚନ ହେବ । ଆଗ କେନ୍ଦ୍ର ଆସେମ୍ବ୍ଲି ପାଇଁ ନିର୍ବାଚନ ସରିଲା ୧୯୪୫ ଡିସେମ୍ବର ଶେଷ ସୁଦ୍ଧା ।

କେନ୍ଦ୍ର ଆସେମ୍ବ୍ଲିକୁ ଓଡ଼ିଶାରୁ କଂଗ୍ରେସ ପ୍ରାର୍ଥୀ ଶ୍ରୀ ଭାଗୀରଥୀ ମହାପାତ୍ର ଓ ଶ୍ରୀ ଜଗନ୍ନାଥ ଦାସ ନିର୍ବାଚିତ ହେଲେ । ତାହାପରେ ୧୯୪୬ରେ ପ୍ରାଦେଶିକ ବ୍ୟବସ୍ଥାପକ ସଭାମାନଙ୍କ ପାଇଁ ନିର୍ବାଚନ ହେଲା । ଓଡ଼ିଶାରେ ନିର୍ବାଚନ ହେଲା ମାର୍ଚ୍ଚ ୧୯୪୬ରେ । ଚାରିଆଡ଼େ ନିର୍ବାଚନର ଧୂମ୍ ଲାଗିଗଲା ।

ଶ୍ରୀ ଗୋପବନ୍ଧୁ ଚୌଧୁରୀ ସେ ନିର୍ବାଚନରେ ପ୍ରାର୍ଥୀ ହେବାକୁ ଚାହିଁଲେ ନାହିଁ । କ୍ଷମତା-ରାଜନୀତିରେ ପ୍ରବେଶ କରିବାକୁ ସେ ଆଦୌ କେବେ ଭାବି ନାହାନ୍ତି, ତାଠାରୁ ଦୂରେଇ ରହି ସେ ଗାନ୍ଧୀବାଦୀ ରଚନାତ୍ମକ କାର୍ଯ୍ୟମାନଙ୍କ ମାଧ୍ୟମରେ ଗାନ୍ଧୀଜୀଙ୍କର ଓ ଆଦର୍ଶକୁ ଜନଜୀବନରେ ରୂପାୟିତ କରିବା ଉଦ୍ୟମରେ ହିଁ ଲାଗିଥାନ୍ତି । କିନ୍ତୁ କଂଗ୍ରେସ ପ୍ରାର୍ଥୀ ଠିଆ କରି ନିର୍ବାଚନ ଲଢ଼ୁଛି, ସେ ଓ ତାଙ୍କ ସହକର୍ମୀମାନେ କଂଗ୍ରେସ୍ ପାଇଁ ପ୍ରଚାର କାର୍ଯ୍ୟ କରୁଥାନ୍ତି ।

ଭୋଟ୍ ବେଳେ ସେ କଟକରେ ଥିଲେ । କଟକ ଜିଲ୍ଲା-କଲେକ୍ଟର ଅଫିସ୍ କୋଠାରେ ଭୋଟ-ଗ୍ରହଣ କେନ୍ଦ୍ର ଥାଏ । ପରମ ଆନନ୍ଦ ଓ ଉତ୍ସାହରେ ସେ ସର୍ବପ୍ରଥମ ହୋଇ ସେଠିକି ଯାଇ ଭୋଟ୍ ଦେଇ ପଦାକୁ ଆସି ବଡ଼ ପାଟିରେ କହିଲେ, "ମୁଁ କଂଗ୍ରେସ୍‌କୁ ଭୋଟ ଦେଇଛି ।"

ସେତେବେଳେ କଂଗ୍ରେସ୍ ହିଁ ସାରା ଦେଶରେ ସ୍ୱାଧୀନତାକାମୀ ଜନତାର ଆଶା ଓ ବିଶ୍ୱାସର ପ୍ରତୀକ । ଓଡ଼ିଶାର ଅଳ୍ପ କେତୋଟି ନିର୍ବାଚନମଣ୍ଡଳୀ ଛଡ଼ା ଅନ୍ୟତ୍ର କଂଗ୍ରେସ୍ ପ୍ରାର୍ଥୀମାନେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେଲେ । ଯେଉଁଠି ନିର୍ବାଚନ ଲଢ଼େଇ ହୋଇଥିଲା ସେଠି ବି ଅନେକ କଂଗ୍ରେସ୍ ପ୍ରାର୍ଥୀ ଜୟଯୁକ୍ତ ହେଲେ । ତେଣୁ ୧୯୪୬ ନିର୍ବାଚନ ଫଳରେ ଓଡ଼ିଶାରେ କଂଗ୍ରେସ୍ ଦଳ ମନ୍ତ୍ରିମଣ୍ଡଳ ଗଢ଼ିଲେ । ଶ୍ରୀ ହରେକୃଷ୍ଣ ମହତାବ୍ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ଆଉ ଚାରିଜଣ ମନ୍ତ୍ରୀ ରହିଲେ, ସେମାନେ ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ନିତ୍ୟାନନ୍ଦ କାନନ୍‌ଗୋ, ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ।

## 'ମିନ୍‌ହା ପ୍ରଜା'ଙ୍କ ପାଇଁ ଆଇନ୍

ଗୋପବାବୁ ମନ୍ତ୍ରୀମାନଙ୍କ ସଙ୍ଗେ ଓ କଂଗ୍ରେସ୍ କର୍ମୀମାନଙ୍କ ସଙ୍ଗେ ନାନା ରଚନାତ୍ମକ କାର୍ଯ୍ୟ ବିଷୟରେ ଆଲୋଚନା କରୁଥାନ୍ତି ଓ କି କି ଉପାୟରେ ଗରିବ ଲୋକଙ୍କ ସମସ୍ୟା ଦୂର ହୋଇପାରିବ ସେହି ବିଷୟରେ ଆଲୋଚନା କରୁଥାନ୍ତି । ଗରିବ ହରିଜନମାନେ ଜମିଦାରଙ୍କ ଜମି ଉପରେ ଘରତିଆରି କରି ରହିଥାନ୍ତି ଅଥଚ ସେ ଜମି ଉପରେ ସେ ହରିଜନମାନଙ୍କର ଅଧିକାର ନ ଥାଏ, ଏ ଅବସ୍ଥାର ସୁଯୋଗ ନେଇ ଜମିଦାରମାନେ ମଝିରେ ମଝିରେ ସେମାନଙ୍କୁ ସେଠୁ ତଡ଼ିଦେବାକୁ ଧମକାଇ, ଡରାଇ, ସେମାନଙ୍କଠାରୁ ଅନ୍ୟାୟରେ ଟଙ୍କା ଆଦାୟ କରୁଥାନ୍ତି, ବିନା ପଇସାରେ ନାନା ପଦାର୍ଥ ନେଉଥାନ୍ତି, ସେମାନଙ୍କୁ ବେଠି ଖଟାଉଥାନ୍ତି, କେତେବେଳେ ମନକଲେ ଭିଟାରୁ ତଡ଼ି ଦେଉଥାନ୍ତି । ସେମାନଙ୍କ ନିଜ ଭିଟାରେ ଯଦି ଫଳଗଛଟିଏ ଅଛି, ନିଜେ ପଛେ ଲଗାଇଥାନ୍ତୁ, ଜମିଦାରମାନେ ସେ ଗଛର ସବୁ ଫଳ କିମ୍ବା ଅଧେ

ଫଳ ନେଇ ଯାଆନ୍ତି । ସେମାନଙ୍କର ଏହି ଦୁରବସ୍ଥା ଉପରେ ଚିନ୍ତା ସେଥିପାଇଁ ଗୋପବାବୁ ବହୁତ ଭାବୁଥାନ୍ତି । ସେ ଭାବୁଥାନ୍ତି ଯେ ଯଦି ସେମାନେ ନିଜେ ରହୁଥିବା ଭିଟା ଉପରେ ପୂର୍ଣ୍ଣ ଅଧିକାର ପାଇଲା ଭଳି ଆଇନ୍ ପାଶ୍ ହେବ ତେବେ ଏ ସମସ୍ୟାର ସମାଧାନ ହୋଇ ପାରିବ । ସରକାରଙ୍କର ସମ୍ପୃକ୍ତ ବିଭାଗ ରାଜସ୍ୱ ବିଭାଗ ଓ ତାର ମନ୍ତ୍ରୀ ଥାଆନ୍ତି ଶ୍ରୀ ନବକୃଷ୍ଣ ଚୌଧୁରୀ । ଗୋପବାବୁଙ୍କ ଉଦ୍ୟମ ଫଳରେ 'ମିନ୍‌ହା ପ୍ରଜା'ଙ୍କ ସମସ୍ୟା ଅନୁସନ୍ଧାନ କରିବାକୁ ଓଡ଼ିଶା ସରକାର ଗୋଟିଏ କମିଟି ବସାଇଲେ, ସେ କମିଟିର ଅଧ୍ୟକ୍ଷ ହେଲେ ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ଓ ସଭ୍ୟ ହେଲେ ଶ୍ରୀ ବିନୋଦ କାନନ୍‌ଗୋ ଓ ଅନ୍ୟ କେତେଜଣ । କମିଟିଙ୍କ ରିପୋର୍ଟ ପାଇସାରି ସରକାର ଗୋଟିଏ ଆଇନ୍ ପାଶ କଲେ । ତାହାର ଫଳରେ 'ମିନ୍‌ହା ପ୍ରଜା'ମାନେ ସେମାନଙ୍କ ଭିଟାବାଡ଼ି ଉପରେ ପୂର୍ଣ୍ଣ ଅଧିକାର ପାଇଲେ ଓ ସେମାନଙ୍କର ଏତେକାଳର ସମସ୍ୟା ଦୂରୀଭୂତ ହେଲା ।

## ସ୍ୱାଧୀନତା ଆସିବା ପୂର୍ବରୁ ଭାରତର ଅବସ୍ଥା

ଇଂରେଜ୍ ସରକାର ଯେ ଖୁବ୍ ଶୀଘ୍ର ଭାରତକୁ ସ୍ୱାଧୀନତା ଦେବାକୁ ବସିଛନ୍ତି ସେ କଥା ଯୁଦ୍ଧ ବନ୍ଦ ହେବା ପରେ ପରେ ୧୯୪୫ ସେପ୍‌ଟେମ୍ବର ୧୭ରେ ବଡ଼ଲାଟ ଲର୍ଡ଼ ଓ୍ୱାଭେଲ୍ ଯେତେବେଳେ ସାଧାରଣ ନିର୍ବାଚନ ହେବ ବୋଲି ଘୋଷଣା କରିଥିଲେ ସେତେବେଳେ କହିଥିଲେ । ପୁଣି ୧୯୪୬ ମାର୍ଚ୍ଚ ୧୫ ତାରିଖରେ ବିଲାତ ପାର୍ଲିମେଣ୍ଟ୍‌ରେ ପ୍ରଧାନମନ୍ତ୍ରୀ ମିଷ୍ଟର ଆଟ୍‌ଲି ଭାରତକୁ କ୍ୟାବିନେଟ୍ ମିସନ୍ (କ୍ରିପ୍‌ସ୍ ମିସନ୍) ପଠା ହେଉଥିବା ଉପଲକ୍ଷରେ ଯେଉଁ ଭାଷଣ ଦେଇଥିଲେ ସେଥିରେ ସେ ସ୍ପଷ୍ଟ ଭାବରେ କହିଦେଲେ । ଆଉ ସନ୍ଦେହର ଅବକାଶ ରହିଲା ନାହିଁ ।

## ଶ୍ରୀ ଜିନ୍ନା ଓ ତାଙ୍କ ମୁସ୍‌ଲିମ୍ ଲୀଗ୍‌ର ମତଗତ

ଚାରିଆଡ଼େ ଆଶା ଓ ଉତ୍‌କ୍ଷେପା ଓ ଆନନ୍ଦ,—ସ୍ୱାଧୀନତା ଆସୁଛି । କିନ୍ତୁ ଶ୍ରୀ ଜିନ୍ନାଙ୍କ ଦ୍ୱାରା ପରିଚାଳିତ ମୁସ୍‌ଲିମ୍ ଲୀଗ୍ ଦଳ ରାଜି ଥାଏ, ଖାଲି ସେତିକି ହେଲେ ଚଳିବ ନାହିଁ, ଏକ ସ୍ୱାଧୀନ ଭାରତ ରାଷ୍ଟ୍ର ତାର ଲୋଡ଼ା ନାହିଁ, ସେ ଚାହେଁ ଭାରତ ଭାଗ ଭାଗ ହୋଇ ଦୁଇଟି ସ୍ୱାଧୀନ ରାଷ୍ଟ୍ର ହେଉ, 'ହିନ୍ଦୁସ୍ଥାନ' ଓ 'ପାକିସ୍ଥାନ' । ତାର 'ପାକିସ୍ଥାନ' ନ ହେଲେ ନ ଚଳେ, ଦୁଇ ରାଷ୍ଟ୍ର ପାଇଁ ଦୁଇଟା ଅଲଗା ଅଲଗା ସମ୍ବିଧାନ ତିଆରି ସଭା ହେଉ, ଗୋଟାଏ ନୁହେଁ, ଏକଥା ସ୍ୱୀକୃତ ହେଉ ଯେ ହିନ୍ଦୁ ଓ ମୁସଲମାନ ଏକ 'ନେସନ୍' (ଜାତି) ନୁହନ୍ତି, ଦୁଇଟି 'ନେସନ୍', ଯୁଗେ ଯୁଗେ ତାଙ୍କ ସଂସ୍କୃତି ପରସ୍ପରଠୁଁ ଭିନ୍ନ । ଜିନ୍ନା ଦେଖିଥାନ୍ତି ଯେ ଅତୀତରେ ଯେତେବେଳେ ସରକାରଙ୍କ ପକ୍ଷରୁ କିଛି ନୂଆ ସାମ୍ବିଧାନିକ ଅଗ୍ରଗତି ଆସିଲେ ସେ ତାଙ୍କର ଆପତ୍ତି

ଅଭିଯୋଗ ଉଠାଉଥିଲେ, ସେତେବେଳେ ସେଭଳି ପ୍ରସ୍ତାବ ଅଟକିଛି, ସରକାର ଆଉ ଆଗେଇପାରି ନାହାନ୍ତି । କିନ୍ତୁ ଏଥର ତାଙ୍କୁ ଲାଗିଲା ଯେ ସେ ସହଯୋଗ ନ କଲେ ସୁଦ୍ଧା କ୍ୟାବିନେଟ୍ ମିସନ୍ ଭାରତକୁ ସ୍ୱାଧୀନତା ଦେବାର ପୂର୍ବରାଗ ସ୍ୱରୂପ ନାନା ବ୍ୟବସ୍ଥା ଗ୍ରହଣ କରି ଚାଲିପିବେ, ତାଙ୍କ ଆପତ୍ତି ଯୋଗୁଁ ଏକ ଅଖଣ୍ଡ ସ୍ୱାଧୀନ ଭାରତ ସୃଷ୍ଟି ହେବା କାର୍ଯ୍ୟ ଅଟକିପିବ ନାହିଁ ।

ଏହା ସଙ୍ଗେ ସଙ୍ଗେ ସେ ନିଜର ମୁସ୍‌ଲିମ୍ ଲିଗ୍ ଦଳର ବଳ କେତେ ତାହା ବି ବୁଝିଥାନ୍ତି, ୧୯୪୬ର ନିର୍ବାଚନ ତାକୁ ପ୍ରମାଣିତ କରି ଦେଇଗଲା । ଏକଥା ସତ ଯେ କେବଳ ବଙ୍ଗଦେଶ ଓ ସିନ୍ଧୁ ପ୍ରଦେଶ ଛଡ଼ା ଅନ୍ୟ ସବୁ ପ୍ରଦେଶରେ କଂଗ୍ରେସ ହିଁ ମନ୍ତ୍ରିମଣ୍ଡଳ ଗଢ଼ିଲା ଓ ତହିଁରୁ ଛଅଟି ପ୍ରଦେଶରେ ଯଥା ଓଡ଼ିଶା, ମଧ୍ୟପ୍ରଦେଶ, ବିହାର, ୟୁ. ପି., ମାଡ୍ରାସ୍ ଓ ବମ୍ବେ ନିର୍ବାଚନରେ କଂଗ୍ରେସ ସମ୍ପୂର୍ଣ୍ଣ ଓ ନିରଙ୍କୁଶ ସଂଖ୍ୟା-ଗରିଷ୍ଠତା ପାଇଥିଲା । କିନ୍ତୁ ଏକଥା ବି ଦେଖାଗଲା ଯେ ପ୍ରତି ପ୍ରଦେଶରେ ଯେତୋଟି ଲେଖାଁ ଆସନ କେବଳ ମୁସଲମାନମାନଙ୍କ ପାଇଁ ସଂରକ୍ଷିତ ହୋଇ ରହିଥିଲା, ତହିଁରୁ ତିନୋଟି ପ୍ରଦେଶରେ ଅର୍ଥାତ୍ ଓଡ଼ିଶା, ମାଡ୍ରାସ୍ ଓ ବମ୍ବେରେ ସେପରି ସବୁଯାକ ଆସନ ମୁସ୍‌ଲିମ୍ ଲିଗ୍ ଜିତିନେଲା ଓ କେବଳ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶକୁ ଛାଡ଼ିଦେଲେ ଅନ୍ୟାନ୍ୟ ସବୁ ପ୍ରଦେଶରେ ସେପରି ସବୁଯାକ ମୁସଲମାନ-ଆସନ ମୁସ୍‌ଲିମ ଲିଗ୍ ହିଁ ପାଇଲା । ତା ଅର୍ଥ ହେଲା ଯେ ଜିନ୍ନାଙ୍କ ମୁସ୍‌ଲିମ୍ ଲିଗ୍ ପ୍ରତି ଭାରତର ଅଧିକାଂଶ ମୁସଲମାନ ଭୋଟଦାତାଙ୍କ ସମର୍ଥନ ରହିଛି, ଅନ୍ୟ କୌଣସି ରାଜନୈତିକ ଦଳ ପ୍ରତି ନୁହେଁ ।

ସେ ତାଙ୍କର ଏହି ବଳକୁ ନିଜ ଦାବୀ ହାସଲ ପାଇଁ ପ୍ରୟୋଗ କରିବାକୁ ମନ ବଳାଇଲେ । କ୍ୟାବିନେଟ୍ ମିସନ୍ ନାନା ପ୍ରସ୍ତାବ ଆଣିଲେ, ସମସ୍ତଙ୍କ ସଙ୍ଗେ ଆଲୋଚନା କଲେ, ଶ୍ରୀ ଜିନ୍ନା ତହିଁରେ ନିଜ ଉଦ୍ଦେଶ୍ୟକୁ ସୁହାଇଲା ଭଳି କିଛି ଥିବାରୁ ଦେଖି ସେ ପ୍ରସ୍ତାବରେ ଆଗ ରାଜି ହେଲେ, କିନ୍ତୁ ସେତେବେଳେ କଂଗ୍ରେସର ସଭାପତି ନିର୍ବାଚିତ ହୋଇଥିବା ପଣ୍ଡିତ ନେହେରୁ କ୍ୟାବିନେଟ୍ ମିସନ୍‌ଙ୍କ ପ୍ରସ୍ତାବ ବିଷୟରେ ମତ ପ୍ରକାଶ କଲେ ଯେ ସଂଖ୍ୟାଲଘୁମାନଙ୍କ ସମସ୍ୟା ଭାରତର ଘରୋଇ ସମସ୍ୟା, ତା ସମାଧାନ ପାଇଁ ଇଂରେଜ ସରକାରଙ୍କର ହସ୍ତକ୍ଷେପକୁ ଭାରତ ମାନିବ ନାହିଁ, ନିଜେ ତା ସମାଧାନ କରିବ; ଦ୍ୱିତୀୟରେ, ନାନା ପ୍ରଦେଶକୁ ଏକାଠି 'କ' 'ଖ' 'ଗ' ବୋଲି ତିନୋଟି ମଣ୍ଡଳୀ କରିବା ଆଦୌ ସମ୍ଭବ ହେବ ନାହିଁ, ଆଗ ଆସାମ୍ ତ ତାହା କଦାପି ସହିବ ନାହିଁ; ତୃତୀୟରେ, ପ୍ରସ୍ତାବିତ 'ଭାରତ ୟୁନିଅନ୍'ର କେନ୍ଦ୍ର ଶାସନ ହାତରେ ପ୍ରତିରକ୍ଷା, ଯୋଗାଯୋଗ, ବୈଦେଶିକ ବ୍ୟାପାର ଓ ତା ସହିତ ବୈଦେଶିକ ବାଣିଜ୍ୟ, ଟିକସ ଧାର୍ଯ୍ୟ କରିବା କ୍ଷମତା, ଅର୍ଥନୀତି, ଯେକୌଣସି ପ୍ରକାର

ଫଳରେ ଆଉ ପଡ଼ିଲେ ତାକୁ ସମ୍ଭାଳିବାକୁ ସାର୍ବଭୌମ କ୍ଷମତା, ଏସବୁ ଦାୟିତ୍ୱ ରହିବ ଓ ପଣ୍ଡିତ ନେହେରୁଙ୍କର ଏ ଉକ୍ତିରେ ଶ୍ରୀ ଜିନ୍ନା ମତ ବଦଳାଇଲେ ଓ ପଣ୍ଡିତ ନେହେରୁଙ୍କ ଉକ୍ତିକୁ ତୀବ୍ର ପ୍ରତିବାଦ କଲେ । ବ୍ରିଟିଶ୍ ସରକାର ସ୍ପଷ୍ଟୀକରଣ ଦେଇ ୧୯୪୬ ଜୁଲାଇ ୧୮ରେ ବୁଝାଇ ଘୋଷଣା ଦେଲେ ଯେ ଆଗ 'କ' 'ଖ' 'ଗ' ବୋଲି ପ୍ରଦେଶମାନଙ୍କୁ ତିନୋଟି ମଣ୍ଡଳୀ କରାଯାଉ, ପ୍ରଦେଶମାନଙ୍କରେ ନିର୍ବାଚନ କରାଯାଉ, ତାପରେ ଯେ କୌଣସି ପ୍ରଦେଶ ଗୃହିଁଲେ ସେ ଏ ମଣ୍ଡଳୀର ଅନ୍ତର୍ଭୁକ୍ତ ନ ହୋଇ ଏଥିରୁ ଅଲଗା ହୋଇ ରହିପାରିବ । ଶ୍ରୀ ଜିନ୍ନା ନେହେରୁଙ୍କ ଉକ୍ତି ସହିତ ସରକାରଙ୍କର ଏ ଘୋଷଣା କଥା ଗ୍ରହଣ ଆଶଙ୍କା କଲେ ଯେ ସେପରି ହେଲେ ଆଉ ତାଙ୍କର ଚିରପୋଷିତ 'ଦୁଇ ନେସନ୍ ଦୁଇ ଦେଶ' ଆଶା ପୂରଣ ହେବ ନାହିଁ । ୧୯୪୬ ଜୁଲାଇ ୨୯ରେ ମୁସ୍‌ଲିମ୍ ଲିଗ୍ ଯୋଡ଼ାଏ ପ୍ରସ୍ତାବ ପାଶ୍ କଲେ । ପ୍ରଥମ ପ୍ରସ୍ତାବରେ ସେ କ୍ୟାବିନେଟ୍ ମିସନ୍ ପ୍ରସ୍ତାବରେ ନିଜର ସ୍ୱୀକୃତିକୁ ପ୍ରତ୍ୟାହାର କଲି ।

## ମୁସ୍‌ଲିମ୍ ଲିଗ୍‌ର 'ଡାଇରେକ୍ଟ ଆକ୍‌ସନ୍' ନିଷ୍ପତ୍ତି

ଦ୍ୱିତୀୟ ପ୍ରସ୍ତାବ ହେଲା ଅତି ଭୟଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ, ସତେ ଅବା ଭାରତରେ ନାରକୀୟ ସାଂପ୍ରଦାୟିକ ହିଂସାର ତାଣ୍ଡବଲୀଳା ପୂର୍ବରୁ ଭାରତ ଆକାଶରେ ଧୂମକେତୁ । ସେଥିରେ ଘୋଷଣା କରାଗଲା ଯେ ଇଂରେଜ୍ ସରକାରଙ୍କ ନିଷ୍ପତ୍ତି ସ୍ପଷ୍ଟ ଜ୍ଞାତସାରତାରେ କଂଗ୍ରେସ ବସିଛି ଯେ ଭାରତରେ ସବର୍ଣ୍ଣ ହିନ୍ଦୁଙ୍କ ରାଜତ୍ୱ ପ୍ରତିଷ୍ଠା କରିଦେବ, ଭାରତୀୟ ସମସ୍ୟା ସମାଧାନରେ ନ୍ୟାୟ ନୀତି କାର୍ଯ୍ୟକାରୀ ହେଉ ନାହିଁ, କାର୍ଯ୍ୟକାରୀ ହେଉଛି କ୍ଷମତା-ରାଜନୀତି, ଓ ତେଣୁ, ସମୟ ଆସିଗଲା ଯେତେବେଳେ ମୁସ୍‌ଲିମ୍ 'ନେସନ୍' 'ପାକିସ୍ତାନ' କରିବା ସକାଶେ, ତାର ଅଧିକାର ଜାରି କରିବା ସକାଶେ, ତାର ଇଜ୍ଜତ ପୁନଃ ପ୍ରତିଷ୍ଠା କରିବା ସକାଶେ, ବ୍ରିଟିଶ୍‌ର ଦାସତ୍ୱରୁ ମୁକ୍ତ ହେବା ସକାଶେ ଓ ପ୍ରସ୍ତାବିତ ଜାତି-ପ୍ରଧାନ ହିନ୍ଦୁରାଜ୍ କରାଇ ନ ଦେବା ସକାଶେ "ଡାଇରେକ୍ଟ ଆକ୍‌ସନ୍" ('ଦେଖିଲି କାମ') କରିବା ଦରକାର । ଏଥିପାଇଁ ଭାରତର ସମୁଦାୟ ମୁସଲମାନ 'ନେସନ୍' ମୁସଲିମ୍ ଲିଗ୍ ପଛଆଡ଼େ ଦମ୍ଭ ହୋଇ ଠିଆ ହେଉନ୍ତୁ ଓ ସବୁ ପ୍ରକାର ତ୍ୟାଗ ପାଇଁ ପ୍ରସ୍ତୁତ ହୁଅନ୍ତୁ, ମୁସ୍‌ଲିମ୍ ଲିଗ୍‌ର କାର୍ଯ୍ୟକାରୀ କମିଟି ଏହିସବୁ ଉଦ୍ଦେଶ୍ୟକୁ କିପରି 'ଡାଇରେକ୍ଟ ଆକ୍‌ସନ୍' (ସିଧାସଳଖ କାମ) ବାଟେ ପୂରଣ କରି ହେବ ସେଥିପାଇଁ କାର୍ଯ୍ୟନିର୍ଘଣ୍ଟ ତିଆରି କରନ୍ତୁ । 'ଡାଇରେକ୍ଟ ଆକ୍‌ସନ୍' କହିଲେ କିଭଳି କାର୍ଯ୍ୟ ବୁଝାଇବ ସେ ବିଷୟରେ ଜିନ୍ନା ଘୋଷଣା କଲେ "ଆଜି ଆମେ ଯାହା କଲୁ ତାହା ଆମ ଇତିହାସରେ ଐତିହାସିକ ଘଟଣା ।... ଆଜିଠୁ ଆମେ ସାମ୍ବିଧାନିକ ଉପାୟମାନଙ୍କଠାରୁ ବିଦାୟ ନେଇଗଲୁ ।" ଏଇ ହେଲା "ଲଡ଼କେ ଲେଙ୍ଗେ ପାକିସ୍ତାନ୍" ଧ୍ୱନିର ମୂଳ ଉତ୍ସ ।

ମୁସ୍‌ଲିମ୍ ଲିଗ୍‌ର ଜୁଲାଇ ୨୯, ୧୯୪୬ର ଏହି ଘୋଷଣା ପଛେ ପଛେ ତାର କାର୍ଯ୍ୟକାରୀ କମିଟି ପ୍ରସ୍ତାବ ପାସ୍ କଲା ଯେ ଅଗଷ୍ଟ ୧୬, ୧୯୪୬କୁ ଭାରତସାରା ସବୁଠି ସବୁ ମୁସଲମାନ୍ 'ଡାଇରେକ୍ଟ ଆକ୍‌ସନ୍ ଦିବସ' ରୂପେ ପାଳନ କରନ୍ତୁ, ସେଠି ଗୃହେଆଙ୍କେ ସଭାସମିତି ହୋଇ ମୁସ୍‌ଲିମ୍ ଲିଗ୍‌ର ପ୍ରସ୍ତାବ ବୁଝାଇ ଦିଆହେବ ।

## ଅଗଷ୍ଟ ୧୯୪୬, କଲିକତାରେ ସାଂପ୍ରଦାୟିକ ସଂଘର୍ଷ

ଏହାର ଫଳରେ ହିନ୍ଦୁମାନଙ୍କ ବିରୁଦ୍ଧରେ ମୁସଲମାନମାନଙ୍କୁ ଉତ୍ତେଜିତ କରି ମତାଇବା ଆରମ୍ଭ ହୋଇଗଲା ଓ ଭାରତରେ ଭୟାବହ ସାଂପ୍ରଦାୟିକ ଗଣ୍ଡଗୋଳ ଆରମ୍ଭ ହୋଇଗଲା । ଅତି ଭୟଙ୍କର କାଣ୍ଡମାନ ଘଟିଗଲା କଲିକତାରେ । ବଙ୍ଗଦେଶରେ ସେତେବେଳେ ଶ୍ରୀ ଏସ୍. ଏଚ୍. ସୁହରାୱାର୍ଦ୍ଦିଙ୍କ ନେତୃତ୍ୱରେ ଥାଏ ମୁସ୍‌ଲିମ୍ ଲିଗ୍ ମନ୍ତ୍ରୀମଣ୍ଡଳ । ସେ ହିନ୍ଦୁମାନଙ୍କ ଉପରେ ଆକ୍ରମଣ କାର୍ଯ୍ୟରେ ସକ୍ରିୟ ଅଂଶ ନେଲା । ଅଭିଯୋଗ ହେଉଥାଏ ଯେ ନିଜେ ମୁଖ୍ୟମନ୍ତ୍ରୀ ମହାଶୟ କଲିକତାର କୁଖ୍ୟାତ ଗୁଣ୍ଡାମାନଙ୍କୁ ପିଣ୍ଠ ଥାପୁଡ଼ାଇଥାନ୍ତି ଓ ଉତ୍ସାହିତ କରୁଥାନ୍ତି ! କଲିକତାରେ ହିନ୍ଦୁମାନଙ୍କ ଉପରେ ଅତର୍କିତ ଆକ୍ରମଣ ହେଲା, ସେମାନେ ଆଗରୁ ଜାଣିପାରି ନ ଥିଲେ, ପ୍ରସ୍ତୁତ ନ ଥିଲେ । ସେଠି ଯେଉଁଠି ମୁସଲମାନବହୁଳ ପଡ଼ା ଥାଏ, ଅଞ୍ଚଳ ଥାଏ ସେଭଳି ନାନା ସ୍ଥାନରେ ଖାଲି ଯେ ହିନ୍ଦୁମାନଙ୍କ ଘରଦ୍ୱାର ଲୁଟି ହେଲା, ଘର ଯାନବାହନ ଆଦି ପୋଡ଼ା ହେଲା ସେତିକି ନୁହେଁ, ବୟସ ନିର୍ବିଶେଷରେ ସ୍ତ୍ରୀ, ପୁରୁଷ, ବୃଦ୍ଧ, ଶିଶୁ, ବୋଦା ହାଣଖାଇଲା ପରି ହାଣରେ ପଡ଼ିଲେ, ଅକଥନୀୟ ନୃଶଂସ ଅତ୍ୟାଚାର, ହତ୍ୟା, ହାଣକାଟ୍ ଘଟିଗଲା, ହଜାର ହଜାର ଲୋକ ମଲେ, ଆହୁରି କେତେ ହଜାର ହଜାର ଖଣ୍ଡିଆଖାବରା ହେଲେ, କେତେ ନାରୀ ଧର୍ଷିତା ହେଲେ, ଆକ୍ରମଣକାରୀଗୁଡ଼ାକ ବର୍ବର ହିଂସ୍ର ପାଗଳ ପଶୁ ପରି ବ୍ୟବହାର କଲେ । ଏମାନଙ୍କ ଭିତରେ ବହୁତ ଓଡ଼ିଆ କୁଲି ଓ ଶ୍ରମିକ ବି ହାଣ ଖାଇଗଲେ ଯଦିଓ ଚିରକାଳ ଓଡ଼ିଶାରେ ହିନ୍ଦୁ-ମୁସଲମାନ ଭାଇ ଭାଇ ମିତ ମହାପ୍ରସାଦ ହୋଇ ଚଳି ଆସିଛନ୍ତି । କଲିକତାରେ ଏ କାଣ୍ଡ ବେଳେ ପଣ୍ଡିତ ନେହେରୁ ଆସି ପାରିଲେ ନାହିଁ, ସେ ଅନ୍ତର୍ବର୍ତ୍ତୀକାଳୀନ ସରକାର ଗଠନ ବିଷୟରେ ବଡ଼ଲାଟଙ୍କ ସଙ୍ଗେ କଥାଭାଷା କରୁଥାନ୍ତି । ଶ୍ରୀ ଜିନ୍ନା ବି ଆସିଲେ ନାହିଁ । ପ୍ରାଦେଶିକ ଲାଟ୍‌ସାହେବ କଲିକତାରେ ରହୁଥାନ୍ତି, ସେ ଏ ହାଣ୍‌କାଟ ବନ୍ଦ କରିବାକୁ କିଛି କଲେ ନାହିଁ, ଶାନ୍ତିଶୃଙ୍ଖଳା ରକ୍ଷା ଇଂରେଜ ସରକାରଙ୍କ ଦାୟିତ୍ୱ ଥିଲା, ସେ ବି କିଛି କଲେ ନାହିଁ । ହିନ୍ଦୁଙ୍କ ପକ୍ଷରେ ଅବସ୍ଥା ହେଲା "ତୋତେ ହୋ ତୁହି ରକ୍ଷା କର" ଭଳି । ସେମାନେ ନିଜକୁ ସଂଗଠିତ କରି ସ୍ଥାନେ ସ୍ଥାନେ ପ୍ରତିଆକ୍ରମଣ କଲେ । କଲିକତାରେ ଦୁଇ ସମ୍ପ୍ରଦାୟଙ୍କ ଭିତରେ ହାଣକାଟ, ଧ୍ୱଂସକାଣ୍ଡ, ନାନା ବିଭୀଷିକା ଚାଲିଲା । ଘୋର ଦୁର୍ଭାଗ୍ୟର କଥା ଯେ

ଅସଂଖ୍ୟ ନିରୀହ ନିର୍ଦ୍ଦୋଷ ଲୋକ ଯାହାଙ୍କର କାହାରି ସଙ୍ଗେ କିଛୁ କଳିଗୋଳ ନ ଥିଲା, ଯେ ନିଜ ନିଜ ସୁଖଦୁଃଖରେ ଧନ୍ଦାରେ ଲାଗିଥିଲେ, ଏ ସଂଘର୍ଷରେ ସେମାନେ ହାଣଖାଇ ଛୁରୀଭୁଷା ଖାଇ ମଲେ, ଖଣ୍ଡିଆ ଖାବରା ହେଲେ, ନାନା ପ୍ରକାରେ ଅତ୍ୟାଚରିତ, ଲାଞ୍ଛିତ ଅପମାନିତ କ୍ଷତିଗ୍ରସ୍ତ ହେଲେ, କାହିଁକି ସେମାନେ ତା ଜାଣନ୍ତି ନାହିଁ ! କଲିକତାରେ ବ୍ୟାପକଭାବେ ଏହାର ଆରମ୍ଭ, 'ମୁସଲିମ୍ ଲିଗ୍'ର 'ଡାଇରେକ୍ଟ ଅକ୍ସନ୍' ପାଇଁ ଡାକରା ତାର ମୂଳ କାରଣ । ତାପରେ ହିଂସାରୁ ଉତ୍ପନ୍ନ ପ୍ରତିହିଂସା, ପାଲଟା ହିଂସା, ସଂଘର୍ଷରେ ଲିପ୍ତ ହିନ୍ଦୁ ମୁସଲମ୍ ଉଭୟେ ଅନ୍ଧ ହିଂସ୍ର ଉନ୍ମତ୍ତ ପଶୁ ପାଲଟିଗଲେ । ଆଗ, ପଛ, ବିଚାର, ବୁଦ୍ଧି, ଦୟା, ମାୟା କିଛି ରହିଲା ନାହିଁ । କଲିକତା ପରେ ଭାରତର କେତେକ ଅନ୍ୟାନ୍ୟ ସ୍ଥାନକୁ ଏହା ବ୍ୟାପିଥିଲା । ଏ ନିଆଁ କୁହୁଳି ରହିଲା ବହୁକାଳ । ଏହାର ଫଳରେ ଗାନ୍ଧୀ, ପଟେଲ, ନେହେରୁ ପ୍ରମୁଖ ଦେଶର ଯେଉଁ ତୁଙ୍ଗ କର୍ଣ୍ଣଧାରମାନେ ପୂର୍ବେ ଭାରତ ଭାଗ ଭାଗ ହେବା ପ୍ରସ୍ତାବକୁ ଘୋର ବିରୋଧ କରୁଥିଲେ ସେମାନେ ପୁଣି ସେ ପ୍ରସ୍ତାବରେ ରାଜି ହେଲେ, ତାଙ୍କୁ ଲାଗିଲା ଅନ୍ୟ ବାଟ ନାହିଁ । ସେ କଥା ପରେ ।

ଏହି ନାରକୀୟ ହିଂସାକାଣ୍ଡ ଓ ହିଂସ୍ରକ ସାଂପ୍ରଦାୟିକ ବିଦ୍ୱେଷ ଜଳି ରହିଥିଲାବେଳେ କେତେକ ସ୍ଥଳରେ ଦେଖାଯାଇଥିଲା ଏହା ଉପରେ ମନୁଷ୍ୟର ନିହିତ ମାନବିକତାର ବିଜୟ । ହିନ୍ଦୁ ମୁସଲମାନକୁ, ମୁସଲମ୍ ହିନ୍ଦୁକୁ ପ୍ରୟୋଜନବେଳେ ଆତ୍ମବଳି ଦେଇ ବିପଦରୁ ଉଦ୍ଧାର କରିଥିଲା, ଆଶ୍ରୟ ଓ ସାହାଯ୍ୟ ଦେଇଥିଲା । ଭାରତର ସବୁଠି । କିନ୍ତୁ ସେପରି ଦୃଷ୍ଟାନ୍ତ ଅଳ୍ପ । ସେଥରକ କଲିକତାରେ ଯେ ତୁମୁଳ ହାଣ୍‌କାଟ୍ ଓ ଅନ୍ୟାନ୍ୟ ହିଂସାକାଣ୍ଡ ୭ ଦିନ ଯାକେ ଚାଲି ବନ୍ଦ ହୋଇଥିଲା, ମୃତାହତ ଓ କ୍ଷୟକ୍ଷତିର ଠିକ୍ ହିସାବ ନାହିଁ । ବଙ୍ଗଦେଶର ସରକାର ଶେଷରେ ହସ୍ତକ୍ଷେପ କରିବାରୁ ବନ୍ଦ ହେଲା, ତାଙ୍କ ମୋଟାମୋଟି ଅଟକଳ ଅନୁସାରେ ମୃତ ସଂଖ୍ୟା—୫ ହଜାର, ଖଣ୍ଡିଆଖାବରା—୧୫ ହଜାର, ବାସହୀନ ହେଲେ—୧ ଲକ୍ଷ ।

କଲିକତାରେ ତ ଆତଙ୍କ ଲାଗିଥାଏ, କଲିକତା ଖବର, କେତେବେଳେ ରେଳଭର୍ତ୍ତି ଖଣ୍ଡିଆଖାବରା ଲହୁଲୁହାଣ ମଣିଷଙ୍କ ଦୃଶ୍ୟ ଅନ୍ୟାନ୍ୟ ଅଞ୍ଚଳରେ ଉତ୍ତେଜନା ଓ ଆତଙ୍କ ଖେଳାଉଥାଏ ।

## ବମ୍ବେ, ଆହମେଦାବାଦ୍‌ରେ ସାଂପ୍ରଦାୟିକ ସଂଘର୍ଷ

ସେହି ୧୯୪୬ ଅଗଷ୍ଟ ଶେଷ ଆଡ଼କୁ ହଠାତ୍ ବମ୍ବାଇ ଓ ଆହମଦାବାଦରେ ସେହିପରି ହାଣ୍‌କାଟ୍ ଧ୍ୱଂସଲୀଳା ଆରମ୍ଭ ହୋଇଗଲା, କିନ୍ତୁ ସେତେ ଅଧିକ କି ବ୍ୟାପକ ନୁହେଁ ।

## ନୋଆଖାଲିରେ ସାଂପ୍ରଦାୟିକ ଗଣ୍ଡଗୋଳ

ତାପରେ ଘଟିଲା ବ୍ୟାପକ ଲୋମହର୍ଷଣ ସାଂପ୍ରଦାୟିକ ହାଣ୍‌କାଟ୍, ହତ୍ୟା, ଲୁଣ୍ଠନ, ଅତ୍ୟାଚାର ଓ ଧ୍ୱଂସର ଲୀଳା ପୂର୍ବବଙ୍ଗର ମୁସଲିମ୍-ବହୁଳ ଅଞ୍ଚଳରେ ନୋଆଖାଲି ସହରରେ ଓ ଜିଲ୍ଲାରେ, ତ୍ରିପୁରାରେ, ବେଶି ଗାଁ ଗହଳରେ । ଗାଁ ଗହଳରେ ଏଭଳି ସାଂପ୍ରଦାୟିକ ଗଣ୍ଡଗୋଳ ମାଡିଯିବା ଗୋଟିଏ ନୂଆ ଘଟଣା । କିନ୍ତୁ ମୁସଲମାନ୍‌ମାନଙ୍କ ମତା ହୋଇ ଯାଇଥାଏ, ହିନ୍ଦୁମାନେ ମୁସଲମାନ-ପରିବେଷ୍ଟିତ, ସଂଖ୍ୟାରେ ଅଳ୍ପ ହୋଇଥାନ୍ତି ପଛେ ଅପେକ୍ଷାକୃତ ଧନୀ, ଭୂମି ମାଲିକ, ଶିକ୍ଷିତ । ସେମାନଙ୍କୁ ହାଣି ପକାଇବା, ତାଙ୍କ ଘରଦ୍ୱାର ଲୁଟିବା, ପୋଡ଼ିବା, ତାଙ୍କ ସ୍ତ୍ରୀମାନଙ୍କ ଉପରେ ପାଶବିକ ଅତ୍ୟାଚାର କରିବା, ତାଙ୍କୁ ବାଧ୍ୟକରି ମୁସଲମାନ୍ କରିଦେବା, ତାଙ୍କ ଉପରେ ନାନା ଅତ୍ୟାଚାର କରିବା, ଚାଲିଲା ଏହି କାମ । ସେମାନେ ସଂଖ୍ୟାରେ ଅଳ୍ପ, ଆକ୍ରମଣ ଆଗରେ ନିଃସହାୟ, ତେଣୁ ସହଜରେ ଶିକାର ହେଲେ । ବଙ୍ଗଦେଶରେ ସେହି ମୁସ୍‌ଲିମ୍ ଲିଗ୍ ମନ୍ତ୍ରିମଣ୍ଡଳ ଶାସନଗାଦିରେ ଥାଏ । ସେତେବେଳକୁ ୧୯୪୬ ସେପ୍‌ଟେମ୍ବର ୨ ତାରିଖରୁ କେନ୍ଦ୍ରରେ ଅନ୍ତର୍ବର୍ତ୍ତୀ ସରକାର ଗଠିତ ହୋଇଥାଏ, କଂଗ୍ରେସ୍ ତହିଁରେ ପ୍ରତିନିଧିତ୍ୱ କରୁଥାନ୍ତି, କିନ୍ତୁ ବ୍ରିଟିଶ୍ ସରକାରଙ୍କ ଆମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରି ମୁସ୍‌ଲିମ୍ ଲିଗ୍ ତହିଁରେ ମିଶି ନ ଥାଏ, ସେ ତାର ପାକିସ୍ତାନ ଦାବୀ ଉପରେ ଅଡ଼ି ବସି ବିରୋଧ କରୁଥାଏ ।

## ବିହାରରେ ସାଂପ୍ରଦାୟିକ ସଂଘର୍ଷ

କଲିକତା ପରେ ନୋଆଖାଲିରେ ଘଟିଥିବା ତାଣ୍ଡବଲୀଳା ହିନ୍ଦୁମାନଙ୍କୁ ଉତ୍‌କ୍ଷିପ୍ତ କରୁଥାଏ । ବିହାରରେ ଦେଖାଦେଲା ତାର ପ୍ରତିକ୍ରିୟା । ପାଟନାରେ, ନାନା ଅନ୍ୟାନ୍ୟ ସହରରେ, ମଫସଲରେ ହିନ୍ଦୁବହୁଳ ଅଞ୍ଚଳରେ ହିନ୍ଦୁମାନେ ମୁସଲମାନମାନଙ୍କୁ ହାଣକାଟ ଅତ୍ୟାଚାର କଲେ, ତାଙ୍କ ଘରଦ୍ୱାର ପୋଡ଼ିଲେ, ବହୁତ ଲୋକ ମଲେ । ସ୍ଥାନେ ସ୍ଥାନେ ମୁସଲମାନମାନେ ବାଗ ପାଇଲେ ହିନ୍ଦୁମାନଙ୍କ ଉପରେ ହାଣକାଟ ଆଦି ଚଲାଇଦେଲେ । ବିହାର ଗଣ୍ଡଗୋଳ ବେଳେ ଗର୍ଜନ ଶୁଭୁଥାଏ "ନୋଆଖାଲିକା ବଦ୍‌ଲା ଲୋ" ।

## ଯୁ. ପି.ରେ

ସେହି ହିଂସାର ନିଆଁ ଖେଳିଗଲା ଉତ୍ତର ପ୍ରଦେଶକୁ । ନାନା ସ୍ଥାନରେ ସହରରେ, ମଫସଲରେ ଘଟିଗଲା ଉତ୍ତ୍ୟକ୍ତ ହିଂସକ ସାଂପ୍ରଦାୟିକ ଉନ୍ମତ୍ତତା ।

## ଶାନ୍ତିର ଦୂତ ମହାତ୍ମାଜୀ

ମହାତ୍ମାଜୀ ନୋଆଖାଲି ବାହାରିଥିଲେ । କଲିକତାରେ ପୁଣି ଗଣ୍ଡଗୋଳ ଲାଗିଗଲା ବୋଲି ସେଠି ଅଟକିଗଲେ । କାଳେ କଲିକତାରେ ବିହାର କାଣ୍ଡର ପ୍ରତିକ୍ରିୟା ସ୍ୱରୂପ ପୁଣି ହିଂସା ଭୟଙ୍କର ହୋଇ ଜଳି ଉଠିବ ଭାବି ସର୍ଦ୍ଦାର ପଟେଲ, ପଣ୍ଡିତ ନେହେରୁ ଆଦି ସେଠିକି ଧାଇଁ ଆସିଲେ । ଶାନ୍ତି କମିଟି ଆଦି ହୋଇ ନାନା ଉପାୟ କରାଗଲା । ବିହାର ଘଟଣାରେ ମର୍ମାହତ ହୋଇ ମହାତ୍ମାଜୀ କହିଲେ ଯେ ହିଂସାକାଣ୍ଡ ବନ୍ଦ ନ ହେଲେ ସେ ଆମରଣ ଅନଶନ କରିବେ । ସେ ଅତ୍ୟନ୍ତ କାତର ଓ କ୍ଷୁବ୍ଧ ହୋଇଥାନ୍ତି । ତାଙ୍କର ଉଦ୍ଦେଶ୍ୟ ଶୁଣି ଚାରିଆଡ଼େ ଚହଲ ପଡ଼ିଗଲା, ଅଳ୍ପଦିନ ପାଇଁ ହେଉପଛେ, ଅବସ୍ଥା ଶାନ୍ତ ପଡ଼ିଗଲା ।

୧୯୪୬ ନଭେମ୍ବର ୬ ତାରିଖରେ ମହାତ୍ମାଜୀ କଲିକତାରୁ ନୋଆଖାଲି ଯାତ୍ରା କଲେ । ବହୁତ ଦିନଯାକେ ଚାରିଆଡ଼େ ଚାଲି ଚାଲି ବୁଲି ବୁଲି ମୁସଲମାନ-ମାନଙ୍କୁ ବୁଝାଇ, ହିନ୍ଦୁମାନଙ୍କୁ ସାନ୍ତ୍ୱନା ଦେଇ ଅଭୟ ଦେଇ ଦୁଇ ସମ୍ପ୍ରଦାୟ ଭିତରେ ବିଶ୍ୱାସ, ସଦ୍‌ଭାବ ଓ ସହଯୋଗ ପ୍ରଚେଷ୍ଟା ପାଇଁ ଓ କ୍ଷତିଗ୍ରସ୍ତମାନଙ୍କୁ ସାହାଯ୍ୟ ପାଇଁ ଉଦ୍ୟମ ଓ ଆୟୋଜନ କରିବାକୁ ଲାଗିଲେ ।

ସେଠୁ ଫେରି ଖାଁ ଅବଦୁଲ୍ ଗଫୁର୍ ଖାଁଙ୍କୁ ସଙ୍ଗରେ ଘେନି ସେ ବିହାରର ଉପଦ୍ରୁତ ଅଞ୍ଚଳ ବୁଲି ଦେଖିଲେ ।

## ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ ଗଣ୍ଡଗୋଳ

କିନ୍ତୁ ଭାରତରେ ଗଣ୍ଡଗୋଳ ବନ୍ଦ ହୋଇ ନ ଥାଏ । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ ୧୯୪୭ ମାର୍ଚ୍ଚ ବେଳର ଅବସ୍ଥା ମୁସ୍‌ଲିମ ଲିଗ୍‌ର ତତ୍ପରତା ଫଳରେ ବଦଳି ଯାଇଥାଏ । ମାର୍ଚ୍ଚରେ ସେଠି ମୁସ୍‌ଲିମ୍ ଲିଗ୍‌ର ବେଶି ସମର୍ଥକ ନ ଥିଲେ, ତେଣୁ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିଥାଏ । କିନ୍ତୁ ଇତ୍ୟବସରରେ ସେଠି ଚାରିଆଡ଼େ ମୁସ୍‌ଲିମ୍ ଲିଗ୍ ପ୍ରତି ସମର୍ଥନ, ଲୋକଙ୍କ ମନରେ ହିନ୍ଦୁ ବିଦ୍ୱେଷ । ସାଂପ୍ରଦାୟିକ ଗଣ୍ଡଗୋଳ ବି ଘଟୁଥାଏ ।

## ପଞ୍ଜାବରେ ସାଂପ୍ରଦାୟିକ ସଂଘର୍ଷ

ପଞ୍ଜାବରେ ମାର୍ଚ୍ଚ ମାସରେ କଂଗ୍ରେସ ଦଳ ମନ୍ତ୍ରିମଣ୍ଡଳ ଗଢ଼ିଲା ଦିନଠୁଁ ମୁସ୍‌ଲିମ୍ ଚେଷ୍ଟା ଅବ୍ୟାହତ ରଖିଥାଏ, କେମିତି ନାନା ପ୍ରକାର ବିକ୍ଷୋଭ, ଗଣ୍ଡଗୋଳ ସୃଷ୍ଟି କରି ସେ ମନ୍ତ୍ରିମଣ୍ଡଳକୁ ଗାଦିରୁ ହଟେଇବ, ନିଜେ ମନ୍ତ୍ରିମଣ୍ଡଳ ଗଢ଼ିବ । ୧୯୪୭ ମାର୍ଚ୍ଚ ନିର୍ବାଚନ ପରେ କଂଗ୍ରେସ ସିନା ଅନ୍ୟାନ୍ୟ ଦଳଙ୍କ ସଙ୍ଗେ ମିଶି

ମନ୍ତ୍ରିମଣ୍ଡଳ ଗଢ଼ି ପାରିଥିଲା, ନ ହେଲେ ଏକୁଟିଆ ତା' କରିପାରି ନ ଥାନ୍ତା, କାରଣ କଂଗ୍ରେସର ସଭ୍ୟ ଥିଲେ ୫୧, ଅଥଚ ମୁସଲିମ୍ ଲିଗ୍‌ର ୭୫, ଅନ୍ୟାନ୍ୟ ମାନେ ଥିଲେ ୪୧ । ସେଠି ବି ଲାଗିଥାଏ ସାଂପ୍ରଦାୟିକ ବିଦ୍ୱେଷ । ମଝିରେ ମଝିରେ କିଛି କିଛି ହିଂସାକାଣ୍ଡ । କ୍ରମେ ଏହି ପରିସ୍ଥିତି ଫଳରେ ପ୍ରାୟ ବର୍ଷେ ପରେ ୧୯୪୭ ମାର୍ଚ୍ଚ ୨ରେ ପଞ୍ଜାବରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଭାଙ୍ଗିଲା । ମୁସଲିମ୍ ଲିଗ୍ ପଡ଼ିଲା ମନ୍ତ୍ରିମଣ୍ଡଳ ଗଢ଼ିବାକୁ । ଲାଟ୍‌ସାହେବ ସେଥିପାଇଁ ବିରୋଧୀ ଦଳ ନେତାଙ୍କୁ ଅର୍ଥାତ୍ ଆସେମ୍ବ୍ଲିରେ ମୁସଲିମ୍ ଲିଗ୍‌ର ନେତାଙ୍କୁ ଆମନ୍ତ୍ରଣ କଲେ, କିନ୍ତୁ ସେ ମନ୍ତ୍ରିମଣ୍ଡଳ ଗଢ଼ିପାରିଲେ ନାହିଁ । ମୁସଲିମ୍ ଲିଗ୍ ନିରାଶ, କ୍ଷୁବ୍ଧ ଓ କ୍ରୁଦ୍ଧ ହୋଇ ଉଠିଲା ଓ ସଙ୍ଗେ ସଙ୍ଗେ ଲାଗିଗଲା ପଞ୍ଜାବରେ କଲିକତା ପରି ନୃଶଂସ ହତ୍ୟାକାଣ୍ଡ, ଆକ୍ରମଣ, ନାରୀଧର୍ଷଣ, ଘରପୋଡ଼ି, ଲୁଟ୍‌ପାଟ୍, ବର୍ବର ଅମାନୁଷିକ ଅତ୍ୟାଚାର । ପୁଣି ସେଠି ବି ହିଂସାରୁ ଉପୁଜିଲା ପ୍ରତିହିଂସା, ଆକ୍ରମଣରୁ ପ୍ରତିଆକ୍ରମଣ । ପାଖେ ମୁସଲମାନ, ପାଖେ ହିନ୍ଦୁ ଓ ଶିଖ୍ ପରସ୍ପରଙ୍କୁ ଆକ୍ରମଣ କରିବାକୁ ଲାଗିଲେ ।

### ଲାହୋର, ମୁଲ୍‌ତାନ୍, ଅମୃତ୍‌ସର୍, ଦିଲ୍ଲୀ

ଲାହୋରରେ ସେ କାଣ୍ଡ ଭୀଷଣ ଆକାର ଧାରଣ କଲା । ସେଠୁ ବ୍ୟାପିଲା ମୁଲ୍‌ତାନ୍, ରାୱଲପିଣ୍ଡି, ଅମୃତ୍‌ସର, ବ୍ୟାପିଗଲା ଦିଲ୍ଲୀକୁ, ଲାଗି ରହିଲା, ବନ୍ଦ ହେଲେ ପୁଣି କେତେବେଳେ ଜଳିଉଠେ ।

### କାଶ୍ମୀର

ସେତେବେଳକୁ ଭାରତର ଅନ୍ତର୍ବର୍ତ୍ତୀକାଳୀନ ସରକାରରେ ମୁସଲିମ ଲିଗ୍ ମଧ୍ୟ ଯୋଗ ଦେଇ ସାରିଲାଣି । ୧୯୪୬ ଅକ୍‌ଟୋବର ଶେଷ ଆଡ଼କୁ ସେ ଯୋଗ ଦେଇଥିଲା, କିନ୍ତୁ ସରକାରରେ ଅଂଶ ନେଇ ସୁଦ୍ଧା ତାର ଉଦ୍ଦେଶ୍ୟ ଅସହଯୋଗ, ବାଧା ଓ ବିରୋଧ ସୃଷ୍ଟି କରିବା, ସେ ତାର 'ଡିରେକ୍ଟ ଆକ୍‌ସନ୍' ଡାକରା ଦେଇ ଦେଇ ସେ କାର୍ଯ୍ୟ ଚଳାଉଛି ଓ ଭାରତ 'ହିନ୍ଦୁସ୍ଥାନ' 'ପାକିସ୍ତାନ' ବୋଲି ଭାଗ ଭାଗ ହୋଇ ଦୁଇଟା ଅଲଗା ରାଷ୍ଟ୍ର ହେଉ ବୋଲି ଦାବୀରେ ଅଟଳ ଅଛି । "ପାକିସ୍ତାନ ହେଉ—ଆମେ ପାକିସ୍ତାନରେ ରହିବୁ" ବୋଲି କାଶ୍ମୀରରେ ବି ମତାମତ ଚାଲିଛି ।

### ଭାରତ ଭାଗ ଭାଗ ନିଷ୍ପତ୍ତି

ଭାରତ ସାଂପ୍ରଦାୟିକ ସଂଘର୍ଷରେ ଜଳୁଥାଏ, ରକ୍ତ ଓ ଲୁହରେ ଭୂଇଁ ଜୁଡ଼ୁବୁଡ଼ୁ ହେଉଥାଏ । ଭାରତର ଭାଇସରୟ ଲର୍ଡ଼ ମାଉଣ୍ଟବ୍ୟାଟେନ୍ ତାକୁ ବନ୍ଦ କରିବାକୁ ହସ୍ତକ୍ଷେପ କରୁ ନ ଥାନ୍ତି । ସେ ଭାବୁଥାନ୍ତି ଯେ ଭାରତକୁ ଭାଗ ଭାଗ କରି ଅଲଗା କରି

'ପାକିସ୍ଥାନ' ନ ଗଢ଼ିଲେ ଚଳିବ ନାହିଁ ଓ ଆଉ ସେହି ନିଷ୍ପତ୍ତି ଯଦି ଗୃହୀତ ହୋଇଯାଇ ପାରିବ ତେବେ ତାହାପରେ ସୈନ୍ୟ ବରଗି ଦେଇ ଏ ଗୋଳମାଳକୁ ସଙ୍ଗେ ସଙ୍ଗେ ସେ ବନ୍ଦ କରିଦେଇ ପାରିବେ ।

ବଳିଚ ଯାଇ ଫେରିଆସି ୧୯୪୭ ଜୁନ୍ ୨ ତାରିଖରେ ଇଂରେଜ ସରକାରଙ୍କର ଭାରତ ହାତକୁ କ୍ଷମତା ହସ୍ତାନ୍ତର ବିଷୟରେ ବିବୃତ୍ତିର ନକଲ ସେ ନେତାମାନଙ୍କୁ ଦେଲେ ଓ ସାମ୍ବାଦିକ ସମ୍ମିଳନୀରେ କହିଲେ ସମ୍ଭବତଃ ଅଗଷ୍ଟ ୧୫ ଦିନ ହିଁ କ୍ଷମତା ହସ୍ତାନ୍ତର କରାଯିବ, ଭାରତ ସ୍ୱାଧୀନ ହେବ ।

ଜୁନ୍ ୧୪ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର କାର୍ଯ୍ୟକାରିଣୀ କମିଟିରେ ବହୁ ଆଲୋଚନା ପରେ ଇଂରେଜ ସରକାରଙ୍କ କ୍ଷମତା ହସ୍ତାନ୍ତର ସମ୍ପର୍କୀୟ ବିବୃତ୍ତିରେ ଥିବା ଭାରତକୁ ଭାଗ ଭାଗ କରିବା ପ୍ରସ୍ତାବକୁ କଂଗ୍ରେସ ଗ୍ରହଣ କରି ନେଲା । କେତେ ସଭ୍ୟ ଉତ୍ତ୍ୟକ୍ତ ହୋଇ ପ୍ରସ୍ତାବକୁ ବିରୋଧ କରୁଥିଲେ, କିନ୍ତୁ ମହାତ୍ମା ଗାନ୍ଧୀ ଉଠି ୪୦ ମିନଟ୍ ଯାଏ କହିଲେ, ପ୍ରସ୍ତାବ ସପକ୍ଷରେ ଦୃଢ଼ଭାବେ ମତ ଦେଲେ ଓ ଅନ୍ୟମାନଙ୍କୁ ମନାଇଲେ । ମହାତ୍ମାଜୀ ମୂଳରୁ ହିଁ ଭାରତ ଭାଗ ଭାଗ ପ୍ରସ୍ତାବକୁ ଘୋର ବିରୋଧ କରି ଆସିଥିଲେ, ସେଦିନର ଅଳ୍ପକାଳ ପୂର୍ବରୁ ବି ସେ ଥିଲେ ତାର ଘୋର ବିରୋଧୀ ଯଦିଓ ସର୍ଦ୍ଦାର ପଟେଲ ଓ ପଣ୍ଡିତ ନେହେରୁ ଆଦି ସେ ପ୍ରସ୍ତାବ ସପକ୍ଷରେ ଥିଲେ, କିନ୍ତୁ ଅବସ୍ଥାଚକ୍ରରେ ମହାତ୍ମାଜୀ ନିଜ ମତ ବଦଳାଇଲେ ।

## ସାଂପ୍ରଦାୟିକ ବିଦ୍ୱେଷର ପରିଣତି

ଆସୁଥାଏ ଅଗଷ୍ଟ ୧୫, ଆଉ ଯୋଡ଼ିଏ ମାସ, ତା'ପରେ ଇତିହାସ ବଦଳିବ, ନୂଆ ଯୁଗ ଉଠିବ, ଭାରତ ସ୍ୱାଧୀନ ହେବ । ତେଣୁ ଘରିଆଡ଼େ ଆଶା, ଉତ୍ସାହ ଖେଳିବା ହିଁ ସ୍ୱାଭାବିକ । କିନ୍ତୁ ୧୯୪୬ ଅଗଷ୍ଟ ୧୬ ତାରିଖରୁ, ଯେଉଁଦିନୁ ମୁସଲିମ୍ ଲିଗ୍ ତାର 'ଡାଇରେକ୍ଟ ଆକ୍ସନ୍' ଯୋଜନା ଆରମ୍ଭ କଲାଣି, ସେଦିନ ଆଉ କଲିକତାରେ ପୈଶାଚିକ ସାଂପ୍ରଦାୟିକ ଆକ୍ରମଣ ଚଳାଇଦେବା ବେଳୁ, ତା ପଛେ ପଛେ ଭାରତରେ ନାନା ସ୍ଥାନରେ ନୃଶଂସ ବୀଭତ୍ସ ସାଂପ୍ରଦାୟିକ ସଂଘର୍ଷ ଘଟିଛି, ସ୍ଥାନେ ସ୍ଥାନେ ସେତେବେଳେ ବି ଘଟୁଥାଏ । ପାଖେ ମୁସଲମାନ, ଆରପାଖେ ହିନ୍ଦୁ ଓ ଶିଖ୍ ଏ ଦୁଇ ସଂପ୍ରଦାୟଙ୍କ ମନରେ ପରସ୍ପର ପ୍ରତି ସନ୍ଦେହ, ଅବିଶ୍ୱାସ, ଦ୍ୱେଷ ହିଁ ପୂର୍ବର ପୁରୁଷ ପୁରୁଷର ପଡ଼ୋଶୀସୁଲଭ ସୌହାର୍ଦ୍ଦ୍ୟର ସ୍ଥାନ ଅଧିକାର କରି ବସିଥାଏ । ବିଶେଷତଃ ଯେଉଁଠି ଯେଉଁଠି ତହିଁରୁ କୌଣସି ସଂପ୍ରଦାୟ ଆଉଟି ତୁଳନାରେ ସଂଖ୍ୟାଲଘୁ, ଗାଁରେ ହେଉ, ସହରର ପଡ଼ାରେ ହେଉ, କେଉଁ ଅଞ୍ଚଳରେ

ହେଉ, ସେଠି ସେ ସମ୍ପ୍ରଦାୟର ଲୋକମାନଙ୍କ ମନରେ ଥାଏ ଆତଙ୍କ,—କାଳେ କେତେବେଳେ ତାଙ୍କ ଉପରେ ଆର ସମ୍ପ୍ରଦାୟର ଲୋକେ ଚଢ଼ାଉ କରିବେ । ସେଇମାନେ ବି ଯେଉଁଠି ସଂଖ୍ୟାଲଘିଷ୍ଠ ସମ୍ପ୍ରଦାୟର, କିନ୍ତୁ ଅର ସମ୍ପ୍ରଦାୟର ଆକ୍ରମଣ ବେଳେ ଅନ୍ୟ ସ୍ଥାନରୁ ପଳାଇ ଆସିଛନ୍ତି, କିଏ ସେ ବିଭୀଷିକା ଦେଖିଛି, କାହାର କେଉଁ କ୍ଷତି ହୋଇଛି, କାହାର ଆପଣା ଲୋକ ହାଣ ଖାଇଛନ୍ତି, ନାରୀ ଧର୍ଷିତା ହୋଇଛି, ଅପହୃତା ହୋଇଛି, ଘର ଜଳିଛି, ସମ୍ପତ୍ତି ଧ୍ୱଂସ ହୋଇଛି, ଲୁଟ ହୋଇଛି, ସେମାନଙ୍କ ମନରେ ଶୋକ, କ୍ଷୋଭ, କ୍ରୋଧ, ପ୍ରତିହିଂସା ପ୍ରବୃତ୍ତି । ପୂର୍ବବଙ୍ଗରେ ନୋଆଖାଲିରେ ମୁସଲମାନମାନଙ୍କ ତରଫରୁ ବ୍ୟାପକ ହାଣକାଟ ଓ ଅନ୍ୟାନ୍ୟ ହିଂସାକାଣ୍ଡ ଫଳରେ ହଜାର ହଜାର ହିନ୍ଦୁ ଶରଣାର୍ଥୀ କଲିକତାକୁ ଓ ବଙ୍ଗଦେଶର ଅନ୍ୟାନ୍ୟ ଅଞ୍ଚଳକୁ ପଳାଇ ଯାଇଥାନ୍ତି, ସେହିପରି ପଶ୍ଚିମ ପଞ୍ଜାବରୁ ପୂର୍ବ ପଞ୍ଜାବକୁ, ଦିଲ୍ଲୀକୁ । ବିହାର ଓ ୟୁ. ପି.ରୁ, ପୂର୍ବ ପଞ୍ଜାବରୁ, ଦିଲ୍ଲୀରୁ ବହୁ ମୁସଲମାନ ପରିବାର ସେଠି ଘଟିଥିବା ସାଂପ୍ରଦାୟିକ ହାଣକାଟ ପରେ ପଶ୍ଚିମ ପଞ୍ଜାବକୁ ପଳାଇ ଯାଇଥାନ୍ତି । ଭାରତରେ ସାଂପ୍ରଦାୟିକ ସଂଘର୍ଷର କୁହାଁ ଲିଭି ନ ଥାଏ, ଥାଏ ଥାଏ ହଠାତ୍ କେଉଁଠି କେଉଁଠି ସେ କୁହୁଳି ଉଠେ । କଲିକତା ମହାନଗରୀରେ ୧୯୪୭ ଅଗଷ୍ଟ ୧୬ ତାରିଖରୁ ୧୯୪୭ ଅଗଷ୍ଟ ୧୩।୧୪ ଯାକେ ପ୍ରାୟ ପ୍ରତିଦିନ କେଉଁଠି ନା କେଉଁଠି ଛୁରୀଭୁଷା, ହାଣକାଟ, ଜଳାପୋଡ଼ା ଚାଲିଥାଏ । ସେହିପରି, ମୁସଲମାନବହୁଳ ପଶ୍ଚିମ ପଞ୍ଜାବରେ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ । ଲାହୋର, ମୁଲ୍‌ତାନ୍ ଆଦି ସହର ଯେ ଜଳପୋଡ଼ି ଶ୍ମଶାନ ହୋଇଥିଲା, ସେଠି ହିନ୍ଦୁମାନେ ରାତିରେ ନିଜ ଘର ଭିତରେ ଏକୁଟିଆ ଶୋଇବାକୁ ଡରୁଥିଲେ, କାଳେ କିଏ ଲୁଚି ଲୁଚି ଆସି ଛୁରୀ ଭୁଷିବ, ସେଭଳି ଘଟଣା ବି ଘଟୁଥାଏ । ଆକ୍ରମଣକାରୀ ଛକି ରହିଥାନ୍ତି । ସ୍ୱାଧୀନତା ଦିନ ପୂର୍ବରୁ ମଧ୍ୟ ଲାହୋର, ଅମୃତସର ଆଦି ସହରରେ ଓ ପଞ୍ଜାବର ମଫସଲରେ ସ୍ଥାନେ ସ୍ଥାନେ ଉଭୟପକ୍ଷ ହତ୍ୟାକାଣ୍ଡ ଆଦି ଘଟୁଥାଏ । ଗୁଣ୍ଡାମାନେ ମାତିଥାନ୍ତି ।

## ଶରଣାର୍ଥୀ

ଯେତୁଁ ଯେତୁଁ ସ୍ୱାଧୀନତା ଦିନ ପାଖ ହୋଇ ଆସିଲା, ତେତୁଁ ତେତୁଁ ବେଶି ବେଶି ଶିଖ୍ ଓ ହିନ୍ଦୁ ପ୍ରସ୍ତାବିତ ପାକିସ୍ତାନରୁ ଭାରତକୁ ଓ ମୁସଲମାନ ଭାରତରୁ ପ୍ରସ୍ତାବିତ ପାକିସ୍ତାନକୁ ପଳାଇବାକୁ ଲାଗିଲେ । ଭାରତର ପଶ୍ଚିମପଟେ ହିଁ ଏ ପଳାତକଙ୍କର ଧାର ଛୁଟିଥାଏ । କିନ୍ତୁ ସ୍ୱାଧୀନତାର କିଛିଦିନ ପୂର୍ବରୁ ଆରମ୍ଭ କରି ୧୯୪୭ ଅଗଷ୍ଟ ଓ ସେପ୍‌ଟେମ୍ବର ମାସରେ ଆଗ ପଶ୍ଚିମ ପଞ୍ଜାବରେ ଶିଖ ଓ ହିନ୍ଦୁଙ୍କ ଉପରେ ଓ ତା' ଉତ୍ତାରୁ ତା ପ୍ରତିକ୍ରିୟାରେ ଦିଲ୍ଲୀରେ, ଭାରତ ଅନ୍ତର୍ଗତ ପଞ୍ଜାବରେ ମୁସଲମାନ-ମାନଙ୍କ ଉପରେ ଯେଉଁ ନାରକୀୟ ଆକ୍ରମଣ ଘଟିଗଲା, ଭୀଷଣ ହତ୍ୟା, ପୋଡ଼ାଜଳା,

ଧ୍ୱଂସ, ଲୁଣ୍ଠନ, ଅତ୍ୟାଚାରର ତାଣ୍ଡବଲୀଳା ଘୋଟିଲା, ଲୋକେ ଯେପରି ପାଗଳ ହୋଇ ସାଂପ୍ରଦାୟିକ ସଂଘର୍ଷରେ ମାତି ରହିଲେ ତା ଫଳରେ ସେହି ସମୟ ଭିତରେ ଲକ୍ଷ ଲକ୍ଷ 'ଶରଣାର୍ଥୀ' ପଶ୍ଚିମ ପାକିସ୍ତାନରୁ ଭାରତକୁ, ଭାରତ ଅନ୍ତର୍ଗତ ପଞ୍ଜାବରୁ ଓ ଦିଲ୍ଲୀ ମହାନଗରୀରୁ ପାକିସ୍ତାନକୁ ପ୍ରାଣ ବିକଳରେ ପଳାଇଲେ । ମାନ୍ୟବର ବାଣ୍ଡୁରପଥ ଶ୍ରୀ ଜି. ଡି. ଖୋସଲଙ୍କ ହିସାବ ଅନୁସାରେ ପଞ୍ଜାବରେ ଭାରତ-ପାକିସ୍ତାନ ସୀମାରେ ପାକିସ୍ତାନରୁ ପଞ୍ଚାବନ ଲକ୍ଷ ଲୋକ 'ଶରଣାର୍ଥୀ' ହୋଇ ଭାରତକୁ ପଳାଇ ଆସିଲେ, ଭାରତରୁ ମଧ୍ୟ ପଞ୍ଚାବନ ଲକ୍ଷ ମୁସଲମାନ 'ଶରଣାର୍ଥୀ' ହୋଇ ପାକିସ୍ତାନକୁ ପଳାଇଗଲେ ଓ ଏହାଛଡ଼ା, ସିନ୍ଧୁ ପ୍ରଦେଶରୁ ପ୍ରାୟ ଚାରିଲକ୍ଷ ହିନ୍ଦୁ ଭାରତକୁ ପଳାଇ ଆସିଲେ ଓ ପୂର୍ବ ପାକିସ୍ତାନରୁ ଦଶଲକ୍ଷ ହିନ୍ଦୁ ମଧ୍ୟ ଭାରତକୁ ପଳାଇ ଆସିଲେ । ପଳାତକମାନଙ୍କ ଛଡ଼ା ଆଉ କେତେ ଯେ ଲୋକ ବାଟରେ ଆକ୍ରମଣକାରୀଙ୍କ ହାତରେ ମଲେ କି ରୋଗରେ ମଲେ ତାର ହିସାବ ନାହିଁ । ହଜାର ହଜାର ସ୍ତ୍ରୀ ଲୋକଙ୍କୁ ପାକିସ୍ତାନର ମୁସଲମାନମାନେ ଛଡ଼ାଇ ରଖିଲେ, ସେମାନଙ୍କୁ ମୁସଲମାନ କଲେ, ସେମାନଙ୍କ ଉପରେ ନାନା ଅତ୍ୟାଚାର କଲେ । ଏକାଠି ହୋଇ ବଡ଼ ବଡ଼ ଦଳରେ ଶରଣାର୍ଥୀ ପଳାଇ ଆସୁଥାନ୍ତି । ବାଟରେ ଗୋଟାଏ ଗୋଟାଏ ଦଳକୁ ଘେରି ଆକ୍ରମଣକାରୀମାନେ ହତ୍ୟା, ଲୁଣ୍ଠନ, ଅତ୍ୟାଚାରର ବିଭୀଷିକା କରୁଥାନ୍ତି । ଶରଣାର୍ଥୀଙ୍କୁ ନେଇ ଚାଲି ଯାଉଥିବା ରେଳଗାଡ଼ି ଅଟକାଇ ବି ସେଇଆ କରୁଥାନ୍ତି ।

ପଞ୍ଜାବରେ ଓ ବଙ୍ଗ ଦେଶରେ, ଆସାମରେ ଭାରତ-ପାକିସ୍ତାନ ମଝିରେ ସୀମାରେଖା କେଉଁଠାରେ ପଡ଼ିବ ସେ ବିଷୟରେ ସିଦ୍ଧାନ୍ତ କରିବା ଭାର କଂଗ୍ରେସ ଓ ମୁସଲିମ୍ ଲୀଗ୍ ଉଭୟ ଦଳର ରାଜିରେ ବଡ଼ଲାଟ ଦେଇଥାନ୍ତି ସାର୍ (ପଛେ ଲର୍ଡ଼) ସିରିଲ୍ ର୍ୟାଡ଼କ୍ଲିଫ୍‌ଙ୍କୁ । ସେ ମହାଶୟ ତାଙ୍କ ସିଦ୍ଧାନ୍ତ ଅଗଷ୍ଟ ୧୩ ସକାଳେ ଗୋପନରେ ଭାଇସରୟଙ୍କ ହାତକୁ ଦେଲେ ଓ ଅଗଷ୍ଟ ୧୫ ପୂର୍ବରୁ ତାକୁ ପ୍ରକାଶ କଲେ ନାନା ଗୋଳମାଳ ଲାଗିଯାଇ କ୍ଷମତା ହସ୍ତାନ୍ତର ଦିନଟି କାଳେ ସୁରୁଖୁରୁରେ କଟିବ ନାହିଁ ଭାବି ଭାଇସରୟ ତାକୁ ଗୁପ୍ତ ରଖିଲେ, ୧୭ ଅଗଷ୍ଟରେ ପ୍ରକାଶ କଲେ । ଅଗଷ୍ଟ ୧୫ ଦିନ ବି ଅମୃତସର ଆଦି କେତେକ ସ୍ଥାନରେ ଗଣ୍ଡଗୋଳ ଚାଲିଥିଲା । ତହିଁ ଆରଦିନଠୁ ପୂର୍ବ ପାକିସ୍ତାନରେ ଜଳି ଉଠିଥିଲା, କିନ୍ତୁ ଅଗଷ୍ଟ ୧୭ରେ 'ରାଡ଼କ୍ଲିଫ୍ ଆଓ୍ୱାର୍ଡ଼' ପ୍ରକାଶ ପାଇଲା ବେଳଠୁ ପୂର୍ବ ପାକିସ୍ତାନରେ, ପଞ୍ଜାବରେ, ତାପରେ ଦିଲ୍ଲୀରେ, ଭୟଙ୍କର ହେଲା ଓ ତାହା ଫଳରେ ଶରଣାର୍ଥୀଙ୍କ ସ୍ରୋତର ବନ୍ୟା ଛୁଟିଲା ।

ଏ ଯେଉଁ ରକ୍ତ-ନଦୀ ବହିଗଲା, ଧ୍ୱଂସର ଧୂଆଁ ଆକାଶକୁ ଉଠିଲା, ଲକ୍ଷ ଲକ୍ଷ ଜୀବନ ନଷ୍ଟ, ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲା, ଏ ନଥିଲା କୌଣସି ଆକ୍ରମଣକାରୀ ଋଣରଙ୍କାର

ମୂଳ ଅଭିଯାନର ଫଳ । ହିନ୍ଦୁ ମୁସଲମାନ ପରସ୍ପରଙ୍କୁ ଆଦର୍ଶ ଭାଇ ଭାଇ ହୋଇ ଏତେକାଳ ଏଠି ରହିଥିଲେ, ପାଗଳ ହୋଇ ସେହିମାନେ ପରସ୍ପର ଉପରେ ସ୍ୱା କଲେ । ଥରେ ଆରମ୍ଭ ହେବାପରେ ସ୍ୱା ହୁଡ଼ାହୁଡ଼ରେ ରହିଲା ଶ୍ଳୋକ, —"ସେ ଯାଉ, ମୁଁ ତା ସମ୍ପତ୍ତି ନେବ" । କିନ୍ତୁ ଅସଲ କାରଣ ସାଂପ୍ରଦାୟିକ ବିଦ୍ୱେଷ ଓ ତା ମଧ୍ୟ ଘୃଣାକୁ ନୁହେଁ, ରାଜନୈତିକ ସ୍ୱାର୍ଥସିଦ୍ଧି ଲାଗି । ଆଗ ମୁସଲିମ ଲୀଗ୍ ମୁସଲମାନମାନଙ୍କୁ ହିନ୍ଦୁଙ୍କ ବିରୁଦ୍ଧରେ ମତାଇ "ଡାଇରେକ୍ଟ ଆକ୍ସନ୍" ଆରମ୍ଭ କରିଥିବା ଯୋଗୁଁ ।

## ସାଂପ୍ରଦାୟିକତା ବିରୁଦ୍ଧରେ ଗାନ୍ଧିଜୀ

ଚିରକାଳ ମହାତ୍ମାଜୀ ସାଂପ୍ରଦାୟିକତାର ଘୋର ବିରୋଧୀ । ତାହା ବିରୁଦ୍ଧରେ ନିଜର ସବୁ ବଳ ଖଟାଇ ସେ ପ୍ରଚାର କରି ଆସିଛନ୍ତି । ସଂପ୍ରଦାୟ ସଂପ୍ରଦାୟ ଭିତରେ ସଦ୍‌ଭାବ ସହଯୋଗ ମୈତ୍ରୀ ପ୍ରତିଷ୍ଠା କରିବାପାଇଁ ଚେଷ୍ଟା କରି ଆସିଛନ୍ତି । ସେ ଉପଦେଶ ଦେଉଥିଲେ, ହିନ୍ଦୁ ମୁସଲମାନ ଦୁଇ ଭାଇ । ସେମାନେ ପରସ୍ପରର ହିତସାଧନ ପାଇଁ, ପରସ୍ପରଙ୍କ ଅଭାବ ନିରାପତ୍ତା ଅକ୍ଷୁଣ୍ଣ ରଖିବା ପାଇଁ ପରସ୍ପରଙ୍କ ଦାୟିତ୍ୱ ନିଅନ୍ତୁ । ପରସ୍ପରଙ୍କ ଧର୍ମକୁ, ଆଚାରକୁ ଶ୍ରଦ୍ଧା ଓ ମର୍ଯ୍ୟାଦା ଦିଅନ୍ତୁ, ପରସ୍ପରଙ୍କୁ ସ୍ନେହ କରନ୍ତୁ । ତାଙ୍କ ସଭାରେ ଆଗ ପ୍ରାର୍ଥନା ହୁଏ, ସେ ସର୍ବଧର୍ମ ପ୍ରାର୍ଥନା । ସେଠି ଗୀତା ଉପନିଷଦ ବୋଲି ହୁଏ, କୋରାନ୍ ବି ବୋଲି ହୁଏ, ଆଲୋଚନା କରାଯାଏ । ସେ ବୁଝାଉଥିଲେ ସବୁ ଧର୍ମର ଉଦ୍ଦେଶ୍ୟ ଏକ, ଉପଦେଶର ସାର ଏକ, ଭଗବାନ ଏକ, ଯେ ଈଶ୍ୱର ସେ ଆଲ୍ଲା । ବହୁ ବିଖ୍ୟାତ ମୁସଲମାନ ଶାସ୍ତ୍ରଜ୍ଞ ତାଙ୍କର ବନ୍ଧୁ । ଯେଉଁଠି ସେ ସାଂପ୍ରଦାୟିକ ବିଦ୍ୱେଷ ଉପୁଜିବାର ସମ୍ଭାବନା ଦେଖୁଥିଲେ ସେଠି ସେ ଯଥାସାଧ୍ୟ ଚେଷ୍ଟା କରୁଥିଲେ ଯେପରି ତା ଦୂର ହୁଏ, ସଦ୍‌ଭାବ ଉପୁଜେ । ସେଥିପାଇଁ ସଭା କରି ପ୍ରଚାର କରନ୍ତି । ଉଭୟ ସଂପ୍ରଦାୟଙ୍କୁ ଭେଳାଇ ସେମାନଙ୍କ ସ୍ଥାନୀୟ ମୁରବିମାନଙ୍କୁ ଏକାଠି କରି ସ୍ଥାନୀୟ ଶାନ୍ତି-କମିଟିମାନ ଗଢ଼ାନ୍ତି । ଦୁଇ ସଂପ୍ରଦାୟ ଏକାଠି ମିଶି ଆପଣା ଐକ୍ୟ ପ୍ରଚାର କରି ମଝିଆରେ ବୁଲନ୍ତି, ଏକାଠି ପଙ୍‌କ୍ତି ଭୋଜନରେ ବସନ୍ତି । ଦେଶ ଭାଗ ଭାଗ ହେଲା, ସାଂପ୍ରଦାୟିକ ସଂଘର୍ଷ ଘଟି ଏତେ କାଣ୍ଡ ଘଟିଗଲା, ତଥାପି ଯେ ଏବେସୁଦ୍ଧା ବଡ଼ ଭାଗକ ମୁସଲମାନ ଭାରତରେ ଅଛନ୍ତି, ପାକିସ୍ତାନରେ ନୁହେଁ, ସେଥିପାଇଁ ଗାନ୍ଧୀ ଓ ଗାନ୍ଧୀବାଦୀଙ୍କ ଅବଦାନ ଅଳ୍ପ ନୁହେଁ ।

## ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ଉଦ୍ୟମ

ଭାରତରେ ସାଂପ୍ରଦାୟିକ ସଂଘର୍ଷ ବେଳେ ଗୋପବାବୁଙ୍କର ଦ୍ୱିତୀୟଥର ବାରିରେ ଅବସ୍ଥାନର ବେଳ । ଅନ୍ତତଃ ପ୍ରାୟ ଦେଢ଼ଶହ ବର୍ଷ ଭିତରେ ଓଡ଼ିଶାରେ ହିନ୍ଦୁ ମୁସଲମାନଙ୍କ ଭିତରେ ସାଂପ୍ରଦାୟିକ ଗଣ୍ଡଗୋଳ ହେବାର ଜଣା ନ ଥିଲା,

ଦୁଇ ସଂପ୍ରଦାୟର ଲୋକ ସହରରେ, ଗାଁରେ ପାଖ ପାଖ ହୋଇ ରହି ଆସିଥିଲେ । ସ୍ଥାନେ ସ୍ଥାନେ ପରସ୍ପର ପ୍ରିୟ ବନ୍ଧୁ । ସ୍ଥାନେ ସ୍ଥାନେ ଏକାଠି ହୋଇ ନାନା ଉତ୍ସବ ପାଳନ୍ତି । କିନ୍ତୁ ମୁସ୍‌ଲିମ୍‌ ଲିଗ୍‌ର ଅଭ୍ୟୁଦୟ ବେଳଠୁ ଓଡ଼ିଶାରେ ତାର ପ୍ରଭାବ ରହିଥିଲା । '୧୯୪୬ର ସାଧାରଣ ନିର୍ବାଚନ ବେଳେ ଓଡ଼ିଶାରେ ମୁସଲମାନମାନଙ୍କ ପାଇଁ ସଂରକ୍ଷିତ ଥିବା ସବୁଯାକ ସିଟ୍‌ ଯେ ମୁସଲିମ୍‌ ଲିଗ୍‌ର ପ୍ରାର୍ଥୀମାନେ ହିଁ ଜିତିଲେ, ଏଥିରୁ ଜଣାପଡ଼ିବ ଯେ ସେତେବେଳେ ଓଡ଼ିଶାରେ ମୁସଲମାନମାନଙ୍କ ଉପରେ ମୁସ୍‌ଲିମ୍‌ ଲିଗ୍‌ର ଦୃଢ଼ ପ୍ରଭାବ ପଡ଼ିଲାଣି । ବଙ୍ଗଦେଶ ଓଡ଼ିଶାକୁ ଲାଗିଛି । ବଙ୍ଗଦେଶରେ ମୁସ୍‌ଲିମ୍‌ ଲିଗ୍‌ ମନ୍ତ୍ରିମଣ୍ଡଳ ଗଢ଼ି ଶାସନ କରୁଛି । ତେଣୁ ପ୍ରଭାବ ପକାଇବାକୁ ସ୍ଥାନର ଦୂରତା ବ୍ୟବଧାନ ସୃଷ୍ଟି କରୁନାହିଁ । ଅବଶ୍ୟ ଏକଥା ସତ ଯେ ବଙ୍ଗଦେଶ ପରି ସ୍ଥାନେ ସ୍ଥାନେ ବଡ଼ ବଡ଼ ମୁସଲମାନବହୁଳ ଅଞ୍ଚଳ ଓଡ଼ିଶାରେ ନ ଥିଲା ଓ ତେଣୁ ହିନ୍ଦୁଙ୍କ ଅଳ୍ପସଂଖ୍ୟକ ବା ନିର୍ଯାତିତ ଭାବ ମୁସଲମାନମାନେ ହଠାତ୍‌ ତାଙ୍କ ଉପରେ ଚଢ଼ାଉ କରିବେ ଏପରି ଭାବ ହେଉ ନ ଥିଲା । କିନ୍ତୁ ସମସ୍ତ ତ ଭାନେ ଥିଲା । ଭାରତର ଅନ୍ୟତ୍ର ଯେଉଁ ସାଂପ୍ରଦାୟିକ ଗଣ୍ଡଗୋଳ ଘଟୁଥିଲା, ମୁସଲମାନ ହାତରେ ହିନ୍ଦୁ, ହିନ୍ଦୁ ଓ ଶିଖ୍‌ଙ୍କ ହାତରେ ମୁସଲମାନ ଯେପରି ନାନା ହିଂସାକାଣ୍ଡର ଶିକାର ହେଉଥିଲେ ସେ ଖବର ଲୁଚିଛପି ରହିପାରୁ ନ ଥିଲା, ବରଂ ଲୋକଙ୍କ ତୁଣ୍ଡରେ ନାନା ପ୍ରକାରରେ ବିକୃତ ଓ ବିକଟାଳ ହୋଇ ପ୍ରଚାର ପାଉଥିଲା । ରାଗ ଚଢ଼ିଲେ କେଉଁଠି ଥାଏ ବିଚାର ବୁଦ୍ଧି ? କିଏ ଭାବେ ପରିଣାମ କଣ ହେବ ? ତହିଁରେ ପୁଣି, ମତାଇବାକୁ ମୁସ୍‌ଲିମ୍‌ ପ୍ରଚାରକ ଆସୁଥାନ୍ତି । ବାଲେଶ୍ୱର, ଭଦ୍ରକ, ଯାଜପୁର ଆଦି ସବ୍‌ଡିଭିଜନରେ ସ୍ଥାନେ ସ୍ଥାନେ ବହୁତ ମୁସଲମାନ ବସ୍ତି, ସେସବୁ ଅଞ୍ଚଳ ବି ବଙ୍ଗଦେଶଠୁ ଖୁବ୍‌ ପାଖ, କଲିକତାକୁ ପାଖ, କଲିକତା ସହିତ ଏ ଅଞ୍ଚଳର ନାନା ସମ୍ପର୍କ । ବରି ଅଞ୍ଚଳ ସେହି ଯାଜପୁର ସବ୍‌ଡିଭିଜନରେ । ବରିରୁ ଖରସୁଆଁ ନଈପାରି ହୋଇଗଲେ ଆରପାଖେ ବଞ୍ଚାରପୁର ଗାଁ, ସେଠି ବଡ଼ ମୁସଲମାନ ବସ୍ତି, ସେହିପରି ନାନା ସ୍ଥାନରେ । ଗୋପବାବୁ ଭାବିଲେ, ଅପେକ୍ଷା ନ କରି ସାଂପ୍ରଦାୟିକ ସଂଘର୍ଷର ଆଶଙ୍କାକୁ ଆଗ ନିର୍ମୂଳ କରିଦେବା ଦରକାର ।

ସେ ଯେତେବେଳେ ଜନ୍ମ ହୋଇଥିଲେ, ସେତେବେଳେ ତାଙ୍କ ମା'ଙ୍କଠି ଯଥେଷ୍ଟ କ୍ଷୀର ହେଉ ନ ଥିଲା, ତେଣୁ ତାଙ୍କ ବାପ ମା କଟକରେ ତାଙ୍କ ଘରର ପଡ଼ିଶା ଜଣେ ମୁସଲମାନ ଭଦ୍ରମହିଳାଙ୍କଠୁ ତାଙ୍କୁ କ୍ଷୀର ଖୁଆଇବା ବନ୍ଦୋବସ୍ତ କରି ଦେଇଥିଲେ । ସେ ଭଦ୍ରମହିଳାଙ୍କର ଗୋଟିଏ ସଦ୍ୟଜାତ ଶିଶୁ ଥାଏ । ସେ ତାକୁ ଓ ଗୋପବାବୁଙ୍କୁ ଉଭୟଙ୍କୁ କ୍ଷୀର ଖୁଆଉଥିଲେ । ତେଣୁ ଗୋପବାବୁ କେତେଥର କହନ୍ତି, "ମୁଁ ମୋର ମୁସଲମାନ ମାଠୁ କ୍ଷୀର ଖାଇଛି ।" ପିଲାଦିନେ ସେ ଯେଉଁ ପରିବେଶରେ ବଢ଼ିଲେ, ସେଠି ହିନ୍ଦୁ-ମୁସଲମାନ ବୋଲି ସାଂପ୍ରଦାୟିକ ମନୋଭାବ ନ ଥିଲା ।

କଟକରେ ହିନ୍ଦୁ ମୁସଲମାନ ଭାଇ ଭାଇ । ତାଙ୍କ ନିଜ ଦୃଷ୍ଟିରେ ସର୍ବୁଦିନେ ସେହି ଭାବ । ସେ ସ୍ୱରାଜ ଛାଡ଼ି କଂଗ୍ରେସରେ ମିଶିଲେ । ଗାନ୍ଧିବାଦୀ ଚିନ୍ତାଧାରା ଓ କାର୍ଯ୍ୟକ୍ରମ ଭିତରେ ମୂଳରୁ ସାଂପ୍ରଦାୟିକ ଏକତା ଓ ସଦ୍‌ଭାବ ସମ୍ବର୍ଦ୍ଧନ ବୃଦ୍ଧି ପାଇଁ ତାଙ୍କର କାର୍ଯ୍ୟକ୍ରମ ଭିତରେ ଅଗ୍ରାଧିକାର ପାଇ ଆସିଥାଏ । ଦୁହେଁ ତାଙ୍କ ବନ୍ଧୁ, ତାଙ୍କ ସହକର୍ମୀ । ନହିଁଙ୍କ ଘରେ ସେ ଖାଆନ୍ତି, ଏକାଠି ପଙ୍‌କ୍ତିଭୋଜନ କରନ୍ତି, ଏକାଠି ଧର୍ମଚର୍ଚ୍ଚା କରନ୍ତି, କୋରାନ୍ ଓ ଗୀତା ଚର୍ଚ୍ଚା କରନ୍ତି, ସର୍ବଧର୍ମର ସମାନତ୍ୱ ପ୍ରଚାର କରନ୍ତି ।

ଏବେ ପ୍ରୟୋଜନ ପଡ଼ିଲା, ସେଇଥି ସେ ଆହୁରି କରି କରି ବୁଲିବେ, ସ୍ଥାନେ ସ୍ଥାନେ ସଂଗଠନ କରିବେ । ସେ ଓ ତାଙ୍କ ସହକର୍ମୀମାନେ ଗାଁକୁ ଗାଁ, ସହର, ଗ୍ରାମଆଡ଼େ ବୁଲିଲେ, ହିନ୍ଦୁ ମୁସଲମାନଙ୍କୁ ଏକାଠି କରି ବୁଝାଇଲେ, ସଭା କଲେ, ପଙ୍‌କ୍ତି ଭୋଜନମାନ କରାଇଲେ, ଏକାଠି କରି ଏକତା ପ୍ରଚାର କରି କରି ପଦଯାତ୍ରା କରାଇଲେ, ସଭା କରି ଦୁଇ ଧର୍ମର ଆଲୋଚନା କରାଇ ଦୁଇ ଧର୍ମର ସମାନତ୍ୱ ବୁଝାଇଲେ, ଗାନ୍ଧୀ ବିଚାର ବୁଝାଇଲେ ଓ ସେମାନଙ୍କ କର୍ତ୍ତବ୍ୟ କଣ ସେ ବିଷୟରେ ବୁଝାଇଲେ । ସେ ହିନ୍ଦୁମାନଙ୍କୁ ବୁଝାଇଲେ ଯେ ପଡ଼ୋଶୀ ମୁସଲମାନ ଭାଇ ଭଉଣୀମାନଙ୍କ ନିରାପତ୍ତା ଲାଗି ସେମାନେ ଦାୟୀ ରହିବେ । ସତର୍କ ରହିଥିବେ ଯେପରି ଏଭଳି କିଛି ନ ଘଟେ ଯହିଁରେ ତାଙ୍କ ମନରେ ତିଳେମାତ୍ର ଉଦ୍‌ବେଗ କି ଆଶଙ୍କା ନ ଆସେ, କ୍ଷତି ଘଟିବା ତ କାହିଁ ଦୂରର କଥା । ସେହିପରି, ମୁସଲମାନମାନଙ୍କୁ ବୁଝାଇଲେ ଯେ ସେମାନେ ତାଙ୍କ ପଡ଼ୋଶୀ ହିନ୍ଦୁମାନଙ୍କ ନିରାପତ୍ତା ଓ ଅଭୟ ପାଇଁ ଦାୟିତ୍ୱ ନେବେ, ଯେପରି ସାଂପ୍ରଦାୟିକ ବିଦ୍ୱେଷ ନ ଉପୁଜେ, କେହି ନ ମତାଏ, କେହି କାହା ମତାମତରେ ନ ପଡ଼ନ୍ତି ସେଥିପାଇଁ ଉଭୟ ହିନ୍ଦୁ ଓ ମୁସଲମାନ ନିଜ ନିଜ ସାହି ପାଇଁ, ପଡ଼ା ପାଇଁ, ଗାଁ ପାଇଁ, ସହର ପାଇଁ, ସହରର ଗଳି ପାଇଁ, ବସ୍ତି ପାଇଁ ଦାୟିତ୍ୱ ନେବେ । ଏ ଦାୟିତ୍ୱ ତୁଲାଇବାକୁ ମୁଖିଆ ମୁଖିଆ ଲୋକଙ୍କୁ ଓ ଯୁବକମାନଙ୍କୁ ବାଛିଲି ସେ 'ଶାନ୍ତି କମିଟି' ମାନ ଗଢ଼ି ଦେଇଗଲେ । ତାଙ୍କ ଉଦ୍ୟମ ଓ 'ଶାନ୍ତି କମିଟି'ଗୁଡ଼ିକ ଭଲ କାମ ଦେଲା । କେଉଁଠି କିଛି ସାଂପ୍ରଦାୟିକ ବିଦ୍ୱେଷ-ଜନିତ ଅଘଟନ ଘଟିଲା ନାହିଁ । ମୁସଲମାନମାନେ ଜଗିଲେ ଯେପରି ମତାମତି କରିବାକୁ ବାହାରୁ ପ୍ରଚାରକ ନ ଆସନ୍ତି, ଗାଁରେ ଠାବ ନ ପାଆନ୍ତି, କେହି ସେମାନଙ୍କ କଥା ନ ଶୁଣେ । ପ୍ରଚାରକ ପହଞ୍ଚିଲେ ସେମାନେ ସିଧା କହିଦିଅନ୍ତି "ଆମେ ଏଠି ହିନ୍ଦୁ ମୁସଲମାନ କାଳ କାଳ ହେଲା ଭାଇ ଭାଇ ହୋଇ ରହି ଆସିଛୁଁ, କେବେ ଟିକିଏ ବି ଗଣ୍ଡଗୋଳ ନାହିଁ, ତୁମେ ଆସିଛ ଆମ ଭିତରେ କଳି ଲଗାଇବାକୁ ? ତୁମେଗୁଡ଼ାକ ଗୋଳମାଳିଆଗୁଡ଼ାକ, ଯାଅ ପଳା, ତମ ପାଇଁ ଏଠି ଜାଗା ନାହିଁ, ତମ କଥା କେହି ଶୁଣିବେ ନାହିଁ ।" ସେ ଅଞ୍ଚଳରେ ଯେ ଦୁଇ ସମ୍ପ୍ରଦାୟ ଭିତରେ କେବେ

କୌଣସି ଗଣ୍ଡଗୋଳ ଲଗିଲା ନାହିଁ, ଯଦିଓ ଭାରତର ଅନ୍ୟାନ୍ୟ ଆଡ଼େ ହିଂସା ବ୍ୟାପିଥାଏ, ଜଳୁଥାଏ । ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ତାଙ୍କ ସହକର୍ମୀମାନଙ୍କର ଉଦ୍ୟମ ତାହାର ଗୋଟିଏ ପ୍ରଧାନ କାରଣ । ଯାହାର ତେର ସ୍ତରରୁ ଯେଉଁ କାର୍ଯ୍ୟ ତାହା କାର୍ଯ୍ୟ କଲାବେଳେ ଅଖିବୁଣିଆ ହୁଏ ନାହିଁ, ତାହାର ପରିଣାମ ଜଣାଇଦିଏ ତାହା କେଡ଼େ ଗୁରୁତ୍ୱପୂର୍ଣ୍ଣ ।

ସାଂପ୍ରଦାୟିକ ଏକତା ସପକ୍ଷରେ ଓ ସାଂପ୍ରଦାୟିକ ବିଦ୍ୱେଷ ବିରୁଦ୍ଧରେ ଗୋପବାବୁ ସମ୍ବାଦପତ୍ର ଓ ପତ୍ରିକାରେ ବହୁତ ଲେଖା ପ୍ରକାଶ କରିଥିଲେ ଓ ବହୁତ ବକ୍ତୃତା ଦେଇଥିଲେ ।

## ତେତିଶି

### ସ୍ୱାଧୀନତା ଆସିଲା

୧୯୪୭, ଅଗଷ୍ଟ ୧୪ ରାତି, ପଣ୍ଡିତ ନେହେରୁ କନଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲି ହଲ୍‌କୁ ଯିବେ । ଆଜି ରାତି ୧୨ଟାରେ ହେବ ଭାରତର ସ୍ୱାଧୀନତା । ସେ ଫୋନ୍‌ରେ ଖବର ପାଇଲେ ଲାହୋରରେ ଶିଖ୍ ଓ ହିନ୍ଦୁ ସ୍ତ୍ରୀ ବାଳକମାନେ ତାଙ୍କ ସାହିରୁ ବାହାର ପାଣି ଆଣିବାକୁ ଗଲାବେଳେ ମୁସଲମାନମାନେ ତାଙ୍କୁ ହାଣି ପକାଉଛନ୍ତି । ପୁରୁଣା ସହରରେ ପ୍ରାୟ ଲକ୍ଷେ ହିନ୍ଦୁ ଓ ଶିଖ ସତେ ଅବା ଜନ୍ତାରେ ପଡ଼ିଛନ୍ତି । ବାହାରେ ଘେରିଛନ୍ତି ଘାତକ । ହିନ୍ଦୁ ଓ ଶିଖ ସାହିମାନଙ୍କର ପାଣି ଲାଇନ୍ କାଟି ଦିଆଯାଇଥାଏ । ବର୍ଷା ନାହିଁ, ପ୍ରବଳ ଗରମ, ଟୋପେ ପାଣି ନାହିଁ । ନାନା ସ୍ଥାନରେ ମୁସଲମାନମାନେ ଘରେ ନିଆଁ ଲଗାଇ ଦେଇଥାନ୍ତି, ନିଆଁ ହୁ ହୁ ଜଳୁଥାଏ । ସେ ମର୍ମାହତ ହେଲେ, ତଥାପି ସେହି ଅବସ୍ଥାରେ ସଭାକୁ ଗଲେ, ରାତି ୧ ଟା ବେଳେ ବକ୍ତୃତା ଦେଲେ ।

ରାତି ୧୨ଟାରେ ସ୍ୱାଧୀନତା ଆସିଲା । ଭାରତର ସହସ୍ର ସହସ୍ର ସହରରେ ଗାଁରେ ଦିଆଲି ଉତ୍ସବ ପରି ଆଲୋକମାଳା ଜଳି ଉଠିଲା, ବାଣ ଫୁଟିଲା, ଆନନ୍ଦ ଉତ୍ସବ ଲାଗିଗଲା ।

## ୧୯୪୭, ଅଗଷ୍ଟ ୧୫ ବେଳେ ମହାତ୍ମାଜୀ

କିନ୍ତୁ ଅଗଷ୍ଟ ୧୫ ଦିନ ମହାତ୍ମାଜୀ ନଥିଲେ ଦିଲ୍ଲୀରେ । ଦିଲ୍ଲୀରେ ଥିଲାବେଳେ ସେ ଆଗରୁ ନିଷ୍ପତ୍ତି କରି ସାରିଥିଲେ ଯେ ସ୍ୱାଧୀନତା ଦିନଟି ସେ ନୋଆଖାଲିରେ ଖ୍ରୀଷ୍ଟ, ହିନ୍ଦୁ, ସଂଖ୍ୟାଲଘୁ ହିନ୍ଦୁ ସମ୍ପ୍ରଦାୟ ସହିତ କଟାଇବେ; ସେମାନଙ୍କ ନିରାପତ୍ତା ଅକ୍ଷୁଣ୍ଣ ରଖିବେ ବୋଲି ସେ ନିଜ ଜୀବନକୁ ପଣ କରି ଦେଇଥିଲେ । ଭାଇସ୍‌ରୟ ଲର୍ଡ ମାଉଣ୍ଟ ବ୍ୟାଟେନ୍ ଅନୁରୋଧ କରିଥିଲେ ଯେ ସେ କଲିକତାରେ ଶାନ୍ତିରକ୍ଷା କରନ୍ତୁ, ଆଶଙ୍କା ସେଇଠି ବେଶି, ସେଠି ଯଦି ପୁଣି ରକ୍ତପାତ ଆରମ୍ଭ ହୁଏ ତେବେ ତାହା ପଞ୍ଜାବ ତୁଳନାରେ ବହୁଗୁଣ ଭୟଙ୍କର ହୋଇ ଉଠିବ । ସୈନ୍ୟବାହିନୀର ଅଧିକାଂଶ ନିୟୁକ୍ତ କରା ହୋଇଛନ୍ତି ପଞ୍ଜାବ ଅବସ୍ଥା ସମ୍ଭାଳିବାକୁ । ସେଠିକି ପଠାଇବା ପାଇଁ ଏତେ ସୈନ୍ୟ ବି ମିଳିବେ ନାହିଁ, ଏକମାତ୍ର ମହାତ୍ମାଙ୍କ ସାହା । କିନ୍ତୁ ମହାତ୍ମାଜୀ ରାଜି ହୋଇ ନ ଥିଲେ, ସେ ତାଙ୍କ ନିଷ୍ପତ୍ତିରେ ଅଟଳ । ବାଟରେ ମହାତ୍ମାଜୀ ସୋଦପୁର ଆଶ୍ରମରେ ଥାନ୍ତି, ନୋଆଖାଲି ଯିବାକୁ ବାହାରୁଥାନ୍ତି, ପହଞ୍ଚିଲେ ବଙ୍ଗଦେଶର ମୁଖ୍ୟମନ୍ତ୍ରୀ ସୁରାୱର୍ଦ୍ଦି, ମୁସ୍‌ଲିମ୍ ଲୀଗ୍ ନେତା, ମୁସ୍‌ଲିମ୍ ଲୀଗ୍‌ର ୧୯୪୬ ଅଗଷ୍ଟ ୧୬ର 'ଡାଇରେକ୍ଟ ଆକ୍‌ସନ୍' ହତ୍ୟାକାଣ୍ଡକୁ ଯେ ପୃଷ୍ଠପୋଷକତା କରିଥିଲେ । ସେ ଦିନଟି ଅଗଟ୍ଟେ ଛୁଟି ଘୋଷଣା କରି ଦେଇଥିଲେ । ସେ ଓ ଲୀଗ୍ ନେତାମାନେ ଆଶଙ୍କା କରୁଥାନ୍ତି ଯେ ସ୍ୱାଧୀନତା ହେଲାମାତ୍ରେ କଲିକତାରେ ହିନ୍ଦୁମାନେ ମୁସଲମାନମାନଙ୍କ ଉପରେ ପ୍ରତିହିଂସା ନେବେ । ସେ ମହାତ୍ମାଜୀଙ୍କୁ ବହୁତ ଅନୁନୟ କଲେ ଯେ ମହାତ୍ମାଜୀ କଲିକତାରେ ହିଁ ରହନ୍ତୁ । ମୁସଲମାନମାନଙ୍କୁ ରକ୍ଷା କରନ୍ତୁ । ସେହି ଏକା ତା କରିପାରିବେ । ମହାତ୍ମା ତାଙ୍କୁ ଯୋଡ଼ିଏ ସର୍ତ୍ତ ଦେଲେ : (୧) ସୁରାୱର୍ଦ୍ଦି ନୂଆଖାଲିର ମୁସଲମାନମାନଙ୍କଠୁ ଶପଥପୂର୍ବକ ପ୍ରତିଶ୍ରୁତି ଆଣିଦେବେ ଯେ ସେମାନଙ୍କର ସେଠି ଯେଉଁ ହିନ୍ଦୁମାନେ ରହିଲେ ସେମାନଙ୍କ ନିରାପତ୍ତାରେ ଆଦୌ ଆଞ୍ଚ ଲାଗିବ ନାହିଁ । ଏ ସର୍ତ୍ତ ଭଙ୍ଗ ହେଲେ, କି ଗୋଟିଏ କେହି ହିନ୍ଦୁ ପ୍ରାଣ ଖାଇଲେ ମହାତ୍ମା ଆମରଣ ଅନଶନ କରିବେ । (୨) କଲିକତାରେ ସମ୍ପୂର୍ଣ୍ଣ ନିରସ୍ତ୍ର ହୋଇ ଏକୁଟିଆ ଦିନରାତି ସବୁବେଳେ ତାଙ୍କ ସଙ୍ଗେ କଲିକତାରେ ରହିଥିବେ । ସୁରାୱର୍ଦ୍ଦି ଏ ଦୁଇ ସର୍ତ୍ତରେ ରାଜି ହେଲେ । ତେଣୁ ୧୯୪୭ ଅଗଷ୍ଟ ୧୩ ଦିନ ଅପରାହ୍ଣରେ ସେ କଲିକତାରେ ପହଞ୍ଚିଗଲେ । ବେଲିଆଘାଟିଆ ରୋଡ଼ରେ ଗୋଟାଏ ଅସନା ଦୁର୍ଗନ୍ଧ ପଲ୍ଲୀ ଭିତରେ ଗୋଟିଏ ପୁରୁଣା ପରିତ୍ୟକ୍ତ ଜୀର୍ଣ୍ଣ ଘର, 'ହାଇଦରି

ହାଉସ୍', ସେଇଠି ସେ ରହିଲେ । ଆଗ ପହିଞ୍ଚୁ ପହିଞ୍ଚୁ ହିନ୍ଦୁମାନଙ୍କ ତରଫରୁ ତାଙ୍କ ଉପରେ ରାଗ ଓ ଭର୍ତ୍ସନା । ତାପରେ ସୁରାୱର୍ଦ୍ଦି ଆସି ପହଞ୍ଚିଲା ପରେ ପାଟିତୁଣ୍ଡ । ସେ ରହିବା ଘର ଝରକା ବାଟେ ଘର ଭିତରକୁ ଢେଲା ପଥର ମାଡ଼, କିନ୍ତୁ ଗାନ୍ଧୀଜି ରହିଲେ, ଆରମ୍ଭ ହେଲା ତାଙ୍କର ଦୈନିକ ପ୍ରାର୍ଥନା ସଭା, ହିନ୍ଦୁ ମୁସଲମାନ ସହଯୋଗ ପ୍ରତିଷ୍ଠା କାମ । ହଜାର ହଜାର ହିନ୍ଦୁ ମୁସଲମାନ ତାଙ୍କ ଦର୍ଶନ ପାଇଁ ଆସିଲେ, ତାଙ୍କର ଜୟଧ୍ୱନି କଲେ, ତାଙ୍କ ସଭାରେ ଯୋଗଦେଲେ ଓ ପରସ୍ପର ପ୍ରତି ବିଦ୍ୱେଷ ପାସୋରିଲେ । ଅଗଷ୍ଟ ୧୪ ଦିନ ସଭାରେ ସେ କହିଥିଲେ, "କାଲିଠୁ ଆମେ ବ୍ରିଟିଶ୍ ଦାସତ୍ୱ ଶୃଙ୍ଖଳରୁ ମୁକ୍ତ ହେବୁ , କିନ୍ତୁ ଆଜି ମଧ୍ୟରାତ୍ରରୁ ଭାରତ ଭାଗ ଭାଗ ହେବ । କାଲି ଦିନଟି ଉତ୍ସବର ଦିନ ହେବ, କିନ୍ତୁ କାଲିଟି ଶୋକଦିବସ ବି ହେବ ।" ସେହି ସଭାରେ ସେ କହିଥିଲେ, "ଯଦି କଲିକତାରେ ବୁଦ୍ଧି ବିଚାର ଓ ଭ୍ରାତୃଭାବ ଲେଉଟି ଆସିବ ତେବେ ହୁଏତ ସାରା ଭାରତକୁ ରକ୍ଷା କରି ହେବ । ତା ନ ହେଲେ, ସାଂପ୍ରଦାୟିକ ସଂଘର୍ଷର ନିଆଁ ଯଦି ଦେଶସାରା ଲାଗିଯିବ ତେବେ ଆମ ନୂତନ ଲବ୍ଧ ସ୍ୱାଧୀନତା ରହିବ ବା କେମିତି ?" ଅଗଷ୍ଟ ୧୪ ରାତି ୧୨ଟା ବେଳେ ସେ ଚେଇଁ ନ ଥିଲେ, ଶୋଇଥିଲେ ।

କିନ୍ତୁ ବଙ୍ଗ ଦେଶରେ ତାଙ୍କ ଶାନ୍ତି ଉଦ୍ୟମ ସେତେବେଳେ ସଫଳ ହୋଇଥିଲା । ଅଗଷ୍ଟ ୧୫ ଆସିଲା ଓ ଗଲା; କଲିକତାରେ କି ନୋଆଖାଲିରେ ସାଂପ୍ରଦାୟିକ ଗଣ୍ଡଗୋଳ ଘଟିଲା ନାହିଁ । ୧୯୪୭ ଅଗଷ୍ଟ ୧୫ ଦିନ କଲିକତାରେ ସେହି ଦୁର୍ଗନ୍ଧମୟ ଅଧିକା ଦରିଦ୍ର ବସ୍ତି ଭିତରେ ଭୂତ୍‌ଖାନା ପରି ଗୋଟାଏ ପୁରୁଣା ବେମରାମତି ପରିତ୍ୟକ୍ତ ଜଙ୍ଗଲିଆ ଘର 'ହାଇଦରି ହାଉସ୍'ରେ ବସା କରିଥିବା ମହାତ୍ମାଜି ତାଙ୍କ ପୂର୍ବ ନିଷ୍ପତ୍ତି ଅନୁଯାୟୀ ଉପବାସ କଲେ, ପ୍ରାର୍ଥନା ଓ ସୂତାକଟା କଲେ, କିନ୍ତୁ ସକାଳୁ ଦିନଯାକ ତାଙ୍କ ଦର୍ଶନ ପାଇଁ ଲାଗିଗଲା ହିନ୍ଦୁ ମୁସଲମାନଙ୍କ ଭିଡ଼ । ହଜାର ହଜାର ଲୋକ, ସେମାନଙ୍କ ତୁଣ୍ଡରେ ତାଙ୍କର ଜୟଧ୍ୱନି । ହୃଦୟରେ ତାଙ୍କ ପ୍ରତି କୃତଜ୍ଞତା ଯେ ସେ କମିଆଁ କଲପରି ଅତ୍ୟାର୍ଶ୍ଚ କାମ କରିଛନ୍ତି, ଅସମ୍ଭବକୁ ସମ୍ଭବ କରିଛନ୍ତି, କଲିକତାରେ ଆଉ ସାଂପ୍ରଦାୟିକ ସଂଘର୍ଷ ନାହିଁ, ସବୁ ଶାନ୍ତ । ବିଶାଳ ମହାନଗରୀର ପ୍ରତି ଗଳିକନ୍ଦିରେ ବି ସେହି ମନ୍ତବ୍ୟ, ସମସ୍ତେ ଆଶ୍ୱସ୍ତ । ତାଙ୍କ ବସା ହତାରେ ବର୍ଷି ପଡ଼ିଲା ପ୍ରକାଣ୍ଡ ସଭା, ୩୦ ହଜାର ଲୋକ । ମହାତ୍ମାଜି ଭାଷଣ ଦେଲେ । ତାପରେ ସେ ହିନ୍ଦୁ ମୁସଲମାନ ଉଭୟ ପକ୍ଷର ନେତାଙ୍କୁ ଘେନି ତାଙ୍କ ପୁରୁଣା ସେଭ୍ରଲେଟ ଗାଡ଼ିରେ ବସି ସହର ବୁଲି ବାହାରିଲେ । ବାଟେ ବାଟେ ଉଚ୍ଛୁଳା ଜନତାର ଉଚ୍ଛ୍ୱସିତ ଆନନ୍ଦ ଓ ସମ୍ବର୍ଦ୍ଧନା, ତାଙ୍କର ଉପଦେଶ । ସେଠୁ ଫେରି ପୁଣି ତାଙ୍କର ଦୈନନ୍ଦିନ କାର୍ଯ୍ୟକ୍ରମ ।

## ସ୍ୱାଧୀନତା ଉତ୍ସବରେ ଗୋପବାବୁ

୧୯୪୭ ଅଗଷ୍ଟ ୧୫ ଦିନ ସକାଳଠାରୁ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀ ବରୀରେ ରହିଥିଲେ । ସେଦିନ ଗୋପବାବୁ ନିର୍ଜଳା ଉପବାସ ପାଳୁଥାନ୍ତି, ରମା ଦେବୀ ମଧ୍ୟ । ଗୋପବାବୁଙ୍କ ମୁହଁ ଗମ୍ଭୀର, ଚିନ୍ତାକୁଳ । ବରୀ ଆଶ୍ରମବାସୀମାନେ ସ୍ୱାଧୀନତା ଉତ୍ସବ ପାଳୁଥାନ୍ତି, ସେଥିପାଇଁ 'ଖିରି' କରିଥାନ୍ତି । ରମା ଦେବୀ ସେମାନଙ୍କୁ କହିଲେ ଯେ ଗୋପବାବୁ ନିର୍ଜଳା ଉପବାସ କରିଛନ୍ତି, କିଛି ଖାଇବେ ନାହିଁ, ତାଙ୍କର ବି ଉପବାସ । ଗୋପବାବୁ ଗମ୍ଭୀର ହୋଇ କହିଲେ, "ଦେଶ ସ୍ୱାଧୀନ ତ' ହେଲା, ଏ ସ୍ୱାଧୀନତାକୁ ଆମେ ସମ୍ଭାଳି ପାରିବା ତ' ?"

ସେ ଭାବୁଥାନ୍ତି ଦେଶର ଅବସ୍ଥା କଥା, ନାନା ସମସ୍ୟା କଥା ଓ ଭବିଷ୍ୟତ କଥା । ଖାଲି ଭାବୋଚ୍ଛ୍ୱାସ ଓ ଭାବପ୍ରବଣତାରେ ତ ତାର ସମାଧାନ ହେବ ନାହିଁ, କାମ କରିବାକୁ ପଡ଼ିବ, ଦାୟିତ୍ୱ ତୁଲେଇବାକୁ ପଡ଼ିବ । ସ୍ୱାଧୀନତା ଆସିଗଲା । ସେ ଦାୟିତ୍ୱ, ସେ କାମ, ଆଗଠୁଁ ସହସ୍ରଗୁଣ ବଢ଼ିଗଲା । ଆଉ ଇଂରେଜ ସରକାରଙ୍କୁ ଦୋଷ ଦେଇ ନିଜେ ଦାୟିତ୍ୱରୁ ଛୁଟିହେଇ ହେବ ନାହିଁ । ଏଥର ସବୁ ଦାୟିତ୍ୱ ଜନସାଧାରଣଙ୍କର, ତେଣୁ କର୍ମୀଙ୍କର, ନେତାଙ୍କର । ହଠାତ୍ ମୁଣ୍ଡ ଉପରେ ଗୁରୁଦାୟିତ୍ୱର ବୋଝ ଲଦା ହୋଇଗଲା, ସମ୍ଭାଳିବାକୁ ହେବ, ତୁଲାଇବାକୁ ହେବ । ନାନା କ୍ଷେତ୍ରରେ ସେ ଦାୟିତ୍ୱ ତୁଲାଇବା ଲାଗି କର୍ମୀ ଦରକାର । ଅସଲ ହେଲା ଦେଶର ମୂଳଦୁଆ ଗଢ଼ିବା, ତାକୁ ଦୃଢ଼ କରିବା, ମଣିଷ ଓ ସମାଜକୁ ଗଢ଼ିବା । ଗାନ୍ଧୀଜୀଙ୍କ କଳ୍ପିତ 'ରାମରାଜ୍ୟ' ତା ନ ହେଲେ ହୋଇ ପାରିବ ନାହିଁ । ତାର ଲକ୍ଷ୍ୟ ଅହିଂସ-ଶୋଷଣହୀନ—ସ୍ୱାବଲମ୍ବୀ ସମାଜ, ତାହାର ଅନୁରୂପ ଓ ତାହାର କାରିଗର ହେବେ ଦେଶର ସାଧାରଣ ମନୁଷ୍ୟ । ଗାନ୍ଧୀ ବିଚାରର ତାହାହିଁ ପରିକଳ୍ପନା । ତାକୁ କାର୍ଯ୍ୟଦ୍ୱାରା ରୂପାୟିତ କରିବାକୁ ପଡ଼ିବ । ସେଥିପାଇଁ ନାନା ବାଧା, ନାନା ପ୍ରତିକୂଳ ସ୍ରୋତ, ତାକୁ ଅତିକ୍ରମ କରି କାର୍ଯ୍ୟ କରିସିବାକୁ ପଡ଼ିବ । ନ ହେଲେ ତା' ହୋଇ ପାରିବ ନାହିଁ, ଅଭାବ, ଅଜ୍ଞାନ, ଅନ୍ଧାର, ଅନ୍ୟାୟ, ଅତ୍ୟାଚାର, ହିଂସା, ଦ୍ୱେଷ, ମିଥ୍ୟା, ଦୁର୍ନୀତି, କିଛି ଦୂର ହେବ ନାହିଁ । ଏ ମୂଳଦୁଆ ନ ଗଢ଼ି ଅନ୍ୟାନ୍ୟ କ୍ଷେତ୍ରରେ ଯେତେ ଯାହା କଲେ କିଛି ଲଖିବ ନାହିଁ, ଭେଦିବା ତ ଦୂର କଥା ।

ତେଣୁ ସେ କ୍ଷମତା ରାଜନୀତି କ୍ଷେତ୍ରରୁ ଦୂରେଇ ରହି ଗାନ୍ଧୀ ବିଚାର ଓ ତଦନୁଯାୟୀ ରଚନାତ୍ମକ କାର୍ଯ୍ୟରେ ଆତ୍ମନିୟୋଗ କରୁଛନ୍ତି, ଯଥାଶକ୍ତି ତାହାହିଁ କରିବେ । କିନ୍ତୁ ଦାୟିତ୍ୱ କେତେ ! ସମସ୍ୟା କେତେ !

ବଙ୍ଗରେ ବିପୁଳ ଉତ୍ସାହରେ ପ୍ରଥମ ସ୍ୱାଧୀନତା ଦିବସ ପାଳିତ ହେଲା । ବହୁତ ଗାଁରୁ ଲୋକେ ଆସିଲେ । ସଭା ହେଲା । ପ୍ରାର୍ଥନା ଓ ସୂତାକଟା ହେଲା । ଗୋପବାବୁ ଭାଷଣ ଦେଲେ ।

# ଚଉତିରିଶି

## କଲିକତାରେ ମହାତ୍ମାଜୀଙ୍କ ଅନଶନ

୧୯୪୭ ଅଗଷ୍ଟ ୧୩ ତାରିଖରୁ ମହାତ୍ମାଜୀ କଲିକତାରେ ଥାନ୍ତି । ତାଙ୍କ ଯୋଗୁଁ କଲିକତାରେ ହିନ୍ଦୁ-ମୁସଲମାନ ଗଣ୍ଡଗୋଳ ବନ୍ଦ ଥାଏ । କିନ୍ତୁ ପୁଣି ଆରମ୍ଭ ହୋଇଗଲା ଅଗଷ୍ଟ ୩୧ ତାରିଖ ଶେଷରୁ ଯେତେବେଳେ ଯୋଡ଼ିଏ ନିରୀହ ମୁସଲମାନଙ୍କୁ ହିନ୍ଦୁ ଟୋକା ପଞ୍ଝାଏ ନଡ଼ିକୂଳ ସଡ଼କରେ ହତ୍ୟା କଲେ । ଲାଗିଗଲା ଦୁଇ ସମ୍ପ୍ରଦାୟ ଭିତରେ ପରସ୍ପରକୁ ଆକ୍ରମଣ, ହତ୍ୟା । ମହାତ୍ମାଜୀ ନିରାଶ ହେଲେ, ମର୍ମାହତ ହେଲେ, ଖବର କାଗଜରେ ଘୋଷଣା କଲେ ଯେ କଲିକତାରେ ଶାନ୍ତି ପ୍ରତିଷ୍ଠା କରିବାକୁ ସେ ଆମରଣ ଅନଶନ କରିବେ । ତାଙ୍କୁ ୭୮ ପୂରୁଥାଏ, ଶରୀର ଦୁର୍ବଳ, ଉପବାସ ଆରମ୍ଭ କରି ସେ କ୍ଷୀଣ, ଦୁର୍ବଳ ହୋଇପଡ଼ିଲେ, ତାଙ୍କ ହୃତ୍‌ପିଣ୍ଡ ଦୁର୍ବଳ ହେଲା, ସ୍ୱର କ୍ଷୀଣ ହୋଇଗଲା । ଖବର ବ୍ୟାପିଲା ସେ ମରି ଯାଉଛନ୍ତି । ହିନ୍ଦୁ ମୁସଲମାନ ଉଭୟେ ଅଭିଭୂତ ହୋଇପଡ଼ିଲେ । ଅନୁତପ୍ତ ହେଲେ, ୨୭ ଜଣ ଗୁଣ୍ଡା ଆସି ତାଙ୍କୁ କ୍ଷମା ମାଗି ତାଙ୍କ ପାଖେ ସେମାନଙ୍କ ଛୁରୀ, ପିସ୍ତଲ ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଅଜାଡ଼ି ଦେଲେ । ରାତିଆଡ଼େ ଥପ୍ କରି ଗଣ୍ଡଗୋଳ ବନ୍ଦ ହୋଇଗଲା । ୭୨ ଘଣ୍ଟା ଅନଶନ ପରେ ମହାତ୍ମାଜୀ ଅନଶନ ଭାଙ୍ଗିଲେ । ତାଙ୍କ ଜୀବଦ୍ଦଶା ଭିତରେ—ଅବଶ୍ୟ ଅଳ୍ପ ମାତ୍ର ସାଢ଼େ ପାଞ୍ଚ ମାସ,—କଲିକତାରେ କେବେ ସାଂପ୍ରଦାୟିକ ସଂଘର୍ଷ ଘଟି ନାହିଁ ।

## ଦିଲ୍ଲୀରେ ଗଣ୍ଡଗୋଳ

କଲିକତାରେ ୧୯୪୭ ସେପଟେମ୍ବର ୪ରେ ମହାତ୍ମାଜୀ ଅନଶନ ଭାଙ୍ଗିଲା ବେଳକୁ ଠିକ୍ ସେହିଦିନ ଦିଲ୍ଲୀ ରେଲ୍ ଷ୍ଟେସନରେ ୨ ଜଣ ମୁସଲମାନ କୁଲିଙ୍କୁ ହତ୍ୟା କରାଗଲା । ତା ପରଠୁ ଦଳ ଦଳ ଅକାଳୀ ଶିଖ୍ ଦିଲ୍ଲୀ ସହରଯାକ ବୁଲି ବୁଲି ଖୋଜି ଖୋଜି ମୁସଲମାନମାନଙ୍କୁ ହତ୍ୟା କରିବାକୁ ଲାଗିଲେ, ତାଙ୍କ ଘରବାଡ଼ି ଧ୍ୱଂସ କରିବାକୁ ଲାଗିଲେ ଓ ସେମାନଙ୍କ ଉପରେ ନାନା ଅତ୍ୟାଚାର କରିବାକୁ ଲାଗିଲେ । ଦିଲ୍ଲୀରେ ସାଂପ୍ରଦାୟିକ ଗଣ୍ଡଗୋଳ ପୁଣି ଲାଗିଗଲା । ସାରା ପଞ୍ଜାବରେ ଲାଗିଥାଏ । ପାକିସ୍ତାନରେ ତ ଅଗଷ୍ଟ ୧୪ ରାତିରୁ ଲାହୋର ହତ୍ୟାକାଣ୍ଡ ବେଳଠୁ ଲାଗିଥାଏ, ଦି ପାଖେ ଗାଁ ଗଣ୍ଡା ଜଳୁଥାଏ । ଏ ପାଖରୁ ସେ ପାଖକୁ ମୁସଲମାନ ସେ ପାଖରୁ ଏ ପାଖକୁ ହିନ୍ଦୁ ଯାହା ପାରିଲେ ତାହା ସଙ୍ଗରେ ବୋହି ଲକ୍ଷ ଲକ୍ଷ ସଂଖ୍ୟାରେ ପଳାଇ ଆସୁଥାନ୍ତି ।

ଦିଲ୍ଲୀରେ ଏ ଗୋଳମାଳ ଲାଗିବାରୁ ଶାନ୍ତିଶୃଙ୍ଖଳା ପ୍ରତିଷ୍ଠା କରିବା ପାଇଁ ଗୋଟିଏ ତିନିଜଣିଆ କମିଟି ହେଲା, ଅଧ୍ୟକ୍ଷ ରହିଲେ ଗଭର୍ଣ୍ଣର ଜେନେରାଲ ଲର୍ଡ୍ ମାଉଣ୍ଟ୍‌ବ୍ୟାଟେନ୍, ଆଉ ଦୁଇଜଣ ହେଲେ ପଣ୍ଡିତ ନେହେରୁ ଓ ସର୍ଦ୍ଦାର ପଟେଲ ।

## ମହାତ୍ମାଜୀଙ୍କ ଦିଲ୍ଲୀ ଯାତ୍ରା

ଦିଲ୍ଲୀରେ ଏ ହିଂସାକାଣ୍ଡ ଲାଗିଥିବା ଶୁଣି ମହାତ୍ମାଜୀ କଲିକତାରୁ ଦିଲ୍ଲୀ ଗଲେ, ସେଠି ସେପଟେମ୍ବର ୯ରେ ପହଞ୍ଚିଲେ । ସେ ରହନ୍ତି ଝାଡୁଦାର ଓ ମେହେନ୍ତର-ମାନଙ୍କ ବସ୍ତିରେ । କିନ୍ତୁ ସେଠି ଆଉ ରହିବାକୁ ସୁବିଧା ନ ଥିଲା । ସେଠି ପଶ୍ଚିମ ପାକିସ୍ତାନରୁ ଆସି ହଜାରହଜାର ଶରଣାର୍ଥୀମାନେ ଖୁନ୍ଦ ହୋଇଥାନ୍ତି । ମହାତ୍ମାଙ୍କୁ କୋଟିପତି ବିରଲାଙ୍କ ପ୍ରାସାଦରେ ରଖାଗଲା । ମୁସଲମାନମାନେ ପାକିସ୍ତାନ ପଳାଇବେ ବୋଲି ବସି ଶରଣାର୍ଥୀ କଲୋନିମାନଙ୍କରେ ଖୁନ୍ଦ ହୋଇଥାନ୍ତି । ଗାଁ ଗହଳିରୁ ବି ଉଠି ଆସିଥାନ୍ତି । ମହାତ୍ମାଜୀ ପହଞ୍ଚିବାରୁ ମୁସଲମାନମାନେ ତାଙ୍କୁ ହିଁ ଏକମାତ୍ର ସହାୟ ଭାବି ଧରିଲେ, ହଜାର ହଜାର ସଂଖ୍ୟାରେ ଭେଟି ଦୁଃଖ ଜଣାଇଲେ, ସେ ସେମାନଙ୍କ ଅବସ୍ଥା ବୁଲି ବୁଲି ଦେଖୁଥାନ୍ତି, ହିନ୍ଦୁ ଓ ଶିଖମାନଙ୍କ ଅବସ୍ଥା ବି । ପ୍ରଚାର କରି ଲାଗିଥାନ୍ତି ପ୍ରେମ, ମୈତ୍ରୀ, ଶାନ୍ତି, ଅହିଂସା, ସତ୍ୟ, ଈଶ୍ୱର ବିଶ୍ୱାସ । ପ୍ରତିଦିନ ପଦାରେ ଘାସ ପଡ଼ିଆରେ ସଭା କରୁଥାନ୍ତି. ହଜାର ହଜାର ଲୋକଙ୍କ ଆଗରେ ତାଙ୍କର ବାଣୀ ଶୁଣାଉଥାନ୍ତି । ସେ ହିନ୍ଦୁଙ୍କୁ ଶିଖ୍‌ଙ୍କୁ କହୁଥାନ୍ତି "ଯଦି ନିଜେ କାହାକୁ ହତ୍ୟା ନ କଲି ବୋଲି ମଣିଷ ଅତତାୟୀ ହାତରେ ମରିବ, ତେବେ ସାରା ପଞ୍ଜାବ ସେପରି ମଲେ ଅମର ହେବ ।" ସେ ମୁସଲମାନମାନଙ୍କୁ କହୁଥାନ୍ତି "ଦରକାର ପଡ଼ିଲେ ଆଲ୍ଲାହାଙ୍କ

ନା ଭଣ୍ଡରେ ଧଇ ମରେଯାଅ ପଛେ, ଆଶା ଓ ସାହସ ଛାଡ଼ ନାହିଁ ।"
ଯେଉଁମାନେ ସାଂପ୍ରଦାୟିକ ସଂଘର୍ଷରେ ନିଜେ ଶିକାର ହୋଇଥିଲେ ସେପରି ଅନେକ ହିନ୍ଦୁ, ଶିଖ ଓ ଅନେକ ମୁସଲମାନ ତାଙ୍କ ଉପରେ ରାଗୁଥାନ୍ତି । କିନ୍ତୁ ତଥାପି ସେ ତାଙ୍କ ପ୍ରାର୍ଥନା ସଭାମାନଙ୍କରେ ଗୀତା, କୋରାନ୍ ଓ ବାଇବଲ୍ ପଢ଼ୁଥାନ୍ତି, ଶୁଣାଉଥାନ୍ତି, ସଦୁପଦେଶ ଦେଉଥାନ୍ତି । କିନ୍ତୁ ତାଙ୍କୁ ଉଦାସ ଓ ବିଷାଦ ଘୋଟୁଥାଏ । ଆସିଲା ଗାନ୍ଧୀ ଜୟନ୍ତୀ, ଅକ୍ଟୋବର ୨, ୧୯୪୮ । ସେ ତାକୁ ଉପବାସ, ପ୍ରାର୍ଥନା ଓ ସୂତାକଟାରେ କଟାଇଲେ । ଅନୁଚରମାନଙ୍କୁ କହିଲେ, "ଭଗବାନଙ୍କୁ ଡାକ ଯେ ଏ ନିଆଁ ନିଭୁ, ନ ହେଲେ ମୋ ମତେ ନେଇ ଯାଆନ୍ତୁ, ଏମିତି ନିଆଁ ଜଳୁଥିବା ଭାରତରେ ମୁଁ ଆଉଥରେ ମୋ ଜନ୍ମଦିନ ଦେଖିବାକୁ ଚାହେଁ ନାହିଁ ।"

## ଦିଲ୍ଲୀରେ ମହାତ୍ମାଜୀଙ୍କ ଅନଶନ

ଜାନୁଆରି ମାସ ହେଲା । ମହାତ୍ମାଜୀ ଜିଦ ଧରିଲେ ଯେ ଭାରତ ପାକିସ୍ତାନକୁ ତାର ଭାଗବଣ୍ଟା ପ୍ରାପ୍ୟ ପଞ୍ଚାବନ କୋଟି ଟଙ୍କା ଫେରାଇ ଦେବ ଓ ଦିଲ୍ଲୀରେ ସାଂପ୍ରଦାୟିକ ଶାନ୍ତି ପ୍ରତିଷ୍ଠିତ ହେବ ନ ହେଲେ ସେ ଆମରଣ ଅନଶନ କରିବେ । ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ ଓ ଅନ୍ୟାନ୍ୟ ଅନେକ ନେତା ପାକିସ୍ତାନକୁ ଭାରତ ଏ ଟଙ୍କା ଦେବା ଦାବୀକୁ ବିରୋଧ କରି ଆସୁଥିଲେ । ମହାତ୍ମାଜୀ ୧୯୪୮ ଜାନୁଆରି ୧୩ରୁ ଅନଶନ ଆରମ୍ଭ କଲେ । ଅନେକ ହିନ୍ଦୁ ତାଙ୍କ ନିଷ୍ପତ୍ତିକୁ ସମାଲୋଚନା କଲେ ଓ ତାଙ୍କ ଉପରେ ରାଗିଲେ । ସେ ଅଟଳ ରହିଲେ । ତାଙ୍କ ସ୍ୱାସ୍ଥ୍ୟ ଖରାପ ହେବାକୁ ଲାଗିଲା । ଭାରତ ଓ ପାକିସ୍ତାନରେ ଚହଳ ପଡ଼ିଗଲା । ଶେଷରେ ଭାରତ ସରକାର ପାକିସ୍ତାନକୁ ୫୫ କୋଟି ଟଙ୍କା ଦେବାକୁ ରାଜି ହେଲେ । ଦିଲ୍ଲୀରେ ଶାନ୍ତି କମିଟିର ସବୁ ଦଳର ନେତା, ଏପରିକି ଶେଷରେ 'ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ'ର ନେତା ରାଜି ହୋଇ ଚୁକ୍ତି ଦସ୍ତଖତ କଲେ ଯେ ଦିଲ୍ଲୀରେ ଆଉ ସାଂପ୍ରଦାୟିକ ସଂଘର୍ଷ ହେବ ନାହିଁ, ସେମାନେ ସେଥିପାଇଁ ଦାୟୀ ରହିଲେ । ତାପରେ ଜାନୁଆରି ୧୮ରେ, ୧୨୧ ଘଣ୍ଟା ୩୦ ମିନିଟ୍ ଅନଶନ ପରେ ୭୮ ବୟସ୍କ ଗାନ୍ଧୀ ମହାତ୍ମା ଅନଶନ ଭଙ୍ଗ କଲେ । ସେଦିନ ଜିନ୍ନା ତାଙ୍କୁ ପାକିସ୍ତାନ ଆସିବାକୁ ନିମନ୍ତ୍ରଣ କଲେ ଓ ସେ ରାଜି ହେଲେ ।

## ଗାନ୍ଧୀ ମହାତ୍ମାଙ୍କ ମହାପ୍ରୟାଣ

କିନ୍ତୁ ୧୯୪୮ ଜାନୁଆରି ୩୦ ଶୁକ୍ରବାର ଦିନ ଅପରାହ୍ଣ ୫ଟା ବାଜି ୫ ମିନିଟ୍ ବେଳେ ତାଙ୍କ ପ୍ରାର୍ଥନା ସଭାରେ ନାଥୁରାମ୍ ଗଡ଼ସେ ବୋଲି ଜଣେ ମହାରାଷ୍ଟ୍ରୀ ହିନ୍ଦୁ ଗୋଟାଏ ପିସ୍ତଲରୁ ତାଙ୍କ ଛାତିକୁ ତିନିଟା ଗୁଳି ମାରି ତାଙ୍କ ପ୍ରାଣନାଶ କଲା ।

## ବରୀରେ ଗାନ୍ଧୀ ମହାପ୍ରୟାଣ ଦୁଃସମ୍ବାଦ

୧୯୪୮ ଜାନୁଆରି ୩୦ ଦିନ ଗୋପବାବୁ ଗାନ୍ଧୀ-ପ୍ରୟାଣ ଦୁଃସମ୍ବାଦ ପାଇ ପାରି ନ ଥିଲେ । ତହିଁଆରଦିନ ସକାଳେ ସେ ଯାଜପୁରରୁ ରେଲ ଚଢ଼ି ଓ୍ୱାର୍ଦ୍ଧା ଯିବେ ବୋଲି ବରୀରୁ ଚାଲି ଚାଲି ବାହାରିଲେ । ତାଙ୍କ ସଙ୍ଗରେ ଶ୍ରୀମତୀ ଅମୃତା ଦେବୀ । ସମ୍ବଲପୁର ଜିଲ୍ଲା ବରଗଡ଼ ସବ୍‌ଡିଭିଜନ୍‌ର ବିଜେପୁର ପାଖେ 'ସମଲେଇ-ପଦର' ବୋଲି ଗୋଟିଏ ଗାଁ, ଶ୍ରୀମତୀ ଅମୃତା ଦେଈଙ୍କ ଘର ସେଠି । ସେ ଓ ତାଙ୍କ ସ୍ୱାମୀ ଶ୍ରୀ ରାମଚନ୍ଦ୍ର ପୁରୀ ସେଠ ସେବାକେନ୍ଦ୍ରର କର୍ମୀ । ସେ ଓ୍ୱାର୍ଦ୍ଧା କେବେ ଦେଖି ନ ଥାନ୍ତି ବୋଲି ଗୋପବାବୁଙ୍କ ସଙ୍ଗେ ଯାଉଥାନ୍ତି । ଫେବୃଆରି ମାସ ପ୍ରଥମ ସପ୍ତାହରେ ଓ୍ୱାର୍ଦ୍ଧାରେ କର୍ମୀ ସମ୍ମିଳନୀ ହେବାର ଥାଏ, ଗାନ୍ଧୀଜୀ ସେଠିକି ଆସିବାର ଥାଏ, ସେଥିପାଇଁ ସେଠିକି ଗୋପବାବୁ ବାହାରିଥାନ୍ତି ।

ଗୋପବାବୁଙ୍କ କନ୍ୟା ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀ କହନ୍ତି ଯେ ଗୋପବାବୁ ଓ ଅମୃତା ଦେଈ ଚାଲି ଯାଉ ଯାଉ ସକାଳ ୯ଟା ବେଳେ ବାଟରେ ଠାଏ ଗୋଟାଏ ବଡ଼ ଶାଗୁଣା ରାସ୍ତାର ଡାହାଣ ପାଖେ ବସିଥିବାର ସେମାନେ ଦେଖିଲେ । ହଠାତ୍ ଶାଗୁଣା ସେ ଦୁହିଁଙ୍କ ସାମ୍ନାରେ ଉଡ଼ିଯାଇ ପୁଣି ରାସ୍ତାର ବାଆଁ ପାଖେ ବସିଲା । ଗୋପବାବୁ କହିଲେ "ଦେଖିଲୁ ଅମୃତା, କେଡ଼େ ବଡ଼ ଶାଗୁଣା !" ତାର ଟିକିଏ ପରେ ଯାଜପୁର ଆଡ଼ୁ ଫେରୁଥିବା ଜଣେ ଚାଟୋଇକୁ ସେ ଦିହେଁ ଦେଖିଲେ ଓ ତାହାଠାରୁ ଶୁଣିଲେ ଯେ ତା ପୂର୍ବଦିନ ସନ୍ଧ୍ୟାରେ ଗାନ୍ଧୀଜୀଙ୍କୁ ହତ୍ୟା କରାଯାଇଛି । ସେହି ସ୍ଥାନରୁ ସେ ଦିହେଁ ବରୀ-ରାମଚନ୍ଦ୍ରପୁର ଫେରି ଆସିଲେ । ଗାନ୍ଧୀଜୀଙ୍କ ମୃତ୍ୟୁ ସମ୍ବାଦ ପହଞ୍ଚି ଯାଇଥାଏ, ଚାରିଆଡ଼େ ହାହାକାର ପଡ଼ି ଯାଇଥାଏ ।

## ଗାନ୍ଧୀ ମହା-ପ୍ରୟାଣରେ ଗୋପବାବୁଙ୍କ ପ୍ରତିକ୍ରିୟା

ସେଦିନ ସଞ୍ଜରେ ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟର ଝାଉଁବଣରେ ସନ୍ଧ୍ୟା ପ୍ରାର୍ଥନା ହେଲା । ସେଠି ଗୋପବାବୁ ରବୀନ୍ଦ୍ରନାଥଙ୍କ 'ଶିଶୁତୀର୍ଥ' କବିତାଟି ଆବୃତ୍ତି କରିଥିଲେ । ତାର ଶେଷକୁ ଅଛି,

"ଘୃଣାୟେ ଆମ୍ରା ତାକେ ଅସ୍ୱୀକାର କରେଛି ।
କ୍ରୋଧେ ଆମ୍ରା ତାକେ ହନନ କରେଛି ।
ପ୍ରେମେ ଆମ୍ରା ତାକେ ଗ୍ରହଣ କରବୋ ।"

ସେଠି ସେ କହିଲେ, "ମହାତ୍ମାଜୀ ତାଙ୍କ ବକ୍ତୃତାରେ କହିଥିଲେ ଯେ ତାଙ୍କ ସାଧନା ଅନାସକ୍ତି । ତେଣୁ ତାଙ୍କର ତିରୋଧାନ ଉପଲକ୍ଷରେ ଆମେ ବି ନିଜର କିଛି ଆସକ୍ତି ଆଜଠୁଁ ଛାଡ଼ିବା ।" ସେହି ସମୟଠୁ ସେ ଦହି ଖାଇବା ଛାଡ଼ି ଦେଇଥିଲେ ।

ଦହି ତାଙ୍କର ଖୁବ୍ ପ୍ରିୟ ଖାଦ୍ୟ ଥିଲା । ସେ ଜେଲ୍‌ରେ ଥିଲାବେଳେ ନିଜ ହାତରେ ଦହି ବସାଉଥିଲେ ।

ଗାନ୍ଧୀ-ହତ୍ୟାଯୋଗୁଁ ସାରା ପୃଥିବୀରେ ହାହାକାର । ଆଉ, ଯେଉଁମାନେ ଗାନ୍ଧୀନୀତି, ଗାନ୍ଧୀ-ଆଦର୍ଶ ଅବଲମ୍ବନ କରି ଜୀବନ ବିତାଉଥିଲେ, ଯାହାଙ୍କ ପାଇଁ ସେ ହୋଇଥିଲେ ଗୁରୁ, ଉପଦେଷ୍ଟା, ପଥପ୍ରଦର୍ଶକ, ସେମାନଙ୍କ ମନର ଅବସ୍ଥା ଅବର୍ଣ୍ଣନୀୟ । ମହାତ୍ମାଜୀ ଯୁଗେ ଯୁଗେ ଇତିହାସରେ ଅମର ରହିଲେ । ଗାନ୍ଧୀବାଦୀମାନେ ଭାବିଲେ, ଏଥର କଣ କରିବା ?

କଂଗ୍ରେସ ଭିତରେ ସେତେବେଳେ ଦୁଇଟି ଆଭିମୁଖ୍ୟ ଥାଇ ଦୁଇ ପ୍ରକାର ଲୋକ । ବଡ଼ ଭାଗକ ରାଜନୀତି କ୍ଷେତ୍ରକୁ ପସନ୍ଦ କରୁଥିଲେ । ବେଶୀ ଲୋକ ସେହି ଆଡ଼କୁ ଝୁଙ୍କୁଥିଲେ । ସେଇଟା ଥିଲା ଶାସନ ଓ କ୍ଷମତା ଆଡ଼କୁ ବାଟ । ଆଉ ଆର ପ୍ରକାର ଲୋକଙ୍କ ଅଭିମୁଖ୍ୟ ଥିଲା, ସେମାନେ ଗାନ୍ଧୀନୀତି, ଗାନ୍ଧୀ ବିଚାରକୁ କାର୍ଯ୍ୟରେ ପରିଣତ କରିବାକୁ ଲାଗି ପଡ଼ିଥିବେ । ସେବାଟେ ପ୍ରତିଷ୍ଠା ସୁଦ୍ଧା ନ ଖୋଜି ଆତ୍ମତ୍ୟାଗୀ କର୍ମୀ ହୋଇ ଜୀବନ ବିତାଇବାକୁ ପଡ଼େ, ସେମାନଙ୍କ ସଂଖ୍ୟା ଆରପ୍ରକାରଠୁଁ ବହୁତ ଊଣା, କ୍ରମଶଃ କମିବାରେ ଲାଗିଥାଏ । ଗୋପବାବୁ ସେହି ବିଶୁଦ୍ଧ ଗାନ୍ଧୀବାଦୀ କର୍ମୀଙ୍କ ଭିତରୁ ଜଣେ । ସେ ସେହି ମାର୍ଗରେ ରଚନାତ୍ମକ କାର୍ଯ୍ୟ କରିବାକୁ ନିଷ୍ପତ୍ତି ନେଇ ତହିଁରେ ହିଁ ଥାଆନ୍ତି, ସେ ବୁଝିଥାନ୍ତି ଯେ ଗାନ୍ଧୀଙ୍କ ପରେ ସେ ଦାୟିତ୍ୱ ଆହୁରି ବଢ଼ିଗଲା । ଦେଖୁଥାନ୍ତି, ଭୟଙ୍କର ସମସ୍ତ ଅସୁଛି, ହିଂସା ଦ୍ୱେଷ ମାଡ଼ୁଛି. ତାହାର ପରିଣାମ ହେଲା ସ୍ୱୟଂ ମହାତ୍ମାଜୀଙ୍କ ହତ୍ୟା । ସବୁ ପ୍ରତିଷ୍ଠିତ ମୂଲ୍ୟ-ବୋଧ, ନୀତି, ଆଦର୍ଶ ଭୁଷୁଡ଼ି ଭୁଷୁଡ଼ି ପଡ଼ୁଛି, ଅନିଶ୍ଚିତପଣିଆର, ଲୋଭ କ୍ରୋଧ, ଅବିବେକୀ ଉଚ୍ଛୃଙ୍ଖଳ ନିଷ୍ଠୁର ସ୍ୱାର୍ଥପରତାର ଗୋଟାଏ ନୂଆଯୁଗ ମୁଣ୍ଡ ଟେକୁଛି, ଗାନ୍ଧୀଜୀଙ୍କ ଶାରୀରିକ ନିଧନ ତାହାର ସୂଚନା ।

## ରଚନାତ୍ମକ କାର୍ଯ୍ୟପଥରେ ଗସ୍ତ

ସେ ତାଙ୍କ ଆଚରଣରେ, କାର୍ଯ୍ୟରେ, କଥାରେ, ଲେଖାରେ ତାଙ୍କ ବିଚାର ପ୍ରଚାର କରି କରି ଲୋକଙ୍କୁ ବୁଝାଇ ବୁଝାଇ ତାଙ୍କ ବିବିଧ ରଚନାତ୍ମକ କାର୍ଯ୍ୟ ପରିଚାଳନାରେ ବ୍ୟସ୍ତ ରହିଲେ । ସେହି ସମୟରେ ତାଙ୍କୁ ନାନା ସ୍ଥାନକୁ ଯିବାକୁ ପଡ଼ୁଥାଏ । ୧୯୪୮ ଜାନୁଆରି ୩୦ରେ ଗାନ୍ଧୀଜୀଙ୍କ ତିରୋଧାନ, ଫେବୃଆରୀରେ ଗୋପବାବୁ ସୁନ୍ଦରୀ ଗଲେ, ତାପରେ ସେ ଜୀବନରେ ପ୍ରଥମଥର ଗଲେ କେନ୍ଦୁଝର । ଫେବୃଆରୀ ୨୬, ୨୮ରେ ପୁରୀ ଜିଲ୍ଲାରେ ସାକ୍ଷୀଗୋପାଳ ପାଖେ ସାରଙ୍ଗଯୋଡ଼ରେ 'ରଚନାତ୍ମକ କର୍ମୀ ସମ୍ମିଳନୀ' ହେଲା, ତହିଁରେ ସେ ଯୋଗ ଦେଲେ । ମାର୍ଚ୍ଚ ମାସରେ ସେ ସେବାଗ୍ରାମ ଗଲେ ।

## 'ସର୍ବୋଦୟ ସମାଜ' ଗଠନ ନିଷ୍ପତ୍ତି

ସେବାଗ୍ରାମରେ ୧୯୪୮ ମାର୍ଚ୍ଚ ମାସ ୧୩ ତାରିଖରୁ ୧୫ ତାରିଖ ଯାଏ 'ଅଖିଳ ଭାରତ ରଚନାତ୍ମକ କର୍ମୀ ସମ୍ମିଳନୀ' ବସିଲା । ଭାରତର ସବୁ ପ୍ରଦେଶରୁ ବିଶିଷ୍ଟ ଗାନ୍ଧିବାଦୀ ରଚନାତ୍ମକ କର୍ମୀମାନେ ସେଠିକି ଆସିଲେ । ପଣ୍ଡିତ ନେହେରୁ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ଶ୍ରୀ ଜୟପ୍ରକାଶ ନାରାୟଣ, ଶ୍ରୀମତୀ ଅରୁଣା ଆସଫ୍ ଆଲି ଆଦି କେତେଜଣ ବିଶେଷ ଭାବେ ନିମନ୍ତ୍ରିତ ହୋଇ ସେଠିକି ଆସିଲେ । ଡକ୍ଟର ରାଜେନ୍ଦ୍ର ପ୍ରସାଦ ସେ ସମ୍ମିଳନୀର ସଭାପତି ହେଲେ । ସେହି ସମ୍ମିଳନୀରେ ଗୋପବାବୁ ମଧ୍ୟ ଯୋଗ ଦେଇଥିଲେ ।

ସେହି ସମ୍ମିଳନୀରେ ନିଷ୍ପତ୍ତି କରାଗଲା ଯେ ଯେଉଁମାନେ ଗାନ୍ଧୀ ବିଚାରକୁ ମାନନ୍ତି ସେମାନେ ଏକାଠି ମିଶି ଗୋଟିଏ 'ସର୍ବୋଦୟ ସମାଜ' ଗଢ଼ିବେ, ତାର ଉଦ୍ଦେଶ୍ୟ ହେବ ଯେପରି ଭବିଷ୍ୟତରେ ସେମାନେ ଗାନ୍ଧୀଙ୍କ କାମକୁ କିପରି ଆଗେଇ ନେଇ ପାରିବେ, କିପରି ଗାନ୍ଧୀଙ୍କ ଜୀବନର ବ୍ରତକୁ ପୂରଣ କରିବେ ସେହିପରି ଉପାୟମାନଙ୍କୁ ସେମାନେ କାର୍ଯ୍ୟକାରୀ କରିବେ ଓ ସେଥିସକାଶେ ଉଦ୍ୟମ କରିବେ । ଏହି କାର୍ଯ୍ୟ କରିବା ସକାଶେ ସମ୍ମିଳନୀ ୨୨ଟି ଉପାୟ ଠିକଣା କଲେ ଓ ସେଥିପାଇଁ ଲକ୍ଷ୍ୟ ଧାର୍ଯ୍ୟ କଲେ :—

୧. ସାଂପ୍ରଦାୟିକ ଏକତା, ୨. ଅସ୍ପୃଶ୍ୟତା ନିବାରଣ, ୩. ଜାତିଭେଦ ଦୂରୀକରଣ, ୪. ନିଶା ନିବାରଣ, ୫. ଖଦୀ ଓ ଅନ୍ୟାନ୍ୟ ଗ୍ରାମୋଦ୍ୟୋଗ, ୬. ମୌଳିକ ଶିକ୍ଷା, ୭. ଗ୍ରାମ ସଫେଇ, ୮. ସ୍ତ୍ରୀ ଜାତିକୁ ପୁରୁଷମାନଙ୍କ ସହିତ ସମାନ ଅଧିକାର ଦେବା, ସ୍ତ୍ରୀ ଲୋକମାନଙ୍କୁ ସମାଜରେ ପୁରୁଷମାନଙ୍କ ଭଳି ସମାନ ପ୍ରତିଷ୍ଠା ଦେବା, ୯. ସ୍ୱାସ୍ଥ୍ୟ ଓ ପରିଚ୍ଛନ୍ନତା, ୧୦. ଦେଶର ଭାଷାମାନଙ୍କ ବିକାଶ, ୧୧. ସଙ୍କୀର୍ଣ୍ଣ ପ୍ରାଦେଶିକତା ଦୂରୀକରଣ, ୧୨. ରାଷ୍ଟ୍ରଭାଷା ରୂପେ ହିନ୍ଦୁସ୍ତାନୀ ପ୍ରଚାର, ୧୩. ଆର୍ଥିକ ସମାନତା, ୧୪. କୃଷିର ଉନ୍ନତି, ୧୫. ମୂଲିଆ ସଂଗଠନ, ୧୬. ଆଦିବାସୀ-ସେବା, ୧୭. ଛାତ୍ର ସଂଗଠନ, ୧୮. କୁଷ୍ଠରୋଗୀ ସେବା, ୧୯. ଗୋ-ସେବା, ୨୦. ସଙ୍କଟ ନିବାରଣ ଓ ଦୁଃଖୀଙ୍କ ସେବା, ୨୧. 'ପ୍ରାକୃତିକ ଚିକିତ୍ସା' ବିସ୍ତାର ।

ଶ୍ରୀ କିଶୋରଲାଲ ମଶ୍ରୁୱାଲା ଏହି ସର୍ବୋଦୟ ସମାଜର ସଭାପତି ହେଲେ ।

ଏହାର କେବଳ ଜଣେ ମାତ୍ର ସଂଯୋଜକ ଥାନ୍ତି । ସେ ବର୍ଷକେ ଥରେ ସର୍ବୋଦୟ ସମାଜର ସେବକମାନଙ୍କର ଗୋଟିଏ ସମ୍ମିଳନୀ କରାନ୍ତି । ସେହି ନିଖିଳ ଭାରତୀୟ ସମ୍ମିଳନୀରେ ପୃଥିବୀର ସବୁ ସମସ୍ୟା, ଅହିଂସାତ୍ମକ ଉପାୟରେ ତାହାର ସମାଧାନ ପାଇଁ ବା ସମାଧାନର ବିବରଣୀ ଆଲୋଚିତ ହୁଏ ।

ସମ୍ମିଳନୀରେ ଯାହା ଯାହା ଲକ୍ଷ୍ୟ ଧାର୍ଯ୍ୟ ହେଲା ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ସେହି ଲକ୍ଷ୍ୟ ଆଗରେ ରଖି ପୂର୍ବରୁ କାର୍ଯ୍ୟ କରି ଆସୁଥିଲେ, ଏଣିକି ସେହି କାର୍ଯ୍ୟ ଆହୁରି ଉତ୍ସାହରେ ଚାଲିଲା ।

ସେତେବେଳେ ଗୋଟିଏ ଶୋଚନୀୟ ଦୁର୍ଘଟଣା ଘଟିଲା । ସେ ସେବାଗ୍ରାମରେ ଥାନ୍ତି । ସମ୍ବାଦ ପାଇଲେ ଯେ ମାର୍ଚ୍ଚ ୧୨ ତାରିଖରେ କଟକରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ୧୮ ବର୍ଷର ପୁଅ କାଲୁ (ଶ୍ରୀ ବିନାୟକ ଚୌଧୁରୀ) ହଠାତ୍ ଆତ୍ମହତ୍ୟା କଲା । ସେ ମର୍ମାହତ ହେଲେ । ସମ୍ମିଳନୀରୁ ଲେଉଟି ଆସିଲେ ।

ମହାତ୍ମାଜୀ ପୂର୍ବବଙ୍ଗର ଯେଉଁ ସାଂପ୍ରଦାୟିକ ଦଙ୍ଗା ବିଧ୍ୱସ୍ତ ଅଞ୍ଚଳରେ ପଦଯାତ୍ରା କରିଥିଲେ, ସେଠି ରିଲିଫ୍ କାର୍ଯ୍ୟ ଚାଲିଥାଏ, ଗୋପବାବୁ ୧୯୪୮ରେ ଅପ୍ରେଲ ଶେଷ ସପ୍ତାହରେ ସେଠିକି ଗଲେ ଓ ସେଠି ଦେଢ଼ମାସ ରହି ଜୁନ୍ ମାସ ୧୧ ତାରିଖ ଆଡ଼କୁ ଫେରି ଆସିଲେ ।

## ଶାସକଙ୍କ ସହିତ ଗାନ୍ଧୀବାଦୀଙ୍କ ମତାନ୍ତର

'ଗ୍ରାମସେବକ'ରେ ବାହାରୁଥିବା ଲେଖାଗୁଡ଼ିକ ପଢ଼ିଲେ ଜଣାପଡ଼େ ଯେ ୧୯୪୮ରେ ମହାତ୍ମାଜୀ ସ୍ୱର୍ଗଗାମୀ ହେଲାବେଳୁ ଦେଶର ଅବସ୍ଥା ଯେପରି ହୋଇ ଯାଉଥାଏ ତାକୁ ଦେଖି ଗୋପବାବୁ ଓ ଭାରତର ଅନ୍ୟାନ୍ୟ ରଚନାତ୍ମକ କର୍ମୀମାନେ ଉଦ୍‌ବିଗ୍ନ ହେଉଥାନ୍ତି । ଗୋପବାବୁ ଲେଖୁଥାନ୍ତି " 'ବୈମନସ୍ୟ' ଘୋଟୁଛି, ପଶ୍ଚିମୀ ହାଓ୍ୱା ବୋହୁଛି ।" ସେମାନେ ଦେଖୁଥାନ୍ତି ଭାରତଯାକ ସ୍ୱରାଜ୍ୟ ଆଡ଼େ ଲୋକଙ୍କ ମନ ଗାନ୍ଧୀଜୀଙ୍କ ରଚନାତ୍ମକ ଆଦର୍ଶଠୁ ଆହୁରି ଆହୁରି ଦୂରେଇ ଦୂରେଇ ଯାଉଛି, ପାଶ୍ଚାତ୍ୟ ପ୍ରଭାବ ପଡ଼ୁଛି, ଶ୍ରେଣୀ-ସଂଘର୍ଷ-ମୂଳକ ବିପ୍ଳବ-ବିଦ୍ୱେଷର ଧାରଣାମାନ ବଢ଼ୁଛି, ମୂଲ୍ୟବୋଧ ବଦଳୁଛି । ସେସବୁ ଲେଖାରୁ ଜଣାପଡ଼ିବ, ସେମାନେ ଭାବୁଥାନ୍ତି ଯେ କଂଗ୍ରେସ-ଶାସକମାନେ ବି ବେଳେ ବେଳେ ଏଭଳି ବିଚାର ଓ କାର୍ଯ୍ୟ କରୁଛନ୍ତି ଯାହା ଗାନ୍ଧୀ-ଆଦର୍ଶ-ବିରୋଧୀ । ପୂର୍ବେ ରଚନାତ୍ମକ କାର୍ଯ୍ୟ କରୁଥିବା ଅନେକ କର୍ମୀ ବି ବଦଳି ଯାଇଥିଲେ, ରଚନାତ୍ମକ କାର୍ଯ୍ୟ ଓ ଗାନ୍ଧୀ ବିଚାର ଛାଡ଼ି ଅନ୍ୟ ମାର୍ଗ ଧରୁଥିଲେ । ଗୋପବାବୁ ଆଦି ଯେଉଁମାନେ ବିଶୁଦ୍ଧ ଗାନ୍ଧୀବାଦୀ ଥିଲେ ଏସବୁ ଦେଖି ସେମାନଙ୍କ ମନରେ ନୈରାଶ୍ୟ ଆସୁଥିଲା । ତେଣୁ 'ଗ୍ରାମସେବକ' ପତ୍ରିକାରେ ଗାନ୍ଧୀ, ବିନୋବା, ମଶ୍ରୁଓ୍ୱାଲା, କାକା କାଲେଲ୍‌କାର୍, ଦାଦା ଧର୍ମାଧିକାରୀ ଆଦିଙ୍କ ଲେଖାର ଓଡ଼ିଆ ଅନୁବାଦ ଛାପି ସେମାନେ ଗାନ୍ଧୀପନ୍ଥାରେ ଲୋକଙ୍କର ଦୃଢ଼ ବିଶ୍ୱାସ ଜନ୍ମାଇବାକୁ ଚେଷ୍ଟା କରୁଥିଲେ ଓ ତା ସହିତ ନିଜେ କାମ କରି, ନିଜ ଆଚରଣର ଦୃଷ୍ଟାନ୍ତ ଲୋକଙ୍କ ଆଗରେ ଥୋଇ, ଗାଁ ଗହଳରେ ରଚନାତ୍ମକ କାମ ଓ ସଂଗଠନ ବଢ଼ାଇ ସେମାନେ ସେହି ଉଦ୍ଦେଶ୍ୟରେ ଲାଗି ପଡ଼ିଥିଲେ ।

କିନ୍ତୁ କମେ ଶାସନରେ ଥିବା କଂଗ୍ରେସ ସହିତ ସେମାନଙ୍କ ମତାନ୍ତର ବଢ଼ୁଥିଲା । ସେ ଲେଖାମାନଙ୍କରୁ ଜଣାପଡ଼େ, ସେମାନେ ତିନୋଟି ଉପାୟର ଔଚିତ୍ୟ ଓ ଉପାଦେୟତା ତୁଳନା କରୁଥିଲେ :—

୧ । ସର୍ବୋଦୟ ବାଟ, —ଲୋକମତ ଜାଗ୍ରତ କରିବା, ଲୋକେ ଚେତିଲେ ବୁଝିଲେ ଶାସନ ଠିକ୍ ଚାଲିବ, ସୁଧୁରିବ

୨ । କଂଗ୍ରେସର ପ୍ରତିନିଧିମାନଙ୍କୁ ଫେରାଇ ଆଣିବା ବାଟ

୩ । ଶାସନ ସଙ୍ଗେ ସଂଘର୍ଷ ଲଗାଇବା ବାଟ

ସେମାନେ ଶେଷୋକ୍ତ ଦୁଇ ବାଟକୁ ପ୍ରତ୍ୟାଖ୍ୟାନ କରିଥିଲେ ।

## ୧୯୪୯ରେ ନାନା ଗସ୍ତ

୧୯୪୯ ମାର୍ଚ୍ଚ ମାସ ୯ ତାରିଖରୁ ୧୧ ତାରିଖ ଯାଏ ମଧ୍ୟଭାରତରେ ଇନ୍ଦୋର ପାଖ 'ରାଉ'ରେ ସର୍ବୋଦୟ ସମ୍ମିଳନୀର ପ୍ରଥମ ବାର୍ଷିକ ସମ୍ମିଳନୀ ହେଲା । ଗୋପବାବୁ, ତାଙ୍କ ପୁଅ ଶ୍ରୀ ମନମୋହନ, ଶ୍ରୀ ଗୁଣନିଧି ମହାନ୍ତି ଓ ଅନ୍ୟ ଦଶଜଣ କର୍ମୀ ବି ଓଡ଼ିଶାରୁ ସେ ସମ୍ମିଳନୀକୁ ଗଲେ । ବିନୋବାଙ୍କ ସମେତ ସେଠି ଅନ୍ୟାନ୍ୟ ସର୍ବୋଦୟ ନେତା ବି ଉପସ୍ଥିତ ଥିଲେ । କିନ୍ତୁ ସେତେବେଳେ 'ସର୍ବୋଦୟ ସମାଜ'ର ସଭ୍ୟ ସଂଖ୍ୟା ମାତ୍ର ୧୭୭୬ ଓ ତହିଁରୁ ସମ୍ମିଳନୀକୁ ୪୦୦ ଯାଏ ଆସିଥିଲେ, ସ୍ଥାନୀୟ ଲୋକଙ୍କୁ ମିଶାଇ ମାତ୍ର ୪୦୦ରୁ କିଛି ଅଧିକ ଲୋକ ଯୋଗ ଦେଇଥିଲେ । ସେଇଠି ଗୋପବାବୁ ସେତେବେଳେ ନିଷ୍ପତ୍ତି କଲେ ଯେ ସର୍ବୋଦୟ ସମାଜର ଦ୍ୱିତୀୟ ବାର୍ଷିକ ସମ୍ମିଳନୀ ୧୯୫୦ରେ ଓଡ଼ିଶାରେ ହେବ ।

ସମ୍ମିଳନୀ ପରେ ଗୋପବାବୁ ଓ ତାଙ୍କ ଦଳ ଗୁଜରାଟ୍ ପ୍ରଦେଶର ବହୁତ ଆଡ଼େ ବୁଲିଲେ । ନନ୍ଦବାବୁଙ୍କ ଝିଅ ଉତ୍ତରା (ବୁବୁ) ଗାନ୍ଧୀଜୀଙ୍କର ସେକ୍ରେଟାରୀ ମହାଦେବ ଦେଶାଇଙ୍କ ଏକମାତ୍ର ପୁଅ ଶ୍ରୀ ନାରାୟଣ ଦେଶାଇଙ୍କୁ ସେପ୍ଟେମ୍ବର, ୧୯୪୬ରେ ବାହା ହୋଇଥିଲେ । ଝିଅ ଯୋଇଁ ବେଡ଼୍‌ଛି ଆଶ୍ରମରେ ଥାନ୍ତି, ରଚନାତ୍ମକ କାର୍ଯ୍ୟ କରୁଥାନ୍ତି, ସେଠିକି ଗଲେ । ତାପରେ 'ରାସ' ଗାଁ ଯେଉଁଠୁ ମହାତ୍ମାଜୀ ଦାଣ୍ଡୀ-ଯାତ୍ରା (ଲବଣ ସତ୍ୟାଗ୍ରହ ପାଇଁ) ଆରମ୍ଭ କରିଥିଲେ, ତାପରେ ନର୍ମଦା କୂଳର ଗ୍ରାମ, ନଲ୍‌କୋଠା ଆଦି । ସେଠି ଦୁର୍ଭିକ୍ଷ-ରିଲିଫ୍ କାମ ଚାଲିଥାଏ, ରଚନାତ୍ମକ କର୍ମୀମାନେ ଭଲ କାମ କରୁଥାନ୍ତି, ସେଠୁ ସାବରମତୀ, ଦାଣ୍ଡୀ, ଓ଼ାର୍ଦ୍ଧା ଆଦି ।

୧୯୪୯ ସେପ୍ଟେମ୍ବରରେ ଗୋପବାବୁ ଓ ରମା ଦେବୀ ବଙ୍ଗଦେଶର ବଲରାମପୁର ଗଲେ । ସେଠି ଥାଏ ବଙ୍ଗଦେଶର ସବୁଠୁ ବଡ଼ 'ନୟୀ ତାଲିମ୍' କେନ୍ଦ୍ର ।

ସେମାନେ ତାକୁ ଦେଖିଲେ । ବାଙ୍କୁଡ଼ାର ଇନ୍ଦପୁରରେ ସୂତାକଟା କେନ୍ଦ୍ର ଦେଖିଲେ, କଲିକତାରେ ଦୁଇଟି କେନ୍ଦ୍ର ଦେଖିଲେ ଓ ଆସାମ ଗଲେ । ସେଠି ଗୌହାଟି ପାଖ 'ଶରଣିଆ'ରେ 'କସ୍ତୁରବା ଗ୍ରାମସେବିକା କେନ୍ଦ୍ର' ଦେଖିଲେ । ସେଠୁ ଫେରି ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କୁ ସେ ଚିଠି ଲେଖି ଜଣାଇଲେ ଯେ ପୂର୍ବାଞ୍ଚଳରେ କମ୍ୟୁନିଷ୍ଟଙ୍କର ପ୍ରଭାବ ଖୁବ ବ୍ୟାପୁଛି ଓ ସେଠିକା ଲୋକଙ୍କ ଅସନ୍ତୋଷ ଦୂର କରିବାର ଉପାୟ ଶୀଘ୍ର ନ କଲେ ସେ ଅଞ୍ଚଳ ଭାରତରୁ ବିଚ୍ଛିନ୍ନ ହୋଇଯାଇପାରେ ।

ସେଠୁ ଫେରି ଅକ୍ଟୋବର ମାସରେ ସେ କୋରାପୁଟ ଜିଲ୍ଲାର 'କୁଜେନ୍ଦ୍ରି' ଗଲେ । ସେଠି ଆଦିବାସୀ ଶୌରମାନଙ୍କ ମଧ୍ୟରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ପ୍ରତିଷ୍ଠିତ କେନ୍ଦ୍ର ଥାଏ, ତାକୁ ଦେଖିଲେ । ସେହିବର୍ଷ ସେ ଦିଲ୍ଲୀ ଗଲେ ଓ ଫେରି ଆସି ଓଡ଼ିଶାର ନାନା ଅଞ୍ଚଳରେ ଗସ୍ତ କଲେ ।

## ୧୯୫୦, ଅନୁଗୁଳରେ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ

ତାପରେ ସେ ଲାଗିପଡ଼ିଲେ, ୧୯୫୦ ଅପ୍ରେଲ ମାସରେ ଅନୁଗୁଳରେ ସର୍ବୋଦୟ ସମାଜର ଦ୍ୱିତୀୟ ବାର୍ଷିକ ସମ୍ମିଳନୀ କରାଇବେ, ସେହି କାର୍ଯ୍ୟରେ । 'ରାଜା ରାଜେନ୍ଦ୍ର ଗ୍ରନ୍ଥାବାସ' ସାମ୍ନାରେ ଅମ୍ବତୋଟାରେ ସମ୍ମିଳନୀ ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ ହେଲା । ଓଡ଼ିଶା ସରକାରଙ୍କ ଜଙ୍ଗଲ ବିଭାଗ ଉଧାରରେ କାଠ ବାଉଁଶ ଯୋଗାଇଲେ । କାଗଜ କମ୍ପାନୀ ମଧ୍ୟ ଉଧାରରେ ବାଉଁଶ ଦେଲେ । ଆଖପାଖର ଗାଁ ଲୋକେ ମହା ଉତ୍ସାହରେ ସାହାଯ୍ୟ ସହଯୋଗ ଦେଲେ । ସେମାନେ ଭେଦା ଉଠାଇ ଘିଅ ଦୁଧ ଛେନା ଚାଉଳ ଡାଲି ପରିବା ଆଦି ଅନ୍ୟାନ୍ୟ ଖାଦ୍ୟପଦାର୍ଥ ଯୋଗାଇଲେ । ସାକ୍ଷୀଗୋପାଳ ଅଞ୍ଚଳର ଗାଁ ଲୋକେ ଚାନ୍ଦା କରି ନଡ଼ିଆଚକ ଯୋଗାଇଲେ, ଏତେ ନଡ଼ିଆ ମିଳିଗଲା ଯେ ସମ୍ମିଳନୀକୁ ଆସିଥିବା ପ୍ରତ୍ୟେକ ପ୍ରତିନିଧି ଫେରିଗଲାବେଳେ ତାଙ୍କୁ ଗୋଟିଏ ଗୋଟିଏ ନଡ଼ିଆ ଭେଟି ଦିଆଗଲା । ସମ୍ମିଳନୀ ସହିତ ଗୋଟିଏ ବଡ଼ ଖଦୀ-ଗ୍ରାମୋଦ୍ୟୋଗ ପ୍ରଦର୍ଶନୀ କରାଯାଇଥିଲା, କେବଳ ଖଦୀ-ଗ୍ରାମୋଦ୍ୟୋଗ କେନ୍ଦ୍ରମାନଙ୍କରେ ନୁହେଁ, ଓଡ଼ିଶାର ଗାଁ ଗଣ୍ଡାରେ ଯେତେ ପ୍ରକାର ଗ୍ରାମ୍ୟ ଶିଳ୍ପ ଓ କାରିଗରି ଅଛି ତହିଁରେ ଉତ୍ପନ୍ନ ପଦାର୍ଥମାନଙ୍କ ସହିତ ସେସବୁ ପ୍ରକ୍ରିୟାରେ ତିଆରି ହେଉଥିବା ସେ ପ୍ରଦର୍ଶନୀରେ ପ୍ରଦର୍ଶିତ ହୋଇଥିଲା । ଅତି ଚିତ୍ତାକର୍ଷକ ହୋଇଥିଲା ସମ୍ମିଳନୀ ଓ ପ୍ରଦର୍ଶନୀର ତୋରଣ ଓ ଅନ୍ୟାନ୍ୟ ସାଜସଜ୍ଜା । ନାନା କଳାରେ ଧୁରନ୍ଧର, ଶାନ୍ତିନିକେତନରେ କଳାଶିକ୍ଷା-ପ୍ରାପ୍ତ ଶିଳ୍ପୀ ଶ୍ରୀ ଜଗନ୍ନାଥ ଦାସ ସ୍ଥାନୀୟ ପ୍ରାକୃତିକ ସରଳ ଉପାଦାନରେ ସେସବୁ କରିଥିଲେ ଓ ନିଜ ତତ୍ତ୍ୱାବଧାନରେ କରାଇଥିଲେ । ପ୍ରକାଣ୍ଡ ସମ୍ମିଳନୀ ଓ ପ୍ରଦର୍ଶନୀ ଚମତ୍କାର ହୋଇଥିଲା ଓ ଭାରତର ଚାରିଆଡ଼ୁ ଆସିଥିବା ପ୍ରତିନିଧିମାନେ ଓ ହଜାର

ହଜାର ଦର୍ଶକ ତାଙ୍କୁ ବହୁତ ପ୍ରଶଂସା କରିଥିଲେ ଓ ତାର ସବୁ ପ୍ରକାର ବ୍ୟବସ୍ଥାକୁ ଖୁବ୍ ପ୍ରଶଂସା କରିଥିଲେ । ତାର ଆୟୋଜନର ଆହୁରି କୃତିତ୍ୱ ଥିଲା ଯେ ଏଡ଼େ ବଡ଼ ସମ୍ମିଳନୀ ଓ ପ୍ରଦର୍ଶନୀ ହେଲା, ଅଥଚ ସେଥିପାଇଁ ଅତି ଅଳ୍ପ ଟଙ୍କା ଖର୍ଚ୍ଚ କରିବା ଆବଶ୍ୟକ ପଡ଼ିଲା ।

## ଚିତ୍ର ପ୍ରଦର୍ଶନୀ

୧୯୫୦ରେ ଅନୁଗୁଳରେ ହୋଇଥିବା ଦ୍ୱିତୀୟ "ନିଖିଳ ଭାରତ ସର୍ବୋଦୟ ସମ୍ମିଳନୀ"ର ଗୋଟିଏ ଅବିସ୍ମରଣୀୟ ଘଟଣା ହୋଇଥିଲା ଉତ୍କଳ ଇତିହାସର କେତେଗୁଡ଼ିଏ ବିଶିଷ୍ଟ ଘଟନାକୁ ଚିତ୍ର ଆକାରରେ ଓ ତା' ସହିତ କ୍ଷୁଦ୍ରଗଳ୍ପ ଆକାରରେ ପ୍ରଦର୍ଶିତ କରିବା । ପରିକଳ୍ପନାଟି ଥିଲା ସ୍ୱୟଂ ଗୋପବାବୁଙ୍କର । ଚିତ୍ର ଅଙ୍କାଇବା ପାଇଁ କେଉଁ କେଉଁ ଘଟଣା ଉପଯୁକ୍ତ ହେବ ସେଥିପାଇଁ ପଣ୍ଡିତ ନୀଳକଣ୍ଠ ଦାସ, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଶ୍ରୀ କେଦାରନାଥ ମହାପାତ୍ର, ଡକ୍ଟର ପରମାନନ୍ଦ ଆଚାର୍ଯ୍ୟ ଆଦିଙ୍କଠାରୁ ସେ ପରାମର୍ଶ ନେଇଥିଲେ । ପଣ୍ଡିତ ନୀଳକଣ୍ଠ ଦାସ ସେ ଘଟନାଗୁଡ଼ିକୁ ଲେଖାଇ ଦେଇଥିଲେ ଓ ଶିଳ୍ପୀମାନଙ୍କୁ ସେହି ଅନୁସାରେ ଚିତ୍ର ଅଙ୍କିବାକୁ କୁହା ହୋଇଥିଲା । ସେତେବେଳେ ଓଡ଼ିଶାରେ ଯେଉଁମାନେ ପ୍ରସିଦ୍ଧ ଶିଳ୍ପୀ ଥିଲେ ସେହିମାନଙ୍କ ଭିତରୁ ନଅଜଣ ଶିଳ୍ପୀ ସେଭଳି ଚିତ୍ର ଆଙ୍କିଥିଲେ । ସେମାନଙ୍କ ଭିତରୁ ଶ୍ରୀ ମୂର୍ତ୍ତିଚନ୍ଦ୍ର ସିଂହ, ଶ୍ରୀ ଗୋପାଳ କାନନ୍‌ଗୋ, ଶ୍ରୀ ବିଭୂତି କାନନ୍‌ଗୋ ଏ ପ୍ରତ୍ୟେକଙ୍କର ଛଅଟି କରି, ଶ୍ରୀ ମୁରଲୀଧର ଟାଲିଙ୍କର ପାଞ୍ଚଟି, ଶ୍ରୀ ଉଦୟନାଥ ରଥଙ୍କର ଦୁଇଟି, ଶ୍ରୀ ଉପେନ୍ଦ୍ର କିଶୋର ଦାସ, ପଟ୍ଟଚିତ୍ରଶିଳ୍ପୀ ଶ୍ରୀ ରାମ ମହାରଣା ଓ ଶ୍ରୀମତୀ ଊର୍ମିଳା ଦେବୀ ଏ ପ୍ରତ୍ୟେକଙ୍କର ଗୋଟିଏ ଲେଖା ଚିତ୍ର ଥିଲା । ଚିତ୍ରଗୁଡ଼ିକ ଓଡ଼ିଶାର ଗୌରବର ସ୍ମାରକ ଓ ସ୍ୱଦେଶପ୍ରୀତି ଉଦ୍ଦୀପକ । ସେପରି ୩୦ଟି ଚିତ୍ର ଅଙ୍କା ଯାଇଥିଲା । ଚିତ୍ରଗୁଡ଼ିକ ତ ସେଠାରେ ପ୍ରଦର୍ଶିତ ହୋଇ ଉଚ୍ଚ ପ୍ରଶଂସା ଅର୍ଜନ କରିଥିଲା, ତାହାଛଡ଼ା ସେହି ଉପଲକ୍ଷରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ତାର ଫଟୋ ନିଆଇ ଶ୍ରୀ ରାଜକିଶୋର ମହାନ୍ତିଙ୍କ ଦ୍ୱାରା ପ୍ରତି ଚିତ୍ର ପାଇଁ ଅଲଗା ଅଲଗା ଗୋଟିଏ ଗୋଟିଏ ସଂକ୍ଷିପ୍ତ 'ବାଣୀ' ଲେଖାଇ ୧୯୫୦ରେ ଫଟୋଗୁଡ଼ିକୁ ଆର୍ଟ ପେପରରେ 'ଇଣ୍ଡିଆନ୍ ଫଟୋ ଏନ୍‌ଗ୍ରେଭିଂ କୋ' ଦ୍ୱାରା ବ୍ଲକ କରାଇ ଛପାଇ ବାଣୀଗୁଡ଼ିକୁ କଟକର ମନମୋହନ ପ୍ରେସ୍‌ରେ ଛପାଇ ଉତ୍କଳ ଖଦୀମଣ୍ଡଳ ଦ୍ୱାରା ଗୋଟିଏ ସୁନ୍ଦର ପୁସ୍ତିକା ଆକାରରେ ପ୍ରକାଶ କରାଇଥିଲେ । ତହିଁରେ 'ସୂଚନା' ବୋଲି ତାଙ୍କର ମୁଖବନ୍ଧଟିଏ ଅଛି । ପ୍ରତି ଚିତ୍ରର ଶିଳ୍ପୀଙ୍କ ନାମ, ଐତିହାସିକ ସମୟ ଓ ବିଷୟବସ୍ତୁ ତଳେ ଦିଆଗଲା :—

୧ । ଶ୍ରୀ ଉପେନ୍ଦ୍ରନାଥ ରଥ—୪ର୍ଥ ଶତାବ୍ଦୀ ଖ୍ରୀ: ପୂ:—ବୁଦ୍ଧଦେବଙ୍କୁ ବୋଧି-ଦ୍ରୁମ ତଳେ ଓଡ଼ିଶାର ବଣିକ ତପସୁ ଓ ଭଲ୍ଲିକ ଯଅଚ୍ଛତୁ ଓ ମହୁ ଭେଟି ଦେଉଛନ୍ତି, ସେ ଦୁହେଁ ତାଙ୍କର ପ୍ରଥମ ଶିଷ୍ୟ ।

୨ । ଶ୍ରୀ ବିଭୂତି ଭୂଷଣ କାନନ୍‌ଗୋ—୩ୟ ଶତାବ୍ଦୀ ଖ୍ରୀ: ପୂ:—କଳିଙ୍ଗ ଯୁଦ୍ଧ ପରେ ଉତ୍କଳର ପୁଷ୍ପଗିରି ବିହାରର ବୌଦ୍ଧଭିକ୍ଷୁ ଉପଗୁପ୍ତ ଅଶୋକଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରୁଛନ୍ତି ।

୩ । ଶ୍ରୀ ବିଭୂତି ଭୂଷଣ କାନନ୍‌ଗୋ—୨ୟ ଶତାବ୍ଦୀ ଖ୍ରୀ: ପୂ:—କଳିଙ୍ଗ ସମ୍ରାଟ୍ ଖାରବେଳ ମଗଧ ଜିଣି ନିଜ ରାଜଧାନୀକୁ ଫେରୁଛନ୍ତି ।

୪ । ଶ୍ରୀ ଗୋପାଳ କାନନ୍‌ଗୋ—୩ୟ ଶତାବ୍ଦୀ ଖ୍ରୀ: ପୂ:ରୁ ୧୧ ଖ୍ରୀ: ଅ:—ଓଡ଼ିଶାର ନୌବଣିକମାନେ ('ସାଧବ'ମାନେ) ସମୁଦ୍ରଯାତ୍ରାରୁ ଫେରିଲାପରେ 'ବୋଇତ ବନ୍ଦାଣ' ଉତ୍ସବ ।

୫ । ଶ୍ରୀ ଜଗନ୍ନାଥ ଦାସ—୭ମ ଶତାବ୍ଦୀ ଖ୍ରୀ: ଅ:—ଉତ୍କଳ ବିଜେତା ହର୍ଷବର୍ଦ୍ଧନ ଉତ୍କଳର 'ମହାଯାନ' ବୌଦ୍ଧପନ୍ଥୀ ଭିକ୍ଷୁ ଜୟସେନଙ୍କ ଦ୍ୱାରା ଯୁକ୍ତିରେ ହାରି ତାଙ୍କୁ ଉତ୍କଳର ଗୋଟିଏ ୮୦ଟି ସହରଥିବା ରାଜ୍ୟଦାନ ଦେବାକୁ ଯାଚିଲେ, ଭିକ୍ଷୁ ସେ ଦାନ ପ୍ରତ୍ୟାଖ୍ୟାନ କରୁଛନ୍ତି ।

୬ । ଶ୍ରୀ ଗୋପାଳ କାନନ୍‌ଗୋ—୭ମ ଶତାବ୍ଦୀ ଖ୍ରୀ: ଅ:—କେନ୍ଦୁଝରର 'ସୀତାବିଞ୍ଜି'ରେ ପଥର ଝୁମା ଗୁମ୍ଫା ତଳେ ଅଙ୍କା ହୋଇଥିବା ନାନା ବର୍ଣ୍ଣର 'ଫ୍ରେସ୍କୋ' ଚିତ୍ର, ଓଡ଼ିଶାର ଭୌମ ରାଜା (ମହାରାଜା ଦିଶାଭଞ୍ଜ)ଙ୍କ ଯୁଦ୍ଧ ଯାତ୍ରା ।

୭ । ଶ୍ରୀ ଗୋପାଳ କାନନ୍‌ଗୋ—୮ମ ଶତାବ୍ଦୀ ଖ୍ରୀ: ଅ:—ବୌଦ୍ଧସନ୍ନ୍ୟାସୀ ପ୍ରାଜ୍ଞଙ୍କ ହାତକୁ କଳିଙ୍ଗର ସମ୍ରାଟ୍ ଶୁଭଙ୍କର କେଶରୀ ବୌଦ୍ଧଗ୍ରନ୍ଥ 'ଗଣ୍ଡବ୍ୟୂହ' ଓ ଚୀନ୍ ସମ୍ରାଟଙ୍କ ପାଖକୁ ପଠିଟିଏ ବଢ଼ାଇ ଦେଉଛନ୍ତି ।

୮ । ଶ୍ରୀ ବିଭୂତି ଭୂଷଣ କାନନ୍‌ଗୋ—୮ମ-୯ମ ଶତାବ୍ଦୀ—ଭୌମକର ବଂଶୀୟ ଉତ୍କଳ ସମ୍ରାଟ୍‌ଙ୍କ ବିଧବା ମହାରାଣୀ ତ୍ରିଭୁବନ ଦେବୀ ରାଜ୍ୟ ଶାସନ କରୁଛନ୍ତି, କାରଣ ତାଙ୍କ ପୁଅ ବି ମୃତ, ନାତିଟି ସାନ ।

୯ । ଶ୍ରୀ ଗୋପାଳ କାନନ୍‌ଗୋ—୯ମ ଶତାବ୍ଦୀ—ଉତ୍କଳର ରାଣୀ ଅବିବାହିତା କୁମାରୀ ଦଣ୍ଡୀପାଟମହାଦେବୀ ଓ ତାଙ୍କ ସଖୀମାନେ ଧନୁର୍ବିଦ୍ୟା ଅଭ୍ୟାସ କରୁଛନ୍ତି ।

୧୦ । ଶ୍ରୀ ପୂର୍ଣ୍ଣଚନ୍ଦ୍ର ସିଂହ—ଏକାଦଶ ଶତାବ୍ଦୀ—ସନ୍ଥ ରାମାନୁଜ ଓ ଉତ୍କଳ ସମ୍ରାଟ୍ ଚୋଳଗଙ୍ଗ ଦେବଙ୍କ ଭେଟ ।

୧୧ । ଶ୍ରୀ ଗୋପାଳ କାନନ୍‌ଗୋ—ଦ୍ୱାଦଶ ଶତାବ୍ଦୀ—ଅଭୁତ୍ରେମ୍ବ ପାଟେଶ କବି ଜୟଦେବ କୁମାରୀ ପଦ୍ମାଙ୍କ ପାଣି ଗ୍ରହଣ କରୁଛନ୍ତି ।

୧୨ । ଶ୍ରୀ ମୁରଲୀଧର ଟାଲି—ଦ୍ୱାଦଶ ଶତାବ୍ଦୀ—ମୃଗୟା ବେଳେ ଅନଙ୍ଗ-ଭୀମ ଦେବ ଭୁଲ୍‌ରେ ଜଣେ ବ୍ରାହ୍ମଣଙ୍କୁ ଶର ମାରିଛନ୍ତି ।

୧୩ । ଶ୍ରୀ ପୂର୍ଣ୍ଣଚନ୍ଦ୍ର ସିଂହ—ଦ୍ୱାଦଶ ଶତାବ୍ଦୀ—ନରସିଂହ ଦେବଙ୍କ ରାଜସଭାରେ ଉତ୍କଳୀୟ ଆଳଙ୍କାରିକ ପଣ୍ଡିତ ବିଦ୍ୟାଧର ସ୍ୱରଚିତ 'ଏକାବଳୀ' ଗ୍ରନ୍ଥ ପଢ଼ୁଛନ୍ତି ।

୧୪ । ଶ୍ରୀ ବିଭୂତି ଭୂଷଣ କାନନ୍‌ଗୋ—ତ୍ରୟୋଦଶ ଶତାବ୍ଦୀ—ଜଣେ ବୁଢ଼ୀ ଘରେ କୋଣାର୍କ ନିର୍ମାତା ଶିବେଇ ସାନ୍ତ୍ରାଙ୍କ ଶିକ୍ଷିଆ ।

୧୫ । ଶ୍ରୀ ଉପେନ୍ଦ୍ର କିଶୋର ଦାସ—ତ୍ରୟୋଦଶ ଶତାବ୍ଦୀ—କୋଣାର୍କ ତିଆରି ବେଳେ ମୃତ 'ଧରମା'କୁ ତା ବାପା ଧରି ଶିଳ୍ପୀମାନଙ୍କ ଆଗରେ ଠିଆ ହୋଇଛି ।

୧୬ । ଶ୍ରୀ ପୂର୍ଣ୍ଣଚନ୍ଦ୍ର ସିଂହ—ଚତୁର୍ଦ୍ଦଶ ଶତାବ୍ଦୀ—ସମ୍ରାଟ୍ କପିଳେନ୍ଦ୍ର ଦେବ ପିଲାଦିନେ ଗାଈଜଗା ଟୋକା ଥିଲାବେଳେ ତାଙ୍କ ମୁଣ୍ଡ ଉପରେ ନାଗସାପ ଫଣା ଟେକିଛି ।

୧୭ । ଶ୍ରୀ ପୂର୍ଣ୍ଣଚନ୍ଦ୍ର ସିଂହ—ଚତୁର୍ଦ୍ଦଶ ଶତାବ୍ଦୀ—ସମ୍ରାଟ୍ କପିଳେନ୍ଦ୍ର ଦେବଙ୍କ ସଙ୍ଗେ ବାଲ୍ୟବନ୍ଧୁ 'କାଣିଆ'ର ଭେଟ ।

୧୮ । ଶ୍ରୀମତୀ ଉର୍ମିଳା ଦେବୀ—ପଞ୍ଚଦଶ ଶତାବ୍ଦୀ (ପ୍ରକୃତରେ ଦଶମ)—ସାରଳା ଦାସ 'ମହାଭାରତ' ଲେଖୁଛନ୍ତି ।

୧୯ । ଶ୍ରୀ ପୂର୍ଣ୍ଣଚନ୍ଦ୍ର ସିଂହ—ପଞ୍ଚଦଶ ଶତାବ୍ଦୀ—ଜଗନ୍ନାଥ ମନ୍ଦିର ବାଇଶି ପାହାଚ ଉପରେ କପିଳେନ୍ଦ୍ର ଦେବଙ୍କୁ ତାଙ୍କ ଅଠର ପୁଅଙ୍କ ଭିତରୁ ପୁରୁଷୋତ୍ତମ ରାଜାଙ୍କ ଗୃହଦରଟି ଗୋଟେଇ ଆଣି ବଢ଼େଇ ଦେଉଛନ୍ତି ।

୨୦ । ଶ୍ରୀ ବିଭୂତି ଭୂଷଣ କାନନ୍‌ଗୋ—ପଞ୍ଚଦଶ ଖ୍ରୀ: ଅ:—ପୁରୁଷୋତ୍ତମ ଦେବ କାଞ୍ଚି ରାଜକେମା ପଦ୍ମାବତୀଙ୍କୁ ଘେନି ଫେରୁଛନ୍ତି ।

୨୧ । ଶ୍ରୀ ଜଗନ୍ନାଥ ରଥ—ଷୋଡ଼ଶ ଶତାବ୍ଦୀ—ରାୟ ରାମାନନ୍ଦ ଶ୍ରୀଚୈତନ୍ୟଙ୍କୁ ଭେଟୁଛନ୍ତି ।

୨୨ । ଶ୍ରୀ ମୁରଲୀଧର ଟାଲି—ଷୋଡ଼ଶ ଶତାବ୍ଦୀ—ଶ୍ରୀଜଗନ୍ନାଥ ଦାସ ଲୋକଙ୍କ ଆଗରେ ଭାଗବତ ଚର୍ଚ୍ଚା କରୁଛନ୍ତି, ଶ୍ରୀଚୈତନ୍ୟ ମୁଗ୍ଧ ହୋଇ ଶୁଣୁଛନ୍ତି ।

୨୩ । ଶ୍ରୀ ମୁରଲୀଧର ଟାଲି—ଷୋଡ଼ଶ ଶତାବ୍ଦୀ—ମୁକୁନ୍ଦଦେବ ତପସ୍ୟା କରୁଛନ୍ତି ।

୨୪ । ଶ୍ରୀ ମୁରଲୀଧର ଟାଲି—ଊନବିଂଶ ଶତାବ୍ଦୀ—ଇଂରେଜ ସୈନ୍ୟ ବିଦ୍ରୋହୀ ନେତା ଜୟୀ ରାଜଗୁରୁଙ୍କୁ ବରଗଛରେ ଫାଶି ଦେଉଛନ୍ତି ।

୨୫ । ଶ୍ରୀ ଶ୍ୟାମ ମହାରଣା (ପଞ୍ଚଚିତ୍ର)—ଊନବିଂଶ ଶତାବ୍ଦୀ—ବକ୍ସି ଜଗବନ୍ଧୁ ବିଦ୍ୟାଧର ପାଇକସୈନ୍ୟଙ୍କୁ ଘେନି ଇଂରେଜ ସୈନ୍ୟଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ବାହାରିଛନ୍ତି ।

୨୬ । ଶ୍ରୀ ଗୋପାଳ କାନନ୍‌ଗୋ—ଊନବିଂଶ-ବିଂଶ ଶତାବ୍ଦୀ—ଶ୍ରୀ ପଠାଣି ସାମନ୍ତ 'ସିଦ୍ଧାନ୍ତ ଦର୍ପଣ' ଲେଖୁଛନ୍ତି ।

୨୭ । ଶ୍ରୀ ମୁରଲୀଧର ଟାଲି—ଊନବିଂଶ-ବିଂଶ ଶତାବ୍ଦୀ—ଉତ୍କଳ ଗୌରବ ମଧୁସୂଦନ ଦାସ ପ୍ରସିଦ୍ଧ 'ତାରକସି' କାମ କରାଉଛନ୍ତି ।

୨୮ । ଶ୍ରୀ ପୂର୍ଣ୍ଣଚନ୍ଦ୍ର ସିଂହ—ବିଂଶ ଶତାବ୍ଦୀ—ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ନଈବଢ଼ି ବେଳେ ଗାଁ ଗଣ୍ଡା ବୁଲୁଛନ୍ତି ।

୨୯ । ଶ୍ରୀ ଉପେନ୍ଦ୍ର କିଶୋର ଦାସ—୧୯୩୫—ଓଡ଼ିଶାରେ ଗାନ୍ଧୀଜୀଙ୍କ ପଦଯାତ୍ରା ।

୩୦ । ଶ୍ରୀ ବିଭୂତି ଭୂଷଣ କାନନ୍‌ଗୋ—୧୯୪୨—ସାହସୀ ଦେଶପ୍ରେମୀ ବିଦ୍ରୋହୀ ବାଳକ ବାଜି ରାଉତକୁ ପୁଲିସ ଗୁଳି ମାରୁଛନ୍ତି ।

## ଗୋପବାବୁ ଅ: ଭା: ସର୍ବୋଦୟ ସମାଜର ସଂଯୋଜକ ହେଲେ

ସେହି ଅନୁଗୁଳ ସର୍ବୋଦୟ ସମ୍ମିଳନୀରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ 'ଅଖିଳ ଭାରତ ସର୍ବୋଦୟ ସମାଜ'ର 'ମୁଖ୍ୟ ସଂଯୋଜକ' ନିର୍ବାଚିତ ହେଲେ । ଶ୍ରୀ ନବକୃଷ୍ଣ ଚୌଧୁରୀ ଜଣେ ସଦସ୍ୟ ହେଲେ । ସର୍ବୋଦୟ କାମରେ ଗୋପବାବୁଙ୍କୁ ଭାରତର ନାନା ସ୍ଥାନକୁ ଯିବାକୁ ପଡ଼ିଲା ।

## 'ଦୁଟଧେଇପାଳ'ରେ ତାଙ୍କ ନୂଆଘର

ଦ୍ୱିତୀୟ ଥର ବନ୍ଧ ଆସିଲାପରେ ଗୋପବାବୁ ସପରିବାର ଅରଙ୍ଗାବାଦ୍‌ରେ ରହୁଥିଲେ । କିନ୍ତୁ ୧୯୫୦ରେ ବ୍ରାହ୍ମଣୀ ନଈର ପ୍ରବଳ ବଢ଼ିରେ ସେ ଘରଟି ଭାଙ୍ଗି ପଡ଼ିଲା । ଗୋପବାବୁ ଉଠିଗଲେ ବନ୍ଧ ବସ୍ତିରୁ ଅଧମାଇଲ ଦୂର 'ଦୁଧେଇପାଳ', ଯେଉଁଠି ସେ ଅଳ୍ପ ଜମି ନେଇ ନିଜେ ଚାଷ କରୁଥିଲେ । ସେଠି ଟିକିଏ ଢିପ ଜାଗା ଦେଖି ଘରଟିଏ ତୋଳିଲେ ଓ ବନ୍ଧରୁ ସେ ଚାଲିଯିବା ପର୍ଯ୍ୟନ୍ତ ଆହୁରି ଯେଉଁ ପ୍ରାୟ ଦେଢ଼ବର୍ଷ କାଳ, ସପରିବାର ସେହି ଘରେ ରହୁଥିଲେ । ପୂର୍ବର 'ଦୁଧେଇ କେନାଲ' ଓ ସେହି ପାଖରେ ଯାଇଥିବା ବ୍ରାହ୍ମଣୀ ନଈର ଧାରଟିଏ କ୍ରମଶଃ ପୋତି ହୋଇପଡ଼ି ସେଠି ପ୍ରାୟ ୭୦ ଏକର ଚାଷ ଜମି ବାହାରିଥିଲା, ସେଠି ବର୍ତ୍ତମାନ ସେ ପ୍ରାୟ ପାଞ୍ଚ ଏକର ଜମି କିଣିଲେ ଓ ପୂର୍ଣ୍ଣ ଉଦ୍ୟମ ଲଗାଇ 'ସ୍ୱାବଲମ୍ବୀ ଚାଷ କଲେ' । ସେ ଓ ତାଙ୍କ ପୁଅ ଶ୍ରୀ ମନମୋହନ ଚୌଧୁରୀ ଦୁହେଁ ଲାଗିଯାଆନ୍ତି । ହଳ କରିବା, ମାଟି କାମ କରିବାରେ, ଗୋପବାବୁ ନିୟମିତଭାବେ ଦୈନିକ ଆଠ ଦଶ ଘଣ୍ଟା ସେ କାମ କରନ୍ତି । ସେ ମାଟି ଖୋଳି ଖୋଳି ସେଠି ପୋଖରୀଟିଏ ବି ଖୋଳିଲେ । ଶ୍ରୀମତୀ ରମା ଦେବୀ ସେଠିକୁ ଯାଇ ସେସବୁ କାମରେ ତାଙ୍କୁ ସାହାଯ୍ୟ କରୁଥିଲେ ।

## ଗୋପବାବୁଙ୍କ ଉଦ୍‌ବେଗ ଓ ଅନଶନ

୧୯୫୦ ଅଗଷ୍ଟ ମାସରେ ଦେଖାଗଲା ଯେ ଗୋପବାବୁ ବନ୍ଧରେ ଅନେକ ସମୟରେ ଚିନ୍ତାମଗ୍ନ ରହୁଛନ୍ତି । ତାପରେ ହଠାତ୍ ଅଗଷ୍ଟ ୨°ରେ ଅନଶନ କଲେ, ସାତଦିନ ଉପାସ ରହି ୮ ତାରିଖରେ ଅନଶନ ଭାଙ୍ଗିଲେ । ପରିବାରର ଲୋକେ, ସହକର୍ମୀମାନେ, ସମସ୍ତେ ମର୍ମାହତ ହେଲେ, ଭାବିଲେ ସେ ରାଗିଲେ କି ? କାହିଁକି ? କିଏ କଣ ଦୋଷ କି ତ୍ରୁଟି କଲା ?

ଅଗଷ୍ଟ ୮ରେ ଅନଶନ ଭାଙ୍ଗିବା ପୂର୍ବରୁ ସେ ଏହି ଆଶଙ୍କା ଦୂର କଲେ । ଅନଶନର କାରଣ ବୁଝାଇ କହିଲେ :

"ସର୍ବୋଦୟ ସମ୍ମିଳନୀ ପୂର୍ବରୁ ଓ ପରେ ଅନେକ କର୍ମୀ, ନେତା ଓ ସାଧାରଣ ଲୋକଙ୍କ ସଙ୍ଗେ ଆଲୋଚନା କରିଛୁ । ସବୁଠି ଲକ୍ଷ୍ୟ କରିଛୁ ଯେ ଆବହାଓ୍ୱାରେ ବର୍ତ୍ତମାନ ବୈମନସ୍ୟ ଘେରି ରହିଛି । ସର୍ବସେବାସଂଘର ସେକ୍ରେଟେରୀ ହେବା ପାଇଁ ଝଗଡ଼ା ହୋଇ ଆସିଲା । ସାମ୍ନାରେ କାମ କଥା ଭାବି ଦେଖିଲି ଯେ କି ଗଠନମୂଳକ କାମ, ସବୁଠି ଏଇ ବୈମନସ୍ୟ ବିଷ ସଞ୍ଚରି ଯାଇଛି । ଏଇ ହଳାହଳ ପିଇ ପାରିବି ତ ?......

କେହି ମନେକରନ୍ତୁ ନାହିଁ ଯେ ଏଠିକାର କୌଣସି ଖାସ୍ ଘଟନା ଉପରେ ଉପାସ ଆରମ୍ଭ କରିଦେଲି । ...ଆମ ଆଗରେ ଅନଶନର ଯୁଗ ଆସୁଛି, ଗୃହଆଡ଼େ ହିଂସାର ନାଳା ଲଗିଛି, ଆମୁକୁ ଲୋକ ସରକାର, ସାଂପ୍ରଦାୟିକତା ସବୁର ସାମ୍ନାରେ ଠିଆ ହେବାକୁ ପଡ଼ିବ । ଅହିଂସାକୁ ଗ୍ରହି ଗ୍ରହି ମାଳା ଜପି ଜପି ବସିଗଲେ ଚଳିବ ନାହିଁ, ଏ ଚିନ୍ତା ଅନେକଙ୍କ ମନରେ ଆସିଲାଣି । ଉପବାସ ଯଦି କାହାପ୍ରତି ମନରେ କ୍ରୋଧ ନ ରଖି କରାଯାଏ ତେବେ ଖୁବ୍ ଆରାମ ଦିଏ । ଏ ଯୁଗର ହାଓ୍ୱା ତ ଓଲଟା ଆଡ଼କୁ ଦେଉଛି । ତେଣୁ ଅଭିମାନ ନ କରି ତାକୁ ନିଜ ଉପରେ ପକାଇବା ଦରକାର ।

## ଈଶୋପନିଷଦ୍ ଅନୁବାଦ

ଏହି ଉପବାସ ବେଳେ ସେ ସଂସ୍କୃତ ଈଶୋପନିଷଦକୁ ସରଳ ଓଡ଼ିଆ ପଦ୍ୟରେ ଅନୁବାଦ କରିଥିଲେ ।

## ଗୋପବାବୁ ଓ କଂଗ୍ରେସ ଶାସନ

ଅନଶନ ଭାଙ୍ଗିଲବେଳେ ତାଙ୍କ ଉକ୍ତିରୁ ସ୍ପଷ୍ଟ ଜଣାପଡ଼ୁଛି ଯେ ସେତେବେଳକୁ ସେ ସରକାର ପ୍ରତି ଅସନ୍ତୁଷ୍ଟ ହେଲେଣି, ତାହା ବିରୁଦ୍ଧରେ ଠିଆ ହେବାକୁ ପଡ଼ିବ ବୋଲି ଲୋକଙ୍କୁ ତାଙ୍କୁ କହିବାକୁ ହେଲାଣି । ସ୍ୱାଧୀନତା ଆସିଲା, ଲୋକଙ୍କ ଦ୍ୱାରା ନିର୍ବାଚିତ ହୋଇ ଲୋକ-ସରକାର ଗଢ଼ା ହେଲେ, ଅଥଚ ଲୋକଙ୍କ ଦୁର୍ଦ୍ଦଶା ମେଣ୍ଟିଲ ଭଳି ଯେଉଁ ମାର୍ଗରେ କାମ ହେବା ଦରକାର, ଯାହା ହେବା ଦରକାର, ତାହା ହେଉ ନାହିଁ, ତାଙ୍କର ଏହିପରି ଧାରଣା ହେଲାଣି । ଖାଲି ସେତିକି ନୁହେଁ, ଯେଉଁ ଗାନ୍ଧୀଙ୍କ ନେତୃତ୍ୱରେ ଦେଶବ୍ୟାପୀ ଆନ୍ଦୋଳନ ହୋଇ ସ୍ୱାଧୀନତା ମିଳିଲା, ସ୍ୱାଧୀନତାର ମାତ୍ର ତିନୋଟି ବର୍ଷ ସରିଲାବେଳକୁ ଗୋପବାବୁଙ୍କୁ ଲାଗୁଛି ଯେ ଶାସକ ଗୋଷ୍ଠୀଙ୍କ ମାର୍ଗ ସେହି ଗାନ୍ଧୀଙ୍କ ମାର୍ଗଠୁ ଅଲଗା, ଅଥଚ ସେତେବେଳର ସେହି ଶାସକଗୋଷ୍ଠୀ ବି ଆଉ କେହି ନୁହନ୍ତି, ସେମାନେ ସେହି ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ପାଇଁ ସଂଗ୍ରାମ କରିଥିଲେ, କାରାଦଣ୍ଡ ଓ ନାନା ବିପଦ ଦୁଃଖକଷ୍ଟ ବରଣ କରିଥିଲେ, ସେତେବେଳେ ବି ଗାନ୍ଧୀବାଦୀ ବୋଲି ପରିଚିତ । ସେ ଥିଲା ୧୯୫୦, ୧୯୮୦ ନୁହେଁ ।

କିନ୍ତୁ ନିଜେ ମହାତ୍ମା ଗାନ୍ଧୀ ମଧ୍ୟ ତାଙ୍କ ଜୀବନ-ସନ୍ଧ୍ୟାରେ ଅନୁଭବ କରୁଥିଲେ ଯେ ଅବସ୍ଥା ବଦଳିଗଲାଣି, ସେ କ୍ଷୁବ୍ଧ ଓ ନିରାଶ ହୋଇଥିଲେ । ବିଶେଷତଃ ଗାନ୍ଧୀବାଦୀମାନେ କ୍ଷମତା-ରାଜନୀତି କ୍ଷେତ୍ରରେ ନ ରହି ଗାନ୍ଧୀଜୀଙ୍କ ନୀତି ଆଦର୍ଶ ଅନୁସାରେ ଚଳିଲେ, ସେମାନେ ଶାସନ କ୍ଷେତ୍ରର ଦାୟିତ୍ୱ ନେଲେ ନାହିଁ, ଗାନ୍ଧୀଜୀଙ୍କ

ରଚନାତ୍ମକ କାର୍ଯ୍ୟମାନଙ୍କରେ ଲଗିଲେ । ଅନ୍ୟମାନେ ଓ ସେମାନେ ହିଁ ସଂଖ୍ୟାଧିକ, ରାଜନୀତି ଆଡ଼କୁ ମୋଡ଼ିହେଲେ । ସ୍ୱାଧୀନତା ପାଇଁ ଆନ୍ଦୋଳନ କରିବା, ସେହି ଆନ୍ଦୋଳନକ୍ରମରେ ବିଦେଶୀ ସରକାର ସଙ୍ଗେ ଅସହଯୋଗ କରିବା, ଯେଉଁ ଆଇନ୍‌କାନୁନ୍‌ରେ ସେ ସରକାର ଦେଶ ଚଳାଉଛନ୍ତି ତାକୁ ଭାଙ୍ଗିବା, ସରକାରଙ୍କୁ କାବୁ କରିବାକୁ ଚେଷ୍ଟା କରି ସ୍ୱାଧୀନତା ଦାବୀକୁ ସେ ସ୍ୱୀକାର କରୁ ବୋଲି ତା ଉପରେ ଚାପ ପକାଇବା, ସେ ଥିଲା ସ୍ୱାଧୀନତା ପୂର୍ବର କାମ । କିନ୍ତୁ ସ୍ୱାଧୀନତା ମିଳିଗଲା ମୁହୂର୍ତ୍ତରୁ ପୂର୍ବର ସେହି ବିପ୍ଳବୀ ଆନ୍ଦୋଳନକାରୀମାନଙ୍କୁ ହିଁ ଦେଶକୁ ଚଳାଇବାର ସବୁ ଦାୟିତ୍ୱ ମୁଣ୍ଡେଇବାକୁ ପଡ଼ିଲା । ରାତିକା ରାତି ଜନ୍ମ ହୋଇ ପଡ଼ିଛି ପର୍ବତ ପ୍ରମାଣେ ସମସ୍ୟାମାନଙ୍କ ବୋଝ, ସବୁ ଲୋଡ଼ୁଛି ଆଶୁ ସମାଧାନ, ଅପେକ୍ଷା କରିବାକୁ ତର ସହୁ ନାହିଁ, ଖାଲି ପୁରୁଣା ସମସ୍ୟା ନୁହେଁ, ଆହୁରି କଠିନ, ଆହୁରି ଭୟଙ୍କର ନୂଆ ନୂଆ ସମସ୍ୟା । ଅଣ-ଗାନ୍ଧୀୟ ମାର୍ଗରେ ଦେଶ ଚଳାଇବାର ମାର୍ଗର ଗତ ଇଂରେଜ ଶାସନକାଳରୁ ପଡ଼ିଯାଇଛି । ଭଲ ହେଉ, ମନ୍ଦ ହେଉ, ଗାନ୍ଧୀନୀତି ନ ହୋଇଥାଉ ପଛେ, ସେହି ଇଂରେଜ ଭାଷା, ସେହି ବ୍ୟୁରୋକ୍ରାସି ସଂସ୍ଥା, ସେହି ଆଇନ୍‌କାନୁନ୍, କୋର୍ଟ, କଚେରି, ହାକିମ, ପୁଲିସ୍, ଶାସନର ଗାଡ଼ି ଚାଲି ପାରିବ, ନଫଳୁ ସ୍ୱାଧୀନତା ପୂର୍ବର ସ୍ୱପ୍ନ । ପୂର୍ବକଳ୍ପିତ ଗାନ୍ଧୀନୀତି, ଗାନ୍ଧୀଆଦର୍ଶ ଅନୁଯାୟୀ କିପରି ଏହାକୁ ସବୁ ବଦଳାଇ ହେବ, ବିଶୁଦ୍ଧ ଗାନ୍ଧୀବାଦ ଅନୁସାରେ ସବୁ ସମସ୍ୟାର ସମାଧାନ ହୋଇ ପାରିବ ଓ ଶାସନ ଚାଲିବ, —କାର୍ଯ୍ୟକ୍ଷେତ୍ରରେ ସେତେବେଳେ ବି ତାହା ହୋଇନାହିଁ, କେବେ ସୁଦ୍ଧା ହେଲା ନାହିଁ ।

ଏକଥା ସତ ଯେ **"Power corrupts, absolute power corrupts absolutely."**

( କ୍ଷମତା ମଣିଷକୁ ଭ୍ରଷ୍ଟାଚାରୀ କରେ ଓ ଅଖଣ୍ଡ କ୍ଷମତା ପାଇଗଲେ ମଣିଷ ସଂପୂର୍ଣ୍ଣଭାବେ ଭ୍ରଷ୍ଟାଚାରୀ ହୋଇଯାଏ । )

କ୍ଷମତାର ମୋହ ଯେ ଅନେକଙ୍କୁ ରାଜନୀତି ଆଡ଼କୁ ଟାଣିଥାଏ ଏକଥା ବି ଐତିହାସିକ ସତ୍ୟ । କ୍ଷମତାକୁ ଆସିଲା ପରେ ପୂର୍ବର ଅନେକଙ୍କ ଚଳଣି, ଦୃଷ୍ଟିଭଙ୍ଗୀ, ମତିଗତି, ଆଚାର ବ୍ୟବହାର ବଦଳିଗଲା । ସେମାନେ ହୋଇଗଲେ ଭିନେ ଲୋକ । କିନ୍ତୁ ଏପରି କହିହେବ ନାହିଁ ଯେ ସେତେବେଳକୁ ସେହି ପୁରୁଖା ତ୍ୟାଗୀ ସଂଗ୍ରାମୀମାନେ ସମସ୍ତେ ସେପରି ହେଲେ କି ସମସ୍ତେ ଗାନ୍ଧୀନୀତିରେ ବିଶ୍ୱାସ ହରାଇ ନୂଆ ମାର୍ଗ ନେବାକୁ ଲୋଡ଼ିଲେ । କିନ୍ତୁ ସେମାନଙ୍କ ଆଗରେ ଯେଉଁ ଦାୟିତ୍ୱ ଓ ସମସ୍ୟା, ଅବିକଳ ବିଶୁଦ୍ଧ ଗାନ୍ଧୀବାଦ ଅନୁସାରେ କିପରି ତାର ସମାଧାନ କରି କରି ଦେଶ ଚଳାଇହେବ ସେଥିପାଇଁ ସେମାନଙ୍କ ଆଗରେ କିଛି ଆଗରୁ ପଡ଼ିଥିବା ବାଟ

ନ ଥିଲ ଓ ଦ୍ୱିତୀୟରେ, ଯେଉଁଠୀ ଆହୁରି ତାତ୍ପର୍ଯ୍ୟପୂର୍ଣ୍ଣ, ରାଷ୍ଟ୍ରୀୟ ଶାସନ କ୍ଷେତ୍ରରେ ଯେଉଁମାନେ ଗୁରୁ ନେତା ଥିଲେ, ନାନା ବିଷୟରେ ସେମାନଙ୍କର ଗାନ୍ଧୀଙ୍କଠୁ ଭିନ୍ନ ଅଲଗା ବାଟ୍ଟର ଓ ସ୍ୱପ୍ନ ଥିଲ ।

ସ୍ୱାଧୀନତା ପରେ ଗାନ୍ଧୀବାଦୀମାନେ ଦେଖୁଥିଲେ, ଗାନ୍ଧୀମାର୍ଗରେ ଶାସନ ଚାଲୁ ନାହିଁ, ଅନ୍ୟ ବାଟ ଧରୁଛି ଓ ଦେଶର ନାନା ମୌଳିକ ସମସ୍ୟାର ସମାଧାନ ହେଉ ନାହିଁ । ଆରପାଖେ, ଯେଉଁମାନେ ଶାସନଦାୟିତ୍ୱ ମୁଣ୍ଡେଇଥାନ୍ତି, ସେମାନେ ଭାବୁଥାନ୍ତି, କାର୍ଯ୍ୟକ୍ଷେତ୍ରରେ ରହି ନିଜେ ସବୁ ଦାୟିତ୍ୱ ମୁଣ୍ଡେଇ, ଅସମ୍ଭାବ୍ୟ ପରିଶ୍ରମ କରି, ଯାହା ଯାହା ଦରକାର ସେମାନେ ତାହା ପାରୁପର୍ଯ୍ୟନ୍ତେ ତ କରୁଛନ୍ତି, ରାତାରାତି ତ ସବୁ ହେବା ସମ୍ଭବ ନୁହେଁ. ଏମାନେ ସରକାର ସହିତ ପୂର୍ଣ୍ଣ ସହଯୋଗ ନ କରନ୍ତି, ଏମାନେ ଚାହୁଁଛନ୍ତି କାହିଁକି ? ସେମାନଙ୍କ ମତାନ୍ତର ବଢ଼ୁଥାଏ, ୧୯୫୦ ବେଳକୁ ସ୍ପଷ୍ଟ ବାନ୍ଧ ହୋଇ ପଡ଼ିଥାଏ । ଶାସକଗୋଷ୍ଠୀ ସହିତ ସର୍ବୋଦୟବାଦୀମାନଙ୍କର ନାନା ବିଷୟରେ ମତାନ୍ତର ବେଳେ ବେଳେ ପତ୍ର ପତ୍ରିକାରେ ପ୍ରକାଶ ପାଉଥାଏ ।

## ଗୋପବାବୁ ଓ ଡକ୍ଟର ମହତାବ

ଏକଦା ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀ ହରେକୃଷ୍ଣ ମହତାବ ଦୁହେଁ ଥିଲେ ପରସ୍ପରଙ୍କ ଘନିଷ୍ଠ ବନ୍ଧୁ । ୧୯୭୭-୭୪ରେ ନିଜ ଅସମ୍ପୂର୍ଣ୍ଣ 'ଆତ୍ମଜୀବନୀ' ଲେଖିଲା ବେଳେ ୧୯୧୯ରେ ସେ ତାଙ୍କର ଚାକିରିରୁ ଇସ୍ତଫା ଦେବା ବିଷୟ ଉଲ୍ଲେଖ କରିବାକୁ ଯାଇ ସେ ତାଙ୍କ 'ସୋଦର ପ୍ରତିମ ମହତାବ'ଙ୍କ ବିଷୟ ଉଲ୍ଲେଖ କରିଥିଲେ । ତା ପୂର୍ବରୁ ଚାକିରିବେଳେ କଟକରେ ଡେପୁଟି କଲେକ୍ଟର ଥାଇ ୧୯୧୯ରେ 'ଭାରତୀ ମନ୍ଦିର' ପାଠାଗାର ଓ ଲାଇବ୍ରେରୀ ଗଢ଼ିଲାବେଳୁ ଶ୍ରୀ ମହତାବଙ୍କ ସଙ୍ଗେ ତାଙ୍କ ସ୍ନେହ-ସମ୍ପର୍କ । ଦୁହେଁ ଏକ ସମୟରେ ସ୍ୱାଧୀନତା ସ୍ୱପ୍ନ ଦେଖିଥିଲେ, ଦୁହେଁ ଗାନ୍ଧୀଜୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନରେ ସଂଗ୍ରାମୀ ହୋଇଥିଲେ, କାରାବରଣ କରିଥିଲେ, ନାନା ଦୁଃଖକଷ୍ଟ ଭୋଗିଥିଲେ, କେତେ ତ୍ୟାଗ ଦେଇଥିଲେ । ୧୯୩୪ରେ ଯେତେବେଳେ ମାର୍ଚ୍ଚ ମାସରେ ଗୋପବାବୁ ରମା ଦେବୀ ବରୀରେ ରହିଲେ, ସେତେବେଳେ ଶ୍ରୀ ମହତାବ ସସ୍ତ୍ରୀକ କେତେଥର ସେମାନଙ୍କ ପାଖକୁ ଆସିଥିଲେ, ବରୀରେ 'ସେବାଘର' ହେଲବେଳେ ସେ ଘରଉଦ୍ଦରେ ଶ୍ରୀମତୀ ସୁଭଦ୍ରା ମହତାବ 'ଶୁଭଖୁଣ୍ଟ' ପୋତିଥିଲେ ଓ ଘରତୋଳା ପରେ ସେ ଘରେ ଗୋପବାବୁ ରମା ଦେବୀଙ୍କର ପ୍ରଥମ କୁଣିଆଁ ହୋଇଥିଲେ ଶ୍ରୀ ହରେକୃଷ୍ଣ ମହତାବ । ବରୀ 'ସେବାଘର' ପଛେ ପଛେ ଶ୍ରୀ ମହତାବ ନିଜ ଗା ଅଗରପଡ଼ାରେ 'କର୍ମମନ୍ଦିର' ଗଢ଼ିଥିଲେ । ସେଠି ସେ ଓ ଶ୍ରୀମତୀ ସୁଭଦ୍ରା ମହତାବ ସୂତା କାଟୁଥିଲେ । ସୂତାକଟା ଓ ଲୁଗାବୁଣା ଶିକ୍ଷା ହେଉଥିଲ ଓ ସେ କାର୍ଯ୍ୟ ଚାଲିଥିଲ । ୧୯୫୦ରେ ଶ୍ରୀ ହରେକୃଷ୍ଣ ମହତାବ

ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ ଗୋଟିଏ ହାତ-ଘଣ୍ଟା ସ୍ନେହରେ ଉପହାର ଦେଇଥିଲେ । ଗୋପବାବୁ ୨୨ ବର୍ଷ ପର୍ଯ୍ୟନ୍ତ ତାକୁ ହାତରେ ବାନ୍ଧୁଥିଲେ, ତାପରେ ୧୯୫୨ ଜାନୁଆରି ୬'ରେ ଯେତେବେଳେ ଗୋପବାବୁ ତାଙ୍କ ଅତୀତ ସହିତ ସମ୍ପର୍କ କାଟି ଦେଇ ପଦଯାତ୍ରାରେ ବାହାରି ଚାଲିଗଲେ, ସେତେବେଳେ ତାଙ୍କ ସମ୍ମୁଖ ଶ୍ରୀ ବିଭୂତି ଭୂଷଣ ବନ୍ଦ୍ୟୋପାଧ୍ୟାୟଙ୍କ ହାତରେ ସେଇଟି ଫେରାଇ ପଠାଇଦେଲେ ।

କିନ୍ତୁ କାଳକ୍ରମେ ସେମାନଙ୍କ ଗତିପଥ ବଦଳି ଯାଇଥିଲା ଓ ସେମାନଙ୍କ ଭିତରେ ମତାନ୍ତର ହୋଇଥିଲା । ଗୋପବାବୁଙ୍କ ବିଚାରଧାରା ପ୍ରତି ୧୯୪୦ ବେଳକୁ ବି କେତେକ କଂଗ୍ରେସ ନେତା ବିରକ୍ତ ହୋଇଥାନ୍ତି, ସେକଥା ୧୯୪୦ ଅପ୍ରେଲ ୧୨ ତାରିଖରେ ବାଲେଶ୍ୱରର କୁମ୍ଭାରୁଆ ଗ୍ରାମରେ ସେ ଥିଲାବେଳେ 'ସତ୍ୟାଗ୍ରହୀ' ପତ୍ରିକାରେ 'ଖଦୀ କାମ' ବୋଲି ଗୋଟିଏ ଲେଖାରୁ ଜଣାପଡ଼େ । ସେ ଲେଖିଥିଲେ, ''କେତେ ଲୋକ କହୁଛନ୍ତି ସେ ତ' କଂଗ୍ରେସର ସଭାପତି କି ସମ୍ପାଦକ କିଛି ନୁହନ୍ତି, ସେ ଜଣେ ଖଦୀ କାମ କରିବା ଲୋକ, ସେ କାହିଁକି ରାଜନୈତିକ ବିଷୟରେ ପାଟି ଫିଟାଉଛନ୍ତି ବା ଅନ୍ୟମାନଙ୍କୁ କହୁଛନ୍ତି ?''

୧୯୫୦ରେ ନାସିକ୍‌ରେ ''ଅଖିଳ ଭାରତ କଂଗ୍ରେସ କମିଟି'' ଅଧିବେଶନରେ 'କଣ୍ଟ୍ରୋଲ' ବିଷୟରେ ଆଲୋଚନା ହେଲା । '୧୯୫୦ରେ ଡକ୍‌ଟର ମହତାବ କେନ୍ଦ୍ରରେ ଶିଳ୍ପ ଓ ଯୋଗାଣ ବିଭାଗର ମନ୍ତ୍ରୀ ହୋଇଥାନ୍ତି ଓ ଶ୍ରୀ ନବକୃଷ୍ଣ ଚୌଧୁରୀ ହୋଇଥାନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ । କଣ୍ଟ୍ରୋଲ ଚାଲୁ ରହୁ ବୋଲି ବିପୁଳ ଓ ଦୃଢ଼ ସମର୍ଥନ ମିଳିଲା । ଖୁସି ହୋଇ ଫେରି ଡକ୍‌ଟର ମହତାବ ସର୍ବସାଧାରଣଙ୍କୁ ଗୋଟିଏ ଆବେଦନ ଜଣାଇଲେ ଯେ ସେମାନେ କଣ୍ଟ୍ରୋଲକୁ ସମର୍ଥନ କରନ୍ତୁ । ତହିଁରେ ସେ କୁଆଡ଼େ କହିଥିଲେ ଯେ ଲୋକେ ଯଦି 'କଣ୍ଟ୍ରୋଲ' ସହିତ ସହଯୋଗ ନ କରିବେ ତେବେ ସରକାର ନାନା ସମସ୍ୟାର ସମାଧାନ କରିଦେବ ବୋଲି ସେମାନେ ଆଶା କରିବା ଅନୁଚିତ । ଏହି ମତ ଓ ଲେଖା ସକାଶେ ୧୪-୧୦-୧୯୫୦ର ହିନ୍ଦୀ 'ହରିଜନ' ପତ୍ରିକାରେ ତାଙ୍କୁ ତୀବ୍ର ସମାଲୋଚନା କରି ସର୍ବୋଦୟ ନେତା ଶ୍ରୀ ଜେ. ସି. କୁମାରପ୍ପା 'ସତ୍ୟର ଦ୍ରୋହ' ବୋଲି ଗୋଟିଏ ଲେଖା ବାହାର କଲେ । ସେ ଲେଖାର ଭାଷା ଓ ତହିଁରେ ଥିବା ଅଭିଯୋଗ ଖୁବ୍ କଟୁ ହୋଇଥିଲା । ସେତେବେଳେ ତ ଗୋପବାବୁ ସର୍ବୋଦୟର ଅନ୍ୟତମ ନେତା ଓ ସର୍ବୋଦୟ ସମାଜର ମୁଖପତ୍ର ଓଡ଼ିଆ 'ଗ୍ରାମସେବକ' ପତ୍ରିକା ମୁଖ୍ୟତଃ ତାଙ୍କରି ଉଦ୍ୟମ ଓ ପ୍ରେରଣାରେ ଚାଲିଥିଲା । 'ଗ୍ରାମସେବକ'ରେ କୁମାରପ୍ପାଙ୍କ ଲେଖାର ଓଡ଼ିଆ ଅନୁବାଦ ଛପା ହେଲା । ସର୍ବୋଦୟ ନେତା ଶ୍ରୀ ମଶ୍ରୁୱାଲା ବି କୁମାରପ୍ପାଙ୍କ ମତକୁ ସମର୍ଥନ କରି ଲେଖା ଛପାଇଲେ, ତା ଅନୁବାଦ ବି 'ଗ୍ରାମସେବକ'ରେ ବାହାରିଲା । ଏଥିରେ ଡକ୍‌ଟର

ମହତାବ ଖୁବ୍ କ୍ଷୁବ୍ଧ ହେବା ସ୍ୱାଭାବିକ ଥିଲା । ସେ ୨୨-୧୦-୫୦ରେ ତାର ପ୍ରତିବାଦଟିଏ ଲେଖିଲେ, ସେଇଟି 'ଗ୍ରାମସେବକ' ପତ୍ରିକାର ଡିସେମ୍ବର ସଂଖ୍ୟାରେ ବାହାରିଲା ।

୧୯୫୦ରେ ବ୍ରାହ୍ମଣୀ ନଦୀର ବଡ଼ ବଢ଼ିରେ ଫସଲତକ ଧୋଇରେ ଗଲା । ବଣ୍ଡି ଅଞ୍ଚଳ ତ ସହଜେ ଧୋୱା, ତା ଉପରେ ଏ ବଢ଼ିର ଧୋଇ, ତେଣୁ ୧୯୫୧ ଫେବୃଆରୀ ଆଡ଼କୁ ପଡ଼ିଲା ଘୋର ଖାଦ୍ୟାଭାବ, ଚାଉଳ କେଉଁଠି ହେଲେ କିଣିବାକୁ ବି ମିଳୁ ନ ଥାଏ । ଲୋକେ ଅବା ଯାଜପୁର ସବ୍‌ଡିଭିଜନର ସେ ଅଞ୍ଚଳକୁ ଲାଗିଥିବା କେନ୍ଦ୍ରାପଡ଼ା ସବ୍‌ଡିଭିଜନରୁ ଧାନ ଚାଉଳ କିଣି ଆଣନ୍ତେ, କିନ୍ତୁ 'କଣ୍ଟ୍ରୋଲ' ଆଇନ୍ ଅନୁସାରେ ଅନ୍ୟ ସବ୍‌ଡିଭିଜନରୁ ଖାଦ୍ୟଶସ୍ୟ ଆଣିବା ମନା । ଏଣେ ସରକାର ବି ଏ ବିଷୟରେ କିଛି କରୁଥିବାର ଦିଶୁ ନ ଥାଏ, ଅବସ୍ଥା ଖରାପ । ଲୋକଙ୍କ ଡହଳବିକଳ ଦେଖି ଗୋପବାବୁ ଉଦ୍‌ବ୍ୟସ୍ତ ହୋଇ ଖବର କାଗଜରେ ଲେଖା ଛପାଇଲେ । ତହିଁରେ ସେ ଲେଖିଲେ ଯେ ଯଦି ସରକାର ଆଶୁ ପ୍ରତିକାର ନ କରନ୍ତି ତେବେ ସେ ନିଜେ କଂଗ୍ରେସ ସରକାର ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନ କରିବେ । ଚହଳ ପଡ଼ିଗଲା । ପ୍ରତିକାର ହେଲା ।

କିନ୍ତୁ ଓଡ଼ିଶାର କଂଗ୍ରେସ କର୍ତ୍ତୃପକ୍ଷ ସେ ଲେଖା ପଢ଼ି କ୍ଷୁବ୍ଧ ହେଲେ, ସରକାରୀ କର୍ମଚାରୀମାନେ ତାଙ୍କ ଲେଖାର ପ୍ରତିବାଦ ଛାପିଲେ ଓ ଗୋପବାବୁଙ୍କ କାର୍ଯ୍ୟକୁ ନାପସନ୍ଦ ଓ ସମାଲୋଚନା କରି ଡକ୍ଟର ମହତାବ ଓ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀଙ୍କ ପାଖକୁ ଇଂରାଜୀରେ ଖଣ୍ଡିଏ ପତ୍ର ଲେଖିଲେ ।

## ୧୯୫୧, ସର୍ବୋଦୟ ସମ୍ମିଳନୀ ଓ ନୈରାଶ୍ୟ

୧୯୫୧ ଅପ୍ରେଲ ୭ ତାରିଖରେ ଆନ୍ଧ୍ର ପ୍ରଦେଶର ତେଲେଙ୍ଗାନା ଅଞ୍ଚଳରେ 'ଶିବରାମ ପଲ୍ଲୀ'ରେ ସର୍ବୋଦୟ ସମାଜର ତୃତୀୟ ବାର୍ଷିକ ସମ୍ମିଳନୀ ହେଲା । ୧୩ ତାରିଖଯାଏ ଚାଲିଲା । ସ୍ଥାନଟି ହାଇଦରାବାଦଠୁ ୫ ମାଇଲ । ଗୋପବାବୁ ସେ ସମ୍ମିଳନୀରେ ଯୋଗ ଦେଲେ । ଆଚାର୍ଯ୍ୟ ବିନୋବା ଭାବେ ବି ଯାଇଥିଲେ ଓ ଅନ୍ୟାନ୍ୟ ସର୍ବୋଦୟ କର୍ମୀ ସେଠି ଉପସ୍ଥିତ ଥିଲେ । ବହୁତ ଲୋକ ଆସିଥିଲେ । ଦେଶରେ ଯେ ନୈରାଶ୍ୟ ଘୋଟିଛି, ହିଂସା ବ୍ୟାପୁଛି, ବିଶୃଙ୍ଖଳା ବ୍ୟାପୁଛି ସେ ବିଷୟରେ ସେଠି ବହୁତ ଆଲୋଚନା ହେଲା । ସର୍ବୋଦୟ କର୍ମୀମାନେ ଭାବୁଥାନ୍ତି ଯେ ଏହାର ପ୍ରତିକାର ବୋଧହୁଏ ଗୋଟାଏ ବଡ଼ ସତ୍ୟାଗ୍ରହ ଆରମ୍ଭ କଲେ ହେବ । କିନ୍ତୁ କାହା ବିରୁଦ୍ଧରେ ? କିପରି ? କିଛି ନିଶ୍ଚିତ ହୋଇପାରୁ ନ ଥାଏ । ସେଠୁ ଫେରିଲାପରେ ୭-୫-୫୧ରେ 'ଗ୍ରାମସେବକ'ରେ ପ୍ରକାଶିତ ଗୋପବାବୁଙ୍କର ଗୋଟିଏ ଲେଖାରେ ଅଛି :—

"ଘୃଣାଆଚ୍ଛ ଅନ୍ଧାର ଓ ଦୁର୍ଗନ୍ଧର ବାତାବରଣ ଘୋଟିଛି । ଅରାଜକତାର ସୂଚନା ମିଳୁଛି । ବର୍ତ୍ତମାନ ସତ୍ୟାଗ୍ରହ ଦ୍ୱାରା ଅସତ୍ୟର ପ୍ରତିରୋଧ ସାଧାରଣଙ୍କ ମନରେ ନାହିଁ ବା ଆଖି ଆଗରେ ନାହିଁ । ତେଣୁ ଘୃଣାବାକୁ ପଡ଼ିବ ଭଣ କରାଯିବ ।"

ତେଲେଙ୍ଗାନା ଅଞ୍ଚଳରେ କମ୍ୟୁନିଷ୍ଟମାନଙ୍କ ପ୍ରଭାବ ପଡ଼ିଥାଏ । ବିନୋବାଜି ତା ପୂର୍ବରୁ ବି ବହୁତ ଲେଖି ଆସୁଥାନ୍ତି କି ଉପାୟ କଲେ ହିଂସା ବନ୍ଦ ହେବ । ସେ ତେଲେଙ୍ଗାନାରେ ବୁଲିଲେ । ସମ୍ମିଳନୀ ପରେ 'ପୋଚମ୍ ପଲ୍ଲୀ' ଗାଁରେ ୧୯୫୧ ଅପ୍ରେଲ ୮ ରେ ଆଗ ଶ୍ରୀ ରାମଚନ୍ଦ୍ର ରେଡ଼୍ଡିଙ୍କଠୁ ଶହେ ଏକର 'ଭୂଦାନ' ପାଇଲେ, ତାପରେ ଭୂଦାନ ପାଇଁ ବୁଲିଲେ ତାଙ୍କର ପଦଯାତ୍ରା ଓ ତାଙ୍କର ନାନା ଲେଖା । ଗୋପବାବୁ ତାଙ୍କ ଲେଖାସବୁ ପଢ଼ୁଥାନ୍ତି ଓ ଭାବୁଥାନ୍ତି, ବାଟ କଣ ଏଇଆ ?

## ୧୯୫୧ ମେ'ରେ ଗସ୍ତ

୧୯୫୧ ମେ'ରେ ଗୋପବାବୁ ମହାରାଷ୍ଟ୍ର ଗଲେ, ସେଠି ଗାଁ ଗହଳି ବୁଲି ଦେଖିଲେ, ସାଂଗ୍ଲି, ଜଲ୍ଗାଓଁ, ପୁନା ଗଲେ । 'ଚରଖା ସଂଘ'ର ଟ୍ରଷ୍ଟି ଥିଲେ ଶ୍ରୀ ଅନ୍ନା ସାହେବ ସହସ୍ରବୁଦ୍ଧେ । ପୁନାରେ ସେ ୫୦ ଏକର ବିଶିଷ୍ଟ ଗ୍ରାମବାସୀ କୃଷିକ୍ଷେତ୍ର ଚଳାଉଥିଲେ, ଗୋପବାବୁ ତାକୁ ଦେଖିଲେ । ମହାରାଷ୍ଟ୍ରରେ ହେଉଥିବା ନାନା ରଚନାମୂଳକ କାର୍ଯ୍ୟ ଦେଖି ସେ ଖୁସି ହୋଇ ଫେରି ଆସିଲେ ।

## 'ଭୋଟ୍'ରେ ଅଂଶ ନ ନେବା ନିଷ୍ପତ୍ତି

୧୯୫୧ ଜୁଲାଇ ମାସରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓାର୍ଦ୍ଧା ଗଲେ । ଆସନ୍ତା ଡିସେମ୍ବରରେ ଦେଶରେ ପୁଣି ସାଧାରଣ ନିର୍ବାଚନ ହେବ ବୋଲି ଘୋଷଣା ପ୍ରକାଶିତ ହୋଇଥାଏ, ସେଥିପାଇଁ ତତ୍ପରତା ଦେଖା ଯାଉଥାଏ । ସର୍ବୋଦୟ ସମାଜର ଲୋକେ ସେ ନିର୍ବାଚନରେ ଭାଗ ନେବେ କି ନାହିଁ ଓ କଣ କରିବେ ସେହି ବିଷୟରେ ନିଷ୍ପତ୍ତି ନେବାକୁ ଓ୍ୱାର୍ଦ୍ଧାରେ ୨୯-୭-୫୧ରେ ସର୍ବୋଦୟ ସମ୍ମିଳନୀ ଡକା ହୋଇଥାଏ, ଗୋପବାବୁ ସେ ସମ୍ମିଳନୀରେ ଯୋଗ ଦେଲେ । ଅନ୍ୟାନ୍ୟ ସର୍ବୋଦୟ ନେତା ବି ଉପସ୍ଥିତ ଥିଲେ ।

ଆଲୋଚନା ହେଲା । ସେଠି ମତ ପ୍ରକାଶ ପାଇଲା ଯେ :—

୧—ଭାରତରେ ଯେଉଁ ରାଜନୈତିକ ଦଳଗୁଡ଼ିକ ଅଛି ତହିଁରୁ କୌଣସି ଗୋଟିଏ ଦଳ ସୁଦ୍ଧା ସର୍ବୋଦୟ ସମାଜର ଲକ୍ଷ୍ୟକୁ ପୁରାପୁରି ଗ୍ରହଣ କରି ନାହାନ୍ତି କିମ୍ବା ସେପରି କାର୍ଯ୍ୟ କରୁ ନାହାନ୍ତି ।

୨—କୌଣସି କୌଣସି ଦଳରେ କେହି କେହି ଲୋକ ବ୍ୟକ୍ତିଗତ ଭାବରେ ଅବା ଗାନ୍ଧୀ-ବିଚାରରେ ବିଶ୍ୱାସ ରଖିଛନ୍ତି, ଯଥା :—କଂଗ୍ରେସ ଦଳରେ କେତେ ଲୋକ, କିନ୍ତୁ ସେପରି ମତ ସେମାନଙ୍କ ବ୍ୟକ୍ତିଗତ ମତ ହେଲେ ସୁଦ୍ଧା ସେମାନଙ୍କ ଦଳର ମତ ନୁହେ । କାହାର ବ୍ୟକ୍ତିଗତ ମତ ତାଙ୍କର ଦଳର ମତଠାରୁ ଭିନ୍ନ ହୋଇଥିଲେ ତାହା ଥାଇ ନଥିଲା ପରି, ତାହା ଦଳ ଭିତରେ ଥାଇ ନିଜ ଇଚ୍ଛାନୁସାରେ କାର୍ଯ୍ୟ କରି ପାରିବ ନାହିଁ, ଦଳ ଗୋଟିଏ ରାଜନୈତିକ ଯନ୍ତ୍ର ଓ ଦଳର ବ୍ୟକ୍ତି ସେ ଯନ୍ତ୍ରର ଅଂଶଟିଏ ମାତ୍ର । ଦଳର ମତ ଯେପରି ଘୂରିବ, ଦଳରେ ଥିବା ବ୍ୟକ୍ତି ସେପରି ଭାବେ କାର୍ଯ୍ୟ କରିବ ।

୩—ଅତଏବ ସର୍ବୋଦୟ ସମାଜ ଏହି ନିଷ୍ପତ୍ତି କଲେ ଯେ ଯେଉଁମାନେ ପୁରା ସମୟ ଦେଇ ସର୍ବୋଦୟ ଲକ୍ଷ୍ୟକୁ ଆଖି ଆଗରେ ରଖି କାର୍ଯ୍ୟ କରନ୍ତି, ସେମାନେ ବେତନ ପାଉଥାନ୍ତୁ କି ଅବୈତନିକ ଭାବେ ରହି କାର୍ଯ୍ୟ କରୁଥାନ୍ତୁ, ସେମାନେ କେହି ନିର୍ବାଚନରେ ଠିଆ ହେବେ ନାହିଁ, ପ୍ରଚାର କରିବେ ନାହିଁ, କିଛି ଅଂଶ ନେବେ ନାହିଁ, କିନ୍ତୁ ଅନ୍ୟ କର୍ମୀଙ୍କୁ ଏ ନିୟମ ଲାଗୁ ହେବ ନାହିଁ ।

ଏହି ମର୍ମରେ 'ଗ୍ରାମସେବକ'ରେ ବିନୋବାଙ୍କ ମତ ଛପା ହୋଇଥିଲା, ପୁଣି ତାର ଅଗଷ୍ଟ ସଂଖ୍ୟାରେ ସର୍ବୋଦୟ ସମାଜର ସଭାପତି ଶ୍ରୀ ମଶ୍ରୁୱାଲାଙ୍କର ଗୋଟିଏ ଲେଖା ଏହି ମର୍ମରେ ଛପା ହେଲା । ସେହି ୧୯୫୧ ଅଗଷ୍ଟ ସଂଖ୍ୟା 'ଗ୍ରାମସେବକ'ରେ ଗୋପବାବୁ ଲେଖିଲେ :—

"ବର୍ତ୍ତମାନ ଅତି ଜରୁରି ଲୋଡ଼ା ଜନତାଙ୍କ ମଧ୍ୟରେ ଶକ୍ତିର ସଞ୍ଚାର, ଯାହା ବଳରେ ଜନତା ବାଟ ହୁଡ଼ିଥିବା ସରକାରୀ କଳକୁ ଯେକୌଣସି ମୁହୂର୍ତ୍ତରେ ବାଟକୁ ଆଣି ପାରିବେ, ତାଙ୍କୁ (ଜନତାଙ୍କୁ) ଯେମିତି ପୁଣି ଆଉଥରେ ଭୋଟ ଲଢ଼େଇଯାକେ ୫।୭ ବର୍ଷ ଅନାଇ ବସିବାକୁ ନ ପଡ଼େ । ··· ··· ···ଯେଉଁମାନେ କାମରେ ଏଭଳି ଅସତ୍ୟର ପ୍ରତିରୋଧ କରିବାରେ ନେତୃତ୍ୱ ନେବେ ବା ସାହାଯ୍ୟ କରିବେ ବୋଲି ବିଶ୍ୱାସ ହେବ, ସେହିମାନଙ୍କୁ ଭୋଟ ଦେବା ଉଚିତ ହେବ ।"

କିନ୍ତୁ ସେ ନିଜେ ଭୋଟ ଦେବେ ନାହିଁ ବୋଲି ନିଷ୍ପତ୍ତି କଲେ ଓ ତାଙ୍କ ନିଷ୍ପତ୍ତି ଜନସାଧାରଣଙ୍କୁ ଜଣାଇଦେବେ ବୋଲି ପ୍ରଚାରପତ୍ର ଛପାଇ ବାଣ୍ଟିଲେ । ପ୍ରଚାରପତ୍ରରେ ତାଙ୍କ ଛଡ଼ା ତାଙ୍କର ଅନ୍ୟ କେତେଜଣ ସହକର୍ମୀଙ୍କର ମଧ୍ୟ ସ୍ୱାକ୍ଷର ଥିଲା ।

**୧୯୫୧, ଡିସେମ୍ବର ୨, ଗୋପବାବୁଙ୍କ ଡ଼ଃ ମହତାବଙ୍କ ସମାଲୋଚନା**

ସେତେବେଳେ ଡକ୍‌ଟର ମହତାବ, 'ପ୍ରଜାତନ୍ତ୍ର' ପତ୍ରିକାର ସମ୍ପାଦନା କରୁଥିଲେ । ୧୯୫୧ ଡିସେମ୍ବର ୨ ତାରିଖ ରବିବାର 'ପ୍ରଜାତନ୍ତ୍ର'ରେ ସେ ଗୋପବାବୁଙ୍କ ନିଷ୍ପତ୍ତି ଓ ପ୍ରଚାରପତ୍ରକୁ ତୀବ୍ର ସମାଲୋଚନା କରି ଛୋଟ ଅକ୍ଷରରେ ୫ ସ୍ତମ୍ଭ ବିଶିଷ୍ଟ ଏକପୃଷ୍ଠାବ୍ୟାପୀ ଦୀର୍ଘ ଲେଖାଟିଏ ଛପାଇଲେ, ତାର ଶିରୋନାମା ଦେଲେ, "ବିଚିତ୍ର ମନୋବୃତ୍ତି" ।

ଲେଖାଟିରେ ଡକ୍‌ଟର ମହତାବ ଗୋପବାବୁ ଓ ତାଙ୍କ ସହକର୍ମୀମାନେ ପ୍ରକାଶ କରିଥିବା ପ୍ରଚାରପତ୍ରରେ ସେମାନଙ୍କ ନିଷ୍ପତ୍ତି ପାଇଁ ପାଞ୍ଚଟି କାରଣ ଲେଖା ହୋଇଥିବା କଥା କହିଥିଲେ, ଯେ,—

୧—କଂଗ୍ରେସ ୫ ବର୍ଷ ଶାସନ କଲାଣି, କିନ୍ତୁ କିପରି ଲୋକଙ୍କ ହିତ ସାଧନ ହେବ ସେ କଥା ଆଦୌ ଭାବିଲା ନାହିଁ ।

୨—ସୋସିଏଲିଷ୍ଟ, କମ୍ୟୁନିଷ୍ଟ, 'କୃଷକ', 'ପ୍ରଜା', 'ସ୍ୱାଧୀନ', ରାଜା ଜମିଦାରଙ୍କ ଦଳ, ଏପରି ଯେତେ ପାର୍ଟି ଅଛନ୍ତି କେହି ଚାଷୀ ମୂଲିଆଙ୍କ ପ୍ରକୃତ ହିତକାରୀ ନୁହନ୍ତି ।

୩—ଭୋଟ-ବାଟରେ ପାଠୁଆ ଲୋକେ ଓ ପଇସାବାଲା ଲୋକେ କ୍ଷମତା ବଢ଼ାଇଥାନ୍ତି, ଅପାଠୁଆ ଓ ଗରିବ ଲୋକେ ନୁହନ୍ତି । ଯଦି ପାଠୁଆ ଓ ପଇସାବାଲାଙ୍କ କ୍ଷମତା ଊଣା କରିବାକୁ ଉପାୟ କରି ନ ହେବ ତେବେ ଭୋଟ-ବାଟରେ ଶାସନ ଗଢ଼ିଲେ ଜନସାଧାରଣଙ୍କର କିଛି ଉପକାର ହେବ ନାହିଁ, ପାଠୁଆ ଓ ଧନୀ ଲୋକେ ହିଁ ନିଜ କ୍ଷମତା ବଢ଼ାଇବେ ।

୪—(ପ୍ରଚାର ପତ୍ରରେ ଆହୁରି ଥିଲା ଯେ) ଯଦି ଗୋପବାବୁ ଓ ପ୍ରଚାରପତ୍ରରେ ସ୍ୱାକ୍ଷର କରିଥିବା ତାଙ୍କର ଅନ୍ୟାନ୍ୟ ସହକର୍ମୀ ନିଜେ ଗୋଟିଏ 'ପାର୍ଟି' ଗଢ଼ି ଭୋଟ ଲଢ଼ନ୍ତେ ଓ ଭୋଟରେ ଜିତନ୍ତେ ତେବେ ଚାଷୀ-ମୂଲିଆବହୁଳ ଜନସାଧାରଣଙ୍କ ହିତ ଦୃଷ୍ଟିରୁ ସେମାନେ ବି ଅକାମୀ ହୁଅନ୍ତେ, ତାଙ୍କ ଅବସ୍ଥା ବି ସେହିଆ ହୁଅନ୍ତା ।

୫—ଯଦି ଉଦ୍ଦେଶ୍ୟ ହୁଏ ଯେ ଦେଶରେ ଯେଉଁ ଶାସନ କଳ ରହିବ ଓ ଯେଉଁ ଆର୍ଥିକ ବ୍ୟବସ୍ଥା ରହିବ ତହିଁରେ ଗରିବଙ୍କର ଉପକାର ହେବ ଓ ସେପରି ଶାସନକଳ ଓ ଆର୍ଥିକ ବ୍ୟବସ୍ଥାକୁ ଗରିବ ଲୋକେ ହିଁ ଚଳାଇବେ ତେବେ ଦେଶରେ

ବର୍ତ୍ତମାନ ଯେଉଁ ଶାସନକଳ ଅଛି ଓ ଯେଉଁ ଆର୍ଥିକ ବ୍ୟବସ୍ଥା ଅଛି ତଦ୍ଦ୍ୱାରା ସେ ଉଦ୍ଦେଶ୍ୟ ସାଧିତ ହୋଇପାରିବା ସମ୍ଭବ ନୁହେଁ, ସେଥିପାଇଁ ନୂଆ ପ୍ରକାର ଶାସନ ବ୍ୟବସ୍ଥା ଓ ଆର୍ଥିକ ବ୍ୟବସ୍ଥା ଗଢ଼ି ଚଳାଇବାକୁ ପଡ଼ିବ, ଯେଉଁ ପ୍ରକାର ଅଛି ତାକୁ ଭାଙ୍ଗି ଦେବାକୁ ପଡ଼ିବ । (ପୁରୁଣାକୁ ଭାଙ୍ଗିବା ଓ ତା ବଦଳରେ ନୂଆକୁ ଆଣିବା କାମକୁ 'ବିପ୍ଳବ' କୁହାଗଲେ —ଯେପରି ଗାନ୍ଧୀଜୀ ତାଙ୍କ ଆନ୍ଦୋଳନକୁ କହୁଥିଲେ 'ଅହିଂସ ବିପ୍ଳବ' ) ଗୋପବାବୁ ଓ ପ୍ରଶ୍ନର ପକ୍ଷରେ ସ୍ୱାକ୍ଷରକାରୀ ତାଙ୍କ ଅନ୍ୟାନ୍ୟ ସହକର୍ମୀ ତହିଁରେ ଘୋଷଣା କରିଛନ୍ତି ଯେ ସେମାନେ ସେହି ବିପ୍ଳବ ଆଣିବା କାମରେ ଲଗିଛନ୍ତି ଓ ତେଣୁ ସେମାନେ କାହାରିକୁ ଭୋଟ ଦେବେ ନାହିଁ ।

ଡକ୍ଟର ମହତାବ ତାଙ୍କ ସମ୍ପାଦକୀୟରେ ଲେଖିଥିଲେ :—

"...ଛପାଇ ବଣ୍ଟାଇବାର ଉଦ୍ଦେଶ୍ୟ ହେଉଛି, ଅନ୍ୟମାନେ ମଧ୍ୟ ସେହିପରି କାହାକୁ ଭୋଟ ନ ଦିଅନ୍ତୁ । ...ଯେପରି ଭାବରେ ଓ ଭାଷାରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ନିଜର ମତ ଛପାଇ ବାଣ୍ଟିଛନ୍ତି ସେଥିରେ ତାଙ୍କର ଯୁକ୍ତିର ଆଲୋଚନା ପାଇଁ ପ୍ରଭୂତ ଧୈର୍ଯ୍ୟ ଓ ସଂଯମ ଆବଶ୍ୟକ ।...

ବିଚାରିବାର ବିଷୟ ଏହି—ଗୋପବନ୍ଧୁ ଚୌଧୁରୀ କି ଭାବରେ ବିପ୍ଳବ ଆଣିବାକୁ ବସିଛନ୍ତି ତା ଜଣା ନାହିଁ । କୌଣସି ଧରଣର ଏକ ଅହିଂସାତ୍ମକ ବିପ୍ଳବ ସେ କଳ୍ପନା କରୁଥିବେ । ସରକାର ପୋଲିସ ଜରିଆରେ ଲୋକଙ୍କୁ ଖେଦଡ଼ ପିଟାଉ, ମଦପିଆ ବନ୍ଦ କରାଉ ବା ଅନ୍ୟ କୌଣସି ସେହିପରି କାର୍ଯ୍ୟ କରୁ ଏହା ଅହିଂସାତ୍ମକ ବିପ୍ଳବ ବୋଲି ଗୋପବନ୍ଧୁ ଚୌଧୁରୀଙ୍କ ଭଳି ବ୍ୟକ୍ତିମାନେ ମନେ କରନ୍ତି । ଧରି ନିଆଯାଉ ସେହିପରି ଏକ ବିପ୍ଳବ କରି ବର୍ତ୍ତମାନ ଶାସନ ବିଧାନ ଭାଙ୍ଗି ଯାଉଛିଗଲା । ନୂଆ ଶାସନର ଢଙ୍ଗ କିପରି ହେବ ? ସେ ଶାସନ ଲୋକମତରେ ବା ସେହି କଥାକୁ ଅନ୍ୟ ଭାଷାରେ କହିଲେ, ଶାସନ ଜରିଆରେ ଚାଲିବ ନା ଜଣେକେତେ ଗାଦିରେ ବସି ହୁକୁମ ଦେଇ ଶାସନ ଚଳାଇବେ ?...ପୁଲିସ ଓ ଫୌଜ ସଂଖ୍ୟା ବଢ଼ାଇ ଏସବୁ ହୁକୁମ କାର୍ଯ୍ୟକାରୀ କରିବାକୁ ହେବ କାରଣ ଲୋକମତ ସଂଗ୍ରହ ବ୍ୟବସ୍ଥା ଏପ୍ରକାର ଶାସନରେ ନାହିଁ । ପୁଣି ଗରିବଙ୍କ ଉପକାର ବୋଲି ଯାହା ଗୋପବନ୍ଧୁ ଚୌଧୁରୀ ମନେ କରିବେ ତାହାହିଁ ସମସ୍ତଙ୍କୁ ମାନି ନେବାକୁ ହେବ ଓ ତା ବିରୁଦ୍ଧରେ କେହି କିଛି କହି ପାରିବେ ନାହିଁ ବା ସେ ବିଷୟ ଆଲୋଚନା ହୋଇ ପାରିବ ନାହିଁ । କାରଣ ତାହେଲେ ପୁଣି ଲୋକମତ ବା ଭୋଟ କଥା ଆସିଯିବ । ରୁଷିଆରେ କମ୍ୟୁନିଷ୍ଟମାନେ ଏହିପରି ଶାସନ କାରି କରିଛନ୍ତି କିନ୍ତୁ ଗାନ୍ଧୀଜୀ ଏ ପ୍ରକାର ଶାସନ ବିରୋଧରେ ଥିଲେ । ଭୋଟ ଦିଆ ଶାସନ ସବୁଠାରୁ ଭଲ ବୋଲି ଗାନ୍ଧୀଜୀ କହୁଥିଲେ । ଗୋପବନ୍ଧୁ ଚୌଧୁରୀଙ୍କ ମତ ଗାନ୍ଧୀଜୀଙ୍କ ମତଠାରୁ ପୃଥକ୍ ।

……ଭୋଟ ପ୍ରତି ଅନାସ୍ଥା କାହିଁକି ? ନିଜେ ଜଣେ ଯାହା ଭଲ ବୁଝୁଛି ସେଥିପାଇଁ ଅନ୍ୟମାନଙ୍କୁ ରାଜି କରାଇବା ପାଇଁ ଅହରହ ଉଦ୍ୟମର ଅନ୍ୟ ନାମ ଅହିଂସାତ୍ମକ କାର୍ଯ୍ୟକ୍ରମ, ଏଥିପାଇଁ ଅନ୍ୟ ଲୋକର ମତ ପ୍ରତି ପ୍ରକୃତ ସମ୍ମାନ ଓ ଅନ୍ୟ ଲୋକର ଦୃଷ୍ଟିକୋଣକୁ ସବୁବେଳେ ଆଖି ଆଗରେ ରଖିବା ଆବଶ୍ୟକ । …ଯେଉଁ ମୁହୂର୍ତ୍ତରେ 'ଏ ଭାବ ଆସିବ ଯେ ମୁଁ ଏକା ଗରିବଙ୍କ କଥା ବୁଝୁଛି, ମୋର ବିଚାର ଶୁଦ୍ଧ, ଅନ୍ୟ ସମସ୍ତଙ୍କ ବିଚାର ଅଶୁଦ୍ଧ, ଅନ୍ୟ କେହି ଗରିବଙ୍କ କଥା ଭାବୁ ନାହିଁ, ଇତ୍ୟାଦି'' ସେହି ମୁହୂର୍ତ୍ତରେ ସବୁ ବିଭ୍ରାଟ ହୋଇଯିବ ।

ଡକ୍ଟର ମହତାବ ଲେଖିଥିଲେ ଯେ କଂଗ୍ରେସ ଶାସନର ପ୍ରଥମ ୪ ବର୍ଷରେ ଦେଶରେ କେତେ ଶୁଭ ପରିବର୍ତ୍ତନ ତ ନିଶ୍ଚୟ ହୋଇଛି, ଆଗର ଖରାପ ଅବସ୍ଥା କେତେ ପରିମାଣରେ ତ ନିଶ୍ଚୟ ବଦଳିଛି, କିନ୍ତୁ ପୂର୍ବର ସବୁ ଦୁରବସ୍ଥା, ସବୁ ଅଡୁଆ ସଜାଡ଼ିବାଭଳି କଂଗ୍ରେସ ଶାସନ ଯଥେଷ୍ଟ ସମୟ ପାଇ ନାହିଁ, ଦେଶ ସ୍ୱାଧୀନ ହେବା ପୂର୍ବରୁ ତ ବହୁତ ବିରାଟ ସମସ୍ୟା ଥିଲା, ତାପରେ ନାନା ଉତ୍କଟ ସମସ୍ୟା ଉପୁଜିଛି, ତା ମୁହାଁମୁହିଁ ହେବା ପାଇଁ ଯେତେ ଉଦ୍ୟମ ହେଲେବି ହଠାତ୍ ଯଥେଷ୍ଟ ସମ୍ବଳ ଓ ଶକ୍ତି ଆହରଣ କରିବା ସମ୍ଭବ ନୁହେଁ, କିନ୍ତୁ କଂଗ୍ରେସ ଶାସନ କରୁଥିଲେ ନିଶ୍ଚୟ ଆଉ କେତେବର୍ଷରେ ତା ସମ୍ଭବ ହୋଇ ପାରିବ ।

ଡକ୍ଟର ମହତାବ ଆଶା ପ୍ରକାଶ କରିଥିଲେ ଯେ ଦେଶବାସୀ ଏସବୁ କଥା ବୁଝିବେ । କେହି କଂଗ୍ରେସ ବିରୁଦ୍ଧରେ ପ୍ରଚାର କଲେ ସେଥିରେ ଭୁଲିଯିବେ ନାହିଁ ଓ ସେମାନେ ଭୋଟରେ କଂଗ୍ରେସକୁ ଦୃଢ଼ ସମର୍ଥନ ଜଣାଇ ତାକୁ ଜୟଯୁକ୍ତ କରାଇବେ ।

ସେ ଏ ପ୍ରସଙ୍ଗକ୍ରମେ ସ୍ୱାଧୀନ ପ୍ରାର୍ଥୀଙ୍କୁ ଭୋଟ ଦେବା କଥା ବି ଉଠାଇଥିଲେ । ସେ ଲେଖିଥିଲେ ଯେ ଅଳ୍ପ କେତେଜଣ ସ୍ୱାଧୀନ ପ୍ରାର୍ଥୀ ଉତ୍କୃଷ୍ଟ ଲୋକସେବକ ହୋଇପାରନ୍ତି, କିନ୍ତୁ ସେମାନେ ସଂଖ୍ୟାରେ ଅତି ଅଳ୍ପ, ସେମାନଙ୍କର ରାଜନୈତିକ ଦଳ ନାହିଁ, ତେଣୁ ଯଦିବା ସେପରି ଲୋକଙ୍କୁ ଅଧିକ ଭୋଟ ଦେଇ ଜିତା ଯାଏ, ତହିଁରେ କଂଗ୍ରେସ ଦଳର ଭୋଟ ଊଣା ପଡ଼ିବ ସିନା, ସେ ସ୍ୱାଧୀନ ପ୍ରାର୍ଥୀମାନେ ଅନ୍ୟାନ୍ୟ ରାଜନୈତିକ ଦଳଙ୍କୁ ନିଜ ମତରେ ପ୍ରଭାବିତ କରିବା ସମ୍ଭବ ନୁହେଁ ଓ ନିଜ ଇଚ୍ଛା ନିଜ ସ୍ୱପ୍ନ ଅନୁସାରେ ଗଣତନ୍ତ୍ର ଶାସନରେ କିଛି କରିପାରିବା ସମ୍ଭବ ନୁହେଁ, ହୁଏତ ସେମାନେ କେଉଁ ବଡ଼ ରାଜନୈତିକ ଦଳ ଆଡ଼କୁ ଆଉଜି ସେହି ଦଳର ମତର ସମର୍ଥକ ହେବେ, ନ ହେଲେ ସେମାନେ ବ୍ୟବସ୍ଥାପକ ସଭାରେ ଆଡ଼େଇ ହୋଇ ବସିବେ, ତାଙ୍କର ଏକୁଟିଆ ସ୍ୱର କାଟୁ କରିବ ନାହିଁ ।

ଲୋକେ କଂଗ୍ରେସକୁ ଭୋଟ ଦିଅନ୍ତୁ ବୋଲି ଡକ୍ଟର ମହତାବ ଟାଣୁଆ ଆବେଦନ ଜଣାଇଥିଲେ । ଡକ୍ଟର ମହତାବ ମୋଟାମୋଟିରେ କଂଗ୍ରେସ ଶାସକ ଗୋଷ୍ଠୀର ମତ ହିଁ ପ୍ରକାଶ କରିଥିଲେ ବୋଲି କୁହାଯାଇପାରେ ।

ଏଥିରୁ ଜଣାପଡ଼ିବ, ୧୯୫୧ ଡିସେମ୍ବର ଆରମ୍ଭ ବେଳକୁ ଦେଖିଲାବେଳକୁ ଏକଦା ପୂର୍ବେ ଦୁଇବନ୍ଧୁ, ମହତାବ ବାବୁ ଓ ଗୋପବାବୁ ଦହେଁ ହୋଇଆଡେ଼, ପରସ୍ପରଠୁ ବହୁତ ଦୂରେଇଗଲେଣି ଓ ସେହିପରି ଶାସକ-କଂଗ୍ରେସ ଗୋଷ୍ଠୀ ଓ ଗୋପବାବୁ । ଡକ୍ଟର ମହତାବଙ୍କର ସେ ଲେଖା "ବିଚିତ୍ର ମନୋବୃତ୍ତି"ର ଶିରୋନାମା ଓ ତାର ଭାଷା ବିଷୟରେ ଟିପ୍ପଣୀ ଅନାବଶ୍ୟକ । ସେମାନଙ୍କ ପୂର୍ବର ସ୍ନେହସମ୍ପର୍କ ମନେପଡ଼େ । ସ୍ୱାଧୀନତା ପୂର୍ବରୁ କଂଗ୍ରେସରେ ଦୁହିଁଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ବି ମନେପଡ଼େ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଥିଲେ ଓଡ଼ିଶାରେ କଂଗ୍ରେସର ପ୍ରତିଷ୍ଠାତା ଓ ତାର ପ୍ରଥମ ସଭାପତି । ତାଙ୍କ ତିରୋଧାନ ପରେ '୧୯୨୯ରେ ସଭାପତି ହେଲେ ଗୋପବାବୁ, ତାହାପରେ ୧୯୩୦ରେ ମହତାବ ବାବୁ । ତାଙ୍କ ପରେ ଆଚାର୍ଯ୍ୟ ହରିହର ଓ ତାଙ୍କ ପରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଉତ୍ତାରୁ ୧୯୩୭ରେ ପୁଣି ଡକ୍ଟର ମହତାବ ସଭାପତି ହେଲେ ଓ ୧୯୪୪ ରେ ପୁଣି ଶ୍ରୀ ଗୋପବନ୍ଧୁ ଚୌଧୁରୀ ସଭାପତି ହେଲେ । ସ୍ୱାଧୀନତା ପରେ ଡକ୍ଟର ମହତାବ ଶାସନ କ୍ଷେତ୍ରରେ କାର୍ଯ୍ୟ କରିବାକୁ ବାଛି ନେଇଥିଲେ, କିନ୍ତୁ ଶ୍ରୀ ଗୋପବନ୍ଧୁ ଚୌଧୁରୀ ତାହା କେବେ ଚାହିଁ ନାହାନ୍ତି । ଗାନ୍ଧୀଜୀଙ୍କ ଓ ସର୍ବୋଦୟ ମାର୍ଗରେ ହିଁ ଚାଲିଥାନ୍ତି । ୧୯୫୧ ଆରମ୍ଭରୁ ଧରିଲେ ତା ଉପରେ ବଳକା 'ଭୂଦାନ' ମାର୍ଗ । ଡକ୍ଟର ମହତାବ 'ଭୂଦାନ' ପନ୍ଥାକୁ ତାହା 'ଦାରିଦ୍ର୍ୟ ବଣ୍ଟନ' ବୋଲି ଉପହାସ କରିଥିଲେ ଓ ତାକୁ ନାପସନ୍ଦ କଲେ । ସ୍ୱାଧୀନତା ପରେ ୧୯୫୦ ଯାଏ ଡକ୍ଟର ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ସେବର୍ଷ ସେ କେନ୍ଦ୍ରମନ୍ତ୍ରୀ ହେଲେ । ତାପରେ କଂଗ୍ରେସ ପାର୍ଲ୍ୟାମେଣ୍ଟାରୀ ବୋର୍ଡର ସାଧାରଣ ସମ୍ପାଦକ ହେଲେ । ତାହାପରେ ବମ୍ବେ ପ୍ରଦେଶର ଲାଟ ହେଲେ । ସେତେବେଳେ ସେ ଓଡ଼ିଶାର ହାଲଚାଲ ବିଷୟରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ଗୋଟିଏ ପତ୍ର ଲେଖିଥିଲେ, ତହିଁରେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସମ୍ପର୍କରେ ଲେଖିଥିଲେ ଓ ତହିଁରେ ତାଙ୍କ ବଡ଼ଭାଇ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ବିଷୟରେ ବି ଲେଖିଥିଲେ ଓ ଅଭିଯୋଗ କରିଥିଲେ ଯେ ନିର୍ବାଚନ ବେଳେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଲୋକେ ଭୋଟ ନ ଦିଅନ୍ତୁ ବୋଲି ପ୍ରଚାର କରିଥିଲେ । ଚିଠିଟି ତହିଁର କେତେବର୍ଷ ପରେ 'ସମାଜ' ପତ୍ରିକାରେ ପ୍ରକାଶିତ ହୋଇଥିଲା ।

## ୧୯୫୧, ଡିସେମ୍ବର, କୋରାପୁଟ ଜିଲ୍ଲାରେ ଅନାହାର ମୃତ୍ୟୁ ସମ୍ବାଦ

୧୯୫୧ ଡିସେମ୍ବର ଆରମ୍ଭରେ ଶ୍ରୀ ମହତାବଙ୍କ ଲେଖା "ବିଚିତ୍ର ମନୋବୃତ୍ତି" ପ୍ରକାଶ ପାଇଲା । କଂଗ୍ରେସ ସରକାରଙ୍କ କାର୍ଯ୍ୟ ବିଷୟରେ ଗୋପବାବୁଙ୍କ

ମନରେ ଆଗରୁ ତ ଅସନ୍ତୋଷ ଜୁହୁଥାଏ ଓ ସେହି ମାସରେ କୋରାପୁଟ ଜିଲ୍ଲାରୁ ସେ ବେ-ସରକାରୀ ସୂତ୍ରରୁ ସମ୍ବାଦ ପାଇଲେ ଯେ ସେଠି ରାୟଗଡ଼ା-ଗୁଣୁପୁର ଅଞ୍ଚଳରେ ମରୁଡ଼ି ହୋଇ ଦୁର୍ଭିକ୍ଷ ପଡ଼ିଛି, ପ୍ରାୟ ଶହେଜଣ ଲୋକ ଅନାହାରରେ ମଲେଣି । ଖବରଟା ସରକାରୀ ଖବର ନୁହେଁ ।

## ଗୋପବାବୁଙ୍କ ପ୍ରତିକ୍ରିୟା

କିନ୍ତୁ ସେ ମର୍ମାହତ ହେଲେ । ସେ ଏପରି ଅଭିଭୂତ ହୋଇପଡ଼ିଲେ ଯେ ଅବସ୍ଥା ଦେଖିବାକୁ ନିଜେ ଗଲେ ନାହିଁ । ସେ ଭାବିଲେ, ସେ ନିଜେ ଗଲେ ନିଜକୁ ସମ୍ଭାଳି ପାରିବେ ନାହିଁ । ଆଚାର୍ଯ୍ୟ ମହାଶୟ, ଶ୍ରୀମତୀ ରମା ଦେବୀ, ଶ୍ରୀମତୀ ମାଳତୀ ଦେବୀ, ବ୍ୟାସ୍‌ଜୀ (ଗୋପବାବୁଙ୍କ ସହକର୍ମୀ ଶ୍ରୀ ଈଶ୍ୱରଲାଲ ବ୍ୟାସ୍) ଓ ଅନ୍ୟ କେତେଜଣ ଯାଇ ଅବସ୍ଥା ବୁଝିବାକୁ ଗଲେ । ପରେ ୭-୧-୫୨ରେ ବସ୍ତାରୁ ପଦଯାତ୍ରାରେ ବାହାରିଗଲା ଦିନ ସେ ତାଙ୍କ ଭାଷଣରେ ଲୋକଙ୍କୁ ସଭାରେ କହିଥିଲେ, "ମୁଁ ଗଲି ନାହିଁ । ମୋର ରକ୍ତ ଗରମ । ମୁଁ ଲୋକ ମରିବା ସହିପାରେ ନ ଥାନ୍ତି । ଏଇଠି ସେହି ଲୋକ ମରିବା ଦେଖି ମୁଁ ଗୁଳିକରି ଗୁଡ଼ିଥିଲି ।"

ଗଣତନ୍ତ୍ର ନାଁରେ ଯେଉଁ ଶାସନ, ତା ଉପରୁ, ଭୋଟ ଉପରୁ ତାଙ୍କର ବିଶ୍ୱାସ ତୁଟିଥାଏ । ସେ ଭାବୁଥାନ୍ତି,

"କି ଆଶ୍ଚର୍ଯ୍ୟ ! ଭାରତ ସ୍ୱାଧୀନତା ପାଇଲାଣି, ପାଞ୍ଚବର୍ଷ ହେଲା ଏ ଦେଶରେ କଂଗ୍ରେସ ଶାସନ, କୋରାପୁଟରେ ଏତେ ଜମି ଅଛି, ତଥାପି ଲୋକେ ସେଠି ଖାଇବାକୁ ନ ପାଇ ମରୁଛନ୍ତି !"

## ୧୯୫୧ ଶେଷ—ଗୋପବାବୁଙ୍କ ଜୀବନରେ ନୂଆ ମୋଡ଼

କୋରାପୁଟ ସମ୍ବାଦର ବ୍ୟାପକ ତାତ୍ପର୍ଯ୍ୟ ତାଙ୍କୁ ମର୍ମାହତ, ବିଚଳିତ କଲା, ମହାଚିନ୍ତାରେ ପକାଇଦେଲା । ସେ ଭାବିଲେ, ଆସିଥାଉ ସ୍ୱାଧୀନତା, ଚାଲିଥାଉ କଂଗ୍ରେସ ଶାସନ, ଚାଲିଥାଉ ଯେତେବର୍ଷ ଧରି ଯେତେ କେନ୍ଦ୍ରରେ ନାନା ରଚନାତ୍ମକ କାମ, ସୂତାକଟା, ଲୁଗାବୁଣା, ଗାନ୍ଧୀବାଦର ବାଖ୍ୟା ଓ ପ୍ରଚାର, 'ଅହିଂସା' 'ଅହିଂସା' ଜପିବା, କିନ୍ତୁ ଗରିବ ଯେଉଁଠି ସେଇଠି, ଏ ଦେଶରେ ଖାଇବାକୁ ନ ପାଇ ଲୋକେ ଏବେ ବି ମରୁଛନ୍ତି, ଇଂରେଜ ଅମଳରେ ବି ମରୁଥିଲେ । ଧାନ, ମାଣ୍ଡିଆ ଯୋଗେଇଦେଲେ ବି କିଣିବାକୁ ପଇସା ନାହିଁ, ଗରିବ ଏବେ ବି ସମ୍ପୂର୍ଣ୍ଣ ନିଃସହାୟ, ବଢ଼ି ବଢ଼ି ଚାଲିଛି ସ୍ୱାର୍ଥପରତା, ପର ଦୁଃଖ ପ୍ରତି ଉଦାସୀନତା, ହିଂସା, ଦ୍ୱେଷ, ଦୁର୍ନୀତି ।

ଏ ଚଳିବ ନାହିଁ । ସମାଜରେ ନୂତନ ଚେତନା ଆଣିବାକୁ ପଡ଼ିବ, ଏ ବୈମାନସ୍ୟ, ନୈତିକ ମୂଲ୍ୟର ଧ୍ୱଂସକୁ ରୋକିବାକୁ ପଡ଼ିବ ।

"ଖାଲି 'ଅହିଂସା' 'ଅହିଂସା' ବସି ଜପୁଥିଲେ ହେବ ନାହିଁ, ବର୍ତ୍ତମାନ ଅବସ୍ଥା ଅସମ୍ଭାଳ । ନୂଆ ବାଟ ଖୋଜିବାକୁ ପଡ଼ିବ ।" କଣ ସେ ବାଟ ? ସେ ଭାବୁଥାନ୍ତି, ପଚାରୁଥାନ୍ତି ।

ସେତିକିଟା ତାଙ୍କ ଜୀବନର ଗୋଟାଏ ସନ୍ଧିସ୍ଥଳ, ଯେତେବେଳେ ତାଙ୍କ ଜୀବନ ନେଲା ଗୋଟାଏ ନୂଆ ମୋଡ଼, ପୁରୁଣା ଜୀବନଠୁ ଭିନେ । ୭-୧-୫୬ରେ ବରି ରାମଚନ୍ଦ୍ରପୁରରେ ସେ ଗୋଟିଏ ବଡ଼ ସଭାରେ ଭାଷଣ ଦେଇଥିଲେ । ଠିକ୍ ତହିଁ ଆରଦିନ ସେ ବାହାରି ଚାଲିଗଲେ । ସେହି ସଭାରେ ସେ ଉତ୍କଳର ମହତାବଙ୍କ ୬-୧୬-୫୧ର "ବିଚକ୍ଷଣ ମନୋବୃତ୍ତି" ଶୀର୍ଷକ ଲେଖାର ଉଲ୍ଲେଖ କରିଥିଲେ, କହିଥିଲେ, "ତାର କିଛି ଜବାବ୍ ମୁଁ ଦେଇ ନାହିଁ । ଆଚାର୍ଯ୍ୟ ମହାଶୟ ତାର ଏକ ଭଲ ଜବାବ ଦେଇଥିଲେ, କହିଥିଲେ,

'ଯଦି ଯଦି ପଞ୍ଚାଏ ଲୋକଙ୍କର ବିଚକ୍ଷଣ ମନୋବୃତ୍ତି ହୋଇ ନ ଥାନ୍ତା ତେବେ ଏ ସ୍ୱରାଜ କେଉଁଠୁ ଆସିଥାନ୍ତା ? ଷ୍ଟେଟ୍ କେଉଁଠି ଥାନ୍ତା ?'

ସେ କୋରାପୁଟର ଦୁର୍ଭିକ୍ଷ, ଅନାହାର-ମୃତ୍ୟୁ କଥା ବି କହିଥିଲେ । ସେହି ଘଟନା ହିଁ ତାଙ୍କ ପୁରୁଣା ଜୀବନ ଛାଡ଼ି ନୂଆ ବାଟରେ ଯିବାକୁ ଠେଲିବା ସକାଶେ ଅବ୍ୟବହିତ କାରଣ ।

ସେ ନୂଆ ବାଟ ଖୋଜିବାକୁ ବାହାରି ପଡ଼ିବା ଆଗରୁ ପୁରୁଣାର ଆସକ୍ତି ବନ୍ଧନରୁ ଆଗ ନିଜକୁ ମୁକ୍ତ କଲେ । ଭାବିଲେ, ନିଜେ ବରିରେ ରହିଣି ବି ତାଙ୍କ ପାଇଁ ଗୋଟିଏ ଆସକ୍ତି । ସେଇଠି ଦୁର୍ଦ୍ଦଶା ଓ ଅନାହାର ଦେଖି ସେ ବ୍ୟାକୁଳ ହୋଇଥିଲେ । ୧୯୩୪ରୁ ବରି ଓ ସେ ଅଞ୍ଚଳ ହୋଇ ଆସିଥିଲା ତାଙ୍କର କର୍ମ ପରିସରର ଭିତ୍ତିଭୂମି । ସେଇଠି ସେ କରିଛନ୍ତି ନାନା ପରୀକ୍ଷା, ନାନା ଉପଯୋଗ, ତାଙ୍କର କର୍ମମୟ ସାଧନା । ହେବାରୁ ସେହି ତାଙ୍କର ପ୍ରଧାନ ସାଧନା-ପୀଠ ହୋଇ ଆସିଥିଲା । ୭-୧-୫୬ରୁ ଯେ ସେଠୁ ସେ ଚାଲି ଚାଲି ବାହାରି ପଡ଼ିଲେ ଯେ ୧୯-୪-୫୮ ରାତିରେ ଶେଷ ନିଶ୍ୱାସ ଛାଡ଼ିବାଯାଏ ଯେଉଁ ପ୍ରାୟ ଛଅବର୍ଷ ସମୟ ତାହା ଭିତରେ କେବେ କଦବା ହୋଇ ଅତି ଅଳ୍ପ ସମୟ ସେଠି ସେ କଟାଇଛନ୍ତି, ନ ହେଲେ ପ୍ରାୟ ସବୁଦିନେ ବାଟ ଚାଲି, 'ପଦଯାତ୍ରା', ସମୁଦ୍ରପତ୍ତ୍ୟାରୁ ଯେ ପର୍ବତମାନଙ୍କ ଅନ୍ଧିସନ୍ଧି ଯାକେ, ଓଡ଼ିଶା ସାରା, ସବୁବେଳେ ସଚେତକ "ଚରୈବେତି" "ଚରୈବେତି" । ପୁରୁଣା ପରିବେଶ ଛାଡ଼ିଲେ, ପୁରୁଣା କର୍ମପନ୍ଥା ଛାଡ଼ିଲେ, ସେମିତି ଛାଡ଼ିଦେଲେ ପୁରୁଣା ବନ୍ଧୁ,

ଶ୍ରୀ ହରେକୃଷ୍ଣ ମହତାବଙ୍କ ସ୍ନେହୋପହାର, ସେହି ଘଣ୍ଟାଟି, ଯାହାକୁ ବାଇଶି ବର୍ଷ ହାତରେ ବାନ୍ଧିଥିଲେ, ସେହି ୧୯୫’ ଜାନୁଆରି ୭ ତାରିଖରେ ଶ୍ରୀ ବିଭୂତି ବନ୍ଦ୍ୟୋପାଧ୍ୟାୟଙ୍କ ହାତରେ ଫେରାଇ ପଠାଇଲେ । ସେଦିନର ଅଳ୍ପଦିନ ପୂର୍ବରୁ ସେ ତାଙ୍କ ଶ୍ୟାଳକଙ୍କଠାରୁ ଉପହାର ପାଇଥିଲେ ଗୋଟିଏ ଦାମୀ ପାର୍କର ଫାଉଣ୍ଟେନ୍ ପେନ୍, ସେଦିନ ସେଇଟି ବି ସେ ବିଭୂତି ବାବୁଙ୍କ ହାତରେ ଫେରାଇ ଦେଲେ । ଦାମୀ ଜିନିଷ ସେ ବ୍ୟବହାର କରନ୍ତି ନାହିଁ । ଯେଉଁ କଲମର ଦାମ୍‌ରେ ଗୋଟିଏ ଦରିଦ୍ର ପରିବାର ମାସେ ଚଳିଯାଇ ପାରିବେ ତା ସେ ବ୍ୟବହାର କରିବେ ନାହିଁ, ତାଛଡ଼ା, ବିଲାତି ଜିନିଷ ସେ ବ୍ୟବହାର କରନ୍ତି ନାହିଁ ।

## ପଇଁତରିଶି

୧୯୫’ ଜାନୁଆରିରେ ପୂଜ୍ୟ ଶ୍ରୀ ଗୋପବନ୍ଧୁ ଚୌଧୁରୀ ବାରିରୁ ପଦଯାତ୍ରାରେ ବାହାରିବା ପୂର୍ବରୁ ସେଠି ନାନା ରଚନାତ୍ମକ କାର୍ଯ୍ୟ ଚାଲିଥିଲା । ସବୁ ସେ ଆରମ୍ଭ କରିଥିଲେ, କରାଉଥିଲେ, ସବୁ କାର୍ଯ୍ୟ ପଛରେ ଥିଲା ତାଙ୍କ ପ୍ରେରଣା, ଉତ୍ସାହ, ଉପଦେଶ ଓ ସାହାଯ୍ୟ, ସବୁ ସେ ଦେଖାଦେଖି କରୁଥିଲେ । ୧୯୩୪ ପୁନିଆ ଦିନ ପୂଜ୍ୟ ଆଚାର୍ଯ୍ୟ ହରିହର ଦାସ ବାରି ‘ସେବାଘର’ର ଶୁଭ ଦେଇଥିଲେ । କେତେଗୁଡ଼ିଏ କର୍ମୀ ଗୋଟିଏ ପରିବାର ଭଳି ଚଳି ସେଠି ରହି କିଛି ସେବା କାର୍ଯ୍ୟ କରିବେ, ଏହି ଉଦ୍ଦେଶ୍ୟରେ ସେ ଘର ହୋଇଥିବାରୁ ତା ନାଁ ରଖା ହୋଇଥିଲା ‘ସେବାଘର’ । ‘ସେବାଘର’ ତରଫରୁ ଯେଉଁ କାର୍ଯ୍ୟଗୁଡ଼ିକ ହେଉଥିଲା, ତାର ଅନ୍ତର୍ଗତ ଥିଲା ସମୂହ ପ୍ରାର୍ଥନା, ଔଷଧ ବିତରଣ ଓ ରୋଗୀ ସେବା, କୁଷ୍ଠ ସେବା, ହରିଜନ ସେବା, ଗ୍ରାମ ସଫେଇ ଓ ପାଇଖାନା ପ୍ରଚଳନ, ନିଶା ନିବାରଣ, ସୂତାକଟା ଶିଖାଦେବା ଓ ନିଜେ ବସ୍ତ୍ର ସ୍ୱାବଲମ୍ବୀ ହେବା, ପ୍ରୌଢ଼ ଶିକ୍ଷା ଓ ବିଶେଷତଃ ରମ୍ଭା, ମନ୍ଦରି, ଆନନ୍ଦପୁର,

ବାରି ଗାଁରେ ସ୍ତ୍ରୀଲୋକଙ୍କୁ ଶିକ୍ଷାଦାନ, ଦୁଃସ୍ଥ ଝିଅଙ୍କୁ ରଖି ଶିକ୍ଷା ଦେବା, କର୍ମୀମାନଙ୍କ ସ୍ତ୍ରୀମାନଙ୍କୁ ଶିକ୍ଷା ଦେବା, ଉତ୍ସାହୀ ମହିଳାଙ୍କୁ କର୍ମୀତାଲିମ୍ ଦେବା, ଖଦୀକର୍ମୀ ତାଲିମ୍ କେନ୍ଦ୍ର ଚଳାଇବା, ଗୋ-ସୁଧାର, ମୌଳିକ ଶିକ୍ଷା, ରାଷ୍ଟ୍ରଭାଷା ପ୍ରଚାର, ମଦ୍ୟବର୍ଜନ, ପ୍ରାଇମେରୀ କଂଗ୍ରେସ କମିଟି ଗଠନ ଓ କଂଗ୍ରେସ ମେମ୍ବର ସଂଗ୍ରହ, ରାଷ୍ଟ୍ରୀୟ ଦିବସଗୁଡ଼ିକ ପାଳନ, ଚର୍ମାଳୟ, ଖଦୀ ସରଞ୍ଜାମ କାର୍ଯ୍ୟାଳୟ ପ୍ରତିଷ୍ଠା ଓ ପରିଚାଳନା, ଖଜୁରି ଗୁଡ଼ ରନ୍ଧା, କୃଷି ଓ ବଗିଚା କାମରେ ପରୀକ୍ଷା ଓ ପ୍ରୟୋଗ, ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସେବାକେନ୍ଦ୍ର ସ୍ଥାପନ, ତାଳଚେରର ଶରଣାର୍ଥୀଙ୍କ ସେବା, ଆଦି । ବରି କେନ୍ଦ୍ରରୁ ଓଡ଼ିଶାର ଚାରିଆଡ଼େ ବ୍ୟାପି ଆଠବର୍ଷ ଚାଲି ୧୯୪୨ ଆନ୍ଦୋଳନବେଳେ ସରକାରୀ ଦମନଲୀଳା ଫଳରେ ସେବାଘର ସମେତ ନାନା କର୍ମକେନ୍ଦ୍ର ନାନା କାର୍ଯ୍ୟ ତ ବନ୍ଦ ହୋଇ ଯାଇଥିଲା, ପୁଣି କର୍ମୀମାନେ ଜେଲରୁ ଫେରିଲାପରେ କାର୍ଯ୍ୟ ଆରମ୍ଭ ହୋଇଥିଲା, ବଢ଼ିଥିଲା, ବ୍ୟାପିଥିଲା ଓ କେତେକ ନୂଆ ନୂଆ କାର୍ଯ୍ୟ ଆରମ୍ଭ ହୋଇଥିଲା । ବରିରେ ଗୋପବାବୁଙ୍କ ଦ୍ୱିତୀୟଥର ରହଣିବେଳର ବିଶିଷ୍ଟ କାର୍ଯ୍ୟକ୍ରମ ଭିତରେ ଥିଲା,—ସେ ନିଜେ ଦିନକୁ ଆଠଘଣ୍ଟା ଦଶଘଣ୍ଟା ଶାରୀରିକ ପରିଶ୍ରମ କରି ଅନ୍ୟ କାହାରି ସାହାଯ୍ୟ ନ ନେଇ ଶ୍ରମର ଉତ୍ପାଦନ ଓ ଆୟରେ ବଞ୍ଚିବାକୁ ତାଙ୍କର ଦୃଢ଼ ସଂକଳ୍ପ ଓ ସେ ସଂକଳ୍ପ ପାଳନ, ମୌଳିକ ଶିକ୍ଷାର ଦ୍ୱିତୀୟ ପର୍ବ, ସାଂପ୍ରଦାୟିକ ସଦ୍ଭାବ ରକ୍ଷା ଲାଗି ବ୍ୟାପକ ଉଦ୍ୟମ, ‘‘କସ୍ତୁରବା ଗାନ୍ଧୀ ସ୍ମାରକନିଧି’’ର ଅର୍ଥ-ସହାୟତାରେ ନାନା କାର୍ଯ୍ୟ, ମାତୃମଙ୍ଗଳ କେନ୍ଦ୍ର ସ୍ଥାପନ, ଯୋଜନାବଦ୍ଧ ଭାବେ କୁଷ୍ଠରୋଗୀଙ୍କ ଚିକିତ୍ସା ଓ ସେବା କାର୍ଯ୍ୟ, ଉନ୍ନତ ପ୍ରଣାଳୀରେ କୃଷିକାର୍ଯ୍ୟ ପ୍ରଚଳନ, ‘ଋଣ-ଯୋଜନା’, ସବର୍ଣ୍ଣ-ହରିଜନ ବିବାହ ପ୍ରଚଳନ, ଆଦିବାସୀ ସେବା ଦିଗରେ ବ୍ୟାପକ ଉଦ୍ୟମ ଓ ‘ନବଜୀବନ ମଣ୍ଡଳ’ ପ୍ରତିଷ୍ଠା, ‘ଉତ୍କଳ ଖଦୀ ମଣ୍ଡଳ’ ପ୍ରତିଷ୍ଠା ଇତ୍ୟାଦି ।

ବରିରେ ତାଙ୍କର ଦ୍ୱିତୀୟ ରହଣି ବେଳେ ଚାଲିଥିବା ରଚନାତ୍ମକ କାର୍ଯ୍ୟମାନଙ୍କର ପ୍ରତ୍ୟକ୍ଷ ଓ ଘନିଷ୍ଠ ସମ୍ପର୍କରେ ସେ ପ୍ରାୟ ଛଅବର୍ଷ ଥିଲେ, ତାପରେ ୧୯୫୧ ଜାନୁଆରୀରେ ତ ବାହାରି ଚାଲିଗଲେ ।

ତାହାପରେ ୧୯୫୧ରୁ ୧୯୫୮ରେ ତାଙ୍କର ଶେଷଦିନ ପର୍ଯ୍ୟନ୍ତ, ବରିରେ ଯେଉଁ ରଚନାତ୍ମକ କାର୍ଯ୍ୟ ଚାଲିଥାଏ ସେ ତାର ପ୍ରତ୍ୟକ୍ଷ ସମ୍ପର୍କରେ ନ ଥାନ୍ତି, ବରି ବୁଲି ଆସିଲେ ବୁଝନ୍ତି, ଅନ୍ୟତ୍ର ପଦଯାତ୍ରାରେ ନ ଥିଲେ ସେ ବରିକୁ ପ୍ରାୟ ପ୍ରତି ମାସରେ କି ଦୁଇ ମାସରେ ଅନ୍ତତଃ ଥରେ ଲେଖା ଆସନ୍ତି, ବାଲିବାଡ଼ି କାମ ବୁଝନ୍ତି, ଯେତିକି ଦିନ ରହିପାରନ୍ତି ପ୍ରତିଦିନ ଆଗପରି ଦେହ ମେହେନତ କରନ୍ତି । ୧୯୩୪ରେ ବରିରେ କାମ ଆରମ୍ଭ ହେଲାଦିନଠୁଁ ତାର ପ୍ରଭାବ ଓଡ଼ିଶାର ଚାରିଆଡ଼େ

ପଡ଼ିଥାଏ ଓ ନାନା ସ୍ଥାନରେ ସେପରି କାର୍ଯ୍ୟ ଚାଲିଥାଏ । ବରୀରୁ ବାହାରି ପଡ଼ିଲାପରେ ଆଉ ସେ ନୂଆ ବାଟ ଖୋଜିଲେ, ତାପରେ ଓଡ଼ିଶାରେ 'ଭୂଦାନ' କାର୍ଯ୍ୟ ଆରମ୍ଭ କଲେ ଓ ବିଶେଷତଃ ତହିଁରେ ବ୍ୟାପୃତ ରହିଲେ, ତାକୁ ହିଁ ସେ ପ୍ରାଧାନ୍ୟ ଦେଲେ ।

## କସ୍ତୁର୍ବା ଗାନ୍ଧୀ ସ୍ମାରକନିଧି—ଶିଶୁମଙ୍ଗଳ ଓ ନାରୀମଙ୍ଗଳ କାର୍ଯ୍ୟ

ମହାତ୍ମା ଗାନ୍ଧୀଙ୍କ ପତ୍ନୀ ଶ୍ରୀମତୀ କସ୍ତୁର୍ବା ଗାନ୍ଧୀଙ୍କ ମୃତ୍ୟୁ ପରେ ତାଙ୍କର ସ୍ମୃତିରକ୍ଷା ପାଇଁ ଭାରତର ପ୍ରତ୍ୟେକ ପ୍ରଦେଶରେ ଚାନ୍ଦା ଉଠିଲା ଓ ସେହି ଟଙ୍କାରେ 'କସ୍ତୁର୍ବା ଗାନ୍ଧୀ ସ୍ମାରକନିଧି' ଗଠିତ ହେଲା । ସେ ସଂସ୍ଥା ନିଷ୍ପତ୍ତି କଲା ଯେ, ୬ କସ୍ତୁର୍ବା ଗାନ୍ଧୀଙ୍କ ସ୍ମୃତିରକ୍ଷା ସକାଶେ ସେହି ଟ୍ରଷ୍ଟ ପାଣ୍ଠିରୁ ଟଙ୍କା ଖର୍ଚ୍ଚ ହୋଇ ଶିଶୁମାନଙ୍କର ଓ ନାରୀଜାତିର କଲ୍ୟାଣ ପାଇଁ କିଛି ରଚନାତ୍ମକ କାର୍ଯ୍ୟ କରାଯିବ । ୧୯୪୫ରେ ଓଡ଼ିଶାରେ 'କସ୍ତୁର୍ବା ଗାନ୍ଧୀ ସ୍ମାରକନିଧି'ର ଓଡ଼ିଶା ପାଇଁ ସଂସ୍ଥାଟିଏ ପ୍ରତିଷ୍ଠିତ ହେଲା । ତହିଁରେ ଆଉ ଦୁଇଜଣ ମୁଖ୍ୟ 'ସମ୍ପାଦକ' ରହିଲେ —ସ୍ୱାମୀ ବିଚିତ୍ରାନନ୍ଦ ଦାସ ଓ ଶ୍ରୀ ଶରତ୍ ଚନ୍ଦ୍ର ମହାରଣା । କିନ୍ତୁ ପରେ ମହାତ୍ମା ଗାନ୍ଧୀ ନିର୍ଦ୍ଦେଶ ଦେଲେ ଯେ ପ୍ରତି ପ୍ରଦେଶରେ ସେହି ସଂସ୍ଥା ପାଇଁ ଜଣେ 'ପ୍ରତିନିଧି' ହିଁ ରହିବେ, 'ସମ୍ପାଦକ' ରହିବେ ନାହିଁ । ଓଡ଼ିଶାରେ ପ୍ରଥମ ପ୍ରତିନିଧି ହେଲେ ଶ୍ରୀମତୀ ରମା ଦେବୀ ।

## ମାତୃମଙ୍ଗଳ କେନ୍ଦ୍ର

ଗୋପବାବୁ ଦେଖିଲେ, ଜେଲ୍‌ରୁ ଫେରିଲାବେଳକୁ ବରୀର 'ସେବାଘର' ତ ଭାଙ୍ଗି ଯାଇଥାଏ, ଖାଲି ଭିହ ପଡ଼ିଥାଏ । ଏଥର ବରୀ ଫେରିଆସି ଗୋପବାବୁ ସେ ଭିହରେ ଘର ତୋଳାଇ ଗୋଟିଏ 'ମାତୃମଙ୍ଗଳ କେନ୍ଦ୍ର' ଖୋଲିଲେ, ଓଡ଼ିଶାରେ ସେତେବେଳେ ସେପରି କେଉଁଠି ନ ଥିଲା । ତା ପରିଚାଳନାରେ ଆଗ ରହିଲେ ଡାକ୍ତର ନିର୍ମଳା ଦତ୍ତ । ତା'ପରେ ସେ ଦାୟିତ୍ୱ ନେଲେ ଡାକ୍ତର ଭୁଜଙ୍ଗବିଦ୍ୟା ଦାସ ଓ ଶ୍ରୀମତୀ କୃଷ୍ଣପ୍ରିୟା ।

ଡାକ୍ତର ଭୁଜଙ୍ଗବିଦ୍ୟା ଗୋପବାବୁଙ୍କର ସମ୍ପର୍କୀୟା ଭଣିଜୀ । ସେ ଏମ୍.ବି.ବି.ଏସ୍. ପାଶ୍ କରିଥିଲେ । ସେ କାଳରେ ସେଭଳି ଓଡ଼ିଆ ଝିଅ ବେଶି ନ ଥିଲେ ଓ ସେ ଚାହିଁଥିଲେ ଉଚ୍ଚ ସରକାରୀ ଚାକିରି ଗ୍ରହଣ କରିପାରିଥାନ୍ତେ । କିନ୍ତୁ ଗୋପବାବୁ ଆଗ ନିଜ ବନ୍ଧୁବାନ୍ଧବଙ୍କୁ ଓ ଆଖପାଖ ଲୋକଙ୍କୁ ନିଜ ଆଦର୍ଶରେ ଉଦ୍‌ବୁଦ୍ଧ କରୁଥିଲେ ଓ ଦୀକ୍ଷିତ କରୁଥିଲେ ଓ ଡକ୍‌ଟର ଭୁଜଙ୍ଗବିଦ୍ୟା ସେହିପରି ଜଣେ । ସେ ୧୯୪୬ରେ ବରୀ ଆସିଲେ । ସେ ବରୀରେ 'ସେବାଘର' ଭିହରେ ନୂଆ ଘରେ ମାତୃମଙ୍ଗଳ କେନ୍ଦ୍ର

ଚଳାଇବା ଛଡ଼ା ସେ ଅଞ୍ଚଳରେ ଗାଁ ଗାଁ ବୁଲି ଶିବିର କରି ଗାଁର ସ୍ତ୍ରୀଲୋକମାନଙ୍କୁ ଚିକିତ୍ସା, ସେବା ଶୁଶ୍ରୂଷା, ରୋଗ ପ୍ରତିଷେଧକ ବ୍ୟବସ୍ଥା ଆଦି ଶିକ୍ଷା ଦେଉଥାନ୍ତି ।

'କସ୍ତୁରବା ଗାନ୍ଧୀ ସ୍ମାରକନିଧି'ରୁ ଏସବୁ କାର୍ଯ୍ୟକୁ ସାହାଯ୍ୟ ମିଳିବା ସୁବିଧା ଘଟିବା ପରେ ଅନ୍ୟାନ୍ୟ ଅନେକ ସ୍ଥାନରେ 'ମାତୃମଙ୍ଗଳ କେନ୍ଦ୍ର' ବସିଲା । ରମା ଦେବୀ ଓ ଗୋପବାବୁଙ୍କ ଉଦ୍ୟମରେ ୧୯୫୬ ଶେଷସୁଦ୍ଧା ୮ଟି ସ୍ଥାନରେ ମାତୃମଙ୍ଗଳ କେନ୍ଦ୍ର ବସି ସାରିଥିଲା, ଯଥା :—ଅରଙ୍ଗାବାଦ (ବରୀ), ବରଗାଁ, ଖଣ୍ଡସାହି, ଗଦାଶିଳା, ତୁଳସୀପୁର, ଚନ୍ଦନପୁର, ସତ୍ୟଭାମାପୁର ଓ ଅନ୍ୟ ଠାଏ ।

## "ଗାର୍ହସ୍ଥ୍ୟ ଶୁଶ୍ରୂଷା କେନ୍ଦ୍ର"

'କସ୍ତୁରବା ଗାନ୍ଧୀ ସ୍ମାରକନିଧି' ସାହାଯ୍ୟରେ ୧୯୫୧ରେ (ବରୀ) ଅରଙ୍ଗାବାଦ୍‌ରେ ଗୋଟିଏ 'ଗାର୍ହସ୍ଥ୍ୟ ଶୁଶ୍ରୂଷା କେନ୍ଦ୍ର' ବସିଲା ।

## ପୂର୍ବତନ କେନ୍ଦ୍ରମାନଙ୍କରେ ଔଷଧ ବଣ୍ଟନ

ବରୀରେ କାର୍ଯ୍ୟ ଆରମ୍ଭ ହେଲାଦିନୁଁ ବରୀ ଅଞ୍ଚଳରେ ଓ ଓଡ଼ିଶାର ଅନ୍ୟତ୍ର ଗାଁ ଗହଳରେ ନାନା କେନ୍ଦ୍ରରେ ଗ୍ରାମବାସୀମାନଙ୍କୁ କିଛି କିଛି ଔଷଧ ବଣ୍ଟନ କରାଯାଉଥାଏ, ସେ କାର୍ଯ୍ୟ ଚାଲୁ ରହିଥାଏ । କସ୍ତୁରବା ଗାନ୍ଧୀ ସ୍ମାରକନିଧିରୁ ସ୍ଥାନେ ସ୍ଥାନେ ସେଥିପାଇଁ ବି ସାହାଯ୍ୟ ମିଳିଲା ।

## (ବରୀ) ରାମଚନ୍ଦ୍ରପୁରରେ "ଗ୍ରାମସେବିକା ତାଲିମ୍ କେନ୍ଦ୍ର"

'କସ୍ତୁରବା ଗାନ୍ଧୀ ସ୍ମାରକନିଧି'ର ଅର୍ଥ ସାହାଯ୍ୟରେ ୧୯୪୭ରେ (ବରୀ) ରାମଚନ୍ଦ୍ରପୁରରେ ଗୋଟିଏ "ଗ୍ରାମସେବିକା ତାଲିମ୍ କେନ୍ଦ୍ର" ବସିଲା । ତହିଁରେ ମୁଖ୍ୟ କର୍ମୀମାନଙ୍କ ମଧ୍ୟରେ ଥିଲେ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା, ଶ୍ରୀମତୀ ଅନ୍ନପୂର୍ଣ୍ଣା ଦାସ, ଡକ୍ଟର ଭୃଙ୍ଗବିଦ୍ୟା ଦାସ, ଶ୍ରୀମତୀ କୃଷ୍ଣପ୍ରିୟା ଦାସ, ଶ୍ରୀମତୀ ଶକୁନ୍ତଳା ମହାନ୍ତି, ଶ୍ରୀମତୀ ରମ୍ଭା ଦେବୀ ଆଦି । ୧୯୫୧ ଶେଷସୁଦ୍ଧା ତହିଁରେ ୯୧ ଜଣ ମହିଳା ଟ୍ରେନିଂ ପାଇଥିଲେ ଓ ତହିଁରୁ ୬୧ ଜଣ କସ୍ତୁରବା ଗାନ୍ଧୀ ସ୍ମାରକ ଟ୍ରଷ୍ଟରୁ ହିଁ ସାହାଯ୍ୟ ପାଇଥିଲେ । ସରକାରୀ ସାହାଯ୍ୟ ପାଇ ୧୪ ଜଣ ଟ୍ରେନିଂ ପାଇଲେ, 'ଉତ୍କଳ ନବଜୀବନ ମଣ୍ଡଳ'ରୁ ୨ ଜଣ ସାହାଯ୍ୟ ପାଇଥିଲେ ଓ ୧୦ ଜଣ ନିଜ ଖର୍ଚ୍ଚରେ ଟ୍ରେନିଂ ନେଇଥିଲେ ବୋଲି ମାର୍ଚ୍ଚ ୨ ତାରିଖ ୧୯୫୩ର 'ଗ୍ରାମସେବକ' ପତ୍ରିକାରୁ ଜଣାପଡ଼େ । ଏହି ତାଲିମ୍‌ପ୍ରାପ୍ତା ନାରୀକର୍ମୀମାନେ ଓଡ଼ିଶାର ନାନା ସ୍ଥାନରେ ଗ୍ରାମସେବା କାର୍ଯ୍ୟ କଲେ ।

## କସ୍ତୁର୍ବା ଗାନ୍ଧୀ ସ୍ମାରକନିଧି ସାହାଯ୍ୟରେ 'ଗ୍ରାମସେବା କେନ୍ଦ୍ର' ମାନ

ଆଗରୁ ତ 'ଗ୍ରାମସେବା କେନ୍ଦ୍ର' ଗୁଡ଼ିଏ କାର୍ଯ୍ୟ କରି ଆସୁଥାଏ, 'ଗାନ୍ଧୀ ସେବାସଂଘ', ଆଦି ସେଗୁଡ଼ିକୁ ସାହାଯ୍ୟ ଦେଉଥାନ୍ତି । 'କସ୍ତୁର୍ବା ଗାନ୍ଧୀ ସ୍ମାରକନିଧି'ର ଉତ୍କଳ ଶାଖା କାର୍ଯ୍ୟ କରିବାକୁ ଆରମ୍ଭ କଲାରୁ ତାହା ସାହାଯ୍ୟରେ ଆହୁରି କେତେଗୁଡ଼ିଏ ନୂଆ ନୂଆ ଗ୍ରାମସେବା କେନ୍ଦ୍ର ଖୋଲିଗଲା ଓ କେତେଗୁଡ଼ିଏ ପୁରୁଣା ଗ୍ରାମସେବା କେନ୍ଦ୍ରକୁ ପ୍ରୟୋଜନ ଅନୁସାରେ ଓ ନିଧିର ସାମର୍ଥ୍ୟ ଅନୁସାରେ କିଛି କିଛି ଆର୍ଥିକ ସାହାଯ୍ୟ ମିଳିବାକୁ ଲାଗିଲା । ସେହି ୨-୩-୧୯୫୮ର 'ଗ୍ରାମସେବକ' ପତ୍ରିକାରୁ ଜଣାପଡ଼େ ଯେ ୧୯୫୨ ସୁଦ୍ଧା ସେପରି ଅଧିକା ୯ଟି "ସମଗ୍ର ଗ୍ରାମସେବା କେନ୍ଦ୍ର" ଚାଲୁଥାଏ, ଯଥା :—ରାମଚନ୍ଦ୍ରପୁର, କୁମ୍ଭାରିଆ, ଚମ୍ପେଇଲେ, ଡଙ୍ଗରବେଡ଼ା, ଫୁଲପଡ଼ିଆ, କମସର, ଗାର୍ମିଣୀ, 'ଯାଜା' ଓ 'ଫଟାମୁଣ୍ଡା' । ଶେଷୋକ୍ତ ଦୁଇଟିରୁ କର୍ମୀ ପଳାଇଗଲେ । ୧୯୫୧ ବେଳକୁ 'କସ୍ତୁର୍ବା ଗାନ୍ଧୀ ସ୍ମାରକନିଧି'ର ନାରୀକର୍ମୀ ଶ୍ରୀମତୀ ମାଳତୀ ବଣ୍ଡାଲ, ଶ୍ରୀମତୀ କେତକୀ ଦେଈ ଆଦି ସେବିକାମାନେ କୋରାପୁଟ ଜିଲ୍ଲାରେ କାର୍ଯ୍ୟ ଆରମ୍ଭ କଲେଣି, ସେଠି ୧୯୫୦ ବେଳକୁ ରାୟଗଡ଼ା ସବ୍‌ଡିଭିଜନର ଥେରୁବେଲି ପଞ୍ଚେ 'ଡୁମ୍ବିଗୁଡ଼ା' କନ୍ଧ ଗାଁରେ ସେ ସଂସ୍ଥାର ଯୋଡ଼ିଏ ନାରୀକର୍ମୀ ଶ୍ରୀମତୀ ମାଳତୀ ବଣ୍ଡାଲ ଓ ଶ୍ରୀମତୀ କେତକୀ ଦେଈ 'ଗ୍ରାମସେବା କେନ୍ଦ୍ର' ଆରମ୍ଭ କରି ପରିଚାଳନା କଲେ, ସେତେବେଳେ ତାହା ଖୁବ୍ ଅନୁନ୍ନତ ଓ ବାଘ-ଖିଆ ଅଞ୍ଚଳ । ୧୯୫୧ର ଦୁର୍ଭିକ୍ଷ ରିଲିଫ୍ କାର୍ଯ୍ୟରେ ସେମାନେ ଓ କସ୍ତୁର୍ବା ଗ୍ରାମସେବା କେନ୍ଦ୍ର ଗୁଣ୍ଡି ଗାର୍ମିଣୀର ନାରୀକର୍ମୀମାନେ ହାତୀରେ ବସି ଧାଡ଼ି ଧାଡ଼ି ପାହାଡ଼ ଚଢ଼ି ଚଢ଼ି ରାୟଗଡ଼ା ସବ୍‌ଡିଭିଜନର ପର୍ବତମାଳ ଉପରେ ଚଢ଼ି ଜଙ୍ଗଲ ଭିତରେ ସ୍ଥାନେ ସ୍ଥାନେ ରିଲିଫ୍ ପାଇଁ ଭୋଜନ କେନ୍ଦ୍ର ଖୋଲିଲେ, ତାହାପରେ ବାଘହାତୀମୟ ଘୋର ଅରଣ୍ୟମୟ ସେହି ଅତି ଅନୁନ୍ନତ ଅଞ୍ଚଳର ଅନ୍ଧସନ୍ଧରେ କସ୍ତୁର୍ବା ଗାନ୍ଧୀ ସ୍ମାରକନିଧି ତରଫରୁ ବି କେତୋଟି କେନ୍ଦ୍ର ଖୋଲିଲା, 'ଉତ୍କଳ ନବଜୀବନ ମଣ୍ଡଳ' ତା ଆଗରୁ କୋରାପୁଟର ସେହି ଦୁର୍ଭେଦ୍ୟ ମାଳରେ ନାନା କେନ୍ଦ୍ରରେ ନାରୀକର୍ମୀ ରଖି ଗ୍ରାମସେବା କାର୍ଯ୍ୟ କରି ଆସୁଥିଲେ, ସେହି କେନ୍ଦ୍ରମାନଙ୍କ ସଂଖ୍ୟା ଏବେ ବଢ଼ିଲା । କସ୍ତୁର୍ବା ଗାନ୍ଧୀ ସ୍ମାରକନିଧିର ଉତ୍କଳ ଶାଖା ମଧ୍ୟ ସେହିପରି ଅନ୍ୟ କେତୋଟି "ଗ୍ରାମସେବା କେନ୍ଦ୍ର" ପରିଚାଳନା କଲେ, ସେପରି ଗୋଟିଏ ବସାଗଲା ୧୯୬୨-୬୩ରେ ସାଢ଼େ ତିନିହଜାର ଫୁଟ ଉଚ୍ଚ ମାଳ ଉପରେ ଖମ୍ବେସ ଗାଁରେ, ନିୟମ ଗିରି ପର୍ବତ ଉପରେ ଅତି ଅନୁନ୍ନତ ଶୋଷିତ 'ଡଂଗ୍ରିଆ କନ୍ଧ'ଙ୍କ ଭିତରେ, ସ୍ଥାନଟି କୋରାପୁଟ ଜିଲ୍ଲାରେ ବିଷମକଟକ ତାଲୁକରେ । ସେଠିକି ଚଢ଼ିବାକୁ ସଡ଼କ ବି ନ ଥିଲା । ଶ୍ରୀମତୀ ମାଳତୀ ବଣ୍ଡାଲ ସେଠି ଅବସ୍ଥାପିତ ହେଲେ, ଅଦ୍ଭୁତ ଉନ୍ନୟନ କାର୍ଯ୍ୟ କଲେ, ୧୯୮୨ରେ ବି ସେ କେନ୍ଦ୍ର ଚଳାଉଛନ୍ତି ।

## ରାମଚନ୍ଦ୍ରପୁରରେ କନ୍ୟାଶ୍ରମ

'କସ୍ତୁରବା ଗାନ୍ଧୀ ସ୍ମାରକନିଧି'ର ଅର୍ଥ ସାହାଯ୍ୟରେ (ବରୀ) ରାମଚନ୍ଦ୍ର ପୁରରେ 'କନ୍ୟାଶ୍ରମ' ବସିଲା । ତହିଁରେ ଏକକାଳୀନ ୧୫ଟି ଝିଅ ରହି 'ମୌଳିକ ସ୍କୁଲ'ରେ ପାଠ ପଢ଼ନ୍ତି । ୧୯୫୬ରେ ସେ ଅନୁଷ୍ଠାନଟି ବନ୍ଦ ହୋଇଗଲା ।

## ଲୁଗାବୁଣା ତାଲିମ୍ କେନ୍ଦ୍ର

କସ୍ତୁରବା ଗାନ୍ଧୀ ସ୍ମାରକନିଧି ସାହାଯ୍ୟରେ ବରୀରେ ଗୋଟିଏ 'ଲୁଗାବୁଣା ତାଲିମ୍ କେନ୍ଦ୍ର' ହେଲା । ୧୯୫୩ରେ ରାମଚନ୍ଦ୍ରପୁରରେ ସେପରି ଆଉ ଗୋଟିଏ ହେଲା ।

## ପ୍ରାକ୍-ବେସିକ୍ ଶିକ୍ଷକ ଟ୍ରେନିଂ ସେଣ୍ଟର

ସେହି ନିଧିର ଟଙ୍କାରେ ୧୯୫୦ରେ (ବରୀ) ରାମଚନ୍ଦ୍ରପୁରରେ ମହିଳାମାନଙ୍କୁ ଶିକ୍ଷା ଦେବାପାଇଁ ଗୋଟିଏ 'ପ୍ରାକ୍-ବେସିକ୍ ଶିକ୍ଷକ ଟ୍ରେନିଂ ସେଣ୍ଟର' ଖୋଲା ହେଲା ।

## କୁଷ୍ଠରୋଗୀଙ୍କ ଚିକିତ୍ସା

ମୂଳରୁ ହିଁ ଗୋପବାବୁଙ୍କ ମନ କୁଷ୍ଠରୋଗୀଙ୍କ ସେବା ଆଡ଼କୁ ଝୁଙ୍କି ଥିଲା, ସେମାନଙ୍କୁ ଘୃଣା କରିବା, ଡରିବା, ଆଡ଼େଇ ହୋଇ ରହିବା ଓ ସମାଜରେ ଏକଘରକିଆ କରିବା ଆଦି ଜନସାଧାରଣଙ୍କର ସେମାନଙ୍କ ପ୍ରତି ଯେଉଁ ସାଧାରଣ ବ୍ୟବହାର ତାହାକୁ ସେ ପସନ୍ଦ କରୁ ନ ଥିଲେ, ସେମାନଙ୍କ ଉପକାର ପାଇଁ ଉଦ୍ୟମ କରୁଥିଲେ । କୁଷ୍ଠରୋଗର ବିଶେଷଜ୍ଞ ଓ କୁଷ୍ଠସେବାରେ ନିଷ୍ଠାପରଭାବେ ବ୍ରତୀ ଓଡ଼ିଶାର ଯେଉଁ ପ୍ରାତଃସ୍ମରଣୀୟ ଡକ୍ଟର ଆଇଜାକ୍ ସାନ୍ତ୍ରା, ଗୋପବାବୁ ତାଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କ ରଖିଥିଲେ ।

ଓଡ଼ିଶାରେ ଆଗ ବେସରକାରୀ ଉଦ୍ୟମରେ କୁଷ୍ଠରୋଗୀଙ୍କ ଚିକିତ୍ସା ଓ ସେବା ପାଇଁ ଆଗଭର ହୋଇ କାର୍ଯ୍ୟ କରି ଆସୁଥିଲେ ଓଡ଼ିଶାର ଆଉ ଜଣେ ବରପୁତ୍ର, ପ୍ରାତଃସ୍ମରଣୀୟ ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ । ଗୋପବାବୁଙ୍କର ତାଙ୍କ ପ୍ରତି ମଧ୍ୟ ଘନିଷ୍ଠ ସମ୍ପର୍କ ଥିଲା । ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ଚୌଦ୍ୱାରରେ କୁଷ୍ଠାଶ୍ରମ ଗଢ଼ି ଏହି ସେବାକାର୍ଯ୍ୟ କରୁଥିଲେ, ନିଜ ହାତରେ ସେବା କରୁ କରୁ ନିଜେ ରୋଗରେ ଆକ୍ରାନ୍ତ ହୋଇଥିଲେ ଓ ଚିକିତ୍ସା ଦ୍ୱାରା ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଥିଲେ । ବନ୍ୟା, ମହାମାରୀ, ରିଲିଫ୍ ଆଦି କାର୍ଯ୍ୟ, ସବୁବେଳେ ତାଙ୍କର ଅକୁଣ୍ଠିତ ଜନସେବା ଲାଗି ରହିଥାଏ ।

୧୯୪୦ ପୂର୍ବରୁ ସେ ରାୟଗଡ଼ାରେ ରହି ଆଦିବାସୀ ଓ ସେମାନଙ୍କ ସମସ୍ୟା ବିଷୟରେ ଅନୁସନ୍ଧାନ କରୁଥିଲେ, ଆଦିବାସୀ ସେବା ମଧ୍ୟ କଲେ ।

୧୯୪୫ରେ ଗୋପବାବୁ ଜେଲ୍‌ରୁ ଫେରିବା ପରେ କୁଷ୍ଠସେବା ଉପରେ ଅଧିକ ପ୍ରାଧାନ୍ୟ ଦେଲେ, ସେ ନିଜେ କୁଷ୍ଠସେବା କଲେ ଓ ତାଙ୍କ ସହକର୍ମୀମାନେ ଓ ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ କର୍ମୀମାନେ କୁଷ୍ଠସେବା କାର୍ଯ୍ୟ କରିବାକୁ ଲାଗିଲେ । କୁଷ୍ଠରୋଗୀଙ୍କ ସେବା-ଚିକିତ୍ସା ବିଷୟରେ ଉପଯୁକ୍ତ ଶିକ୍ଷା ପାଇବା ସକାଶେ ସେ ଓଡ଼ିଶା ସରକାରଙ୍କଠାରୁ ଆର୍ଥିକ ସାହାଯ୍ୟ ଆୟୋଜନ କରି ଡକ୍ଟର ଆଇଜାକ୍ ସାନ୍ତ୍ରାଙ୍କ ପାଖେ ୧୯୪୮-୪୯ରେ କେତେଜଣ କର୍ମୀଙ୍କୁ ତାଲିମ୍ ଦେବା ବନ୍ଦୋବସ୍ତ କଲେ । ସେମାନଙ୍କ ମଧ୍ୟରେ ଥିଲେ ସର୍ବଶ୍ରୀ ଅଜୟ କୁମାର ଘୋଷ, ଅଲେଖ ପାତ୍ର, ଗୋଲକ ପାତ୍ର, ଗୋପବାବୁଙ୍କର ଜଣେ ସମ୍ପର୍କୀୟ ଭଣଜା କର୍ମୀ ରତନ ଦାସ (ରାଧାରତନ ଦାସ), ଶ୍ରୀମତୀ ମେନକା ମହାପାତ୍ର ଓ ଶ୍ରୀମତୀ ଅନ୍ନପୂର୍ଣ୍ଣା ସାମନ୍ତରାୟ । ୧୯୪୮-୪୯ରେ ଆରମ୍ଭ ହୋଇ ସେ ଟ୍ରେନିଂ ଚାଲିଲା, ଆହୁରି ଅନେକେ ସେ ଟ୍ରେନିଂ ନେଇ ତାଲିମ୍ ପାଇଗଲେ । ଯେଉଁମାନେ ତାଲିମ୍ ପାଇଗଲେ ସେମାନେ ଓଡ଼ିଶାର ନାନା ସ୍ଥାନରେ ସେବାକେନ୍ଦ୍ରମାନଙ୍କରେ କୁଷ୍ଠରୋଗୀଙ୍କ ଚିକିତ୍ସା ଓ ସେବା ଓ ସେମାନଙ୍କ ପ୍ରତି ସମାଜର ଦୃଷ୍ଟିଭଙ୍ଗୀ ବଦଳାଇବା କାର୍ଯ୍ୟ କରିବାକୁ ଲାଗିଲେ । ସେମାନେ ରୋଗୀଙ୍କୁ ଇଞ୍ଜେକ୍‌ସନ୍ ଦିଅନ୍ତି, ଔଷଧ ଦିଅନ୍ତି, ରୋଗ ଯେପରି ନ ବ୍ୟାପେ ସେଥିପାଇଁ ଉପାୟ କରନ୍ତି, ରୋଗ ଚିହ୍ନନ୍ତି, ରୋଗୀ ପ୍ରତି ଭୟ ଓ ଘୃଣା ତୁଟାନ୍ତି, କୁଷ୍ଠରୋଗୀ ସେବା କରନ୍ତି । ରୋଗୀ ଭଲ ହେବାକୁ ଲାଗିଲେ ।

ଏ କାର୍ଯ୍ୟର ଆରମ୍ଭବେଳକୁ କେନ୍ଦୁପାଟଣା ଗ୍ରାମସେବକ କେନ୍ଦ୍ରରେ ଦୁଇଜଣ କର୍ମୀ କୁଷ୍ଠରୋଗୀଙ୍କ ଚିକିତ୍ସା ଓ ସେବା ଶିଖି ଆସି ଏ କାର୍ଯ୍ୟ କରୁଥିଲେ ଓ ୩-୪-୧୯୪୮ରେ ସେ କେନ୍ଦ୍ରର କାର୍ଯ୍ୟ ଦେଖି ସ୍ୱାସ୍ଥ୍ୟ ବିଭାଗର ଡିରେକ୍ଟର ଖୁସି ହୋଇଥିଲେ । ୧୯୪୯ରେ ଯେତେ କେନ୍ଦ୍ର ଥିଲା ତହିଁରୁ କେବଳ ଯୋଡ଼ିଏ ଜିଲ୍ଲାର ତିନୋଟି କାର୍ଯ୍ୟ ବିଷୟରେ ୧୯୫୦ର 'ଗ୍ରାମସେବକ' ପତ୍ରିକାରେ ବିବରଣୀ ପ୍ରକାଶିତ ହୋଇଥିଲା, ଯଥା :

(୧) କଟକ ଜିଲ୍ଲାରେ—ସୁନାଖଳାର 'ତୁଳସୀପୁର' ଆଶ୍ରମ, କର୍ମୀ ଶ୍ରୀ ସତ୍ୟନାରାୟଣ ଦାସ, ମୋଟ ୩୫ ଜଣ ଚିକିତ୍ସିତ ।

(୨) ବାଗଲପୁର—କର୍ମୀ ଶ୍ରୀ ସୁରେନ୍ଦ୍ରନାଥ ଦାସ, ମୋଟ ୧୧ ଜଣ ଚିକିତ୍ସିତ ଓ ବାଲେଶ୍ୱର ଜିଲ୍ଲାରେ—କୁମ୍ଭାରିଆ, ଗ୍ରାମସେବିକା ଶ୍ରୀମତୀ ନନ୍ଦା ଦେବୀ, ମୋଟ ୧୧ ଜଣ ଚିକିତ୍ସିତ । ତହିଁରେ ଅନ୍ୟାନ୍ୟ କେନ୍ଦ୍ରର ବିବରଣୀ ପ୍ରକାଶିତ ହୋଇ ନ ଥିଲା ।

## ବେସରକାରୀ ମୌଳିକ ଶିକ୍ଷା

ବିପ୍ଳବ ଆନ୍ଦୋଳନରେ ସବୁ ମୌଳିକ ସ୍କୁଲ ବନ୍ଦ ହୋଇଥାଏ । ଶିକ୍ଷକମାନେ ଜେଲ୍ ଯାଇଥାନ୍ତି । ୧୩-୧୨-୧୯୪୩ରେ ରିଲିଫ୍ କାମରେ ଠକ୍କର ବାପ୍‌ପା ବରି ଅଞ୍ଚଳକୁ ଆସିଥିଲେ, ଦେଖିଗଲେ ଯେ 'ସେବାଘର' ଉଜୁଡ଼ି ପଡ଼ିଛି । ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତି ଆଦି ୭ ଜଣ ଶିକ୍ଷକ ଜେଲ୍‌ରୁ ମୁକୁଳିଥାନ୍ତି । ଠକ୍‌କର ବାପାଙ୍କ ସୁପାରିଶ୍ ଅନୁସାରେ ୧୯୪୪ରେ ହିନ୍ଦୁସ୍ତାନୀ ତାଲିମୀ ସଂଘ ମୌଳିକ ଶିକ୍ଷାକୁ ପୁଣି ସାହାଯ୍ୟ ଦେଲେ ଓ ଯେଉଁ ସାତଜଣ ଶିକ୍ଷକ ଜେଲ୍‌ରୁ ଫେରିଥାନ୍ତି ସେମାନଙ୍କ ସାହାଯ୍ୟରେ ପୁଣି ତାକୁ ପ୍ରବର୍ତ୍ତନ କରାଗଲା । ୯-୩-୪୫ରେ ରାମଚନ୍ଦ୍ରପୁରରେ ଘରପୋଡ଼ି ହେଲା । ମୌଳିକ ଶିକ୍ଷା କେନ୍ଦ୍ରର ଲାଇବ୍ରେରୀ ଜଳିଗଲା, ବହୁତଗୁଡ଼ିଏ ଘର ବି ଜଳିଗଲା । ପୁଣି ଘର ତୋଳା ହେଲା । ମୌଳିକ ଶିକ୍ଷା ପୁନରୁଦ୍ଧାର କାର୍ଯ୍ୟରେ ଗୋପବାବୁ ଲାଗି ପଡ଼ିଥାନ୍ତି । ଗୁଜରାଟର ଲୋକନୃତ୍ୟ 'ଦାଣ୍ଡିଆ ନାଚ' ଶିଖି ଆସିବା ପାଇଁ ସେ ଶ୍ରୀ ବୈକୁଣ୍ଠନାଥ ମହାନ୍ତିଙ୍କୁ ଗୁଜରାଟ ପଠାଇଲେ, ସେ ଶିଖି ଆସି ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟରେ ପିଲାଙ୍କୁ ଶିଖାଇଲେ ଓ ଆଖପାଖ ଅଞ୍ଚଳରେ ବି ବୁଲି ବୁଲି ଦେଖାଇଲେ । ଲୋକନୃତ୍ୟଟି ଜନପ୍ରିୟ ହେଲା ଓ ଅନେକେ ଶିଖି ଗାଁ ଗାଁରେ ଦାଣ୍ଡିଆ ନାଚ କଲେ ।

୧୯୪୬ରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ହେଲା ସଙ୍ଗେ ସଙ୍ଗେ ସରକାର ପୁଣି ମୌଳିକ ଶିକ୍ଷାକୁ ନିଜ ହାତକୁ ନେଲେ ଓ ଗୋଟିଏ ସରକାରୀ 'ବୋର୍ଡ ଅଫ୍ ବେସିକ୍ ଏଡ଼ୁକେସନ' ଗଢ଼ିଲେ, ଗୋପବାବୁ ଆଦିଙ୍କୁ ତହିଁରେ ସଭ୍ୟ କରିନେଲେ । ସେତେବେଳେ ସରକାର ୭ଟି ସ୍କୁଲକୁ ସାହାଯ୍ୟ ମଞ୍ଜୁର କଲେ : ରାମଚନ୍ଦ୍ରପୁର, ହାଟସାହି, ବାଲିବଲି, ଅନ୍ୟାସପୁର, ରଡ଼ିଲଂ, ଧାରପୁର, ହଲଦୀବସନ୍ତ ।

କିନ୍ତୁ ସରକାରୀ ମୌଳିକ ଶିକ୍ଷାବୋର୍ଡ଼ ସଙ୍ଗେ ଗୋପବାବୁଙ୍କ ସମ୍ପର୍କ ବେଶିଦିନ ରହିଲା ନାହିଁ । ଗୋପବାବୁ ସରକାରଙ୍କୁ ପ୍ରସ୍ତାବ ଦେଲେ ଯେ ସରକାର ଗୋଟିଏ ନୀତି ଧାର୍ଯ୍ୟ କରନ୍ତୁ ଯେ ଶିକ୍ଷା ବିଭାଗର ଡାଇରେକ୍ଟର ପଦବୀରେ ରହିବାକୁ କେବଳ ସେହିପରି ଲୋକ ବଛାଯିବେ ଯାହାଙ୍କ ନିଜ ନୈତିକ ଚରିତ୍ରରେ ମଳିଧୂଳି ନ ଥିବ, ଯେ ନିଶା ସେବନ କରୁ ନ ଥିବେ ଓ ଲମ୍ପଟ ହୋଇ ନ ଥିବେ, ଚରିତ୍ରରେ ଦୋଷ ଥିଲେ ସେ ଯେତେ କାର୍ଯ୍ୟଦକ୍ଷ ହେଉନ୍ତୁ ପଛେ ତାଙ୍କୁ ସେ ଦାୟିତ୍ୱରେ ରଖାଯିବ ନାହିଁ । କାରଣ ତା ନ ହେଲେ ଛାତ୍ରମାନେ ଉପଯୁକ୍ତ ଆଦର୍ଶ ପାଇ ପାରିବେ ନାହିଁ । ସରକାର ଏ ପ୍ରସ୍ତାବ ଗ୍ରହଣ କରିବାକୁ ଅସମର୍ଥ ହେଲେ ଓ ଗୋପବାବୁ ତେଣୁ ସରକାରୀ ମୌଳିକ ଶିକ୍ଷା କମିଟିରୁ ୧୯୪୭ରେ ଇସ୍ତଫା ଦେଲେ ।

କମିଟିରୁ ସମ୍ପର୍କ ଛଡ଼ାଇ ଗୋପବାବୁ କେବଳ ରାମଚନ୍ଦ୍ରପୁର ମୌଳିକସ୍କୁଲର କାର୍ଯ୍ୟ ବୁଝାଶୁଝା କରୁଥାନ୍ତି । ସେହି ଗୋଟିଏ ସ୍କୁଲ ବେସରକାରୀ 'ମୌଳିକ ଶିକ୍ଷା ପରିଷଦ' ପରିଚାଳନାରେ ରହିଲା; କିନ୍ତୁ ସରକାରୀ ସାହାଯ୍ୟ ମିଳୁଥାଏ । ୧-୭-୪୮ରୁ ହାଟସାହି, ବାଲିବଲି, ଅନ୍ୟାସପୁର ଓ ଧାରପୁର ଏପରି ୪ଟି ସ୍କୁଲ ସରକାରଙ୍କୁ ଦିଆଗଲା, କାରଣ ତାକୁ ଚଳାଇବାକୁ ବେସରକାରୀ ମୌଳିକ ଶିକ୍ଷା ପରିଷଦର ଟଙ୍କା ହେଲ ନାହିଁ । ଅନ୍ୟ ସ୍କୁଲ ଖୋଲିଲା ନାହିଁ । ୧୯୪୬ରେ ରାମଚନ୍ଦ୍ରପୁରରେ ସରକାର ଗୋଟିଏ "ମୌଳିକ ଶିକ୍ଷା ତାଲିମ କେନ୍ଦ୍ର" ଖୋଲିଲେ ।

୧୯୦୫ରୁ ୧୯୪୭ ମଧ୍ୟରେ ଓଡ଼ିଶାର ଅନ୍ୟ କେତେକ ସ୍ଥାନରେ ବେସରକାରୀ ପରିଚାଳନାରେ ମୌଳିକ ଶିକ୍ଷା ଅନୁଷ୍ଠାନମାନ ବସିଥିଲା, ଯଥା— ଅନୁଗୁଳରେ ଖଲଡ଼ରେ, ଧର୍ମଶାଳା ଥାନାରେ ଆଦନ୍ତପୁରରେ, ଢେଙ୍କାପଡ଼ା ଥାନାର କୁଶିଆପାଳରେ, ସୋରୋର ବୁଢ଼ାଗାଡ଼ିଆରେ, ଇତ୍ୟାଦି । ଏସବୁ ଅର୍ଣ୍ଣର୍ଯ୍ୟ ହରିହର ଓ ଗୋପବାବୁଙ୍କ ପ୍ରେରଣାରେ ଖୋଲା ହୋଇଥିଲା ।

୧୯୪୮ ଅପ୍ରେଲ ୪ ତାରିଖରେ ଓଡ଼ିଶା ଲାଟ୍ ଡକ୍ଟର କୈଳାସନାଥ କାଟ୍‌ଜୁ ବସି ପରିଦର୍ଶନ କରିଥିଲେ ଓ ନାନା ଗଠନମୂଳକ କାର୍ଯ୍ୟ ନେଇ ଖୁବ୍ ଖୁସି ହୋଇଗଲେ ।

ମୌଳିକ ଶିକ୍ଷା ଆରମ୍ଭ ହେଲାଦିନୁ ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଶେଷ ଅର୍ଥାତ୍ ସପ୍ତମ ଶ୍ରେଣୀରୁ ପ୍ରଥମ ଥର ୧୯୪୮ରେ ପିଲା ପାଶ୍ କଲେ । ୧୪ ଜଣ ପିଲା ପାଶ୍ କଲେ । ୨-୧୦-୪୮ରେ ସେହି ଉପଲକ୍ଷେ ଗୋଟିଏ ସମାବର୍ତ୍ତନ ଉତ୍ସବ ହୋଇଥିଲା ।

୨୫-୩-୪୯ରେ 'କସ୍ତୁରବା ସ୍ମାରକନିଧି'ର ସମ୍ପାଦିକା ଶ୍ରୀମତୀ ସୁଶୀଲା ପାଇ୍ଣୀ ରାମଚନ୍ଦ୍ରପୁର ସ୍କୁଲ ଦେଖିବାକୁ ଆସିଲେ ।

ହିନ୍ଦୁସ୍ଥାନୀ ତାଲିମୀ ସଂଘର କେନ୍ଦ୍ର ସମ୍ପାଦକ ଶ୍ରୀ ଆର୍ଯ୍ୟ ନାୟକମ୍ ୧୯୪୭ ଜାନୁଆରୀରେ ରାମଚନ୍ଦ୍ରପୁର ସ୍କୁଲ ଦେଖି ଏଡ଼େ ଖୁସି ହୋଇଥିଲେ ଯେ ସେ କହିଲେ ସେ ଶିକ୍ଷାନୁଷ୍ଠାନର ବାୟୁମଣ୍ଡଳ ଠିକ ସେବାଗ୍ରାମ୍‌ର ବାୟୁମଣ୍ଡଳ ପରି ଲାଗୁଛି । ସେ ପୁଣି ୨୮-୩-୪୯ରେ ଆସିଲେ, ତହିଁଆରଦିନ ସ୍କୁଲ୍ ଦେଖିଲେ, ୩୧ ମାର୍ଚ୍ଚରେ ଗଲେ, ତାଙ୍କ ସଙ୍ଗେ ଗୋପବାବୁ ଥିଲେ । ସେଥର ନିଷ୍ପତ୍ତି ହେଲା ଯେ ସ୍କୁଲ୍‌ଟି ଆଉ ସରକାରୀ ସାହାଯ୍ୟ ନେବ ନାହିଁ, ସ୍ୱାବଲମ୍ବୀ ହେବ । ସେତେବେଳେ ରାମଚନ୍ଦ୍ରପୁର ସ୍କୁଲରେ ୮ ଜଣ ଶିକ୍ଷକ ଥିଲେ, ଯଥା : କ୍ଲାସ୍ ଦାୟିତ୍ୱରେ ୫ ଜଣ, ବୁଣେଇ

ଦାୟିତ୍ୱରେ ୧ ଜଣ, ପରିଚାଳନା ଦାୟିତ୍ୱ ଓ ବଗିଚ୍ଚା ଦାୟିତ୍ୱରେ ୨ ଜଣ । ପ୍ରତ୍ୟେକେ ମାସିକ ଟ ୬୦-୦୦ ଦରମା ପାଉଥିଲେ । ସ୍କୁଲ୍ ହତାକୁ ମିଶାଇ ସ୍କୁଲ୍‌ର ୭ ଏକର ୮୪ ଡେସିମେଲ୍ ଜମି ଥାଏ ଓ ସେଠୁ ୫ ମାଇଲ୍ ଦୂର ଗମ୍ଭୁ ଗାଁରେ ଶ୍ରୀ ମୋହନଲାଲ ପଣ୍ଡିତ ଦେଇଥିବା ଆଉ ୧୫ ଏକର ଜମି ଥାଏ ।

ରାମଚନ୍ଦ୍ରପୁରରେ ୧୯୪୭ରୁ ଗୋଶାଳାଟିଏ ଚାଲିଥାଏ, ଆଗ ସେଥିପାଇଁ ଶ୍ରୀ ନିତ୍ୟାନନ୍ଦ କାନନ୍‌ଗୋ ସାହାଯ୍ୟ କରିଥିଲେ । ୧୯୭୧ ବେଳକୁ ସେଠି ୩ଟି ଗାଈ ଓ ୨ଟି ବାଛୁରି ଥାଆନ୍ତି ।

## 'ଗାନ୍ଧୁଜୀକ ଚଟ୍‌ଠା'

୩୦-୧-୧୯୫୧ରେ ଓ୍ୱାର୍ଦ୍ଧାରୁ ହିନ୍ଦୀରେ 'ଗାନ୍ଧୁଜୀକ ଚଟ୍‌ଠା' ବୋଲି ନଇ ତାଲିମ୍ ବିଷୟରେ ହିନ୍ଦୀରେ ପତ୍ରିକାଟିଏ ବାହାରିଲେ । ଶ୍ରୀ ଗୋପବନ୍ଧୁ ଚୌଧୁରୀ ତାର ସମ୍ପାଦକ ଥିଲେ ଓ ସେ ତା ନାଁ ଦେଇଥିଲେ । ସେ ପତ୍ରିକାର ଉଦ୍ଦେଶ୍ୟ ଥିଲା ଯେ ଯେଉଁ ଶିକ୍ଷକମାନେ 'ନଇ ତାଲିମ୍' ପ୍ରଣାଳୀରେ ଶିକ୍ଷା ଦେଉଥିବେ ସେମାନେ ସେ ପତ୍ରିକାରେ ନିଜ ନିଜ ଅଭିଜ୍ଞତା ବିଷୟରେ ଲେଖିବେ ଓ ତହିଁରେ କିଛି ଅନ୍ୟାନ୍ୟ ଲେଖା ବି ଛପା ହେବ । ପ୍ରଥମ ସଂଖ୍ୟାରେ 'କଦଳୀ ଗଛ', 'ବାରମିଶା ଖତ' ବିଷୟରେ ବି ଲେଖାମାନ ଥିଲା । ପ୍ରଥମ ବର୍ଷର କେତୋଟି ସଂଖ୍ୟା ପରେ ପତ୍ରିକାଟି ବନ୍ଦ ହୋଇ ଯାଇଥିଲା ।

୧୯୫୪ରେ ଅନୁଗୁଳଠାରୁ ଆଠ ମାଇଲ ଦୂରରେ ଥିବା ଚମ୍ପତିମୁଣ୍ଡାରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଉଦ୍ୟମରେ 'ପୋଷ୍ଟ-ବେସିକ୍' ଶିକ୍ଷାନୁଷ୍ଠାନ ବସିଲା । ତାହାର ଦାୟିତ୍ୱରେ ରହିଲେ ଶ୍ରୀ ଚିତ୍ତରଞ୍ଜନ ଦାସ । ସେ ବହୁବର୍ଷ ବିଦେଶରେ କଟାଇଥିଲେ, ଉଚ୍ଚ ଶିକ୍ଷିତ, ବିଶିଷ୍ଟ ଶିକ୍ଷାବିତ୍ ଓ ଜଣେ ବିଖ୍ୟାତ ଲେଖକ । ଅନୁଷ୍ଠାନଟି ଖୁବ୍ ଭଲ ଚାଲିଥିଲା ।

ମୌଳିକ ଶିକ୍ଷା ପଦ୍ଧତିରେ ଗୋପବାବୁଙ୍କର ବିଶ୍ୱାସ ଓ ଶ୍ରଦ୍ଧା ଆଜୀବନ ରହିଥିଲା । ଯେଉଁଠି କର୍ମୀମାନେ ଶିକ୍ଷାନୁଷ୍ଠାନମାନ ଖୋଲନ୍ତି ଓ ଚଳାନ୍ତି ସେଠି ସେ ମୌଳିକ ଶିକ୍ଷା ପଦ୍ଧତିରେ ଶିକ୍ଷାଦାନ କରିବାକୁ ପରାମର୍ଶ ଦିଅନ୍ତି ।

## ଉତ୍କଳ ଖଦୀମଣ୍ଡଳ

୧ରୁ ୩ ସେପ୍‌ଟେମ୍ବର ୧୯୪୪ରେ ସେବାଗ୍ରାମରେ ଚରଖା ସଂଘ ବୈଠକରେ ଘୋଷଣା କଲେ ଯେ ଏଣିକି ବେପାରି ଖଦୀ ପରିବର୍ତ୍ତେ ସ୍ୱାବଲମ୍ବୀ ଖଦୀ ଉପରେ

ଜୋର ଦଅଯିବ, ସେ ସମଗ୍ର ସେବା ଯୋଜନା ଓ ଗ୍ରାମ ଉନ୍ନୟନ ଉପରେ ପ୍ରାଧାନ୍ୟ ଦେଲେ, ଖଦୀ କାମକୁ ବିକେନ୍ଦ୍ରିତ କରି ଚଳାଯାଉ ବୋଲି କହିଲେ । "ଚରଖା ସଂଘର ନବ ସଂସ୍କରଣ" ବୋଲି ନିଷ୍ପତ୍ତି ଗୃହୀତ ହେଲା ଓ ତଦ୍ଦ୍ୱାରା "ସମଗ୍ର ଗ୍ରାମସେବା" ଯୋଜନା ଓ ଖଦୀ ଚରଖା ସଂଘକୁ ବିକେନ୍ଦ୍ରିତ କରାଯିବ । ସେହି ନିଷ୍ପତ୍ତି ଅନୁଯାୟୀ 'ଉତ୍କଳ ଖଦୀ ମଣ୍ଡଳ' ସ୍ଥାପିତ ହେଲା ।

'ଉତ୍କଳ ଖଦୀ ମଣ୍ଡଳ'ର ଆବାହକ ହେଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ । ୧୯୪୭ ଅଗଷ୍ଟ ୮ ତାରିଖରେ ସେ କଟକ 'ସ୍ୱରାଜ୍ୟ ଆଶ୍ରମ'ରେ ତାର ପ୍ରଥମ ବୈଠକ ଡାକିଲେ । ଖଦୀ ମଣ୍ଡଳ କାର୍ଯ୍ୟର ପ୍ରଥମ ପର୍ଯ୍ୟାୟରେ କାର୍ଯ୍ୟ ହେଲା All India Spinners' Association (A. I. S. A) ଚଳାଉଥିବା କାମକୁ ହାତକୁ ନେବା ଓ 'ଚରଖା ସଂଘ'ର ଟଙ୍କା ପରିଶୋଧ କରିଦେବା ।

## ଗ୍ରାମସେବକ ପ୍ରେସ୍ ଓ ପ୍ରକାଶନ

ଏହାର ଦ୍ୱିତୀୟ ପର୍ଯ୍ୟାୟରେ ସ୍ୱାବଲମ୍ବୀ ଖଦୀ, କପା ଚାଷ ଆଦି ବଢ଼ାଇବାକୁ ଉଦ୍ୟମ କରାଗଲା ଓ ତାହା ସହିତ କଟକରେ 'ଗ୍ରାମସେବକ ପ୍ରେସ୍' ସ୍ଥାପନ କରାଗଲା ଓ ସର୍ବୋଦୟ ସାହିତ୍ୟ ପ୍ରକାଶନ ଆରମ୍ଭ ହେଲା । ୧୯୫୫ର ଜୁଲାଇ ମାସରେ 'ଗ୍ରାମସେବକ ସମବାୟ ପ୍ରକାଶନ' ରେଜିଷ୍ଟ୍ରି କରାଗଲା, ଗାନ୍ଧୀ-ସାହିତ୍ୟ ଓ ଅନ୍ୟାନ୍ୟ ଉନ୍ନତ ସାହିତ୍ୟିକ ମୂଲ୍ୟ ସମ୍ବଳିତ ଲେଖା ଏ ସଂସ୍ଥାରେ ପ୍ରକାଶ କରିବା ଏହାର ଲକ୍ଷ୍ୟ ଥିଲା । ଆରମ୍ଭ ବେଳେ ଶ୍ରୀ ସଦାଶିବ ତ୍ରିପାଠୀ ଏହାର ସଭାପତି ଥିଲେ ଓ ଶ୍ରୀ ଜୟକୃଷ୍ଣ ବରାଳ ସମ୍ପାଦକ ଥିଲେ ।

ଏହାର ତୃତୀୟ ପର୍ଯ୍ୟାୟରେ 'ସମଗ୍ର ଗ୍ରାମସେବା' ଯୋଜନା ଏହାର ଅନ୍ତର୍ଭୁକ୍ତ ହେଲା ଓ ଏହାର ଚତୁର୍ଥ ପର୍ଯ୍ୟାୟରେ ଏହାର ଅନ୍ତର୍ଭୁକ୍ତ ହେଲା 'ଭୂଦାନ' କାର୍ଯ୍ୟକୁ ତାର ଆରମ୍ଭବେଳେ ସାହାଯ୍ୟ ଦେବା । ଉତ୍କଳ ଖଦୀମଣ୍ଡଳ ସହାୟତାରେ ଯେଉଁ 'ସମଗ୍ର ଗ୍ରାମସେବା କେନ୍ଦ୍ର'ଗୁଡ଼ିକ ପ୍ରତିଷ୍ଠିତ ହେଲା ତହିଁରୁ କେତୋଟି ଥିଲା ଅନୁନ୍ନତ ଆଦିବାସୀ ଅଞ୍ଚଳରେ ।

ଏହି ଅନୁଷ୍ଠାନର ଉଦ୍ୟୋକ୍ତା ଓ କର୍ମୀମାନଙ୍କ ଭିତରେ ଗୋପବାବୁଙ୍କ ଛଡ଼ା ଶ୍ରୀମତୀ ରମା ଦେବୀ, ଆଚାର୍ଯ୍ୟ ହରିହର ଦାସ, ଶ୍ରୀ ନନ୍ଦ କିଶୋର ଦାସ, ଶ୍ରୀ ଲିଙ୍ଗରାଜ ମହାନ୍ତି, ପଣ୍ଡିତ କୃପାସିନ୍ଧୁ ହୋତା, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ନୀଳାମ୍ବର ଦାସ, ଶ୍ରୀମତୀ ସୁନାମଣି ଦେବୀ, ଶ୍ରୀ ମନମୋହନ ଚୌଧୁରୀ, ଶ୍ରୀ ଶରତ୍ ଚନ୍ଦ୍ର ମହାରଣା, ଶ୍ରୀ ଭୁବନାନନ୍ଦ ଦାସ ଆଦି ଥିଲେ ।

## ଅସବର୍ଣ୍ଣ ବିବାହ—ବ୍ରାହ୍ମଣ ବର, ପାଣ କନ୍ୟା—ବ୍ରାହ୍ମଣ ବର, ଯୋଗୀ କନ୍ୟା

ସମାଜରେ ଜାତିଭେଦ ଦୂର କରିବା ପାଇଁ ଅସବର୍ଣ୍ଣ ବିବାହ ପ୍ରଚଳନ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କର ବରିରେ ଦ୍ୱିତୀୟଥର ରହିଲାବେଳର କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲି । କଟକ ଜିଲ୍ଲାର ବଡ଼ଚଣା ଥାନା ଅନ୍ତର୍ଗତ ବାଲିପଡ଼ିଆ ଗ୍ରାମର ଜଣେ ବ୍ରାହ୍ମଣ ଯୁବକ ଶ୍ରୀ ବୃନ୍ଦାବନ ତ୍ରିପାଠୀ ନବମ ଶ୍ରେଣୀରୁ ପାଠପଢ଼ା ଛାଡ଼ି କଂଗ୍ରେସରେ ମିଶିଥିଲେ, ୧୯୪୦ରେ ବ୍ୟକ୍ତିଗତ ସତ୍ୟାଗ୍ରହ କରି ଜେଲ୍ ଯାଇଥିଲେ, ୧୯୪୨ ଆନ୍ଦୋଳନରେ ଚାରିବର୍ଷ ଜେଲ୍ ଭୋଗିଥିଲେ, ତାପରେ କଂଗ୍ରେସ କମିଟିରୁ କିଛି ବେତନ ପାଇ କର୍ମୀ ହୋଇଥିଲେ । ବରି କାର୍ଯ୍ୟ ସହିତ ସେ ସମ୍ପର୍କ ରଖିଥିଲେ । ୧୯୪୮ରେ ସାରଙ୍ଗଯୋଡ଼ରେ ରଚନାତ୍ମକ କର୍ମୀ ସମ୍ମିଳନୀରେ ସେ ମତବ୍ୟକ୍ତ କଲେ ଯେ ସବର୍ଣ୍ଣମାନେ ହରିଜନ ବିଭାହେବା ଉଚିତ । ତେଣୁ ମାର୍ଚ୍ଚ ମାସରେ ଶ୍ରୀମତୀ ରମା ଦେବୀ ତାଙ୍କ ପାଇଁ ହରିଜନ ପାତ୍ରୀଟିଏ ଠିକଣା କରି ତାଙ୍କୁ ପ୍ରସ୍ତାବ ଦେଲେ । ପାତ୍ରୀଟି କୁମାରୀ ସରସ୍ୱତୀ ଜେନା ଅଷ୍ଟମ ଶ୍ରେଣୀଯାଏ ପାଠ ପଢ଼ିଥିଲେ ଓ ଶ୍ରୀମତୀ ରମା ଦେବୀଙ୍କ ସଙ୍ଗେ ରହୁଥିଲେ । ଗୋପବାବୁ ଓ ଶ୍ରୀମତୀ ରମା ଦେବୀ ବୃନ୍ଦାବନ ତ୍ରିପାଠୀଙ୍କୁ, ତାଙ୍କ ବାପାଙ୍କୁ ଓ ସେପଟୁ ସରସ୍ୱତୀଙ୍କୁ, ତାଙ୍କ ବାପା କ୍ଷେତ୍ରବାସୀ ଜେନାଙ୍କୁ ଡକାଇଲେ, ପାଣ ଜାତିର ଝିଅ ସରସ୍ୱତୀଙ୍କ ସଙ୍ଗେ ବ୍ରାହ୍ମଣ ଜାତିର ପୁଅ ବୃନ୍ଦାବନଙ୍କର ଓ ଯୋଗୀ ଜାତିର ଝିଅ 'ଫୁଲ'ଙ୍କ ସଙ୍ଗେ ବୃନ୍ଦାବନ ତ୍ରିପାଠୀଙ୍କ କକାପୁଅ ଭାଇ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀଙ୍କର ବିବାହ ସ୍ଥିରୀକୃତ ହେଲା । ବୃନ୍ଦାବନଙ୍କ ବିବାହ କ୍ଷେତ୍ରବାସୀ ଜେନାଙ୍କ ଘରେ ହେଲା । ଆଗ ବରକନ୍ୟା ବରିହେଁ ଯାଇ ପୋଖରୀରୁଠ ସଫା କଲେ, ଗୁହାଳ ସଫା କଲେ, ଗୋରୁଙ୍କୁ ଖୁଆଇଲେ, ଗୋପବାବୁଙ୍କ ଉଦ୍ୟାନରେ ଦୋ'ଟି ନଡ଼ିଆ ଗଛ ପକାଇଲେ, ତାପରେ ଗୀତା ପଢ଼ା ହେଲା, ଭଜନ ବୋଲା ହେଲା, ତାପରେ ବେଦୀ କର୍ମ । ବର ତରଫରୁ ପୁରୋହିତ ବ୍ରାହ୍ମଣ ଥିଲେ ଶ୍ରୀ ଶ୍ୟାମ ପଣ୍ଡା, ଘର ମାହାଙ୍ଗା, କେନ୍ଦ୍ରାପଡ଼ା । ସେ କଂଗ୍ରେସ କର୍ମୀ, ସୁଗାୟକ, କବି, ପାଲା ଲେଖକ, ଭୂଦାନ ବେଳେ ଭୂଦାନ କର୍ମୀ ଓ ଭୂଦାନ ପାଲା ଗାୟକ, ଆଉଜଣେ ପୁରୋହିତ ଶ୍ରୀ ରାମଚନ୍ଦ୍ର ମିଶ୍ର ସେତେବେଳେ ମୌଳିକ ସ୍କୁଲରେ ଶିକ୍ଷକ, ଘର ଜେନାପୁର ପାଖ ଆଦମ୍‌ପୁର, ତୃତୀୟ ପୁରୋହିତ ଶ୍ରୀ ସୁରେନ୍ଦ୍ରନାଥ ପତି, ସେ ଜଣେ ଋଷୀ, ଉଚ୍ଚବଂଶଜ ବ୍ରାହ୍ମଣ ହୋଇ ସୁଦ୍ଧା ସେ ନିଜ ହାତରେ ହଳ କଲେ, ଋଷ କଲେ । କନ୍ୟାଘର ତରଫରୁ ବରି ମାଟିଆପଡ଼ା ଗ୍ରାମର ପାଣ ଜାତିର ପୁରୋହିତ ଥିଲେ । କନ୍ୟା ସଂପ୍ରଦାନ କଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ବର ତରଫରୁ ସମର୍ପଣ ଧରିଲେ ଶ୍ରୀ କୃଷ୍ଣମୋହନ ରାଉତରାୟ । ବର ତରଫ ନିଜ ଗାଁରୁ ଡ୍ରମ୍ ବାଜା ବଜେଇ ପତାକା ଉଡ଼ାଇ ବରିଯାକେ ଆସିଥିଲେ, ବାଟରେ ଗାଁକୁ ଗାଁ । ଶହ ଶହ କୁତୂହଳୀ ଦର୍ଶକ, ବୁଢ଼ା

ବୃଦ୍ଧାମାନେ ଅଭିସମ୍ପାତ କରୁଥାନ୍ତି "ଚନ୍ଦ୍‌ବାଡ଼ି ପଡ଼ନ୍ତା କି ! ଚଡ଼କ ପଡ଼ନ୍ତା କି !" ବର୍ଷରେ ୨୦।୨୨ ଜଣ ନାରୀକର୍ମୀ ସେଙ୍କ ହୁଳହୁଳି ଦେଇ ଅଭ୍ୟର୍ଥନା କରିଥିଲେ । ବର୍ଷରୁ ବର୍ଷ ସେତେବେଳର ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ଉପରେ ବସି ପଚ୍ଚୁଆର କରି ଶ୍ୱଶୁରାଳୟକୁ ଗଲେ । ଆଶ୍ଚର୍ଯ୍ୟ ହେଲେହେଁ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ସେତେବେଳେ ଶିକ୍ଷା ବିଭାଗର ଜିଲ୍ଲା ପରିଦର୍ଶକ ଶ୍ରୀ ହରିହର ମିଶ୍ର, ଶ୍ରୀମତୀ ରମା ଦେବୀ, ଶ୍ରୀ ଶରତ୍ ଚନ୍ଦ୍ର ମହାରଣା, ଶ୍ରୀ ମନମୋହନ ଚୌଧୁରୀ, ଶ୍ରୀ ବିନୋଦ କାନନ୍‌ଗୋ, ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା, ଅନ୍ୟାନ୍ୟ ବହୁ ପୁରୁଷ ଓ ମହିଳା କର୍ମୀ, ବହୁ ଅନ୍ୟାନ୍ୟ ଭଦ୍ରବ୍ୟକ୍ତି ସେ ବିବାହର ବେଳେ ଉପସ୍ଥିତ ଥାଆନ୍ତି । ଏ ପ୍ରକାର ବିବାହ ନୂଆ ନୂଆ ଆରମ୍ଭ ହେଉଥିବାରୁ ଓ ଓଡ଼ିଶାର ଏତେ ବିଶିଷ୍ଟ ବ୍ୟକ୍ତିଙ୍କ ସମର୍ଥନ ପାଉଥିବାରୁ ଖୁବ୍ ଚହଳ ସୃଷ୍ଟି କରିଥିଲା ଓ ଯେଉଁମାନେ ଜାତିଭେଦ ଅସ୍ୱୀକାର କରି ବିଭାହେବେ ସେମାନଙ୍କୁ ସାହସ ଯୋଗାଇଥିଲା ।

## ଛତିଶି

### ଆଦିବାସୀ ସେବା

କନ୍ଧ, ପରଜା, ଗଦବା, ସଉରା, ଭୂୟାଁ, ଜୁଆଙ୍ଗ, ମୁଣ୍ଡା, ସାନ୍ତାଳ, ଓରାମ୍ ଆଦି ଓଡ଼ିଶାରେ ଅନ୍ତତଃ ବାଷଠିଟି ଜାତିର 'ଆଦିବାସୀ' ଲୋକ ଅନ୍ୟମାନଙ୍କ ଅପେକ୍ଷା ବହୁତ ବେଶି ଗରିବ, ଅଶିକ୍ଷିତ, ଶୋଷିତ, ଅବହେଳିତ ଅବସ୍ଥାରେ ରହିଥାନ୍ତି । ଏବେବି ସେମାନେ ଅନେକେ ସେହିପରି । ନିଜ ସରଳତା, ଅଜ୍ଞତା, ମଦ୍ୟପାନଶା ପ୍ରତି ଆସକ୍ତି, ଭବିଷ୍ୟତହୀନତା, ଅପରିଣାମଦର୍ଶିତା, କୁସଂସ୍କାର, ଅନ୍ଧବିଶ୍ୱାସ, ଭୟ ଯୋଗୁଁ ସେମାନେ ଖଟି ମରନ୍ତି, ତାଙ୍କ ଶ୍ରମଜାଳର ଫଳ ଶୋଷକ ଖାଏ, ସେମାନେ ସହଜରେ ପରର ମତାମତ ଭୁଲଭାଲରେ ପଡ଼ନ୍ତି, କୁଚକ୍ରୀ ସ୍ୱାର୍ଥାନ୍ୱେଷୀ

ଲେଖି ଅଣଆଦିବାସୀ ମହାଜନ, ବେପାରୀ ଓ କର୍ମଚାରୀଙ୍କ ଶିକାର ହୁଅନ୍ତି, ତାଙ୍କର ଜମିବାଡ଼ି ବି ପର ହାତକୁ ଯାଏ, ନିଜେ ବଣ ପାହାଡ଼ ଲଣ୍ଡା କରି ହାଣି ଜାଳି ଖୋଳନ୍ତି ନୂଆ ଚାଷଲ ଜମି କରିବାକୁ, ବଣ ଧ୍ୱଂସ କରନ୍ତି, ଜଙ୍ଗଲରୁ ଖାଦ୍ୟପଦାର୍ଥ ଗୋଟେଇ, 'ପୋଡ଼ୁ ଚାଷ'ରୁ କିଛି କିଛି ପାଇ କୌଣସିମତେ ପେଟ ପୂରାନ୍ତି, ରୋଗରେ ଅଭାବରେ ସଢ଼ନ୍ତି । 'ସଭ୍ୟ' ଦୁନିଆଁର ଏକପ୍ରକାର ଜାଣନ୍ତି। ବାହାରେ ଅତୀତଯୁଗର ଆଉ କେଉଁ ଦୁନିଆଁରେ ପାହାଡ଼ ଜଙ୍ଗଲର ପଶୁପକ୍ଷୀଙ୍କ ସଙ୍ଗେ ସେମାନେ ଚଳନ୍ତି, ବାହାରର ଲୋକଙ୍କୁ ଦେଖିଲେ ଡରନ୍ତି, କେହି ଡରେଇ ଧମକେଇ ଚଡାକାଟି ତାଙ୍କଠୁଁ କିଛି ଅନ୍ୟାୟରେ ନେଇଗଲେ ସାଧାରଣତଃ ଡରି ଡରି ପଛେଇ ପଛେଇ ରହନ୍ତି, 'ହାସୁ' ବୋଲି କହିବାକୁ ସାହସ ନ ଥାଏ । ତେଣୁ ଶୋଷକଙ୍କ ଅଦିଉତ ଓ ଉତ୍ପାତ କମେ ନାହିଁ, ବଢ଼େ । କୌପୀନ ପିନ୍ଧା ଫୁର୍‌ଫୁର୍ ମୁଣ୍ଡ ମଳିଧୂଳିଆ ଲୋକ, କାହାଙ୍କ ପରି କେତେ ଜାତିର ଲୋକ ତ ଦାନ୍ତ ଘଷୁ ନ ଥିଲେ, ଝାଡ଼ାଫେରି ସାରି ପାଣି ଘେନୁ ନ ଥିଲେ, ଅତି ଅସ୍ୱାସ୍ଥ୍ୟକର ଅଭ୍ୟାସ ସହିତ ଅତି ଅସ୍ୱାସ୍ଥ୍ୟକର ପରିବେଶ ଭିତରେ ଜନ୍ମୁ ପରି ରହୁଥିଲେ । ସେଠିକି ବାଟଘାଟ ନ ଥିଲା, କେହି ଗଲେ ଗୁଲ୍ ଗୁଲି ପର୍ବତ ଚଢ଼ି ଚଢ଼ି ଘନ ଅରଣ୍ୟ ଭିତରେ ବାଟଟିଏ ଖୋଜି ଖୋଜି କେତେ ଉଠାଣି ଗଡ଼ାଣି, ଖାଲ, ନାଳ ଲଙ୍ଘି ସାପ, ବାଘ, ଭାଲୁ, ହାତୀଙ୍କ ଭିତରେ ଜିବ, ଜୀବନକୁ ପାଣି ଛଡ଼େଇ ଦେଇଥିବ । ଯାଏ ଖାଲି ଶୋଷକ । ବାହାରର ମଣିଷ ସେମାନଙ୍କୁ ଦେଖେ ସେଇ ଆଖିରେ ଯେମିତି ଦେଖନ୍ତି ବଣ-କୁକୁଡ଼ାଙ୍କୁ, ବଣ-ହରିଣଙ୍କୁ, "ବାଗ ପଡନ୍ତା କି, ସ୍ୱା ମାଂସ ମୁଁ ଖାଆନ୍ତି !"

ସେହି ଅନୁନ୍ନତ ଆଦିବାସୀଙ୍କ ଭିତରେ ପୁଣି, ସବୁଠୁଁ ବେଶି ଅନୁନ୍ନତ ଓ ଦୁଃସ୍ଥ ତତ୍କାଳ କୋରାପୁଟ୍ ଜିଲ୍ଲାର ଆଦିବାସୀମାନେ, ତା ସହିତ, ତାକୁ ଲାଗିଥିବା କଳାହାଣ୍ଡି ଜିଲ୍ଲାର ମାଳର, ଫୁଲବାଣୀ ଜିଲ୍ଲାର, ବିଶେଷତଃ ବାଲିଗୁଡ଼ା ସବଡିଭିଜନର ଓ ଗଞ୍ଜାମ ମାଳର, ଉତ୍ତର ଓଡ଼ିଶାରେ କେନ୍ଦୁଝର, ସୁନ୍ଦରଗଡ଼ ଓ ମୟୂରଭଞ୍ଜ ଜିଲ୍ଲାମାନଙ୍କର କେତେକ ମାଳ, ଅଞ୍ଚଳର ଆଦିବାସୀମାନେ । ଆଦିବାସୀଙ୍କ ଜୀବନଧାରା ଓ ଦୃଷ୍ଟିଭଙ୍ଗୀକୁ ବଦଳାଇବାକୁ ଚେଷ୍ଟା କରିବା ଇଂରେଜ ସରକାରଙ୍କ ଶାସନ ନୀତିରେ ନ ଥିଲା, ସେମାନଙ୍କୁ ଶୋଷକଙ୍କ ଦାଉରୁ ରକ୍ଷା କରିବାକୁ ସେମାନେ କିଛି ଆଇନ୍ କରିଥିଲେ, କିନ୍ତୁ ତାହା ନିଜ ଉଦ୍ଦେଶ୍ୟ ସାର୍ଥକ କଲାପରି କାର୍ଯ୍ୟକାରୀ ହେଉଛି କି ନାହିଁ ନିଘାବନ୍ତି ନ ଥିଲେ କି ସେମାନଙ୍କ ଉନ୍ନୟନ ପାଇଁ କିଛି ଯୋଜନାବଦ୍ଧ କାର୍ଯ୍ୟ କରି ନ ଥିଲେ । ଭାରତରେ ଏ ଦିଗରେ ଚେତନା ସଞ୍ଚାର ହେଲା ସ୍ୱାଧୀନତା ଆନ୍ଦୋଳନର ବାତାବରଣରୁ ।

ଓଡ଼ିଶାର ଆଦିବାସୀବହୁଳ ଜିଲ୍ଲାଗୁଡ଼ିକ ଗଡ଼ଜାତ ରାଜାମାନଙ୍କ ଶାସନ ଅଧୀନରେ ରହିଥିଲା, କିନ୍ତୁ ବିଶାଳ ଆଦିବାସୀବହୁଳ କୋରାପୁଟ ଜିଲ୍ଲା ପୂର୍ବେ ଗଡ଼ଜାତ ରାଜ୍ୟ ହୋଇଥିଲେ ସୁଦ୍ଧା ଇଂରେଜ ଶାସନ ଭିତରେ ବିଶାଖାପାଟଣା ଜିଲ୍ଲାରେ ଥିବା ଗୋଟିଏ ପ୍ରଧାନ ଜମିଦାରୀରେ ପରିଣତ ହୋଇଥିଲା । ସେହି ଅତି ଅନୁନ୍ନତ ଓ ଓଡ଼ିଶାର ଦକ୍ଷିଣତମ ଜିଲ୍ଲାର ଜଣେ ଅଧିବାସୀ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ସେଠି ଗୋଟିଏ ସରକାରୀ ଅଫିସରେ କିରାନିଟିଏ ଥିଲେ, ସେ ସ୍ୱାଧୀନତା ଆନ୍ଦୋଳନର ଡାକରେ ଉଦ୍‌ବୁଦ୍ଧ ହେଲେ, ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ ପତ୍ର ଲେଖି ତାଙ୍କ ପରାମର୍ଶ ନେଲେ ଓ ୧୯୨୯ ଜୁଲାଇରେ ଚାକିରିରୁ ଇସ୍ତଫା ଦେଇ କଂଗ୍ରେସରେ ମିଶିଲେ । ସେ ହେଲେ କୋରାପୁଟ ଜିଲ୍ଲାର ବରେଣ୍ୟ କଂଗ୍ରେସ-ନେତା, କାଳକ୍ରମେ ଓଡ଼ିଶାର କଂଗ୍ରେସ ସରକାରରେ ମନ୍ତ୍ରୀ । ଅନ୍ୟାନ୍ୟ କଂଗ୍ରେସ ନେତା ଥିଲେ ଶ୍ରୀ ସଦାଶିବ ତ୍ରିପାଠୀ, ଏକଦା ଶିକ୍ଷକ, ପରେ ଓଡ଼ିଶାର ମନ୍ତ୍ରୀ, ଶ୍ରୀ ରାଧାମୋହନ ସାହୁ । ଏହି ଅତି ଅନୁନ୍ନତ-ଆଦିବାସୀ-ଅଧ୍ୟୁଷିତ ଜିଲ୍ଲାରେ କଂଗ୍ରେସର ମୂଳଦୁଆ ପଡ଼ିଲା । ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କଠାରୁ ଶ୍ରୀ ବିଶ୍ୱାସରାୟ ପରାମର୍ଶ ନେଉଥିଲେ । ସର୍ବପ୍ରଥମେ ଶ୍ରୀ ବିଶ୍ୱାସରାୟ ସେଠି ଆଦିବାସୀଙ୍କ ମନରେ କିଛି ପରିମାଣରେ ସେମାନଙ୍କ ନିଜ ଅବସ୍ଥାର ଉନ୍ନତି ପାଇଁ ଓ ସ୍ୱାଧୀନତା ଆନ୍ଦୋଳନ ପ୍ରତି ଚେତନା ସଞ୍ଚାର କରିଥିଲେ । ଶ୍ରୀ ବିଶ୍ୱାସ ରାୟ ଓ ସେତେବେଳେ କୋରାପୁଟ ଜିଲ୍ଲାରେ ତାଙ୍କ ଅଧ୍ୟକ୍ଷତାରେ ପରିଚାଳିତ କଂଗ୍ରେସ କମିଟି ଜୟପୁର ସହର ପାଖ ନୂଆପୁଟ୍‌ରେ ଗୋଟିଏ କଂଗ୍ରେସ୍ କର୍ମୀ ଶିବିର କରାଇବାକୁ ଚାହିଁଲେ ।

୧୯୩୭ ଶେଷଆଡ଼କୁ ଜୟପୁର ପାଖ ନୂଆପୁଟ ଗାଁରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଚାରିଶହ ପଚିଶଜଣ ଆଦିବାସୀ ଅଣ-ଆଦିବାସୀଙ୍କ ପାଇଁ ଗୋଟିଏ କଂଗ୍ରେସ କର୍ମୀ ଶିବିର ଉଦ୍‌ଘାଟନ କଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ସେହି ସଭାରେ ସଭାପତି ହୋଇଥିଲେ । ଉଦ୍‌ଘାଟନ ପରେ ଗୋପବାବୁ ଫେରି ଆସିଲେ ଓ ଶ୍ରୀ ଗୋକୁଳାନନ୍ଦ ମହାନ୍ତି, ଆଚାର୍ଯ୍ୟ ହରିହର ଦାସ ଓ ଶ୍ରୀ ଶ୍ୟାମସୁନ୍ଦର ନାଏକ ସେହି ଶିବିରର ତତ୍ତ୍ୱ ନେଲେ । ସେହି ନୂଆପୁଟ ଶିବିରଟିକୁ ଆୟୋଜନ କରିଥିଲେ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ଓ କୋରାପୁଟ ଜିଲ୍ଲା କଂଗ୍ରେସ କମିଟିରେ ତାଙ୍କ ସହକର୍ମୀ ବୃନ୍ଦ । ଶ୍ରୀ ବିଶ୍ୱାସରାୟ ସେତେବେଳେ ଓଡ଼ିଶା ଆସେମ୍ବ୍ଲିରେ ମେମ୍ବର ଥିଲେ ଓ କୋରାପୁଟ ଜିଲ୍ଲା କଂଗ୍ରେସ କମିଟିର ସଭାପତି ଥିଲେ ।

ଓଡ଼ିଶାରେ ଗାଁ ଗହଳରେ କର୍ମକେନ୍ଦ୍ର ଖୋଲି ଆଦିବାସୀଙ୍କ ସେବାକାର୍ଯ୍ୟ କେଉଁଠି ପୂର୍ବେ କରାଯାଇ ନ ଥିଲା, ୧୯୩୭ରେ କୋରାପୁଟ୍ ଜିଲ୍ଲାରେ ନୂଆପୁଟ ଶିବିର ହେଲା ତାର ପ୍ରଥମ ପଦକ୍ଷେପ । ସେଠି ଆଦିବାସୀ ଅଞ୍ଚଳରେ ସେଭଳି କିଛି

କିଛି କାର୍ଯ୍ୟ କରିବା ସକାଶେ ନାନା ଗ୍ରାମରୁ ଆସିଥିବା ଆଦିବାସୀ ଯୁବକମାନେ କିଛି ତାଲିମ୍ ପାଇଗଲେ, ଗାଁ ଗହଳରେ ନିଜ ନିଜ ଅଞ୍ଚଳର ଆଦିବାସୀ ଭାଇ ଭଉଣୀଙ୍କୁ ନେତୃତ୍ୱ ଦେଲେ, ବୁଦ୍ଧି ଓ ସାହସ ଦେଲେ, କଂଗ୍ରେସ କାମ ପାଇଁ ସଂଗଠିତ କଲେ । କୋରାପୁଟର ବଣ ପାହାଡ଼ରେ ଯେପରି କଂଗ୍ରେସର ବାର୍ତ୍ତା ହୁ ହୁ କରି ମାଡ଼ିଗଲା, ସେହି ଏକଦା ମୂକ ଜନତା ସ୍ଥାନେ ସ୍ଥାନେ ଶୋଷିତ ହେବାକୁମନା କଲେ, ସାହସ କରି ସରକାରଙ୍କ ମେଡ଼ୁଆର (ଅବାଧ) ହେଲେ, ୧୯୪୨ ଆନ୍ଦୋଳନ ବେଳେ ବହୁ ସଂଖ୍ୟାରେ ହସିହସିରେ ଝାସଦେଇ ଇତିହାସ କଲେ, ଏସବୁ ଆରମ୍ଭ ନୂଆପୁଟ ଶିବିର ବେଳୁ । ତାହାରି ଭିତରୁ ବାହାରିଲେ ଶ୍ରୀ ଲକ୍ଷ୍ମଣ ନାଏକ ଯେ ବିପ୍ଳବୀ ଆନ୍ଦୋଳନ ବେଳେ ଫାଶି ପାଇଲେ ଓ ଅନ୍ୟାନ୍ୟ ବହୁ ନେତା, ଅନେକେ ଆଦିବାସୀ କର୍ମୀ ଓ ନେତା ।

କିନ୍ତୁ, ଗୋଟିଏ ଅନୁନ୍ନତ ଆଦିବାସୀ ଗାଁରେ ସେମାନଙ୍କ ସଙ୍ଗେ ଜଣେ ହୋଇ ରହିବା, ତାଙ୍କରି ଭିତରେ ଥାଇ କାମ କରି ତାଙ୍କ ମଦନିଶା ଛଡ଼େଇବା, ଅଶିକ୍ଷା, ଅଜ୍ଞାନ, ଅନ୍ଧବିଶ୍ୱାସ, ଭୟ ଦୂର କରିବା, ତାଙ୍କ ଶୋଷଣ ରୋକିବା ଓ ସେହିମାନଙ୍କ ଦ୍ୱାରା ଅନ୍ୟାୟ ଶୋଷଣର ପ୍ରତିରୋଧ କରିବା, ତାଙ୍କୁ ନାନା ଧନ୍ଦା ନାନା ସଦ୍‌ବୃତ୍ତି ଶିଖାଇ ତାଙ୍କୁ କାମ କରାଇ ତାଙ୍କର ଅର୍ଜନ ବଢ଼ାଇବା, ତାଙ୍କର ସର୍ବାଙ୍ଗୀନ ଉନ୍ନତି କରିବା, ତାଙ୍କୁ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରିବା, ଏହିସବୁ କାର୍ଯ୍ୟର ବ୍ୟାପକ ପ୍ରସାର ପାଇଁ ତାଙ୍କରି ଭିତରୁ ନେତା ଗଢ଼ି ଠିଆ କରିବା, ଏ କାର୍ଯ୍ୟକୁ ଦୂର ଦୂର ଗାଁକୁ ବିସ୍ତାର କରିବା—ଏହିପରି ସଘନ ଓ ବ୍ୟାପକ ଆଦିବାସୀ ଉନ୍ନୟନ ଆରମ୍ଭ କଲେ ଓଡ଼ିଶାରେ ପ୍ରଥମେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ୧୯୩୯-୪୦ରେ କୋରାପୁଟ ଜିଲ୍ଲାର ରାୟଗଡ଼ା ତାଲୁକର 'କୁଜେନ୍ଦ୍ରି' ଗାଁରେ ଆଶ୍ରମଟିଏ କରି । ଏହା ପୃଷ୍ଠଭୂମିରେ ବି ଥିଲା ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ବାରମ୍ବାର ନିର୍ଦ୍ଦେଶ, ପରାମର୍ଶ ଓ ସାହାଯ୍ୟ । 'କୁଜେନ୍ଦ୍ରି ଆଶ୍ରମ' ଓଡ଼ିଶାର ପ୍ରଥମ ଆଦିବାସୀ ଉନ୍ନୟନ କେନ୍ଦ୍ର, ଆରମ୍ଭ ହୋଇଥିଲା 'ଗାନ୍ଧୀ ସେବାସଂଘ'ର ଅର୍ଥ ସାହାଯ୍ୟରେ । ବାଇଶିବର୍ଷ ବୟସ୍କ ଯୁବକ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ଦେଶସେବାରେ ଉଦ୍‌ବୁଦ୍ଧ ହୋଇ ପହଞ୍ଚିଥିଲେ ବାରିରେ ଗୋପବାବୁଙ୍କ ପାଖେ, ସେଠି ପ୍ରାୟ ଦୁଇବର୍ଷ ତାଲିମ ପାଇଲେ, ଗୋପବାବୁଙ୍କ ତ୍ୟାଗପୂତ ଆଦର୍ଶରେ ଅନୁପ୍ରାଣିତ ହେଲେ, ନିଜ ଘର ପାରଳାଖେମୁଣ୍ଡିକୁ ଆଉ ଫେରି ନ ଯାଇ ବାରିରୁ ସିଧା ଗଲେ କୋରାପୁଟ ଜିଲ୍ଲାରେ କର୍ମକେନ୍ଦ୍ର ଖୋଜିବାକୁ ରାୟଗଡ଼ା, ସେଠି ଆଗ 'ଖଦୀ ଭଣ୍ଡାର'ରେ ରହିଲେ, ଆଦିବାସୀ ଅଞ୍ଚଳ ଓ ଆଦିବାସୀଙ୍କ ଅବସ୍ଥା ବୁଲି ଦେଖିଲେ । ସଉରାମାନେ ସେତେବେଳେ ସବୁବେଳେ ମଦ ନିଶା ଖାଇ ବୁଦ୍ଧିହୀନ, ତାଙ୍କ ଜମି ଠକି ନେଇ ତାଙ୍କୁ ଶୋଷଣ କରୁଛନ୍ତି କୁମୁଟି, ବ୍ରାହ୍ମଣ ଆଦି ଜାତିର ବ୍ୟବସାୟୀ, ଭୂମି ମାଲିକ ଓ

ଅନ୍ୟ ଲୋକେ । ସେମାନେ ପୂର୍ବେ କପା ଲଗାଉଥିଲେ, ସୂତା କାଟୁଥିଲେ, ଲୁଗା ବୁଣୁଥିଲେ, ସେ ପାରମ୍ପରିକ ବେଉସା ବି ଛାଡ଼ିଛନ୍ତି । ମୂଳପାଢ଼ି ଅତି ଅଳ୍ପ, ଅମଦାନୀ ଭୁତ ଠକି ଖାଉଛି, ଶୋଷଣ, ଅଭାବ, ହତଶ୍ରୀଳ ଅବସ୍ଥା ହିଁ ସବୁଆଡ଼େ । ସ୍ଥାନେ ସ୍ଥାନେ କାହିଁ ଯେଉଁ ଅଳ୍ପ କେତେଜଣ ସଓରାଙ୍କ ହାତରେ କିଛି ବେଶି ଅଛି, ଯେପରି କେଉଁ ଗାଁର ମୁଖିଆ (ଗମାଂ) ସେମାନେ ମଦନିଶାରେ ହତଚେତନ, ନିଷ୍କ୍ରିୟ । ତାଙ୍କର ଭିତରେ କୁଜେନ୍ଦ୍ରି ଗାଁରେ ସେ ଆଶ୍ରମ କଲେ । ଗୋପବାବୁଙ୍କୁ ସେ ବାରମ୍ବାର ଚିଠି ଲେଖି ତାଙ୍କ ପରାମର୍ଶ ନେଉଥାନ୍ତି ଓ ସେହି ପରାମର୍ଶ ଅନୁଯାୟୀ କାର୍ଯ୍ୟ କରୁଥାନ୍ତି । ନିଶା ନିବାରଣ, ପ୍ରୌଢ଼ ଶିକ୍ଷା, ନାରୀ ଶିକ୍ଷା, ଛାତ୍ର ଛାତ୍ରୀଙ୍କୁ ଶିକ୍ଷା, କର୍ମୀ ତାଲିମ୍, କପା ଚାଷ, ସୂତା କଟା, ଲୁଗା ବୁଣା, ନାନା ଗ୍ରାମୋଦ୍ୟୋଗ, କଂଗ୍ରେସ୍ ପ୍ରଚାର, ସାହସ ଓ ଆତ୍ମବିଶ୍ୱାସ ସୃଷ୍ଟି, ଭୟ ଦୂରୀକରଣ, ଶୋଷଣ ନିରୋଧ, ଉନ୍ନତ କୃଷି, ସ୍ୱାସ୍ଥ୍ୟ ଓ ଅଭ୍ୟାସରେ ସଂସ୍କାର, ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂରୀକରଣ, ସଂଗଠନ, ଏହିପରି ନାନା କାର୍ଯ୍ୟ ଚମତ୍କାର ଭାବେ ଚାଲିଲା, ଅନ୍ୟାନ୍ୟ ଗ୍ରାମକୁ ବ୍ୟାପିଲା, ଦୂର ଦୂରକୁ ସେହି ବଣ ପାହାଡ଼ରେ ପ୍ରଭାବ ପକାଇଲା ।

ଗୋପବାବୁ ୩୦-୮-୪୭ରେ ଜୟପୁର ଯାଇଥିଲେ, ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ଆଦିଙ୍କ ସଙ୍ଗେ ଆଲୋଚନା କରିଥିଲେ । ଫେରିଆସି ପୁଣି ୧୯୪୭ ଅକ୍ଟୋବରରେ କୁଜେନ୍ଦ୍ରି ଗଲେ, ସେ ଠିକା କାର୍ଯ୍ୟ ଦେଖିଲେ । ସେବର୍ଷ ଗ୍ରାମସେବକର ଅକ୍ଟୋବର ସଂଖ୍ୟାରେ କୁଜେନ୍ଦ୍ରି କେନ୍ଦ୍ର ବିଷୟରେ ତାଙ୍କ ମନ୍ତବ୍ୟ ବାହାରିଲା :—

"କେନ୍ଦ୍ରଟି ୭।୮ ବର୍ଷ କାମ କରି ଗାଁ ଗହଳରେ, ଖାସ୍ କରି ସୌରାଙ୍କ ଭିତରେ ଆଶ୍ଚର୍ଯ୍ୟ ଚହଲ ପକାଇ ଦେଇଛି । ଗାଁକୁ ଗାଁ ଯେ କପାଚାଷ ଛାଡ଼ି ଦେଇଥିଲେ ସେ ପୁଣି କପା କରୁଛନ୍ତି, ସୂତା କାଟୁଛନ୍ତି, ସ୍ତ୍ରୀ ପୁରୁଷ ଲୁଗାବୁଣା ଶିଖୁଛନ୍ତି, ବୁଣୁଛନ୍ତି, ଖଦୀ ପିନ୍ଧୁଛନ୍ତି । ନିଶାକୁ, ସଂସ୍କାରକୁ ଛାଡ଼ୁଛନ୍ତି, ଦମନ ଓ ଶୋଷଣ ବିରୁଦ୍ଧରେ ଲଢ଼ି ଶିଖୁଛନ୍ତି ଓ ସ୍ୱରାଜ ପାଇଁ ଲଢ଼ିଛନ୍ତି ବୋଲି ମନରେ ଗର୍ବ ଅନୁଭବ କରୁଛନ୍ତି । ···ସୌରା ଜାତିର ଅନେକ କର୍ମୀ ବାହାରି ସଂଗଠନ କାମରେ ସାହାଯ୍ୟ କରୁଛନ୍ତି । ଉଭୟ ପୁରୁଷ ଓ ନାରୀକର୍ମୀ ବାହାରୁଛନ୍ତି, ସେଥିରେ ଆନନ୍ଦ ବି ପାଉଛନ୍ତି ।

ସେଠା ସଓରାଙ୍କ ଭିତରେ ତ ଚହଲ ପଡ଼ିଛି, ସଂଲଗ୍ନ ମାନ୍ଦ୍ରାଜ ପ୍ରଦେଶର ସଓରାଙ୍କ ମଧ୍ୟରେ ବି ଆଶାର ବାଣୀ ପହଞ୍ଚି ଯାଇଛି । ଓଡ଼ିଆ ଆଦୌ ବୁଝୁ ନ ଥିବା ସୌରାମାନେ ସେଠୁ ଆସି ଗାନ୍ଧୀକଥା ଶୁଣିବାକୁ ଜମୁଛନ୍ତି । ସଓରାଙ୍କୁ ଛାଡ଼ି କନ୍ଧଙ୍କ ଭିତରେ ଏ ଜାଗରଣ ସଂକ୍ରାମକ ହେଉଛି ।"

ଶ୍ରୀମତୀ ମାଳତୀ ଦେବୀ ଓ ଶ୍ରୀ ନବକୃଷ୍ଣ ଚୌଧୁରୀ ମଧ୍ୟ ସେହି ସମୟରେ ଆଉ ଗୋଟିଏ ଲେଖାରେ କୁଜେନ୍ଦ୍ରି କେନ୍ଦ୍ରର କାର୍ଯ୍ୟ ବିଷୟରେ ଲେଖି ତାକୁ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ୧୯୪୮ ବେଳକୁ କୁଜେନ୍ଦ୍ରି କେନ୍ଦ୍ରରେ ୫ ଖଣ୍ଡି ତନ୍ତ ଚାଲୁଥାଏ । 'ଉତ୍କଳ ଖଦୀମଣ୍ଡଳ'ଙ୍କ ଅର୍ଥରେ ସେଠି ଗୋଟିଏ "ସରଞ୍ଜାମ କାର୍ଯ୍ୟାଳୟ" ବସି ଯାଇଥାଏ, ତାକୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ପରିଚାଳନା କରୁଥାନ୍ତି । ୧୯୪୯ ବେଳକୁ କୁଜେନ୍ଦ୍ରି କେନ୍ଦ୍ର ସହିତ ଆହୁରି ୨୨ଟି ଗାଁରେ ସେ ଅଞ୍ଚଳରେ ରଚନାତ୍ମକ କାର୍ଯ୍ୟ ଚାଲିଥାଏ, ୧୪୦ଟି ପରିବାରରେ ୧୧୩୮ଟି ଅରଟ ଚାଲୁଥାଏ, ୧୨୮୦ ଜଣ କଟାଳି ସୂତା କାଟୁଥାନ୍ତି, ୫୯ଟି ତନ୍ତ ଚାଲୁଥାଏ, ୧୪୩ ଜଣ ଲୁଗା ବୁଣୁଥାନ୍ତି, ୧୪୩ଟି ପରିବାର 'ବସ୍ତ୍ର-ସ୍ୱାବଲମ୍ବୀ' ହୋଇଥାନ୍ତି ଓ ୧୦୨୬ ଜଣ ପୂରା ଖଦଡ଼ଧାରୀ ହୋଇ ଯାଇଥାନ୍ତି । ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ କୁଜେନ୍ଦ୍ରି କେନ୍ଦ୍ର ସେ ଅଞ୍ଚଳର ଆଦିବାସୀ ସଓରା ଓ କନ୍ଧଙ୍କର ଗୋଟିଏ ବଡ଼ ଉଦ୍ୟମ ଓ ଜାଗରଣର କେନ୍ଦ୍ର ହୋଇ ରହିଲା । ୧୯୪୨ ଆନ୍ଦୋଳନରେ ତା ପ୍ରଭାବରେ ଅନେକ ଆଦିବାସୀ ସ୍ତ୍ରୀ ପୁରୁଷ ଆନ୍ଦୋଳନ କରି ଜେଲ୍ ଗଲେ । ୧୯୫୧-୫୨ରେ ରାୟଗଡ଼ା ଓ ଗୁଣୁପୁର ତାଲୁକରେ ଆଦିବାସୀମାନଙ୍କ ତରଫରୁ ଯେଉଁ ବ୍ୟାପକ ଭୂ-ସତ୍ୟାଗ୍ରହ ଆନ୍ଦୋଳନ ହୋଇଥିଲା, ତାର ନେତୃତ୍ୱ ନେଇଥିଲେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ ତାଙ୍କ ସହକର୍ମୀମାନେ । ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଚିରକୁମାର, ଅନଳସ, ପରିଶ୍ରମୀ, ସ୍ୱାର୍ଥତ୍ୟାଗୀ ହୋଇ ଆଜୀବନ ସେବାକାର୍ଯ୍ୟ କରି ଆସିଛନ୍ତି, ଉତ୍କଳ ନବଜୀବନ ମଣ୍ଡଳ କେନ୍ଦ୍ରମାନଙ୍କ ସମେତ ଓଡ଼ିଶାର ଆଦିବାସୀ-ସେବା ପାଇଁ କାର୍ଯ୍ୟ କରୁଥିବା ସବୁ କେନ୍ଦ୍ର ଓ ସବୁ କର୍ମୀଙ୍କ ସହିତ ସମ୍ପୃକ୍ତ ରହି କାର୍ଯ୍ୟ କରିଛନ୍ତି, ଭୂଦାନ କାର୍ଯ୍ୟ କରି କୋରାପୁଟ ଜିଲ୍ଲା ସାକ ଭୂଦାନ କାର୍ଯ୍ୟରେ ଗୋପବାବୁଙ୍କର ଦକ୍ଷିଣହସ୍ତ ହୋଇ କାର୍ଯ୍ୟ କରିଥିଲେ, ଅନ୍ୟାନ୍ୟ ଜିଲ୍ଲାରେ ମଧ୍ୟ । ସେ କେତେବର୍ଷ ହେବ ବାଲିଗୁଡ଼ାରେ ଆଶ୍ରମ କରି କେନ୍ଦ୍ର କରି "ବନବାସୀ ସେବା ସମିତି" ବୋଲି ଅନୁଷ୍ଠାନଟିଏ ଗଢ଼ି ଫୁଲବାଣୀ ଜିଲ୍ଲାରେ ଅନୁନ୍ନତ ଆଦିବାସୀଙ୍କ ଲାଗି ନାନା ଉନ୍ନୟନ କାର୍ଯ୍ୟ କରନ୍ତି, ଏବେବି ଦୈନିକ କୋଡ଼ିଏ ମାଇଲ ଚାଲିଥାନ୍ତି (୧୯୮୨ରେ) । ରାୟଗଡ଼ା ଗୁଣୁପୁର ଅଞ୍ଚଳରେ ଆଦିବାସୀମାନେ ତାଙ୍କୁ ଦେବତା ପରି ମାନୁଥିଲେ, 'ଆଜ୍ଞା' ବୋଲି ଡାକୁ ଡାକୁ ସେଇଆ ତାଙ୍କର ଅପରନାମ ହୋଇ ରହିଛି, —'ଆଜ୍ଞା' ବା 'ବିଶ୍ୱନାଥ ଆଜ୍ଞା' । ଓଡ଼ିଶାରେ ସେହି ଆଦର୍ଶବାଦୀ ସର୍ବସହଣି ଆତ୍ମତ୍ୟାଗୀ କର୍ମୀ ନିଜ ଜୀବିତାବସ୍ଥାରେ ଗୋଟିଏ 'Legend' ହୋଇଛନ୍ତି ।

କର୍ମୀ ହିସାବରେ ସେ ଗୋପବାବୁଙ୍କ ହାତଗଢ଼ା ମଣିଷ, ପ୍ରିୟ ଶିଷ୍ୟ, ତାଙ୍କୁ ଆଜୀବନ ଗୋପବାବୁ ଅତି ଭଲ ପାଉଥିଲେ । ୧୯୪୦ରେ କୁଜେନ୍ଦ୍ରି କେନ୍ଦ୍ର ହେବାପରେ ଓଡ଼ିଶାରେ ନାନା ସ୍ଥାନରେ ଆଦିବାସୀଙ୍କ ସେବାପାଇଁ ଆହୁରି ଆହୁରି

କେନ୍ଦ୍ରଗୁଡ଼ିକ ବସାହେବାକୁ ଲାଗିଲା ଓ ତାହା ପୂର୍ବରୁ ଆଦିବାସୀ-ସେବା କରିବା ପାଇଁ ନାରୀ ଓ ପୁରୁଷ କର୍ମୀମାନଙ୍କ ତାଲିମ୍ ଦିଆଯିବାକୁ ଲାଗିଲା । ଏ ଦାୟିତ୍ୱର ଅଧିକାଂଶ ଭାଗ ତୁଲାଇଲେ 'ଉତ୍କଳ ନବଜୀବନ ମଣ୍ଡଳ' ।

## ଉତ୍କଳ ନବଜୀବନ ମଣ୍ଡଳ ଆରମ୍ଭ

'ଉତ୍କଳ ନବଜୀବନ ମଣ୍ଡଳ' ସଂସ୍ଥାର ଜନ୍ମ ୧୯୪୭ରେ । ଯେଉଁମାନେ ଏହାର ଗଠନ କରିଥିଲେ, ସେମାନେ : ଶ୍ରୀ ସାରଙ୍ଗଧର ଦାସ, ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ କୃପାସିନ୍ଧୁ ହୋତା, ଶ୍ରୀମତୀ ରମା ଦେବୀ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଦେବୀ, ଶ୍ରୀ ଈଶ୍ୱରଲାଲ୍ ବ୍ୟାସ୍, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ଉପେନ୍ଦ୍ର ମହାପାତ୍ର ଓ ଶ୍ରୀ ଭରତ ଚରଣ ମହାନ୍ତି । ୧୯୪୭ରେ ସଂଗଠନ ବେଳେ ଏହାର ପ୍ରଥମ ସଭାପତି ଥିଲେ ଶ୍ରୀ ସାରଙ୍ଗଧର ଦାସ ଓ ସମ୍ପାଦକ ଥିଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ । ଏହାର ଅନ୍ୟାନ୍ୟ ଉଦ୍ୟୋକ୍ତାମାନଙ୍କ ଭିତରେ ଥିଲେ ଶ୍ରୀ ରବି ଘୋଷ, ଶ୍ରୀ ଗୁଣନିଧି ମହାନ୍ତି ଆଦି । ୧୯୫୦-୫୧ରୁ 'ନବଜୀବନ ମଣ୍ଡଳ' ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପରାମର୍ଶରେ ଶ୍ରୀମତୀ ମାଳତୀ ଦେବୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚାଲିଛି । ସେ ଦୁହେଁ, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ରୁଚି ବେହେରା, ଶ୍ରୀ ଜୟକୃଷ୍ଣ ମହାନ୍ତି, ଶ୍ରୀମତୀ ରମା ଦେବୀ, ଶ୍ରୀ ମନମୋହନ ଚୌଧୁରୀ, ଶ୍ରୀ ଜୟକୃଷ୍ଣ ମହାନ୍ତି, ଶ୍ରୀ ମହମ୍ମଦ ବାଜି, ଶ୍ରୀମତୀ ମାଳତୀ ବଶ୍ୱାଳ ଆଦି ଏହି ଅନୁଷ୍ଠାନ ସହିତ ମୂଳରୁ ଘନିଷ୍ଠଭାବେ ସମ୍ପୃକ୍ତ । ଏବେବି ଶ୍ରୀ ରତନ ଦାସ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ଶାନ୍ତି ଦେବୀ ପ୍ରାୟ ତିରିଶି ବର୍ଷ ହେଲା କୋରାପୁଟ ଜିଲ୍ଲାରେ ଆଦିବାସୀଙ୍କ ସେବାକାର୍ଯ୍ୟ କରୁଛନ୍ତି । ସେମାନେ ତାଙ୍କ କର୍ମମୟ ଜୀବନ ଆରମ୍ଭରୁ ପ୍ରାୟ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଏହି ଅନୁଷ୍ଠାନ ସହିତ ସମ୍ପୃକ୍ତ ଥିଲେ । ଓଡ଼ିଶାରେ ଯେତେ ଯେତେ ବେସରକାରୀ କର୍ମୀ ଆଦିବାସୀ ସେବାକାର୍ଯ୍ୟ କରିଛନ୍ତି ବା କରନ୍ତି, ତହିଁରୁ ଅଧିକାଂଶହିଁ 'ନବଜୀବନ ମଣ୍ଡଳ'ର କର୍ମୀ ବା ତା ସହିତ ସମ୍ପୃକ୍ତ । ଦୁର୍ଭେଦ୍ୟ ବଣ ପାହାଡ଼ରେ ଶ୍ୱାପଦସଙ୍କୁଳ ଅବସ୍ଥାରେ ଦୀନହୀନ ଜୀବନ ବଞ୍ଚି, ନାନା ଦୁଃଖ କଷ୍ଟ ସହି, ଆତ୍ମତ୍ୟାଗ କରି, ନାନା ବାଧା ବିରୋଧ ଶତ୍ରୁତାର ମୁହାଁମୁହିଁ ହୋଇ ସେମାନେ କାମ କରି ଆସିଛନ୍ତି, ତହିଁରୁ କେତେ ତ ବାଘ ହାତୀ ହାବୁଡ଼େ ପଡ଼ିଛନ୍ତି, କେତେ ଲୋକ କାମ କରୁ କରୁ ମରିଛନ୍ତି, କେତେଜଣ ଅବସ୍ଥାଚକ୍ରରେ ପଡ଼ି ସେ କାମରୁ ଓହରି ଯାଇଛନ୍ତି, ଆଉ କେତେ ପୁରୁଣା କର୍ମୀ, ପୁରୁଷ ବା ନାରୀ ଏବେବି ସେହି ମାଳରେ ସେହି କାର୍ଯ୍ୟ କରୁଛନ୍ତି । ନାନା ସ୍ଥାନରେ ଆଦିବାସୀଙ୍କ ସଙ୍ଗେ ଗାଁ ଗହଳରେ ରହି ତାଙ୍କ ଆଖି ଫିଟାଇବା, ଅତି ଅନୁନ୍ନତ ଅଶିକ୍ଷିତମାନଙ୍କ ହାତ ଧରି ବାଟ କଢ଼ାଇ ସେମାନଙ୍କୁ ମଣିଷ କରିବା, ଓଡ଼ିଶାରେ ଏ କାର୍ଯ୍ୟ କରିଥାନ୍ତି ସେହିମାନେ ।

୧୯୪୬ରେ 'ନବଜୀବନ ମଣ୍ଡଳ' ଗଢ଼ା ହେଲା ବେଳକୁ ଓଡ଼ିଶାରେ ଆଦିବାସୀ-ସେବା କି ଅବସ୍ଥାରେ ଥିଲା ତାହା ସ୍ମରଣ କରାଯାଇପାରେ ।

## ଭାରତରେ ଆଦିବାସୀ ସେବା—ଇନ୍ଦୁଲାଲ ଯାଜ୍ଞିକ ଓ ଠକ୍କର ବାପା

ଭାରତରେ ସର୍ବପ୍ରଥମେ ଶ୍ରୀ ଇନ୍ଦୁଲାଲ ଯାଜ୍ଞିକ ଗୁଜରାଟରେ 'ମିଲ୍‌ଖେଡ଼ି' ଆଶ୍ରମ ପ୍ରତିଷ୍ଠା କରିଥିଲେ । ଶ୍ରୀ ଅମୃତଲାଲ ଠକ୍କର, ଯେ 'ଠକ୍କର ବାପା' ବୋଲି ପ୍ରାତଃସ୍ମରଣୀୟ ହେଲେ, ସେ ତାଙ୍କରି ଦେଖାଦେଖି ଗୁଜରାଟର ପାଞ୍ଚମାହାଲ୍ ଜିଲ୍ଲାରେ "ଦୋହୋଦ୍-ଝାଲୋଦ୍" ତାଲୁକ୍‌ରେ ଆଦିବାସୀ 'ଭିଲ୍' ଜାତିର ଲୋକଙ୍କ ସେବାକାର୍ଯ୍ୟ ଆରମ୍ଭ କଲେ, ୧୯୨୧ରେ ସେଥିପାଇଁ ସେହି ତାଲୁକରେ ୫ଟି ସ୍ଥାନରେ କେନ୍ଦ୍ର ବସାଇଲେ, ତାଙ୍କ ସଂସ୍ଥାର ନାଁ ଆଗ ଦେଲେ 'ଅକାଳ ନିବାରଣ' ଓ ପଛେ ୫-୧୧-୨୨ରୁ 'ଭିଲ୍ ସେବା ମଣ୍ଡଳ' । ତାଙ୍କ ଉଦ୍ଦେଶ୍ୟ ରହିଲା ସ୍କୁଲ୍ ବସାଇ ଭିଲ୍ ପିଲାମାନଙ୍କୁ ତହିଁରେ ପାଠ ପଢ଼ାଇବା, ସେଥିପାଇଁ କେତୋଟି ଆବାସିକ ପ୍ରାଥମିକ ବିଦ୍ୟାଳୟ ଖୋଲିବା, ଭିଲ୍‌ମାନଙ୍କ ନିଶା ନିବାରଣ, କୁସଂସ୍କାର ଦୂରୀକରଣ, ସେମାନଙ୍କ ଶିକ୍ଷା, ସ୍ୱାସ୍ଥ୍ୟ, ଆର୍ଥିକ ଉନ୍ନତି ପାଇଁ ଉଦ୍ୟମ, ସେମାନଙ୍କୁ ନାନା ଧନ୍ଦା ଶିକ୍ଷାଦେବା, ସେମାନଙ୍କ ଶୋଷଣ ଦୂର କରିବା ପାଇଁ ସମବାୟ ସମିତି ଗଢ଼ି ତାହାର ଜରିଆରେ ସେମାନଙ୍କୁ ସାହାଯ୍ୟ ଦେବା, ସେମାନଙ୍କ ଦ୍ୱାରା ଉତ୍ପନ୍ନ ପଦାର୍ଥ ବିକିବା, ଶ୍ରମିକ-ସମବାୟ ଗଢ଼ିବା, ସେମାନଙ୍କ ଭିତରୁ କର୍ମୀ ସୃଷ୍ଟି କରିବା, ସେମାନଙ୍କ ସେବା କରିବାକୁ କର୍ମୀଙ୍କୁ ତାଲିମ୍ ଦେବା, ଇତ୍ୟାଦି । ତାଙ୍କ କେନ୍ଦ୍ରଗୁଡ଼ିକୁ 'ସେବାଶ୍ରମ' କୁହାଗଲା । ଭାରତର ସ୍ୱାଧୀନତା ପରେ ଯେତେବେଳେ ଭାରତୀୟ ସମ୍ବିଧାନ ତିଆରି ହେଲା ଓ ତହିଁରେ ଥିବା ବ୍ୟବସ୍ଥା ଅନୁସାରେ "କମିସନର ଫର୍ ସିଡୁଲ୍‌ଡ୍ କାଷ୍ଟ୍‌ସ୍ ଏଣ୍ଡ୍ ସିଡୁଲ୍‌ଡ୍ ଟ୍ରାଇବ୍‌ସ୍" ପଦ ସୃଷ୍ଟି ହେଲା ସେତେବେଳେ ତାଙ୍କର ଝାଲୋଦ୍ ଆଶ୍ରମର ସଞ୍ଚାଳକ ଶ୍ରୀ ଶ୍ରୀକାନ୍ତ୍ ସେହି ପଦରେ ପ୍ରଥମେ ନିଯୁକ୍ତ ହେଲେ ।

## ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

ଓଡ଼ିଶାରେ ୧୯୩୯-୪୦ରେ କୁଜେନ୍ଦ୍ରି ଆଶ୍ରମ ପ୍ରତିଷ୍ଠିତ ହେବାପରେ ବା ସେହି ସମୟରେ 'ଭାରତ ସେବକ ସମାଜ'ର କର୍ମୀ ଓ ବିଖ୍ୟାତ ଜନସେବୀ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ରାୟଗଡ଼ାକୁ କେନ୍ଦ୍ର କରି କୋରାପୁଟ ଜିଲ୍ଲାରେ ଗସ୍ତ କରି ଆଦିବାସୀଙ୍କ ବିଷୟରେ ତଥ୍ୟ ସଂଗ୍ରହ କରୁଥିଲେ ଓ ସେମାନଙ୍କ ଅବସ୍ଥା ଦେଖୁଥିଲେ ।

## ରାୟଗଡ଼ା ଠକ୍କର ବାପା ଆଶ୍ରମ

ଶ୍ରୀ ଠକ୍କର ବାପାଙ୍କ ଦ୍ୱାରା ପ୍ରତିଷ୍ଠିତ 'ଭାରତୀୟ ଆଦିମ ଜାତି ସଂଘ'ର ଅର୍ଥରେ ରାୟଗଡ଼ାରେ କେତେକ ଆଦିବାସୀ ଛାତ୍ରଙ୍କୁ ଚଷି ଶିକ୍ଷା ଦେବା ସକାଶେ 'ଠକ୍କର ବାପା ଆଶ୍ରମ" ପ୍ରତିଷ୍ଠିତ ହୋଇଥିଲା ।

## ଓଡ଼ିଶା ସରକାରଙ୍କ ଦ୍ୱାରା ଆଦିବାସୀ ସେବା

ଖାସ ଆଦିବାସୀ ଓ ଅନ୍ୟାନ୍ୟ ଅନୁନ୍ନତ ଜାତିର ଲୋକଙ୍କ ଉପକାର ପାଇଁ କାର୍ଯ୍ୟ କରିବା ସକାଶେ ସରକାର ଗୋଟିଏ ବିଭାଗୀୟ ସଂସ୍ଥା ଖୋଲିବା ଓ ସେ ଦିଗରେ ନଜରଦେବା ସାରା ଭାରତରେ ଓଡ଼ିଶାରେ ହିଁ ପ୍ରଥମେ ଆରମ୍ଭ ହୋଇଥିଲା, ତାହା ହୋଇଥିଲା ଓଡ଼ିଶାରେ ପ୍ରଥମ ନିର୍ବାଚିତ କଂଗ୍ରେସ ମନ୍ତ୍ରିମଣ୍ଡଳ ବେଳେ ଯେତେବେଳେ (୧୯୩୭ ରୁ ୧୯୩୯) ଶ୍ରୀ ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ ଥିଲେ । ଓଡ଼ିଶା ଗୋଟିଏ ନବଗଠିତ ଦରିଦ୍ର ପ୍ରଦେଶ ଥିଲା, କେନ୍ଦ୍ରରୁ ସବ୍ ଭେନସନ୍ (ସାହାଯ୍ୟ) ନେଇ ଚଳୁଥିଲା ଓ ସେତେବେଳେ ସେ ଦିଗରେ ବିଶେଷ କିଛି କାର୍ଯ୍ୟ ହୋଇପାରି ନାହିଁ, କେବଳ ଓଡ଼ିଶା ସଚିବାଳୟରେ 'ବିକାଶ' ବିଭାଗ ଅଧୀନରେ ଆଦିବାସୀମାନଙ୍କ ବିକାଶ ପାଇଁ ଭାବିବାକୁ 'ସେଲ୍' (ଉପବିଭାଗ)ଟିଏ ରହିଲା, କାଳକ୍ରମେ ସେହି ହେଲା ଓଡ଼ିଶାର "ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ" । ୧୯୪୭-୪୮ରୁହିଁ କାର୍ଯ୍ୟକ୍ଷେତ୍ରରେ କିଛି ସରକାରୀ ଆଦିବାସୀ ଉନ୍ନୟନ କାର୍ଯ୍ୟ ହେବାକୁ ଲାଗିଲା, ତା ପୂର୍ବରୁ ନୁହେଁ । ୧୯୪୭-୪୮ ରେ ପ୍ରଥମେ ହେଲା କୋରାପୁଟ ଜିଲ୍ଲାରେ ୪୦ଟି 'ସେବାଶ୍ରମ' ଓ ଫୁଲବାଣୀ ଜିଲ୍ଲାରେ ନୂଆଗାଁରେ ପ୍ରଥମ 'ଆଶ୍ରମ ସ୍କୁଲ୍' । 'ସେବାଶ୍ରମ' ବୋଲି ନା ଠକ୍କର ବାପାଙ୍କ 'ଭିଲ୍ ସେବା ମଣ୍ଡଳ' ସଂସ୍ଥାର 'ସେବାଶ୍ରମ' ନାଁରୁ ଅସିଥାଏ । 'ସେବାଶ୍ରମ' ଓ 'ଆଶ୍ରମ ସ୍କୁଲ୍'ରେ ଆଦିବାସୀ ପିଲା ଯେପରି ଗୀତ ଗାଇ ନାଚ ଖୁସିରେ ପଢ଼ିବେ ସେଥିପାଇଁ ନାଚ ଗୀତ ଲାଗି ବି ବ୍ୟବସ୍ଥା କରି ସାଧାରଣ ସ୍କୁଲମାନଙ୍କରେ ଯେପରି ପାଠ୍ୟକ୍ରମ ଅନୁସାରେ ଶିକ୍ଷା ଦିଆହୁଏ, ସେପରି ପାଠପଢ଼ା ହୁଏ, ସେବାଶ୍ରମରେ ନିଃ ପ୍ରାଃ ସ୍ତରଯାକେ ପାଠ ଓ ଆଶ୍ରମ ସ୍କୁଲରେ ହାଇସ୍କୁଲ୍ ଶ୍ରେଣୀ ଶେଷ ଯାକେ । 'ଆଶ୍ରମ ସ୍କୁଲ୍'ଗୁଡ଼ିକ ଆବାସିକ, ସେଠ ପିଲଙ୍କୁ ଦିଆଯାଏ, ଖାଇବା ପିଇବାକୁ ଦିଆଯାଏ, ପୋଷାକ ଓ ବହିପତ୍ର ଦିଆଯାଏ । କେତେକ 'ସେବାଶ୍ରମ'ମ ଥାଏ ଆବାସିକ, ଅନ୍ୟଗୁଡ଼ିକ ନୁହେଁ । ସେବାଶ୍ରମରେ ପାଠପଢ଼ା ଉପରେ କୃଷିକାମ ଓ ବଗିଚା କାମ ଶିଖା ହୁଏ । ଆଶ୍ରମ ସ୍କୁଲରେ କୃଷି କାମ, ବଗିଚା କାମ ଛଡ଼ା ଦର୍ଜି କାମ, ବଢ଼େଇ କାମ, କମ୍ହାର କାମ ମଧ୍ୟ ଶିକ୍ଷା ଦିଆଯାଏ । ତାହାଛଡ଼ା, ବ୍ୟବସ୍ଥା ହେଲା ଯେ ଆଦିବାସୀ ଛାତ୍ର ଛାତ୍ରୀ ଯେଉଁଠି ଯେଉଁ ସ୍କୁଲରେ ପାଠ ପଢ଼ିଲେ ପଢ଼େ, ସେମାନଙ୍କୁ ମାସକୁ ମାସ 'ଷ୍ଟାଇପେଣ୍ଡ' (ଚଳିବା ପାଇଁ ଆର୍ଥିକ ବୃତ୍ତି) ଦିଆଯିବ ।

ସରକାର କେତେସ୍ଥାନରେ ଆଦିବାସୀ 'କଲୋନି' କରିବା ବି ଆରମ୍ଭ କଲେ, ଆଦିବାସୀ ପରିବାରଙ୍କୁ ସେଠି ରଖି ଜମିବାଡ଼ି ଚାଷ ଉପକରଣ ଆଦି ଯୋଗାଇ ଦେଲେ । କିଛି ଅନ୍ୟାନ୍ୟ ଉନ୍ନୟନ କାର୍ଯ୍ୟ ବି ଆରମ୍ଭ କରାଗଲା । ବହୁବର୍ଷ ପର୍ଯ୍ୟନ୍ତ ଆଦିବାସୀଙ୍କୁ ଶିକ୍ଷା ଦେବା କାର୍ଯ୍ୟ ହିଁ ସରକାରୀ ଆଦିବାସୀ ବିଭାଗର ମୁଖ୍ୟ କାର୍ଯ୍ୟ ହୋଇ ରହିଲା । ଆଦିବାସୀଙ୍କ ରକ୍ଷଣାବେକ୍ଷଣ ପାଇଁ, ଉନ୍ନୟନ ପାଇଁ ଭାରତୀୟ ସମ୍ବିଧାନରେ ନାନା ବ୍ୟବସ୍ଥା ଅଛି, ପ୍ରାଦେଶିକ ସରକାର ବି ସେଥିପାଇଁ ନାନା ଆଇନ୍ କରିଛନ୍ତି । ସରକାରଙ୍କ ବିଭିନ୍ନ ବିଭାଗ ପ୍ରଦେଶର ନାନା ଅଞ୍ଚଳରେ ବିକାଶ, ଉପକାର ଓ ଉନ୍ନୟନ କାର୍ଯ୍ୟ କଲାବେଳେ ଆଦିବାସୀ ବହୁଳ ଅଞ୍ଚଳମାନଙ୍କ ଉପରେ ବିଶେଷ ଦୃଷ୍ଟି ଦେବେ ବୋଲି ଆଶା କରିବା ଯୁକ୍ତିଯୁକ୍ତ ହୁଅନ୍ତା, କାରଣ ସେହି ଅଞ୍ଚଳଗୁଡ଼ିକ ବିଶେଷଭାବେ ଅନୁନ୍ନତ, ସବୁ ବିଭାଗର ସାଧାରଣ କର୍ତ୍ତବ୍ୟ ତୁଲାଇ ତୁଲାଇ ଆଦିବାସୀ ବହୁଳ ଅଞ୍ଚଳ ମଧ୍ୟ ଯେଉଁ ଉପକାର ପାଇବା କଥା ଓ ଯେଉଁ ବିଶେଷ ଦୃଷ୍ଟି ପାଇବା କଥା ତାହାଛଡ଼ା ଖାସ୍ ଆଦିବାସୀ ଗ୍ରାମମଙ୍ଗଳ ବିଭାଗ ତ ଅଛି ହିଁ ।

କିନ୍ତୁ ସରକାରୀ ଉପାୟରେ କାର୍ଯ୍ୟ କରି ଆଦିବାସୀଙ୍କ ନାନା ସମସ୍ୟାକୁ ଦୂର କରିବାକୁ ଉଦ୍ଦେଶ୍ୟ ରଖି ଅଗ୍ରସର ହେଲାବେଳେ ଯାହା ଯାହା ନିହିତ ଅସୁବିଧା ଥାଏ ତାହା ଥିଲା ଓ ଅଛି । ତାହାଛଡ଼ା, —ଖାଲି ଟଙ୍କା ଖର୍ଚ୍ଚ କଲେ କାମ ହୁଏ ନାହିଁ, ସେଥିପାଇଁ ପ୍ରଥମେ ଦରକାର ଉତ୍ସର୍ଗୀକୃତ ନିସ୍ୱାର୍ଥପର କର୍ମୀ, ଯେ ସୁଖସ୍ୱାଚ୍ଛନ୍ଦ୍ୟ ସୁବିଧାକୁ ଛାଡ଼ିଦେଇ ଦୁଃଖକଷ୍ଟ ବିପଦ ବରଣ କରି ଆଦିବାସୀ ଅଞ୍ଚଳରେ କାମ କରିବ, ନିହିତ-ସ୍ୱାର୍ଥ ଶୋଷକମାନଙ୍କ ଶତ୍ରୁତା ସହିବ, ଲାଭ କି ପ୍ରତିଷ୍ଠା ଆଶା ରଖିବ ନାହିଁ । ସେଥିପାଇଁ ଆଦର୍ଶ ଓ ପ୍ରେରଣା ଦରକାର ପଡ଼େ, ବେତନ ଦ୍ୱାରା ଏ କାର୍ଯ୍ୟ ହୁଏ ନାହିଁ । ଦ୍ୱିତୀୟତଃ, ସରକାରୀ ସଂସ୍ଥା ଭିତରେ ଏଭଳି କିଛି ଯୋଜନା ଓ ଆୟୋଜନ ହୋଇପାରି ନାହିଁ ଯେ ଗୋଟିଏ ଦୁଇଟି କର୍ମୀ ଗୋଟିଏ ସାନ ଅଞ୍ଚଳ ଅଡୋଇ ସେଠି ଆଦିବାସୀମାନଙ୍କ ସଙ୍ଗେ ଦିନରାତି ବର୍ଷ ବର୍ଷ ବିତାଇ ସେମାନଙ୍କ ଅଭ୍ୟାସ, ଆଗ୍ରହ, ବଦଭ୍ୟାସ, କୁସଂସ୍କାର, ବୃଥା ଭୟ ଦୂର କରି ସେମାନଙ୍କୁ ସଦ୍‌ବୁଦ୍ଧି ଦେଇ, ଶୋଷଣ ଦାଉରୁ ଜଗି, ସେମାନଙ୍କୁ ନାନା ଧନ୍ଦା ଶିଖାଇ ନାନା ସମସ୍ୟା ସାଧନ ପାଇଁ ଉପାୟ କରୁଥିବେ । ସରକାରୀ ଉନ୍ନୟନ କାର୍ଯ୍ୟସବୁ ୧୯୬୩ ପର୍ଯ୍ୟନ୍ତ ଆଦିବାସୀଙ୍କ ଭିତରେ ଥିବା ଅତି ଅନୁନ୍ନତ ଗୋଷ୍ଠୀମାନଙ୍କ ପାଖକୁ ଗଲା ନାହିଁ, ସେବେଠୁ କିଛି କିଛି ଆରମ୍ଭ ହୋଇଛି । ଅତି ଅନୁନ୍ନତ ଅଞ୍ଚଳକୁ ଯିବା ହିଁ କଷ୍ଟ, ବାଟ ଘାଟ ନାହିଁ, ପାଦରେ ଚାଲି ଚାଲି ଘାଟି ପାହାଡ଼ ଚଢ଼ିବାକୁ ପଡ଼େ, ନାନା ବିପଦ, ସଭ୍ୟତାର ସୁଯୋଗ ସୁବିଧାର ଲେଶମାତ୍ର ନାହିଁ, ତେଣୁ ସରକାରୀ କର୍ମଚାରୀ ସ୍ୱାଭାବିକ ଭାବେ ଚାହେଁ ସଡ଼କ କଡ଼ ଅଞ୍ଚଳରେ କିଛି କାମ କରିବାକୁ । ଭିତରକୁ ଯାଆନ୍ତି ଶୋଷକମାନେ, ନିଜ ସ୍ୱାର୍ଥରେ ।

ତେଣୁ ଉତ୍ସର୍ଗୀକୃତ ନିଷ୍ଠାପର କର୍ମୀ ଦମୂଳକ ବେସରକାରୀ ସଂସ୍ଥା ଅତ୍ୟନ୍ତ ଆବଶ୍ୟକ ଥିଲା, ଏବେ ବି ଆବଶ୍ୟକ ।

## ତାହା ପୂର୍ବରୁ 'କୁଟକେନ୍ଦ୍ର'

ସରକାରୀ ସ୍ତରରେ ବାସ୍ତବ କ୍ଷେତ୍ରରେ କାର୍ଯ୍ୟ ଆରମ୍ଭ ହେବା ପୂର୍ବରୁ କୁଟେନ୍ଦ୍ର କେନ୍ଦ୍ର ଓ ତାହାପରେ ୧୯୪୬ରେ "ଉତ୍କଳ ନବଜୀବନ ମଣ୍ଡଳ" କାର୍ଯ୍ୟ ଆରମ୍ଭ କରି ଦେଇଥିଲା । ୧୯୪୫ରେ ଜାନୁଆରୀରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଜେଲ୍‌ରୁ ଖଲାସ ହୋଇଥିଲେ, ତାଙ୍କ ପୂର୍ବରୁ ଶ୍ରୀମତୀ ମାଲତୀ ଦେବୀ । ସେମାନେ ଅନୁଗୁଳ ସହରରେ ଗୋଟିଏ ସ୍ଥାନରେ କିଛି ଜମି ନେଇ ସେଠି "ବାଜି ରାଉତ ଛାତ୍ରାବାସ" ବୋଲି ଗୋଟିଏ ଅନୁଷ୍ଠାନ କରି ରହିଲେ । "ଉତ୍କଳ ନବଜୀବନ ମଣ୍ଡଳ"ର କାର୍ଯ୍ୟାଳୟ ସେଠି ରହିଲା, ସେଠି କିଛି ଆଦିବାସୀ ଓ ହରିଜନ ଛାତ୍ର ଛାତ୍ରୀ ରହି ଶିକ୍ଷା ପାଇଲେ, କର୍ମୀ ତାଲିମ୍ ପାଇଁ ଉଦ୍ୟମ କରି ହେଉଥାଏ, ବଣାଇରେ ଶ୍ରୀ ଭରତ ଚନ୍ଦ୍ର ମହାନ୍ତି ଗୋଟିଏ ପ୍ରାଥମିକ ସ୍କୁଲ୍ ଖୋଲି କେତେଜଣ ଆଦିବାସୀ ଛାତ୍ରଙ୍କୁ ପାଠ ପଢ଼ାଇଲେ ।

## ଆଦିବାସୀ ସେବାସଂଘ ଯୋଜନା ପାଇଁ ସଭା

୧୯୪୮ରେ ସେବାଗ୍ରାମରେ "ଅଖିଳ ଭାରତ ସର୍ବୋଦୟ ସମାଜ" ଗଠିତ ହେଲା, ତାର ୧୮ଟି ସ୍ପଷ୍ଟ ଲକ୍ଷ୍ୟରୁ ଗୋଟିଏ ଥିଲା 'ଆଦିବାସୀ ସେବା' । ସେହି କାମରେ 'ଶ୍ରୀ ଠକ୍‌କର ବାପା' ଓଡ଼ିଶା ଆସିଥିଲେ । ଓଡ଼ିଶାରେ "ଉତ୍କଳ ନବଜୀବନ ମଣ୍ଡଳ" ତ ଗଢ଼ା ସରିଥିଲା, କିନ୍ତୁ ଶ୍ରୀ ଠକ୍‌କର ବାପା ଚାହିଁଥିଲେ ଯେ ଗୋଟିଏ "ଆଦିବାସୀ ସେବା ସଂଘ" ଗଢ଼ାଯାଉ । ସେହି ବିଷୟରେ ଆଲୋଚନା କରିବାକୁ ଗୋପବାବୁ ସଭାଟିଏ ଡାକିଲେ । ବିଶିଷ୍ଟ ନୃତତ୍ତ୍ୱବିତ୍ ଶ୍ରୀ ନିର୍ମଳ ଚନ୍ଦ୍ର ବସୁଙ୍କୁ କଲିକତାରୁ ଆସିବାକୁ ନିମନ୍ତ୍ରଣ କରା ହୋଇଥିଲା । ସେ ପୂର୍ବେ ଗାନ୍ଧୀଙ୍କ ସେକ୍ରେଟେରୀ ବି ଥିଲେ । ଆଦିବାସୀଙ୍କ ସେବା ସହିତ ସଂପୃକ୍ତ ବା ସେଥିପ୍ରତି ଆଗ୍ରହୀ ସମସ୍ତଙ୍କୁ ନିମନ୍ତ୍ରଣ କରା ହୋଇଥିଲା । '୯୪. ଅକ୍ଟୋବର ୧୦ ତାରିଖରେ କଟକରେ ଗୋପବାବୁଙ୍କ ପୈତୃକ ଘରେ ସଭାଟି ହେଲା, ସେଠି ବହୁତ ଆଲୋଚନା ହେଲା । ତାପରେ ପୁଣି ଅନୁଗୁଳରେ ବହୁତ ଆଲୋଚନା ହେଲା ।

## କର୍ମୀ ତାଲିମ୍ ଆଗ

ଅନୁଭବ କରାଗଲା ଯେ ଆଦିବାସୀ ଅଞ୍ଚଳରେ ଆଦିବାସୀଙ୍କ ସଙ୍ଗେ ଗାଁରେ ପାହାଡ଼ ଜଙ୍ଗଲ ଭିତରେ ରହି ଆଦିବାସୀ ସେବା କରିବାକୁ ଆଗ କର୍ମୀ ତିଆରି ଦରକାର ।

## ବଣେଇରେ କର୍ମୀ ତାଲିମ୍

ନିଷ୍ପତ୍ତି ହେଲ ଯେ ଶ୍ରୀ ଭରତ ଚନ୍ଦ୍ର ମହାନ୍ତି ବଣେଇର ପାହାଡ଼ଭୂୟାଁ ଅଞ୍ଚଳରେ ଗୋଟିଏ ଆଦିବାସୀ-ସେବା କେନ୍ଦ୍ର ଖୋଲିବେ ଓ ସେଠି ରହି ୧୦।୧୫ କର୍ମୀଙ୍କୁ ତାଲିମ୍ ଦେବେ ।

## ବରୀ-ରାମଚନ୍ଦ୍ରପୁରରେ କର୍ମୀ ତାଲିମ୍

ପରେ ବରୀର ରାମଚନ୍ଦ୍ରପୁରରେ ମୌଳିକ ଶିକ୍ଷାକେନ୍ଦ୍ରରେ ଶ୍ରୀ ଫକୀର ମିଶ୍ରଙ୍କ ତତ୍ତ୍ୱାବଧାନରେ ମଧ୍ୟ କେତେ କର୍ମୀ-ଟ୍ରେନିଂ ହୋଇଥିଲି ।

## ଅନୁଗୁଳରେ ନବଜୀବନ ମଣ୍ଡଳ ଦ୍ୱାରା କର୍ମୀ ତାଲିମ୍

ନାରୀକର୍ମୀ ତାଲିମ୍ ସକାଶେ ଅନୁଗୁଳରେ ଶ୍ରୀମତୀ ମାଳତୀ ଦେବୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ ଯୋଡ଼ିଏ ଅନୁଷ୍ଠାନ, "ମହିଳା ତାଲିମ୍ ଶିବିର" ଓ "ମାତୃମଙ୍ଗଳ କେନ୍ଦ୍ର" ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛି । ସବୁପ୍ରକାର କଷ୍ଟ ବରଣ କରି ଉତ୍ସାହ ସହକାରେ ଜଙ୍ଗଲପାହାଡ଼ଘେରା ଆଦିବାସୀ ପଲ୍ଲୀରେ ନାରୀ କର୍ମୀମାନେ କାମ କରିବା ଭଳି ଶାରୀରିକ ଓ ମାନସିକ ଯୋଗ୍ୟତା ଅର୍ଜନ କରିବାକୁ "ମହିଳା ତାଲିମ୍ ଶିବିର"ର ଆରମ୍ଭ । ସେଠି ଦୁଇବର୍ଷ ପର୍ଯ୍ୟନ୍ତ ତାଲିମ୍ ନେଇ ସାରିଲେ ପରେ ଆଉ ଛଅଟି ମାସ କର୍ମକ୍ଷେତ୍ରରେ ତାଲିମ୍ ନେବାପାଇଁ ଶିକ୍ଷାର୍ଥିନୀଙ୍କୁ ପଠା ହୁଏ । ସେହି ଦୁଇବର୍ଷରେ ସେମାନଙ୍କୁ ସାହିତ୍ୟ, ଗଣିତ, ବିଜ୍ଞାନ, ସମାଜଶାସ୍ତ୍ର, ଇତିହାସ, ଭୂଗୋଳ ଆଦି ପାଠ ଦୈନିକ ୪ ଘଣ୍ଟା ଯାଏ ପଢ଼ାଯାଏ, ତାହା ସହିତ ସୂତାକଟା, ଲୁଗାବୁଣା, ଅମ୍ବର ଚରଖା, କୃଷି, ସାଧାରଣ ଚିକିତ୍ସା ଓ ପ୍ରସୂତି ବିଜ୍ଞାନ ବିଷୟରେ ପ୍ରୟୋଜନୀୟ ତାଲିମ୍ ଦିଆଯାଏ । ତାହାଛଡ଼ା ଏ ଅନୁଷ୍ଠାନ ପାଖରେ ଥିବା "ବାଜି ରାଉତ ଛାତ୍ରାବାସ"ର ଛାତ୍ରଛାତ୍ରୀଙ୍କ ସଙ୍ଗେ ଏକାଠି ମିଶି ଏମାନେ ଆଶ୍ରମ ପଦ୍ଧତିରେ ପ୍ରାର୍ଥନା, ସମୂହ ରୋଷେଇ, ଭୋଜନ, ମନୋରଞ୍ଜନ, ପଞ୍ଚପର୍ବାଣି ପାଳନ କରିଥାନ୍ତି । ଶ୍ରୀମତୀ ମାଳତୀ ଦେବୀ ଏମାନଙ୍କୁ ଉପଦେଶ ଦେଇଥାନ୍ତି, କେବେ କେବେ ବାହାରୁ କେହି ବିଶିଷ୍ଟ ଗୁଣୀ, ଜ୍ଞାନୀ, କର୍ମୀ ଆସି ମଧ୍ୟ ଭାଷଣ ବା ଉପଦେଶ ଦେଇଥାନ୍ତି । ଏମାନଙ୍କୁ ଓ ଅଣ-ଆଦିବାସୀ ଅଞ୍ଚଳମାନଙ୍କରେ ଯେଉଁ ମହିଳା କର୍ମୀମାନେ ଗ୍ରାମ-ସେବା କାର୍ଯ୍ୟ କରନ୍ତି ସେମାନଙ୍କୁ ପ୍ରସୂତି ବିଦ୍ୟା, ସ୍ତ୍ରୀ ରୋଗୀ, ଶିଶୁ ରୋଗୀ ଆଦିଙ୍କ ଚିକିତ୍ସା କରିବାକୁ ଶିକ୍ଷାଦେବା ସକାଶେ "ମହିଳା ତାଲିମ୍ ଶିବିର" ପାଖେ "ମାତୃମଙ୍ଗଳ କେନ୍ଦ୍ର" ବୋଲି ଆଉ ଗୋଟିଏ ଅନୁଷ୍ଠାନ ରହିଲା । ଆଖପାଖ ଗାଁମାନଙ୍କରେ ମଧ୍ୟ ଏ ଅନୁଷ୍ଠାନ ସ୍ତ୍ରୀ ଓ ଶିଶୁ ରୋଗୀମାନଙ୍କର ଚିକିତ୍ସା କଲା ଓ ପ୍ରସୂତି କାର୍ଯ୍ୟ କଲା ।

## ଉତ୍କଳ ନବଜୀବନ ମଣ୍ଡଳର ଉଦ୍ଦେଶ୍ୟ

'ଉତ୍କଳ ନବଜୀବନ ମଣ୍ଡଳ' ୧୯୪୭ରେ ପ୍ରତିଷ୍ଠିତ ହୋଇ କାର୍ଯ୍ୟ ଆରମ୍ଭ କଲେ ସୁଦ୍ଧା ଏହା ୮-୭-୧୯୫୦ ରେ ୧୮୬୦ର ୨୧ ନମ୍ବର ଆଇନ୍ ପ୍ରକାରେ ରେଜିଷ୍ଟ୍ରାର ଅଫ୍ କମ୍ପାନୀଜ୍‌ଙ୍କ ଦ୍ୱାରା ରେଜିଷ୍ଟ୍ରୀଭୁକ୍ତ କରାଗଲା । ସେତେବେଳେ ଓ ଅନୁଷ୍ଠାନଟି ଆରମ୍ଭ ହେବାଦିନୁଁ ତାର ଉଦ୍ଦେଶ୍ୟ ରଖା ହୋଇଥିଲା ଏହିପରି :—

"(୧) ଜାତିଧର୍ମ ନିର୍ବିଶେଷରେ ଆଦିବାସୀ ଅଞ୍ଚଳମାନଙ୍କର ବାସିନ୍ଦାମାନଙ୍କର ସେବାକାର୍ଯ୍ୟ କରିବା,

(୨) ଆଦିବାସୀମାନଙ୍କର ସଂସ୍କୃତିରେ ଏପରି ଯାହା ବିଶେଷତ୍ୱ ଅଛି, ଯହିଁରେ ଜାତୀୟ ଜୀବନ ଓ ସଂସ୍କୃତି ଆହୁରି ଅଧିକ ମୂଲ୍ୟବାନ୍ ହୋଇପାରିବ ତାକୁ ଅଧ୍ୟୟନ କରିବା ଓ ସଂରକ୍ଷଣ କରିବା,

(୩) ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ସାଙ୍ଗଠନିକ କାର୍ଯ୍ୟ ଚାଲୁ ରଖିବା ଯେପରି ସବୁ ପ୍ରକାର ଶୋଷଣରୁ ମୁକ୍ତ ହେବାପାଇଁ ଓ ସର୍ବୋଦୟ ଭିତ୍ତିରେ ସେମାନଙ୍କ ସାମାଜିକ ସଙ୍ଗଠନ ବଢ଼ି ଉଠିଲାଭଳି ତାହା ସେମାନଙ୍କୁ ସାହାଯ୍ୟ କରିବ ।" (୧୯୫୭ରେ 'ଉତ୍କଳ ନବଜୀବନ ମଣ୍ଡଳ' ରେଜିଷ୍ଟର୍ଡ଼ ହେବା ସକାଶେ ପ୍ରସ୍ତୁତ ହୋଇଥିବା ତାର "ମେମୋରାଣ୍ଡମ୍ ଅଫ୍ ଆସୋସିଏସନ୍"ର ଓଡ଼ିଆ ଅନୁବାଦ ।)

## ଆଦିବାସୀ ସେବା ପାଇଁ ଗ୍ରାମସେବା କେନ୍ଦ୍ରମାନ ପ୍ରତିଷ୍ଠା

ଆଗେ ଅଳ୍ପ କେତୋଟି ଆଦିବାସୀ ଜିଲ୍ଲାରେ କେତୋଟି କେନ୍ଦ୍ର, କ୍ରମେ ନବଜୀବନ ମଣ୍ଡଳର କର୍ମୀସଂଖ୍ୟା ବଢ଼ିଲେ ଓ ଆର୍ଥିକ ସମ୍ବଳ ହେଲେ ସେପରି ଆହୁରି ଅଧିକ ଜିଲ୍ଲାରେ କେନ୍ଦ୍ର ଓ ଆଗଠୁ ଅଧିକ କେନ୍ଦ୍ର କରାଗଲା । ସେସବୁ ଜିଲ୍ଲାରେ ମଧ୍ୟ, କେଉଁ ଅଞ୍ଚଳ ଅତି ଅନୁନ୍ନତ ଅଥବା କେଉଁଠି ଅନ୍ୟ କୌଣସି ବିଶେଷ ସମସ୍ୟା ଯୋଗୁଁ ସେପରି କେନ୍ଦ୍ର ଆଗ ଆବଶ୍ୟକ ଅଛି, ପୁଣି ପକ୍ଷାନ୍ତରରେ, ସେଠି କେନ୍ଦ୍ର ଖୋଲିବା ଅନ୍ୟାନ୍ୟ ନାନା ବିଗ୍ଭରରୁ ସମ୍ଭବ ହେବ କି ନାହିଁ ଏସବୁ ବୁଝି ବିଗ୍ଭରି କେନ୍ଦ୍ରମୁଡ଼ିଏ ଖୋଲା ହେବାକୁ ଲଗିଲା । ପ୍ରତି କେନ୍ଦ୍ରରେ ରହି କାର୍ଯ୍ୟ କରିବାକୁ ତାଲିମ୍‌ପ୍ରାପ୍ତ କର୍ମୀ ବରଗାଗଲେ, କେଉଁଠାକୁ ପୁରୁଷ କର୍ମୀ, କେଉଁଠାକୁ ନାରୀ କର୍ମୀ । ସାଧାରଣତଃ ଗୋଟିଏ କେନ୍ଦ୍ର ମାର୍ଫତ୍‌ରେ ଜଣେ କର୍ମୀ ରହିଲେ, କିନ୍ତୁ ଅବସ୍ଥାବିଶେଷରେ ସ୍ଥାନେ ସ୍ଥାନେ ଯୋଡ଼ିଏ ନାରୀକର୍ମୀ ବି ରହିଲେ, ଯଦିଚ ବାଘହାତୀ ବଣପାହାଡ଼ମସ୍ତ ଦୁର୍ଭେଦ୍ୟ ମାଳ ଭିତରେ ସ୍ଥାନେ ସ୍ଥାନେ କେବଳ ଜଣେ ମାତ୍ର

ନାୟକର୍ମୀ ରହି କାର୍ଯ୍ୟ କଲେ । ଏପରି ଅଞ୍ଚଳ ବି ଥାଏ, ଯେଉଁଠାକୁ ସରକାରୀ କର୍ମଚାରୀ ସୁଦ୍ଧା କ୍ୱଚିତ୍ ଯାଉଥିଲେ, ଯିବାକୁ ରାସ୍ତା ନ ଥାଏ, ଯାନବାହନ ବା କାହିଁ, ଭୟଙ୍କର ଅରଣ୍ୟଭିତରେ ବାରମ୍ବାର ଗୋଟା ଗୋଟା ପର୍ବତ ଚଢ଼ି ଓହ୍ଲାଇ ପୁଣି ଚଢ଼ି ପାତାଳୀ ଖୋଲରେ ପଶି ବାହାରି ଖରସ୍ରୋତା ପାହାଡ଼ି ନାଳରେ ପଶି ବଣରେ ଅନ୍ଧସନ୍ଧରେ ଚାଲି ଚାଲି ନାଳ ସଢ଼କରୁ ଗଲେ ଦିନେ ବା ଦିନେ ସେଠି ପହଞ୍ଚି ହୁଏ । ଆରମ୍ଭରୁ ହିଁ କୋରାପୁଟ ଜିଲ୍ଲାରେ ଓ ଗଞ୍ଜାମ ମାଳରେ ସେପରି କେତେ ଭୟଙ୍କର ଓ ଦୁର୍ଭେଦ୍ୟ ଅଞ୍ଚଳରେ ବାଘହାତୀ ମଣିଷ ମାରୁଥିବା ଅଞ୍ଚଳରେ ଅତି ଅନୁନ୍ନତ ଅଶିକ୍ଷିତ ମଦ୍ୟାସକ୍ତ ଶୋଷିତ ଦରିଦ୍ର ଆଦିବାସୀମାନଙ୍କ ଗାଁରେ ସେପରି କେନ୍ଦ୍ରମାନ ବସିଗଲା ।

କର୍ମୀ ସେଠି ପହଞ୍ଚନ୍ତି, କାହାରି ଘର ପିଣ୍ଡାରେ ବସା କରନ୍ତି, ଆଦିବାସୀଙ୍କ ଖାଦ୍ୟ ମାଣ୍ଡିଆ ପେଜ, ଶାଗଡାଳି, ଅମ୍ବକୋଇଲି ଜାଉ ବି ଖାଆନ୍ତି, ଭାତ ଖାଆନ୍ତି, ତାଙ୍କ ସଙ୍ଗେ ମିଶି ଯାଆନ୍ତି । 'ମଣ୍ଡଳ'ରୁ କିଛି ଅର୍ଥ ସାହାଯ୍ୟରେ ସ୍ଥାନୀୟ ଲୋକଙ୍କ ସାହାଯ୍ୟ ସହଯୋଗରେ ଗଢ଼ା ହୁଏ ଗୋଟିଏ ଟାଳି ଓ ମାଟିର ଆଶ୍ରମ-କୁଟୀର, ଯେଉଁଟି ବହୁ ପ୍ରୟୋଜନ ମେଣ୍ଟାଇବ, କର୍ମୀ ସେଠି ବସା କରିବେ, କେନ୍ଦ୍ରର କାର୍ଯ୍ୟ ପାଇଁ ଯାହା ଯାହା ଜିନିଷ ଆବଶ୍ୟକ ତାହା ରହିବ, ପୁଅ ଝିଅ ବସାଉଠା କରିବେ, ପାଠ ପଢ଼ିବେ, ନାନା କଥା ଶିଖିବେ, ପିଣ୍ଡାରେ ଓ ଦାଣ୍ଡରେ ସ୍ଥାନୀୟ ଆଦିବାସୀ ଜୁଟିବେ, ନାନା ଧନ୍ଦା ଶିକ୍ଷା ଦିଆହେବ, ନାନା ବିଷୟରେ ଆଲୋଚନା ହେବ । ଆଶ୍ରମଟି ସେମାନଙ୍କ ପାଇଁ ଓ ତାଙ୍କର ଆପଣାର । କର୍ମୀଙ୍କୁ ସେମାନେ ଡାକନ୍ତି 'ଭାଇ' ବା 'ଅପା' ।

ସବୁ ଆଦିବାସୀ ଏକା ପ୍ରକାର କି ଏକା ଅବସ୍ଥାରେ ନାହାନ୍ତି, ସମସ୍ତଙ୍କର ମୋଟାମୋଟି ସାଧାରଣ ସମସ୍ୟା ତ ଅଛି, ବିଭିନ୍ନ ସ୍ଥାନର ଆଦିବାସୀଙ୍କର ବିଶିଷ୍ଟ ସମସ୍ୟା ବି ଅଛି । ସ୍ଥଳବିଶେଷରେ ବିଭିନ୍ନ କେନ୍ଦ୍ରରେ ବିଭିନ୍ନ ସମସ୍ୟା ବିଶିଷ୍ଟ ଅଗ୍ରାଧିକାର ପାଏ ।

ଯେଉଁ ଗାଁରେ କେନ୍ଦ୍ରଟି ଅବସ୍ଥିତ ସେହି ଗାଁଟି କର୍ମୀଙ୍କ କାର୍ଯ୍ୟ ପରିସରର କେନ୍ଦ୍ର, କିନ୍ତୁ ସେ ଗାଁ ଓ ସେଠୁ ଯେଉଁ ଗାଁଗୁଡ଼ିକ ବୁଲି ହୋଇ ପାରିବ, ଅତି ଦୂର ନୁହେଁ, ସେସବୁ ଗାଁ ତାଙ୍କ କାର୍ଯ୍ୟ ପରିସରଭୁକ୍ତ । ତା ବାହାରୁ ମଧ୍ୟ, ଦୂରରୁ ଦୂରରୁ କାଳକ୍ରମେ ଆଦିବାସୀମାନେ ସେଠିକୁ ଆସନ୍ତି, ଦେଖିଶିଖି ନିଜ ନିଜ ଗାଁରେ ସେପରି କରିବାକୁ ଆରମ୍ଭ କରନ୍ତି ।

## ଆଦିବାସୀ ଗ୍ରାମସେବା କେନ୍ଦ୍ରମାନଙ୍କ ନିୟମିତ କାର୍ଯ୍ୟାବଳୀ

ଅତି ଅନୁନ୍ନତ ଆଦିବାସୀ ଅଞ୍ଚଳମାନଙ୍କରେ ନିମ୍ନଲିଖିତ କାର୍ଯ୍ୟଗୁଡ଼ିକ ହୁଏ :

(୧) ଆଦିବାସୀଙ୍କ ସଙ୍ଗେ ପରିଚିତ ହେବା, ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠା, ସେମାନଙ୍କ ଶ୍ରଦ୍ଧା ଓ ବିଶ୍ୱାସ ଅର୍ଜନ, ସେମାନଙ୍କ ଉପକାର ପାଇଁ ଅକ୍ଳାନ୍ତ ଶକ୍ତିଉଦ୍ୟମ ।

(୨) ସେମାନଙ୍କ ସମସ୍ୟା ଅଧ୍ୟୟନ, ତାର ସମାଧାନ ପାଇଁ ଉପାୟ ଚିନ୍ତା, ଯଥାସାଧ୍ୟ ଉଦ୍ୟମ । ଜମିଜମା ସମସ୍ୟା, ଜଙ୍ଗଲ ସମସ୍ୟା, ଋଣବନ୍ଧକ ସମସ୍ୟା, ଜୋଗ ସମସ୍ୟା ଆଦି ମଧ୍ୟ ଏହାର ଅନ୍ତର୍ଭୁକ୍ତ ।

(୩) ଗ୍ରାମ ଓ ଗୃହମାନଙ୍କ ପରିଷ୍କାର ନିଜେ କରିବା ଓ କରାଇ ଶିଖାଇବା ।

(୪) ଦୈନନ୍ଦିନ ବ୍ୟକ୍ତିଗତ ଅଭ୍ୟାସମାନଙ୍କରେ ସ୍ୱାସ୍ଥ୍ୟରକ୍ଷା ଉପଯୋଗୀ ନିୟମ ପାଳନ ଶିକ୍ଷା ଦେବା :— ଘର ଭିତରେ କି ପିଣ୍ଡା ଉପରେ ପରିସ୍ରା ନ କରିବା, ଘର ଅଗଣାରେ, ଗାଁ ଦାଣ୍ଡରେ ଝାଡ଼ା ନ ବସି ଟିକିଏ ଦୂରରେ ଝାଡ଼ା ବସିବା ବା 'ଟ୍ରେଞ୍ଚ୍ ପାଇଖାନା' ବ୍ୟବହାର କରିବା, ଝାଡ଼ା ଫେରି ସାରି ଡାଳପତ୍ରରେ ପୋଛି ନ ହୋଇ ପାଣିରେ ଶୌଚ ହେବା, 'ହାତମାଟି' କରି ସଫା ହେବା, ଲୁଗା ବଦଳିବା, ତେଲ ଲଗାଇ ଗାଧୋଇବା, ପୁରୁଷମାନେ ବାଳ କାଟିବେ, ମୁଣ୍ଡ କୁଣ୍ଡେଇବେ, ସ୍ଥିର ହେବେ, ଝିଅମାନେ, ପିଲା ବା ବଡ଼, ତେଲ ଲଗାଇ ମୁଣ୍ଡକୁଣ୍ଡାଇ ମୁଣ୍ଡ ବାନ୍ଧିବେ, କି ପୁରୁଷ କି ସ୍ତ୍ରୀ ଯାହା ପିନ୍ଧିଲେ ଲୁଗାପଟା ହାତରେ ସଫା କରୁଥିବେ, ସଫା ରଖୁଥିବେ, ଝିଅମାନେ ସ୍ତ୍ରୀ ଲୋକମାନେ ଭଲ କରି ଲୁଗାପଟା ପିନ୍ଧି ଶିଖିବେ, ଘର ଓଳାଅ ହେଉଥିବ, ଲିପା ହେଉଥିବ, ଚୂଲିରୁ ପାଉଁଶ କଢ଼ା ହେଉଥିବ, ଘର ଭିତର ସ୍ୱାସ୍ଥ୍ୟକର ରଖା ହେଉଥିବ, ବାସି ମାଂସ, ଶୁଖିଲା ପୋକମଡ଼ା ମାଂସ, ଅଧ-କଞ୍ଚା ମାଂସ କେହି ଖାଇବେ ନାହିଁ, ଫୁଟା ପାଣି ପିଇବା ଅଭ୍ୟାସ କରିବେ, ଯେଉଁ ନାଳରୁ ପାଣି ପିଅନ୍ତି ସେ ନାଳପାଣିରେ ଅସନା ପକାଇବେ ନାହିଁ, କାଟିଥିବା ଗୋରୁ ମଇଁଷିଙ୍କ ଅନ୍ତ୍ରପୁଟା ରକ୍ତ ଆଦି ପକାଇବେ ନାହିଁ, କାଦୁଅାବିଲରୁ ପାଣି ଆଣି ପିଇବେ ନାହିଁ, କୂଅ ବା ଚୂଆ ଖୋଳି ପାଣି ପିଇବେ, ମାଛି ବେଢ଼ିଥିବା ଖାଦ୍ୟ, କୁକୁର ଅଇଁଠା ଖାଦ୍ୟ ଏସବୁ ଖାଇବେ ନାହିଁ । ଏକା ଘରେ ମଣିଷ କୁକୁର, ଘୁଷୁରି ଚଳିବେ ନାହିଁ ଇତ୍ୟାଦି ।

(୫) ମଦ ଆଦିବାସୀମାନଙ୍କର ପ୍ରଧାନ ଶତ୍ରୁ, ଏକଥା ସେମାନଙ୍କର ହୃଦୟଙ୍ଗମ କରାଇବା ଓ ନିବାରଣ ପାଇଁ ପ୍ରାଣପଣେ ଚେଷ୍ଟା କରିବା ।

(୬) ପୁଅ ଝିଅ ସବୁ ପିଲାଙ୍କର ଉପଯୁକ୍ତ ଯତ୍ନ ନେବା । ସେମାନଙ୍କୁ ଭଲ ବୁଦ୍ଧି ଭଲ ଅଭ୍ୟାସ ଶିଖାଇବା, ସଫା ସୁତୁରା ରଖାଇବା, ତାଙ୍କୁ ଉପଦେଶମୂଳକ କାହାଣୀ କହିବା, ସମବେତ ପ୍ରାର୍ଥନା, ବ୍ୟାୟାମ, ଗୀତ, ନାଚ, ଖେଳ ଶିଖାଇବା ଓ ସେମାନେ ନିଜ ଇଚ୍ଛା ଅନୁସାରେ ମଧ୍ୟ ଗାଆନ୍ତୁ, ନାଚନ୍ତୁ, ଖେଳନ୍ତୁ ବୋଲି ଉତ୍ସାହିତ କରିବା, ମଝିରେ ମଝିରେ ସେମାନଙ୍କୁ ସୁଲଭ ସୁସ୍ୱାଦୁ ଖାଦ୍ୟ ତିଆରି କରି ଖିଆଇବା, ସେମାନଙ୍କୁ ନିୟମିତ ଭାବେ ପାଠ ପଢ଼ାଇବା ଓ ଦିନରେ, ସନ୍ଧ୍ୟାରେ କିଛି କିଛି ଘଣ୍ଟା ପାଠ ପଢ଼ି ବସିବା ଅଭ୍ୟାସ କରାଇବା, ସେମାନଙ୍କୁ ଛବି ଆଙ୍କିବା, ମାଟିରେ ମୂର୍ତ୍ତି ଗଢ଼ିବା ଆଦି ସରଳ ସୃଜନଶୀଳ କାର୍ଯ୍ୟରେ ଅଭ୍ୟସ୍ତ କରିବା, ସେମାନଙ୍କୁ ସୂତା କାଟିବା, ବଗିଚା କରିବା, ସିଲେଇ କରିବା ଆଦି ଧନ୍ଦା ଶିଖାଇବା । ସେମାନଙ୍କୁ ନିର୍ଭୀକ, କୁସଂସ୍କାରବିହୀନ, ସଭ୍ୟ ଶିକ୍ଷିତ, ଶୃଙ୍ଖଳିତ ଜୀବନଯାପନ ପାଇଁ ତାଲିମ୍ ଦେବା ଓ ସେମାନଙ୍କ ମନରେ ସ୍ୱଦେଶପ୍ରୀତି, ଜନସେବା ପାଇଁ ଅନୁରକ୍ତି ଆଦି ଚେତନା ସୃଷ୍ଟି କରିବା, 'ବାଲ୍‌ଓ୍ୱାଡ଼ି' କହିବା ।

(୭) ନାରୀଶିକ୍ଷା ଓ ପ୍ରୌଢ଼ଶିକ୍ଷା ପାଇଁ ଉଦ୍ୟମ କରିବା । ଦେଶ ବିଦେଶ ବିଷୟରେ, ଅନ୍ୟାନ୍ୟ ବିଷୟରେ ସେମାନଙ୍କ ସାଧାରଣ ଜ୍ଞାନ ବଢ଼ାଇବା, ନୈଶ ବିଦ୍ୟାଳୟ କରିବା ।

(୮) ନାରୀମାନଙ୍କୁ ନାରୀକର୍ମୀ ହିଁ ତାଲିମ୍ ଦିଅନ୍ତି, ନାନା କଥା ଶିଖାଇବାକୁ ଥାଏ । ଅନେକ ଆଦିବାସୀ ନିଆଁରେ ପୋଡ଼ି ଖାଇବା ଓ ପାଣିରେ ଖାଲି ସିଝାଇଦେଇ ଖାଇବା ଛଡ଼ା ଅନ୍ୟ ପ୍ରକାର ରୋଷେଇ ଜାଣନ୍ତି ନାହିଁ, ସେମାନଙ୍କୁ 'ବଘାରିବା' ଜଣା ନାହିଁ, ଅନେକ ପ୍ରକାର ପରିବା ବି ଦେଖିନାହାନ୍ତି କି ଖାଇନାହାନ୍ତି । ସ୍ଥାନେ ସ୍ଥାନେ କର୍ମୀ ସେସବୁ ଆଣି ରାନ୍ଧି ଖୁଆନ୍ତି, ରୋଷେଇ ଶିଖାନ୍ତି, ବଗିଚା କରି ପରିବା ଲଗାଇ ଫଳାଇ ଚାଷ କରିବା ଓ ଖାଇବା ଅଭ୍ୟାସ କରାନ୍ତି । ଘର ଭିତର ବାହାର ସଫା କରିବା, ସଜାଡ଼ି ରଖିବା, ସ୍ୱାସ୍ଥ୍ୟକର ନୀରୋଗ ଜୀବନଯାପନ କରିବା, ସ୍ୱାସ୍ଥ୍ୟକର ଉପାୟରେ ପ୍ରସୂତି କରାଇବା, ମା ଓ ପିଲାଙ୍କ ଯତ୍ନ ନେବା, ପିଲାଙ୍କୁ ମଣିଷ କରିବା, ରୋଗ ହେଲେ ଉପଯୁକ୍ତ ପ୍ରକାରେ ଯତ୍ନ ନେବା, ରୋଗ ପ୍ରତିଷେଧକ ଉପାୟ କରିବା, କୁସଂସ୍କାର ଓ ଅନ୍ଧବିଶ୍ୱାସ ଛାଡ଼ିଦେଇ ରୋଗକୁ ଔଷଧ ଦ୍ୱାରା ଚିକିତ୍ସା କରାଇବାକୁ ଆଗ୍ରହୀ ହେବା, ଏପରି ନାନା କଥା ଶିଖାଇବାକୁ ପଡ଼େ ।

(୯) ରୋଗ ଚିହ୍ନିବାକୁ ଚେଷ୍ଟା କରିବା, ତାର ପ୍ରତିଷେଧକ ଓ ପ୍ରତିକାର ଉପାୟ କରିବା, ସାଧାରଣ ଔଷଧ ବିତରଣ କରିବା ।

(୧୦) ଗ୍ରାମଲୋକଙ୍କ ବୈଷୟିକ ଉନ୍ନତି ପାଇଁ ଓ ସେମାନଙ୍କୁ ଯଥାସମ୍ଭବ ସ୍ୱାବଲମ୍ବୀ କରାଇବା ପାଇଁ ସେମାନଙ୍କୁ ଉନ୍ନତ ପ୍ରଣାଳୀରେ କୃଷି, ଫଳ ଚାଷ, ପନିପରିବା ଚାଷ, କପା ଚାଷ, ସୂତାକଟା, ଲୁଗା ବୁଣା, ପ୍ରକାର ପ୍ରକାର ଗ୍ରାମୋଦ୍‌ଯୋଗ, ଏପରି ନାନା ଧନ୍ଦା ଶିଖାଇବା, ତାଙ୍କ ଦ୍ୱାରା ଏସବୁ କରାଇବାକୁ ଚେଷ୍ଟା କରିବା । ଯେପରି ନାନା ଅନ୍ଧବିଶ୍ୱାସ ଯୋଗୁଁ, କୁସଂସ୍କାର ଯୋଗୁଁ ସେମାନଙ୍କ ଅର୍ଥହାନି ନ ଘଟେ, ସେମାନେ ଋଣଗ୍ରସ୍ତ ନ ହୁଅନ୍ତି, ସାହୁକାର କବଳରେ ପଡ଼ି ଶୋଷିତ ନ ହୁଅନ୍ତି ସେ ବିଷୟରେ ସେମାନଙ୍କୁ ସଚେତ ଓ ଯତ୍ନଶୀଳ କରାଇବା ।

(୧୧) କିଣାବିକା ବେଳେ ବା ଶୋଷକମାନଙ୍କ ମିଥ୍ୟା କପଟ ପ୍ରଲୋଭନରେ ସେମାନେ ଯେପରି ଶୋଷିତ ନ ହୁଅନ୍ତି ସେଥିପାଇଁ ସେମାନଙ୍କୁ ସଦ୍‌ବୁଦ୍ଧି ଦେବା, ନଜର ରଖିବା । ଅନ୍ୟାୟ ଅତ୍ୟାଚାର ଶୋଷଣ ବିରୁଦ୍ଧରେ ପ୍ରତିରୋଧ ଚେତନା ବୃଦ୍ଧି ସାହସ ସଂଗଠନ ସୃଷ୍ଟି କରିବା, ଶୋଷଣ ବନ୍ଦ କରିବା ।

(୧୨) ଆଦିବାସୀ-ସେବା ପାଇଁ ସେମାନଙ୍କ ନିଜ ମଧ୍ୟରେ ଚେତନା, କର୍ମୀ ଓ ନେତୃତ୍ୱ ସୃଷ୍ଟି କରିବା ।

(୧୩) ଆଦିବାସୀ ଅଞ୍ଚଳରେ ଘରପୋଡ଼ି, ମଡ଼କ, ଶାନ୍ତିଭଙ୍ଗ ଆଦି ହେଲେ ସାହାଯ୍ୟ କରିବା, ଇତ୍ୟାଦି

ଆଦିବାସୀ-ସେବା ପାଇଁ "ଉତ୍କଳ ନବଜୀବନ ମଣ୍ଡଳ"ର କେନ୍ଦ୍ରମାନଙ୍କ ଛଡ଼ା ଗାନ୍ଧୀ-ସେବା ସଂଘ, ଉତ୍କଳ ଦେବୀ ମଣ୍ଡଳ, ଉତ୍କଳ କସ୍ତୁରବା ଗାନ୍ଧୀ ସ୍ମାରକନିଧି ଆଦି ସଂସ୍ଥାମାନଙ୍କର ଅର୍ଥ ସାହାଯ୍ୟରେ ଯେତେ ଗ୍ରାମସେବା କେନ୍ଦ୍ର ଆଦିବାସୀ ଅଞ୍ଚଳରେ ରହିଲ ସବୁଠି ସାଧାରଣ କାର୍ଯ୍ୟକ୍ରମ ଏହିପରି ।

୧୯୫୨ରୁ ୧୯୫୪ରେ କୋରାପୁଟ ଜିଲ୍ଲାର ରାୟଗଡ଼ା ସବ୍‌ଡିଭିଜନରେ ମୁଁ ଏସ୍. ଡି. ଓ. ଥିଲବେଳେ ସେତେବେଳେ ରାୟଗଡ଼ାରେ କାର୍ଯ୍ୟ କରୁଥିବା ଏପରି ଆଦିବାସୀ ସେବାକେନ୍ଦ୍ରଗୁଡ଼ିକର କର୍ମୀମାନଙ୍କୁ ଓ ସେମାନଙ୍କ କାର୍ଯ୍ୟକୁ ମୁଁ ପ୍ରଥମେ ଦେଖିଥିଲି ଓ ଚିହ୍ନିଥିଲି । ସେମାନେ କିପରି ଏତେ ଦୁଃଖକଷ୍ଟ ବିପଦ ବରଣ କରି

ଏକୁଟିଆ ବାଘଭାଲୁଙ୍କାଗମସ୍ତ ଦୂର ଦୂର ଓ ଦୁର୍ଗମ ବଣ ପାହାଡ଼ ସନ୍ଧରେ ରହି ପ୍ରକୃତରେ ଉପରଲିଖିତ କାର୍ଯ୍ୟରେ ନିଷ୍ଠାପର ଭାବେ ଲାଗି ରହିଛନ୍ତି, ନିଜ ନିଜ ଅଞ୍ଚଳରେ ଅତି ଅନୁନ୍ନତ ଆଦିବାସୀଙ୍କ ଭିତରେ ନାନା ମଙ୍ଗଳକର ପରିବର୍ତ୍ତନ ଆଣି ପାରିଛନ୍ତି, ସେମାନଙ୍କ ଅସହାୟତା ଓ ଭୟ ଦୂର କରି ପାରିଛନ୍ତି ଦେଖି ମୁଁ ଚମକ୍ରୃତ ହୋଇଥିଲି । ସେମାନଙ୍କ କାର୍ଯ୍ୟ ବିଷୟରେ ମୁଁ କିଛି ମୋର 'ଶିବଭାଇ' ଉପନ୍ୟାସରେ ବର୍ଣ୍ଣନା କରିଛି । ୧୯୬୧-୬୬ରେ ମୁଁ ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗ ଅଧୀନସ୍ଥ କମିସନର୍ ଫର୍ ସିଡ଼ୁଲଡ଼ କାଷ୍ଟ୍ସ୍ ଏଣ୍ଡ୍ ସିଡ଼ୁଲଡ୍ ଟ୍ରାଇବସ୍ ସଂସ୍ଥାରେ ଓଡ଼ିଶା ପ୍ରଦେଶ ପାଇଁ ଆସିଷ୍ଟାଣ୍ଟ୍ କମିସନର୍ ଥିଲି ଓ ୧୯୬୩ରୁ ୧୯୬୯ ଓଡ଼ିଶା ସରକାରଙ୍କ ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ ଅଧୀନରେ "ଅତି ଅନୁନ୍ନତ ଆଦିବାସୀଙ୍କ ଉନ୍ନୟନ ଯୋଜନା" ଲାଗି ସ୍ପେସାଲ୍ ଅଫିସର ଥାଇ ତାକୁ ପରିଚାଳନା କରୁଥିଲି । ସେତେବେଳେ ମଧ୍ୟ ମୁଁ ଏମିତି କେତେକ କେନ୍ଦ୍ର ଦେଖିଛି ଓ ସେହି କେନ୍ଦ୍ରମାନଙ୍କ ପରିଚାଳନା କରୁଥିବା କର୍ମୀମାନଙ୍କ କାର୍ଯ୍ୟ ଦେଖିଛି ଓ ସେମାନଙ୍କ ବିଷୟରେ ମୋର ସେହି ଉଚ୍ଚ ଧାରଣା ହୋଇଛି । ସେତେବେଳେ ମୋର ସୁଚିନ୍ତିତ ମତ ଥିଲି ଓ ଏବେ ୧୯୮୦ରେ ବି ସେହି ମତ ଯେ ପ୍ରତି ଅନୁନ୍ନତ ଆଦିବାସୀ ଅଞ୍ଚଳରେ ପ୍ରତି ବ୍ଲକ୍‌ରେ ଏହି ସଂସ୍ଥାଦ୍ୱାରା ପରିଚାଳିତ ଅନ୍ତତଃ ଆଉ ଗୋଟିଏ ଲେଖାଁ ସେପରି ଗ୍ରାମ-ସେବା କେନ୍ଦ୍ର ବସିବା ନିତାନ୍ତ ପ୍ରୟୋଜନ, ତାପରେ ଆହୁରି ବେଶି ସଂଖ୍ୟାରେ ଓ ସେଥିପାଇଁ କର୍ମୀତାଲିମ୍ ଲାଗି, କର୍ମୀନିଯୁକ୍ତି ଓ କେନ୍ଦ୍ର ପ୍ରତିଷ୍ଠା ଓ ପରିଚାଳନାଲାଗି ସରକାର ଅର୍ଥ ସାହାଯ୍ୟ ଦେବା ଆବଶ୍ୟକ ।

କେନ୍ଦ୍ରଗୁଡ଼ିକ ପ୍ରତିଷ୍ଠିତ ହେଲାପରଠୁଁ ସେମାନଙ୍କ ନିୟମିତ କାର୍ଯ୍ୟ କରି ପାରୁଥିଲେ, ବିଶେଷତଃ ଆଦିବାସୀଙ୍କ୍ର ଶୋଷଣ, ଅତ୍ୟାଚାର, ଅନ୍ୟାୟ, ଠକାମି ବିରୁଦ୍ଧରେ କାର୍ଯ୍ୟ କରୁଥିଲେ, ସେମାନଙ୍କୁ ବଞ୍ଚାଉଥିଲେ, ଶିକ୍ଷିତ କରୁଥିଲେ, ସେମାନଙ୍କ ଭୟ ଛଡ଼ାଉଥିଲେ ଓ ସେମାନଙ୍କ ସ୍ୱାର୍ଥରକ୍ଷା କରୁଥିଲେ । ସେମାନେ ଆଦିବାସୀଙ୍କ ନାନା ସମସ୍ୟାର ପ୍ରତିକାର ଲାଗି ଚେଷ୍ଟା କରି ଆସୁଥିଲେ ଓ କର୍ମୀମାନେ ସେମାନଙ୍କ ଶ୍ରଦ୍ଧା, ବିଶ୍ୱାସ ଓ ଅନୁରକ୍ତି ଅର୍ଜନ କରିଥିଲେ ।

## ଉତ୍କଳ ନବଜୀବନ ମଣ୍ଡଳ ବାର୍ଷିକ ରିପୋର୍ଟମାନଙ୍କରୁ କିଛି ତଥ୍ୟ

"ଉତ୍କଳ ନବଜୀବନ ମଣ୍ଡଳ" କାର୍ଯ୍ୟାଳୟରୁ ସଂଗୃହୀତ ୧୯୬୨-୧୯୮୧ ସମୟକାଳ ଭିତରର ବାର୍ଷିକ ଅଧିବେଶନମାନଙ୍କରେ ପଠିତ ବାର୍ଷିକ ରିପୋର୍ଟ-ମାନଙ୍କରୁ କିଛି ବିଶେଷ ତଥ୍ୟ ଏଠି ଦିଆଗଲା ।

୧୯୬୨ (୧୯୬୧-୧୯୬୨ ଜୁନ୍) ସଭାପତି ଶ୍ରୀ ବିଶ୍ୱନାଥ ପଟ୍ଟନାୟକ । ୨ଟି ଜିଲ୍ଲାରେ ୩୯ଟି ସେବା କେନ୍ଦ୍ର,—୬୨ ଜଣ କର୍ମୀ । (ରାୟଗଡ଼ାରେ

୧୯୬୦ରେ ମୁଁ ଦେଖିଥିବା ଚନ୍ଦ୍ରପୁରରେ ଡୋଟିଆ କନ୍ଧଙ୍କ ଅଞ୍ଚଳରେ ଥିବା ଚନ୍ଦ୍ରପୁରକୁ ମିଶାଇ ୯ଟି ପୁରୁଣା କେନ୍ଦ୍ରରୁ ବନ୍ଦ କରି ହୋଇଥିଲା, ୭ଟି ନୂଆ କେନ୍ଦ୍ର ବସିଥିଲା । କୋରାପୁଟ ଜିଲ୍ଲାରେ ନବଜୀବନ ମଣ୍ଡଳ ଗୋତିମୁକ୍ତି ଆନ୍ଦୋଳନ ଆରମ୍ଭ କରିଛନ୍ତି । ପ୍ରଥମେ ଆରମ୍ଭ ଲତାପୁଟ କେନ୍ଦ୍ରରୁ । ୫୦ ଜଣ ଗୋତି ମୁକ୍ତ ହେଲେଣି * ପାରଳାଖେମୁଣ୍ଡି ଆବାରସିଂ କେନ୍ଦ୍ର ଜାପାନୀ ଚାଷ ଆରମ୍ଭ କରିଛନ୍ତି । ସେଠି 'ଗୁଲି' କେନ୍ଦ୍ର ଅଞ୍ଚଳରେ ନିଶା ନିବାରଣ କରିବାପାଇଁ ଫେଜ୍‌ଟେଷ୍ଟ ଓ ଡାଲିଗ୍ରୁପ୍ କରାଯାଉଛି । ବ୍ରହ୍ମପୁର ସହରରେ ପ୍ରଥମ କେନ୍ଦ୍ର 'ମୃଦଙ୍ଗିଆ ସାହି' ହରିଜନ ବସ୍ତିରେ, ଚନ୍ଦ୍ରାମର ବିଜୟପଲ୍ଲୀ କେନ୍ଦ୍ରରେ ମୁଖ୍ୟ କାମ ହୋଇଛି ଶିଶୁ ଚିକିତ୍ସା ଓ ମାତୃମଙ୍ଗଳ । ଗ୍ରାମଦାନ କାମ ନାନା କେନ୍ଦ୍ରରେ ଚାଲିଥିଲା ।

୧୯୬୩ (୧୯୬୨ ଜୁଲାଇ—୧୯୬୩ ନଭେମ୍ବର) ସଭାପତି—ଶ୍ରୀ ମହମ୍ମଦ ବାକି । ୭ଟି ଜିଲ୍ଲାରେ ୩୫ଟି ଗ୍ରାମସେବା କେନ୍ଦ୍ର, —୫୩ କର୍ମୀ ୮ଟି ନୂଆ କେନ୍ଦ୍ର ।

କୋରାପୁଟ ଜିଲ୍ଲାରେ ନାନା ସ୍ଥାନରେ ଗୋତିମୁକ୍ତି କାର୍ଯ୍ୟ ଓ ଶୋଷଣ ମୁକ୍ତି କାର୍ଯ୍ୟ ଚାଲିଛି । କୋରାପୁଟର ଲତାପୁଟ୍ ଆଦି ଗୋତି ସମସ୍ୟାବହୁଳ ଅଞ୍ଚଳରେ ଓ ଢେଙ୍କାନାଳର କାମାକ୍ଷାନଗର ଅମ୍ବର ଚରଖା ପରିଶ୍ରମାଳୟ ଓ ଖୁବ୍ ସୂତାକଟା ହୋଇବୃଣା କରାଯାଉଥିଲା । ଖଦୀ କମିସନରଙ୍କ ସହାୟତାରେ କୋରାପୁଟର ଲତାପୁଟରେ ଓ ଢେଙ୍କାନାଳର ମହୁପାଳରେ ଯୋଡ଼ିଏ ଗ୍ରାମ 'ଇକାଇ' କେନ୍ଦ୍ର ଖୋଲାଯାଇଥିଲା । ବିଲାତର 'ଓ୍ୱାର୍ ଅନ୍ ଓ୍ୱାଣ୍ଟ୍' ସଂସ୍ଥାରୁ ସାଢ଼େ ଛବିଶ ହଜାର ଟଙ୍କା ସର୍ବସେବା ସଂଘରୁ ପାଇ କୋରାପୁଟର ଗରେଣ୍ଡା ଓ କୋଡ଼େଙ୍ଗୁ ଓ କେନ୍ଦୁଝରର ବିଶ୍ୱନାଥପୁର, କଣ୍ଡିଆପଡ଼ାରେ କାମ ଆରମ୍ଭ ହୋଇଥିଲା । ନଓରଂପୁର ଓ ରାଉରକେଲାରେ ଆଦିବାସୀଙ୍କ ପାଇଁ ଆଖି ପରୀକ୍ଷା ଓ ଅପରେସ୍ ଶିବିର ଯୋଡ଼ିଏ କରାଯାଇଥିଲା । ଗ୍ରାମଦାନ କାମ ଚାଲିଥିଲା ।

୧୯୬୪-୬୫ ମାର୍ଚ୍ଚ—୭ ଜିଲ୍ଲାରେ ୪୭ ସେବାକେନ୍ଦ୍ର—ସେଥିରେ ୬୭ କର୍ମୀ । ଏକା କୋରାପୁଟରେ ୧୫ କେନ୍ଦ୍ର, ୧୦ ନାରୀ କର୍ମୀ, ୧୧ ପୁରୁଷ କର୍ମୀ ।

ଗରେଣ୍ଡାରେ ଗୋବିନ୍ଦ ରେଡ୍ଡି ଚାଷ, ପରିବା ଚାଷ ଆଦି କରାଇ ଆଶ୍ଚର୍ଯ୍ୟ ସାଫଲ୍ୟ ଦେଖାଇଥିଲେ । ଢେଙ୍କାନାଳର ନୂଆହଟା କେନ୍ଦ୍ରରେ ଓ ଅନୁଗୁଳରେ କୁଷ୍ଠକେନ୍ଦ୍ରରେ ନାରୀକର୍ମୀ ବହୁତ ରୋଗୀଙ୍କୁ ଚିକିତ୍ସା କରିଥିଲେ ଓ ୫୦ ଜଣଙ୍କ

* 'ଗରେଣ୍ଡା' କେନ୍ଦ୍ରରେ ଶ୍ରୀ ଗୋବିନ୍ଦ ରେଡ୍ଡି ତାଙ୍କର ଭାରତ ବିଖ୍ୟାତ ସଫଳ କୃଷି ପ୍ରୟୋଗ ଚଳାଇ ସର୍ବୋଚ୍ଚ ପରିମାଣରେ ଶସ୍ୟ ଉତ୍ପାଦନ କରିପାରୁଛନ୍ତି । ବଣ୍ଡା ଅଞ୍ଚଳରେ 'କଦମଗୁଡ଼ା' ଭଲ କାମ କରୁଛି ।

ପ୍ରସ୍ତୁତ କରାଇଥିଲେ । ୧୯୬୪ ମାର୍ଚ୍ଚ ୧୮ ତାରିଖରୁ ରାଉରକେଲାରେ ଓ ଅନ୍ୟ କେତେଠି ଅଦିବାସୀମାନେ ମାତ ବହୁତ ମୁସଲମାନଙ୍କୁ ହତ୍ୟା କଲେ, ତେଣୁ ସେଠି ଶାନ୍ତିସ୍ଥାପନ ପାଇଁ ଉତ୍କଳ ନବଜୀବନ ମଣ୍ଡଳ ସୁନ୍ଦରଗଡ଼ ଜିଲ୍ଲାରେ ଆଠଟି କେନ୍ଦ୍ର ବସାଇଲେ (ଡୁକୁକ୍‌ବେଣ୍ଟି, ଅଣ୍ଡାଲ, ଜାମ୍‌-ବାହାଲ୍‌, ଲଇକେରା, ଗଙ୍ଗାଜଳ୍‌, ଫୁଲ୍‌ଝର୍‌, ଗୁଡ୍‌ଗୁଡ୍‌ଜୋର୍‌, ଡ଼ୁରୁକେଲ, ରାଉରକେଲା) । ଅନେକ ସମୟରେ କର୍ମୀମାନେ ନିଜ ଜୀବନକୁ ପାଣି ଛଡ଼ାଇ ଆସନ୍ତି, ଦଙ୍ଗା ମଝିରେ ପଶି ଦଙ୍ଗା ବନ୍ଦ କରନ୍ତି । ନାନା ବିପଦ ସହି କର୍ମୀମାନେ କୋରାପୁଟ ଜିଲ୍ଲାରେ ଗୋତିମୁକ୍ତି ଆନ୍ଦୋଳନ ଚଳାଇଲେ ଓ ଏବର୍ଷ ୪୦ ଜଣ ଗୋତିଙ୍କୁ ମୁକ୍ତ କରାଇଲେ । କପାଚାଷ, ସୂତାକଟା, ଝୁଣା ଉତ୍ପାଦନ କାମ ନାନା କେନ୍ଦ୍ରରେ ବ୍ୟାପିଲା, ସେହିପରି ମଧ୍ୟ କୃଷିକାର୍ଯ୍ୟ । ଗ୍ରାମଦାନ ଗାଁରେ କାର୍ଯ୍ୟ ଚାଲିଥାଏ ।

୧୯୬୬-୬୭—ଫୁଲବାଣୀ ଜିଲ୍ଲାରେ ପୂର୍ବେ କେନ୍ଦ୍ର ନ ଥିଲା, ଏହିବର୍ଷ ବସିଲା, ୪ଟି କେନ୍ଦ୍ର ଖୋଲା ହେଲା, ଏଥିରୁ ଯୋଡ଼ିଏ ବାଲିଗୁଡ଼ା ସବ୍‌ଡିଭିଜନ୍‌ର ଦୁର୍ଭେଦ୍ୟ ଓ ବାଘହାତୀମୟ କୋଟିଆ କନ୍ଧମାଳରେ ବେଲ୍‌ଘର ଅଞ୍ଚଳରେ, ସେଠି ଏକା ବ୍ରିଜ୍‌ବାରୁରେ ୪ ଜଣ ମହିଳାକର୍ମୀ ରଖାଗଲେ ।

ଗୋତିମୁକ୍ତି, ବନ୍ଧାଜମି ମୁକ୍ତି, ଗୋତିଙ୍କ ଥଇଥାନ କାମ କୋରାପୁଟର କେନ୍ଦ୍ରମାନଙ୍କ ଦ୍ୱାରା ଚାଲିଥିଲା । ଗରଣ୍ଡାରେ କର୍ମୀ ଶ୍ରୀ ଗୋବିନ୍ଦ ରେଡ଼ିଡ଼ି ଆଶ୍ଚର୍ଯ୍ୟ କୃଷିକାର୍ଯ୍ୟ କରି ଦେଖାଉଥିଲେ ଓ ଦଶମାସିଆ ତାଲିମ୍‌ ଶିବିର କରି ଶିଖାଉଥିଲେ ।

୧୯୬୬ରେ କଳାହାଣ୍ଡି, ବଲାଙ୍ଗିର, କୋରାପୁଟ, ସୁନ୍ଦରଗଡ଼ ଆଦି ଜିଲ୍ଲାରେ ମରୁଡ଼ି ଯୋଗୁଁ ଖାଦ୍ୟାଭାବ ହେଲା, ବେସରକାରୀ ମୁକ୍ତ ଭୋଜନ କେନ୍ଦ୍ରମାନ ଖୋଲାଗଲା, କର୍ମୀମାନେ ସେସବୁ ପରିଚାଳନା କରିଥିଲେ । ଢେଙ୍କାନାଳ ଜିଲ୍ଲାର କଙ୍କଡ଼ାହାଡ଼ ଅନୁନ୍ନତ ବ୍ଲକରେ ସୂତାକଟା ଝୁଣାବୃଣା ଆଦିର ବଢ଼ିଲା ।

୧୯୬୯-୭୦, ୭୦-୭୧, ୭୧-୭୨ ତିନବର୍ଷର ରିପୋର୍ଟ ଏକାଠି ୧୯୭୩ ବାର୍ଷିକ ସମ୍ମିଳନୀରେ ବାହାରିଲା । ୬ଟି ଜିଲ୍ଲାରେ—୩୯ ଗ୍ରାମସେବା କେନ୍ଦ୍ରରେ—୫୨ ଜଣ କର୍ମୀ କାମ କରୁଥିଲେ । କୋରାପୁଟର ଗରଣ୍ଡା ଅଞ୍ଚଳରେ ନକ୍‌ସଲାଇଟ୍‌ ଦମନ କାର୍ଯ୍ୟରେ ଯାଇ ପୁଲିସମାନେ ଲୋକଙ୍କ ଉପରେ ଜୁଲୁମ୍‌ କରିବାରୁ ଶ୍ରୀମତୀ ମାଳତୀ ଚୌଧୁରୀ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ ଅନ୍ୟାନ୍ୟ କର୍ମୀମାନେ ସେଠି ରହି ତାର ପ୍ରତିବାଦ ଓ ପ୍ରତିରୋଧ କରିଥିଲେ ।

୭୦-୭୧ରୁ ସରକାରଙ୍କଠାରୁ ଆଂଶିକ ଗ୍ରାଣ୍ଟ ମିଳିଲା, ସେହି ସମୟରୁ ଅର୍ଥାଭାବ ପଡ଼ିଲା । ମୂଳରୁ ବର୍ଷକୁ ୧୩ ହଜାର ଟଙ୍କା ଗ୍ରାଣ୍ଟ ମିଳୁଥିଲା ।

## ଅର୍ଥାଭାବରୁ କର୍ମ-ଆକୁଞ୍ଚନ

୧୯୭୨-୭୩ (୭୪ର ରିପୋର୍ଟ)—ସରକାରୀ ଗ୍ରାଣ୍ଟ ମାତ୍ର ଟ ୫୦୦୦

୧୯୭୩-୭୪—ସରକାରୀ ଗ୍ରାଣ୍ଟ ମାତ୍ର ଟ ୧୦,୦୦୦

୧୯୭୪-୭୫— ଓ ୭୬-୭୭—ସରକାରୀ ଗ୍ରାଣ୍ଟ ବନ୍ଦ ହୋଇଥିଲା, ଅର୍ଥାଭାବରୁ କାର୍ଯ୍ୟ ସଙ୍କୁଚିତ ହୋଇଗଲା । ତେଣୁ ଅନୁଗୋଳର "ମହିଳା ତାଲିମ୍ ଶିବିର"ଟିକୁ ବନ୍ଦ କରି ଦିଆଗଲା, ଖାସ୍ ଗ୍ରାମସେବା କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ କେନ୍ଦ୍ର ଚଳାଇବା ସମ୍ଭବ ହେଲା ନାହିଁ, କେତେକ ନିଷ୍ଠାପର କର୍ମୀଙ୍କୁ ବିଦା କରି ଦିଆଗଲା, କେବଳ, ବାଲ୍‌ବାଡ଼ି, ଖଦୀ ଓ ଗ୍ରାମୋଦ୍ୟୋଗ କାମ, ପ୍ରୌଢ଼ଶିକ୍ଷା ଆଦି ପାଇଁ ଭାରତୀୟ ଆଦିମ ଜାତି ସଂଘ, ଖଦୀ ଗ୍ରାମୋଦ୍‌ଯୋଗ କମିସନ୍ କେତେକ ସୂତ୍ରରୁ ଆର୍ଥିକ ସାହାଯ୍ୟ ପାଇ ତହିଁରେ କେତୋଟି କେନ୍ଦ୍ର ଚଳାଇ ସେହିସବୁ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଯେତିକି ସମ୍ଭବ ପୂର୍ବରୁ ଗ୍ରାମସେବା କେନ୍ଦ୍ରମାନେ କରି ଆସିଥିବା ଅନ୍ୟାନ୍ୟ ସମାଜସେବା କାର୍ଯ୍ୟ ହୋଇପାରିଲେ ସେତିକି ହେଲା । କୋରାପୁଟ ଜିଲ୍ଲା ଯାହା ଗୁରୁତ୍ୱ ପାଇ ଆସିଥିଲା ସେଠି ୧୯୭୪-୭୫ ବେଳକୁ ସେଠି ଗରଣ୍ଡା କେନ୍ଦ୍ର ଛଡ଼ା ସବୁ କେନ୍ଦ୍ର ବନ୍ଦ ହୋଇଥିଲା । ସମୁଦାୟ ଆଉ ୫ଟି ଜିଲ୍ଲାରେ ୧୧ଟି କେନ୍ଦ୍ରରେ ୪୨ ଜଣ କର୍ମୀ କାମ କରୁଥିଲେ । ସେହି ସମୟରୁ ତାହାହିଁ 'ଉତ୍କଳ ନବଜୀବନ ମଣ୍ଡଳ'ର କେନ୍ଦ୍ରଗୁଡ଼ିକର ପ୍ରଧାନ କାର୍ଯ୍ୟ ହୋଇଆସିଛି ଓ ତାହା ସହିତ ନିଶା ନିବାରଣ, ରୋଗୀ ଚିକିତ୍ସା, ପ୍ରସୂତି ଚିକିତ୍ସା ଓ ପୂର୍ବବତ୍ ଅନୁକୂଳ ମାତୃମଙ୍ଗଳ କେନ୍ଦ୍ର ପରିଚାଳନା । ୧୯୭୯-୮୦ ବାର୍ଷିକ ରିପୋର୍ଟରେ ମଧ୍ୟ ଏହିପରି ସମ୍ବାଦ ଅଛି । ୧୯୮୧ର ବାର୍ଷିକ ରିପୋର୍ଟରୁ ଜଣାଗଲା ଯେ ୧୯୭୯ରେ 'ଅକସଫାମ୍'ର ଅର୍ଥ ସାହାଯ୍ୟରେ "ମହିଳା କର୍ମୀ ତାଲିମ୍ ଶିବିର" ପୁଣି ଚାଲିଲା । ଓଡ଼ିଶା ସରକାରଙ୍କଠୁ ୧୯୭୯-୮୦ରେ ଟ ୨୬,୦୦୦ ଓ ୧୯୮୦-୮୧ରେ ଟ ୨୧,୦୦୦ ସାହାଯ୍ୟ ମିଳିଥିବାର ସୂଚନା ମିଳେ । ୧୯୮୧ରେ ମଧ୍ୟ ବାଲିଗୁଡ଼ାର ବୁର୍ଲୁବାରୁ ଓ ଡୁମ୍ବି କେନ୍ଦ୍ରରେ ଅତି ଅନୁନ୍ନତ ବିପଦସଙ୍କୁଳ ଦୁର୍ଭେଦ୍ୟ ମାଳ ଭିତରେ ଚାରିଜଣ ମହିଳା କର୍ମୀ ସମାଜସେବା କରୁଛନ୍ତି । ୫ଟି ଜିଲ୍ଲାରେ ସମୁଦାୟ କୋଡ଼ିଏଟି ସେବାକେନ୍ଦ୍ର ଚାଲିଛି । ତହିଁରୁ ଢେଙ୍କାନାଳ ଜିଲ୍ଲାରେ ୭ଟି ସେବାକେନ୍ଦ୍ରରେ ୯ ଜଣ କର୍ମୀ, ସମସ୍ତେ ପୁରୁଷ, କୋରାପୁଟରେ ଏକମାତ୍ର ଗରଣ୍ଡା କେନ୍ଦ୍ର ସମେତ କେନ୍ଦୁଝର, ଗଞ୍ଜାମ, ଫୁଲବାଣି, ସୁନ୍ଦରଗଡ଼ରେ ୧୩ଟି ସମାଜସେବା କେନ୍ଦ୍ର ଓ ତହିଁରୁ ତିନୋଟି ଚଳାନ୍ତି ୩ ଜଣ ପୁରୁଷ କର୍ମୀ, ୧୦ଟି ଚଳାନ୍ତି ୨୨ ଜଣ ମହିଳା କର୍ମୀ ।

ଶ୍ରୀ ଗୋପବନ୍ଧୁ ଚୌଧୁରୀ ୧୯୫୧ରେ ଓଡ଼ିଶାରେ ଭୂଦାନ କାର୍ଯ୍ୟ ଆରମ୍ଭ କଲାଦିନୁ ନବଜୀବନ ମଣ୍ଡଳର କେନ୍ଦ୍ରଗୁଡ଼ିକ ସେ କାର୍ଯ୍ୟରେ ମଧ୍ୟ ଯଥା ଅଧିକେ ସହଯୋଗ କରିଥିଲେ ।

୧୯୪୮ରୁ ୧୯୮୨ ଚଉତିରିଶି ବର୍ଷ । କେତେ ନାନା ଦୁର୍ବିପାକ ଭିତରେ ଏବେବି ତିଷ୍ଠି ରହିଥିବା ଓଡ଼ିଶାର ଯେଉଁ ପ୍ରାଚୀନତମ ଆଦିବାସୀ ସେବା-ସଂସ୍ଥାଟିକୁ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଓ ତାଙ୍କ ସହକର୍ମୀମାନେ ପ୍ରତିଷ୍ଠା କରିଥିଲେ ଗୋପବାବୁଙ୍କ ମୃତ୍ୟୁ ପରେ, ଏ ପର୍ଯ୍ୟନ୍ତ ମଧ୍ୟ ତାହାର କାର୍ଯ୍ୟର ଗୋଟିଏ ସଂକ୍ଷିପ୍ତ ବିବରଣୀ ନ ଦେଲେ ତାହାର ଉପାଦେୟତା, ଗୁରୁତ୍ୱ ଓ ଆଦିବାସୀ ମଙ୍ଗଳ ପାଇଁ ଅପରିହାର୍ଯ୍ୟ ଆବଶ୍ୟକତା ବୁଝାଇ ହେବ ନାହିଁ । ଓଡ଼ିଶାରେ ସେ ଯେଉଁ ସର୍ବୋଦୟ ପରିବାରର ମୁରବି ଥିଲେ, ସେତେବେଳଠୁ ଏହି ମଣ୍ଡଳର କର୍ମୀମାନେ ମଧ୍ୟ ସେହି ପରିବାରର ଅନ୍ତର୍ଭୁକ୍ତ ।

ଉତ୍କଳ ନବଜୀବନ ମଣ୍ଡଳ କାର୍ଯ୍ୟ ଆରମ୍ଭ କରୁ କରୁ "କସ୍ତୁରବା ଗାନ୍ଧୀ ସ୍ମାରକନିଧି—ଉତ୍କଳ ଶାଖା" ସହାୟତାରେ କେତେକ ଅତି ଅନୁନ୍ନତ ଆଦିବାସୀ ଅଞ୍ଚଳରେ ଗ୍ରାମସେବା କେନ୍ଦ୍ର ଆରମ୍ଭ ହୋଇଥିଲା । କୋରାପୁଟ ଜିଲ୍ଲାରେ ସେପରି ଗୋଟିଏ କେନ୍ଦ୍ର ଥିଲା ରାୟଗଡ଼ା ସବଡିଭିଜନ୍‌ରେ ଥେରୁବାଲି ରେଲ୍ ଷ୍ଟେସନଠୁ ବୃଇମାଇଲ ଦୂରବର୍ତ୍ତୀ କନ୍ଧ ଗାଁ ଡ଼ମ୍ବଗୁଡ଼ାରେ । ସେଟି ସେତେବେଳେ ମଣିଷକୁ ବାଘ ଖାଉଥିଲା, ନିସ୍ପୃହ ଗହନ ତଳ ବାଘୁଆ ବନ, ମଝିରେ ସଙ୍କୀର୍ଣ୍ଣ ଉପତ୍ୟକା, ପୁଣି ସେପାଖେ ବାଘୁଆ ବଣ ଓ ପାହାଡ଼ । କନ୍ଧମାନେ ଅତି ଅଶିକ୍ଷିତ ଓ ଅନୁନ୍ନତ ଥିଲେ, ତାଙ୍କର ଅଧିକାଂଶ ଜମିବାଡ଼ି ଅଣଆଦିବାସୀ ଧନୀମାନେ ମାଡ଼ି ବସିଥିଲେ, ସେମାନେ ଅତି ଶୋଷିତ ଦରିଦ୍ର ଅବସ୍ଥାରେ ଥିଲେ । ବାଲେଶ୍ୱର ଜିଲ୍ଲାର ନାରୀକର୍ମୀ ଶ୍ରୀମତୀ ମାଳତୀ ବଶ୍ୱାଳ, କଟକ ଜିଲ୍ଲା ନରସିଂହପୁରର ନାରୀକର୍ମୀ ଶ୍ରୀମତୀ କେତକୀ ମହାନ୍ତି ଡ଼ମ୍ବଗୁଡ଼ାରେ କେନ୍ଦ୍ର କରି ଗ୍ରାମସେବା କାର୍ଯ୍ୟ କରୁଥିଲେ । ଥେରୁବାଲିଠୁ ଡ଼ମ୍ବଗୁଡ଼ାର ବିପରୀତ ଦିଗରେ ପ୍ରାୟ ଦୁଇମାଇଲ ଦୂରରେ ଗୋଟିଏ ବଡ଼ କନ୍ଧ ଗାଁ, ସାକଲପଦର । ସେ ଗାଁର ବହୁତ ଜମି କନ୍ଧ ସବୁଙ୍କ ଜଣେ ଧନୀବ୍ୟକ୍ତି ମାଡ଼ି ବସିଥିଲେ, ମକଦ୍ଦମା ଲାଗିଥିଲା, ଭୂମିହୀନ କନ୍ଧଗୁଡ଼ିକ ଅତି କଷ୍ଟରେ ଝୋଟ ଉପାୟରେ ଚଳୁଥିଲେ, ସେଠି ଗ୍ରାମସେବା କେନ୍ଦ୍ର କରିଥିଲେ ଶ୍ରୀ ରତନ ଦାସ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ଶାନ୍ତି ଦେବୀ । ସେମାନେ ଆଦିବାସୀଙ୍କ ଉପକାର ପାଇଁ ନାନା କାର୍ଯ୍ୟ କରୁଥିଲେ, କୁଷ୍ଠରୋଗୀଙ୍କୁ ଔଷଧ ଓ ଇଞ୍ଜେକ୍‌ସନ୍ ମଧ୍ୟ ଦେଉଥିଲେ ।

# ଅଠଚାଳିଶ

ଗରିବଙ୍କ ଦୁର୍ଦ୍ଦଶା ଓ ସମସ୍ୟା ଆହୁରି ଆହୁରି ବଢ଼ୁଥିବା ଦେଖି ଶ୍ରୀ ଗୋପବନ୍ଧୁ ଚୌଧୁରୀ ଉଦ୍‌ବିଗ୍ନ ହେଉଥିଲେ । ଖାଲି ସ୍ୱାଧୀନତା ଆସିଗଲା ବୋଲି ତାର ସମାଧାନ ହୋଇଯିବ, କି ପ୍ରଚଳିତ ଗଣତନ୍ତ୍ର ଶାସନ ଦ୍ୱାରା ହେବ, ଭୋଟଦ୍ୱାରା ହେବ, କି ଅହିଂସା ମନ୍ତ୍ର ଜପି ଶୁଣାଇ, ସୂତାକାଟି ଲୁଗାବୁଣି, ଗ୍ରାମସେବା କେନ୍ଦ୍ର ଚଳାଇ ହୋଇଯିବ, ଏ ବିଶ୍ୱାସ ତାଙ୍କର ତୁଟି ଥିଲା । ତାଙ୍କ ମନ ଭିତରେ ବଢ଼ି ଉଠୁଥିବା ଉଦ୍‌ବେଗର ସ୍ତୂପ ଉପରେ ଶେଷ ଓ ଅସହଣି ସ୍ତୂପ ଦେଲା ଦରିଦ୍ର ଆଦିବାସୀବହୁଳ କୋରାପୁଟ ଜିଲ୍ଲାରେ ଅନାହାର ମୃତ୍ୟୁ ସମ୍ବାଦ । ସେ ପୁରୁଣା ବାଟ ଛାଡ଼ି କିଛି ନୂଆ ବାଟ ଖୋଜିବେ ବୋଲି ବାହାରି ପଡ଼ିଲେ ।

ଆରମ୍ଭରୁ ସେ ପଦଯାତ୍ରାର ଉଦ୍ଦେଶ୍ୟ ନ ଥିଲା ବିନୋବାଙ୍କ 'ଭୂଦାନ ଯଜ୍ଞ ଦର୍ଶନ' ପ୍ରଚାର କି ଭୂଦାନ ସଂଗ୍ରହ, ସେ ପର୍ଯ୍ୟନ୍ତ ସେ ଭୂଦାନ ବାଟ ଧରିବେ ବୋଲି ଭାବି ଘରୁ ବାହାରିଲେ ଆଦୌ ନୁହେଁ । ସେ ଭାବିଥିଲେ, ଗାଁଏ ଗାଁଏ ବୁଲିବେ, ଲୋକଙ୍କୁ ଦେଶର ଅବସ୍ଥା କଥା, ନାନା ସମସ୍ୟା, ନାନା ବିପଦ କଥା ବୁଝେଇବେ, କି ଉପାୟ କଲେ ଅବସ୍ଥା ସୁଧୁରିବ ବୋଲି ଲୋକେ ଭାବୁଛନ୍ତି ତାଙ୍କଠୁ ତାହା ଶୁଣିବେ, ତାଙ୍କ ଅବସ୍ଥା ବି ଆଖିଥରେ ଦେଖିବେ, ନିଜେ ବି ଭାବୁଥିବେ, ତାପରେ ଯାହାକିଛି ବାଟ ଧରିବେ । ସେ ନିଜେ ତ ସେ ବିଷୟ ବହୁଦିନୁ ଭାବୁଥାନ୍ତି, କିଛି ଠିକ୍ କରି ନ ଥାନ୍ତି ।

ଆଚାର୍ଯ୍ୟ ବିନୋବାଙ୍କ ସହିତ ବହୁଦିନରୁଁ ତାଙ୍କର ଚିହ୍ନା ଥିଲା, ଗାନ୍ଧୀ ବିଚାର ଓ ସେହି ବିଚାର ବାଗରେ ସମାଜର ପରିବର୍ତ୍ତନ ଓ ବାସ୍ତବ କ୍ଷେତ୍ରରେ ଉପୁଜୁଥିବା ନାନା ସମସ୍ୟାର ସମାଧାନ ବିଷୟରେ ଆଚାର୍ଯ୍ୟ ବିନୋବା କେତେକ ଲେଖା ପ୍ରକାଶ

ଶ୍ରୀ ଗୋପବନ୍ଧୁ ଚୌଧୁରୀ ୧୯୫୧ରେ ଓଡ଼ିଶାରେ ଭୂଦାନ କାର୍ଯ୍ୟ ଆରମ୍ଭ କଲାପରେ ନବଜୀବନ ମଣ୍ଡଳର କେନ୍ଦ୍ରଗୁଡ଼ିକ ସେ କାର୍ଯ୍ୟରେ ମଧ୍ୟ ଖୁବ୍ ଅଧିକ ସହଯୋଗ କରିଥିଲେ ।

୧୯୪୮ରୁ ୧୯୮୨ ଚଉତିରିଶ ବର୍ଷ । କେତେ ନାନା ଦୁର୍ବିପାକ ଭିତରେ ଏବେବି ତିଷ୍ଠି ରହିଥିବା ଓଡ଼ିଶାର ସେହି ପ୍ରାଚୀନତମ ଆଦିବାସୀ ସେବା-ସଂସ୍ଥାଟିକୁ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଓ ତାଙ୍କ ସହକର୍ମୀମାନେ ପ୍ରତିଷ୍ଠା କରିଥିଲେ । ଗୋପବାବୁଙ୍କ ମୃତ୍ୟୁ ପରେ, ଏ ପର୍ଯ୍ୟନ୍ତ ମଧ୍ୟ ତାହାର କାର୍ଯ୍ୟର ଗୋଟିଏ ସଂକ୍ଷିପ୍ତ ବିବରଣୀ ନ ଦେଲେ ତାହାର ଉପାଦେୟତା, ଗୁରୁତ୍ୱ ଓ ଆଦିବାସୀ ମଙ୍ଗଳ ପାଇଁ ଅପରିହାର୍ଯ୍ୟ ଆବଶ୍ୟକତା ବୁଝାଇ ହେବ ନାହିଁ । ଓଡ଼ିଶାରେ ସେ ଯେଉଁ ସର୍ବୋଦୟ ପରିବାରର ମୂଳବିନ୍ଦୁ ଥିଲେ, ସେତେବେଳଠୁ ଏହି ମଣ୍ଡଳର କର୍ମୀମାନେ ମଧ୍ୟ ସେହି ପରିବାରର ଅନ୍ତର୍ଭୁକ୍ତ ।

ଉତ୍କଳ ନବଜୀବନ ମଣ୍ଡଳ କାର୍ଯ୍ୟ ଆରମ୍ଭ କରୁ କରୁ "କସ୍ତୁରବା ଗାନ୍ଧୀ ସ୍ମାରକନିଧି—ଉତ୍କଳ ଶାଖା" ସହାୟତାରେ କେତେକ ଅତି ଅନୁନ୍ନତ ଆଦିବାସୀ ଅଞ୍ଚଳରେ ଗ୍ରାମସେବା କେନ୍ଦ୍ର ଆରମ୍ଭ ହୋଇଥିଲା । କୋରାପୁଟ ଜିଲ୍ଲାରେ ସେପରି ଗୋଟିଏ କେନ୍ଦ୍ର ଥିଲା ରାୟଗଡ଼ା ସବ୍‌ଡିଭିଜନ୍‌ରେ ଥେରୁବାଲି ରେଲ୍ ଷ୍ଟେସନଠୁ ତିନିମାଇଲ ଦୂରବର୍ତ୍ତୀ କନ୍ଧ ଗାଁ ଡ଼ମ୍ବୁଗୁଡ଼ାରେ । ସେଠି ସେତେବେଳେ ମଣିଷକୁ ବାଘ ଖାଉଥିଲା, ନିସ୍ପୃଗିରି ତଳ ବାଘୁଆ ବନ, ମଝିରେ ସଙ୍କୀର୍ଣ୍ଣ ଉପତ୍ୟକା, ପୁଣି ସେପାଖେ ବାଘୁଆ ବଣ ଓ ପାହାଡ଼ । କନ୍ଧମାନେ ଅତି ଅଶିକ୍ଷିତ ଓ ଅନୁନ୍ନତ ଥିଲେ, ତାଙ୍କର ଅଧିକାଂଶ ଜମିବାଡ଼ି ଅଣଆଦିବାସୀ ଧନୀମାନେ ମାଡ଼ି ବସିଥିଲେ, ସେମାନେ ଅତି ଶୋଷିତ ଦରିଦ୍ର ଅବସ୍ଥାରେ ଥିଲେ । ବାଲେଶ୍ୱର ଜିଲ୍ଲାର ନାରୀକର୍ମୀ ଶ୍ରୀମତୀ ମାଳତୀ ବିଶ୍ୱାଳ, କଟକ ଜିଲ୍ଲା ନରସପୁରର ନାରୀକର୍ମୀ ଶ୍ରୀମତୀ କେତକୀ ମହାନ୍ତି ଡ଼ମ୍ବୁଗୁଡ଼ାରେ କେନ୍ଦ୍ର କରି ଗ୍ରାମସେବା କାର୍ଯ୍ୟ କରୁଥିଲେ । ଥେରୁବେଲିଠୁ ଡ଼ମ୍ବୁଗୁଡ଼ାର ବିପରୀତ ଦିଗରେ ପ୍ରାୟ ଚାରିମାଇଲ୍ ଦୂରରେ ଗୋଟିଏ ବଡ଼ କନ୍ଧ ଗାଁ, ସଙ୍କଳାପଦର । ସେ ଗାଁର ବହୁତ ଜମି କିଣି ସବୁତକ ଜଣେ ଧନୀବ୍ୟକ୍ତି ମାଡ଼ି ବସିଥିଲେ, ମକଦ୍ଦମା ଲାଗିଥିଲା, ଭୂମିହୀନ କନ୍ଧଗୁଡ଼ିକ ଅତି କଷ୍ଟରେ ଅନେକ ଉପାୟରେ ଚଳୁଥିଲେ, ସେଠି ଗ୍ରାମସେବା କେନ୍ଦ୍ର କରିଥିଲେ ଶ୍ରୀ ରତନ ଦାସ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ଶାନ୍ତି ଦେବୀ । ସେମାନେ ଆଦିବାସୀଙ୍କ ଉପକାର ପାଇଁ ନାନା କାର୍ଯ୍ୟ କରୁଥିଲେ, କୁଷ୍ଠରୋଗୀଙ୍କୁ ଔଷଧ ଓ ଇଞ୍ଜେକ୍‌ସନ୍ ମଧ୍ୟ ଦେଉଥିଲେ ।

# ଅଠତିରିଶ

ଗରିବଙ୍କ ଦୁର୍ଦ୍ଦଶା ଓ ସମସ୍ୟା ଆହୁରି ଆହୁରି ବଢ଼ୁଥିବା ଦେଖି ଶ୍ରୀ ଗୋପବନ୍ଧୁ ଚୌଧୁରୀ ଉଦ୍‌ବିଗ୍ନ ହେଉଥିଲେ । ଖାଲି ସ୍ୱାଧୀନତା ଆସିଗଲା ବୋଲି ତାର ସମାଧାନ ହୋଇଯିବ, କି ପ୍ରଚଳିତ ଗଣତନ୍ତ୍ର ଶାସନ ଦ୍ୱାରା ହେବ, ଭୋଟଦ୍ୱାରା ହେବ, କି ଅହିଂସା ମନ୍ତ୍ର ଜପି ଚର୍ଖା ବୁଲାଇ, ସୂତାକାଟି ଲୁଗାବୁଣି, ଗ୍ରାମସେବା କେନ୍ଦ୍ର ଚଳାଇ ହୋଇଯିବ, ଏ ବିଶ୍ୱାସ ତାଙ୍କର ଭୁଟ୍ଟି ଥିଲା । ତାଙ୍କ ମନ ଭିତରେ ବଢ଼ି ଉଠୁଥିବା ଉଦ୍‌ବେଗର ରୂପ ଉପରେ ଶେଷ ଓ ଅସହ୍ୟଣି ରୂପ ଦେଲା ଦରିଦ୍ର ଆଦିବାସୀବହୁଳ କୋରାପୁଟ ଜିଲ୍ଲାରେ ଅନାହାର ମୃତ୍ୟୁ ସମ୍ବାଦ । ସେ ପୁରୁଣା ବାଟ ଛାଡ଼ି କିଛି ନୂଆ ବାଟ ଖୋଜିବେ ବୋଲି ବାହାରି ପଡ଼ିଲେ ।

ଆରମ୍ଭରୁ ସେ ପଦଯାତ୍ରାର ଉଦ୍ଦେଶ୍ୟ ନ ଥିଲା ବିନୋବାଙ୍କ 'ଭୂଦାନ ଯଜ୍ଞ ଦର୍ଶନ' ପ୍ରଚାର କି ଭୂଦାନ ସଂଗ୍ରହ, ଯେମିତି ପର୍ଯ୍ୟନ୍ତ ସେ ଭୂଦାନ ବାଟ ଧରିବେ ବୋଲି ଭାବି ଘରୁ ବାହାରିଲେ ଆଦୌ ନୁହେଁ । ସେ ଭାବିଥିଲେ, ଗାଁ ଏ ଗାଁ ଏ ବୁଲିବେ, ଲୋକଙ୍କୁ ଦେଶର ଅବସ୍ଥା କଥା, ନାନା ସମସ୍ୟା, ନାନା ବିପଦ କଥା ବୁଝେଇବେ, କି ଉପାୟ କଲେ ଅବସ୍ଥା ସୁଧୁରିବ ବୋଲି ଲୋକେ ଭାବୁଛନ୍ତି ତାଙ୍କଠୁ ତାହା ଶୁଣିବେ, ତାଙ୍କ ଅବସ୍ଥା ବି ଆଖିଅରେ ଦେଖିବେ, ନିଜେ ବି ଭାବୁଥିବେ, ତାପରେ ଯାହାକିଛି ବାଟ ଧରିବେ । ସେ ନିଜେ ତ ସେ ବିଷୟ ବହୁଦିନୁ ଭାବୁଥାନ୍ତି, କିଛି ଠିକ୍ କରି ନ ଥାନ୍ତି ।

ଆଚାର୍ଯ୍ୟ ବିନୋବାଙ୍କ ସହିତ ବହୁଦିନରୁ ତାଙ୍କର ଚିହ୍ନା ଥିଲା, ଗାନ୍ଧୀ ବିଚାର ଓ ହେନ୍ଦ୍ର ବିଚାର ବାଟରେ ସମାଜର ପରିବର୍ତ୍ତନ ଓ ବାସ୍ତବ କ୍ଷେତ୍ରରେ ଉପୁଜୁଥିବା ନାନା ସମସ୍ୟାର ସମାଧାନ ବିଷୟରେ ଆଚାର୍ଯ୍ୟ ବିନୋବା କେତେକ ଲେଖା ପ୍ରକାଶ

କରିଥିଲେ, ତହିଁରୁ କିଛି ୧୯୩୮ରୁ ଗୋପବାବୁଙ୍କ ଦ୍ୱାରା ସମ୍ପାଦିତ ଓଡ଼ିଆ ପତ୍ରିକା 'ସତ୍ୟାଗ୍ରହୀ'ରେ ଓ ତାପରେ "ଗ୍ରାମସେବକ"ରେ ଓଡ଼ିଆରେ ଅନୂଦିତ ହୋଇ ଛପା ହୋଇଥିଲା । ତହିଁରେ 'ଭୂଦାନ'ର ନାମଗନ୍ଧ ବି ନ ଥିଲା । ୧୯୫୧ ଅପ୍ରେଲ ୧୮ ପୂର୍ବରୁ ବିନୋବା ନିଜେ ବି ଭୂଦାନ ଆନ୍ଦୋଳନ କଥା କଳ୍ପନା କରି ନ ଥିଲେ । ସେହିଦିନ ଆନ୍ଧ୍ର ପ୍ରଦେଶର ପୋଚମ୍‌ପଲ୍ଲୀରେ ବିନୋବାଙ୍କ "ପ୍ରାର୍ଥନା ସଭା"ରେ ତାଙ୍କ ଆବେଦନ ଶୁଣି ଧନୀ ଭୂମିମାଲିକ ଶ୍ରୀ ରାମଚନ୍ଦ୍ର ରେଡ୍‌ଡିଙ୍କ ହୃଦୟ ତରଳିଗଲା ଓ ଦରିଦ୍ର ଭୂମିହୀନଙ୍କୁ ବାଣ୍ଟିଦେବା ପାଇଁ ସେ ବିନୋବାଙ୍କୁ ୧୦୦ ଏକର ଭୂମି ଦାନ କଲେ । ବିନୋବା ଆଶ୍ଚର୍ଯ୍ୟ ହେଲେ ଯେ ସେଠି ଧନୀ ଦରିଦ୍ରଙ୍କ ଭିତରେ ଏତେ ହିଂସା-ଦ୍ୱେଷ ଜଳୁଛି, କାରଣ ତେଲେଙ୍ଗାନାରେ ଜମି ଅଭାବ, ଯେତିକ ଅଛି ତାର ମାଲିକ ଅଳ୍ପ କେତେକ ଧନୀ, ଅନ୍ୟମାନେ ଭୂମିହୀନ, ଗରିବ । ତେଣୁ ଦୁଃଖୀ, ଅସନ୍ତୁଷ୍ଟ, ହିଂସାମାର୍ଗରେ ସେ ଅବସ୍ଥାର ସମାଧାନ କରିପାରିବେ ବୋଲି ବୁଝାଇ କମ୍ୟୁନିଷ୍ଟମାନେ ଲୋକଙ୍କୁ ମତାଉଛନ୍ତି, କମ୍ୟୁନିଜମ୍ ମତବାଦ ବ୍ୟାପୁଛି, ସମ୍ପ୍ରାସବାଦୀଙ୍କ ଭୟରେ ଲୋକେ ଥରହର, ଅଥଚ ସେଭଳି ପରିସ୍ଥିତିରେ ସୁଦ୍ଧା ଜଣେ ଧନୀଲୋକର ହୃଦୟ ଖୋଲି ତାଙ୍କ କଥାରେ ବଦଳି ଯାଇପାରୁଛି ଓ ତାଙ୍କ ମନରେ ଦରିଦ୍ର ଗ୍ରାମବାସୀଙ୍କ ପ୍ରତି ଏପରି ସହାନୁଭୂତି ଆସୁଛି ଯେ ସେମାନଙ୍କ ପାଇଁ ସେ ଶହେ ଏକର ଜମି ଦେଇଦେଲେ ! ସେ ପର୍ଯ୍ୟନ୍ତ ବିନୋବା ଭାବୁଥିଲେ ଯେ କାଳେ ସରକାରଙ୍କୁ ଲେଖିଲେ ସରକାର ଗରିବ ଭୂମିହୀନଙ୍କୁ ଖଣ୍ଡେ ଖଣ୍ଡେ ଜମି ଦେଇ-ଦେବେ । ତେଣୁ ସେ ପ୍ରତ୍ୟେକ ଭୂମିହୀନଠାରୁ ସରକାରଙ୍କ ପାଖକୁ ଖଣ୍ଡିଏ ଖଣ୍ଡିଏ ଦରଖାସ୍ତ ସଂଗ୍ରହ କରୁଥିଲେ । ସେଦିନ ସଭାରେ କେତେଜଣ ଭୂମିହୀନ ହରିଜନ ଅଗ୍ରସର ହୋଇ ବିନୋବାଙ୍କୁ କହିଲେ "ଆମ୍ଭକୁ ଖଣ୍ଡେ ଖଣ୍ଡେ ଜମି ଦିଅନ୍ତୁ ।" ସରକାରଙ୍କଠୁ ଜମି ମିଳୁ ମିଳୁ ଡେରି ହେବ, ତେଣୁ ସେ ଉପସ୍ଥିତ ଜନତାକୁ କହିଲେ, "ଏଠି ଯେଉଁ ବଡ଼ ବଡ଼ ଜମିମାଲିକ ଥିବେ ସେମାନେ ନିଜ ଜମିରୁ କିଛି କିଛି ଏମାନଙ୍କୁ ଦିଅନ୍ତୁ ।" ତା'ପରେ ଶ୍ରୀ ରାମଚନ୍ଦ୍ର ରେଡ୍‌ଡିଙ୍କର ସେ ସ୍ୱେଚ୍ଛାକୃତ ଦାନ । ଏହି ଅଭିଜ୍ଞତାରୁ ବିନୋବା ଭାବିଲେ ଯେ ଯଦି ଜମିଥିବା ଲୋକଙ୍କୁ ଏପରି ଅନୁରୋଧ କରାଯିବ, ତାହେଲେ ସେମାନେ ଗରିବ ଭୂମିହୀନଙ୍କ ପାଇଁ କିଛି କିଛି ଜମି ଦେବେ, ଯାହାର ବେଶି ଜମି ଅଛି ବେଶି ଜମି ଦାନ କରି ପାରିବ, ଯାହାର ଅଳ୍ପ ଜମି ଅଛି ତାର ହୃଦୟ ତରଳିଲେ ସେ ବି କିଛି ଜମି ଦେବ, ଏପରି ଭାବରେ ଜମି ମିଳିଲେ ଅନେକ ଗରିବ ଭୂମିହୀନଙ୍କୁ ଜମି ଦେଇ ଥଇଥାନ କରିହେବ । ସେଥିପାଇଁ ସେ କହିଲେ, ଏ ପ୍ରକାର କାର୍ଯ୍ୟ ଚାଲିବ, 'ଭୂଦାନ' ଦ୍ୱାରା ଭୂମି ସଂଗ୍ରହ ହେବ, ଯାହାକୁ ଗୋଟିଏ 'ଯଜ୍ଞ' ବୋଲି କୁହାଯିବ, ଏ ହେବ 'ଭୂଦାନ ଯଜ୍ଞ' । ସେ ଏଥିପାଇଁ ଗୋଟିଏ ଯୋଜନା କଲେ । ସେ କହି ବୁଲିଲେ "ଧରି ନିଅ ତୁମ ଘରେ ୬ ପ୍ରାଣୀ

ଅଛନ୍ତି, ତହିଁରୁ ଜଣେ ଅନୁପସ୍ଥିତ, ସେହି ଜଣକ ମୁଁ, ବିନୋବା, ମୋ ଭାଗଟା ମତେ ଦେଇଦିଅ । ଅର୍ଥାତ୍ ତୁମର ଯେତକ ଜମି ଅଛି ତହିଁରୁ ଛଅ ଭାଗରୁ ଭାଗେ ମତେ ଦାନପତ୍ର ଲେଖି ଦେଇଦିଅ, ସେହି ଜମି ଭୂମିହୀନ ପାଇବେ ।'' ଏଇଆ କହି ବୁଲି ବୁଲି ବୁଲ୍ ବୁଲ୍ ସେ ଆନ୍ଧ୍ରରେ ଅଢ଼େଇ ମାସରେ ତେରହଜାର ଏକର ଜମି ଦାନ ପାଇଗଲେ, ସେ ଜମି ଗରିବ ଭୂମିହୀନଙ୍କୁ ବଣ୍ଟାଗଲା । ଦେଖାଗଲା ଯେ ତେଲେଙ୍ଗାନାରେ 'ଭୂଦାନ ଯଜ୍ଞ' ଡେଇଁ ଉଠୁଛି, ହିଂସାର ନିଆଁ ନିଭି ଆସୁଛି ।

୧୯୫୧ ଅପ୍ରେଲ ପରେ ବିନୋବା ଏହିସବୁ କଥା ଲେଖି 'ଭୂଦାନ ଯଜ୍ଞ'ର ଆଦର୍ଶ ଓ ଉପଯୋଗିତା ବିଷୟରେ ହିନ୍ଦୀ ସର୍ବୋଦୟ ପତ୍ରିକାରେ ଲେଖାଗୁଡ଼ିଏ ଛପାଉଥିଲେ । ଭୂଦାନ କାର୍ଯ୍ୟ ବିଷୟରେ ଖବର କାଗଜରେ ବି ବାହାରିଲା । ବିହାରରେ ଭୂଦାନ କାମ ଲାଗିଗଲା ଓ ଭାରତର ଅନ୍ୟ କେଉଁ ପ୍ରଦେଶରେ ମଧ୍ୟ, କିନ୍ତୁ ଓଡ଼ିଶାରେ କେଉଁଠି ହେଲେ ଆରମ୍ଭ ହୋଇ ନ ଥାଏ । ଗୋପବାବୁ ବିନୋବାଙ୍କ ଲେଖା ଓ ଖବର କାଗଜର ଲେଖା ସବୁ ପଢ଼ୁଥାନ୍ତି, କିନ୍ତୁ ତଥାପି ସେ ସ୍ଥିର କରିପାରି ନ ଥାନ୍ତି ଯେ ସେ ଯେଉଁ ବାଟ ଖୋଜୁଛନ୍ତି ତାର ଉତ୍ତର ହେବ ଭୂଦାନ-ପନ୍ଥା । 'ଭୂଦାନ-ଯଜ୍ଞ'ର ଧାରଣା ତାଙ୍କ ମନରେ ପ୍ରଭାବ ପକାଉଥାଏ କିନ୍ତୁ ତାଙ୍କୁ ପୂରା ଓଟାରି ନେଇପାରୁ ନ ଥାଏ । ପ୍ରଥମତଃ, ତାଙ୍କ ମନରେ ଦ୍ୱିଧା ଥାଏ ଭୂଦାନ ହିଁ ଦେଶର ଗରିବଙ୍କ ସମସ୍ୟାର ସମାଧାନ ଲାଗି ଉପଯୁକ୍ତ ଓ ସ୍ୱୟଂ-ସମ୍ପୂର୍ଣ୍ଣ ବାଟ କି ନୁହେଁ । ଦ୍ୱିତୀୟତଃ, ତାଙ୍କ ମନରେ ସନ୍ଦେହ ଥାଏ ଯେ ଲୋକଙ୍କୁ ସେ ଭୂମିଦାନ ମାଗିଲେ ଲୋକେ ତାଙ୍କୁ ଭୂମି ଦେବେ କି ନାହିଁ । ଭାବୁଥାନ୍ତି ''ଲୋକେ ଯିଏ ବିନୋବାଙ୍କୁ ସନ୍ଥ ବୋଲି ଭାବନ୍ତି, ସେ ବାବାଜି ଭାବି ତାଙ୍କୁ ଭୂମିଦାନ ଦେଉଛନ୍ତି, ତା ବୋଲି କଣ ମତେ ଦେବେ ? ତେବେ ମୁଁ ସେ ବାଟ ଧରି ଲାଭ କଣ ?''

ସେ ବର୍ଷରୁ ବାହାରିଲା ସନ ୧୯୫୨ ଜାନୁଆରି ୭ରେ ବର୍ଗୀ-ରାମଚନ୍ଦ୍ରପୁର ସଭାରେ ଆଗ ଜଣେ ଭଦ୍ରମହିଳା ଶ୍ରୀମତୀ ହରପ୍ରିୟା ଦେବୀ, ସ୍ୱାମୀ ଶ୍ରୀ ବାସୁଦେବ ସାମଲ, ଘର-ବର୍ଗୀ-ରାମଚନ୍ଦ୍ରପୁର ତାଙ୍କ ବକ୍ତୃତା ଶୁଣି ତାଙ୍କୁ ଅଠଗୁଣ୍ଠ ଜମି ଦେଲେ, ଗରିବ ଭୂମିହୀନଙ୍କୁ ବାଣ୍ଟିବା ପାଇଁ । ଓଡ଼ିଶାରେ ସେହି ପ୍ରଥମ 'ଭୂଦାନ' ଓ ୭-୧-୫୨ ତେଣୁ ହେଲା ଓଡ଼ିଶାରେ ଭୂଦାନର ଜନ୍ମଦିନ, ସେଦିନ ତାଙ୍କ ପରେ ଆଉ ତିନିଜଣ ତାଙ୍କୁ ଭୂମିଦାନ ଦେଲେ, କିନ୍ତୁ ସେତେବେଳକୁ ଗୋପବାବୁ 'ଭୂଦାନ' ମାର୍ଗ ଧରିବେ ବୋଲି ନିଷ୍ପତ୍ତି କରି ନାହାନ୍ତି, ଘୋଷଣା ବା କାହିଁ କରନ୍ତେ । ଫେବୃଆରି ପହିଲାରୁ ଆଠ ତାରିଖ ଯାଏ ଅନୁଗୁଳ ପାଖ 'ଟାଙ୍ଗିପାୀ' ଗାଁରେ ରଚନାତ୍ମକ କର୍ମୀଙ୍କ ବାର୍ଷିକ ସମ୍ମିଳନୀ ଓ ଶିବିର ହେଲା, ଗୋପବାବୁ ଉପସ୍ଥିତ

ଥିଲେ । ସେତେବେଳେ ସେ ନିଷ୍ପତ୍ତି କଲେ ଯେ 'ଭୂମିଦାନ ଯଜ୍ଞର ପ୍ରଚାର ପାଇଁ କାର୍ଯ୍ୟ କରିବା ସେବକମାନଙ୍କର ମୁଖ୍ୟ କାମ ଭିତରୁ ଗୋଟିଏ ହେବା ଉଚିତ' ଓ ଏହି ମର୍ମରେ ପ୍ରସ୍ତାବ ପାଶ୍ ହେଲା ଓ ଭୂଦାନ ଯଜ୍ଞ ଲାଗି 'ପ୍ରାଦେଶିକ ସମିତି' ଗଢ଼ା ହେଲା । ୭-୪-୫୨ରେ ସମ୍ବଲପୁର ଜିଲ୍ଲାର ବୋଡ଼ା-ସମ୍ବର (ପଦ୍ମପୁର) ଜମିଦାରୀ ଅନ୍ତର୍ଗତ 'ଗାଇସିଲେଟ୍' ଗାଁରେ ଗୋଟିଏ ସଭାରେ ଭାଷଣ ଦେଲାବେଳେ ଗୋପବାବୁ ସର୍ବପ୍ରଥମେ 'ଭୂଦାନ' ଶବ୍ଦଟି ଉଚ୍ଚାରଣ କରିଥିଲେ ବୋଲି କର୍ମୀ ଶ୍ରୀ ମଦନମୋହନ ସାହୁ କହନ୍ତି, ତାଙ୍କ ଡାଇରୀରେ ସେ ଶବ୍ଦଟି ପ୍ରଥମଥର ଦିଶେ ୮-୪-୫'ରେ 'ବଡ଼ ସଭା' ବୋଲି ଲେଖିଲା ବେଳେ । ବାରିରୁ ବାହାରି ଯାଇ ଏହି ପ୍ରଥମ ପଦଯାତ୍ରାରେ ଆଗ ବରୀ-ରାମଚନ୍ଦ୍ରପୁରରେ, ତାପରେ ୭-୪-୫୨ରେ ଗାଇସିଲେଟ୍‌ଠୁ ଆରମ୍ଭ କରି ସେବର୍ଷ ଅଗଷ୍ଟ ଶେଷସୁଦ୍ଧା ୨୫ ଜଣ ଦାତା ପ୍ରାୟ ଏ ୧୭୨୫.୪୦ ଜମି ଦାନ ଦେବାକୁ ପ୍ରତିଶ୍ରୁତି ପତ୍ର ଲେଖିଦେଲେ । ତେଣୁ ତାଙ୍କର ଏହି ପ୍ରଥମ ପଦଯାତ୍ରା ଆରମ୍ଭରୁ 'ଭୂଦାନ' ଉଦ୍ଦେଶ୍ୟରେ କଳ୍ପିତ ହୋଇ ନ ଥିଲେ ସୁଦ୍ଧା ଏହା ତାଙ୍କର ପ୍ରଥମ 'ଭୂଦାନ ପଦଯାତ୍ରା' ଓ ଓଡ଼ିଶାରେ ପ୍ରଥମ 'ଭୂଦାନ ପଦଯାତ୍ରା' ବୋଲି ବିଦିତ ହେଲା ।

୧୯୫୨ ଜାନୁଆରୀ ୭ରେ ପଦଯାତ୍ରାରେ ବାହାରି ପଡ଼ିବା ପୂର୍ବଦିନ ୭-୧-୫୨ରେ ବରୀ-ରାମଚନ୍ଦ୍ରପୁରରେ ଗୋଟିଏ ବଡ଼ ସଭା ହୋଇଥିଲା । ଯେଉଁ ବାରିରେ ସେ ଏତେବର୍ଷ ବିତାଇଥିଲେ ତାକୁ ଛାଡ଼ି ଚାଲିଯିବା ପୂର୍ବରୁ ସେ ଅଞ୍ଚଳର ଲୋକଙ୍କୁ ସେ ସଭାରେ ସେ ତାଙ୍କର ଚିନ୍ତା, ବିଚାର ଓ ଉଦ୍ଦେଶ୍ୟ ବୁଝାଇଥିଲେ । ତେଣୁ ବକ୍ତୃତାଟି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ପରେ ବକ୍ତୃତାଟି ୧୯୫୨ ଜାନୁଆରୀ ସଂଖ୍ୟା 'ଗ୍ରାମସେବକ' ପତ୍ରିକା (ପୃ ୭୫)ରେ ଛପା ହୋଇଥିଲା । ତହିଁରୁ କିଛି ଉଦ୍ଧୃତାଂଶ ଦେଲି :

"ଭାଇମାନେ,

ମୁଁ ଆପଣମାନଙ୍କୁ ଅନେକ କଥା କହିବି ବୋଲି ସୁଯୋଗ ଖୋଜୁଥିଲି, ନିର୍ବାଚନ ଗୋଳମାଳ ଯୋଗୁଁ ସୁବିଧା ପାଇ ନ ଥିଲି । ···ମୁଁ ଦେଖିଲି ଯେ ଯେପରି ଗଣେଶ ମହାଦେବଙ୍କ ଚାରିପଟେ ବୁଲି ବ୍ରହ୍ମାଣ୍ଡ ବୁଲିଥିଲେ ବୋଲି କହିଥିଲେ ସେମିତି ମୁଁ ଉତ୍କଳର ନାନାଅଡ଼େ ବୁଲି ଆସିଥିଲେହେଁ ଯଦି ଓଡ଼ିଶାର ଗରିବ ଓ ମୂଲିଆ-ମାନଙ୍କର କିଛି କରିପାରିବି ତେବେ ସମୁଦାୟ ପୃଥିବୀର କିଛି କଲି ବୋଲି ମନେହେବ ।

ଏ ଯେଉଁ ଭୋଟ ବେପାର ଚାଲିଲା ଏଥିରେ ବ୍ରାହ୍ମଣ ଦଉଡ଼ି ଛିଣ୍ଡାଇଲା ଭଳି ସବୁ ଦଳ ଓ ସବୁ ଲୋକେ ମାତି ଉଠିଲେ, ଏହାଦ୍ୱାରା ଆମ ଦୁଃଖ ଯିବ ନାହିଁ ।

ଭୋଟ ଦେଇସାରି କେତେ ଲୋକ ମତେ ଯାଇ କହିଲେ ଆପଣଙ୍କୁ ଭୋଟ ଦେଇ ଆସିଲୁଁ । ନୋଟ, ଭୋଟ, ଚୋଟ ଏ ତିନୋଟି ଏକାଭଳି ବ୍ୟାପାର ବର୍ତ୍ତମାନ ଦେଶରେ ଘୋଟିଛି । ମୁଁ ତ କାହାକୁ ଭୋଟ ଦେବି ନାହିଁ ବୋଲି ଆଗରୁ ଜଣେଇ ଦେଇଥିଲି । କେତେ ଲୋକ ମତେ କହିଲେ ଆମେ ଆପଣଙ୍କ ବାକ୍ସରେ ଗୋଟାଏ ଭୋଟ ଦେଲୁଁ । କିନ୍ତୁ ତା ସହିତ ମୋର ସମ୍ପର୍କ ନାହିଁ ।

ବର୍ତ୍ତମାନ ଆମ ଦେଶ ଆଗରେ ବଡ଼ ଖରାପ ବେଳ ଆସି ପହଞ୍ଚିଛି । ବିଦେଶୀ ଶତ୍ରୁମାନେ ଆମକୁ କବଳରେ ପକାଇବା ପାଇଁ ଚାହିଁ ବସିଛନ୍ତି । ଏଣେ ମଧ୍ୟ ସ୍ୱରାଜ ହେବାର ପାଞ୍ଚବର୍ଷ ପରେ ବି ଆମ ଦେଶର ଲୋକେ ଖାଇବାକୁ ନ ପାଇ ମରୁଛନ୍ତି । ଲୋକଙ୍କର ଖାଇବାକୁ ନଅଣ୍ଟ ହେଲେ ଦେଶରେ ବିପ୍ଳବ ଆସେ ଯାହାକି ତେଲେଙ୍ଗାନାରେ ହେଲା । ସେଥିରେ ଆମର କର୍ତ୍ତବ୍ୟ କଣ ? ...ଯଦି ରୁଷ୍ ବା ଚୀନ୍ ଭଳି ଆମ ଦେଶରେ ହାଣକାଟ ଚାଲେ ତେବେ ତାର ପ୍ରତିକାର କଣ ହେବ ? ମୋର ବିଶ୍ୱାସ ନୁହେଁ କି ଅନ୍ୟମାନଙ୍କର ବିଶ୍ୱାସ ନୁହେଁ ଯେ ଭୋଟ ଦ୍ୱାରା ଏହାର ସମାଧାନ ହୋଇପିବ ।

ବର୍ତ୍ତମାନ ଗାନ୍ଧୀଜୀଙ୍କର ଜଣେ ବଡ଼ ଚେଲା ବିନୋବାଜୀ ଜମି ସମସ୍ୟାର ସମାଧାନ ପାଇଁ ଲାଗି ପଡ଼ିଛନ୍ତି । ହାଇଦ୍ରାବାଦରେ ଏ ଭୂମି ସମସ୍ୟା ଯୋଗୁ ହାଣକାଟ ଲାଗିଥିଲା । ସେ ହାଇଦ୍ରାବାଦ ଯାଇ ଭୂମିଦାନ ଯଜ୍ଞ ଆରମ୍ଭ କରିଛନ୍ତି । ସେଠି ସେ ଜମି ମାଗି ବର୍ତ୍ତମାନ ଯାଏ ଦେଢ଼ଲକ୍ଷ ଏକର ଜମି ପାଇଛନ୍ତି । ସରକାର ବି ସେଠି ବର୍ତ୍ତମାନ ଏକଲକ୍ଷ ଏକର ଯାଏ ଜମି ବାଣ୍ଟୁଛନ୍ତି । ଆମ ଲୋକଙ୍କର ପ୍ରେମ, ଧର୍ମ, ବିଶ୍ୱାସ ଅଛି, ଆମ ଓଳିତଳେ କେବେ ଜଣେ ଲୋକ ଉପାସ ରହିବ ନାହିଁ । ବିନୋବାଜୀ ପାଞ୍ଚକୋଟି ଏକର ଜମି ଭାରତବର୍ଷରୁ ଦାନ ଗ୍ରହଣ କରିବେ ବୋଲି ସଂକଳ୍ପ କରିଛନ୍ତି । ଆମ ଓଡ଼ିଶାରେ ମଧ୍ୟ ଏ ସମସ୍ୟା ଅଛି । କୋରାପୁଟ ଗୋଟିଏ ଜମିଦାରୀ, ଜୟପୁର ରାଜାଙ୍କ ଅଧୀନ, ତାହା ବର୍ତ୍ତମାନ କୋର୍ଟ ଅଫ୍ ଓ୍ୱାର୍ଡ଼ସ୍ ହୋଇଛି । ସେଠି ଜମି ଖୁବ୍ ଅଛି, ଅଥଚ ଗତବର୍ଷ ସେଠି ଦୁର୍ଭିକ୍ଷ ପଡ଼ିଥିଲା, ଲୋକେ ଖାଇବା ବିନା ମଲେ । ଗ୍ରୀଷ୍ମ ପହଞ୍ଚିଲା ବେଳକୁ ଲୋକଙ୍କ ହାତରେ ଟଙ୍କା ନ ଥିଲା । ଆପଣମାନେ ଦେଖିଥିବେ, ଥରେ ଖବର କାଗଜରେ ବାହାରିଥିଲା ଯେ ହାଇଦ୍ରାବାଦରୁ କୋରାପୁଟ ଭିତରକୁ ସମସ୍ତ କମ୍ୟୁନିଷ୍ଟ ବାହିନୀ ପଶି ଆସିଛନ୍ତି, ଏଇ ଜିଲ୍ଲାର ରାୟଗଡ଼ା ଅଞ୍ଚଳରେ ଲୋକେ ଧାନ କାଟି ନେଇ ଯାଉଛନ୍ତି, ମୁଁ ସେଠାକୁ ଚାଲି ଚାଲି ବାହାରିଛି । ଏହିସବୁ ସମସ୍ୟାର ବାଟ ଖୋଜିବାକୁ ମୁଁ ବାହାରିଛି ।"

ସେହି ବକ୍ତୃତାରେ ତାପରେ କହିଛନ୍ତି :

"ଆପଣମାନଙ୍କୁ ଏହି ଯୋଡ଼ିଏ ପ୍ରଶ୍ନ ମୁଁ ପଗ୍ଚରୁଲି । ବାଟରେ ସମସ୍ତଙ୍କୁ ପଗ୍ଚରିବ, ଲୋକେ ନିଜେ ଯ୍ବାର ସମାଧାନର ବାଟ ଖୋଜନ୍ତୁ । ତା' ସଙ୍ଗେ ସଙ୍ଗେ ବ ଭୂମିଦାନ କଥା ଲୋକଙ୍କ କାନରେ ପକାଇଦେବ । ସେଠୁ କାମ ସାଈ ମୁଁ ବରଷା ବେଳକୁ ଫେରିପାରେ ।"

ସେ ଭାବୁଛନ୍ତି ଯେ ଦେଶରେ ଉତ୍ସାହ ଉଦ୍ଦୀପନା ମନୋବଳ ପରିବର୍ତ୍ତେ ନୈରାଶ୍ୟ ଓ ଦୁର୍ବଳତା ଦେଖିଛି, ତାଙ୍କ ଇଚ୍ଛା ଯେ ଲୋକଙ୍କୁ ଗାଁ । ଗାଁକେ ଭେଟି ପୁଣି ତାଙ୍କଠି ଆତ୍ମବଳ, ଆଶା, ଉତ୍ସାହ ସଞ୍ଚାର କରିବାକୁ ପଡ଼ିବ, ଲୋକଶକ୍ତି ହିଁ ଦେଶର ଅସଲ ବଳ, ସେ ଦୁର୍ବଳ ହୋଇଛି, ତାକୁ ସବଳ କରିବାକୁ ପଡ଼ିବ । ୧୯୨୧ ପରେ ଅସହଯୋଗ ଆନ୍ଦୋଳନ ହଠାତ୍ ବନ୍ଦ ହେବାପରେ ସେ ସେଇଆ କରିଥିଲେ, ସେପରି କରିଥିଲେ ବୋଲି ଜେଲ, ବଢ଼ି ବେଳେ, ସବୁ ବିପଦ ବେଳେ । ଭାବୁଛନ୍ତି, ଏବେ ତାହାର ପ୍ରୟୋଜନୀୟତା ବେଶି ।

ପୁଣି ସେ ବକ୍ତୃତାରେ କହୁଛି :

"ତେବେ ଏ ଅବସ୍ଥାର ଗୋଟାଏ ପ୍ରତିକାର ଦିଶୁଛି, ତିରିଶି ବର୍ଷ ତଳେ ଗାନ୍ଧିଜୀ ଏ ଦେଶରେ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କଲେ । ତା ଆଗରୁ ଆମେ ପାଠୁଆ ଲୋକଙ୍କ ମୁହଁକୁ ଅନେଇ ବସିଥିଲୁ । ସେ ପାଠୁଆମାନେ ଆମକୁ ଇଂରେଜଙ୍କ-ପାଖରେ ବନ୍ଧା ପକାଇଥିଲେ । ଗାନ୍ଧିଜୀ ଗରିବ ଲୋକଙ୍କର, ଅସହାୟ ଲୋକଙ୍କର ବଳ ବଢ଼ାଇଦେଲେ । ଫଳରେ ପାଠୁଆ ଦବି ଯାଇଥିଲେ । ଏବେ ଲୋକଙ୍କର ସେ ବଳ କମି ଯାଇଛି । ତା ନ ହେଲେ ଆଜି ଓକିଲ ଓକିଲାତି କରିବା ସଙ୍ଗେ ସଙ୍ଗେ ଦେଶସେବା କରିବା ଦୁଆଙ୍ଗ କରିବାକୁ ସାହସ ନାହିଁ । ଓକିଲ, ରାଜା, ଜମିଦାର ସବୁ ମୁଣ୍ଡଟେକି ସବୁ ଦଳ ମାଡ଼ି ବସିଛନ୍ତି ।

ଗାନ୍ଧିଜୀ ଆମକୁ ଗୋଟାଏ ଅହିଂସା ବାଟ ଦେଖାଇ ଦେଲେ । ମୋର ସେଥିରେ ପୂରା ବିଶ୍ୱାସ ଅଛି । କିନ୍ତୁ ତଥାପି ମୁଁ ସଫା କହି ଦେଉଛି ଯେ ଯଦି ଲୋକେ ମରୁଥିବେ ଅଥଚ ଆମେ ଅହିଂସା ମାଳା ଜପି ବସିଥିବା, ତାର କିଛି ପ୍ରତିକାର ନ କରି ପାରିବା, ତେବେ ଅବସ୍ଥା ମୁଁ ବରଦାସ୍ତ କରିପାରିବି ନାହିଁ । କୋରାପୁଟରେ ଦୁର୍ଭିକ୍ଷ ହେଲା, ଲୋକ ମଲେ, ସେଠିକି ଆଚାର୍ଯ୍ୟ ମହାଶୟ, ରମା ଦେବୀ, ମାଳତୀ ଦେବୀ ହେରିକା ଗଲେ, ମୁଁ ଗଲି ନାହିଁ । ମୋର ରକ୍ତ ଗରମ । ମୁଁ ଲୋକ ମରିବା ସହିପାରି ନ ଥାନ୍ତି ।

ଏଇଠି ସେହି ଲୋକ ମରିବା ଦେଖି ମୁଁ ସ୍ୱୀକାର ଗ୍ରହୁଥିଲି । ତେବେ ମୋର ବିଶ୍ୱାସ ଯେ ଏ ଦେଶରେ ଗାନ୍ଧିଜୀ ଯୋଉ ମଞ୍ଜି ବୁଣି ଦେଇ ଯାଇଛନ୍ତି ତାହାର

ଭିତରେ ହେଲେ ତାହା ଗଚ୍ଛ ହେବ । ଅଜଣା ଅଶୁଣା ଲୋକଙ୍କ ଭିତରୁ କେହି ନୂଆ ନେତା ବାହାରିବ, ବାଟ ଦେଖାଇବ ।

ଭୋଟ ପରେ ଆପଣମାନଙ୍କୁ ଏ କଥା କହୁଛି । ଏ ଗଣତନ୍ତ୍ର ହିଁ ଏକ ବିପଦ ହୋଇଛି । ଏ କେବଳ ମନ୍ତ୍ରୀମାନଙ୍କ କବଳରେ ରହୁଛି । ଆଦିବାସୀ ଅଞ୍ଚଳରେ ତ ଅଧିକାଂଶ ଲୋକ ଭୋଟ ଦେବାକୁ ଆସିଲେ ନାହିଁ, କାହିଁକି ଆସିବେ ? ସେହି ଅଞ୍ଚଳକୁ ମୁଁ ଯାଉଛି । ମିଳିମିଶି ଚଳିବା ନା ହାଣକାଟ ହେବା ? ଏ ପ୍ରଶ୍ନ ରଖି ଦେଇ ଯାଉଛି । ଆପଣମାନେ ଏହାର ସମାଧାନର ବାଟ ବିଚାରନ୍ତୁ ।"

ସେହି ପଦଯାତ୍ରାରେ ବାହାରି ୧୩-୨-୫୨'ରେ ପୁରୀରେ ସର୍ବୋଦୟ ମେଳାରେ ଗୋଟିଏ ଖୁବ୍ ବଡ଼ ସଭାରେ ସେ ଭାଷଣ ଦେଇଥିଲେ । 'ଗ୍ରାମସେବକ'ର ଫେବୃଆରୀ ୧୯୫୨ ସଂଖ୍ୟାର ପୃ ୧୩-୧୭ରେ ତାହା ଛପା ହୋଇଛି । ସେଠିବି ସେହିକଥା ସେ କହିଥିଲେ । ତହିଁରୁ କିଛି ଉଦ୍ଧୃତାଂଶ ତଳେ ଦିଆଗଲା :

"ମୁଁ କୋରାପୁଟ ଯିବାକୁ ବାହାରିଛି । ଆପଣ ଜାଣନ୍ତି ୨ ମାସ ପୂର୍ବେ ସେଠି ଲୋକେ ଖାଇବାକୁ ନ ପାଇ ମରିଛନ୍ତି । ଏହା ସରକାର ମାନିଛନ୍ତି ଓ କର୍ମୀମାନେ ରିପୋର୍ଟ ଦେଇଛନ୍ତି ।

ରିଲିଫ୍ ଦେଇ ଆମେ କେତେଦିନ ଲୋକଙ୍କୁ ବଞ୍ଚାଇବା ? ଏହାର ସ୍ଥାୟୀ ପ୍ରତିକାର ଦରକାର । କୋରାପୁଟ ଅବସ୍ଥା ଅନେକ ଜାଗାରେ ଅଛି । ଲୋକେ ନ ମଲେ ବି ମରିବା ଅବସ୍ଥାରେ ଅଛନ୍ତି ଓ ଦରପେଟ ଖାଉଛନ୍ତି । ଏହାର ଗୋଟାଏ ଅହିଂସକ ସମାଧାନର ବାଟ ମୁଁ ଖୋଜୁଛି ।

ଗାଁ ଗାଁ ବୁଲି ମୁଁ ଅନୁଭବ କରୁଛି ଯେ ଆପଣମାନେ ସହରରେ ଗୋଟାଏ ବାରୁଦ କାରଖାନା ଉପରେ ବସିଛନ୍ତି । ଏ ଦେଶର ପ୍ରତ୍ୟେକ ଗାଁ ଗଣ୍ଡା ଆଜି ଗୋଟାଏ ଗୋଟାଏ ବାରୁଦର ସ୍ତୂପ । ଏସବୁ ସମସ୍ୟାର ଅହିଂସକ ସମାଧାନ ନ ହେଲେ ହିଂସକ ସମାଧାନ ହେବ ହିଁ ହେବ ।

ମୁଁ ଜମିର ଭିକାରୀ ନୁହେଁ, ମୁଁ ବିଚାରର ଭିକାରୀ ହୋଇ ଠିଆ ହୋଇଛି । ଆପଣମାନେ ବୁଝନ୍ତୁ, ବିଚାର ଦିଅନ୍ତୁ । ××× ମଫସଲରେ ଏକଥା କହିବାବେଳେ ଲୋକଙ୍କୁ ଆଉ ଗୋଟିଏ କଥା ବି ଶୁଣାଇ ଦେଉଛି । ବିନୋବାଙ୍କୁ ଗୋଟାଏ ବାଟ ଦିଶି ଯାଇଛି, ସେ ବାଟରେ ସେ ଚାଲିଛନ୍ତି । ହାଇଦ୍ରାବାଦରେ କେତେ ଅଞ୍ଚଳରେ ଗତ ୨।୩ ବର୍ଷ ହେଲା ହାଣକାଟ ଚାଲିଥିଲା······ଲୋକେ ଏଥିରୁ ଭାବିଲେ ଯେ ତେଲେଙ୍ଗାନା ଅଞ୍ଚଳରେ ଆଗ ହାଣକାଟ ହୋଇଥିବାରୁ ବିନୋବାଙ୍କ କାମ ସହଜ

ହେଲ, ମାତ୍ର ହାଣ୍ଡିକୋଟ ନ ହୋଇଥିବା ଜାଗାରେ (ମଧ୍ୟ ଭାରତରେ ଓ ଉତ୍ତର ପ୍ରଦେଶରେ) ବି ୭୧,୦୦୦ ଏକର ଜମି ତାଙ୍କୁ ମିଳିଛି । ଆମ ମନକୁ ସେକଥା ପାଉଛି ଯେ ଲୋକେ ଗୋଟାଏ ଶାନ୍ତିପୂର୍ଣ୍ଣ ବାଟରେ ସମାଧାନ ଚାହାନ୍ତି ।

ଆମ ଓଡ଼ିଶାର କଥା ଖବର କାଗଜରେ ବାହାର କରିନାହୁଁ । ଓଡ଼ିଶାରେ ବି ବଡ଼ ଲୋକେ, ଗରିବ ଲୋକେ ଜମି ଦେବା ଆରମ୍ଭ କରିଛନ୍ତି । ଆମେ ଜାଣୁ ଟ ୫୦୦ଙ୍କା କି ଟ ୧୦୦୦ଙ୍କା ଚାନ୍ଦା ଉଠେଇବା କେଡ଼େ କଠିନ କଥା, କିନ୍ତୁ ଦୁଇଦିନ ମଧ୍ୟରେ ମୋଟେ ଦଶ ହଜାର ଟଙ୍କାର ସମ୍ପତ୍ତି ମିଳିଲା, ତାପରେ ବି ମିଳୁଛି ।

ଏ କାମ ଠିକ୍ ଭାବରେ ଚାଲିଲେ ଆଗକୁ ବଢ଼ିବ । ବେଶି କରି ମୁଁ ସ୍ମରଣ କରାଇ ଦେଉଛି ଯେ ଆପଣମାନେ ସମ୍ପତ୍ତିର ଦାନକରି ଏହାକୁ ପରିପୁଷ୍ଟ କରନ୍ତୁ ।

ପଶୁର ବି ବଞ୍ଚିବାକୁ ଯେତିକି ଦରକାର, ଲୋକେ ତାହା ନ ପାଇଲେ ସ୍ୱାଧୀନତାର ଅର୍ଥ କଣ ?

ଧାନଚାଷ କମିଯାଉଛି—ଖୋଟ ଧୂଆଁପତ୍ର କପା ଆଦି କରି ପଇସା ମିଳୁଥିବା ଫସଲ ବଢ଼ୁଛି । ... ଖୋଟ ବାହାରେ ଟ ୧୦୦ଙ୍କାରେ ବିକ୍ରୀ ହେଉଛି ତ ଚାଷୀ ମୋଟେ ଟ ୩୦ଙ୍କା କି ଟ ୩୫ଙ୍କା ପାଉଛି । ଚାଷୀ କିପରି ବେଶି ପାଇବେ ତାର ବ୍ୟବସ୍ଥା ସରକାର କରୁନାହାନ୍ତି । କାରଣ ଇନ୍‌କମ୍‌ଟ୍ୟାକ୍‌ସ, ସୁପରଟ୍ୟାକ୍‌ସ ତବେ ଲୋକଙ୍କଠାରୁ ମିଳିବ ନାହିଁ । ମାତ୍ର ଲୋକେ ଏହା ବୁଝିବାକୁ ଆରମ୍ଭ କଲେଣି । ଧୋବଧାଉଳିଆ ଲୋକେ ତାଙ୍କୁ ଠକୁଛନ୍ତି ବୋଲି ଜାଣିଲେଣି ।

ମୁଁ ମଫସଲର ଲୋକଙ୍କୁ ଅନେକାରେ କହୁଥାଏଁ, ଭୋଟ ଦେଲ ଭଲ କଲ, କିନ୍ତୁ ହଜାରେ ଟଙ୍କିଆ ବଳଦ ହେଲେବି ହାତରେ ପାଞ୍ଚଣ ଦରକାର । ବିନା ପାଞ୍ଚଣରେ କେହି ଚାଲିବ ନାହିଁ । ଆମେରିକା ଲଣ୍ଡନରେ ବି ଧର୍ମଘଟ ହେଉଛି । ସରକାରଙ୍କୁ ଚେତେଇବା ପାଇଁ ଲୋକଙ୍କ ହାତରେ ଏ ବଳ ରହିଛି । ଯେ ପ୍ରକୃତ ନେତା ହୋଇଥିବ ସେ ଲୋକଙ୍କୁ ଏହି କଥା ଶିଖାଇବା ଦରକାର ଯେ ଆମେ ଯେଉଁମାନେ ଗାଦୀରେ ବସିଛୁଁ, ଭୁଲ୍ କରୁଛୁ ତ ଆମକୁ ଓଟାରି ପକାଅ । ସେ ଜିନିଷ ବାହାରିଲେ ଆମେ ପୁରୁଖକୁରେ ଆଗେଇବା । ଯଦି ଲୋକଙ୍କ ଭିତରେ ଏ ବଳ ନ ରହେ ତେବେ ଆମର ବିକାଶ ହେବ ନାହିଁ । ମୋର ମନ ଟାଣ ହୋଇଗଲା ଯେ ଆମ ଦେଶରେ ଗୋଟିଏ ନିଷ୍ପକ୍ଷ ଦଳ ରହିବା ଦରକାର । "ବାଣୀରେ ନିଷେଧ ଓ କୃତିରେ ସତ୍ୟାଗ୍ରହ" ଏ ଦଳର କାମ ହେବ । ଏ ଦଳ ପାଇଁ ବ୍ୟକ୍ତି ଓ ନୂଆ ଚିନ୍ତାଧାରା ଦରକାର, ଆପଣମାନେ ଗମ୍ଭୀର ଚିନ୍ତା କରନ୍ତୁ । ଭୂମିଦାନ ପୂର୍ବରୁ ବସ୍ତ୍ର ଦାନ

କରନ୍ତୁ—ଆଉ ବୁଦ୍ଧି ଦାନ କରନ୍ତୁ, ଆମେ ଯେଉଁବାଟେ ଗଲେ, କେଉଁ ବାଟ ଆମ ଦେଶ ପକ୍ଷରେ ମଙ୍ଗଳକର।

ଯେଉଁମାନେ ଭୂଦାନଯଜ୍ଞ କଥା ପଢ଼ୁଛନ୍ତି ସେଥିରେ କଣ କହିବାକୁ ହେବ କହନ୍ତୁ? ଅଳ୍ପ ଦାନ ଥିଲେ ବି ଗ୍ରାହ୍ୟ। ତଦ୍ଦ୍ୱାରା ବାଟ ସଫା ହୋଇଯିବ। ଆଉ ଦେଶରେ ହାଓ୍ୱା ତିଆରି ହେବା ଦରକାର......।"

କୋରାପୁଟ ଅଞ୍ଚଳ ସେ ଦେଖିଛନ୍ତି, ସେଠିକା ସମସ୍ୟା ଜାଣନ୍ତି। ସେହି ଚିତ୍ର ତାଙ୍କ ଆଖି ଆଗେ ଆଗେ ନାଚୁଛି, ତାଙ୍କୁ ଅସ୍ଥିର କରୁଛି। ନିସ୍ୱାସ୍ଥ, ସରଳ, ମୂକ, ଶୋଷିତ, ଅତ୍ୟାଚରିତ ମଣିଷ, ପିନ୍ଧିବାକୁ କୌପୁନି ଖଣ୍ଡେ, ଖାଇବାକୁ ପାଣି ପରି ମାଣ୍ଡିଆ ପେଜ, —ତା ବି ମିଳୁ ନାହିଁ, —ଆମ୍ବଟାକୁଆ ଭିତରର କୋଇଲି, ତେନ୍ତୁଳିମଞ୍ଜି ଭିତରର ଶସ, ଶଲପ କାଠରେ ଥିବା ଘୂଣଧୂଳି ପରି ଧୂଳି, ତାର ଜାଉ, ସେ ହୁଏ ଖାଦ୍ୟ। ତା ବି ମିଳିଲା ନାହିଁ, ଅମ୍ବ ନାହିଁ, ତେନ୍ତୁଳି ନାହିଁ, ଶଲପ ସରିଲା। ବଣର କନ୍ଦା (ମୂଳ), —ତା ତ ସରୁଛି। ତାପରେ ଅନାହାର, ନହେଲେ ଅଖାଦ୍ୟ, ବିଷ, 'ବଇଁଆ କନ୍ଦା', —ଖାଇଲେ ଝାଡ଼ା ହୁଏ, ମଣିଷ ମରେ, ସେମିତି, ଜାତି ଜାତି ପତ୍ର, ବିଷାକ୍ତ ଛତୁ, —ଖାଦ୍ୟ ପରଖି ପରଖି ପ୍ରାଣ ଶେଷ।

ହଦାକାଠି ପରି ପିଞ୍ଜରା ହାଡ଼, ପେଟ ପିଠି ଲାଗିଯାଉଛି, ପିଠିରେ ଗାଲରେ ଛାତିରେ ଜଙ୍ଘରେ କୂଳି କି ପାଚିଆ ଆକାରରେ ମନ୍ଦା ମନ୍ଦା 'ସୃଜ୍' ରୋଗ, —ମାଛି ପାଲକ ବେଢ଼ିଥିବେ, ନସା ବୋହୁଥିବ।

ପିଇବା ପାଣିର ଉତ୍କଟ ଅଭାବ, ଗାଁରେ କୂଅ ନାହିଁ, ଝରଣାରେ ପାଣି ନାହିଁ, କାଦୁଆ ଚୂଆଟାଏ ବଲରେ କେଉଁଠି ଥିଲେ ମାଟିଆ ଦୂଷିତ ପାଣି, କ୍ୱଚିତ୍ କେଉଁଠି ସ୍ୱଚ୍ଛ ପାଣି ଥାଇ ଅଣୁଖା ଝରଣାଟିଏ।

ବାଟଘାଟ ନାହିଁ, ପାହାଡ଼ ଉଠାଣି, ଓହ୍ଲାଣି, ଅଡଟ ପର୍ବତ, ଦାଢ଼, ପାତାଳୀ ଖୋଲ, ଅକଡ଼ ବାଟ।

ନିବିଡ଼ ବଣ, ସେଠି ହାତୀ, ବାଘ; ହାତୀ ଫସଲ ଉଜାଡ଼େ, ମଣିଷ ମାରେ, ବାଘ ତ ଧରି ଧରି ଖାଏ।

ଜମିତକ ନେଇ ଯାଉଛି 'ସାହୁକାର', ସାଧାରଣ ମଣିଷ ତାରି ପାଖେ ହୁଏ ମୁଣ୍ଡବନ୍ଧା 'ଗୋତି', ଋଣଟିର ଲାଗେ, ଟଙ୍କାଏ ଦେଲେ ବର୍ଷକେ ଅସୁଲ କରେ ଛ'ଟଙ୍କାର ଜିନିଷ, ଦଶଟଙ୍କାର ଜିନିଷ, ତଥାପି କହେ ଋଣ ବାକି ରହିଲା। ସେ ଫସଲ କଟିଲେ ମାପି ନେବ ବଡ଼ ମାଣରେ, ଦି ମାଣ କହି ତିନିମାଣ ନେବ, ସେ

କରଜ ଦେଲେ ମାପି ଦେବ ମାନ ମାଣରେ, ପାଞ୍ଚମାଣ ଦେଲେ ଦଶମାଣ ହେବ । ଭୂମିହୀନ ସମ୍ବଳହୀନ ଆଦିବାସୀ ବଣ ହାଣି ପୋଡୁ ଚାଷ କରେ, ଜୋରିମାନା ଦିଏ, ଜେଲ୍ ଯାଏ, କଞ୍ଚା ଫସଲ ବୋହିନିଏ 'ସାହୁକାର' । ଚାଷ ଦିନ ଗଲେ 'କୁଲି ଭୂତି' ବି ମିଳେ ନାହିଁ, ରୋଜଗାର ପାଇଁ ଧନ୍ଦା ନାହିଁ ।

ଶୋଷକ ଅଛନ୍ତି ଆଠକୁ ଆଠ, ପ୍ରକାର ପ୍ରକାର, —ଜଦରଦୀ ଲୋକ ଯେତେବେଳେ ଯାହା ଅର୍ଜିଥାଏ, ପୋଡୁଚାଷରୁ ଫସଲ କି ବଣରୁ ଗୋଟେଇଥିବା ତେନ୍ତୁଳି, କି ଗଛରୁ ତୋଳିଥିବା ଆମ୍ବ ପଣସ, ବାଡ଼ିର ମକା, କୁମୁଡ଼ା, ପାଳିଥିବା ଛେଳି କି କୁକୁଡ଼ା, ଆସନ୍ତି ସେମାନେ ଠକି ଠକି ବୋହିନେଇ ପଳାଇବାକୁ ।

ଶିକ୍ଷା ନାହିଁ, ବୁଦ୍ଧି ନାହିଁ, ପୁରୁଷମାନେ ମଦନିଶାରେ ଭୋଳ, ମଦ ପିଆଇ ସାହୁକାର ଜମି ଠକି ନିଏ, ଫସଲ ଠକି ନିଏ, ସର୍ବସ୍ୱ ଯାଏ, ତଥାପି ମଦ ଅମଲ ତୁଟେ ନାହିଁ ।

ସେହି ଲୋକେ ମରୁଡ଼ି ପଡ଼ିଲା ବୋଲି ଛଟପଟ ହେଉଛନ୍ତି, ଥୋକେ ଖାଇବାକୁ ନ ପାଇ ମଲେ ବୋଲି ସରକାର ବି ମାନିଲେ, ଏଣିକି ହିଂସା ଓ ଅଶାନ୍ତିର ନିଆଁ କୁହୁଳି ଉଠୁଛି ଖବର ଆସିଛି । ଯିବାକୁ ହିଁ ପଡ଼ିବ । ଡାକୁଛି କନ୍ଧ-ଗାମିଣି, ଡାକୁଛି କଳସପୁର ମୂଠା, ନାଗାବଳି, ଆଉ ବଂଶଧାରା ଉପତ୍ୟକା । ସ୍ଥାୟୀ ସମାଧାନ କରାଇବାକୁ ପଡ଼ିବ,—ଖାଲି ସେଠିକା ଅବସ୍ଥାର ନୁହେଁ, ସବୁ ଗରିବ କୃଷୀ-ମୂଲିଆଙ୍କ ଦୁରବସ୍ଥାର ।

ତେଣୁ ସେ ଯାଉଛନ୍ତି । ସେମାନଙ୍କୁ ସେ ଭାବ-ରାଜ୍ୟରେ ଦେଖୁଛନ୍ତି ସେମାନେ ଅସହାୟ ଦରିଦ୍ର, ଅବହେଳିତ ଶୋଷିତ, ଖାଲି ଏହି ରୂପରେ ନୁହେଁ, 'ଦରିଦ୍ର ନାରାୟଣ'ଙ୍କ ରୂପରେ, ସେହି ଶବ୍ଦଟି ତାହାପରେ ତାଙ୍କ ଦୈନନ୍ଦିନ ଡାଏରିରେ ଆତ୍ମପ୍ରକାଶ କରିଛି । ସେ ଯାତ୍ରା ହେବ ତୀର୍ଥଯାତ୍ରା, 'ଦରିଦ୍ର ନାରାୟଣ'ଙ୍କ ଦର୍ଶନ ପାଇଁ, ତାଙ୍କ ତୁଷ୍ଟି ବିଧାନ ପାଇଁ ତୀର୍ଥଯାତ୍ରା । ସେ ଥରେ କହିଥିଲେ ଓ ଲେଖିଥିଲେ, "ଦରିଦ୍ର ନାରାୟଣ ରାଗିଲେ ଆଉ ରକ୍ଷା ନାହିଁ ।"

ଏ ସଂସାରକୁ ଧ୍ୱଂସମୁହଁରୁ ବଞ୍ଚାଇବାକୁ ହେଲେ ଦରିଦ୍ର ନାରାୟଣଙ୍କୁ ସେବାକରି ତାଙ୍କୁ ତୁଷ୍ଟ କରିବାକୁ ପଡ଼ିବ ।

# ଅଣଚାଳିଶି

ବାହାରି ପଡ଼ିଲେ ପୂଜ୍ୟ ଶ୍ରୀ ଗୋପବନ୍ଧୁ ଚୌଧୁରୀ, ମୁଣ୍ଡରେ ଖଦଡ଼ ତଉଲିଆଟି ବନ୍ଧା ହୋଇଛି, ଖାଲି ଦେହ, ନିଜ ହାତକଟା ସୂତାର ହାତତନ୍ତବୁଣା ଖଦଡ଼ ଲୁଗାଟି ପିନ୍ଧିଛନ୍ତି, ପିଠିରେ ଖଦଡ଼କନାରେ ଗୁଡ଼ା ହୋଇ ସାନ ବୋଝଟିଏ ବାନ୍ଧିଛନ୍ତି, ବୋଝରେ ଅଛି ତାଙ୍କ ଅରଖଟି ଓ ଅନ୍ୟାନ୍ୟ ସାମାନ୍ୟ ବ୍ୟବହାର୍ଯ୍ୟ ଜିନିଷ, କାନ୍ଧରୁ ଖଦଡ଼ ମୁଣିଟି ଓହଳିଛି, ତହିଁରେ ସାମାନ୍ୟ ଜିନିଷ ଅଛି । ତାଙ୍କ ସଙ୍ଗରେ ଅଛନ୍ତି ପୂଜ୍ୟା ଶ୍ରୀମତୀ ରମା ଦେବୀ, ପୂଜ୍ୟ ଆଚାର୍ଯ୍ୟ ହରିହର, ପୂଜ୍ୟ ପଣ୍ଡିତ କୃପାସିନ୍ଧୁ ହୋତା, ଶ୍ରୀ ରତନ (ରାଧାରତନ) ଦାସ, ଶ୍ରୀ ଶକ୍ତିଶେଖର ଦାସ ଓ ଆଉ କେତେ କର୍ମୀ, ସେମାନଙ୍କ ସଙ୍ଗରେ ବିଛଣାପତ୍ର ବୋହି ଭାରୁଆଟିଏ ।

ସେଦିନ ତାଙ୍କ ଜୀବନର ସେହି ଐତିହାସିକ ନୂଆଯୁଗର ପ୍ରଥମ ଦିନ, ଜାନୁଆରୀ ୭, ୧୯୫୧ ।

ଲୋକେ ଚୁଣ୍ଡୁଛନ୍ତି, କୁତୂହଳରେ, ଦୁଃଖରେ, ଲୁହ ଟଳଟଳ ଆଖିରେ ଚାହିଁ ଦେଖୁଛନ୍ତି, ସେ କି ଦୃଶ୍ୟ ! ବିଦା ମାଗିଦେଇ ଚାଲିଲେ କୁଆଡ଼େ କୁଆଡ଼େ, ଚାଲି ଚାଲି ବୁଲି ବୁଲି ଯିବେ କୋରାପୁଟ ବଣ ପର୍ବତ, ଦଣ୍ଡକାରଣ୍ୟ ବନସ୍ତ, ଘରଛାଡ଼ି ବାଟ ଧରିଲେ ନିଜ ପାଇଁ ନୁହେଁ, ଗରିବଙ୍କ ପାଇଁ !

(ଦଶର) ରାମଚନ୍ଦ୍ରପୁର ବ୍ରାହ୍ମଣୀ ନଦୀବାଲିରେ ଲୋକ ଜମିଗଲେ । ପ୍ରାର୍ଥନା ସଭା ହେଲା । ଗୋପବାବୁ ବକ୍ତୃତା ଦେଲେ ।

ଜଣା ନାହିଁ କଣ ସେ ସେଠି କହିଲେ, ତାହା କେଉଁଠି ଲିପିବଦ୍ଧ ହୋଇଥିବାର ମୁଁ ଦେଖିନାହିଁ । କିନ୍ତୁ ତାଙ୍କ ବକ୍ତୃତା ଶୁଣି ଆଗ ଜଣେ ଭଦ୍ରମହିଳା ଠିଆ ହୋଇପଡ଼ି କହିଲେ,

"ମୁଁ ଆମ ଜମିରୁ ବାରଗୁଣ୍ଠ ଜମି ଦେବି, ସେ ଜମି ଗରିବଙ୍କୁ ଦିଆଯାଉ।"

ସେତେବେଳକୁ 'ଭୂଦାନ' ନାଁ ଗୋପବାବୁ ଶୁଣିବାର ଧରି ନାହାନ୍ତି, ଅଥଚ ଓଡ଼ିଶାରେ ତାହା ପ୍ରଥମ ଭୂଦାନ।

ସେ ଭଦ୍ରମହିଳାଙ୍କ ନାମ ଶ୍ରୀମତୀ ହରପ୍ରିୟା ଦେବୀ, ତାଙ୍କ ସ୍ୱାମୀ ଶ୍ରୀ ବାସୁଦେବ ସାମଲ (ବସ୍ତା) ଆନନ୍ଦପୁର ଗ୍ରାମର ବାସିନ୍ଦା। ତାଙ୍କପରେ ଆଉ ଦୁଇଜଣ ଜମି ଦେବାକୁ ସେଠି ଘୋଷଣା କଲେ। ଜଣେ, ଶ୍ରୀମତୀ ରମ୍ଭା ଦେବୀ, ସେ ବ୍ରଜରାଜନଗରର ଜଣେ ଖୁବ୍ ଧନୀ ବ୍ୟବସାୟୀଙ୍କ ପତ୍ନୀ ହୋଇସୁଦ୍ଧା ବହୁକାଳରୁ ବିଳାସବ୍ୟସନ ଛାଡ଼ି, ସୂତାକାଟି, ମୋଟା ଖଦଡ଼ ପିନ୍ଧି, ମୋଟାସୋଟା ଖାଇ, ସରଳ ନିରଳସ ନିଷ୍ଠାପର ଗାନ୍ଧୀବାଦୀ କର୍ମୀଜୀବନ ଯାପନ କରି ଜଣେ ରଚନାତ୍ମକ କର୍ମୀଭାବେ ଦିନ ବିତାଉଥାନ୍ତି। ସେ ପରୋପକାରକୁ ଜୀବନର ବ୍ରତ କରିଥାନ୍ତି। ପୁରୀ ସମୁଦ୍ରକୂଳରେ ତାଙ୍କର କୋଠାଟିଏ ଅଛି, ଓଡ଼ିଶାର କେତେକ ସ୍ଥାନରେ ତାଙ୍କର ଜମି ଥିଲା, ତାଙ୍କ ସ୍ୱାମୀ 'ଜେନେରେଲ୍ ଇନସ୍ୟୁରେନ୍ସ କମ୍ପାନୀ'ର ମାଲିକ ଥିଲେ। ଏବେବି ସେ ସେହିପରି ଜୀବନଯାପନ କରନ୍ତି। କଟକ ଜିଲ୍ଲା ହରିଦାସପୁରରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍କୁଲ, ଡାକ୍ତରଖାନା, ସେବାଶ୍ରମ ଆଦି ଏବେବି ଚାଲୁଛି। ସେତେବେଳେ ସେ ଛବିଶି ଏକର ଜମିଦାନ ଘୋଷଣା କଲେ, ପରେ ସବୁମିଶି ଦାନ କଲେ ଏ ୪୦-୮୦। ଯାଜପୁର ରୋଡ଼ ପାଖେ ଗୋଟିଏ ଶିଳ୍ପ କାରଖାନା ଖୋଲିବେ ବୋଲି ତାଙ୍କ ସ୍ୱାମୀ ସେଠି ଏ ୨୬-୦୦ ଜମି ସରକାରଙ୍କଠୁଁ ପଟ୍ଟା ନେଇ ରଖିଥିଲେ, ଶ୍ରୀମତୀ ରମ୍ଭା ଦେବୀ ସେଠି ଗୋଟିଏ କନ୍ୟାଶ୍ରମ ଖୋଲିବାକୁ ଚାହିଁଥିଲେ କିନ୍ତୁ ଅଞ୍ଚଳଟି ଜନାକୀର୍ଣ୍ଣ ହୋଇ ଉଠିବାରୁ ସେଠି କନ୍ୟାଶ୍ରମ ବସାଇବାକୁ ସେ ସ୍ଥାନ ଉପଯୁକ୍ତ ହେବ ନାହିଁ ଭାବି ସେ ଜମିକୁ ସେଦିନ ଦାନ ଘୋଷଣା କରିଥିଲେ।

ଆଉଜଣେ, ଶ୍ରୀ ସୁରେନ୍ଦ୍ରନାଥ ପଣ୍ଡା ବାଲିବଲି ଗ୍ରାମର ବାସିନ୍ଦା। ସେ କଂଗ୍ରେସର ବିପ୍ଳବଧାରାରେ ପ୍ରଭାବିତ ହୋଇ ଗତାନୁଗତିକ ବିଶ୍ୱାସ ଓ ସଂସ୍କାର ଛାଡ଼ିଥିଲେ ଓ ସେ ଅଞ୍ଚଳର ବ୍ରାହ୍ମଣମାନଙ୍କ ଭିତରେ ପ୍ରଥମେ ସେ ହିଁ ହଳ ବୁଲାଇଥିଲେ ବୋଲି ଶ୍ରୀ ମନମୋହନ ଚୌଧୁରୀ ଲେଖିଛନ୍ତି। ଶ୍ରୀ ଶରତ୍‌ଚନ୍ଦ୍ର ମହାରଣା କହନ୍ତି ଯେ ୧୯୫୩ ଜୁଲାଇ ପହିଲି ଦିନ,—ସେଦିନ ପୂର୍ଣ୍ଣିମା ଥିଲି,—ସେତେବେଳେ ଓଡ଼ିଶାରେ ସର୍ବପ୍ରଥମେ ଭୂଦାନ ଜମି ଭୂମିହୀନଙ୍କୁ ବଣ୍ଟନ କରାଗଲା, ସେତେବେଳେ ତାଙ୍କର ଦିଅ ପଡ଼ିତ ଜମି ହିଁ ପ୍ରଥମେ ବଣ୍ଟା ହେଲା।

ବସ୍ତା-ଆତୁଆଳର ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା ଏକ ଏକର ଜମି ଦେଲେ, ବସ୍ତାର ଶ୍ରୀ ମନମୋହନ ଚୌଧୁରୀ ଦେଲେ ୧୬ ଗୁଣ୍ଠ ଜମି ଓ ବସ୍ତା-ରାମଚନ୍ଦ୍ରପୁରର ଜଣେ

ସାଧାରଣ କୃଷୀ, ଗାନ୍ଧୀବାଦୀ ଓ ଦେଶପ୍ରେମୀ, ନିଜେ ଗୋପବାବୁ ରମା ଦେବୀଙ୍କର ଜଣେ ଭକ୍ତ, —ସେ ଦାନ କଲେ ଏକଗୁଣ୍ଠ ଜମି । ସେହି ଦିନଟି ଓଡ଼ିଶାରେ ପ୍ରଥମ ଭୂଦାନ ଦିବସ ।

•

(ବର୍ଷ) ରାମଚନ୍ଦ୍ରପୁରରେ ସଭା ସାରି ପଦଯାତ୍ରୀମାନେ ବାଟ ଧରିଲେ । ବର୍ଷା ଅଞ୍ଚଳ ପଛରେ ରହିଗଲା । ସେମାନେ ଚାଲି ଚାଲି ଗାଁ ଗାଁକେ ରାତି କଟାଇ 'ସୌଣ୍ଡିକ ଅଞ୍ଚଳ' ବାଟ ଦେଇ ଆଗ ସିବେ ଅନୁକୂଳ ଆଡ଼ର 'ଟାଙ୍ଗିସୋ' ଗାଁ, ସେଠି ସେ ବର୍ଷ ଫେବୃଆରୀ ମାସ ପହିଲାରୁ ୮ ତାରିଖ ଯାଏ ହେବ ରଚନାତ୍ମକ କର୍ମୀମାନଙ୍କ ବାର୍ଷିକ ସମ୍ମିଳନୀ ଓ ଶିବିର, ସେଠୁ ଆଉ ସୁଆଡ଼େ, କୋରାପୁଟ ଅଭିମୁଖରେ ତ ନିଶ୍ଚୟ ।

ବାଟଯାକ ନ ଜାଣିଲା ଲୋକେ ପଚାରୁଥାନ୍ତି, "କୁଆଡ଼େ ଯାଉଛ ସବୁ ?" ଗୋପବାବୁ କହନ୍ତି "ତୀର୍ଥଯାତ୍ରା କରି । ଦରିଦ୍ରନାରାୟଣଙ୍କ ଦର୍ଶନକୁ ।"

ଦଳଟି ଦିଶୁଥାଏ ଯେପରି ଗରିବ ଗାଁଲୋକ ବୁଲୁଛି, କୁଆଡ଼େ ବାହାରିଛନ୍ତି । ବାଟରେ କେଉଁଠି ରହିବେ ଜାଣନ୍ତି ନାହିଁ, ଦେଖାଯିବ । କାହା ପିଣ୍ଡାରେ କି ମେଲା ଘରେ ରହିଯାଆନ୍ତି, ନ ହେଲେ କେଉଁ ଗଛମୂଳେ, କି ଲୋକାଳୟଠୁଁ ଦୂର ଅପନ୍ତରାରେ, ଆକାଶ ତଳେ । ଖାଇବା ବିଷୟରେ ସେମାନଙ୍କ ନୀତି, ଗାଁ ଲୋକେ ଯାହା ଖାଆନ୍ତି, ନିଜେ ଯାଚି ସେମାନଙ୍କୁ ଯାହା ଦେବେ, ନିରାମିଷ ହୋଇଥିବ, ତେଲ ଘିଅ ପଡ଼ି ନ ଥିବ, କେବଳ ସିଝା, ଏତିକି ହେଲେ ସେମାନେ ସେଇଆ ଖାଇବେ । ଚୂଡ଼ା, ମୁଢ଼ି, ଶାଗ-ପଖାଳ, ବଡ଼ି, ଭାତ, ଯାହାହେଲେ ତାଙ୍କର ଚଳିଯାଏ । ଗାଁରେ ଯଦି କେହି ଖାଇବାକୁ ନ ଡାକନ୍ତି ସେମାନେ ସବୁ ଦରକାରୀ ଜିନଷ କିଣି ଆଣନ୍ତି, ରୋଷେଇ କରନ୍ତି, ଖାଆନ୍ତି, ତହିଁରେ ଆଡ଼ମ୍ବର ନ ଥାଏ, ବଗଡ଼ା ଭାତ, ପରିବା ସିଝା, ସେତିକି । ବିନା ଭାତରେ ବି ଚଳିଯାନ୍ତି, ଚକୁଡ଼ାଏ ଲିଭ କି କଖାରୁ ସିଝେଇ ଖାଇଦେଲେ ସେତିକି ଜଣକର ଓଳିକର ଖାଦ୍ୟ । ଗୋପବାବୁ ଅଭ୍ୟାସ କରି ନେଇଥାନ୍ତି ଯେ ଗଣ୍ଡିଏ ଚିନାବାଦାମ ମିଳିଲେ ଚୋବେଇ ଦେଇ ଦିନଯାକ ଚଳିଯିବେ । ସମାଜର ସବୁଠୁ ତଳେ ମୂଲିଆ ଶ୍ରେଣୀର ଲୋକ ଯାହା ଖାଇ ବଞ୍ଚନ୍ତି, ଯାହା ତାଙ୍କ ହାତ ପାଆନ୍ତରେ ମିଳିପାରେ, ତହିଁରେ ଯାହା ସାତ୍ତ୍ୱିକ ଖାଦ୍ୟ ଓ ସ୍ୱାସ୍ଥ୍ୟପ୍ରଦ ହିତକର ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ପାଇଁ ସେତିକି ଯଥେଷ୍ଟ ଥିଲା । ସେ ଖାଦ୍ୟ ବିଷୟରେ ନାନା ନୂଆ ନୂଆ ପରୀକ୍ଷା କରି ସାରିଥାନ୍ତି । ଅଳ୍ପ ଖର୍ଚ୍ଚରେ ମଣିଷ କେମିତି ଖାଦ୍ୟ-ସ୍ୱାବଲମ୍ବୀ ହୋଇପାରେ ତାହା ନିଜେ କରି ତହିଁରେ ସଫଳ ହୋଇ ପାରିଥାନ୍ତି, ତେଣୁ ତାଙ୍କର ଅସୁବିଧା ହେଉ ନ ଥାଏ ।

ବାଟଚଲା ବେଳେ ସୁଦ୍ଧା ସେମାନଙ୍କର ଆଶ୍ରମରେ ରହିଲାବେଳର ଦୈନନ୍ଦିନ ନିୟମିତ କାର୍ଯ୍ୟନିର୍ଘଣ୍ଟ ଅବ୍ୟାହତ ରହୁଥାଏ । ଯେଉଁଠିଥାନ୍ତୁ ନିଶ୍ଚୟ ବଡ଼ିଅନ୍ଧାରୁ ବ୍ରାହ୍ମମୁହୂର୍ତ୍ତିରେ ସମସ୍ତେ ନିଦରୁ ଉଠି ସାରିଥିବେ, ନଲ୍‌ଟଣି ଲଗାଇଥିବେ, ବିଛଣା ଉଠାଇ ଗୁଡ଼େଇଥିବେ, ରହିବା ସ୍ଥାନଟି ଓଲେଇଥିବେ, ନିତ୍ୟକର୍ମ ସାରି ସମବେତ ପ୍ରାର୍ଥନା କରିବେ, କିଛିବେଳ ସୂତା କାଟିବେ, ଯାହା ଥିବ ତାହା ଖାଇଦେଇ ତା'ପରେ ଧରିବେ ବାଟ ।

ଗୋପବାବୁଙ୍କ ପଦଯାତ୍ରା ଖାଲି ଗୁଡ଼ାଏ ବାଟଚଲା ନ ଥିଲା, ଯେପରି ଜଣେ ଗୋଟିଏ ସ୍ଥାନରୁ ବାହାରି ସିଧା ଚାଲିଯାଏ ଅନ୍ୟ କେଉଁ ସ୍ଥାନକୁ, କିମ୍ବା ସେ ନ ଥିଲା ଖାଲି ଖୁସିରେ ଗାଁ ବୁଲା । ଗ । ଗାଁ । ବୁଲି ଲୋକଙ୍କ ସଙ୍ଗେ କଥାଭାଷା କରି ସେ ତଦନ୍ତ କରୁଥାନ୍ତି, ନିସା କରି ଯାଉଥାନ୍ତି ଲୋକଙ୍କ ଅବସ୍ଥା କଣ, ସମସ୍ୟା କଣ କଣ, ତାର ସମାଧାନ ପାଇଁ କଣ ହେଉଛି, କପରି ହେଉଛି, କ କ ପରିବର୍ତ୍ତନ ହେଲାଣି, ଲୋକେ କଣ ଭାବୁଛନ୍ତି, ହାଓ୍ୱା କୁଆଡ଼େ ଚାଲିଛି । ତଦନ୍ତ ଲାଗି 'ସିଡୁଲ୍' ବା 'ପ୍ରୋଫର୍ମା' ତାଙ୍କ ମନେ ମନେ ଥାଏ, ସେଥିରେ ସେ ଅଭ୍ୟସ୍ତ । ସାଧାରଣ ଗପସପ ଭିତରେ ତାହାର ଅନୁରୂପ ପ୍ରଶ୍ନ ସ୍ୱାଭାବିକ ଭାବେ ସେ ପଚାରିଦେଇ ଉତ୍ତର ମନେ ରଖନ୍ତି, ତାଙ୍କ ତୀକ୍ଷ୍ଣ ଦୃଷ୍ଟି ବାହ୍ୟତ ଭିତରକୁ ଭେଦିଯାଏ ଓ ସଙ୍ଗେ ସଙ୍ଗେ ତାଙ୍କ ସୂକ୍ଷ୍ମ ତାତ୍ପର୍ଯ୍ୟଗ୍ରାହୀ ବିଚକ୍ଷଣ ମନ ଦୃଶ୍ୟମାନ ଅବସ୍ଥାରୁ ତାତ୍ପର୍ଯ୍ୟ ଗ୍ରହଣ କରିଏ । ବାସ୍ତବରେ ଉଭୟ ଧରି ସେ ପଦଯାତ୍ରାରେ ତାଙ୍କ ଅନୁସନ୍ଧାନ ପାଖେ ଭାଗବାଣ୍ଡିରୁ ଗୋଟିଏ ଗୁଡ଼ିଲେ ଚପିଲି ପରି ବ୍ୟାପକ କ୍ଷେତ୍ରର ଅବସ୍ଥାର ପ୍ରତିନିଧିତ୍ୱ କଲାଭଳି ଅଳ୍ପ ପରିସରକୁ ଯେଣି ସଘନ ଅନୁଧ୍ୟାନ, ପୁଣି ଅନ୍ୟ ପାଖେ, ଏକାଥରେ ନାନା ଜିଲ୍ଲା ବୁଲି ଦେଖି ବ୍ୟାପକ କ୍ଷେତ୍ର ସାରାର ଅବସ୍ଥା ଅନୁଧ୍ୟାନ । ହଜାର ହଜାର ଗାଁ ଗଣ୍ଡାକୁ ନେଇ ହିଁ ଭାରତ । ଯାହା ଅଳ୍ପ କେତୋଟା ସହରେ, ଗା ଲୋକେ ହିଁ ବେଶିଭାଗ ସେଠିକା ବାସିନ୍ଦା ହୋଇ ତାକୁ ବଢ଼େଇଛନ୍ତି । ସେହିମାନେ ହିଁ ଏ ରାଷ୍ଟ୍ରର ଅନ୍ନଦାତା ଓ ମେରୁଦଣ୍ଡ । ଗୋପବାବୁ ତାଙ୍କର ସବୁ ପଦଯାତ୍ରାରେ ତାଙ୍କର ଓ ତାଙ୍କ ଅବସ୍ଥାର ନାଡ଼ି ଚପି ଚପି ଚାଲିଥାନ୍ତି, ତାଙ୍କୁ ସେ ସେ ଦେଖୁଥାନ୍ତି, ତାଙ୍କ କଥା ଭାବୁଥାନ୍ତି, —ଦୂର ନଗରୀରୁ ଅଟ୍ଟାଳିକା ପ୍ରକୋଷ୍ଠରୁ କି ଉଡ଼ନ୍ତା ବ୍ୟୋମଯାନରୁ କି ବାଷ୍ପଚାଳିତ ବେଗୋଦବେଗଗାମୀ ବାଷ୍ପୀୟଯାନରୁ ନୁହେଁ, ସେହିମାନଙ୍କ ନିଜ ଦୃଷ୍ଟିରେ, ନିଜ ଅନୁଭୂତ ବାଟେ ।

ଭାରତରେ ଘଟି ଯାଇଥିବା ସାଂପ୍ରଦାୟିକ ହିଂସାର ବୀଭତ୍ସିକାର ଚିତ୍ର, ପୁଣି ଗାନ୍ଧୀ-ହତ୍ୟା ତାଙ୍କ ଚେତନାରେ ରହି ଯାଇଥାଏ ଗୋଟାଏ ଭୟଙ୍କର ଦୁଃସ୍ୱପ୍ନର ସ୍ମୃତି ପରି, ଚେତାଇ ଦେଉଥାଏ ହିଂସା କଣ କରେ, ବିଦ୍ୱେଷ, ଈର୍ଷା, ଅବହେଳା, ଅନୈତିକତା, ଅନ୍ୟାୟ, ଶୋଷଣ, ଅଶାନ୍ତିରୁ ବଢ଼େ ହିଂସା; ତାଙ୍କ ମନରେ ଥାଏ

ଯେପରି ଯାହା ଘଟୁଛି ବୋଲି ସେ ଅନୁଭବ କରି ଆସିଲେଣି ତାହା, ପୁଣି ବନ୍ଦେ୍ର ଆଦିବାସୀ-ବହୁଳ କୋରାପୁଟ ଜିଲ୍ଲାର ହାଲ୍ ଘଟଣା, ଅନାହାର ମୃତ୍ୟୁ; ତା ସହିତ ସେ ଆଖିରେ ଦେଖିଥିବା ଅବସ୍ଥାକୁ ତଉଲିଥାଆନ୍ତି ।

ଅତି ସାଧାରଣ ଦୃଶ୍ୟ, ନିଜ କାର୍ଯ୍ୟରେ ବ୍ୟସ୍ତ ସାଧାରଣ ମଣିଷ, ଘର, ଛୁଆପିଲା, ଗାଈଗୋରୁ, କୂଅ, ପୋଖରୀ, ଗାଁ ଦୋକାନ, ନାନା ବୃତ୍ତିଜୀବୀ, କ୍ଷେତ, ଖଳା, ଗଛବୃଚ୍ଛ, ଯାହା ଆଖିରେ ପଡ଼ୁଥାଏ ସବୁ ତାଙ୍କ ଆଖିରେ ତାତ୍ପର୍ଯ୍ୟପୂର୍ଣ୍ଣ ଦିଶୁଥାଏ । ଗାଁରେ ପିଇବା ପାଣି ମିଳେ କି ନାହିଁ, ଲୋକେ କଣ ଖାଉଛନ୍ତି, କେମିତି ଚଳୁଛନ୍ତି, ତାଙ୍କ ସ୍ୱାସ୍ଥ୍ୟ, ଶିକ୍ଷା, ଅର୍ଜନ କେମିତି, ଭୂମିହୀନ ଗରୀବ କେତେ, ପରସ୍ପର ସହିତ, ନାନା ଶ୍ରେଣୀ, ନାନା ସମ୍ପ୍ରଦାୟ ଭିତରେ ସମ୍ପର୍କ କେମିତି, ସ୍ୱାଧୀନତା ପରେ କଣ କଣ ହେଲାଣି ବା ହେଉଛି, ଲୋକେ ନିଜେ କଣ ଅନୁଭବ କରୁଛନ୍ତି, ନିଜ ଆଡ଼ୁ ନିଜ ସମସ୍ୟା ପାଇଁ କଣ କରୁଛନ୍ତି, କଣ ସେ ବିଷୟରେ ଭାବୁଛନ୍ତି, କି ବାଟ ତାଙ୍କୁ ଦିଶୁଛି,—ବୁଝିବାକୁ ତାଙ୍କ ପାଇଁ ନାନା କଥା ।

ତାଙ୍କୁ କେତେ ଲୋକ ସେମାନଙ୍କର କେତେ ଆବଶ୍ୟକ ପୂରଣ କରି ଦେବାକୁ କହନ୍ତି । ସେ କେବେ କାହାକୁ କହନ୍ତି ନାହିଁ, "ହଉ ହଉ, ଏସବୁ ମୁଁ କରିଦେବି, ଚିନ୍ତା ନାହିଁ ।" ଓଲଟି ସେ ତାଙ୍କୁ ବୁଝାନ୍ତି ଯେ ସେ ମନ୍ତ୍ରୀ ନୁହନ୍ତି କି କୌଣସି କର୍ମଚାରୀ ନୁହନ୍ତି । ସେ ଯଦି ଭାବନ୍ତି ଯେ ସେପରି କୌଣସି ଆବଶ୍ୟକ ତାଙ୍କ ଚେଷ୍ଟାରେ ମେଣ୍ଟି ପାରିବ ତେବେ ସେମାନଙ୍କୁ କହନ୍ତି ଯେ ସେ ଚେଷ୍ଟା କରିବେ । ସେସବୁ ସେ କାଗଜରେ ଟିପି ରଖନ୍ତି, ସେ ବିଷୟରେ କିଛି ଲେଖାଲେଖି କରି କିମ୍ବା କୌଣସି ସହକର୍ମୀଙ୍କୁ ଖବର ପଠାଇ ସେ ଯାହା ପାରନ୍ତି ସେତିକି ଉପକାର କରନ୍ତି । ଯେଉଁଠି ସେ ଭାବନ୍ତି ଯେ ସେ ଚେଷ୍ଟାକଲେ ସୁଦ୍ଧା କିଛି କରିପାରିବେ ନାହିଁ ବା ବିଷୟଟି ତାଙ୍କ ପରିଧିର ବାହାରେ, ସେ କ୍ଷେତ୍ରରେ ଆଉ କାହାକୁ କହିଲେ କିଛି ଫଳ ହୋଇପାରିବ ଭାବିଲେ ସେ ସେପରି ପରାମର୍ଶ ଦିଅନ୍ତି ।

ଯାଉ ଯାଉ ବାଟରେ ସେ କେତେଲୋକଙ୍କୁ ଏଭଳି କିଛି ଭଲ ଭଲ କଥା ବତେଇଦେଇ ଯାଉଥିଲେ ଯାହା ସେ ନିଜେ କରି ଫଳ ପରୀକ୍ଷା କରି ଦେଖି ସାରିଛନ୍ତି । ଦେଖିଲେ, କିଏ କୋଡ଼ିଧରି ମାଟି ହାଣୁଛି, ସେ ତାଠୁଁ କୋଡ଼ିଟି ମାଗି ନେଇ ତା ଆଗରେ ନିଜେ କୋଡ଼ିଟି ଧରି ଭୁସ୍ ଭୁସ୍ ମାଟି ହାଣିବେ, ତାକୁ କହିବେ, "ଦେଖିଲ ତ ? ଏ ବାଗରେ ତୁମେ ମାଟି ହାଣ, ଦେଖ, ଯେମିତି ମାଟି ହାଣୁଥିଲ ଏ ବାଗରେ ଆହୁରି ଚଞ୍ଚଳ ଚଞ୍ଚଳ ଆହୁରି ବେଶି ମାଟି ହାଣି ପାରିବ । ହାଣ, ଦେଖ ।" କିଏ ବଗିଚା କରୁଛି, କିଏ ଗୋରୁ ପାଳୁଛି, କିଏ ଘର ତୋଳୁଛି, ଏ

ସମସ୍ତିଙ୍କ ପାଇଁ ବି ଉପାଦେୟ ଉପଦେଶ ଦେଉଥିଲେ, ସବୁ ସେ ନିଜେ କରିଛନ୍ତି, ଜାଣିଛନ୍ତି । ନିଜଅଭିଜ୍ଞତା ଅନୁଭବରୁ ସେ ପ୍ରାକୃତିକ ଚିକିତ୍ସା ବିଷୟରେ କେତେକ ସାଧାରଣ ପନିପରିବା ପତ୍ର ମୂଳ ଆଦି ବିଷୟରେ ଲୋକଙ୍କୁ ନାନା ଉପକାରୀ କଥା କହୁଥିଲେ ।

ସାନପିଲଙ୍କୁ ସେ ଭାରି ଶରଧା କରନ୍ତି, ତାଙ୍କ ସଙ୍ଗେ ନାନା ହସ କୌତୁକ ଖେଳ ଲଗାନ୍ତି, ତାଙ୍କୁ ନାନା ଶିକ୍ଷାମୂଳକ ଗଳ୍ପ କହନ୍ତି ଓ ନାନା କଥା ଶିଖାନ୍ତି । ସେମାନଙ୍କୁ କେମିତି କି ବାଗରେ ପାଳିବେ ସେ ବିଷୟରେ ସେମାନଙ୍କ ବାପ ମାଙ୍କ ସଙ୍ଗେ ଆଲୋଚନା କରନ୍ତି ଓ ସେମାନଙ୍କୁ ନାନା ଉପଦେଶ ଦିଅନ୍ତି । ଯେଉଁ ପିଲଙ୍କୁ ଦୁଷ୍ଟ, ଅମାନିଆଁ, ବିଗିଲା ବୋଲି କୁହାଯାଏ ସେମାନଙ୍କୁ ବି ସେ ବଶ କରି ନିଅନ୍ତି ଓ ସେମାନଙ୍କ ଭିତରୁ କାହାଠି କି ଭଲ ଗୁଣ ଅଛି, ବିକାଶ କରାଇବାକୁ ପଡ଼ିବ ବୋଲି ତାଙ୍କର ଧାରଣା ହେଉଛି, ତାହା ସେମାନଙ୍କ ବାପ ମା'ଙ୍କୁ କହନ୍ତି ।

ଗୋପବାବୁ, ଅସୃର୍ଯ୍ୟ ମହାଶୟ, ରମା ଦେବୀ ଆଦି; —ଏମାନଙ୍କଠି ମାନବପ୍ରୀତି ସ୍ୱଭାବଗତ, ସ୍ୱତଃସ୍ଫୂର୍ତ୍ତି, ତେଣୁ ଅତି ଅଳ୍ପ ସମୟ ଦେଖାସାକ୍ଷାତରେ ଲୋକଙ୍କୁ ସେମାନେ ଆପଣାର କରି ପାରନ୍ତି । ତାପରେ ପଡ଼େ ନାନା ସୁଖ ଦୁଃଖ, ଗପୁ ଗପୁ ଅବସ୍ଥା ଅନୁଧ୍ୟାନ ।

ଗୋପବାବୁ କଥା କହି ଲୋକଙ୍କ ମନୋବଳ ବଢ଼ାନ୍ତି, ସେମାନଙ୍କୁ ଉତ୍ସାହ ଦିଅନ୍ତି, ନାନା କଥା ବୁଝାନ୍ତି, ଲୋକଙ୍କ ସମସ୍ୟା ଶୁଣି ସେମାନଙ୍କୁ ପଚାରନ୍ତି,

"ହିଂସାର ବାଟ ନ ଧରି, ପରସ୍ପର ପ୍ରତି ସ୍ନେହଶ୍ରଦ୍ଧା ବଢ଼ାଇ ସମସ୍ୟାର ସମାଧାନ କେମିତି କରି ହେବ ସେକଥା ଭାବି ଠିକଣା କର, ତୁମେ ଆମକୁ ବାଟ ବତାଅ, ପରାମର୍ଶ ଦିଅ ।" ଆସୃର୍ଯ୍ୟ ବିନୋବା ଯେଉଁ 'ଭୂଦାନ' ଉପାୟ ବାହାର କରିଥାନ୍ତି ସେକଥା ବି କହନ୍ତି, ବୁଝାନ୍ତି । ସେ ପନ୍ଥା ଏଠି ଠିକ୍ ହେବ କି ନାହିଁ ବୋଲି ଲୋକଙ୍କୁ ପଚାରନ୍ତି । ଗାଁରେ ଯେଉଁମାନେ ଟିକିଏ ଥିଲାବାଲା, ତାଙ୍କ ଗାଁର ଭୂମିହୀନ ଗରିବଙ୍କ ଦୁଃଖ କଥା କହି ସେମାନଙ୍କ ମନ ତରଳାନ୍ତି, ସେହି ଗରିବ ଗାଁ ଭାଇଙ୍କ ଦାୟିତ୍ୱ ନେବାକୁ, ସେମାନଙ୍କୁ ସାହାଯ୍ୟ କରିବାକୁ ଯାଚିଦେଲ ସେମାନଙ୍କୁ ବୁଝାନ୍ତି । ଶାସ୍ତ୍ରରୁ ଉଦାହରଣ ଦିଅନ୍ତି, ଶାସ୍ତ୍ରରୁ କିଛି ଉପଦେଶ ଦିଅନ୍ତି, ଧର୍ମ ଓ ଶାସ୍ତ୍ର କଥା ବୁଝାଇ ଗଲନ୍ତି, ଦାୟିତ୍ୱ ଓ କର୍ତ୍ତବ୍ୟବୋଧ, ନିରଳସ ଶ୍ରମର ଆବଶ୍ୟକତା, ନୈତିକତା, ଚରିତ୍ରବଳ, ସାତ୍ତ୍ୱିକ ବିଚାର ଖୋଲାଇ ଦିଅନ୍ତି, ବିଭି କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ କହନ୍ତି । ସେମାନଙ୍କ କଥା ଶୁଣିବା ବି ଗ୍ରାମଲୋକଙ୍କ ପାଇଁ ହୁଏ କିଛି ନୂଆ ଜ୍ଞାନ, ନୂଆ ବିଚାର ପାଇବାକୁ ସୁଯୋଗ । ଅନେକଙ୍କ ପାଇଁ ସେ ସାକ୍ଷାତ୍କାର ହୋଇ ରହିଛି ଜୀବନଯାକ ପାଇଁ ଗୋଟିଏ ଅଭୁଲା ଓ ସୁଖକର ସ୍ମୃତି ।

ତାଙ୍କ ବାଟେ ବାଟେ ଲୋକେ ଆସି ଭେଟନ୍ତି । ଯାଉ ଯାଉ ଆଗେ ଆଗେ ଖବର ଚହଟିଯାଏ । ଲୋକେ ନାନା କଥା ପଚାରନ୍ତି । ପ୍ରୟୋଜନ ଦେଖିଲେ ଗାଁ ଲୋକଙ୍କ ସଙ୍ଗେ କଥାଭାଷା ହେବେ ବୋଲି କେଉଁଠି ସେମାନେ ଠିଆ ହୋଇ ପଡ଼ନ୍ତି, କେଉଁଠି ବାଲିପାଖେ ଦଣ୍ଡାରେ, କି କେଉଁ ଗଛମୂଳେ, ତୋଟାରେ କି ଗାଁ ଦାଣ୍ଡରେ ସେମାନେ କିଛିବେଳ ବସି ପଡ଼ନ୍ତି । ଦ୍ୱିପ୍ରହରେ ଭୋଜନ ପାଇଁ କେଉଁ ଗାଁରେ କେବେ ସେମାନେ କେତେଘଣ୍ଟା ରହିଯାଆନ୍ତି, ସୁବିଧା ଥିଲେ ସେ ଗାଁରେ ପହଞ୍ଚି ଗୋଟିଏ ସଭା କରନ୍ତି, ଜାତି ଧର୍ମ ନିର୍ବିଶେଷରେ ଗାଁ ଲୋକେ ସମସ୍ତେ ଓ ପଦଯାତ୍ରୀମାନେ ଏକାଠି ଗୋଟିଏ 'ପଙ୍‌କ୍ତି ଭୋଜନ'ରେ ବସି ଖାଆନ୍ତି । ସଭାରେ ପ୍ରାର୍ଥନା ହୁଏ, ସୂତଯଜ୍ଞ ହୁଏ ।

ଯେଉଁଦିନ ଦୂରକୁ ଯିବାର ନ ଥାଏ ସେଦିନ ଦ୍ୱିପ୍ରହରେ ଯେଉଁ ଗାଁରେ ଖାଆନ୍ତି ରାତିଟି ବି ସେହି ଗାଁରେ କଟାନ୍ତି । ସବୁଦିନେ ରହଣିବେଳେ ଚାଲେ ସୂତାକଟା, କିଛି ଶାସ୍ତ୍ର ଅଧ୍ୟୟନ, ମିଳିଲେ କିଛି ଖବରକାଗଜ ପଢ଼ା ହୁଏ, ଆଲୋଚନା ହୁଏ, କିଛି ଲେଖାଲେଖି କାର୍ଯ୍ୟ ହୁଏ, ସେଦିନ କିଛି ବାଟଚଲା ହେଲା ବୋଲି ଦୈନନ୍ଦିନ କାର୍ଯ୍ୟ ଭିତରେ ଅନ୍ୟ 'ଶରୀରଶ୍ରମ' କାର୍ଯ୍ୟ ଯେ ସେଦିନ ବନ୍ଦ ରହିବ, ତା ନୁହେଁ, ତାହା ମଧ୍ୟ ହୁଏ ।

ସେମାନେ ସାଧାରଣତଃ ସନ୍ଧ୍ୟାବତୀ ନ ଲିଭୁଣୁ ରାତି ଖିଆପିଆ ସାରି ଦେଇଥାନ୍ତି । ସନ୍ଧ୍ୟାବେଳେ 'ସମବେତ ପ୍ରାର୍ଥନା' ହୁଏ, ଗାଁ ଲୋକେ ବି ସେମାନଙ୍କ ସଙ୍ଗେ ମିଶି ପ୍ରାର୍ଥନା କରନ୍ତି । ରାତି ୯ଟା ବେଳକୁ ପଦଯାତ୍ରୀମାନେ ଶୋଇବାକୁ ଯାଆନ୍ତି, ପୁଣି ଉଠିପଡ଼ିବେ ବ୍ରାହ୍ମମୁହୂର୍ତ୍ତରେ । ଏଇଆ ଥିଲା ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କର ସବୁ ପଦଯାତ୍ରାରେ ନିୟମ ଓ ଅଭ୍ୟାସ ।

# ଗୃଳଶି

ଅନୁଗୁଳର ପୁରୁଣାକୋଟ ଥାନା ଅଞ୍ଚଳ, ଘୋର ଅରଣ୍ୟ, ସେଠି ମହାବଳ ବାଘ ହେଣ୍ଟାଳେ, ମଣିଷ ଖାଏ, ହାତୀ ବୁଲନ୍ତି, ତାହାରି ଭିତରେ ଆଦିବାସୀବହୁଳ ଛୋଟ ଗାଁଟିଏ, 'ଟାଇଁସୀ'। ତାର ଠିକପାଖେ ଘନ ଅରଣ୍ୟମୟ ପର୍ବତ ଘେରି ରହିଥାଏ, ହରିଣ ମୟୂର ଗାଁ ପାଖେ ବୁଲୁଥାନ୍ତି, ପ୍ରାକୃତିକ ଦୃଶ୍ୟ ଅତି ସୁନ୍ଦର, କିନ୍ତୁ ଅସୁବିଧା ଥାଏ ପାଣିର। ସେଠି ହେବାର ଥାଏ ରଚନାତ୍ମକ କର୍ମୀମାନଙ୍କର ବାର୍ଷିକ ସମ୍ମିଳନୀ ଓ ଶ୍ରମ-ଶିବିର। ତାର ଦୁଇବର୍ଷ ପୂର୍ବରୁ କର୍ମୀ ଶ୍ରୀ ବ୍ରଜସୁନ୍ଦର ଦାସ ସେଠି ଗୋଟିଏ ଗ୍ରାମସେବା କେନ୍ଦ୍ର ଖୋଲିଥାନ୍ତି ଓ ସେଠି ରହି ନାନା ରଚନାତ୍ମକ କର୍ମ କରୁଥାନ୍ତି।

ବଣ୍ଟିରୁ ପଦଯାତ୍ରା କରି ସୌରିକ ଅଞ୍ଚଳ ଦେଇ ଗୋପବାବୁ, ରମା ଦେବୀ ଓ ସହଯାତ୍ରୀମାନେ ସେଠି ପହଞ୍ଚିଗଲେ ୧୯୫୧ ଜାନୁଆରୀ ୩୦ ତାରିଖରେ। ସେତେବେଳେ ଶ୍ରୀ ନବକୃଷ୍ଣ ଚୌଧୁରୀ ତା ୧୨-୫-୧୯୫୦ରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାନ୍ତି, ସେ ଓ ଶ୍ରୀମତୀ ମାଲତୀ ଦେବୀ ବି ଟାଇଁସୀ ଶିବିର ଓ ସମ୍ମିଳନୀରେ ଯୋଗଦେଲେ। ତାଙ୍କ ମନ୍ତ୍ରୀ ଜୀବନରେ ସୁଦ୍ଧା ନବବାବୁ, ମାଲତୀ ଦେବୀ ସବୁଦିନେ ସରଳ ନିରାଡ଼ମ୍ବର କର୍ମୀ ଯୋଡ଼ିଏ, ଅଭ୍ୟସ୍ତ ଆଶ୍ରମ ଜୀବନର ରୁଟିନ-ନୀତି-ଅଭ୍ୟାସରୁ ଅବିଚ୍ୟୁତ। ନବବାବୁ ସେଠି ଫେବୃଆରୀ ୭ ତାରିଖରେ ପହଞ୍ଚିଲେ, ତହିଁ ଆରଦିନ 'ଶରୀରଶ୍ରମ ଶିବିର'ରେ ଅନ୍ୟମାନଙ୍କ ସଙ୍ଗେ ମିଶି କାମ କରିଥିଲେ। ଓଡ଼ିଶାର ନାନାଆଡ଼ୁ ଗ୍ରାମସେବା କେନ୍ଦ୍ରମାନଙ୍କରୁ ସେ ଶିବିର ଓ ସମ୍ମିଳନୀରେ ୧୦୭ ଜଣ ସେବକ ଆସିଥିଲେ, ଓ ତହିଁରେ ଥିଲେ ଅନୁଗୁଳର 'ବାଜି ରାଉତ ଛାତ୍ରାବାସ'ର କେତେଜଣ ଶିକ୍ଷକ ଓ ୨୦ ଜଣ ଛାତ୍ର, ଛାତ୍ରୀ, ଅନୁଗୁଳ 'ମହିଳା ତାଲିମ୍ ଶିବିର'ର କେତେଜଣ ଶିକ୍ଷାର୍ଥିନୀ ଓ ଅନ୍ୟାନ୍ୟମାନେ। ପ୍ରତିଦିନ ସକାଳେ ସମସ୍ତେ ମିଶି ୪ ଘଣ୍ଟା

ଯାଏ କଠିନ ଶରୀର-ଶ୍ରମ କରନ୍ତି, ସେ ଶ୍ରମର ଉଦ୍ଦେଶ୍ୟ ଥାଏ ସେ ଗ୍ରାମର ଜଳକଷ୍ଟ ନିବାରଣ ପାଇଁ ଗୋଟିଏ ପୋଖରୀ ଖୋଳଦେବା, ଉପରଓଳି ୪ ଘଣ୍ଟାଯାକେ ଆଲୋଚନା ଚାଲେ ।

ଯେଉଁମାନେ ତହିଁରେ ଯୋଗ ଦେଇଥିଲେ ତହିଁରୁ ଜଣେ ହେଲେ ନନ୍ଦଙ୍ଗା ଗ୍ରାମର ଶ୍ରୀ ଶ୍ୟାମସୁନ୍ଦର ପଣ୍ଡା, ଏବେ ବୃଦ୍ଧ (୯୮୮) । ସେ ୧୯୩୮ରୁ ଗୋପବାବୁ ଓ ରମା ଦେବୀଙ୍କ ଘନିଷ୍ଠ ସମ୍ପର୍କରେ ଆସିଥିଲେ, ସେ ବରୀ-ରାମଚନ୍ଦ୍ରପୁର ଆଶ୍ରମରେ ରହୁଥିଲେ ଓ ସେତେବେଳେ ଅନେକ ସମୟରେ ସେମାନଙ୍କ ପାଖେ ପାଖେ ଥିଲେ । ସେ ଜଣେ ପଣ୍ଡିତ, ସୁଗାୟକ, ଗ୍ରାମାଞ୍ଚଳରେ କବି ଓ ସୁଗାୟକ ବୋଲି ସୁପରିଚିତ ଥିଲେ । ସେ ବହୁତ ଭୂଦାନ ଗୀତର ଭୂଦାନ ପାଲାର ମଧ୍ୟ ରଚୟିତା, ନିଜେ ସେସବୁ ବୋଲି ବୋଲି ଭୂଦାନ ପ୍ରଚାର କରୁଥିଲେ । ସେ ତାଙ୍କ ସ୍ମୃତିରୁ ଗୋପବାବୁଙ୍କ ସମ୍ବନ୍ଧରେ କିଛି କଥା ଲେଖି ଶ୍ରୀ ଶରତ୍ ଚନ୍ଦ୍ର ମହାରଣାଙ୍କ ପାଖକୁ ପଠାଇଛନ୍ତି । ଲେଖିଛନ୍ତି :—

"ତାଙ୍କର ନିରବଚ୍ଛିନ୍ନ ସାନ୍ନିଧ୍ୟ ଲାଭ କରିଥିବାରୁ କେତେଗୁଡ଼ିଏ ତାଙ୍କର ସଂକ୍ଷିପ୍ତ ଘଟଣାବଳୀ ଓ କର୍ମାବଳୀ ନିଜେ ଅଙ୍ଗରେ ଲଗାଇଛି ଏବଂ ମୋ ମାନସପଟରେ ଲେଖି ରଖିଛି, ମୋ ପାଖରେ ସେଭଳି କିଛି ଡାଏରୀ ନାହିଁ, ଯାହାର ସାଲ ବା ତାରିଖ ଠିକ୍ କରି ପାରିବି । ସାମାନ୍ୟ କେତୋଟି ଟିପ୍ପଣୀ ମୋ ପାଖରେ ଅଛି । ଏଣୁ ଘଟଣାଗୁଡ଼ିକ ଆଗପଛ ବା ଉଲଟପାଲଟ ଭାବେ ଲେଖାଯାଇ ପାରିଥିଲେ ମଧ୍ୟ ଘଟଣାଗୁଡ଼ିକ ଯେ ବାହୁଲ୍ୟବର୍ଜିତ ଓ ନିରାଟ ସତ୍ୟ ଏଥିରେ ସନ୍ଦେହ ନାହିଁ ।"

ତାଙ୍କ ଲେଖାରେ ସେଥର "ଟାଇଁସୀ ପୋଖରୀ ଖୋଳା ମହୋତ୍ସବ" ଶିରୋନାମା ଦେଇ ସେ ଯାହା ଲେଖିଛନ୍ତି ତହିଁରୁ କେତେକ ଅଂଶ ନିମ୍ନରେ ଉଦ୍ଧୃତ କଲି :—

"...କାଲିପରି ବୋଧ ହେଉଛି, ଅତି ପ୍ରତ୍ୟୁଷରୁ ୬ ଗୋପବାବୁ ଠିକ୍ ମୂଲିଆଙ୍କ ପରି ଗୋଟିଏ ଗ୍ଲେଟ ଡଉଲିଆ ମୁଣ୍ଡରେ ବାନ୍ଧିଦେଇ ଚତାଏ ଉଚ୍ଚର ଶାବଳ ଧରି ସବୁ କର୍ମୀ ଫଉଜଙ୍କୁ ଘେନି ବାହାରି ପଡ଼ିଲେ ଏବଂ ଗୋଟାଏ ଡାକ ମାରିଦେଇ ଭୀମ ମୂର୍ତ୍ତିରେ ମାଟି ତାଡ଼ିବାରେ ଲାଗି ପଡ଼ିଲେ । ତାଙ୍କ କାମ କରିବାର ପ୍ରଫୁଲ୍ଲତା ଏବଂ ଉତ୍ସାହକୁ ଚାହିଁ ସବୁ କର୍ମୀତକ ଆନନ୍ଦରେ କାମରେ ଲାଗିଗଲେ । ସେଠାରେ ଯେତେ ଗାଁ ଲୋକ ଦର୍ଶକ ଥିଲେ ସେମାନେ ତୁରନ୍ତ ଗାଁ ଭିତରୁ କିଏ ଝୁଡ଼ି କିଏ କୋଡ଼ି କିଏ କୋଦାଳ କିଏ ଶାବଳ ଧରି ଲଙ୍କାଯୁଦ୍ଧର ବାନରସେନାଙ୍କ ଭଳି ଲାଗି ପଡ଼ିଲେ, ଗୋଟାଏ ଆନନ୍ଦ ଉତ୍ସବର ସୁଅ ଛୁଟିଲା । ଶ୍ରୀଯୁକ୍ତ ବିଭୂତି ବାବୁ

(ଗୋପବାବୁଙ୍କ ସମୁଦ୍ର) ମାପଚୁପ କାମରେ ଲଗିଥାନ୍ତି । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଶ୍ରୀମତୀ ମାଲତୀ ଚୌଧୁରୀଙ୍କ ମାଟି ବୋହି ମୁଣ୍ଡେଇ ଚାଲିଲାବେଳେ ମତେ ଏତେ ଆନନ୍ଦବୋଧ ହେଲା ଯେ ମୁଁ ମନମୋହନ ବାବୁ ଏବଂ ଶରତ୍ ବାବୁଙ୍କ ସାଙ୍ଗ ଛାଡ଼ି ଏହି ଦୁଇଜଣ ନେତା ଓ ନେତ୍ରୀଙ୍କ ନିକଟକୁ ଚାଲି ଆସିଲି ।

ସକାଳବେଳା ମାଟି ଖୋଳା ଏବଂ ଉପରଓଳି ସଭା । ତେଣେ ୬ ଲୁପାସିନ୍ଧୁ ହୋତା ବଜ୍ର-ନିର୍ଘୋଷ କଣ୍ଠରେ ଏପରି ଭାଷଣମାନ ଦେଉଥାନ୍ତି ଲୋକେ ଶୁଣି ଅବାକ୍ ଭାବେ ଚାହିଁଥାନ୍ତି ।

...ତୃତୀୟ ଦିନର ମାଟିଖୋଳା ଦିନକୁ ପୋଖରୀ ମଝିରେ ଗୋଟାଏ ବିରାଟ ମାଟିକୁନ୍ଦ ଥାଏ । ସକାଳ ଭୋଜନ ପରେ ଆଜିର ସେନାପତି ଗୋପବାବୁ ମୁଣ୍ଡରେ ଗ୍ରେଟ ରୁମାଲଟି ବାନ୍ଧିଦେଇ ଏକ ପ୍ରକାଣ୍ଡ ଶାବଳ ଘେନି ଆଗଭର ହୋଇ ବାହାରି ପଡ଼ିଲେ । ହସ ହସ ମୁଖରେ କର୍ମୀ-ସଦସ୍ୟଙ୍କୁ ଚାହିଁ କହିଲେ :—

"ଆସ ସମସ୍ତେ ଆଜି ହାଇଦ୍ରାବାଦ ନିଜାମ୍‌କୁ ଘେରିଯିବା,—ହାଇଦ୍ରାବାଦକୁ ଯେପରି ଭାରତୀୟ ସୈନ୍ୟମାନେ ଚାରିପଟୁ ଘେରିଗଲେ ଏବଂ ଏକାଥରକେ ନିଜାମ୍-ରାଜ୍ୟ ଅଧିକାର କଲେ, ଆମେମାନେ ଆଜି ଏହି ବିରାଟ ମାଟିକୁନ୍ଦକୁ ଚାରିଆଡ଼ୁ ଘେରି ଏକଘଣ୍ଟା ମଧ୍ୟରେ ଏହାକୁ ଶେଷ କରିଦେବା ।"

ସତ୍ୟସନ୍ଧ ବୀର ରାମଚନ୍ଦ୍ରଙ୍କ ଆଖି ପିଛୁଡ଼ାକେ ଯେପରି ହନୁମାନ୍, ସୁଗ୍ରୀବ, ଅଙ୍ଗଦ ପ୍ରଭୃତି ବାନର ସୈନ୍ୟ ରାବଣର ଅଭେଦ୍ୟ ଦୁର୍ଗକୁ ଘେରି ଯାଇଥିଲେ ସେହିପରି ଗୋପବନ୍ଧୁଙ୍କର ମାଟିକୁନ୍ଦକୁ ଶାବଳାସ୍ତ୍ର ପ୍ରୟୋଗ ମାତ୍ରେ ଶ୍ରୀଯୁକ୍ତ ଶରତ୍ ଚନ୍ଦ୍ର, ଶ୍ରୀଯୁକ୍ତ ଫକୀର ମିଶ୍ର, ଶ୍ରୀ ମନମୋହନ ଚୌଧୁରୀ ଆଦି ଯୁବକକର୍ମୀ ମଧୁଫେଣାକୁ ମାଛି ଘେରିଲା ପରି ଠିକ୍ ଏକଘଣ୍ଟା ମଧ୍ୟରେ ଆନନ୍ଦ କଲରୋଳ ମଧ୍ୟରେ ଧ୍ୱଂସ କରିଦେଲେ ।"

## ରମା ଦେବୀ

ଟାଙ୍ଗୀ ଶିବିରରେ ପୂଜ୍ୟା ରମା ଦେବୀଙ୍କ ସ୍ୱଭାବସୁଲଭ ମହାନୁଭବତାର ଗୋଟିଏ ଝଲକ ଏହିପରି ଭାବେ ସେହି ଶାମବାବୁ ବର୍ଣ୍ଣନା କରିଛନ୍ତି :—

"...ମା ରମା ଦେବୀ ସବୁ କର୍ମୀଙ୍କ ନଜର ପୁଅ ଭଲ କଏ କପଡ଼ ଖାଇବ ବା କଣ ଖାଇବ ସବୁଠାରେ ସେ ସ୍ନେହରେ ଏହି ଭାଗ ନଅନ୍ତି, ଏଣୁ ତାଙ୍କୁ ସମସ୍ତେ ମା' ବୋଲି ଡାକନ୍ତି । ଯେପରି କହନ୍ତି, 'ମା ଦେଖାଇ ପେଟ, ଭାର୍ଯ୍ୟା ଦେଖାଇ

ମୋଟ' ସେହିପରି ପୂଜ୍ୟା ରମା ଦେବୀ ସବୁରି ପେଟ ଦେଖୁଥିଲେ, କିଏ କିଏ ଲଙ୍କାମରିଚ-ବର୍ଜିତ, ପୁଣି କିଏ କିଏ ଚକ୍ କିଣି ଖାଇବେ, କେଉଁ କର୍ମୀ ପିଖ୍ଯା, କିଏ ଅଲଣା, କିଏ ଭାତ କିମ୍ବା ରୁଟି ଖାଇବେ, ସବୁ ତାଙ୍କ ରୁଚି ଅନୁସାରେ ଯୋଗାଇ ଦିଅନ୍ତି, ଏପରିକି କଳ୍ପନା କରି ମଧ୍ୟ ପାରିବା ସମ୍ଭବ ନୁହେଁ । ଏହାଙ୍କ ଅତୁଳନୀୟ ସ୍ନେହପୂର୍ଣ୍ଣ ମାତୃତ୍ୱର ବିଶେଷତ୍ୱ । ପୁଣି ୫ ବା ୬୫ ନୁହନ୍ତି ଶହ ଶହ କର୍ମୀଙ୍କୁ ମାତୃବତ୍ସଳତା ପ୍ରେମରେ ବାନ୍ଧି ରଖିବା, ଏକା ଓଡ଼ିଶା କାହିଁକି ସାରା ଭାରତବର୍ଷରେ ଏପରି ମା ଅଛନ୍ତି ବୋଲି ମୁଁ ବିଶ୍ୱାସ କରେ ନାହିଁ ।''

ଟାଙ୍ଗିସି ପୋଖରୀ ଖୋଳା କାମ ସମ୍ପୂର୍ଣ୍ଣ ହେବାଦିନ ଉପରଓଳି ଶିବିରରେ ସମବେତ ନୃତ୍ୟ ହେଲା । ସେ ବିଷୟରେ ଶ୍ରୀ ଶ୍ୟାମସୁନ୍ଦର ପଣ୍ଡା ଲେଖିଛନ୍ତି :—

## ସମସ୍ତେ ନାଚିଲେ

''ସେଦିନ ଉପରଓଳି ସେଠି ଆଦିବାସୀ ନୃତ୍ୟ ଆରମ୍ଭ ହେଲା । ଲୋକବନ୍ଧୁ ଗୋପବନ୍ଧୁ ଚୌଧୁରୀଙ୍କ ସମସ୍ତ ଯେ କେବଳ ପ୍ରେମ ଓ ରହସ୍ୟ ମଧ୍ୟରେ ଗୁନ୍ଥିଥିଲି ଏହାର ପଟାନ୍ତର ନାହିଁ । ଦିନେ ମୁଁ ତାଙ୍କୁ ଦୁଃଖମନା ହେବାର ଦେଖିନାହିଁ । ଯାହାକୁ କହନ୍ତି ଜନ୍ମେ ଜନ୍ମେ ଗଢ ଦାହିଗଲି ଏହାହିଁ ଏ ଚୌଧୁରୀ ଗୋପବନ୍ଧୁଙ୍କ ପ୍ରତି ଲକ୍ଷ୍ୟ କରିଛୁ ।

ଉପରବେଳା ଆଦିବାସୀ ସ୍ତ୍ରୀ ଓ ପୁରୁଷମାନେ ନାନା ରଙ୍ଗର ବନଫୁଲ ଓ ଫଳ ଏବଂ ପକ୍ଷୀ ପ୍ରଭୃତିରେ ସୁସଜ୍ଜିତ ହୋଇ ଆସି ପହଞ୍ଚିଗଲେ, ପ୍ରାରମ୍ଭରେ ଗୋପବାବୁ ଡାକ କହିଲେ

''ନୃତ୍ୟ ଆରମ୍ଭ ହେବ, ଏଠାରେ ଆମେ ସମସ୍ତେ ତାଙ୍କ ସଙ୍ଗରେ ନାଚିବା, କେହି ଜଣେହେଲେ ବସି ଦେଖିବା ନାହିଁ ।''

## ମାଳତୀ ଦେବୀ, ଗୋପବାବୁ, ନବବାବୁ, ଅନ୍ୟ ସମସ୍ତେ

ଅଗ୍ନିକୁ ବାୟୁ ସାହା ପରି ଶ୍ରୀମତୀ ମାଳତୀ ଚୌଧୁରୀଙ୍କୁ ଆଉ ସମାଳେ କିଏ ! ସେ ପ୍ରାୟ ଏହି ନାଚର କର୍ଣ୍ଣଧାରିକା ହୋଇଗଲେ । ବଡ଼ ଆଶ୍ଚର୍ଯ୍ୟ ଏବଂ ଆନନ୍ଦର କଥା ଯେ ଗୋପବାବୁ ନିଜେ ଗୋଡ଼ ଉଠାଇ କେବେ ନାଚିବାର ମୁଁ ଦେଖି ନ ଥିଲି ।

ଏହିଠାରେ ଦେଖାଗଲା ଯେ ଗୋଟାଏ ବିଶାଳ ଜନତା ନାଚୁଥିବା ବେଳେ ପୂଜ୍ୟ ଗୋପବାବୁ ମଧ୍ୟ ନାଚୁଥିଲେ । ପରେ ପରେ ଶ୍ରୀ ନବକୃଷ୍ଣ ଚୌଧୁରୀ ମଧ୍ୟ ଲାଗିପଡ଼ିଲେ । ତାପରେ ଆଉ ନ ନାଚିବାଲାଗି ସେଠାରେ କେହି ନ ଥିଲେ । ଆସୁ

ନ ଆସୁ ସମୟରେ ଠିଆହୋଇ ହଲୁଥିବାର ଦୃଶ୍ୟ ମନେ ମନରୁ ଯିବ । ସେଦିନ ପୂଷ୍କରିଣୀ ଖୋଲା ମହାଯଜ୍ଞର ପୂର୍ଣ୍ଣାହୁତି ଆନନ୍ଦର କଳରବ ମଧ୍ୟରେ ସମାପ୍ତ ହେଲ, ମାନବଜୀବନ ସମୁଦ୍ରରେ ଏହା ଏକ ପୂର୍ଣ୍ଣିମାର ଜୁଆର ।''

ଭୂମିଦାନ ଯଜ୍ଞ ପାଇଁ କାର୍ଯ୍ୟ କରିବା (ସର୍ବୋଦୟ) ସେବକମାନଙ୍କ ପ୍ରଧାନ କାମରୁ ଗୋଟିଏ ହେଲ

ଟାଙ୍ଗିରୀ ଶିବିରରେ ଯାହା ଆଲୋଚନା ହୋଇ ନିଷ୍ପତ୍ତି ହେଲ ତାହାର ସାରାଂଶ ଶ୍ରୀ ମନମୋହନ ଚୌଧୁରୀ 'ଗ୍ରାମସେବକ' ୧୯୫୨ ଫେବୃଆରୀ ୪ର୍ଥ ସଙ୍ଖ୍ୟାରେ ଲେଖିଛନ୍ତି ଯେ

୧—''ଏଣିକି ଅର୍ଥାତ୍ ଜାନୁଆରୀ ୮, ୧୯୫୨ରୁ ତେଣିକି ସର୍ବୋଦୟ କର୍ମୀମାନେ ଆଉ ଗତାନୁଗତିକ ଗଠନାତ୍ମକ କାମରେ ନିଜକୁ ବାନ୍ଧି ରଖିବେ ନାହିଁ,''

୨—ତା ପରିବର୍ତ୍ତେ ସେମାନେ ଗାଁ ଓ ଦେଶର 'ମୌଳିକ ସମସ୍ୟାର ସମାଧାନ ପାଇଁ ଆଗଭର ହୋଇ ବାହାରିବା ଉଚିତ'

୩—''ଭୂମିଦାନ ଯଜ୍ଞର ପ୍ରସାର ପାଇଁ କାମ କରିବା ସେବକମାନଙ୍କର ମୁଖ୍ୟ କାମ ଭିତରୁ ଗୋଟିଏ ହେବା ଉଚିତ,

କେବଳ କେତେଜଣ ଜମିଦାରଙ୍କ ନିକଟକୁ ଯାଇ ଜମି ମାଗିବାର କାର୍ଯ୍ୟକ୍ରମ ସୀମାବଦ୍ଧ ହେବାର ନୁହେଁ । ଜମିର ସମାନତାମୂଳକ ପୁନର୍ବଣ୍ଟନ ହେବା ଆବଶ୍ୟକ...''

ଏ ଗଲ ପ୍ରଥମ ପ୍ରସ୍ତାବ ।

ଦ୍ୱିତୀୟ ପ୍ରସ୍ତାବରେ ରହିଲ :

''ଭୂମିଦାନ ଯଜ୍ଞରେ ପ୍ରତ୍ୟକ୍ଷ କାମ କରିବା ପାଇଁ ନିମ୍ନଲିଖିତ ସେବକମାନେ ନାମ ଦେଇଥିଲେ—

ସର୍ବଶ୍ରୀ ରଙ୍ଗାଧର ଦାସ, ମନମୋହନ ଚୌଧୁରୀ *, କୃପାସିନ୍ଧୁ ରଥ *, ଫକୀର ମିଶ୍ର, ଶ୍ୟାମସୁନ୍ଦର ପଣ୍ଡା, ଶରତ୍ ଚନ୍ଦ୍ର ମହାରଣା *, କୁଳମଣି ପ୍ରଧାନ, ପ୍ରଫୁଲ୍ଲ ସାହୁ, ରାଧାରଞ୍ଜନ ଦାସ, ବାସୁଦେବ ଗଜେନ୍ଦ୍ର, ଗୌରଶ୍ୟାମ ସାମନ୍ତରାୟ, ବୃନ୍ଦାବନ ପାଲ *, ଈଶ୍ୱରଲଲ ବ୍ୟାସ, ପଣ୍ଡିତ କୃପାସିନ୍ଧୁ ହୋତା ଓ ବ୍ରଜମୋହନ ସାହୁ ।''

• ମନମୋହନ ଚୌଧୁରୀ, ଶରତ୍ ଚନ୍ଦ୍ର ମହାରଣା, କୃପାସିନ୍ଧୁ ରଥ ଓ ବୃନ୍ଦାବନ ପାଳଙ୍କୁ ନେଇ ପ୍ରାଦେଶିକ ସମିତି ଗଢ଼ା ହେଲା ଓ ତା କାମ ରହିଲା ଭୂମି ସମସ୍ୟାର ତଥ୍ୟ ସଂଗ୍ରହ, ଭୂଦାନ ଯଜ୍ଞର ସମ୍ବାଦ ପ୍ରଚାର କାମର ପ୍ରସାର, ଅନ୍ୟାନ୍ୟ ଅହିଂସକ ଉପାୟ ନିର୍ଣ୍ଣୟ ।

## ସରକାରଙ୍କ ପ୍ରତି ସର୍ବୋଦୟକର୍ମୀଙ୍କ ଦୃଷ୍ଟିଭଙ୍ଗୀ

ତୃତୀୟ ପ୍ରସ୍ତାବରେ କୁହାଗଲା ଯେ

"ବର୍ତ୍ତମାନର ଶାସନ ବ୍ୟବସ୍ଥାକୁ ବଦଳାଇବାକୁ ପଡ଼ିବ । ପାଠୁଆ ମଧ୍ୟବିତ୍ତ ଶ୍ରେଣୀର ଆଧିପତ୍ୟ ନ କମିବା ପର୍ଯ୍ୟନ୍ତ, ବିକେନ୍ଦ୍ରିତ ଶାସନ ବ୍ୟବସ୍ଥା ସୃଷ୍ଟି ନ ହେବା ପର୍ଯ୍ୟନ୍ତ" ଜନସାଧାରଣଙ୍କ ଦୁଃଖ ଯିବ ନାହିଁ ।

(କ) "ଏଥିପାଇଁ ଲୋକଙ୍କ ଭିତରେ ଅନ୍ୟାୟର ପ୍ରତିରୋଧ ଶକ୍ତି ଜାଗ୍ରତ କରିବା ପ୍ରଥମେ ଆବଶ୍ୟକ ।"

(ଖ) ଏଥିନିମନ୍ତେ ସେବକମାନଙ୍କୁ ବିନୋବାଜୀଙ୍କ ଭାଷାରେ "କଥାରେ ନିଷେଧ ଓ କାର୍ଯ୍ୟରେ ସତ୍ୟାଗ୍ରହ" ପନ୍ଥା ଧରିବାକୁ ହେବ ।

(ଗ) "ପୂଜ୍ୟ ବିନୋବାଜୀ ପାଞ୍ଚବର୍ଷିଆ ଯୋଜନାର ସମାଲୋଚନା କରି ଯେଉଁସବୁ ସିଦ୍ଧାନ୍ତ ବାଢ଼ିଛନ୍ତି ତାହାର ଉପରେ ଜନମତ ସୃଷ୍ଟି କରିବାକୁ ହେବ ।"

ଚାଣ୍ଡିପୀରେ ଚତୁର୍ଥ ପ୍ରସ୍ତାବରେ କୁହାଗଲା

(କ) "ବର୍ତ୍ତମାନ ସରକାରୀ ନୀତି ରଚନାତ୍ମକ କାର୍ଯ୍ୟର ପ୍ରତିକୂଳ ଥିବାସ୍ଥଳେ କୌଣସି ରଚନାତ୍ମକ ଅନୁଷ୍ଠାନ ସରକାରୀ ସାହାଯ୍ୟ ଉପରେ ନିର୍ଭର କରି ଚଳିବେ ନାହିଁ,

(ଖ) ସରକାରୀ ବିଭାଗମାନଙ୍କରୁ ଶିକ୍ଷାର୍ଥୀଙ୍କ ତାଲିମ୍‌ର ଦାୟିତ୍ୱ ବି ନେବେ ନାହିଁ,

(ଗ) ଗାଁର କୂଅ ପୋଖରୀ ରାସ୍ତାଘାଟ ଆଦି କାମ ଲୋକେ ଆପଣା ଉଦ୍ୟମରେ କରିବା ପାଇଁ ଗ୍ରାମସେବକ ଚେଷ୍ଟା କରିବେ,"...ଇତ୍ୟାଦି ।

ପଞ୍ଚମ ପ୍ରସ୍ତାବରେ କୁହାଗଲା,

"ସରକାରୀ ନିଶାନୀତି ବିରୁଦ୍ଧରେ ପ୍ରଚାର କରିବା ସଙ୍ଗେ ସଙ୍ଗେ ସରକାରୀ ଉଚ୍ଚ ଦରମା ଓ ବାହ୍ୟ ଆଡ଼ମ୍ବର ଆଦି ବିରୁଦ୍ଧରେ ମଧ୍ୟ ଜନମତ ସୃଷ୍ଟି କରିବାକୁ ହେବ ।"

ଗ୍ରାମୋଦ୍‌ଯୋଗ ପ୍ରସ୍ତାର ଓ ଧନ୍ଦା-ମୂଳକ ଶିକ୍ଷା ପ୍ରବର୍ତ୍ତନ ଉପରେ ଜୋର ଦିଆଗଲା ।

ତୃତୀୟ ପ୍ରସ୍ତାବର (ଗ) ଭାଗଟି ବୁଝିବା ପାଇଁ ଜାଣିବା ଦରକାର ଯେ ବିନୋବାଜୀ ସରକାରୀ ପଞ୍ଚବାର୍ଷିକ ଯୋଜନାକୁ ସମାଲୋଚନା କରି ସେତେବେଳ ସୁଦ୍ଧା କି ସିଦ୍ଧାନ୍ତ ବାଢ଼ିଥିଲେ । ଟାଇଁସୀ ସମ୍ମିଳନୀ ଓ ଶିବିର ହୋଇଲ ୧୯୫୨ ଫେବୃଆରୀ ୧ରୁ ୭ ପର୍ଯ୍ୟନ୍ତ । ତା ପୂର୍ବରୁ 'ଗ୍ରାମସେବକ' ପତ୍ରିକାର ୧୯୫୧ ଅକ୍‌ଟୋବର ମାସର ଦଶମ ସଂଖ୍ୟାର ପୃ ୪୦୪ରୁ ୪୨୩ରେ ହିନ୍ଦୀ ସର୍ବୋଦୟ ପତ୍ରିକାରେ ତା ଆଗରୁ ବାହାରିଥିବା ବିନୋବାଙ୍କର "ଭାରତ ସରକାରଙ୍କ ପଞ୍ଚବାର୍ଷିକ ଯୋଜନା" ଶୀର୍ଷକ ଲେଖାଟିର ଓଡ଼ିଆ ଅନୁବାଦ ବାହାରିଥିଲା । ସେଥିରେ ଥିଲ ଯେ ୧୦-୮-୧୯୫୧ରେ ଭାରତ ସରକାରଙ୍କ ପ୍ଲାନିଂ କମିସନ୍‌ର ମେମ୍ବର ଶ୍ରୀ ଆର୍‌. କେ. ପାଟିଲଙ୍କ ସଙ୍ଗେ 'ପଞ୍ଚବାର୍ଷିକ ଯୋଜନା' ବିଷୟରେ ବିନୋବାଙ୍କ କଥାଭାଷା ହୋଇଥିଲ ଓ ଲେଖାରେ ସେହି କଥାଭାଷାଟି ଲେଖା ହୋଇଛି । ତହିଁରେ ବିନୋବା ପ୍ରଥମ ୫ ବାର୍ଷିକ ଯୋଜନାର ଅନେକ ତ୍ରୁଟି ଅଛି ବୋଲି ଆଲୋଚନା କରିଛନ୍ତି । ଟାଇଁସୀ ଶିବିରରେ ବିନୋବାଙ୍କର ସେହିସବୁ ମତ ହିଁ ଗୃହୀତ ହୋଇଲ ଓ ତାକୁ ପ୍ରଚାର କରନ୍ତୁ ବୋଲି କର୍ମୀଙ୍କୁ କୁହାଗଲ, ସେଠି ଗୋପବାବୁ ବି ଥିଲେ, ତେଣୁ ଧରି ନିଆଯାଇପାରେ ଯେ ସେ ବିଷୟରେ ବିନୋବାଙ୍କ ସହିତ ସେ ଏକମତ । ମତଗୁଡ଼ିକ ଏହିପରି ।

୧. ଭାରତର ସମ୍ବିଧାନରେ ସ୍ୱୀକୃତ ହୋଇଥିଲ ଯେ ପ୍ରତ୍ୟେକ ଲୋକକୁ କାମ ମିଳିବ ଓ ଖାଇବାକୁ ମିଳିବ, କିନ୍ତୁ ଯୋଜନାର ଆଭିମୁଖ୍ୟରେ ସେ ପ୍ରତିଶ୍ରୁତିର ନା ନାହିଁ କି ଯୋଜନା ସେବାଟେ ଯାଉନାହିଁ ।

ଯୋଜନା ଏମିତି ହେବା ଉଚିତ ଯେ ଅନ୍ୟ କିଛି ନ ହେଉଣୁ ଆଗ ପ୍ରତି ଲୋକ ଗୋଟିଏ ନିର୍ଦ୍ଦିଷ୍ଟ ତାରିଖ ଭିତରେ କାମ ଓ ଭୋଜନ ପାଇ ପାରିଥିବେ ।

୨. ପିଲଛୁଆ କମ୍ ହୁଅନ୍ତୁ, ବିନୋବା ଏ ଉକ୍ତି ସପକ୍ଷରେ, କିନ୍ତୁ ବାର୍ଥ କଣ୍ଟ୍ରୋଲ ସରକାରୀ ଯୋଜନାର ସେ ଘୋର ବିରୋଧୀ । ସେ କହନ୍ତି "ସିଂହର ଛୁଆ କମ୍ ହୁଅନ୍ତି, ଛେଳିର ବେଶି ହୁଅନ୍ତି । ଗାଁ ଗହଳରେ ସନ୍ତାନ କମ ହେବା ଦରକାର, କିନ୍ତୁ ଆଜି ସାମାଜିକ ସ୍ଥିତିର ଅଧଃପତନ ଯୋଗୁଁ ଗାଁ ଗହଳରେ ସନ୍ତାନ ବେଶି, ଚଷାର ସନ୍ତାନ ବେଶି । ଭଲ ସନ୍ତାନ ହେବା ପାଇଁ ଯାହା ଯାହା ଆବଶ୍ୟକ ସନ୍ତାନ କମ୍ ହେବାପାଇଁ ତାହାହିଁ ଦରକାର । ଏ ସମ୍ପର୍କରେ ଲୋକଙ୍କୁ ଆମେ ଶିକ୍ଷା ଦେବା, ସେମାନଙ୍କ ଜୀବନ ପରିବର୍ତ୍ତନ ଘଟାଇବା ଭଲ ବାତାବରଣ ସୃଷ୍ଟି କରିବାକୁ ଚେଷ୍ଟା କରିବା, ଏ ପ୍ରଶ୍ନ ସନ୍ତାନ-ନିରୋଧ ଦ୍ୱାରା ସମାଧାନ ହେବ ନାହିଁ ।

୩. ଭାରତ ଯେ ସ୍ୱରାଜ ପାଇଲ ସେଥିପାଇଁ ଅନ୍ତତଃ ୧୦ ୦/୦ ଭାଗ କୃଷିକୁ ଖଦୀର । ଖଦୀ ଛଡ଼ା ଅନ୍ୟ ଉଦ୍ୟୋଗ ସମସ୍ତିଙ୍କୁ ଦେଇ ହେବ ନାହିଁ । ଖଦୀର ଉଦ୍ଦେଶ୍ୟ ତାକୁ ବିକିବା ନୁହେଁ, ତାକୁ ପିନ୍ଧିବା ଓ ତା ବଦଳରେ ଗାଁରେ ଅନ୍ୟ ଦରକାରୀ ଜିନିଷ ସଂଗ୍ରହ କରିବା ।

୪. ବସ୍ତୁତଃ, ବିନୋବା 'ଟଙ୍କା' ପ୍ରଥା ଲୋପ କରି 'ଜିନିଷ ବଦଳ' ପ୍ରଥା ଆଣିବା ପାଇଁ ଇଚ୍ଛୁକ । ସେ କହନ୍ତି ସରକାରୀ ଖଜଣା ବି ଜିନିଷ ଆକାରରେ ଦିଆଯାଉ ।

୫. ସରକାର ପ୍ରତିଜ୍ଞା କରିଥିଲେ ଯେ ୧୯୫୨ ସୁଦ୍ଧା ଦେଶକୁ ଅନ୍ତତଃ ଖାଦ୍ୟରେ ସ୍ୱାବଲମ୍ବୀ କରିବେ, ବାହାରୁ ଖାଦ୍ୟ କିଣା ହେବ ନାହିଁ । ଅଥଚ ସେ ପ୍ରତିଜ୍ଞା ଭାଙ୍ଗିଲେ । ସରକାର ପ୍ରତିଜ୍ଞା ରଖନ୍ତୁ, ନ ହେଲେ ଗାଦି ଛାଡ଼ନ୍ତୁ ।

୬. ଗୋ ହତ୍ୟା ବନ୍ଦ ହେଉ ।

୭. ପ୍ରତି ବୁନିଆଦୀ ମୌଳିକ ପାଠଶାଳାକୁ ୨ ଏକର ଜମି ଦେବାକୁ ପଡ଼ିବ, ତହିଁରେ ପିଲାଏ ଶାଗ, ପରିବା, କପା କରିବେ ଓ ତାହାରି ଦ୍ୱାରା ଛାତ୍ର ଓ ମାଷ୍ଟରଙ୍କର ସବୁ ଭରଣପୋଷଣ ମେଣ୍ଟିବ, ସେ ପାଠଶାଳା ତଦ୍ୱାରା ଯେପରି ସମ୍ପୂର୍ଣ୍ଣ ଭାବେ ସ୍ୱାବଲମ୍ବୀ ହୁଏ ସେଇଆ ଲୋକଙ୍କୁ କାର୍ଯ୍ୟରେ ଦେଖାଇବାକୁ ପଡ଼ିବ ।

୮. କୋଠଚାଷ ପାଇଁ ଦେଶ ବର୍ତ୍ତମାନ ପ୍ରସ୍ତୁତ ନୁହେଁ, ସମସ୍ତିଙ୍କର ଜମି ରହୁ, ପ୍ରତ୍ୟେକଙ୍କର ଅଲଗା ଅଲଗା । କେତେଜଣ ଲୋକ ମିଶି କୋ'ପରେଟିଭ୍ କରନ୍ତୁ । ପ୍ରତି ଜମି ପାଇଁ କୂଅ ଖୋଲା ହେଉ । ଜଣକ ପାଖେ ଅତି ବେଶିରେ କେତେ ଜମି ଓ ଅତି କମ୍‌ରେ କେତେ ଜମି ଅଛି ସେଇଟା ଆଗ ବୁଝିବା ଦରକାର ନାହିଁ । ବୁଝିବା ଦରକାର, ଗାଁ ଯାକରେ ଜମି କେତେ, କେତେଜଣ ମଣିଷ, ସେହି ହିସାବରେ ଜଣକର କେତେ ଆସୁଛି, ସେପରି ହିସାବ କରି ସେତିକ ଜମି ପ୍ରତ୍ୟେକ ଗାଁ ବାଲା ଭାଇଙ୍କୁ ବାଣ୍ଟି ଦେବା ଦରକାର । ସ୍ତ୍ରୀ ଉପରେ ଯଦି କାହାଠି ବଳକା ରହିଗଲା ରହୁ, ୧୦୦ ଏକର ଥାଉ, କ୍ଷତି ନାହିଁ । ଏମିତି କଲେ ବିବାଦ ରହିବ ନାହିଁ ।

୯. ଯଥାସମ୍ଭବ ମେସିନ୍ ଶିଳ୍ପ ବନ୍ଦ କରି ପୁଣି ଗାଁର ପୁରୁଣା କୁଟୀର ଶିଳ୍ପ ଓ ଗ୍ରାମୋଦ୍‌ଯୋଗ ବାଗ ଧରିବାକୁ ପଡ଼ିବ, ତାହେଲେ ସମସ୍ତେ କାମ ପାଇବେ 'ଚରଖା ତ ଆଗ ।''

# ଏକତ୍ରୀକରଣ

ଟାଙ୍ଗିଗୀ ସମ୍ମିଳନୀ ସରିଗଲା, ବିନୋବାଜୀଙ୍କ 'ଭୂଦାନ ଯଜ୍ଞ' ଆନ୍ଦୋଳନକୁ ଓଡ଼ିଶାରେ ଚଳାଇବାକୁ ନିଷ୍ପତ୍ତି ଗୃହୀତ ହୋଇଗଲା, ତାପରେ ସେଠୁ ପଦଯାତ୍ରୀମାନେ ଚାଲିଲେ ପୁରୀ, ସେଠି ସର୍ବୋଦୟ ମେଳା ହେବ ଓ ତହିଁରେ ଯୋଗଦେବେ ବୋଲି। ପୁରୀ ସର୍ବୋଦୟ ମେଳାରେ ୧୯୫୨ ଫେବୃଆରୀ ୧୩ ତାରିଖରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଯେଉଁ ଭାଷଣ ଦେଇଥିଲେ ତାର ସାରାଂଶ ପୂର୍ବେ ଦିଆଯାଇଛି।

୧୯୫୨ ଫେବୃଆରୀ ୧୪ ତାରିଖରେ ପୁରୀଠାରୁ ପୁଣି ପଦଯାତ୍ରା ଆରମ୍ଭ କଲେ। ଭୂଦାନ ସଂଗ୍ରହ କାର୍ଯ୍ୟ ଚାଲିଥାଏ। 'ଗ୍ରାମସେବକ' ପତ୍ରିକାରେ ତାର ବିବରଣୀ ବାହାରୁଥାଏ। ସେମାନେ ୧୯୫୨ ମେ' ମାସ ୫ ତାରିଖରେ କଟକ ଜିଲ୍ଲାର 'ଖଣ୍ଡସାହି' ଗାଁରେ ପହଞ୍ଚିଲେ। ସେମାନଙ୍କୁ ସମ୍ବର୍ଦ୍ଧନା ଜଣାଇବାକୁ ସେଠି ବଡ଼ ସଭାଟିଏ ହୋଇଥିଲା। ଅନେକ ଆଉ ବିଭିନ୍ନ ରାଜନୈତିକ ମତବାଦୀ ଲୋକେ ସେଠି ଏକତ୍ର ହୋଇଥିଲେ, ଅନେକ ଗଠନମୂଳକ କର୍ମୀ ଉପସ୍ଥିତ ଥିଲେ। ଆଚାର୍ଯ୍ୟ ହରିହର ସେହି ସଭାରେ ସଭାପତି ହେଲେ।

ସଭାର ପ୍ରଥମ ପ୍ରସ୍ତାବ ଥିଲା ଗୋଟିଏ ଧନ୍ୟବାଦ-ଜ୍ଞାପନ ପ୍ରସ୍ତାବ :

"ବିନୋବାଜୀଙ୍କ ଭୂଦାନ ଯଜ୍ଞକୁ ପ୍ରସାର କରିବା ପାଇଁ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀ ପଦଯାତ୍ରାରେ ଓଡ଼ିଶାର ଆଠଟି ଜିଲ୍ଲା ବୁଲି ଯେଉଁ ଉତ୍ସାହ ଆଣି ଦେଇଛନ୍ତି ସେଥିପାଇଁ ଏ ସଭା ସେମାନଙ୍କୁ ଧନ୍ୟବାଦ ଜଣାଉଛି।" ସେତେବେଳକୁ ସେମାନେ କଟକ, ପୁରୀ, ଗଞ୍ଜାମ, କୋରାପୁଟ, କଳାହାଣ୍ଡି, ବଲାଙ୍ଗିର, ସମ୍ବଲପୁର ଓ ଢେଙ୍କାନାଳ ଜିଲ୍ଲାରେ ଗସ୍ତ କରିଥାନ୍ତି, ୪ ମାସ ୨୨ ଦିନ

ପଦଯାତ୍ରା କରିଥାନ୍ତି । ଶ୍ରୀମତୀ ରମା ଦେବୀ ମଧ୍ୟ ଗୋପବାବୁଙ୍କ ସଙ୍ଗେ ଚାଲି ଚାଲି ଏତେବାଟ ଯାଇଥିଲେ, କେବଳ ଖଣ୍ଡପଡ଼ା ପହଞ୍ଚିବାର ୪।୫ ଦିନ ପୂର୍ବରୁ ସାମାନ୍ୟ ବସନ୍ତ ରୋଗରେ ପଡ଼ିଯିବାରୁ ମାସେ ଅନୁପସ୍ଥିତ ରହି ଖଣ୍ଡପଡ଼ା ନ ଯାଇ ସତ୍ୟଭାମାପୁରରେ ମାସେ ବିଶ୍ରାମ କଲେ । ପୁଣି ଆସି ପହଞ୍ଚିଥିଲେ ।

ପୂର୍ବରୁ ଫେବୃଆରୀ ୧୪ରେ ବାହାରି ସେଦିନ ସେମାନେ ଚାଲି ଚାଲି ଗଲେ ଗରୁଆଳ, ମଧ୍ୟାହ୍ନଭୋଜନ 'ଜଗନ୍ନାଥବଲ୍ଲଭ ମଠ'ରେ କରି ରେବେଣା ନୂଆ ଗାଁରେ ରାତି ଯାପନ କଲେ । ଫେବୃଆରୀ ୧୫ ଦିନ ଚାଲି ଚାଲି ବ୍ରହ୍ମଗିରି ଗଲେ, ସେଠି ସକାଳଠୁଁ ରହି ଭୁବନପୁରରେ ରାତି ଯାପନ କଲେ । ୧୯୫୬ ଫେବୃଆରୀ ୧୬ ତାରିଖରେ ସେମାନେ ଚାଲିଲେ ପଣସପଦା ଓ ସନ୍ଧ୍ୟାରେ ସାତପଡ଼ା । ଚିଲିକାକୂଳିଆ ଗାଁ । ସବୁ, ବାଲିଆ ଅଞ୍ଚଳ, ପାଣି ମିଳେ ନାହିଁ, କୂଅ ଖୋଳିଲେ ଖାରିଆ ପାଣି । ଯଦି କେଉଁଠି ମିଠା ଝରଟିଏ ଫିଟେ, କୋଶ କୋଶ ଦୂରରୁ ପ୍ରତିଦିନ କନ୍ଧା ପିମ୍ପ ଭିଡ଼ି ପରି ସେଠିକି ଧାରି ଲାଗିଯାଏ, ଗରା ମାଠିଆ ମୁଣ୍ଡେଇ ଗାଁକୁ ଗାଁ । ମାଇପେ ଚାଲିଥାନ୍ତି, ଏ ଦୃଶ୍ୟ ମୁଁ ବି ଦେଖି ଫେରି ଆସିଛୁ । ମୁଁ ଦେଖିଛୁ, ତେଣେ ପୋଖରୀ କ୍ୱଚିତ୍, ପୋଖରୀଟିଏ ଥିଲେ ତହିଁରେ ଗୋରୁ ମଇଁଷି ମଣିଷଙ୍କର ଗାଧୁଆ, ମଣିଷଙ୍କ ଶୌଚ ହେବା, ପାଣି ପିଇବା ସବୁ ଚାଲେ, ହଇଜା ଉପେକ୍ଷିତ ବି ଘୋଟେ । ବ୍ରହ୍ମଗିରି ଅଞ୍ଚଳରୁ ଚିଲିକା ଭିତରି ଦ୍ୱୀପପୁଞ୍ଜ ଦେଇ ଯେ ଦକ୍ଷିଣରେ ମାଲୁଦ ଦେଇ ପାଲୁର ପର୍ଯ୍ୟନ୍ତ ସେହି ଅବସ୍ଥା । ଜମିସ୍ୱାଦ ବେଶି, ଶୋକରେ ଧେଡ଼ପଡ଼େ, ମୂଳପାଠ ପାଇଁ ଅନ୍ୟ ଧନ୍ଦା ନ ଥାଏ । ଜମି ଅଳ୍ପ, ତା ବି ବେଶି ବେଶି ପରିମାଣରେ ଅଳ୍ପ ଲୋକଙ୍କ ପାଖେ । କେଉଟ, ଗୋଖା (କଣ୍ଡରା) ଆଦି ମାଛ ମାରନ୍ତି, ସାଧାରଣତଃ ଶିକ୍ଷାଦୀକ୍ଷା କମ୍, କିନ୍ତୁ ମାଛ ଧରି ଖାଇ ମାଛ ଶୁଖୁଆ ବିକି ଭଲରେ ଥାନ୍ତି । ଚିଲିକାପନ୍ତାରେ ଦଳ, ଚିଲିକାରେ ବଣିଷ୍ଟ ଘାସ ଆଦି ଖାଇ ଗୋରୁ ମଇଁଷି ବଢ଼ନ୍ତି, ମଇଁଷି ହିଁ ବେଶି, ଗଉଡ଼ମାନେ ବି ଭଲରେ ଥାନ୍ତି । ମରୁଭୂମିରେ 'ଓସିସ୍' ପରି ସ୍ଥାନେ ସ୍ଥାନେ ଛନଛନିଆ ଶାଗୁଆ, ଆମ୍ବ ପଣସ ତୋଟା, କେଉଁଠି ବା ଗୋଟିକିଆ ଅନାବନା ଗଛ, ତା ନ ହେଲେ ଧାଡ଼ି ଲଗାଇଥିବେ କଥମାଳ, ତାଳ, ଖଜୁରି ।

ସାତପଡ଼ାରେ ବଡ଼ କେଉଟ ବସ୍ତି, ଗାଁଟି ଚିଲିକାଧାଡ଼ରେ, ସେଠୁ ଡଙ୍ଗା ଧରି ଲୋକେ ଚିଲିକା ଭିତରକୁ ଯାଆନ୍ତି, ଚିଲିକା ପାଇଁ ବେପାର କେନ୍ଦ୍ରଟିଏ । ସନ୍ଧ୍ୟାରେ ବହୁତ ଲୋକ ରୁଣ୍ଡିଲେ, ସଭା ହେଲା ।

ଫେବୃଆରୀ ୧୭ ତାରିଖ, ୧୯୫୬ । ପଦଯାତ୍ରୀମାନେ ବସିଲେ ଡଙ୍ଗାରେ, ପାହାଡ଼ ଜଙ୍ଗଲଘେରା ପୂର୍ବରୁ ଦେଖି ସତେ ଅବା ଗୋଟିଏ ଆନନ୍ଦପ୍ରଦ ଚିଲିକା ବିହାର । ଯେ ଚିଲିକାରେ ଡଙ୍ଗାରେ ନ ବୁଲିଛନ୍ତି, ଚିଲିକାର ସୌନ୍ଦର୍ଯ୍ୟ, ଚିଲିକାରେ ବୁଲିବା

ଅନୁଭୂତ ତାଙ୍କ ପକ୍ଷରେ କଳ୍ପନା କରିବା ବି ସମ୍ଭବ ନୁହେଁ । ଅସନା ଦଲ୍ହଅ: 'ଡାଲ୍ ଲେକ' (ଶ୍ରୀନଗର) ର ସାନ ସାନ ଟୁବି ଗାଡ଼ିଆ ପରି ଅନ୍ୟାନ୍ୟ 'ଲେକ୍' ବୋଲାଉଥିବା ସ୍ଥାନ ଦେଖି ଚିଲିକା ବିଷୟରେ ଧାରଣା କରି ହେବ ନାହିଁ କିମ୍ବା ରାଧାନାଥ ରାୟଙ୍କ 'ଚିଲିକା' କାବ୍ୟ ପଢ଼ି ମଧ୍ୟ ସାମାନ୍ୟରୁ ଅଧିକ ଧାରଣା ଆସିବ ନାହିଁ । ସେଠି ପାଣି ବିବିଧ ବର୍ଣ୍ଣର, କେତେବେଳେ କେଉଁ ପରି, ମୋଟାମୋଟି ଶାଗୁଆ, ନେଳିଆ । କାଚଖମ୍ବ ପାଣି, ତହିଁରେ ଧାଡ଼ି ଧାଡ଼ି ହଂସ, ପାଣିରେ ସତେକି ଧଳାଫୁଲ ଫୁଟିଛି, ପୁଣି ସେହି ଧାର ତଳେ ତଳେ ଜଳପ୍ରପାତ ପରି ହଂସମାନେ ପଖି ହଲେଉଛନ୍ତି । ପାଣିରୁ ଆକାଶଯାକେ ଜାତି ଜାତି ହଂସ ଉଡ଼ୁଛନ୍ତି, ସ୍ଥାନେ ସ୍ଥାନେ ଡଙ୍ଗାରେ ଠିଆ ହୋଇ ହାତ ବଢ଼ାଇଲେ ସେମାନଙ୍କ ପଖିରେ ବାଜେ କି ହାତ ଟେକିଲେ ତାଙ୍କ ପଖିରେ ନ ବାଜେ । (ପ୍ରାଚୀନ 'ଉର୍ମି'ର ଅବଶିଷ୍ଟପ୍ରାପ୍ତ ବଂଶଧର) 'ଭୂଆଷୁଣୀ' ମାଛମାନେ ପାଣିରେ ବୁଡ଼ି ରହି ଉପରକୁ ପାଣି ପିଚ୍‌କାରି ମାରୁଛନ୍ତି । ଦଳ ଦଳ ମାଛ ପହଁରୁଛନ୍ତି, ମାଛ ଡେଇଁଛନ୍ତି ।

ମାଛ ଖାଇବାଲୋକେ, ଚଢ଼େଇ ଖାଇବା ଲୋକେ ସେ ଚଢ଼େଇ ଓ ମାଛ ଓ ଚଢ଼େଇଙ୍କ ଦୁନିଆଁରେ ପଶିଲେ ଲୋଭରେ ଉଚ୍ଚାଟ ହୋଇଯାନ୍ତି, ମାରନ୍ତି, ଖାଆନ୍ତି, ମନ ହେଉଥାଏ ଆଆନ୍ତୁ କି ଆହୁରି ସହସ୍ରେ ମୋର ପାଟି ଆଉ ପେଟ ଆଉ ମାରିବାକୁ ଓଟାରି ଆଣିବାକୁ ଅସୀମ କ୍ଷମତା ! ମଣିଷର ସେହି ପଶୁ-ପ୍ରବୃତ୍ତିକୁ ଆଶ୍ରା କରି କେଉଟ ମାଛ ଧରୁଛନ୍ତି, 'ଜୁଣ' ଘେନ ବାଡ଼ଆପିଟା, ଏବେତ ବାଗ୍‌ଦାଚିଙ୍ଗୁଡ଼ି ଜାପାନ୍‌ ଆମେରିକା ଯାଉଛି ବୋଲି ଏକ କିଲୋଗ୍ରାମ୍‌ ମିଳିବ ଛତିଶି କି ଚାଳିଶି ଟଙ୍କା ଦେଲେ ('୧୯୭୬) । ସେଇଥିପାଇଁ ଚିଲିକାକୂଳଯାକ ବରଫ କଳ, ମାଛ ରପ୍ତାନି ପାଇଁ ରେଳ ଷ୍ଟେସନ, ଟ୍ରକ ସେଣୁ । ଚିଲିକାର ହଂସ ଧରିବା ପାଇଁ ପଶ୍ଚିମବଙ୍ଗର ଶରଣାର୍ଥୀ କ୍ୟୁଲେ କ୍ୟୁଲେ ଜାଲ ଟାଙ୍ଗି ଚଢ଼େଇଙ୍କି ହୁରେଡ଼େଇ ଆଣନ୍ତି, ଧରି ମାରି ଖାଆନ୍ତି, ବିକନ୍ତି, 'ଚୂଲନ୍' କରନ୍ତି । ବାବୁମାନେ ଦୂରରୁ ଦୂରରୁ ରେଳ ଚଢ଼ି ଆସନ୍ତି ବନ୍ଧୁକରେ ଚିଲିକାରେ ଚଢ଼େଇ ଶିକାର କରିବାକୁ, ସେମାନଙ୍କର କି ଆନନ୍ଦ ଉଲ୍ଲାସ ! ଯାଆନ୍ତି ଡଙ୍ଗା ଚଢ଼ି, ଚଢେଇ ଉପରେ ଚଢ଼ାଉ ହୁଏ, ବନ୍ଧୁକ ଶବ୍ଦରେ ଗଗନ ଫାଟେ ।

କିନ୍ତୁ ଏ ଯାତ୍ରୀମାନେ ଥିଲେ ଭିନେ ଲୋକ, ପୂଜ୍ୟ ଗୋପବାବୁ, ପୂଜ୍ୟା ରମା ଦେବୀ, ପୂଜ୍ୟ ଆଚାର୍ଯ୍ୟ ମହାଶୟ, ପୂଜ୍ୟ ପଣ୍ଡିତ କୃପାସିନ୍ଧୁ, ସର୍ବୋଦୟ କର୍ମୀମାନେ । ସେମାନଙ୍କ ହୃଦୟରେ ସମସ୍ତିଙ୍କ ପ୍ରତି ସ୍ନେହ, ମମତା, କରୁଣା, ମଙ୍ଗଳକାମନା । ଲୋଭ କି ହିଂସା ନୁହେଁ । ପୂର୍ବକାଳରେ ଏହିଭଳି ଜଣେ ହିଂସା ଦେଖି ଜଗତକୁ ଶୁଣାଇଥିଲେ ବେଦନା ଓ ମାନବିକତାର ଝଙ୍କାର,

"ମା ନିଷାଦ ପ୍ରତିଷ୍ଠାଂ ତ୍ୱ ମଗମଃ ଶାଶ୍ୱତୀ ସମା"

ଲୋଭୀ ହଂସକ ଶୋଷକ ପ୍ରାଣୀପୀଡ଼କମାନଙ୍କ ଏ ଯୁଗମୁଗରୁ ଅଭିଶାପ, ଋଷିବାକ୍ୟ ଟଳେ ନାହିଁ ।

ସେମାନେ ଆନନ୍ଦରେ ଗ୍ଟହିଁ ଦେଖୁଥିଲେ ହଂସମାନଙ୍କୁ, ଅନ୍ୟାନ୍ୟ ପକ୍ଷୀମାନଙ୍କୁ, ମାଛମାନଙ୍କୁ, ସେହି ପ୍ରାଣୀମାନଙ୍କର ଅଦ୍ଭୁତ ସଂସାରକୁ, ଚିଲିକା ପାଣିର ନେଳକୁ । ସେଠି ଦଳ, ସେଠି ଫ୍ଲ୍ୟାଂକ୍ଟନ୍, ସେଠି ଅଲ୍ଗି, ସେଠି ଉଦ୍ଭିଦ ଓ ଜୀବ ଜଗତର ଉଦ୍ଭବ ଓ ବିକାଶର କ୍ରମ ପର୍ଯ୍ୟାୟର ଆଦି ରୂପ ଏକକୋଶ ବିଶିଷ୍ଟ ଉଦ୍ଭିଦ ବା ଜୀବ ।

ସେମାନେ ଚିଲିକା ପାରହୋଇ ପହଞ୍ଚିଲେ ଝାଡ଼କଟା, ୧୯୫୬ ଫେବ୍ରୁଆରୀ ୧୭ ତାରିଖ ରାତିରେ ରହଣି ସେଇଠି । ଝାଡ଼କଟାରେ ବହୁତ ଦୁଃସ୍ଥ ଲୋକ । ସେହି ଗାଁର ଲୋକେ 'କନକା' ବୋଲି ଏକପ୍ରକାର ଚିଲିକା-ଘାସର ମୂଳ ଖାଇ ଓଳି ଓଳି ବଞ୍ଚୁଥାନ୍ତି । ଚିଲିକାର ଦଳୁଆ ଘାସରେ କିଛି ରସାତ୍ମକ ଖାଦ୍ୟସାର ଥାଏ, ଦେହକୁ କେଉଁଠା ହୁଡ଼ ମଣିଷ ତା ପରଖି ପରଖି ଆବିଷ୍କାର କରିଛି । ଶ୍ରୀମତୀ ରମା ଦେବୀ ଘର ଘର ବୁଲି ଲୋକଙ୍କ ଅବସ୍ଥା ଦେଖୁଥାନ୍ତି । ଠାଏ ସେ ଶୁଣିଲେ ମା ଝିଅକୁ ଗାଳି ଦେଉଛି କାହିଁକି ସେ ଅଳ୍ପ 'କନକା' ସଂଗ୍ରହ କରିଛି ବୋଲି ।

ଫେବ୍ରୁଆରୀ ୧୮ ତାରିଖ ସକାଳେ ସେମାନେ 'ମରଡ଼ା' ଗାଁରେ ପହଞ୍ଚିଲେ ଓ ରାତି ରହଣି କଲେ 'ଗେଲନାସି'ରେ । ସେମାନେ ଗ୍ଟଲିଥାନ୍ତି ସେହି ଚିଲିକା ଅଞ୍ଚଳରେ, ଚାରିଆଡ଼େ ବାଲି ମରୁଭୂମି, ସ୍ଥାନେ ସ୍ଥାନେ ଦୂରରେ ଦୂରରେ ଗୋଟିଏ ଗୋଟିଏ ଗାଁ, କିଛି କିଛି ଚାଷ ଜମି, ଅଦୂରରେ ଚିଲିକାର ପାଣି, ଜୁଆର ଅନୁସାରେ ସେ ଫୁଲେ, ବଢ଼େ, ମାଡ଼େ, କେନା କେନା ଖାଲ ଆଉ ନାସିବାଟେ ପଶି କଭି ହଲାଇ ଗ୍ଟଟି ପକାଏ, ପୁଣି ହଟିଯାଏ, ଗ୍ଟଡ଼ି ଦେଇଯାଏ ଚଲା ବାଟ ପଶା ବାଟରେ ସ୍ଥାନେ ସ୍ଥାନେ 'ଭୁଷା ବାଲି', ପାଦ ପଡ଼ିଲେ ମଣିଷ କି ଜନ୍ତୁ ରସାତଳକୁ ଗ୍ଟଲିଯିବ । ଗାଁରେ କିଛି କିଛି ତୋଟା, ମରୁଭୂମିରେ 'ଓଏସିସ୍' ପରି, ସ୍ଥାନେ ସ୍ଥାନେ କିଆବଣ, ତାଳ ଆଉ ଝାଉଁ । ମାଛ ହିଁ ଲୋକଙ୍କ ପ୍ରଧାନ ଜୀବିକା, ପ୍ରଧାନ ଅଭାବ ପିଇବା ପାଣି ଓ ଖାଦ୍ୟଶସ୍ୟ ।

୧୯ ତାରିଖରେ ସେମାନେ ମାଲୁଦରେ ପହଞ୍ଚିଲେ । ସନ୍ଧ୍ୟାରେ ବ୍ରାହ୍ମଣଦେଉରେ ରହିଲେ, ୨୦ ତାରିଖ ସକାଳେ ଗଞ୍ଜାମର ପାଲୁରରେ ପହଞ୍ଚିଲେ । ବ୍ରହ୍ମଗିରି ଅଞ୍ଚଳରୁ ପାଲୁରଯାକେ ପ୍ରତି ରହଣି ଜାଗାରେ ଦୁଇଓଳି ସଭା ହେଉଥାଏ, ବହୁତଆଡ଼ୁ ଲୋକ ଆସୁଥାନ୍ତି । ନାନା ସ୍ଥାନରେ ରହି ରହି ଫେବ୍ରୁଆରୀ ୨୫ ତାରିଖ ସନ୍ଧ୍ୟାରେ ସେମାନେ ପହଞ୍ଚିଲେ ସୁବର୍ଣ୍ଣପୁର । ସୁବର୍ଣ୍ଣପୁର ଓ ତା ଆଖପାଖରେ

'ଗାନ୍ଧୀ ସ୍ମାରକନିଧି' ଓ 'ଉତ୍କଳ ଖଦୀ ମଣ୍ଡଳ'ରୁ ସାହାଯ୍ୟ ପାଉଥିବା କେନ୍ଦ୍ରଗୁଡ଼ିଏ ଥାଏ ଓ ସୁବର୍ଣ୍ଣପୁରରେ 'ଗାନ୍ଧୀ ସ୍ମାରକନିଧି'ର ଅର୍ଥ ସାହାଯ୍ୟରେ 'ଜୀବରାମ କୁଷ୍ଠାଶ୍ରମ' ବୋଲି ଅନୁଷ୍ଠାନଟିଏ ଚାଲିଥାଏ । ସେମାନେ ଫେବ୍ରୁଆରୀ ୧୭ ତାରିଖ ସକାଳେ ଗଞ୍ଜାମର ଟିକରପଡ଼ାରେ ପହଞ୍ଚିଲେ ଓ ସନ୍ଧ୍ୟାରେ ଗୁରୁବୁଡ଼ିରେ ରହି ସଭା କଲେ । ତହିଁ ଆରଦିନ ଫେବ୍ରୁଆରୀ ୧୮ ତାରିଖରେ ସେମାନେ ଗଞ୍ଜାମର ରାମଗିରି ଓ ଉଦୟଗିରି (ଆର୍ ଉଦୟଗିରି) ମାଳକୁ ଚାଲିଲେ । ଘୋର ଅରଣ୍ୟ ଭିତରେ ତୀକ୍ଷ୍ଣ ପାହାଡ଼ଘାଟି ଚଢ଼ି ଓହ୍ଲେଇ ବାଟ । ସେମାନେ ଫେବ୍ରୁଆରୀ ୧୯ରେ ରହିଲେ 'ପୁଟିପାଣି' ଗାଁରେ, ଓ ଫେବ୍ରୁଆରୀ ୧୯ରେ 'ଛେଲିଗୁଡ଼ା'ରେ ରହିଲେ । 'ଛେଲିଗୁଡ଼ା'ରେ ସେମାନଙ୍କୁ ଦେଖିବାକୁ ଅନେକ ଲାଞ୍ଜିଆ ସଉରା ସ୍ତ୍ରୀ-ପୁରୁଷ ଆସି ପହଞ୍ଚିଲେ । ଲଞ୍ଜ ପରି ପୁରୁଷଙ୍କ ପଛଆଡ଼େ ଓ ଆଗଆଡ଼େ ଓହଳିଥାଏ ଟାଣ ହୋଇ ପରସ୍ତ ପରସ୍ତ ହୋଇ ଅଣ୍ଟାରେ ଗୁଡ଼ା ହୋଇଥିବା ଅତି ଲମ୍ବ କୌପୁନୀର ଫେର, ନାଲି ସୂତାରେ ଫେର ଉପରେ ହାତକାମ ବୁଣି ଫେରକୁ ଟିକିଏ ମୋଟା ଓ ଚଟକିତ କରା ହୋଇଥାଏ, ସ୍ତ୍ରୀଲୋକମାନଙ୍କ ଅଣ୍ଟା ଉପରକୁ ଲଙ୍ଗଳା, ତଳକାନରେ ଦୁଇତିନି ଛିଦ୍ର ଓପାର କଣା, ତହିଁରୁ ସ୍ୱତନ୍ତ୍ର ଓପାର ଗୋଲେଇ ହୋଇ ପିତ୍ତଳ ତାର ଅଳଙ୍କାର ହୋଇ ଝୁଲୁଛି, ଗ୍ରୀବା ଉପରେ ଗୋଛା ଗୋଛା କାଠ ମାଳି, କାଇଁଚ ମାଳି, କାଚ ମାଳି, ସ୍ତ୍ରୀ ଲୋକ, ପିଲାଏ ଓଡ଼ିଆ କୁହନ୍ତି ନାହିଁ, ପୁରୁଷମାନେ କ୍ୱଚିତ୍ କେହି କେହି । ପାହାଡ଼ ଉପରେ ଡାଲୁରେ ବଣ ହାଣି ପୋଡ଼ି ସେ ସଉରାଙ୍କ ଚାଷ, ସେ ପୋଡ଼ୁ ଚାଷ, ସେମାନେ ପାହାଡ଼ କାଟି ପାହାଚ ପାହାଚ କରି କ୍ଷେତ-ପଟାଳି ସଜାଇଥାନ୍ତି, ଯାହାକୁ କୁହାଯାଏ 'ଟେରେସ୍‌ଡ୍ କଲ୍‌ଟିଭେସନ୍' । ତାଙ୍କ ସମସ୍ୟା—ନାନା ପ୍ରକାର ଶୋଷଣରେ, ଯାହାଯୋଗୁଁ ଯେତେ ଖଟି ଖଟି ଅର୍ଜିଲେ ବି ତହିଁରୁ ଅତି ଅଳ୍ପହିଁ ବଳେ, ବାକି ସବୁ ଶୋଷକମାନେ ନେଇଯାଆନ୍ତି, ଖାଦ୍ୟ ଅଭାବ, ଜମି ଅଭାବ, ପାଣି ଅଭାବ, ତାଙ୍କ ପ୍ରତି ଦୟା ଅଭାବ, ବଣ ହାଣିଲେ ଧରପଗଡ଼, ଦୂରର ଜଙ୍ଗଲର ଦାଢ଼ ତାଙ୍କ ଗାଁ ପାଖକୁ ବୋଲି ଘୁଞ୍ଚେଇ ଅଣା ହୁଏ, ନାନା ପ୍ରକାର ଲାଞ୍ଚ ଆଉ ମାସୁଲ୍ ଆଦାୟ, ଡରହରା, ନାନା କଥା ।

ପୁରାଣରେ 'ଶବର' ଏଇମାନେ, ଏଇମାନେ ପ୍ରଭୁ ରାମଚନ୍ଦ୍ରଙ୍କୁ ଆତିଥ୍ୟ ଦେଇଥିଲେ, ଏଇ ମାଳରେ ପଡ଼ିଥିବ ଦିନେ ରାମ ଲକ୍ଷ୍ମଣ ସୀତାଙ୍କ ପାବନକାରୀ ପାଦ । କୃଷ୍ଣ ଅବତାର ବେଳେ ଏଇଠି କେଉଁଠି ସାଧନା କରୁଥିବେ ମହା ଧନୁର୍ଦ୍ଧର ଏକଲବ୍ୟ, ଏଇ ଜାତିର ମହାଭକ୍ତ ଜାରା ଶବର, ଏଇ ସଉରାମାଳରେ କେଉଁଠି ତ' ଛପି ରହିଥିବ ଶବରଦେବତା ଜଗନ୍ନାଥଙ୍କ ଆଦିପୀଠ, ଯେଉଁଠି ବିଶ୍ୱ ଶବର (ଏବେ ବି 'ବିଶ୍ୱ' ସଉରା ନାଁ ଦିଆଯାଏ) ଓ ତାଙ୍କ ଗ୍ରାମବାସୀ ମହାପ୍ରଭୁଙ୍କୁ ପୂଜା କରୁଥିଲେ, ମହାନଦୀ ଉପରେ 'କଣ୍ଟିଲୋ' ଗ୍ରାମରେ ନୁହେଁ, ଅତି ପ୍ରାଚୀନ ସାରୋଳା ଦାସଙ୍କ

ମହାଭାରତରେ ବର୍ଣ୍ଣିତ ହୋଇଥିବା 'ଋଷିକୋଇଲ (ଋଷିକୁଲ୍ୟା ନଦୀର) ଦକ୍ଷିଣ କୂଳେ' ଓ ଯେଉଁ ଅଣ-ଆଦିବାସୀ 'ବସୁ ବ୍ରାହ୍ମଣ'କୁ ବସୁ ଶବର ନିଜ ଘରେ ଆତିଥ୍ୟ ଦେଇଥିଲେ, ତାଙ୍କ ସଙ୍ଗେ ମିତ ('ଗଡ଼') ବସିଥିଲେ, ଯାହାକୁ ସେ ବିଶ୍ୱାସରେ ନିଜ ଆରାଧ୍ୟ ଦେବତାଙ୍କ ପାଖକୁ ଦର୍ଶନ ପାଇଁ ଘେନି ଯାଇଥିଲେ, କାଳେ ସେ ବାଟରେ ବାଘହାତୀ ଦେଖି ଡରି ପର୍ବତ ଦାଢ଼ ବାଟରେ ଯାଉ ଯାଉ ମୁଣ୍ଡପୁରି ପାତାଳୀ ଖୋଲ ଭିତରକୁ ଖସି ପଡ଼ିବ ଭାବି ତା ଆଖିରେ ଅନ୍ଧପୋଟଳି ବାନ୍ଧି ତାଙ୍କ ହାତ ଧରି ଅତି ସାବଧାନରେ ନେଇଥିଲେ, ସେହି ବହିରାଗତ କପଟୀ ବ୍ୟକ୍ତି ତାଙ୍କୁ ପ୍ରତାରଣା କରିଥିଲା, ଯାଇ ତା ରଜାକୁ କହିଥିଲା, ରଜା ଆସି ଦେବତାଙ୍କୁ ନ ପାଇ ସେ ଗାଁର ସବୁ ସଓରଙ୍କୁ ହାଣି ପକାଇଥିଲା, ବସୁ ଶବରଙ୍କୁ ବି, ଏକା ମୁରବ୍‌ବି 'ଜାରା' ବଞ୍ଚିଗଲେ, କୁଆଡ଼େ ଗଲେ ବସୁ ଶବରଙ୍କ ସରଳ ବିଶ୍ୱାସିନୀ ପତ୍ନୀ ଲଳିତା (କେଉଁ ବିଶ୍ୱାବସୁଙ୍କ ଝିଅ ନୁହନ୍ତି, ସେସବୁ ବହୁ ପରବର୍ତ୍ତୀ ଶତାବ୍ଦୀର କାହାଣୀ) ଜଣା ନାହିଁ, ସେହି ଶବରଜାତି ସେ, ଯାହାଙ୍କ ଦ୍ୱାରା ହାତ ନ ଲଗାଇବା ଯାକେ 'ଶ୍ରୀ-ଦାରୁ'କୁ ସମୁଦ୍ରରୁ କେହି କୂଳକୁ ଟେକି ଅଣିବାକୁ ସମର୍ଥ ହେଲେ ନାହିଁ, ରାଜାଙ୍କର ଶତଚେଷ୍ଟାରେ ଶତ ଆୟୋଜନରେ ସୁଦ୍ଧା ।

ସେହିମାନେ ଏ ସଓରା ! ତାଙ୍କର ଆଜି ଏ ଦଶା !

୧୯୫୬ ମାର୍ଚ୍ଚ ପହିଲରେ ପଦଯାତ୍ରୀମାନେ ପହଞ୍ଚିଲେ ରାମଗିରି ଉଦୟଗିରିରେ ଓ ଶ୍ରୀ ବଳରାମ ହାଓଙ୍କ ଘରେ କୁଣିଆ ହେଲେ । ଶ୍ରୀ ବଳରାମ ହାଓଙ୍କର କଂଗ୍ରେସ ପ୍ରତି ଓ ରଚନାତ୍ମକ କାର୍ଯ୍ୟ ପ୍ରତି ଅନୁରକ୍ତି ଥାଏ । ପୁଣି ସେଠି ସଓରାମାନଙ୍କ ସଙ୍ଗେ ଓ ପାଣ (ହରିଜନ)ମାନଙ୍କ ସଙ୍ଗେ ଆଲୋଚନା ହେଲା ।

ସେଠୁ ସେମାନେ ଗାଖ ଉଠାଣି ବାଟରେ ଚାଲି ଚାଲି ଉଚ୍ଚ ପର୍ବତ ଘାଟି ଚଢ଼ି ଚଢ଼ିକା ଚାଲିଲେ 'ସେରଂ' । ପଦଯାତ୍ରୀ ଦଳ ମାର୍ଚ୍ଚ ୩ ତାରିଖରେ ସେରଂ ପହଞ୍ଚିଲେ । ବରଂ ସେ ଅଞ୍ଚଳର ଗୋଟିଏ କେନ୍ଦ୍ରସ୍ଥଳ । ସେଠି ବହୁବର୍ଷ ହେଲା ଖ୍ରୀଷ୍ଟିଆନ୍ ମିସନ୍‌ର ଗୋଟିଏ ବଡ଼ କେନ୍ଦ୍ର ବସି ପାଣ (ହରିଜନ)ମାନଙ୍କୁ ଓ ସଓରାମାନଙ୍କୁ ବହୁସଂଖ୍ୟାରେ ଖ୍ରୀଷ୍ଟିଆନ୍ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ସେବା, ଯତ୍ନ, ଶିକ୍ଷା, ସ୍ୱାସ୍ଥ୍ୟ, ଆର୍ଥିକ ଉନ୍ନତି ଆଦି ଦିଗରେ ନାନା କାର୍ଯ୍ୟ କରୁଥାଏ । ସେହି ମିସନ୍‌ର ପରିଚାଳିକା ମିସ୍‌ନେଶ୍ରି ଇଂରେଜ ମହିଳା ମିସ୍ ମନ୍ରୋ ବହୁବର୍ଷ ହେଲା ସେଠି ରହି ନିଜେ ଲାଞ୍ଜିଆ ସଓରା ଭାଷା ଶିଖି, ସେ ଭାଷାରେ କଥା କହି, ସଓରା ଓ ପାଣଙ୍କ ସଙ୍ଗେ ଘନିଷ୍ଠ ଭାବେ ମିଶି, ସେମାନଙ୍କ ସେବାକାର୍ଯ୍ୟ କରି ସେମାନଙ୍କ ସମସ୍ୟା ସମାଧାନ ପାଇଁ ନାନା ଉଦ୍ୟମ କରି ସେ ଅଞ୍ଚଳରେ ବହୁତ ଭକ୍ତି, ବିଶ୍ୱାସ ଓ ଶ୍ରଦ୍ଧା ଅର୍ଜନ କରିଥାନ୍ତି । ସେଠି ବହୁତ ପାଣ ଓ ସଓରା ଖ୍ରୀଷ୍ଟିଆନ୍ ହୋଇ ସାରିଥାନ୍ତି ।

ପଦଯାତ୍ରୀମାନେ ସେହି ଖ୍ରୀଷ୍ଟିଆନ୍ ବସ୍ତିରେ ରହିଲେ ଓ ସନ୍ଧ୍ୟାରେ ମିସ୍ ମନ୍ରୋଙ୍କ ଘରେ ଭୋଜନ କଲେ ।

ତହିଁ ଆରଦିନ, ୧୯୫୨ ମାର୍ଚ୍ଚ ମାସ ୪ ତାରିଖରେ ପଦଯାତ୍ରୀମାନେ ସେରଂରୁ ବାହାରି ପର୍ବତ ଚଢ଼ି ଚଢ଼ି ଓହ୍ଲେଇ ଓହ୍ଲେଇ ଚାଲିଥାନ୍ତି ପୁଟାସିଂ ଆଡ଼କୁ । କୋରାପୁଟ ଜିଲ୍ଲାର ପୁଟାସିଂ ଅଞ୍ଚଳ ଓ ଗଞ୍ଜାମ ଜିଲ୍ଲାର ସଓରାମାଳର ଏହି ପ୍ରାନ୍ତ ଏକାଠି ଲଗିଛି । ଦୁଇ ଜିଲ୍ଲାର ଏହି ଅଞ୍ଚଳରେ ଯେଉଁ ଲଞ୍ଜିଆ ସଓରାମାନେ ଅଛନ୍ତି ସେମାନେ ଅନ୍ୟାନ୍ୟ ଆଡ଼ର ଲଞ୍ଜିଆ ସଓରାମାନଙ୍କଠୁ ମଧ୍ୟ ଆହୁରି ଅଧିକ ପରିମାଣରେ ନିଜ ପ୍ରାଚୀନ ଆଦିମ ଆରଣ୍ୟକ ସଂସ୍କୃତି ଓ ଚଳଣିରେ ଅଦ୍ୟାପି ରହିଛନ୍ତି । ପାରଳାଖେମୁଣ୍ଡିର ସଓରାମାଳରେ ଉପରେ, ତାଳୁରେ ଓ ତଳେ ଆଉ ଯେଉଁ ଲଞ୍ଜିଆ ସଓରାମାନେ ଅଛନ୍ତି ସେମାନେ ଊଣା ଅଧିକେ ଓଡ଼ିଆ ସଂସ୍କୃତିଦ୍ୱାରା ବଦଳିଛନ୍ତି, ପୁଟାସିଂ ପଟେ ଲଞ୍ଜିଆ ସଓରା ଅଧ୍ୟୁଷିତ ମାଳଭୂମିରୁ ଓହ୍ଲାଇ ପଡ଼ିଲେ ପଡ଼ିବ ଯେଉଁ ଗୁଣୁପୁର ସମତଳ, ବଂଶଧାରା ଉପତ୍ୟକା, ସେଠି ତ ସଓରା ଆଦୌ ଆରଣ୍ୟକ ନୁହନ୍ତି କି ଲଞ୍ଜିଆଙ୍କ ପରି ଚଳନ୍ତି ନାହିଁ, ସେମାନେ ବୋଲନ୍ତି 'ଶୁଦ୍ଧ ସଓରା' । ଶୋଷକ ବେପାରି ଆଦିଙ୍କ ଛଡ଼ା କ୍ୱଚିତ୍ କେବେ କେବେ ଦେଖିଥାନ୍ତି ଅତି ଅନୁନ୍ନତ ଲଞ୍ଜିଆ ସଓରା ଅଞ୍ଚଳର ଏହି ଅନ୍ଧାର ଅଞ୍ଚଳ ।

ଖାଲଢିପ ହୋଇ ଉଚ୍ଚ ମାଳଭୂମି ଉପରେ ଢେଉପରି ପାହାଡ଼ ମାଳ, କ୍ରମାନ ଖଞ୍ଜା ହେଲପରି ପାହାଡ଼ ଉପରେ ପାହାଡ଼, ପୁଣି ମଝିରେ ସଙ୍କୀର୍ଣ୍ଣ ଉପତ୍ୟକା ଆଉ ଢେଉ ପରି ପାହାଡ଼ । ପାହାଡ଼ ଲଣ୍ଡା କରି ସଓରା ସ୍ଥାନେ ସ୍ଥାନେ ଚାଷ କରିଥାନ୍ତି, ପାହାଡ଼ ଉପରେ, ମଥାନରେ କି ଉଚ୍ଚ ତାଳୁରେ ସାନ ସାନ ସଓରା ଗାଁ ଗୋଟିଏ ଗୋଟିଏ, ଦୂର ଦୂର, ସ୍ଥାନେ ସ୍ଥାନେ ଘୋର ଜଙ୍ଗଲ, ମଣିଷଖିଆ ବାଘ ମଧ୍ୟ ତେ, ଯେଉଁଠି ସେଠି ମୟୂର, ଶୁଆ ଶାରି, ନାନା ଚଢ଼େଇ, ହରିଣ ସମ୍ବର ବାର୍ହା କୁଟ୍ରା, ନାନା ଜନ୍ତୁ । ଆଉ ଆଦିମ ଲଞ୍ଜିଆ ସଓରା, ଯେ ନିଜକୁ ମାଙ୍କଡ଼ ବୋଲି ଭାବି ନିଜ ନିଜକୁ ନିଜ ହାତରେ ଗୋଟି ଗୋଟି କରି ଓପାଡ଼େ, ଦିନରାତି ଶଲପ ମଦ ପିଏ, ଘୁରିଆଡ଼େ ଶଲପ ଗଛ । ପାହାଡ଼ ଉପରେ ତା ଚାଷ, ପାହାଡ଼କୁ ପାହାଚ ପାହାଚ କରି କାଟି କାଟି ପଥର ହିଡ଼ ବାନ୍ଧି କ୍ଷେତ କରେ, ଖଟେ ବହୁତ, ବହୁତ ଜାତିର ବହୁତ ଫସଲ ଉପୁଜାଏ, ତାର ଏତେ କଷ୍ଟରେ ଉପୁଜାଇଥିବା ଫସଲତକ ଶୋଷକମାନେ ନାନା ଉପାୟରେ ଶୋଷି ନିଅନ୍ତି, ସେମାନେ ଡମ୍ବ (ପାଣ), କୁମୁଟି ବେପାରି ଓ ଅନ୍ୟ ଲୋକେ । ଲଞ୍ଜିଆ ସଓରା ଓଡ଼ିଶାର ସବୁଠୁ ବେଶି ଅନୁନ୍ନତ ଆଦିବାସୀ ଉପଜାତିମାନଙ୍କ ଭିତରୁ ଗୋଟିଏ, ଯେପରି ପେଙ୍ଗ କନ୍ଧ, ଡଂଗ୍ରିଆ କନ୍ଧ, କୋଟିଆ କନ୍ଧ, ଅନ୍ୟାନ୍ୟ ପାହାଡ଼ି କନ୍ଧ, ପରଜା, ବଣ୍ଡା, ଗଦବା, କୋୟା ଓ

ଉତ୍ତରର ଜିଲ୍ଲାମାନଙ୍କରେ, ପାବ୍‌ଡ଼ା ଭୂୟାଁ, ପର୍ବତ ଉପରର ଜୁଆଂ, ଏରେଙ୍ଗା କୋହ୍ଲ ଓ ବର୍‌ହୋର୍ ।

ମାର୍ଚ୍ଚ ୩ ତାରିଖରେ ସେମାନେ ସେରଂରୁ ବାହାରି ପୁଲ୍ଲାସିଂ ଅଞ୍ଚଳରେ 'କୁଲ୍‌ମିଂ' ଗାଁରେ ଜଣେ (ଖ୍ରୀଷ୍ଟିଆନ୍) ପାଣ ଘରେ ବସା କଲେ । ପାଣ, ଡମ୍ବ, ଗଣ୍ଡା ଏକା ଜାତି । ସେମାନେ ଆଦିବାସୀ ଅଞ୍ଚଳକୁ ଭେଦି ବହୁକାଳୁ ସେଠାରେ ରହିଲେଣି । ସାଧାରଣତଃ ସେମାନେ ଆଦିବାସୀଙ୍କଠୁ ଅଲଗା ହୋଇ ଗୋଟିଏ ଗୋଟିଏ ଗାଁରେ ରହନ୍ତି, ତହିଁରୁ କେତେ ଘର ମଧ୍ୟ ଆଦିବାସୀ ଗାଁରେ ରହନ୍ତି ।

ଏମାନେ ଓଡ଼ିଆ ଭାଷୀ, କିନ୍ତୁ ଏମାନଙ୍କ ପରସ୍ପର ଭିତରେ ଚଳୁଥିବା ଘରୋଇ ଓଡ଼ିଆ ବୋଲିରେ ନାନା ସ୍ୱତନ୍ତ୍ରତା ଅଛି । ଏମାନେ ମଧ୍ୟ ଗୋଟିଏ ବିଚିତ୍ର ପ୍ରାଚୀନ ଜାତି, ବଜ୍ରଯାନପନ୍ଥାର କବିମାନଙ୍କ ଲେଖାରେ ଏମାନଙ୍କ ଉଲ୍ଲେଖ ଅଛି ଓ ଏମାନଙ୍କ ଭାଷା ଓ ସଂସ୍କୃତି ସହିତ ୟୁରୋପର 'ଜିପସି'ମାନଙ୍କ ଭାଷା ସଂସ୍କୃତି ଆଦି ତୁଳନା କଲେ ଜଣାପଡ଼େ ଯେ ସେହି ୟୁରୋପୀୟ 'ଜିପ୍‌ସୀ'ମାନଙ୍କ ପୂର୍ବପୁରୁଷ ସମ୍ଭବତଃ ଓଡ଼ିଶାରୁ ଯାଇଥିଲେ ଓ ଏହି ଡମ୍ବ ଜାତିର ଥିଲେ ।

କିନ୍ତୁ ଓଡ଼ିଶାର ଦକ୍ଷିଣ ଜିଲ୍ଲାମାନଙ୍କରେ, ବିଶେଷତଃ କୋରାପୁଟ ଜିଲ୍ଲା, ଗଞ୍ଜାମ୍ ମାଳି, ଫୁଲବାଣୀ ଜିଲ୍ଲା, କଳାହାଣ୍ଡି ଜିଲ୍ଲାର ମାଳରେ ଆଦିବାସୀମାନଙ୍କ ଭିତରେ ସେହି ଚତୁର ଡମ୍ବ (ବା ପାଣ, ଏକା ଜାତି) ହିଁ ଆଦିବାସୀଙ୍କ ଶୋଷକ । ନାନା ଉପାୟରେ ସେମାନଙ୍କୁ ଠକ ଠାକ ସେମାନେ କମାଣି କରିଥିବା ଗଛର ଫଳ, କ୍ଷେତର ଫସଲରୁ ବେଶି ଭାଗ ସେ ବୋହିନିଏ, ଫଳଗଛ ଅଧିକାର କରେ, ଜମି ନେଇଯାଏ, ସେମାନଙ୍କୁ ଋଣରେ ବାନ୍ଧେ, 'ଗୋତି' ବି ରଖେ । ତାଙ୍କ ହାତକୁ ଯାହା ଆସିଲା ତାଙ୍କୁ ଭୁଲେଇ, ଡରେଇ, ନାନା ପ୍ରକାରେ ଠକି ନେଇଯାଏ ।

କିନ୍ତୁ ମାଳରେ ରହୁଥିବା ଆଦିବାସୀ, ଯେ ଓଡ଼ିଆ ବୁଝନ୍ତି ନାହିଁ, ପଦାକୁ ବାହାରିବାକୁ ଡରନ୍ତି, ବାହାରର ଅଚିହ୍ନା ଲୋକ ଦେଖିଲେ ପାଖ ପଶିବାକୁ ଡରନ୍ତି, ବାହାର କଥା ଜାଣନ୍ତି ନାହିଁ,—ବାହାର ଦୁନିଆଁ ସଙ୍ଗେ ଯାହାକିଛି କାରବାର କରିବାକୁ ତାଙ୍କ ଦରକାର ଜଣେ ଲୋକ, ତାଙ୍କ ଗାଁରେ ଯେଉଁ ଜିନିଷ ହୁଏ ନାହିଁ, ବାହାରୁ କିଣି ଆଣିବାକୁ ପଡ଼ିବ, ସେହି ଲୋକ ତାଙ୍କୁ ନେଇ କିଣେଇଦେବ ବା ନିଜେ କିଣି ଆଣିବ, ତାଙ୍କ ଜିନିଷ କିଣିନେବ ବା ବିକେଇ ଦେବ । ବାହାରୁ କେହି ଆସି ତାଙ୍କୁ କିଛି ପଚାରିଲେ, ତା କଥା ସେମାନଙ୍କୁ ଓ ସେମାନଙ୍କ ଉତ୍ତର ତାକୁ ସେ ବୁଝେଇ ଦେବ । ବାହାରର ହାଲ୍‌ଚାଲ୍ ତାଙ୍କୁ କହିବ, ତାଙ୍କୁ ପରାମର୍ଶ ଦେବ । ସେ ତାଙ୍କଠୁ ଖବର ନେଇ ଅନ୍ୟ ଗାଁକୁ ବି ଯାଏ । ତେଣୁ ଗାଁ ଗୋଷ୍ଠୀ ତାକୁ ଦରମା ଦେଇ

ନିଯୁକ୍ତ କରନ୍ତି । ସେହି କାର୍ଯ୍ୟ କରିବାକୁ ରହେ ଡମ୍ବ ବା ପାଣ, ଲଞ୍ଜିଆ ସଓରାମାନେ ତାଙ୍କୁ କହନ୍ତି 'ପେଷିନ' । ଅନ୍ୟତ୍ର ତାଙ୍କୁ କହନ୍ତି 'ବାରିକ୍' । ସେ ଗାଁ ଗୋଷ୍ଠୀର ବୃକର ସତ, କିନ୍ତୁ ଅନୁନ୍ନତ ମାଳୁଆ କନ୍ଧ ସଓରାଙ୍କର ସେ ମନ୍ତ୍ରୀ ବୋଲି ଅନ୍ୟମାନେ ଜାଣନ୍ତି, ତା ପରାମର୍ଶରେ ସେମାନେ ଚାଲନ୍ତି । ବାହାରର ଯେଉଁ ବଡ଼ ବଡ଼ କୁମୁଟି, ଶୁଣ୍ଢି, ବ୍ରାହ୍ମଣ ଆଦି ମହାଜନମାନେ ଆଦିବାସୀଙ୍କ ଜିନିଷ କଣା ବେପାର କରନ୍ତି, ତାଙ୍କୁ ଋଣ ଦିଅନ୍ତି, ତାଙ୍କ ଜମି ନିଅନ୍ତି, ତାଙ୍କୁ ଚୋଠ ରଖନ୍ତି, ତାଙ୍କ ପାଇଁ ବି କାମ କରିଦିଏ ସେହି ବାରିକ୍ ବା ପେଷିନ ବା ତାର ଭାଇ ବନ୍ଧୁ । ଲଞ୍ଜିଆ ସଓରାମାଳରେ, ଯେପରି ଅନ୍ୟାନ୍ୟ ମାଳରେ ହୁଏ, ଡମ୍ବ (ପାଣ)ମାନେ ସାଧାରଣତଃ ଗୋଟାଏ ଗୋଟାଏ ପଲ୍ଲୀ କରି ସେଠି ଏକାଠି ରହୁଥିଲେ । ଲଞ୍ଜିଆ ସଓରା ମାଳରେ ଜଣେ ଜଣେ ଡମ୍ବ (ପାଣ) ଖାଲି ଗୋଟିଏ ଗୋଟିଏ ଆଦିବାସୀ ଗାଁ ପାଇଁ ନୁହେଁ, ଗୋଟିକରୁ ବେଶୀ ଗାଁ ପାଇଁ 'ପେଷିନ' ନିଯୁକ୍ତ ହୋଇଥିଲେ । ପୁଟ୍ଟାସିଂରେ ଅନ୍ତତଃ ଆଠଜଣ ପାଣ ପେଷିନଙ୍କ ଘର ଥିଲା, ଯଥା : ବଣେଇ ଲିମା, ସେ ପୁଟ୍ଟାସିଂ, କବର୍ ଗୋଲ, ଝୁଡ଼ୁବୁମ୍ ଗାଁ ପାଇଁ ପେଷିନ,

ଯୋଗୀ ଗାଣ୍ଡା—ସେ ଜଂଜଂ, ବୁଣ୍ଡୁବା, ଲଇବା, ତାଇକୁର୍, ରେଂରେଂ, ସିଂ-ଜାଂ-ଢ଼ିଲ୍, ମାନଂସୁମ୍, ବାସିଂଗର୍ଜାଂ, ରେଜେଂଡାଲ୍, ଆଲେଂ ଆଲ୍, ସୋଲ୍ଦା-ସିଂ, ଏପରି ଏଗାରଟି ସୌରା ଗାଁର ପେଷିନ,

ସୁଡ଼ା ଲିମା—ବରେଇ ଗାଁ ପାଇଁ,

କେଶନ୍ ପାଲ୍—କାଣ୍ଡା ସିଂ, ଅନ୍ତର ସିଂ, ତାର୍ ବେଲ୍, ବୁଂବୁଂବା ପାଇଁ,

ବାଲି ପାଲ୍—କେରେବା ଓ ଆଲେଂଡା ପାଇଁ

ବଣେଇ ପାଣି—ଡୁଂଡୁଂ ଓ ରାଏଲ୍ପଦର୍ ପାଇଁ,

ସାଇବପେଷିନ—ଲଡ଼େ ଓ ଅଲେଂଇ, ଗାଇଲୁଂ ଓ ମୁଲ୍ସିଂ ପାଇଁ,

ଟିପୁ ବର୍ଦ୍ଦନ୍—ଲଗିଗାଓଁ ପାଇଁ ।

ଜଲ୍ତର୍ ଗାଁରେ ଅନ୍ତତଃ ପାଞ୍ଚଜଣ ପାଣ 'ପେଷିନ'ଙ୍କ ଘର ଥିଲା, ଜଣେକେ ବେଶି ବେଶି ସଓରା ଗାଁର ପେଷିନ ହୋଇଥିଲେ :—

ଜାନ୍କା ଓ ରେଲା—ପାଡ୍ଡିଲ, ତାମ୍ରଣା, ତାଲ୍ନା, ରେଗାଇସିଂ, ଟେଂ ଗର୍ଜାଂ, ସାବାଇ, ପଦରା, ସେଂନା, ଶଗଡ଼ା, ସୁଡ଼ୁଡ଼ା ଓ ଆଙ୍ଗାରା ।

କଜିଆ ପାତ୍ରି—କାତୁଂ, ଅଡ଼ା ସାର୍, ଜଂ ଜାଂ ଗଂ, ଆଣ୍ଡ୍ରୁ ସୁଡ଼ା, ସାନ୍ ଅଡପା ।

ଧାମ ଗଣ୍ଡା—ବାନା ସିଂ, ରେର୍ଡ଼ି ଗର୍ଜାଂ ।

ସା'ହେବ ଲମା—ଜଲ୍ତର, ନମାଲବଡ଼ା, ଭାର୍ଗି ସିଂ, ଡୁମି ତାଲ୍, କାନ୍-ଗୁ, ସୁଲେ-ଡା ।

୧୯୫୬ ମାର୍ଚ୍ଚ ୫ ତାରିଖରେ ସେମାନେ କୁଲ୍‌ସିଂ ଗାଁରୁ ପାହାଡ଼ ଗଡ଼ାଣିଏ ଗଡ଼ାଣିଏ ଚାଲିବାଟରେ ଓହ୍ଲାଇଲେ ଜଲତର । ଜଲ୍ତର ବି ପାହାଡ଼ିଆ ଜାଗା, କିନ୍ତୁ ମାଳର ଢାଲୁର ତଳ ଆଡ଼କୁ ସେ, ଗୁଣୁପୁରରୁ ସେପର୍ଯ୍ୟନ୍ତ ରାସ୍ତା ଥାଏ, ତା ଉପରକୁ ନୁହେଁ । ଜଲ୍ତର ଅପେକ୍ଷାକୃତ ବଡ଼ ଗାଁ, ଅନେକ ପାଣ, କୁମୁଟି ଓ ଅନ୍ୟାନ୍ୟ ତେଲୁଗୁ ଓଡ଼ିଆ ଅଣଆଦିବାସୀ ସେଠି ଘର କରିଥାନ୍ତି, ଆଦିବାସୀଙ୍କ ଜିନିଷରେ 'ବ୍ୟବସାୟ' କରିବା ହିଁ ମୁଖ୍ୟ ଉଦ୍ଦେଶ୍ୟ । ସପ୍ତାହକେ ଥରେ ସେଠି ବଡ଼ ହାଟ ବସେ । ଉପରୁ ଲଞ୍ଜିଆ ସଓରାମାନେ ଚାରିଆଡୁ ସେଠିକି ଆସନ୍ତି, ସେମାନେ ଭାରରେ ବୋହି ଆଣିଥାନ୍ତି ଧାନ, ଜୋଣା, କାନ୍ଦୁଲ, ଝୁଡୁଙ୍ଗ ମଞ୍ଜି, ସୁଆଁ, ମାଣ୍ଡିଆ, କାଙ୍ଗୁ, ସୋରିଷ, ମୁଗ, ବର୍‌ହି, କୋଳଥ, ହଳଦୀ, ମହୁଲ, ଟୋଲ, କରଞ୍ଜ । ଅତି ଶସ୍ତାରେ କିଣି ନେବାକୁ ଜନ୍ଦା ପିମ୍ପୁଡ଼ି ପରି ଧାର ଲାଗିଯାଆନ୍ତି ଗୁଣୁପୁର ଅଞ୍ଚଳର ଓ ତାକୁ ଲାଗିଥିବା ଆନ୍ଧ୍ର ଅଞ୍ଚଳର ବେପାରି ସାହୁକାର । ଅନେକେ ଫସଲ ନ ହେଉଣୁ ବନ୍ଧନା କି ଉଧାର ଦେଇଦେଇଥାନ୍ତି ସାମାନ୍ୟ କିଛି ଟଙ୍କା, ସେତେବେଳେ ଏଭଳି ରେଟ୍‌ରେ କିଣିବେ ବୋଲି ସର୍ତ୍ତ କରିଥାନ୍ତି ଯହିଁରେ ପ୍ରଚଳିତ ରେଟ୍‌ର ଦଶ ପନ୍ଦରଗୁଣ ଶସ୍ତାରେ ଜିନିଷ କିଣି ନେବେ । ଆଦିବାସୀ କେବେ କଥା ଦେଲେ କଥା ଭାଙ୍ଗେ ନାହିଁ, ସେମାନେ ଜାଣନ୍ତି । କରଜ କରି କରି ତ ଲଞ୍ଜିଆ ସଓରା ସବୁ ଉଜାଡ଼ ବସେ । ତାଙ୍କର ଯେକୌଣସି ବେମାରି ହେଉ, ସେମାନେ ଭାବନ୍ତି ଯେ ତାଙ୍କର କେହି ମୃତ ଆତ୍ମୀୟର କି ପୂର୍ବ ପୁରୁଷର ପ୍ରେତାତ୍ମା ସେ ରୋଗୀକୁ ଧରି ରୋଗଟା କରାଇଛି ଓ ସେ ପ୍ରେତ ଯାହା ଖାଇବାକୁ ଚାହୁଁଛି ସେଇଟା ତାକୁ ନ ଦେଲେ ରୋଗୀ ଭଲ ହୁଏ ନାହିଁ । ପ୍ରତି ପରିବାରରେ ବର୍ଷକୁ ଅନ୍ତତଃ ପାଞ୍ଚଥର ମାଲଜ୍ୱର ହୁଏ । ଅନ୍ୟାନ୍ୟ ରୋଗ, ସର୍ଦ୍ଦି, ଦେହବଥା, ଝାଡ଼ା ତ ଅଛି । କିଛି କାହାକୁ ରୋଗ ହେଲେ ତା ଲୋକ ଯାଆନ୍ତି ଗାଁର 'ବେଜୁଣୀ' ପାଖକୁ, ସାଧାରଣତଃ ସେ ଗୋଟିଏ ବୁଢ଼ୀ ବା ଅଧାବୟସୀ ସ୍ତ୍ରୀ ଲୋକ, ଗାଁ ଲୋକଙ୍କ ବିଶ୍ୱାସ ଯେ ସେ ଦେବତା କି ପ୍ରେତକୁ ଡକାଇ ନିଜଠି ଅବତରେଇ ପାରିବ । ସେଇଠୁ ତା ତୁଣ୍ଡରେ ସେ ପ୍ରେତ କହିବ ସେ କଏ, କଣ ଖାଇଲେ ରୋଗୀକୁ ଛାଡ଼ିବ । ଲଞ୍ଜିଆ ବେଜୁଣୀ ସାଧାରଣତଃ ହାତେ ଗୋଟାଏ କି ଦିଟା ପୋଢ଼ କି ଗାଈ ହାଣି ବଳିଦେଲେ ତା ଭୋକ ଯିବ, କେବେ ମାଗେ ଘୁଷୁରି, ଛେଳି, କୁକୁଡ଼ା । ସଙ୍ଗେ ସଙ୍ଗେ ଲଞ୍ଜିଆ ସଓରା ତାକୁ କିଣିବାକୁ ଋଣ ଖୋଜେ, ପଡ଼ିଲା ଋଣଜାଲରେ । ଆଗରୁ ବି ଋଣ ନେଇ ସବୁ ଫସଲ ଅତି ଶସ୍ତାରେ ଦେଇଦିଏ । ରୋଗମୁକ୍ତି ଛଡ଼ା ଅନ୍ୟାନ୍ୟ ନାନା ପ୍ରୟୋଜନରେ ବର୍ଷଯାକ ସେମାନେ ଅନେକ ବଳି ଦେଉଥାନ୍ତି ।

ଶ୍ରୀ ଗୋପବନ୍ଧୁ ଚୌଧୁରୀ ଆଦିଙ୍କୁ କଲେକ୍ଟର୍‌ରେ ଆସି ଅଭ୍ୟର୍ଥନା କଲେ ଗୁଣୁପୁର ଓ ରାୟଗଡ଼ା ଅଞ୍ଚଳର ପ୍ରାୟ ଦୁଇଶ ଗାଁର ମୁଖିଆ ମୁଖିଆ ଲୋକେ । କିନ୍ତୁ ସେମାନେ କଲେକ୍ଟରରେ ଅଟକିଲେ ନାହିଁ, ଗୁଣୁପୁର ଗଲେ । ଗୋପବାବୁ ବାଟରେ ଶୁଣିଲେ ଯେ ସେ ଅଞ୍ଚଳର ଆଦିବାସୀମାନେ କୁଆଡ଼େ ବସିଛନ୍ତି, ଯେ ସେଠି ସାହୁକାର ଭୂମିମାଲିକମାନେ ସେମାନଙ୍କର ଯେଉଁ ଜମିସବୁ ମାଡ଼ି ବସିଛନ୍ତି, ତାକୁ ଫେରି ପାଇବା ପାଇଁ ସେମାନେ ଆନ୍ଦୋଳନ କରିବେ ଓ ସାହୁକାର ଭୂମିମାଲିକମାନେ କୁଆଡ଼େ ଗୁଣ୍ଡା ଉଠାଇଛନ୍ତି ଯେପରି ସଙ୍ଗଠିତ ଭାବେ ସେ ଆନ୍ଦୋଳନକୁ ବିରୋଧ କରିବେ ।

ସେଠି ଆଦିବାସୀଙ୍କ ଭୂମି ସମସ୍ୟା କଥା ସେ ଜାଣିଥିଲେ । ସେକଥା ଆଗରୁ କେତେ ଲୋକ ଦେଖି ଲେଖି ଯାଇଛନ୍ତି, କେତେ ରିପୋର୍ଟ ଅଛି ଓ ଖାସ୍ କରି ଗୁଣୁପୁରର ସମତଳର ସଉରଙ୍କ ଭୂମି ସମସ୍ୟା କଥା ସେଠି ୧୨ ବର୍ଷ ହେଲା କର୍ମୀ ହୋଇ କାମ କରୁଥିବା ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କଠାରୁ ଓ ଅନ୍ୟମାନଙ୍କଠାରୁ, ଯଜେ ପୂର୍ବେ ଯେତେବେଳେ ଗୁଣୁପୁର କୁଜେନ୍ଦ୍ରି ଆସିଥିଲେ ସେତେବେଳେ ସ୍ଥାନୀୟ ଲୋକଙ୍କଠାରୁ ସେ ଶୁଣିଛନ୍ତି । ସେ ଅଞ୍ଚଳରେ ଜନସଂଖ୍ୟାର ଶତକଡ଼ା ନବେ ପଞ୍ଚାନବେ ଭାଗ ହେଲେ ଆଦିବାସୀ, ଗୁଣୁପୁରର ସମତଳର ପ୍ରାୟ ସମସ୍ତେ 'ଶୁଦ୍ଧ ସଉରା' ଜାତିର ଆଦିବାସୀ, କିନ୍ତୁ ଜମି ଯେତେ ଅଛି ତହିଁରୁ ଶତକଡ଼ା ନବେ ପଞ୍ଚାନବେ ଭାଗ ରହିଛି ଜନସଂଖ୍ୟାର ଅଳ୍ପ ଯେଉଁ ଶତକଡ଼ା ପାଞ୍ଚଜଣ କି ଦଶଜଣ, ତାହାର ଭିତରୁ କେତେଜଣଙ୍କ ହାତରେ, ସେମାନେ ମୁଖ୍ୟତଃ ତେଲେଙ୍ଗୁ କୋମୁଟି ସାହୁକାର, କିଛି ଧନୀ ଓଡ଼ିଆ ବ୍ରାହ୍ମଣ ସାହୁକାର, କିଛି ଓଡ଼ିଆ ବା ତେଲୁଗୁ ଶୁଣ୍ଡି ସାହୁକାର । ପୂର୍ବେ ସେଠି ଆଦିବାସୀ ଆହୁରି ଅଜ୍ଞ, ଅଶିକ୍ଷିତ, ଅହୁରି ସରଳବିଶ୍ୱାସୀ ଥିଲେ । ସାମାନ୍ୟ ଋଣ ନେଲେ ତହିଁରେ ଏପରି ଚଢ଼ା ସୁଧ, ଏପରି ପେଞ୍ଚ ପାଞ୍ଚ ଯେ ସେ ହେଉଥିଲା ମାଛ ବନସୀ ଥୋପ ଗିଳିଲା ପରି । ସାମାନ୍ୟ ଋଣ ପାଇଁ ଜମିଭୋଗ ବନ୍ଧା ଦେଉଥିଲେ ବା ବିକୁଥିଲେ, ଆଉ ଫେରନ୍ତି ପାଉ ନ ଥିଲେ । ଅନ୍ୟାନ୍ୟ ନାନା ଫନ୍ଦିଫିକର କରି ମଧ୍ୟ ବାହାରୁ ଆସିଥିବା ଲୋକେ ତାଙ୍କ ଜମି ନେଇ ଯାଉଥିଲେ । ନାନା ଉପାୟରେ ସେମାନେ ଗୁଣୁପୁରର ଭଲଥାଳି ସେସବୁ ଜମି ଦଖଲ କରି ବସିଲେ, ସେସବୁ ଯାହାଙ୍କ ଜମି ତାଙ୍କ ପିଲାଏ ହେଲେ କାଙ୍ଗାଳ୍ ।

ଆଦିବାସୀଠାରୁ ଅଣଆଦିବାସୀ ହାତକୁ ଜମି ହସ୍ତାନ୍ତର ବନ୍ଦ କରିବାକୁ ୧୯୧୭ରେ ସରକାର ସେହି 'ଏଜେନ୍‌ସି ଅଞ୍ଚଳ' ପାଇଁ ଏ. ଟି. ଆଇ. ଏଲ୍. ଟି. ଆକଟ କଲେ । ସେ ଅଞ୍ଚଳ ପାଇଁ କଲେକ୍ଟରର ଖାଲି ଯେକୌଣସି ଜିଲ୍ଲା କଲେକ୍ଟର ପରି ଜିଲ୍ଲା କଲେକ୍ଟର ଓ ଜିଲ୍ଲା ମ୍ୟାଜିଷ୍ଟ୍ରେଟ୍ ସେତିକି ନୁହନ୍ତି, ତାଙ୍କୁ କରାଯାଇଥାଏ ଲାଟ ସାହେବଙ୍କ ପ୍ରତିନିଧି, "ଏଜେଣ୍ଟ୍ ଟୁ ଦି ଗଭର୍ଣ୍ଣର", ତେଣୁ ସେ ଅଞ୍ଚଳ

ହୋଇଥାଏ 'ଏଜେନ୍‌ସି' । ସେହିପରି, ଏସ୍‌. ଡି. ଓ. ମଧ୍ୟ ହୋଇଥାନ୍ତି ଲଟ ସାହେବଙ୍କ ବଶିଷ୍ଟ 'ସହକାରୀ-ପ୍ରତିନିଧି', 'ସ୍ପେସାଲ୍‌ ଆସିଷ୍ଟାଣ୍ଟ୍‌ ଏଜେଣ୍ଟ୍‌ ଟୁ ଦି ଗଭର୍ଣ୍ଣର' । ଏ. ଟି. ଆଇ. ଏଲ୍‌. ଟି. ଆକ୍‌ଟରେ ନିୟମ ହୋଇଥାଏ ଯେ 'ଏଜେନ୍‌ସି ଅଞ୍ଚଳ'ରେ ସରକାର ଅର୍ଥାତ୍‌ ବାସ୍ତବକ୍ଷେତ୍ରରେ ଏସ୍‌. ଡି. ଓ. ବା କଲେକ୍‌ଟରଙ୍କ ଅନୁମତି ବିନା ବନ୍ଧକ, ବିକ୍ରି ଆଦି ଯେକୌଣସି କ୍ଷେତ୍ରରେ ଆଦିବାସୀର ଜମି ଅଣଆଦିବାସୀ ହାତକୁ ଆସିଥିଲେ ହସ୍ତାନ୍ତର ଅବୈଧ, ସେମାନଙ୍କୁ ସେ ଆଦିବାସୀ ଦରଖାସ୍ତ କଲେ କିମ୍ବା ସେହି କର୍ମଚାରୀ ନିଜେ ସେଭଳି ଖବର ପାଇଲେ ଯଦି ବୁଝିବେ ଯେ ଘଟଣା ସତ, ତେବେ ସେ ଜମିକୁ ଅଣଆଦିବାସୀଠୁ ଛଡ଼େଇ ନେଇ ପୁଣି ସେ ଆଦିବାସୀକୁ ବା ସେ ନ ଥିଲେ ତା ବଂଶଧରକୁ ଫେରାଇ ଦେବେ । କିନ୍ତୁ ଆଇନ୍‌ଟାଏ ପାଶ୍‌ ହୋଇଯିବା ଗୋଟାଏ କଥା, ଯାହା ସ୍ୱାର୍ଥ ସଂରକ୍ଷଣ ପାଇଁ ହୋଇଛି ସେହି ଉଦ୍ଦେଶ୍ୟରେ କାର୍ଯ୍ୟକାରୀ ହେବା ଓ ସେହି ଦରିଦ୍ର, ଅନୁନ୍ନତ, ଅପାଠୁଆ, ପଛୁଆ ଲୋକଟିର ଉପକାର ଲାଗି କାର୍ଯ୍ୟକାରୀ ହେବା ଆଉ ଗୋଟିଏ କଥା । ତାହା ନ ହୋଇଥିଲେ ଓଡ଼ିଶା ପ୍ରଦେଶ ହେଲାପରେ ସୁଦ୍ଧା, ରାୟଗଡ଼ା ଆଦି ସହରରେ ଓ ତା ଉପକଣ୍ଠରେ ପ୍ରାୟ ସବୁ ଆଦିବାସୀ ଜମି ଅନ୍ୟମାନଙ୍କ ହାତକୁ ଚାଲି ଯାଇଥାନ୍ତା ବା କିପରି ? ଯେତେବେଳେ ଆଦିବାସୀଙ୍କ ଭିତରେ ଟିକିଏ ଚେତନା ଖେଳିଲା, ବୁଦ୍ଧି ପଶିଲା, ସେତେବେଳକୁ ଗୁଣୁପୁର ବିଷମକଟକ ଅଞ୍ଚଳରେ ହସ୍ତାନ୍ତରିତ ହୋଇଥିବା ପ୍ରାୟ ସବୁ ଜମି ସାହୁକାରଙ୍କ ହାତକୁ ଗଲାଣି । ୧୯୧୭ ପୂର୍ବର ଜମି ହସ୍ତାନ୍ତରକୁ ଏ. ଟି. ଆଇ. ଏଲ୍‌. ଟି. ଆକ୍‌ଟ ତ ଲାଗୁ ହୁଅନ୍ତାହିଁ ନାହିଁ । ତା ଉପରେ ପୁଣି, ୧୯୪୮ ରେ ଓଡ଼ିଶା ସରକାର ଗୋଟାଏ ନିର୍ଦ୍ଦେଶନାମା (ତା ୨୩-୩-୪୮ର ଜି. ଓ. ନଂ ୩୧୮୯ ଆର୍‌) ଜାରି କରିଦେଲେ ଯେ ଏ. ଟି. ଆଇ. ଏଲ୍‌. ଟି. ଆକ୍‌ଟ ଅନ୍ତର୍ଗତ ଘଟଣାକୁ ମଧ୍ୟ 'ଲିମିଟେସନ ଆକ୍‌ଟ'ର ନିୟମ ପ୍ରଯୁଜ୍ୟ ହେବ । ଏ କ୍ଷେତ୍ରରେ ତା ଅର୍ଥ;—୧୯୩୬ ମାର୍ଚ୍ଚ ୨୩ ବେଳକୁ ଯେଉଁ ଅଣଆଦିବାସୀମାନେ ଆଦିବାସୀ ଜମିକୁ ଦଖଲ କରି ଆସୁଛନ୍ତି ଆଉ ଏ. ଟି. ଆଇ. ଏଲ୍‌. ଟି. ଆକ୍‌ଟ ଅନୁଯାୟୀ ତାକୁ ତାଙ୍କଠୁ କାଢ଼ି ଆଣି ହେବ ନାହିଁ ଓ ଜମି ଯଦି ତାହାପରେ ହସ୍ତାନ୍ତରିତ ହୋଇଥାଏ ତେବେ ଦଖଲକାରୀ ତାକୁ ୧୨ ବର୍ଷ ଦଖଲ କରି ସାରିଥିଲେ ତାକୁ ଆଉ ଦଖଲଚ୍ୟୁତ କରି ହେବ ନାହିଁ । ଓଡ଼ିଶା ସରକାର ସେ ନିର୍ଦ୍ଦେଶନାମାକୁ ନ ଉଠାଇବା ପର୍ଯ୍ୟନ୍ତ ୧୯୫୨ ମାର୍ଚ୍ଚ ବେଳକୁ ଆଦିବାସୀଙ୍କ ପୂର୍ବ ଜମି ଉଦ୍ଧାର ପାଇଁ ଏ. ଟି. ଆଇ. ଏଲ୍‌. ଟି. ଆକ୍‌ଟ ଅନୁସାରେ କାର୍ଯ୍ୟାନୁଷ୍ଠାନ କରିବାର ପରିସର ସଂକୀର୍ଣ୍ଣ ଥିଲା, କାରଣ ତାର ୧୨ ବର୍ଷ ପୂର୍ବରୁ ଧରି ଅର୍ଥାତ୍‌ ୧୯୪୦ରୁ ଯେପରି ହସ୍ତାନ୍ତର ଘଟଣା କ୍ୱଚିତ୍‌ କାହିଁ ସେ ଅଞ୍ଚଳରେ ଘଟିଥିଲା, ସେତେବେଳକୁ ଆଦିବାସୀମାନେ ଚେତିଲେଣି, ଆଗଠୁଁ ତାଙ୍କର ବେଶି ଆଖି ଫିଟିଲାଣି ।

ଓଡ଼ିଶା ସରକାରଙ୍କର ସେ ନିର୍ଦ୍ଦେଶନାମା କୌଣସି ଆକ୍ଟ ନ ଥିଲା କି ହାଇକୋର୍ଟଙ୍କ ନିର୍ଦ୍ଦେଶ ନ ଥିଲା । କିନ୍ତୁ ତାଙ୍କ କର୍ମଚାରୀମାନେ ତାକୁ ମାନୁଥିଲେ । ୧୯୪୮ରେ ମାନ୍ୟବର ପାଟନା ହାଇକୋର୍ଟ ଗ୍ରେଟ ନାଗପୁର ଟେନାନ୍‌ସି ଆକ୍ଟ ଅନୁସାରେ ହୋଇଥିବା ଲୁଥ୍ ଉରାଓଁ ବନାମ୍ ସାମୁଆ ଉରାଓଁ ମକଦ୍ଦମାରେ ରାୟ ଦେଇଥିଲେ (ଏ. ଆଇ. ଆର. (୩୫) ୧୯୮ ପାଟନା ପି. ଏନ୍. ୧୯) ଯେ ସେ ଟେନାନ୍‌ସି ଆକ୍ଟ ମକଦ୍ଦମା 'ଲିମିଟେସନ୍ ଆକ୍ଟ' ଲାଗିବ । ସେ ଆଇନ୍ ଓ ଏ.ଟି. ଆଇ. ଏଲ୍. ଟି. ଆକ୍ଟ ଏକା ଆଇନ୍ ନ ହେଲେ ସୁଦ୍ଧା ଓଡ଼ିଶା ସରକାର ମାନ୍ୟବର ପାଟନା ହାଇକୋର୍ଟଙ୍କର ସେହି ରାୟକୁ ଅନୁସରଣ କରି ଏ ନିର୍ଦ୍ଦେଶନାମା ଦେଇଥିଲେ ।

ଏପରି ଅବସ୍ଥାରେ ସାହୁକାର ଭୂମି ମାଲିକମାନଙ୍କଠାରୁ ଏଠିକା ଆଦିବାସୀମାନେ ସେମାନଙ୍କ ଯାଇଥିବା ଜମି ଫେରାଇ ନେବାକୁ ଆନ୍ଦୋଳନ କରିବାକୁ ବସିଛନ୍ତି ? କିଭଳି ଆନ୍ଦୋଳନ ? କାହିଁ, କେହିତ ତାଙ୍କୁ ଜଣାଇ ନାହାନ୍ତି ! ସେପରି ଆନ୍ଦୋଳନ ହେଉଥିଲେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ କଣ ତାଙ୍କୁ ଲେଖି ନ ଥାନ୍ତେ ? କହି ନ ଥାନ୍ତେ ?

## ବିସ୍ୟାଳଣି

୧୯୫୬ ମାର୍ଚ୍ଚ ମାସ ୫ ତାରିଖରେ ପଦଯାତ୍ରୀମାନେ ଗୁଣୁପୁରରେ ପହଞ୍ଚିଲେ । ସେଠି ତାଙ୍କୁ ବିପୁଳ ଅଭ୍ୟର୍ଥନା ଦିଆଗଲା । ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ପାଖକୁ ନାନା ଶ୍ରେଣୀର ବହୁତ ଲୋକ ଆସିଲେ । ତନ୍ମଧ୍ୟରେ ଥିଲେ ଗୁଣୁପୁରର ଜନସାଧାରଣ, କଂଗ୍ରେସ ନେତା ଓ କର୍ମୀମାନେ, ଗ୍ରାମାଞ୍ଚଳରେ କାର୍ଯ୍ୟ କରୁଥିବା ରଚନାତ୍ମକ କର୍ମୀମାନେ, ଗୁଣୁପୁର ଅଞ୍ଚଳର ବ୍ୟବସାୟୀମାନେ, ଭୂମି ମାଲିକମାନେ,

ନାନା ଗ୍ରାମରୁ ଆଦିବାସୀ । ସେ ସେଠି ମାର୍ଚ୍ଚ ୫, ୬, ୭ ଏହିପରି ତିନିଦିନ ରହିଲେ, ଆଖପାଖ ଗାଁ ବୁଲିଲେ, ଲୋକଙ୍କ ସଙ୍ଗେ କଥାଭାଷା ହେଲେ, ସେଠିକା ଅବସ୍ଥା ବିଷୟରେ ପ୍ରତ୍ୟକ୍ଷ ଧାରଣା ପାଇଲେ ।

ଆଦିବାସୀଙ୍କ ଦୟନୀୟ ଅବସ୍ଥା ସେମାନଙ୍କୁ ଦେଖିଲେ ବାରି ହୋଇ ପଡ଼ୁଥିଲା, ସେମାନେ ବି ନିଜେ ସବୁ ବର୍ଣ୍ଣନା କରୁଥିଲେ । ସାହୁକାରମାନେ ଜମିତକ ନି ମାଡ଼ି ବସିଛନ୍ତି । ଆଦିବାସୀର ନିଜର ହଳବଳଦ ଥିଲେ ସାହୁକାର ଭାଗରେ ଚଷିବାକୁ ଜମି ଦେଇପାରେ, ରଇତ ତା ବଳଦ ଚଷିବ, ତା ଖର୍ଚ୍ଚରେ ସାର ବିହନ ଦେବ ତା ପଇସାରେ, ସେଥିପାଇଁ କରଜ କରେ, —ଲଗଲଗୁଡ଼ି (ବସ୍ତ୍ର, ବିହୁଡ଼ା, କଣ୍ଟା ଆଦି) ସବୁ ତୁଲେଇବ ତଥାପି ଚଳନ୍ତି ଧାରା, —ଫସଲରୁ ରଇତର ଅଧେ ଜମି ମାଲିକର ଅଧେ, ଅଥଚ ଓଡ଼ିଶା ପ୍ରଜା ସଂରକ୍ଷଣ ଆଇନ୍ ଅନୁସାରେ ରଇତର ପ୍ରାପ୍ୟ ଫସଲର ପାଞ୍ଚ ଭାଗରୁ ତିନିଭାଗ । କିନ୍ତୁ ଏମାନେ 'ଭାଗ'ରେ ବି ଜମି ଚାଷ କରିବାକୁ ଦିଅନ୍ତି ନାହିଁ, ଦେଲେ ଦିଅନ୍ତି 'ଗୁତ୍ତି' ('ସଞ୍ଜା') ପ୍ରଥା ଅନୁସାରେ; ଆଗ ଚାଷ କରିବାକୁ ଚାହୁଁଥିବା ଲୋକ ସଙ୍ଗେ ଗୋଟାଏ ଚୁକ୍ତି କରନ୍ତି, ଯେ ଫସଲ ହେଉ କି ନ ହେଉ, ତାଙ୍କୁ ମିଳିବ ଗୋଟାଏ ନିର୍ଦ୍ଦିଷ୍ଟ ପରିମାଣର ଧାନ । ସେ ଜମିରେ ଖୁବ୍ ହେଲେ ଯେତେ ପରିମାଣର ଉତ୍ପାଦନ ହୋଇଥାଏ ତହିଁରୁ ଉତ୍ପାଦନ ତାଠୁ ଆହୁରି ବହୁତ ବେଶି ବୋଲି ସାହୁକାର ଗୋଟାଏ କାଳ୍ପନିକ ପରିମାଣ ଧାର୍ଯ୍ୟ କରେ, ରଇତର ଆପତ୍ତି ଶୁଣେ ନାହିଁ । ତାର ଅଧା ତାର ପ୍ରାପ୍ୟ ବୋଲି ହିସାବ କଷି ଦେଖାଇ 'ଗୁତ୍ତି' ଚୁକ୍ତିରେ ଲେଖେ, ବାଧ୍ୟ କରେ ଚାଷୀ ତାକୁ ସେତିକି ଦେବ । ଯଦି ସାହୁକାର ବଳଦ ଯୋଗାଏ, ବିହନ ଯୋଗାଏ, ସେ ବାବତରେ ବହୁତ ବେଶି କାଟି ନିଜର ପ୍ରାପ୍ୟ ପରିମାଣ ଆହୁରି ବଢ଼ାଇଦିଏ । ଫସଲ ହେଲେ ସବୁ କଟେଇ ନିଜ ଖଳାକୁ ବୁହାଇନିଏ, ସେଇଠି ଅମଳ କରି, ପ୍ରଚଳିତ ମାଣଠୁ ମାପରେ ବହୁତ ଅଳ୍ପ ଧରୁଥିବା ଗୋଟାଏ ଭୁଲ୍ ମାଣରେ ମାପି ରଇତକୁ ତା ଭାଗ ଦେଇଦିଏ, ସେତିକି ଫସଲର ଆଠଣା ତ ନୁହେଁ, ପାଞ୍ଚଣା ଛଅଣା ଭାଗ ହେଲେ ହୋଇପାରେ । ଫସଲ ଯଦି ଭଲ ନ ହେଲା, ତେବେ ବିଚରା ଭାଗଚାଷୀର ଶ୍ରମ ଭାସିଁ ଭାସିଁ ଯାଏ, ଯାହା ହୋଇଥାଏ ସେତିକି ସବୁ ତ ଜମିମାଲିକ ରଖେ, ତାଛଡ଼ା ତା ପ୍ରାପ୍ୟ ନିଅଣ୍ଟ ହେଲା, ଆହୁରି ବାକି ରହିଲା କହି ଚାଷୀ ଉପରେ କରଜ ଲଦେ । କିନ୍ତୁ ଦୁରବସ୍ଥା ଖାଲି ସେତିକି ନୁହେଁ, ୧୯୪୭ର ଭାଗଚାଷ ଆଇନ୍‌ବଳରେ କାଳେ ଚାଷୀ କାଳକାଳକୁ ସେ ଜମିରେ ଭାଗଚାଷୀ ହେବାକୁ ଅଧିକାର ଜାରି କରିବ ଆଶଙ୍କା କରି ସେ ଆଇନ୍‌ଟି ହେଲା ପରଠୁ ୧୯୪୮ ସାଲରୁ ସ୍ଥାନେ ସ୍ଥାନେ ଜମି ମାଲିକମାନେ ଭାଗଚାଷୀଙ୍କୁ ଉଚ୍ଛେଦ କରି ନିଜେ ଚାଷ କରିବାକୁ ଉଦ୍ୟମ କରୁଛନ୍ତି ବା ଅନ୍ୟଲୋକଙ୍କୁ 'ଗୁତ୍ତି' ଦେଉଛନ୍ତି, କେଉଁଠି କେଉଁଠି ପୂର୍ବ ଭାଗଚାଷୀ ଜମିକୁ ଯାଇ କଳି କରୁଛି । ଆଇନ୍ କଣ ହୋଇଛି ସେ

ବିଷୟ ଗାଁ ଦଣ୍ଡାରେ ସରକାର ବି କିଛି ନାହିଁ, ସାହୁକାର ତ ସହଜେ ଚୂପ୍ । ଉଚ୍ଛେଦ କଲେ ମକଦ୍ଦମା ପ୍ରାୟ ଖାରଜ ହୁଏ, ରଇତକୁ ତାରିଖ ନୋଟିସ୍ ନ ପଠାଇ ନୋଟିସ୍ ଜାରି ହେଲ ବୋଲି ରିପୋର୍ଟ ହୋଇ ରଇତ ଗରହାଜର ବୋଲି ମକଦ୍ଦମା ଖାରଜ ହୁଏ । ନ ହେଲେ ଅମୁକ ଲୋକ ଭାଗଚାଷୀ ବୋଲି ମିଛରେ ଲେଖି ସାହୁକାର ଯେଉଁ ମିଛ ରେକର୍ଡ଼ କରିଥାଏ, ମକଦ୍ଦମାରେ କର୍ମଚାରୀମାନେ ସେଇଅଙ୍କୁ ସାଧାରଣତଃ ବିଶ୍ୱାସ କରନ୍ତି, ଚୌଦ୍ଦ ସାକ୍ଷୀ ଆଦିବାସୀ ହେଲେ ବୋଲି ତାଙ୍କ କଥାରେ ପରତେ ଯାଆନ୍ତି ନାହିଁ ।

ପ୍ରଟେଷ୍ଟଙ୍କ ଅବସ୍ଥା ତ ଏଇଆ । ଆଦିବାସୀଙ୍କ ଭିତରୁ ଶହେ ଜଣରେ ୮।୧୦ ଜଣ ବନ୍ଧନ୍ତି ସାହୁକାର ପାଖେ 'ଖମାର' (କୋଠିଆ) ରହି । ବର୍ଷକୁ କେତେ ନେବେ ସେଇଟା ଭୂଟେ, ସେହି ଅନୁସାରେ ସପ୍ତାହକୁ ସପ୍ତାହ ତାଙ୍କୁ ଧାନ କି ମାଣ୍ଡିଆ । ସେମାନଙ୍କର ଚଳିବାକୁ ଲୋଡ଼ା ବର୍ଷକୁ ଅନ୍ତତଃ ୫୦।୬୦ ପୁଟି ଧାନ କି ମାଣ୍ଡିଆ ଓ ତା ଉପରେ ଟ ୨୦ଙ୍କା କି ଟ ୫୦ଙ୍କା, ଖମାରି ଦରମା, ସେତେବେଳେ ଧାନ ଦର ଟଙ୍କାକୁ ୨ ମାଣ । କିନ୍ତୁ ସେତେବେଳେ ସାହୁକାରମାନେ ରେଟ କରିଛନ୍ତି ବର୍ଷକୁ ମୋଟେ ୧୨ ପୁଟି ଧାନ ଓ ତା ଉପରେ ବର୍ଷକୁ ଟ ୬ଙ୍କା, ୧ ପୁଟି ଧାନର ଦର ଥାଏ ଟ ୧୦୪, ପୁଟିକ ୧ ମହଣ ୨୪ ସେର ଓଜନ । ସେତକ ଧାନ ବି ଦିଆଯାଏ ଭୁଲ୍ ମାଣରେ ମାପି, ଯହିଁରେ ଚଳନ୍ତି ମାଣ ଅପେକ୍ଷା କମ୍ ଧରେ । ସାହୁକାର ନିଜେ କିଛି ବେଲବେଳକୁ 'ଛୋଟ ମାଣ', କିଛି ବେଲବେଳକୁ 'ବଡ଼ ମାଣ' ବ୍ୟବହାର କରେ, ଅଥଚ କହେ ସେଇ ଠିକ୍ ମାଣ ।

ଅନ୍ୟ ଆଦିବାସୀମାନେ ସାହୁକାରମାନଙ୍କ ପାଖେ କୁଲିଗିରି କରନ୍ତି । କିନ୍ତୁ ସେ କାମ ମିଳେ ବର୍ଷକୁ ୩ ମାସ, ୪ ମାସ କି ୫ ମାସ ଯାକେ, ଆଉ ଅଧିକ ନୁହେ । କୁଲି ମଜୁରିରେ ମଧ୍ୟ ଏତେ ଠକେଇ ଓ ତାହା ଏତେ ଭିଣା ଯେ ତାହା ଦିନକର ଖୋରାକକୁ ଅଣ୍ଟେ ନାହିଁ । କାମକୁ ଯିବେ ସକାଳ ସାଢ଼େ ଛଅଟାରେ । ସାହୁକାର ତରଫରୁ ଲୋକ ବସି କାମ କରାଇବ ଦିନ ଦେଢ଼ଟା ଯାକେ । ହେଲ ୭ ଘଣ୍ଟା କାମ, ବିଶ୍ରାମ ନାହିଁ । କିନ୍ତୁ ତା ହିସାବରେ ସେଇଟା ଦିନକର କାମ ନୁହେଁ, ଓଳିକର, ତେଣୁ ଓଳିକର ମଜୁରି ପାଇବେ । ଏ ସାହୁକାରମାନେ ରେଟ କରି ଦେଇଛନ୍ତି, ଦିନକୁ ମଜୁରି ଧାନକଟା ବେଳେ ୪ ଅଡ଼ଡ଼ାରୁ ୬ ଅଡ଼ଡ଼ା, ଅନ୍ୟ ସମୟରେ ୨୪ ଅଡ଼ଡ଼ାରୁ ୩ ଅଡ଼ଡ଼ା । ଓଳିକର ତାର ଅଧା । ସବୁ ପ୍ରାପ୍ୟ ଧାନ କି ମାଣ୍ଡିଆରେ ଦିଆଯିବ ନାହିଁ, ଅଧ ଅଡ଼ଡ଼ା କାଟି ରଖି ତା ବଦଳରେ କିଛି ସାରୁ ବା କିଛି ଲୁଣ ଦିଆଯିବ । ବାକି ୨ କି ୨୪ ଅଡ଼ଡ଼ା ଧାନ, ତା' ବି ସାନ ଅଡ଼ଡ଼ାରେ, ତେଣୁ ଗୁହାଳ କଲେ ମିଳେ ଅଡ଼ଡ଼ାଏ ଗୁହାଳ ଅର୍ଥାତ୍ ୪୦ ତୋଲା ଗୁହାଳ, ସେତକ । ଭାବି

'ନେଇ ଚୂନା କରି ଧ'ଓଳିକୁ ସାଗ କରି ଗୁଡ଼ାଏ ଗୁଳୁଣ୍ଡା ପତ୍ର କି ଆଉ କିଛି ଶାଗପତ୍ର ସଙ୍ଗେ ମିଶାଇ ଗୁଡ଼ାଏ ପାଣିରେ ଫୁଟାଇ ଜାଉ କଲେ ସେଇଜଗାଣିଆ ଓ ତା ପୋଷ୍ୟମାନେ ସେଇଆକୁ ପିଇ ବଞ୍ଚନ୍ତି । ଯଦି ମଜୁରି ଧାନରେ ନ ମିଳି ପଇସାରେ ମିଳେ ତେବେ ଦିନର ମଜୁରି ପୁରୁଷ କୁଲିକୁ ଆଠଅଣା ବା ବାରଅଣା, ସ୍ତ୍ରୀ କୁଲିକୁ ଚାରିଅଣା ବା ଛଅଣା, ଓଳିକ ମଜୁରି ହେଲେ ତା ଅଧା ।

ବର୍ଷକ ଆଉ ଯେଉଁ ୭।୮ ମାସ, ସେତେବେଳେ ଖାଦ୍ୟାଭାବରୁ ସେମାନେ ଡହଳବିକଳ ହେବାକୁ ପଡ଼େ । ଗୁଣ୍ପୁରରେ ବଂଶଧାରା ନଈର ବିଶାଳ ଉପତ୍ୟକା ଖାଲି ବାଲିଭୂଇଁ, ବଣ ଦୂରରେ ଦୂରରେ । ବଣରୁ ହିଁ ଶାଗ, ପତ୍ର, ପ୍ରକାର ପ୍ରକାର ବଣ ଆଳୁ, କନ୍ଦା, ଛତୁ, ଫଳ, ଫୁଲ, ବାଉଁଶ କରଡ଼ି ଆଦି ଖାଦ୍ୟ ଖୋଜି ଆଣିବାକୁ ପଡ଼େ । ଯେଉଁ ବର୍ଷ ଆମ୍ବ, ତେନ୍ତୁଳି, ମହୁଲ ହୋଇଥାଏ, ତହିଁରେ ଚଳିଯାଏ କେତେ ମାସ, କାରଣ ଆମ୍ବ ଟାକୁଆ ଭିତରର କୋଇଲି ଜାଉ ହୁଏ, ସେମିତି ତେନ୍ତୁଳି ମଞ୍ଜି ଭିତରର ଶସ । ବଣରୁ ଆଣନ୍ତି ଜାଳେଣି କାଠ, ବାଉଁଶ, କଣ୍ଟା, ଝାଟି, ଶିଆଳି ପତ୍ର, ତେନ୍ତୁଳି, ମହୁଲ, ଝୋଲ, କରଞ୍ଜ ଆଦି, ମୁଣ୍ଡେଇ ବୁଲି ବିକନ୍ତି । ସାନ ସାନ ଜନ୍ତୁଜନ୍ତା, ଚଢ଼େଇ ବି ପାଇଲେ ମାରି ଖାଆନ୍ତି । ଅତି କଷ୍ଟରେ ଜୀବଣା । ବର୍ଷା ନ ହେଲେ ବଣ ବି ଶୁଖିଯାଏ, ବଣରେ ତାଙ୍କ ଖାଦ୍ୟ ବସ୍ତୁ ବି ମିଳେ ନାହିଁ । ସେମିତି ହୋଇଥିଲା ତା ଆଗରୁ ମଚ୍ଛୁଡ଼ି ବେଳେ ।

ସଓରାଙ୍କ ମୁହଁ ଦୁଃଖରେ ଅଭାବରେ ଶୁଖିଯାଇ କଳା ପଡ଼ିଛି, ଆଦିବାସୀଙ୍କ ସ୍ୱଭାବସୁଲଭ ପ୍ରଫୁଲ୍ଲତା ସେଠି ଆଉ ଦିଶୁ ନାହିଁ । ସର୍ବୋଦୟ କର୍ମୀମାନେ ରିଲିଫ୍ କାମରେ ସାହାଯ୍ୟ କରୁଥିଲେ । ଗୋପବାବୁଙ୍କ ସହକର୍ମୀ ଈଶ୍ୱରଲାଲ୍ ବ୍ୟାସ୍ ଡିସେମ୍ବରରେ ବମ୍ବେରୁ ଆସି ସେତେବେଳେ ସେଠି ଥାଇ ଆଦିବାସୀଙ୍କୁ କେମିତି ସାହାଯ୍ୟ କରିହେବ ସେଥିପାଇଁ ଲାଗିଥିଲେ । ସହଜେ ତ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ ଅନ୍ୟ କର୍ମୀମାନେ । ଗୋପବାବୁ ଖୁବ ସହାନୁଭୂତି ସହିତ ସେମାନଙ୍କୁ ପ୍ରବୋଧ ଦେଉଥାନ୍ତି । ତାଙ୍କୁ କହୁଥାନ୍ତି ଯେ ଯେତେବେଳେ ଯାହା ଅସୁବିଧା କି ସମସ୍ୟା ହେଉଛି, ବିଶ୍ୱନାଥ ପଟ୍ଟନାୟକଙ୍କୁ କହିଲେ ସେ ଯା ଆସ କରି ବୁଝିଦେବେ ଓ ସଜାଡ଼ିବାକୁ ଚେଷ୍ଟା କରିବେ ।

ତାଙ୍କ ଗୁଣ୍ପୁର ରହଣି ଭିତରେ କେତେଜଣ ସାହୁକାର ତାଙ୍କୁ କହିଲେ ଯେ ଆଦିବାସୀମାନେ ତାଙ୍କୁ ତାଙ୍କ ଜମିବାଡ଼ିରୁ ଜବରଦସ୍ତି ତଡ଼ି ଦେବାକୁ ବସିଛନ୍ତି, ତେଣୁ ସେମାନେ ଉଦ୍‌ବେଗିତ ।

"ଆମେତ ସେଇ ଆଦିବାସୀଙ୍କ ଭିତରେ ଅଳ୍ପ, ସେମାନେ ଗଦା ଗଦା ଲୋକ, ଆମେ ଅତି ଅଳ୍ପ ଲୋକ । 'ଆମର ଜମି' 'ଆମ ବାପ ଅଜାଙ୍କ ଜମି' 'ସବୁ

ଜମିରେ ଆମର ହକ୍, (ଅଧିକାର), 'ଆମେ ଜମି କାଢ଼ି ନେବୁଁ, ତୁମେ ପଳାଅ" ବୋଲି କହି ମିଛଟାରେ ସେମାନେ ମାଡ ହଉଛନ୍ତି ମେଳ କରୁଛନ୍ତି ଯେ ଆଜ୍ଞା, ଆମେ କେମିତି କରିବୁ ? ଘରେ ନନ୍ଦ (ନଦ) ଆଉ ନାହିଁ (ହେଉ ନାହିଁ) ଆଜ୍ଞା, ଆପଣ ବୁଝିବାର ଅଛି ।'' ଶ୍ରୀ ଗୋପବନ୍ଧୁ ଚୌଧୁରୀ ସେମାନଙ୍କୁ କହିଲେ, "ମୁଁ ତ ଏଠି ନାହିଁ କି ମତେ ଏସବୁ କଥା କିଛି ଜଣା ନାହିଁ । ଏମାନେ ଦରିଦ୍ର, ସରଳ, ନିରୀହ ଆଦିବାସୀ, ଓଡ଼ିଶାରେ, ତହିଁରେ ପୁଣି ଏଠି, ଏପରି ହେବ ବୋଲି ତ ମୁଁ କିଛି ଜାଣି ନାହିଁ ।''

"ହେବ ଆଜ୍ଞା, ଆମେ ଖବର ପାଉଛୁଁ । ସେଇଟା ଆପଣମାନେ ସ୍ୱାର୍‌ପଟ୍ (ଚେଷ୍ଟା) କଲେ ନହେବ ସିନା, ଆମେ ଯେତେ ବୁଝେଇଲେ ଏମାନେ ବୁଝୁ ନାହାନ୍ତି । ହେଲେ ଆଜ୍ଞା, ଆମେ କାହାର ଭୂମିବାଡ଼୍ ଗ୍ୱେରେଇ ନେଇ ଖାଇଲୁ କି ? ବାପାମାନେ ରଖି ଯାଇଥିବା ଭୂମିଟା ପୋ (ପୁଅ)ମାନେ ଖାଇବେ ନାହିଁ କି ? ସେମିତି ତ । ବାପାମାନେ କିଣିଲେ କରି ଖାଉଥିଲେ, ତାଙ୍କ ଅନ୍ତେ ଆମେ । କୋ' (କେଉଁ) ଭୂମି ଆମେ ହେଲେ (ମଧ୍ୟ) କିଣିଚୁ, ସବୁ ଆଇନ୍-ପ୍ରମାଣେ, ଧର୍ମ ପ୍ରମାଣେ । ଯୋ'ଟା ଧର୍ମପ୍ରମାଣେ ଆମ୍ଭୁକୁ ହକ୍ (ଆମର ଅଧିକାରଭୁକ୍ତ) ନୁହେଁ, ଆମେ ସେଠିକି ଯିବୁ ନାହିଁ । ଆଇନ୍ ସମସ୍ତିଙ୍କ ପାଇଁ, ଧର୍ମ ସମସ୍ତିଙ୍କ ପାଇଁ । ଆମର ଅଧିକାରୀମାନେ ଅଛନ୍ତି, ବୁଲନ୍ତି, ତସିଲ୍‌ଦାର (ତାଲୁକ୍ ଅଫିସର), ମେସ୍‌ରେଟ୍ (ତାଲୁକସ୍ଥିତ ଷ୍ଟେସନାରୀ ସବ୍‌ମ୍ୟାଜିଷ୍ଟ୍ରେଟ୍), କଲକଟ୍ (ଏସ୍.ଡି.ଓ.), ତାଙ୍କେମାନେ (ସେମାନେ) ଏ ଅଞ୍ଚଳକଥା ଜାଣନ୍ତି, ଆମେ ଅନ୍ୟାୟ କଲୁ କି ? ହଠାତ୍‌ରେ କେତେବେଳେ ଉଠି ଆମର ଭୂମିବାଡ଼୍ ଛଡ଼େଇ ନେବେ, ଆମେ ଗାଁ ଗଣ୍ଡାରେ ପିଲକୁଟୁମ୍ ଧରି ଅଛୁଁ, ଆମର କସ୍ କସ୍ତ (କଣ କଣ ଯେ) କରିଦେବେ, ଏ ସଓରାମାନେ, ଘୁଣ୍ଡିଆ (ଗ୍ରାଢ) ଅରି ଯାଉଛି ।''

ଶ୍ରୀ ଗୋପବନ୍ଧୁ ଚୌଧୁରୀ କହିଲେ, "କହିଲି ପରା, ମତେ କିଛି ଜଣା ନାହିଁ । ବୃଥା କୋଳୁଆଉସ୍ ଲଗେଇଦେବାର କାରଣ ନାହିଁ । ମଣିଷ କଣ ବାଘ ଭାଲୁ ହେଇଚି ଯେ ଆପଣମାନେ ପରର ଅନିଷ୍ଟ ନ କଲେ, ତାହା ଉପରେ ହିଂସାକାଣ୍ଡ ନ କଲେ ସେ ଆପଣଙ୍କ ଉପରେ ହଠାତ୍ ଚଢ଼ାଉ କରିବ ?''

"ସତ ସତ ଆଜ୍ଞା ।''

"ତେବେ ଗୋଟାଏ କଥା ସମସ୍ତେ ମନେ ରଖିବା ଉଚିତ, ଦରିଦ୍ର-ନାରାୟଣଙ୍କୁ ସ୍ନେହରେ ଶ୍ରଦ୍ଧାରେ ସେବାରେ ସନ୍ତୁଷ୍ଟ କରି ରଖିବା ଉଚିତ, ନ ହେଲେ ଦରିଦ୍ର ନାରାୟଣ ରାଗିଲେ ଆଉ ରକ୍ଷା ନାହିଁ । ଦେଖୁଛନ୍ତି ତ ଆନ୍ଧ୍ରରେ ଯାହା

ହେଲ । ଆପଣମାନେ ଦରିଦ୍ରଙ୍କ ଭିତରେ ଅଛନ୍ତି, ସେ ତ ତାଙ୍କ ସେବା ପାଇଁ ଆପଣମାନଙ୍କର ପରମ ସୁଯୋଗ । ସେ କେମିତି ଖାଇପିଇ ସୁଖରେ ରହିବେ, ସେଇଟା କଣ ଆପଣମାନଙ୍କର ଦାୟିତ୍ୱ ନୁହେଁ ?''

"ଆଜ୍ଞା ତାଙ୍କର ଭୂମିବାଡ଼ି ଏବକୁ ଯାଉଛି, ଆଗରୁ ସାରି ଦେଇଛନ୍ତି, ସରକାର ତାଙ୍କୁ କୋ'ଠି କୋ'ଠି ବାଞ୍ଛାରି (ପଡ଼ିତ ଜମି) ଦେବାର ଅଛି, ଗାଁ ଗାଁକେ କୂଅ ପୋଖରୀ ଦେବାର ଅଛି, ବଣଧାରୀ ଉପରେ ବନ୍ଧ ବାନ୍ଧିଦେଲେ କେତେ କେତେ ଜମିକୁ ପାଣି ମିଳିବ, ଆଉ କେତେ କେତେ ନଇ ନାଳରେ ମୁଣ୍ଡା (ବନ୍ଧ) ବାନ୍ଧ ହେବ, ହଳ ବଳଦ କାମ ଧନ୍ଦା ସରକାର ଗୁହିଁଲେ ସବୁ କରିବେ, ଡାବୁ (ଟଙ୍କା ପଇସା) କାଢ଼ିଲେ (ଖର୍ଚ୍ଚ କଲେ) ସିନା,—''

"ସେକଥା ସରକାରଙ୍କୁ କହନ୍ତୁ । ମୁଁ କହୁଛି ଆପଣମାନେ ନିଜେ ଯାହା କରିପାରିବେ ସେଇଆ କରନ୍ତୁ । ଆପଣଙ୍କ ନିଜ ଘରେ ହୋଇଥିଲେ ଆପଣ କଣ କରନ୍ତେ ? ଧର୍ମ କଣ କହୁଛି ? ବିବେକ କଣ କହୁଛି ? ସେ ଉପାସ ପଡ଼ିଥିବ, ଆପଣ ଖାଉଥିବେ ? ନା ଖାଇବା ଭିତରୁ ଭାଗ ଦେବେ ? ଆପଣଙ୍କ ପାଖେ ଯେ ମଜୁରି ଖଟେ, ଯେ ଖମାରି ରହେ, ଯେ ଆପଣଙ୍କ ଭାଗଚାଷୀ, ଯାହାର ଜମି କିଣି କି ବନ୍ଧା ରଖି ଓ ଯାହାଙ୍କ ଶ୍ରମ ଯୋଗୁଁ ଆପଣମାନେ ଯାହାହେଉ ଭଲରେ ଚଳୁଛନ୍ତି ସେମାନେ କେମିତି ଚଳିବେ, ତାଙ୍କ ପିଲାକୁଟୁମ୍ବ କେମିତି ପୋଷିବେ ସେ ବିଷୟରେ କଣ ଆପଣମାନଙ୍କର କର୍ତ୍ତବ୍ୟ ନାହିଁ ? ଅଶାନ୍ତି ଥିଲେ ଅଶାନ୍ତି ନିଭେଇବା ଉପାୟ ବି ଆପଣମାନଙ୍କ ହାତେ ହାତେ । ସେଇଟା ସ୍ନେହ, ସହାନୁଭୂତି, ସାହାଯ୍ୟ, ଆତ୍ମତ୍ୟାଗ, ସେବା, ଅହିଂସାର ବାଟ, ସେବାଟେ ଗଲେ ଦରିଦ୍ରମାନଙ୍କର ସ୍ୱତଃ ଆପଣମାନଙ୍କ ପ୍ରତି ସ୍ନେହ, କୃତଜ୍ଞତା, ଆନୁଗତ୍ୟ, ମୈତ୍ରୀ ଭାବ ହିଁ ରହିଥିବ, ସେଠି ଜୋର୍ ଜବର୍ଦ୍ଦସ୍ତି, ହିଂସାର ପ୍ରଶ୍ନ କାହିଁ ? ବିନୋବା କଣ କହୁଛନ୍ତି କଣ କରୁଛନ୍ତି ଭାବନ୍ତୁ ଟିକିଏ, ଭାବନ୍ତୁ ସେ ବାଟ ଚଳିବ ନା ନାହିଁ ।

ଆପଣମାନେ ଏସବୁ କଥା ଯାହା କହିଲେ ସେ ବିଷୟରେ ମୁଁ ତ କିଛି ଜାଣେ ନାହିଁ, କଣ କହିବି ?''

ମାର୍ଚ୍ଚ ୮ ତାରିଖରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ରମା ଦେବୀ ଆଦି ବୃନ୍ଦ ଗ୍ରାମ ଖୁଣ୍ଟପୁରର କୁଜେନ୍ଦ୍ର ଗଲେ । ସେଠି ବିପୁଳ ଉତ୍ସାହରେ ଲୋକେ ତାଙ୍କୁ ପାଛୋଟି ନେଲେ । ସେମାନେ ଆସୁଛନ୍ତି ବୋଲି ବହୁତ ଦୂରରୁ ଦୂରରୁ ଗାଁମାନଙ୍କରୁ ଆଦିବାସୀ ଜୁଟି ଆସିଥିଲେ, ସେମାନେ ଥିଲାଯାକେ ପ୍ରତ୍ୟହ ଆସୁଥିଲେ । ସବୁ କର୍ମୀମାନେ ବି ଥିଲେ । ଶ୍ରୀ ଗୋପବନ୍ଧୁ ଚୌଧୁରୀ ସେମାନଙ୍କ ସଙ୍ଗେ କଥାଭାଷା

ହେଉଥାନ୍ତି ଓ ପ୍ରତିଦିନ ଆଖପାଖ ଗାଁ। ବୁଲି ବୁଲି ଗାଁରେ ଆଦିବାସୀଙ୍କ ସଙ୍ଗେ ଦୁଃଖସୁଖ ହୁଅନ୍ତି । ଭୂମିହୀନତା ଯୋଗୁଁ ସେମାନଙ୍କ ବିଭିନ୍ନ ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥା ତାଙ୍କ ମନରେ ଗଭୀର ଦୁଃଖ ଜନ୍ମାଉଥାଏ । ଏତ ଗୋଟାଏ ପୃଥିବୀବ୍ୟାପୀ ମୌଳିକ ସାମାଜିକ ସମସ୍ୟା, ପ୍ରଚଳିତ ସାମାଜିକ ସଂସ୍ଥାଟାକୁ ଅତୁଟ ରଖି ତାହା ଭିତରେ ଖାଲି ଆଇନ୍ ଦ୍ୱାରା ଏ ସମସ୍ୟାକୁ ସମାଧାନ କରି ହେବ ବା କେମିତି ? କଣ ହେଲା ? ୧୯୧୭ରୁ ଇଂରେଜ୍ ଶାସନ ବେଳୁ ୧୯୧୯ରୁ ଏ. ଟି. ଆଇ. ଏଲ୍. ଟି. ଆକ୍ଟ ପାଶ୍ ହେଲା, ତାର ୩୦ ବର୍ଷ ପରେ ଏ ଦେଶ ସ୍ୱାଧୀନ ବି ହେଲା, ଲୋକ-ସରକାରର ରାଜତି ଚାଲିଲା, ଓଳଟି ତାର ବର୍ଷ ନ ପୂରୁଣୁ ଏ. ଟି. ଆଇ. ଏଲ୍. ଟି. ଆକ୍ଟର କାର୍ଯ୍ୟକାରୀ ପରେସରର ସୀମା ୧୯୧୭ରୁ କମେଇ ଦିଆଗଲା ୧୯୩୭କୁ, ଭାଲଦୋଷ ଆଇନ୍ ଏଥିକି ଲାଗୁ ହେବ ବୋଲି ରେଭିନ୍ୟୁ ଡିପାର୍ଟମେଣ୍ଟରୁ ଗୋଟାଏ ସରକାରୀ ନିର୍ଦ୍ଦେଶ ଦେଇ, ତା ବି ଅପ୍ରେଲ୍ ୧୯୩୭ରେ ଜାରି ହୋଇଥିବା ଓଡ଼ିଶା ପ୍ରଦେଶର ରାଜସ୍ୱ ବିଜ୍ଞପ୍ତି ଦ୍ୱାରା ।

ତା' ନ ହୋଇଥିଲେ ବି କଣ ହୋଇଯାଉଥିଲା ? ସେ ଆଇନ୍‌ଟା କିପରି କାର୍ଯ୍ୟକାରୀ ହେଉଥିଲା ? ଏବେବି ଯଦି ଶତକଡ଼ା ନବେ ହେଲେ ଭୂମିହୀନ ଓ ଶତକଡ଼ା ନବେ ପଞ୍ଚାନବେ ଭାଗ ଜମି ସାହୁକାର ଭୂମିମାଲିକଙ୍କ ହାତରେ ସେ ଆଇନ୍‌କୁ କାମରେ ଲଗାଇ ଗରିବ ଆଦିବାସୀଙ୍କର କିଏ କେତେ ଜମି ସାହୁକାରଙ୍କଠୁଁ ଛଡ଼େଇଆଣି ଭୂମିହୀନ ଆଦିବାସୀଙ୍କୁ ଦେଇ ପକାଉଥିଲା ? ସେହିପରି ଭାଗଚାଷ ଆଇନ୍,—୧-୯-୪୭ରେ ଯେଉଁ ଭାଗଚାଷୀ ଯେଉଁ ଜମି ଚାଷ କରୁଥିଲା କେହି ତାକୁ ସେଠୁ ତଡ଼ି ପାରିବେ ନାହିଁ, ସେ ଭୂମି ମାଲିକର ଭାଗଚାଷୀ ହୋଇ ଚାଷ କରିବ, କିନ୍ତୁ ଭୂମି ମାଲିକ ସେଥିରୁ ତାକୁ ତଡ଼ି ପାରିବ ନାହିଁ ।

କିନ୍ତୁ ନାନା ଉପାୟରେ ଭାଗଚାଷୀଙ୍କୁ ଜମିରୁ ତଡ଼ା ଚାଲିଛି, କଟକ ପୁରୀ ଭଳି ସ୍ଥାନରେ ଯେଉଁଠି ଚାଷୀ ଅଶିକ୍ଷିତ କି ପଛୁଆ ନୁହନ୍ତି ସେଠିତ ତା, ଆଉ ଏ ତ ଅନୁନ୍ନତ ଆଦିବାସୀ !

ମଣିଷର ହୃଦୟଟି ଯଦି ନ ଡାକିବ, ନିଜ ମନ, ତା ସ୍ୱଭାବ ଯଦି ନ ବଦଳିବ, ଆଇନ୍ ପାଶ୍ କରି ସେ ଆଇନ୍ ଅନୁସାରେ ତାକୁ କାମ କରେଇବ କିଏ ? ବା କେତେ କାଳ ?

ସୁନ୍ଦରପୁର ଭଳି ଏଠି ବି ଆଦିବାସୀମାନେ ତାଙ୍କୁ ଦୁଃଖ ଜଣାଇଲେ । ସେହି ଭୂମି ସମସ୍ୟା, ଅଭାବ ସମସ୍ୟା, ପ୍ରକାର ପ୍ରକାର ଶୋଷଣ ଅତ୍ୟାଚାର ସମସ୍ୟା, ସେମାନଙ୍କ ପ୍ରତି ଅନ୍ୟ ଲୋକଙ୍କ ଅବହେଳା ଓ ଅନାସ୍ଥା ସମସ୍ୟା, ସରକାରୀ ଲୋକେ ତ

ଟପାକାଉଆ (ଡାକ ହରକରା) ପରି ବାଟେ ବାଟେ ଧାଉଁବା ଲୋକ, ତାଙ୍କର କିଏ ଯାଉଛି ପାହାଡ଼ ଚଢ଼ି ପାଦରେ ଚାଲି ଚାଲି ମାଟିକାଦୁଅ ହୋଇ ଆଦିବାସୀ ଗାଁକୁ ଯାଇ ତାଙ୍କ ସମସ୍ୟା ବୁଝିବାକୁ ? ଚାଷ ଜମି ନାହିଁ, ସାହୁକାରମାନେ ନେଇଥିବା ଜମି ଫେରିପାଉ ନାହାନ୍ତି, ଭାଗଚାଷୀକୁ ଛଡ଼ୋଉଛନ୍ତି, ଭାଗରେ ଚଷିଲେ 'ଘୁଷୁ' ଆଦି କରି, ଭାଗ ଅଂଶରେ ଠକି, ପ୍ରାପ୍ୟ ଭାଗରୁ ବହୁତ ଊଣା ଦେଉଛନ୍ତି । କୁଲି ରେଟ୍ ତ ଜଣକର ଓଳିକର ଖାଦ୍ୟକୁ ନିଅଣ୍ଟ, କୁଲି ବି ୪।୫ ମାସ ପରେ ବଳକାମର ଲୋଡ଼ା ପଡ଼ିଗଲେ ଆଉ ଲଗାନ୍ତି ନାହିଁ, ତାଙ୍କ ଠିପ ଜମି ଚଷାନ୍ତି ତାଙ୍କ ବନ୍ଧା ଝିମ୍ପାଙ୍କ ଦ୍ୱାରା । ସରକାରୀ କାମ କଣ୍ଟ୍ରାକ୍ଟର କରନ୍ତି, ତାଙ୍କର କୁଲି କଳାହାଣ୍ଡିଆ ଲୋକ, ଏଠିକା ଆଦିବାସୀଙ୍କୁ ଲଗାନ୍ତି ନାହିଁ । ଖମାରୀ ଦରମା ଅତି ଅଳ୍ପ, କେତେ ଲୋକ ବା ସେ କାମ ପାଆନ୍ତି ? କାହିଁ ଶହେରେ ଆଠ ଦଶ ଜଣ । ଅନ୍ୟ କାମ ଧନ୍ଦା ମିଳେ ନାହିଁ । ଭୋକ ଉପାସ ବେଳକୁ ଟଙ୍କା ଋଣ ମିଳେ ନାହିଁ । ଯଦି କାହାକୁ ମିଳେ, କେଉଁ ସାହୁକାର ଦିଏ, ସେ ଏପରି ସୁଧ ନିଏ, ଏପରି ଠକେ, ପଛେ ଏତେ ଶସ୍ତାରେ ତାଙ୍କ ଜିନିଷ କିଣିବ ବୋଲି ସର୍ତ୍ତ କରେ ଯେ ଟଙ୍କାଏ ଋଣ ଦେଲେ ଦଶ ଟଙ୍କାର ଜିନିଷ ଦେଇ ବି ଋଣ ସୁଝେ ନାହିଁ । ମାପରେ, ଓଜନରେ, ଦାମରେ ସବୁଥିରେ ଠକୁଥାନ୍ତି । ଗାଁରେ ପିଇବା ପାଣି ଘୋର ଅଭାବ । ହଳ ପାଇଁ ବଳଦ ତ ନ ଥାଏ, କିଣିବାକୁ ଋଣ ମିଳେ ନାହିଁ ।

ରାୟଗଡ଼ା ପଟୁ ବି ଆଦିବାସୀ ଆସିଥାନ୍ତି, ବିଶେଷତଃ ଯେଉଁଠି ବେଶି ମରୁଡ଼ି ଓ ଖାଦ୍ୟାଭାବ ପଡ଼ିଥିଲା ସେଇଠୁ । ବମ୍ବେରୁ ଆସି ଶ୍ରୀ ଈଶ୍ୱରଲାଲ୍ ବ୍ୟାସ ସେସବୁ ଅଞ୍ଚଳ ବୁଲି ଅବସ୍ଥା ଦେଖି କାର୍ଯ୍ୟରେ ଲାଗିଥାନ୍ତି, ସେହିପରି ଅନ୍ୟାନ୍ୟ କର୍ମୀମାନେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ରତନ ଦାସ, ଶ୍ରୀ ନିମାଇଁ ଚରଣ ସାହୁ, ନାରୀକର୍ମୀ-ମାନେ ଓ ଅନ୍ୟାନ୍ୟ କର୍ମୀମାନେ । ଆଦିବାସୀମାନଙ୍କ ସହିତ ଓ ସେମାନଙ୍କ ସହିତ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଆଲୋଚନା କରୁଥାନ୍ତି ।

ମରୁଡ଼ି ଓ ଖାଦ୍ୟାଭାବରେ ସବୁଠୁ ବେଶି କ୍ଷତିଗ୍ରସ୍ତ ଓ ଅନାହାରକ୍ଲିଷ୍ଟ ହୋଇଥିଲେ—

(୧) କୁଣ୍ଡୁପୁରଠୁ ବିଷମକଟକ ଯାଇଥିବା ସଡ଼କରେ କୁଜେନ୍ଦ୍ରିଠୁ ୪ ମାଇଲ ଦୂରକୁ ଗଲେ ତା'ପରେ ସଡ଼କର ଦୁଇପାଖେ ଥିବା ଆଦିବାସୀ ଗାଁ । ଗୁଡ଼ିକ : ଚାମିଣି, ମୀନାଗୁଳି, ଜାମୁଗୁଡ଼ା, ପୁଟ୍ରୁଗୁଡ଼ା । ଡୁମୁରିଗୁଡ଼ା ଲୋକେ ମହୁଲ, ଶଳପଗଛ ଧୂଳି, ତେନ୍ତୁଳି ମଞ୍ଜି ଖାଇ ବଞ୍ଚୁଥାନ୍ତି ।

(୨) କୁଣ୍ଡୁପୁର ତାଲୁକ୍‌ର 'ଡାଙ୍ଗୁ ସଠା', ଏଠି ପୁଣି ସବୁଠୁ ବେଶି ବୁଡ଼ିଙ୍ଗି ଓ ଗରଣ୍ଡା ଗାଁ ଯୋଡ଼ିକ ।

(୩) ରାୟଗଡ଼ାରେ ‘କଷ୍ଟା ମୁଠା’ ଇଲାକା,

(୪) ଗୁଣୁପୁରରେ ‘ଜାଡଲ ମୁଠା’ ଇଲାକା

(୫) ରାୟଗଡ଼ା ତାଲୁକ୍‌ରେ ମାଳଭୂମି ‘କୈଲାସ୍‌କୋଟା ମୁଠା’, ଯେଉଁଠିକାର ଅଭ୍ୟନ୍ତରରେ ବୋଣ୍ଡାପାଇ ଓ ତା ଆଖପାଖର ଲୋକେ ସବୁଠୁ ବେଶି ଅନାହାରକ୍ଲିଷ୍ଟ ହୋଇଥାନ୍ତି ।

ରାୟଗଡ଼ା ତାଲୁକରେ ମୁଣ୍ଡିଗୁଲ, ଜାମ୍ବୁଗୁଡ଼ା, ପୁଟ୍ଟାଗୁଡ଼ା ଓ ଗୁଣୁପୁର ତାଲୁକ୍‌ରେ ତୁମ୍ବିଗୁଡ଼ା, ଗୌଡ଼୍‌ଗୁଡ଼ା, ତାମିଣି ସବୁଠୁ ବେଶି ଅନାହାରକ୍ଲିଷ୍ଟ ।

ଶ୍ରୀ ଈଶ୍ୱରଲାଲ ବ୍ୟାସ୍, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ରତନ ଦାସ ଆଦି ଗୋପବାବୁଙ୍କୁ କହିଲେ ଯେ ଅନାହାର-କ୍ଲିଷ୍ଟ ଲୋକଙ୍କ ପାଇଁ ସରକାର କେତୋଟି ଭୋଜନ କେନ୍ଦ୍ର ଖୋଲିଛନ୍ତି, କିନ୍ତୁ ତଥାପି ଶହେରୁ ବେଶି ଲୋକ ମରିଥିଲେ । ଶ୍ରୀ ଗୋପବନ୍ଧୁ ଚୌଧୁରୀ ସେମାନଙ୍କୁ କହିଥିଲେ ଯେ ସେଠି ରିଲିଫ୍ କାମ ଖୋଲା ହେବା ଦରକାର, ତାହେଲେ ସେମାନେ କାମ ପାଆନ୍ତେ, ମଜୁରି ପାଆନ୍ତେ; ସୁଲଭ ମୂଲ୍ୟରେ ତାଙ୍କର ଆବଶ୍ୟକ ଦ୍ରବ୍ୟ କିଣିବା ପାଇଁ ଗାଁରେ କି ଗାଁ ପାଖରେ ଦୋକାନ ଖୋଲିବା ଦରକାର ଓ ସେଠି ସେମାନଙ୍କୁ ବିକିବାକୁ ବା ବିହନ ରୂପରେ କରଜ ଦେବାକୁ ଧାନ ଚାଉଳ ମାଣ୍ଡିଆ ଆଦି ଖାଦ୍ୟଶସ୍ୟ ଠୁଳ ହୋଇ ରହିବା ଦରକାର । ଚାଷ ପାଇଁ କେଉଁଠି କେତେ ପଡ଼ିଆ ଜମି ମିଳିପାରିବ, ଅଣସଂରକ୍ଷିତ ବଣରେ ଉପଯୁକ୍ତ ସ୍ଥାନ ଥିବ ଯାହାକୁ ଚାଷ ଜମି କରାଯାଇପାରିବ, ପିଇବାପାଣି ପାଇଁ ଚୁଆ, କୂଅ, ପୋଖରୀ କେଉଁଠି କେଉଁଠି ଦରକାର, କି ପ୍ରକାରେ କେଉଁଠି ଜଳସେଚନ ବ୍ୟବସ୍ଥା କରାଯାଇପାରିବ ଏ ବିଷୟରେ ବି ଶୀଘ୍ର ଧ୍ୟାନ ଦେଇ କାର୍ଯ୍ୟ ଆରମ୍ଭ କରିବାକୁ ସ୍ଥାନୀୟ କର୍ମଚାରୀଙ୍କୁ ଜଣାଇବା ଦରକାର । ଯାଗରାଷ ଜମି ବିଷୟରେ ଟଣାଓଟରା ଲାଗିଲେ କର୍ମୀ ସେଠିକି ସଙ୍ଗେ ସଙ୍ଗେ ଯାଇ ଘଟଣା ବୁଝି ସମାଧାନ କରାଇବା ଦରକାର ।

ମାର୍ଚ୍ଚ ୮, ୯, ୧୦ ତାରିଖ ଗଲା, ୧୧ ତାରିଖର ଦିନଯାକ ଗଲା ହେଲା ସନ୍ଧ୍ୟା, ତାଙ୍କୁ କେହି କହି ନ ଥାନ୍ତି ଯେ ତା ପୂର୍ବ ଜାନୁଆରୀ ମାସ ଶେଷ ଆଡ଼କୁ ଯେତେବେଳେ କୁନ୍ଦେନ୍ଦ୍ରିରେ କର୍ମୀମାନଙ୍କ ସମ୍ମିଳନୀ ବସିଥିଲା, ଆଦିବାସୀ ମୁଖିଆ-ମାନେ ବି ଥିଲେ, ସେତେବେଳେ ଆଦିବାସୀମାନଙ୍କର ନାନା ସମସ୍ୟା, ଦୁଃଖ କଷ୍ଟ କଥା ପଡ଼ି ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ପରାମର୍ଶ ଅନୁସାରେ ନିଷ୍ପତ୍ତି ନିଆଗଲା ଯେ ଆଦିବାସୀଙ୍କ ‘ଅପହୃତ ଜମି’ ସାହୁକାର ଭୂମିମାଲିକମାନଙ୍କଠାରୁ ପୁନରୁଦ୍ଧାର କରିବା ପାଇଁ ‘ଭୂ-ସତ୍ୟାଗ୍ରହ ଆନ୍ଦୋଳନ’ କରାହେବ । ସେମାନଙ୍କୁ ନୋଟିସ୍ ଦେଇ

ତାଙ୍କଠି ଥିବା 'ଅପହୃତ ଜମି'କୁ ଜବର୍ଦ୍ଦସ୍ତି ଦୃଖଲ କରାଯିବ, ସେଥିପାଇଁ ଆଦିବାସୀ-ମାନେ ସଂଗଠିତ ହେବେ । ଏଥିପାଇଁ ଗୋଟିଏ 'ଭୂ-ସତ୍ୟାଗ୍ରହ ସମାଜ' କରାଯାଇଛି । ତାର ପ୍ରଧାନ ନେତା ଶ୍ରୀ ବିଶ୍ୱନାଥ ପଟ୍ଟନାୟକ । ତାଙ୍କ ପ୍ରଧାନ ସହକର୍ମୀମାନଙ୍କ ଭିତରେ ଥିଲେ ଶଙ୍ଖଲପଦରରେ ଗ୍ରାମସେବା କେନ୍ଦ୍ର କରିଥିବା ଶ୍ରୀ ରତନ ଦାସ, କୁଜେନ୍ଦ୍ରି କେନ୍ଦ୍ରର ଶ୍ରୀ ନିମାଇ ଚରଣ ସାହୁ, ଶ୍ରୀ ବାସ୍ନା ସୁବୁଦ୍ଧି, ସଓରମାନେ, —କୁଜେନ୍ଦ୍ରି ଗାଁର ଶ୍ରୀ ବୈରୁ ଗମାଂ, ଶ୍ରୀ ଗୋବର୍ଦ୍ଧନ ଗମାଂ, ଶ୍ରୀ ଗୋଇନ୍ଦୁ ଗମାଂ, ଗୋଡ଼ିଅବନ୍ଧର ଆଗା ସଓରା, ଡବର ସିଂର ଶ୍ରୀ ନୀଳକଣ୍ଠ ଗମାଂ, ଖମାପଦରର ଶ୍ରୀ ପୂର୍ଣ୍ଣଚନ୍ଦ୍ର ଗମାଂ, ଗୁଡ଼ାଣପାଖ ମିଟ୍‌ଖିଲିଂଗାଇର ଶ୍ରୀ ମଧୁସୂଦନ ଶବର, ଶ୍ରୀ ସାନିଆଁ ଶବର, ଶ୍ରୀ ସାରଂ ସଓରା କନ୍ଧମାନେ, —ବୃଢ଼ୁବେଲର କୋଟିଆକନ୍ଧ ଶ୍ରୀ ଗୋଗେରାଙ୍ଗା ଇନ୍ଦମାଝି, ମୁଣ୍ଡିଲର କୋଣ୍ଡାଦୋରା ଶ୍ରୀ ବୃଡ଼ମୁରୁ କାଳିଆଦୋରା, ଡ଼ମ୍ବିଗୁଡ଼ାର କନ୍ଧ, —ଶ୍ରୀ ଶିବ କନ୍ଧ ଓ ଶ୍ରୀ ଅର୍ଜୁନ କନ୍ଧ ଆଦି । ଆବଶ୍ୟକ ଅନୁସାରେ ସଭା, ବୈଠକ କରି ପ୍ରସ୍ତାବ ପାଶ୍ କରି 'ଭୂସତ୍ୟାଗ୍ରହ ସମାଜ' ସେ ଆନ୍ଦୋଳନ ପରିଚାଳନା କରିବେ ।

ଏପରି କରାଯିବ ବୋଲି ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ପରାମର୍ଶ ବୁଝା ନିଆ ହୋଇ ନ ଥାଏ । ତାଙ୍କୁ ଆଗରୁ ନ ଜଣାଇ ଏ ନିଷ୍ପତ୍ତି ନିଆଯାଇ ନ ଥାଏ । ଶୁଣିଲେ କାଳେ ସେ ରାଗିବେ ସେଥିପାଇଁ ସେ ଆସିଲାପରେ ତାଙ୍କୁ କିଛି କୁହାହୋଇ ନ ଥାଏ କି କୁହା ହେଉ ନ ଥାଏ, ଆଉ ସବୁକଥା ପଡ଼ୁଥାଏ, ଏ କଥା ନୁହେଁ, ଏ ବିଷୟରେ ସମସ୍ତେ ଚୁପ୍ ।

କିନ୍ତୁ ୧୧ ତାରିଖ ସନ୍ଧ୍ୟାରେ ସମସ୍ତେ ବସିଛନ୍ତି, କଥାଭାଷା ଚାଲିଛି, ସେତିକବେଳେ କଥାବାର୍ତ୍ତା ଭିତରେ ହଠାତ୍ ଏ ନିଷ୍ପତ୍ତି କଥା ପଦାକୁ ଫୁଟିଲା, ସେ ଜାଣିଲେ । ସମସ୍ତେ ତାଙ୍କ ମତାମତ ଶୁଣିବାକୁ ତାଙ୍କ ମୁହଁକୁ ଅନାଇଁ ରହିଲେ ।

ସେ କହିଲେ, "ଅପହୃତ ଜମି ପାଇଁ ଆନ୍ଦୋଳନ କରିବା କର୍ତ୍ତବ୍ୟ । କିନ୍ତୁ ତାହା କେଉଁ ମାର୍ଗରେ କରିବ ସେ ବିଷୟରେ ମତେ ଆଗରୁ କିଛି ପଚାର ନାହଁ, ଏବେ ଡେରିରେ ଶୁଣୁଛି, ଜଣାଇ ନାହିଁ । ସେଥିପାଇଁ ଆଶ୍ଚର୍ଯ୍ୟ ଲାଗୁଛି । ଯାହାହେଉ, ତୁମର ତୁମେ ବସି ବିଚାର କରି ବିଶ୍ୱନାଥ ପଟ୍ଟନାୟକଙ୍କ ପରାମର୍ଶରେ କଣ ନିଷ୍ପତ୍ତି ନେଇ ସାରିଛ, ମୋ ପରାମର୍ଶର ଆଉ କଣ ଦରକାର ? ସଭା ସମିତି ବା ଆଉ କଣ ହେବ ? ଭାବିଥିଲି ଏ ଅଞ୍ଚଳରେ ବହୁତ ଆଡ଼େ ଯିବି । ଥାଉ । ସେ ରହୁକ୍ରମ ବଦଳିଲା, କାଲି ସକାଳୁ ଆମେ ଏଠୁ ଯିବୁ, କଳାହାଣ୍ଡି ବାଟ ଧରିବ ।"

ସେ ବିଷୟରେ ସେ ଅବିକଳ ଯେତେବେଳେ କଣ କଣ କହିଥିଲେ ତାହା କେଉଁଠି ଛପା ହୋଇଥିବାର ମୁଁ ଦେଖି ନାହିଁ । ତାଙ୍କ ଡାଇରି ଖାତାଗୁଡ଼ିକ

ଭିତରେ ଯାହା ଯେବେ ଲେଖା ହୋଇଛି ପଢ଼ିଲାବେଳେ ଦେଖିଲି ଯେ ତାଙ୍କଠି ୧୯୫୦ରେ କହ୍ନା "ଜେମ୍ ଡାଇରି" ଖାତାଟିଏ ଥିଲା, ସେଇଟି ଟିପାଖାତା ପରି ବ୍ୟବହୃତ ହେଉଥିଲା, ତହିଁରେ ଠାଏ ମେ ତାରିଖ ନ ଦେଇ ଯାହା ଟିପିଛନ୍ତି ତାହା ଏହି ପଦଯାତ୍ରାବେଳେ କୁଳେନ୍ଦ୍ରୁ ଯିବାବେଳର ତାଙ୍କର ଭାଷଣ ହୋଇଥିବା ଖୁବ୍ ସମ୍ଭବ । ଅନ୍ତତଃ ଏକଥା ନିଶ୍ଚିତ ଯେ ତହିଁରେ ଯାହା ଲେଖାଅଛି ତାହା ହିଁ ସେତେବେଳେ ତାଙ୍କ ମତାମତ :

"ତମେମାନେ ସମସ୍ତେ (ଗୁଣୁପୁରର ସଓରମାନେ ଓ ଅନ୍ୟାନ୍ୟ ଆଦିବାସୀ-ମାନେ) ବି: ପ: (ବିଶ୍ୱନାଥ ପଟ୍ଟନାୟକ) କଥାରେ ଏଠିକି ଆସିଛ ।

ତାଙ୍କରି ସଙ୍ଗେ ପରାମର୍ଶ କରି ସବୁ କରିବ । ତମ୍ଭୁକୁ ଯାହା ଖରାପ ଲାଗିବ ତୁମେ ତାଙ୍କୁ ଜଣାଇବ । ମୁଁ ତ ଅନ୍ୟ ସମସ୍ୟା ଦେଖିବି ବୋଲି ଆସିଛି, —ତାର ପ୍ରତିକାର ଜଣାଥିଲେ ତ' ସେଠୁ ମୁଁ କହି ପଠାଇଥାନ୍ତି, ମାତ୍ର ମତେ ତାହା ଜଣା ନାହିଁ ।

ମୁଁ ଏଠି ଆସି ଶୁଣିଲି, ତେମେମାନେ ବସି ଗୋଟାଏ ବାଟ କାଢ଼ିଛ । ସେକଥା ମତେ ଜଣେଇଥିଲେ ମୁଁ ତରବରରେ ଆସି ନ ଥାନ୍ତି । ଏବେ ମୁଁ ସେଇଥିପାଇଁ ତମ ସେ ପାଖରେ ବୁଲିବା ବନ୍ଦ କଲି । ତେମେ ଗୋଟାଏ କଥା ବିଚାରୁଛ, ମୁଁ ଆଉ ଗୋଟାଏ କଥା ଲୋକଙ୍କୁ କହୁଥିବି ଠିକ୍ ହେବ ନାହିଁ ।

ତେମେ ଯାହା ନିଜ ଭିତରେ ବସି ବିଶ୍ୱନାଥକୁ ବୁଝି କରିବ ତାହା କର ।

ମୁଁ ଜାଣେ ବିଶ୍ୱନାଥ ପରାମର୍ଶରେ ତୁମେ ଅନେକ ଗାନ୍ଧୀ କାମ କରିଛ, କରୁଛ, ନିଶା ଛାଡ଼ିଛ ଓ ଛାଡ଼ୁଛ, ତେମେ ସୂତାକାଟି ଲୁଗା ପିନ୍ଧୁଛ, ତେମେ ପରିଷ୍କାର ପରିଚ୍ଛନ୍ନ ରହୁଛ, ତେମେ ସତକୁ ମାନୁଛ, ମିଛକୁ ଛାଡ଼ୁଛ, ତେମେ କଳିକଜିଆ ଆପୋସିରେ ତୁଟୋଉଛ, ଅହିଂସା ଶକ୍ତିର ବାଟରେ ନିଜେ କପଡ଼ା ମଣ୍ଡୁଛ, ଟାଣ ହେବ ତାହା କରୁଛ ।

ମୋର ବିଶ୍ୱାସ ତେମେ ଯାହା କରିବ ଗାନ୍ଧୀର ନୀତିରେ ତଳିଲି କରିବ । ଆମେ ଲୋକଙ୍କୁ ତ୍ରବତ୍ତୈଇ ନିଜେ କଷ୍ଟ ସହି ତାଙ୍କୁ ବଦଳେଇବା ।

ଆମେ ସେହିପରି ସତ୍ୟାଗ୍ରହ କରି ଇଂରାଜଙ୍କୁ ଏଠାରୁ ବିଦାୟ କଲୁଁ । ସେ ନିଜ ଇଚ୍ଛାରେ ଚାଲିଗଲେ । ରାଜାମାନେ ମଧ୍ୟ ହଠାତ୍ ନିଜେ ରାଜ୍ୟ ଛାଡ଼ି ଚାଲିଗଲେ । ନିଜ ଇଚ୍ଛାରେ ସେମାନେ ଗଲେ ବୋଲି ତାଙ୍କ ସଙ୍ଗେ ଭଲ ଭାବ ଅଛି । ସେମିତି ଜଣାପଡ଼ୁଛି ଜମିଦାରମାନେ ନିଜ ଇଚ୍ଛାରେ ଜମି ଛାଡ଼ିଦେବେ । ପାଠୁଆ

ଲୋକେ ନିଜର ଅହଂକାର ବା ସ୍ୱାର୍ଥ ଚିନ୍ତା ଛାଡ଼ିଦେବେ । ତେବେ ସେଥିପାଇଁ ସେମାନଙ୍କ ସଙ୍ଗେ ସତ୍ୟାଗ୍ରହ ଦରକାର ପଡ଼ିବ । ତାଙ୍କ ସଙ୍ଗେ ଅସହଯୋଗ କରିବାକୁ ଦରକାର ପଡ଼ିପାରେ । ତାଙ୍କ ଅନ୍ୟାୟରେ ଆମେ ସାଥି ରହିବାକୁ ହେବ ନାହିଁ । ସେହି ସମ୍ବନ୍ଧରେ ତେମେସବୁ କଣ ବିଚାରୁଥିବ ମୁଁ ଜାଣେ ନାହିଁ ।

ଏଭଳି ସତ୍ୟାଗ୍ରହ କରିବାକୁ ଗଲେ ଆଗରୁ ସଂଗଠନ ଦରକାର । ଆଗରୁ ରଚନାତ୍ମକ କାମ ଦରକାର ।

(୧) ଏସବୁ କାମ ପାଇଁ ମେଳ ଓ ସାହସ ଦରକାର । କର୍ମୀମାନଙ୍କର ତ୍ୟାଗ ଦେଖିଲେ ଲୋକଙ୍କ ସାହସ ହେବ । କର୍ମୀମାନଙ୍କୁ ମାଡ଼ ହେବ ନାହିଁ, ସେ ଜେଲ୍ ଯିବେ ନାହିଁ, ତାଙ୍କୁ ଆଞ୍ଚ ଲାଗିବ ନାହିଁ, ତେବେ ଲୋକେ ଏ ସବୁକୁ ଡରିବେ, ତାଙ୍କ ବିଶ୍ୱାସ ତୁଟିଯିବ । ଆଗ କର୍ମୀମାନଙ୍କର କଷ୍ଟ ସହିବା ଦେଖିଲେ ଲୋକେ ସେବାଟେ ଯିବେ । ତେଣୁ ପ୍ରଥମେ ଲୋକଙ୍କୁ କଷ୍ଟ ମୁହଁକୁ, ଜେଲ୍, ମାଡ଼, ମକଦ୍ଦମା ମୁହଁକୁ ଯିବାକୁ କହିବା ଆଗରୁ ନିଜେ (କର୍ମୀ) କିଛି କରିବା ଦରକାର । ଏହି ମତରେ ଗାନ୍ଧୀ ବ୍ୟକ୍ତିଗତ ସତ୍ୟାଗ୍ରହ କଥା କହିଥିଲେ ।

(୨) କର୍ମୀମାନେ ଏହିପରି ଆଗ ନିଜର ଶକ୍ତି ଦେଖାଇଲା ବେଳେ ଲୋକଙ୍କୁ କିଛି ସଂଗଠନ କାମ କରିବାକୁ କହିବା ଦରକାର । ତାହାଦ୍ୱାରା ଲୋକଙ୍କର ଯଥାର୍ଥ ତାଲିମ୍ ହୁଏ ଓ ପରୀକ୍ଷା ମଧ୍ୟ ହୁଏ ସେମାନେ ପ୍ରକୃତରେ କେତେଦୂର ଲଢ଼ିବାକୁ ପ୍ରସ୍ତୁତ ।

ନିଶାଖିଆ ଏହିପରି ଏକ କାମ ହେବ । ଗାନ୍ଧୀତ ସୂତାକଟା ଓ ମିଲ୍ ଲୁଗା ଛାଡ଼ିବାକୁ ସର୍ତ୍ତ କରୁଥିଲ ।

(୩) ଆତ୍ମଶୁଦ୍ଧି କାମ

(କ) କେହି ହାଟରେ ବାଟରେ ଠକେଇ ହେବେ ନାହିଁ, ଠିକ୍ ଦାମ୍ ଓ ମୂଲ୍ୟ ଦେବେ ।

(ଖ) କେହି ମିଛରେ ଟିପଚିହ୍ନ ନ ନିଏ

(ଗ) ଜମି ବନ୍ଧା ନ ଦିଏ, —ଜମି ତ ମିଳୁଛି, ପୁଣି ବନ୍ଧା ଦେଇ ହରେଉଛନ୍ତି ।”

ସେହି ଡାଇରୀରେ ଅନ୍ୟତ୍ର ସେ ଲେଖିଛନ୍ତି :—

“ରାୟଗଡ଼ାର ଆଦିବାସୀ ଲୋକେ ଜମି ପାଇଁ ଏକ ଆନ୍ଦୋଳନ କରୁଥିବା କଥା ମୁଁ ଦେଖି ଆସିଲି ଏବଂ ସେ ସମ୍ପର୍କରେ ଏକ ବିବୃତ୍ତି ମଧ୍ୟ କର୍ମୀମାନଙ୍କ ପ୍ରତି

ପ୍ରକାଶ କରିଥିଲେ । ସେଠି ଭାଗଚାଷୀ ଆନ୍ଦୋଳନ ଯାହା ଅନ୍ୟ ଅଞ୍ଚଳ ଭଳି ଆରମ୍ଭ ହୋଇଥିଲା । ମାତ୍ର ଏବେ ଶୁଣୁଛୁ ସେଠି ସେମାନେ ଯେଉଁସବୁ ଜମି ହରେଇ ବସିଛନ୍ତି ତାହାର ପାଇଁ ଏକ ଆନ୍ଦୋଳନ ଚଳାଇ ତାର ଚରମ ପରିଣତି ଏକ ଜମିଦଖଲ କରିବା ଆନ୍ଦୋଳନ ଚଳେଇବା ବିଚାରୁଛନ୍ତି । ମତେ ଅନେକେ ପଚାରୁଛନ୍ତି ଏ କେତେଦୂର ଠିକ୍ ?

ମୁଁ ତ ସେଇଠି କହି ଆସିଥିଲି, ବିବୃତ୍ତି ମଧ୍ୟ ଦେଇଥିଲି, ଯେ ମୁଁ ଯାହା ଠିକ୍ କି ବେଠିକ୍ ବୁଝେ ସେ କଥାକୁ ନ ଅନେଇଁ ଯାହା ସେମାନଙ୍କ ହୃଦବୋଧ ହେଉଛି ତାହା କରନ୍ତୁ । ମୁଁ ସିନା ମୋର ପରାମର୍ଶ ଦେଇଛି ଯେ ଅହିଂସା ବାଟ ଧରିବା ହିଁ ଠିକ୍, କିନ୍ତୁ ସେମାନେ କାହାକୁ ଅହିଂସା କହିବେ କାହାକୁ ବା ସତ୍ୟାଗ୍ରହ କହିବେ ସେମାନେ ବୁଝିବେ । ସେମାନେ ଆମର ନେତୃତ୍ୱକୁ ଅନେଇ ବସିବେ କାହିଁକି ? ଆମେ ତାଙ୍କ ପାଇଁ କଣ ବା କରୁଛୁ, ମୁଁ ବି ତାଙ୍କ ଉପରେ ମୋର ବ୍ୟକ୍ତିଗତ ମତାମତ ଲଦିବାକୁ ଚାହେଁ ନାହିଁ । ଠିକ୍ ଭୁଲ୍ କଲେ ଠେକ ଶିଖିବା ମଧ୍ୟ ଦରକାର । କିନ୍ତୁ ଅଭିଜ୍ଞତା ବା ଉତ୍ସାହଜନକ ଅଭିଜ୍ଞତା ଉଭୟର ସ୍ଥାନ ଅଛି । ତେବେ ଅନ୍ୟ ବନ୍ଧୁମାନଙ୍କୁ ମୁଁ ଏଭଳି ଆନ୍ଦୋଳନ ସମ୍ବନ୍ଧରେ ଜଣାଇ ଦେଇଛି ।

ଅପହୃତ ଜମି ପାଇଁ ଆନ୍ଦୋଳନ କରିବା କର୍ତ୍ତବ୍ୟ ।

କେବଳ ରାୟଗଡ଼ାରେ ତ ଏହିପରି ହୋଇନାହିଁ, ଚାରିଆଡ଼େ ଅଧିକାଂଶ ଜମି ଏହିପରି ଠକେଇ କରି ଜମିମାଲିକମାନେ ନେଇଛନ୍ତି । ନିଜର ଆବଶ୍ୟକତାଠୁ ବେଶି ଜମା କରିବା ତ' ଚୋରି ବୋଲି ଆଇନ୍ ନ କହିଲେ ମଧ୍ୟ ଶାସ୍ତ୍ର କହୁଛି । ସବୁ ବଡ଼ ଜମିଦାରମାନେ ତ ଚୋରମାଲ୍ 'ଗ୍ରହୀତା' । ସମାଜରେ ଏ ଚେତନାକୁ ଉଠାଇବା ପାଇଁ ଆନ୍ଦୋଳନ ଦରକାର, ମାତ୍ର ପଚାଶ ଲୋକ ବାହାରି ଜମିଦାରଙ୍କ ଜମିରେ ପଶିଯିବା ଓ 'ଆମର ଏ ଅପହୃତ ଜମି' କହିବା କେତେଦୂର ଅହିଂସକ ଆନ୍ଦୋଳନ ସଙ୍ଗେ ଖାପ ଖାଇ ପାରିବ ମୁଁ କହିପାରୁ ନାହିଁ ।...''

ସେହି ଡାଇରୀରେ ଅନ୍ୟତ୍ର ସେ ଲେଖିଛନ୍ତି :

''କୁଜେନ୍ଦ୍ରିରେ ୩।୪ ଦିନ ବେଶ କଟିଗଲା । ଆଖପାଖ ଗ୍ରାମବାସୀଙ୍କ ସଙ୍ଗେ କଥାଭାଷା ଓ ଗ୍ରାମ ଦେଖାରେ ସମୟ କଟିଲା ।

ଗ୍ରାମବାସୀଙ୍କ ମନରେ ଅନ୍ୟାନ୍ୟ ଦୁଃଖକଷ୍ଟ ଭିତରେ 'ଜମି ଅଭାବ' ଅନେକଙ୍କ ମନକୁ ବାଧୁଛି । ବାଟ କିଛି ଦିଶୁ ନାହିଁ । କେତେକ ଜାଗାରେ ଭାଗଚାଷୀ ମକଦମା ଓ ଝଗଡ଼ାଝାଟି ଲାଗିବାର ସମ୍ବାଦ ମିଳୁଛି । ଗାଁ ଲୋକେ ଦୂର ଦୂର ଗାଁକୁ ଯାଇ ଏସବୁ ବିଷୟର ଅନୁସନ୍ଧାନ କରି ସମାଧାନର ଉଦ୍ୟମ କରୁଛନ୍ତି ।

ଗରିବ ମୂର୍ଖଲୋକଙ୍କର ବଡ଼ ଲୋକଙ୍କ ହାତକୁ ହସ୍ତାନ୍ତର ହୋଇଥିବା ଜମିକୁ ଆଇନରେ ଫେରି ପାଇଥିବା ଉଦ୍ୟମ ଅନେକଦନରୁ ଚାଲିଛି । ଏବେ ଥୋକେ ଗରମ୍-ରକ୍ତ ଲୋକେ ବିଗୁରୁଛନ୍ତି ଜବର୍ଦ୍ଦସ୍ତି ଜମିଦରୁ ଦଖଲ କରି ଚଷିଦିବା । ଏହାର ବିରୁଦ୍ଧରେ ଅନେକ ପ୍ରକାର ଲୋକଙ୍କଠାରୁ ଅନେକ ମୁକ୍ତ ଶୁଣିଲି । ମୋଟରେ ଦୁଇଟି ଆପତ୍ତି,—ଏକ,—ହିଂସାର ପରିଣାମ ଭଲ ହେବ ନାହିଁ, ଦୁଇରେ,—ଡର । କୃଜେନ୍ଦ୍ରର ପ୍ରଧାନ ଲୋକେ ମଧ୍ୟ ଏଭଳି ପ୍ରତ୍ୟକ୍ଷ ସଂଘର୍ଷଠୁ ପଛେଇଉଛନ୍ତି, କାରଣ ଗାଁର ଅନେକେ ସରକାରୀ ଚାକିରି କରୁଛନ୍ତି ଓ ସରକାରୀ ବୃତ୍ତି ପ୍ରଭୃତି ପାଉଛନ୍ତି ।

ହଠାତ୍ ଶେଷଦିନ ପୂର୍ବ ସନ୍ଧ୍ୟାରେ କଥାବାର୍ତ୍ତାରୁ ଜଣାପଡ଼ିଲା ଯେ ଏଠା କର୍ମୀମାନେ ଏଠାର ମୁଖ୍ୟ କର୍ମକର୍ତ୍ତାଙ୍କ ପରାମର୍ଶରେ ଏ ଜମି ଦଖଲ ସମ୍ବନ୍ଧରେ ଏକ କାର୍ଯ୍ୟକ୍ରମ ସ୍ଥିର କରିଛନ୍ତି । ମାତ୍ର ଏକଥା ଆଗରୁ କେହି ଜଣାଇ ନ ଥିଲେ । ଅଡ଼ୁଆ ଅଡ଼ୁଆ ଲାଗିଲା । ସେମାନେ ତ ବାଟ ଠିକ୍ କରିଛନ୍ତି ଓ ସେ ବିଷୟରେ ପଚାରି ନାହାନ୍ତି ବା ଜଣାଉ ନାହାନ୍ତି, ତେବେ ଆଉ ପରାମର୍ଶର ଲୋଡ଼ା କଣ ? ସଭା ସମିତି ବା କଣ ଦରକାର ?

ଶେଷରେ ଆମେ ଉଠିବୁ ଗାଧ୍ୟକ୍ରମ ବନ୍ଦ କଲୁଁ । ଏଠାରେ ମୁଖ୍ୟକର୍ମୀମାନଙ୍କୁ ଅଡ଼ୁଆରେ ପକେଇବା ବା କର୍ମୀମାନଙ୍କ ମନରେ ବୁଦ୍ଧିଭେଦ ସୃଷ୍ଟି କରିବା ଠିକ୍ ବିବେଚିତ ହେଲା ନାହିଁ ।

ଶୀଘ୍ର ଏଠୁ ଫେରିଯିବାର ସ୍ଥିର ହେଲା ।

ପଦଯାତ୍ରାରୁ ଫେରିଗଲାପରେ ଏ ବିଷୟରେ ସେ ଅନ୍ୟତ୍ର ଲେଖିଛନ୍ତି :

"ପୁରୀରେ ପହଞ୍ଚିବା ସଙ୍ଗେ ସଙ୍ଗେ ମୋ କାନରେ ଗୋଟାଏ କଥା ପଡ଼ିଗଲା,—ସରକାରୀ ମହଲରେ ବିଚାରୁଛନ୍ତି ଯେ ଆମେ କୋରାପୁଟଠାରେ ସତ୍ୟାଗ୍ରହ କରିବୁ ।

ମୁଁ ଭାବିଲି, ଚାନ୍ଦିଲି କର୍ମୀସମ୍ମିଳନୀରେ ଓ ବିନୋବାଙ୍କ କଥାରେ ସତ୍ୟାଗ୍ରହ ମନୋଭାବ କଥା ପ୍ରକାଶ କରିଥିବାରୁ ଏପରି ଏକ ଭୁଲ୍ କର୍ତ୍ତୃପକ୍ଷଙ୍କ ମନରେ ସ୍ଥାନ ପାଇଥାଇପାରେ କିମ୍ବା ଅଣ୍ଟାରେ ଏପରି କହିଥାଇ ପାରନ୍ତି ।

ଆଉ ଟିକିଏ ଆଗେଇଯାଇ ଗୁଣୁପୁର ପୂର୍ବରୁ ଶୁଣିଲି ଯେ ସେ ଅଞ୍ଚଳରେ ଜମିଦାର କୃମୁଟିମାନେ ଚାନ୍ଦା ଉଠାଇ ସଂଗଠିତ ହେଉଛନ୍ତି—ଜମି ଆନ୍ଦୋଳନର ବିରୋଧ କରିବା ପାଇଁ ।

ସୁନ୍ଦରପୁରଠାରେ ମଧ୍ୟ ସାହୁକାର ମହାଜନମାନଙ୍କ ଆଶଙ୍କା ସ୍ପଷ୍ଟ ପ୍ରକାଶ ପାଇଲା ଯେ ଅଣଆଦିବାସୀ ଅଣଆଦିବାସୀଙ୍କୁ କାଢ଼ି ଦେବାର କିଛି ଉଦ୍ୟମ ହେବ । ମୁଁ ତାଙ୍କୁ କହିଲି ଯେ ଏପରି କଥା ଓଡ଼ିଶାରେ ଏଠି ହେବା କଥା ମୁଁ କିଛି ଜାଣେ ନାହିଁ ।

କୁଜେନ୍ଦ୍ରିରେ ରହିଣିର ଦୁଇଦିନ ପରେ ଜାଣିଲି ଯେ ଗଁଲ୍ ଜାଲୁଆଗ୍ଲ ଶେଷକୁ ଯେ କର୍ମୀଶିବିର ହୋଇଥିଲା ସେଠାରେ କର୍ମୀମାନେ ବିଗ୍ଭର କରି ଏକ ସିଦ୍ଧାନ୍ତ କରିଛନ୍ତି ଯେ ଶୀଘ୍ର ଆଦିବାସୀମାନେ ସାହୁକାରଙ୍କୁ ନୋଟିସ୍ ଦେଇ ତାଙ୍କ-ଠାରୁ ଅପହୃତ ଜମି ଜବରଦସ୍ତି ଚ୍ଚଷ କରିବେ ବା ଚ୍ଚଷ କରିବାକୁ ସଂଗଠିତ ହେବେ । ଠିକ୍ କଣ ପ୍ରସ୍ତାବ ହୋଇଛି ବା ବିଗ୍ଭର ହୋଇଥିଲା ତାହାର ନକଲ ପାଇଲି ନାହିଁ । ମୁଁ ଏ ନିଷ୍ପତ୍ତି କଥା ଏଡେ ଡେରିରେ ଶୁଣି ବିସ୍ମିତ ହେଲି । ମୁଁ ତ ଶହ ଶହ ବୈଠକରେ କହି ଆସିଛି ଯେ ଖାଦ୍ୟାଭାବ ବା ଦୁର୍ଭିକ୍ଷର ସ୍ଥାୟୀ ପ୍ରତିକାର ପାଇଁ ସେମାନେ ମୋ ପରାମର୍ଶ ଗ୍ଭହାନ୍ତି । ମାତ୍ର ଯେତେବେଳେ ଗୋଟାଏ ସିଦ୍ଧାନ୍ତ କରି ସାରିଛନ୍ତି ମୋର ଆଉ ପରାମର୍ଶରେ ଆବଶ୍ୟକତା କଣ ? କର୍ମୀମାନଙ୍କ ବିଗ୍ଭରକୁ ମୁଁ ଯଦି ହଁ’ କରି ମାନି ନେଇଥାନ୍ତି ତେବେ ମୁଁ ସଭାସମିତି କରି ସେକଥା ଘୋଷଣା କରି ଦିଅନ୍ତି । ହୁଏତ ଅବସ୍ଥା ଦେଖି ମତେ ସେ ନିଷ୍ପତ୍ତି ବିରୁଦ୍ଧରେ ପଦେଅଧେ ସତର୍କବାଣୀ ବା ବିରୋଧବାଣୀ ଶୁଣେଇବାକୁ ହେବ ।

ତେଣୁ ମୁଁ ସାଧାରଣ ସଭାସମିତି କରିବାକୁ ମନା କଲି ଏବଂ କର୍ମୀମାନଙ୍କ ସଙ୍ଗେ ଆଲୋଚନା କରିବା ହିଁ ଠିକ୍ ହେବ ବୋଲି କହିଲି ଏବଂ ଗସ୍ତକ୍ରମ ବଦଳାଇ ଦେଲି ।”

ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କର ସେହି ୧୯୫୦ ‘କେମ୍ପ ଡାଇରୀ’ ବନ୍ଧା ବହିରେ (ସେଇଟା ଡାଇରୀ ପରି ବ୍ୟବହୃତ ହେଉ ନ ଥିଲା, ଟିପାଖାତା ପରି ବ୍ୟବହୃତ ହେଉଥିଲା ଲାଗୁଛି) ଆଉ ଗୋଟିଏ ଲେଖା ଅଛି, ଉକ୍ତ ଅଂଶ ତଳେ ଦେଲି, ସହିତୁ ଲାଗିବ ବୋଧହୁଏ ସେ ପଦଯାତ୍ରାରୁ ଫେରିଲାପରେ କାହାଠୁ ଚିଠି ପାଇଥିଲେ ଓ ତାର ଯେଉଁ ଉତ୍ତର ଲେଖି ପଠାଇଲେ, ତାକୁ ବା ତା’ର ସାରାଂଶ ତହିଁରେ ଟିପିଥିଲେ :

“ତମ ଚିଠି ପାଇଲି । ମୁଁ ତମ୍ଭୁକୁ ଆଶୀର୍ବାଦ କରିବାକୁ କିଏ ? ଭଗବାନ ତମ ସପକ୍ଷରେ ରହିଲେ ହେଲା । ତେମେ ନ୍ୟାୟ ସତ୍ୟରେ ଥିଲେ ଠିକ୍ ହେଲା ।...

ଅପହୃତ ଜମି କଥା ମଧ୍ୟ ଅଲଗା । ସେଥିପାଇଁ ଏଭଳି ଜମିରେ ପଶି ଚଷିବାଟା ସତ୍ୟାଗ୍ରହ ନୁହେଁ ବୋଲି ମତେ ଜଣାପଡ଼େ । ସେଇଟା ମଧ୍ୟ ଗୋଳମାଳିଆ । କାହାର ଜମି କିଏ ଅପହରଣ କରିଛି ତା କିପରି ଜଣାପଡ଼ିବ ?

ଯେଉଁମାନେ ଚଷିବାକୁ ଜମିରେ ପଶିଲେ ସେମାନଙ୍କର ହୁଏତ ସେହି ଜମି ଅପହୃତ ହୋଇ ନ ଥିବ ବା ସେମାନେ ବା ତାଙ୍କର ପିତୃପୁରୁଷ କଜେ ଲେଖିଦେଇ ଆସିଥିବେ । ତେଣୁ ସେଠି ସେଭଳି ସତ୍ୟାଗ୍ରହ ଚଳିବ ନାହିଁ ବୋଲି ମୋର ମତ ।"

ଏ ଲେଖାରୁ ଜଣାପଡୁଛି ଯେ ସର୍ବତ୍ର 'ଅପହୃତ ଜମି' ଦାବୀ କରି ଭୂମି ମାଲିକଙ୍କ ଜମିରେ ପଶି ଚଷିବାକୁ ଆରମ୍ଭ କଲାପରେ, ଅର୍ଥାତ୍ 'ଭୂ ସତ୍ୟାଗ୍ରହ ଆନ୍ଦୋଳନ' ଆରମ୍ଭ ହେବାପରେ ଏ ଲେଖା, ତା ପୂର୍ବରୁ ନୁହେଁ ।

ସେହି ଡାଇରୀ ବହିର ଶେଷ ଆଡ଼କୁ ସେ ବିଷୟରେ ସେ ଠାଏ ଲେଖିଛନ୍ତି :

୧—"ଜମି ସମସ୍ତଙ୍କୁ ମିଳିବା କଥା । ସେଥିପାଇଁ ଆନ୍ଦୋଳନ ହେବା କଥା । ଜମି ଛଡ଼େଇ ନେବାଟା ହିଂସାର ବାଟ, ତାହା ସଫଳ ହେଲେ ମଧ୍ୟ ଫଳ ଖରାପ ହେବ ।

ସେଥିପାଇଁ, ଜମି ଛଡ଼େଇ ନେବା ବାଟଠାରୁ ମେଳ କରି ଜମି ନ ଚଷିବା ଢେର୍ ଭଲ ବାଟ ।

ଏଥିପାଇଁ ମଧ୍ୟ ବିନୋବା ବର୍ତ୍ତମାନ ଅହିଂସ ଯଜ୍ଞ ଆରମ୍ଭ କରିଛନ୍ତି ।…

୨—ଏଠି ଗୋଟାଏ ଭୁଲ୍ ଆନ୍ଦୋଳନ ହେଉଛି । ଆଦିବାସୀ ଅଣ-ଆଦିବାସୀ ପ୍ରଶ୍ନ ଉଠାଯାଉଛି । ଆଦିବାସୀ ଅତ୍ୟାଗ୍ରହୀ ଜମିବାଲା ମଧ୍ୟ ଅଛନ୍ତି । ଅଣ-ଆଦିବାସୀ ଭୂମି ନ ଥିବା ଲୋକେ ମଧ୍ୟ ଅଛନ୍ତି । ଖାଲି କୃମୁଟି ଶୋଷକ ନୁହନ୍ତି, ଧନୀ ଗରିବ ଭେଦଟା ଅଛି ।

ସରକାରୀ Hill Tribe ଆଇନର ଆଶ୍ରା କରି ତାର ଅର୍ଥ ବଦଳେଇବା ପାଇଁ ଚେଷ୍ଟା କରିବା ଭୁଲ୍ । ସେ ଆଇନ୍ ଏକ ଧପ୍‌ପାବାଜି ।

ସବୁ ଜମି ବଣ୍ଟା ହେବା ଆନ୍ଦୋଳନ ଓ ଆଇନ୍ ଗୁରୁଆଡ଼େ ଚାଲିଛି ।

୩—ଜମି ଥିଲେ ମଧ୍ୟ ଜମିକୁ ରକ୍ଷା କରିବା ବାଟ ରହିବା ଦରକାର । ଲୋକେ ଟିପଚିହ୍ନ ନେଇ ଠକଉଛନ୍ତି ।

୪—ଋଣ ସୁବିଧାରେ ମିଳିବା ବ୍ୟବସ୍ଥା ଦରକାର ।

୫—ଚାଷ ମଧ୍ୟ ବଢ଼ିବାର କଥା । ଦୋଫସଲି ପାଇଁ ପାଣି ଲୋଡ଼ା, ବୁଦ୍ଧି ଲୋଡ଼ା ।

୬—ଜମିର ଉତ୍ପନ୍ନକୁ ମଧ୍ୟ ଶସ୍ତାରେ ବା ଠକେଇ ନେଇ ଯାଉଛନ୍ତି । ତାକୁ ହାଟବାଟରେ ବନ୍ଦ କରିବା ଦରକାର ।

୭—ମୂଳ ସବୁଦନେ ମିଳୁ ନାହିଁ, ତାର ବାଟ ଖୋଜିବାକୁ ହେବ ।

୮—ଘରେ ଘରେ ସୂତାକଟା ଲୁଗାବୁଣା ବଢ଼ିବା ଦରକାର ।

୯—ସର୍ବୋଦୌ ମଦ ଛାଡ଼ିବା ଆନ୍ଦୋଳନ ଜୋର୍‌ସୋରରେ ଚାଲିବା ପ୍ରତି ୧୦୦ ବର୍ଗ ମାଇଲ୍‌ରେ ଜଣେ ଜଣେ କର୍ମୀ—ଦୁଇ ତିନୋଟି କେନ୍ଦ୍ର ରହିବ । ଲୋକ ଯାଇ ହାଟରେ ବୁଲିବେ, ଜୁଲମ ବୁଝିବେ । କର୍ମୀମାନେ ଲୋକଙ୍କ ଆପତ୍ତି ଅଭିଯୋଗ ଶୁଣି କେନ୍ଦ୍ରକୁ ଜଣାଇବେ । ନିଶା ଛାଡ଼ିବାରେ ଜୋର୍ ଦେବେ । ଲୋକେ ଯେ କର୍ମୀଙ୍କ ପଛରେ ଅଛନ୍ତି ତାହା ସେଥିରୁ ଜଣାପଡ଼ିବ ।

କର୍ମୀମାନେ ଲୋକଙ୍କ ପାଇଁ ମାଡ଼ ଖାଇବେ, ଜେଲ୍ ଯିବେ, ତେବେ ଯାଇ ଲୋକଙ୍କ ସାହସ ବଢ଼ିବ ।

ପ୍ରଥମରୁ ଲୋକଙ୍କୁ ମାଲି ମକଦ୍ଦମାରେ ପକାଇଦେଲେ କ୍ଷତି ହେବ ।”

ଏଥିରୁ ଜଣାପଡ଼ୁଛି କୋରାପୁଟ ଜିଲ୍ଲାର ରାୟଗଡ଼ା ସବ୍‌ଡିଭିଜନରେ ଯେଉଁ ଭୂ ସତ୍ୟାଗ୍ରହ ଆନ୍ଦୋଳନ ହେଲା ସେ ବିଷୟରେ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କର ମତ କଣ ଥିଲା ଓ ସେଠି ଦରିଦ୍ର ଶୋଷିତ ଭୂମିହୀନଙ୍କ ଅବସ୍ଥା ସମାଧାନ ପାଇଁ, ପୁଣି ବ୍ୟାପକ ଭାବେ ଦେଖିଲେ, ଆଦିବାସୀଙ୍କ ଶୋଷଣ ସମସ୍ୟା ସମାଧାନ ବିଷୟରେ ତାଙ୍କ ମତ କଣ ଥିଲା । ପରେ ଯେତେବେଳେ ୧୯୫୬, ୧୯୫୭ରେ ଆଚାର୍ଯ୍ୟ ସହସ୍ରବୁଦ୍ଧେ 'ସର୍ବସେବା ସଂଘ' ତରଫରୁ କୋରାପୁଟ ଜିଲ୍ଲାରେ 'ନିର୍ମାଣ' କାର୍ଯ୍ୟ ଚଳାଇଲେ, ସେତେବେଳେ ବି ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ମତ ସେହିଆ ଥିଲା, ଆଜୀବନ ତାଙ୍କର ସେହି ମତ ।

୧୯୫୨ ମାର୍ଚ୍ଚ ୧୨ରେ ବ୍ରଜେନ୍ଦ୍ର ଭାଇ ବାହାରି ସେ ଚାଲିଲେ ସଓରା ଅଞ୍ଚଳକୁ ନ ଯାଇ ବିଷମକଟକ, ମୁନିଗୁଡ଼ା, ଅମ୍ବାଦୋଳା ବାଟ ଦେଇ କଳାହାଣ୍ଡି ଜିଲ୍ଲା, ୨୧ ତାରିଖରେ ଅମ୍ବାଦୋଳାରୁ ଯାଇ କୋରାପୁଟ ଜିଲ୍ଲାରୁ ବିଦା ହୋଇ କଳାହାଣ୍ଡି ଜିଲ୍ଲାରେ ପ୍ରବେଶ କଲେ, ବଲାଙ୍ଗିର ଜିଲ୍ଲା ଭିତରେ ପଶି ସମ୍ବଲପୁର ଜିଲ୍ଲାରେ ଅପ୍ରେଲରେ ପହଞ୍ଚିଲେ, ଅପ୍ରେଲଯାକ ସେହି ଜିଲ୍ଲାରେ କଟିଲା, ତାପରେ ମେ' ମାସରେ ମହାନଦୀ କୂଳେ କୂଳେ ନରସିଂହପୁର, ବଡ଼ମ୍ବା, ଆଠଗଡ଼ ବାଟେ କଟକ ଚାଲିଲେ, କଟକ ଜିଲ୍ଲାରେ ପଦଯାତ୍ରା କଲେ, ମେ' ୨୯ ତାରିଖରେ କଟକ ଜିଲ୍ଲା ଖଣ୍ଡପଡ଼ାରେ ପହଞ୍ଚିଲେ ।

ସେ ଗୁଣୁପୁର ସମେତ ରାୟଗଡ଼ା ସବଡିଭିଜନରୁ ଚାଲିଯିବାର ପ୍ରାୟ ମାସେ ପରେ ୧୯୫୨ ଅପ୍ରେଲ ମାସରେ, ସେଠି ଭୂ-ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ

ହୋଇଗଲା । ସେ ଆନ୍ଦୋଳନକୁ ଆଗ ଆରମ୍ଭ କଲେ ଗୁଣୁପୁର ତାଲୁକର ବଂଶଧାରା ନଦୀ ଉପତ୍ୟକାର ଅଧିବାସୀ 'ଶୁଦ୍ଧ ସଓରା' ଆଦିବାସୀମାନେ, ପରିଚାଳନା କଲେ ସେମାନେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ପରାମର୍ଶରେ ଗଢ଼ିଥିବା "ଭୂ ସତ୍ୟାଗ୍ରହ ସମାଜ' । ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ଯେତେ ଜମି ଅଣ ଆଦିବାସୀ ଭୂମି ମାଲିକମାନଙ୍କ ଦଖଲରେ ଥିଲା, ତହିଁରୁ ଯେଉଁ ଜମି କୌଣସି ଆଦିବାସୀର ବା ତାର ପୂର୍ବ ପୁରୁଷଙ୍କର ଓ ଯାହା ଅନ୍ୟାୟ ଭାବେ ଭୂମି ମାଲିକ ହାତକୁ ଯାଇଥିଲା ବୋଲି ତାର ଦାବୀ, ଜମି ମାଲିକକୁ ନୋଟିସ୍ ଦେଇ ଓ ପୁଲିସ୍ ଥାନାକୁ ନୋଟିସ୍ ପଠାଇ ଗୋଟିଏ ନିର୍ଦ୍ଦିଷ୍ଟ ତାରିଖରେ ସେ ଜମିରେ ପହଞ୍ଚି ତାକୁ ଜବରଦସ୍ତି ଦଖଲ କରିବା, ସେତେବେଳେ ଭୂମି ମାଲିକର ଲୋକ ତାକୁ ହଳ କରୁଥିଲେ ସେମାନଙ୍କୁ ଘଉଡ଼େଇ ଦେବା, ଜମି ତା ପୂର୍ବରୁ ମାଲିକକର୍ତ୍ତୃକ ଚାଷ ହୋଇଥିଲେ ତା ଉପରେ ପୁଣି ହଳ କରିବା ଓ ବୁଣିବା, ଫସଲ ହେଲେ ତାକୁ କାଟିବା, ପଦେ କଥାରେ ସେହି 'ଅପହୃତ ଜମି'କୁ ଛଡ଼ାଇ ନେଇ ନିଜେ ଅଧିକାର କରିବା । ଏଇଆ କରିବା ପାଇଁ ନିର୍ଦ୍ଧାରିତ ତାରିଖ ଓ ସମୟରେ ସ୍ତ୍ରୀ ପୁରୁଷ ହୋଇ ଗୋଟିଏ ଗୋଟିଏ ଜମିରେ ଅନ୍ତତଃ ଶହେଜଣ ସଓରା ସେ ଜମିକୁ ଯାଉଥିଲେ । ଯଦି ତାଙ୍କ ନିଜର ବଳଦ ନ ଥିଲା, ସେମାନେ ସାହୁକାର ଜମି ମାଲିକଠୁ ଆଣି ତା ବଳଦ ଘରେ ରଖି ତା ଜମିକୁ ଭାଗଚାଷ କରୁଥିଲେ ତେବେ ସେତେବେଳେ ସେହି ବଳଦ ବ୍ୟବହାର କରି ସେହି ଜମିକୁ ହଳ କରୁଥିଲେ । ପୁଲିସ୍ ଆସି ଗିରଫ କଲେ ତାପରେ ଜାମିନ୍ ମାଗିଲେ ସେମାନେ ଜାମିନ୍ ଦେବାକୁ ମନା କରୁଥିଲେ, କହୁଥିଲେ, "ଆମ ସମସ୍ତିଙ୍କ ଗିରଫ କରି ନିଅ, ଜେଲ୍ ଦିଅ, ଆମ ବେକ କାଟିଗଲେ ବି ଜମି ଛାଡ଼ିବୁ ନାହିଁ, ଏ ଆମ ଜମି । ଆମେ ଜାମିନ୍ ଦେବୁ ନାହିଁ । ଏମିତି ତ ଆମେ ଭୋକରେ ମରୁଛୁ, ତୁମେ ଜେଲରେ ରଖିଲେ ହେଲେ ଖାଇବାକୁ ଦେବ ।" ପୁଲିସ୍ ଏପରି ପ୍ରତି ମକଦ୍ଦମାରେ ଜମି ଆକ୍ରମଣ କରିଥିବା ସମସ୍ତିଙ୍କ ନାଁରେ ମକଦ୍ଦମା କରୁ ନ ଥିଲେ, ଅଧିକାଂଶ ଲୋକଙ୍କ ନାଁ ଦେଉ ନ ଥିଲେ, କାରଣ ନାଁ ଜଣାପଡୁ ନ ଥିଲା । ଗୁଣୁପୁର ସହରର ଉତ୍ତର ଆଡ଼କୁ ୨୫୦ ବର୍ଗମାଇଲ ପରିମିତ ବଂଶଧାରା ନଦୀ ଉପତ୍ୟକାର ସମତଳରେ ଏହା ଆରମ୍ଭ ହୋଇଥିଲା କିନ୍ତୁ ଆନ୍ଦୋଳନର ଗତିରୁ ଯେପରି ଜଣାପଡ଼େ, —ସାରା ରାୟଗଡ଼ା ସବଡିଭିଜନଯାକର ଆଦିବାସୀଙ୍କ ମନରେ ସାହୁକାର ଓ ଧନୀ ଭୂମି ମାଲିକଙ୍କ ବିରୁଦ୍ଧରେ ଅଶାନ୍ତି, ଅଭିଯୋଗ ଓ ଆକ୍ରୋଶ କୁହୁଳୁଥିଲେ ସୁଦ୍ଧା ଏକପ୍ରକାର ପରୀକ୍ଷା-ମୂଳକ ଭାବେ ଆଗ ଏଠିସେଠି କେତୋଟି ଗାଁର ଜମି ସଂକ୍ରାନ୍ତରେ 'ଅପହୃତ ଭୂମି ପୁନରୁଦ୍ଧାର' କାର୍ଯ୍ୟ ଆରମ୍ଭ କରା ଯାଇଥିଲା । ୨୪-୪-୫୮ରୁ ୯-୬-୫୮ ଭିତରେ ଗୁଣୁପୁର, ଗୁଡ଼ାରି ଓ ପଦ୍ମପୁର ଥାନାମାନଙ୍କର ପୋଲିସ୍ ଏପରି ୩୨ଟି ମକଦ୍ଦମା ଆଗତ କରିଥିଲେ, ତା ସହିତ ସଂପୃକ୍ତ ଥିଲେ ୩୪୦୦ ଜଣ

ଆଦିବାସୀ, ତହିଁରେ ମୁଦାଲି କରା ହୋଇଥିଲେ ୪୦୮ ଜଣ ଆଦିବାସୀ, ଅଧିକାଂଶ ମାତ୍ର ପାଞ୍ଚଟି ଛଡ଼ା ଛଡ଼ାରେ ଥିବା ଗାଁର, ଯଥା : ଗୁଣୁପୁର ଥାନାରେ ଏକା କୁଜେନ୍ଦ୍ରିର—୧୧୬ ଜଣ ଆଦିବାସୀ ମୁଦାଲି, ଗୁଡ଼ାରି ଥାନାରେ 'ମେଟ୍ଟୁ-ଖିଲଙ୍ଗ୍-ଗାଇ'ର ୭୮, 'ସେଲ୍ଲିମି'ର ୪୫ ଜଣ, ବୁର୍ଲେଙ୍ଗିର—୩୪ ଜଣ, ପଦ୍ମପୁର ଥାନାର ଏକା ଗୋଡ଼ଆବନ୍ଧର । ୪୦୮ ଜଣ ମୁଦାଲି ଭିତରେ ଥିଲେ ୩୪୩ ଜଣ ଶୁଦ୍ଧ ସଓରା, ଦୁଇଟି ଗାଁର ୫୭ ଜଣ କନ୍ଧ ଓ ୧ ଜଣ 'ଜାତପ୍' ଦୋରା ('କୁଟିଆ କନ୍ଧ' ନାମକ ଆଦିବାସୀ ଜାତି), ଏହାଛଡ଼ା କିଛୁ ଅନ୍ୟ ଗାଁ ଓ ଅନ୍ୟ ଆଦିବାସୀ ମୂଳିଆ ବି ଥିଲେ । ଏସବୁ ମକଦମା ଲଗିଥିବା ଗାଁକୁ ଛାଡ଼ି ସେ ଅଞ୍ଚଳରେ ଆହୁରି ୫୩ ଖଣ୍ଡ ଗାଁ ଥିଲା ଓ ଯାହା ଏହି 'ଅପହୃତ ଜମି ଦାବି' ଆନ୍ଦୋଳନ ଦ୍ୱାରା ପ୍ରଭାବିତ ହୋଇଥିଲା, ତାର ଜନସଂଖ୍ୟା ୧୨,୧୬୭, ତାଛଡ଼ା ଆହୁରି ୪୦ଟି ଗାଁ ଥିଲା ଯହିଁରେ ୩ ହଜାର ଆଦିବାସୀଙ୍କ ନିବାସ, ସେଠି ମଧ୍ୟ କିଛି କିଛି ଲୋକ ଏହି ଆନ୍ଦୋଳନ ଯୋଗୁଁ ମାତି ଉଠିଥିଲେ ।

ଆନ୍ଦୋଳନର ଅନ୍ୟାନ୍ୟ ଉଦ୍ଦେଶ୍ୟ ଥିଲା; ଯେଉଁସବୁ ଜମିର ଭାଗଚାଷ ଅଧିକାରରୁ ୧୯୪୮ରୁ ସେମାନଙ୍କୁ ଉଚ୍ଛେଦ କରାହୋଇଛି ତହିଁରେ ତାଙ୍କର ସେ ଅଧିକାରକୁ ପୁନଃ ସ୍ୱୀକୃତି ଦେବା, ଆଉ ଉଚ୍ଛେଦ ନ କରିବା, ଭାଗଚାଷ ଆଇନ୍ ଅନୁସାରେ ସେମାନଙ୍କୁ ଫସଲର ନ୍ୟାଯ୍ୟ ଭାଗ ଦେବା, ଭୂମିହୀନଙ୍କୁ ପତିତ ଜମି ଦେବା, ସେମାନେ ଯେପରି ସହଜରେ ଓ ସୁବିଧାରେ ଖାଦ୍ୟଶସ୍ୟ ଓ ଟଙ୍କା ଋଣ ପାଇପାରିବେ ସେଥିପାଇଁ ବନ୍ଦୋବସ୍ତ କରିବା, ଋଣରେ, ମାପରେ, ଓଜନରେ, ଦାମ୍ ଦେବା ଓ ନେବାରେ, କୁଲି ମଜୁରି ଓ ଗମ୍ଭୁରି ଦରମାରେ, ନାନା ପ୍ରକାରେ ସେମାନଙ୍କୁ ଯେପରି ଠକାଯାଉଛି, ଶୋଷଣ କରାଯାଉଛି ସେସବୁ ବନ୍ଦ କରିବା, ସାହୁକାର, ପୁଲିସ୍, ଅନ୍ୟାନ୍ୟ କର୍ମଚାରୀ ତାଙ୍କୁ ଯେପରି କୁକୁର ମାଙ୍କଡ଼ ପରି ବ୍ୟବହାର କରନ୍ତି, ଅପମାନ ଜୁଲୁମ୍ ତରାହରା ମାର୍‌ପିଟ ଅତ୍ୟାଚାର ଶୋଷଣ କରନ୍ତି, ତାଚ୍ଛଲ୍ୟ, ଉଦାସୀନତା ଅବହେଳା ଦେଖାନ୍ତି ତାହା ବନ୍ଦ କରିବା ଓ ସେ ମନୋଭାବରେ ପରିବର୍ତ୍ତନ ଆଣିବା, ଇତ୍ୟାଦି ।

ଗାଁ ଲୋକଙ୍କର ବିଶେଷତଃ ଆଦିବାସୀଙ୍କର ଏ ପ୍ରକାର ଆନ୍ଦୋଳନ ଓଡ଼ିଶାରେ ଗୋଟିଏ ନୂଆ ଘଟଣା ହେଲା, ସାହୁକାର ଭୂମି ମାଲିକମାନେ ଆତଙ୍କିତ ହେଲେ ଓ ନାନା ପ୍ରକାରେ ପ୍ରତିରୋଧ କରିବାକୁ ତତ୍ପର ହେଲେ । ସରକାର ଚମକିତ ହେଲେ । କଲେକ୍ଟର ଥିଲେ କଟକର ଶ୍ରୀ ସୁଧୀର୍ ଚନ୍ଦ୍ର ପାଲିତ୍, ରାୟଗଡ଼ାରେ ଏସ୍.ଡି.ଓ. ଥିଲେ ସମ୍ବଲପୁରର ଶ୍ରୀ ବିପିନ୍ ବିହାରୀ ବାବୁ, ଏସ୍. ପି. ଥିଲେ ଶ୍ରୀ ଜମି ଧର୍ମରାଜ୍ । ଇଂରେଜ ଅମଳ ପରି ଲାଠି, ଗୁଳି, ବ୍ୟାପକ ଗିରଫ, ସମୂହ ଜୋରିମାନା ଆଦି

ଉମନଲ୍ଲା ଦ୍ୱାରା ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ନିମାଇଁ ଚରଣ ସାହୁ ଓ ଆଦିବାସୀ ନେତାମାନଙ୍କ ସମେତ ଆନ୍ଦୋଳନ ଦବାଇବାକୁ ଚେଷ୍ଟା କରିଥିଲେ ତାର ପରିଣତି କଣ ହୋଇଥାନ୍ତା ଜଣା ନାହିଁ, କିନ୍ତୁ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ତାହା ନ କରାଇ ସମସ୍ୟାର ମୌଳିକ ସମାଧାନର ପନ୍ଥା ଧରିଲେ । ଆଗ ଆନ୍ଦୋଳନକାରୀଙ୍କୁ ବୁଝାଇବାକୁ ପଡ଼ିବ ଯେ ସେମାନଙ୍କର ଯାହା ଯାହା ଆପତ୍ତି ଅଭିଯୋଗ ଦୂରୁ ବୁଝାଯିବ, ତା ସମାଧାନ ପାଇଁ ବାଟ ଖୋଜାଯିବ, ତାଙ୍କ ହିତ ପାଇଁ ସ୍ୱାର୍ଥ ସଂରକ୍ଷଣ ପାଇଁ ଯାହାସବୁ ଆଇନ୍ ହୋଇଛି, ତହିଁରେ ତାଙ୍କ ପାଇଁ ଯାହା ଯାହା ବ୍ୟବସ୍ଥା ଅଛି ସେମାନେ ତା ଭଲ କରି ବୁଝନ୍ତୁ, କଣ କଣ କରାଯିବ ଭଲ କରି ଅନୁସନ୍ଧାନ ନ କରି ବିଚାର ନ କରି ହୁଟ୍ କରି ହଠାତ୍ ତ କିଛି ହେବ ନାହିଁ, କିନ୍ତୁ ସେମାନେ ବିଶ୍ୱାସ କରନ୍ତୁ, ସରକାରଙ୍କ ଦ୍ୱାରା ଯାହା ହୋଇପାରିବ ତା ସେ କରିବେ ହିଁ । ସେମାନେ ଆନ୍ଦୋଳନ ବନ୍ଦ କରନ୍ତୁ ।

ସେମାନଙ୍କୁ ଏହିକଥା ବୁଝେଇବାକୁ, ସେ ଅଞ୍ଚଳରେ ଗସ୍ତ କରି ସେମାନଙ୍କ ନେତାମାନଙ୍କ ସଙ୍ଗେ କଥାଭାଷା କରିବାକୁ, ନିରପେକ୍ଷ ଭାବେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରିବାକୁ ଓ ମୋର ସିଦ୍ଧାନ୍ତ ଓ ପରାମର୍ଶ ସହ ରିପୋର୍ଟ ଦେବାକୁ କୋରାପୁଟ ଜିଲ୍ଲା ବାହାରୁ ମତେ ବରଗା ଗଲା । ମୁଁ ସେତେବେଳେ କଟକରେ ଡେପୁଟି ମ୍ୟାଜିଷ୍ଟ୍ରେଟ୍ । କିନ୍ତୁ ମୋର ସ୍ତ୍ରୀ ସାଙ୍ଘାତିକ ଭାବେ ଅସୁସ୍ଥ ହୋଇ ଚକିତ୍ସିତ ହେଉଥିଲେ ଓ ତେଣୁ ମୁଁ ଯିବାକୁ ନାହିଁ କଲି । ତେଣୁ ଆଗ ରେଭିନ୍ୟୁ ବିଭାଗର ଅଣ୍ଡର୍ ସେକ୍ରେଟେରୀ ଶ୍ରୀ ଜଗନ୍ନାଥ ଦାସ ଗଲେ, ଜୁନ୍ ୧୧, ୧୩, ୧୪ରେ ବୃନ୍ଦେଲ୍‌ରେ ଆନ୍ଦୋଳନର ନେତାମାନଙ୍କ ସଙ୍ଗେ ଓ କେତେକ ଆଦିବାସୀଙ୍କ ସଙ୍ଗେ କଥାଭାଷା କଲେ । ତା ଫଳରେ ସେଠି ଜୁନ ୧୩ ତାରିଖରେ 'ଭୂ ସତ୍ୟାଗ୍ରହ ସମାଜ' ପ୍ରସ୍ତାବ ପାଶ କଲେ ଯେ ସେହିଦିନଠୁ ଆସନ୍ତା ଧାନକଟା ବେଳଯାଏ ସେମାନେ ସାମୟିକ ଭାବେ ଆନ୍ଦୋଳନ ବନ୍ଦ ରଖିବେ, କିନ୍ତୁ ଇତ୍ୟବସରେ ସରକାର ଗୋଟିଏ କମିଟି ବସାଇ ତାଙ୍କ ଆପତ୍ତି ଅଭିଯୋଗ ବିଷୟରେ ଅନୁସନ୍ଧାନ କରାଇ ସେମିତି କମିଟିର ସିଦ୍ଧାନ୍ତ ଓ ସୁପାରିସ୍ ପାଇଯାଇଥିବେ, ସେ କମିଟିରେ କିଛି ସରକାରୀ କର୍ମଚାରୀ ଓ କିଛି ନିରପେକ୍ଷ ବେସରକାରୀ ଲୋକ ସଭ୍ୟ ହେବେ । ଶ୍ରୀ ଦାସ ଫେରିଆସି ରିପୋର୍ଟ ଦେଲେ । କିନ୍ତୁ କୌଣସି କମିଟି ନ ଗଢ଼ି ପୁଣି ମତେ ବରଗା ଗଲା । ସେତେବେଳକୁ ସ୍ତ୍ରୀ ଭଲ ହୋଇ ଆସିଲେଣି, ମୁଁ ଅଗଷ୍ଟ ୮ରେ ସ୍ପେସାଲ୍ ଅଫିସର ଭାବେ ନୂଆ ନିଯୁକ୍ତି ପାଇ କଟକରେ ବୋର୍ଡ଼ ଅଫ୍ ରେଭିନ୍ୟୁରେ କାର୍ଯ୍ୟଭାର ନେଇ ଅଗଷ୍ଟ ୧୧ରେ ବ୍ରହ୍ମପୁର ପହଞ୍ଚିଲି, ଅଗଷ୍ଟ ୨୬ ଯାଏ ସେ ଅଞ୍ଚଳସାରା ବିଭିନ୍ନ ସ୍ଥାନରେ ଆଦିବାସୀ ପଲ୍ଲୀରେ ରହି ଓ ଗାଁ ଗାଁ ବୁଲି ହଜାର ହଜାର ଆଦିବାସୀଙ୍କ ସଙ୍ଗେ, ସେମାନଙ୍କ ନେତାମାନଙ୍କ ସଙ୍ଗେ, ସାହୁକାର ଓ ଭୂମି ମାଲିକମାନଙ୍କ ସଙ୍ଗେ

ଓ ଅନ୍ୟାନ୍ୟମାନଙ୍କ ସଙ୍ଗେ ଆଲୋଚନା କଲି, ଆଦିବାସୀମାନଙ୍କ ଦୁର୍ଦ୍ଦଶା ମୋ ଆଖିରେ ଦେଖିଲି, ବିଭିନ୍ନ ଗାଁର ଇକନମିକ୍ ସର୍ଭେ କଲି, ସରକାରୀ କାଗଜପତ୍ର ଦେଖିଲି, ଫେରିଆସି ସେପ୍ଟେମ୍ବର ମାସରେ ମୋ ରିପୋର୍ଟ ଦେଲି । ସରକାର ମୋର ରିପୋର୍ଟର ସିଦ୍ଧାନ୍ତ ଓ ସୁପାରିସ୍‌ଗୁଡ଼ିକ ଗ୍ରହଣ କଲେ ସେହି ଅନୁସାରେ କାର୍ଯ୍ୟପନ୍ଥା ଗ୍ରହଣ କଲେ । ରାୟଗଡ଼ା ଏସ୍. ଡି. ଓ. ହୋଇ ମୋର ବଦଳି ହେଲି ଓ ଅକ୍ଟୋବର ୫ ତାରିଖରେ ମୁଁ ରାୟଗଡ଼ାରେ ସେହି ଦାୟିତ୍ୱରେ ଯୋଗ ଦେଲି । ସଙ୍ଗେ ସଙ୍ଗେ ତହିଁ ଆରଦିନ 'ଭୂ ସତ୍ୟାଗ୍ରହ ସମାଜ' ପ୍ରସ୍ତାବ ପାସ୍ କରି 'ଭୂ ସତ୍ୟାଗ୍ରହ ଆନ୍ଦୋଳନ' ଉଠାଇ ନେଲେ । ସେମାନଙ୍କ ଉପକାର ପାଇଁ ଓ ଆପତ୍ତି, ଅଭିଯୋଗ, ସମସ୍ୟା ଦୂର କରିବା ପାଇଁ ସରକାର ଯାହା ଯାହା ବ୍ୟବସ୍ଥା କରି ଯେପରି କାର୍ଯ୍ୟ ଆରମ୍ଭ କରିଦେଲେ ତହିଁରେ ସେମାନଙ୍କ ନେତାମାନଙ୍କର ଓ ସେମାନଙ୍କର ସରକାରଙ୍କ ପ୍ରତି ମନୋଭାବ ବଦଳିଗଲା, ବିଶ୍ୱାସ ଆସିଲା ଓ ସେମାନେ ନୂଆ ବ୍ୟବସ୍ଥାର କାର୍ଯ୍ୟକାରୀ କରିବା ଦିଗରେ ସହଯୋଗ ଦେଲେ ।

ସେହି ନୂଆ ବ୍ୟବସ୍ଥା ଅନୁସାରେ ଯାହା ଯାହା ହେଲା ତହିଁରୁ ମୁଖ୍ୟ କେତୋଟି ଏହିପରି :—(୧) ଆଇନ୍ :—ଏ ଟି ଆଇ ଏଲ୍‌ଟି ଆକ୍ଟ ଓ ଓଡ଼ିଶା ମହାଜନୀ ଆଇନକୁ ଲଗୁ କରାଯାଇଥିବା ଲିମିଟେସନ୍ ଆକ୍ଟ ତହିଁରୁ ଉଠାଇ ଦିଆଗଲା । ୧୯୧୭ରୁ ହସ୍ତାନ୍ତରିତ ଜମି ପାଇଁ ମଧ୍ୟ ଏ ଟି ଆଇ ଏଲ୍‌ଟି ଆକ୍ଟ ଅନୁସାରେ ମକଦ୍ଦମା ହୋଇପାରିଲେ । 'ଅପହୃତ ଜମି', 'ଭାଗଚାଷ ଜମିରୁ ଉଚ୍ଛେଦ', 'ଭାଗଚାଷ ଆଇନ୍ ଅନୁସାରେ ଭାଗ ନ ମିଳିବା', 'ଅନ୍ୟାୟ ସୁଧରେ ଋଣ' ଆଦି ଯେତେ ଅଭିଯୋଗ ଆସିଲା ବା ଏସ୍. ଡି. ଓ. ନିଜେ ଖୋଜି ସମ୍ବାଦ ସଂଗ୍ରହ କଲେ ସବୁ ଆଇନ୍ ଅନୁସାରେ ବିଚାର କରାଗଲା । ଫଇସଲା ଯେପରି ଜଲ୍‌ଦି ହେବ ତେଣୁ ଦୁଇଜଣ ଅଧିକା ଡେପୁଟି ମ୍ୟାଜିଷ୍ଟ୍ରେଟ୍ ପଠାଗଲେ, ଖାଲି ସହରରେ କଚେରି ଘରେ ବିଚାର ହେଉଥିବ, ଦୂରରୁ ଦୂରରୁ ଆଦିବାସୀଙ୍କୁ ଆସିବାକୁ ପଡ଼ୁଥିବ ଯେପରି ନ କରି ସେମାନଙ୍କ ଗାଁଠୁ ଦୂର ହୋଇ ନ ଥିବ, ପାଖ ହୋଇଥିବ, ମଫସଲରେ ଏପରି ବିଭିନ୍ନ ସ୍ଥାନରେ କଚେରି କରି ମକଦ୍ଦମା ବିଚାର କରାଗଲା । ମକଦ୍ଦମା ଲଢ଼ି ନିଜ ଦାବୀ ସ୍ୱୀକୃତ କରିବାକୁ ସେମାନଙ୍କୁ ସାହାଯ୍ୟ କରିବାକୁ ସରକାରୀ ଖର୍ଚ୍ଚରେ ସେମାନଙ୍କ ପାଇଁ ଦୁଇଜଣ ଓକିଲ ନିଯୁକ୍ତ ହେଲେ । ମକଦ୍ଦମା କଲେ ଦରଖାସ୍ତ ଉପରେ କୋର୍ଟ ଫି ଲାଗେ, ସେମାନଙ୍କ ପାଇଁ ସେପରି କୋର୍ଟ ଫି ଦେବା ଉଠାଇ ଦିଆଗଲା । (୨) ଜମି :—ମକଦ୍ଦମା ରାୟ ଯୋଗୁଁ ମିଳୁଥିବା ଜମି ଛଡ଼ା କେଉଁଠି ପଡ଼ିଆ ଜମି ମିଳିପାରିବ ଲାଗିପଡ଼ି ଅନୁସନ୍ଧାନ କଲେ ସେପରି ଜମି ଭୂମିହୀନ ଆଦିବାସୀଙ୍କୁ ଦିଆଗଲା । (୩) କୃଷି ପାଇଁ ସୁବିଧା ଯୋଗାଣ :—ଜଳସେଚନ ପାଇଁ ନାନା 'କ୍ଷୁଦ୍ର ଜଳସେଚନ ପ୍ରକଳ୍ପ' କରାଗଲା । ନୂଆ ଜମି ଭାଙ୍ଗିବା ପାଇଁ, ପୁରୁଣା ଜମି ମରାମତି

ପାଇଁ, ଚାଷ ବେଳେ ନିଜ ଖୋରାକ, ବଳଦ କିଣା, ସାର କିଣା, ଲଗ-ଲଗୁଡ (ଚାଷ କାମର ବିଭିନ୍ନ ପର୍ଯ୍ୟାୟରେ ଯେଉଁ ବଳକା ମୂଲିଆ ଲଗାନ୍ତି ଏ ସେମାନଙ୍କ ମଜୁରି) ଆଦି ପାଇଁ ପୂର୍ଣ୍ଣ ଆର୍ଥିକ ସାହାଯ୍ୟ, ଆଂଶିକ ଆର୍ଥିକ ସାହାଯ୍ୟ, ଅଳ୍ପ ସୁଧରେ ଓ ଭୂମିହୀନଂ ଋଣଗ୍ରହୀତାର କେବଳ ନିଜ ବ୍ୟକ୍ତିଗତ ଜାମିନ୍‌ରେ, ପୂର୍ବପରି ଧନୀ ଜାମିନ୍‌ଦାର ଜମି ସମ୍ପତ୍ତି ଆଦି ଜାମିନ୍ ନ ଦେଲେ ଋଣ ଦିଆଯିବ ନାହିଁ ବୋଲି ବ୍ୟବସ୍ଥା ପରିବର୍ତ୍ତେ ଆଦିବାସୀର ସୁବିଧା ପାଇଁ ନୂଆ ବ୍ୟବସ୍ଥା କରାଗଲା । ଭଲ ଭଲ ବଳଦ କିଣି ଆଣି ଯୋଗାଇ ଦିଆଗଲା । ଫଳଚନ୍ଦ୍ର ଗଛ, ବିହନ, ମଞ୍ଜି ଆଦି ବଣ୍ଟାଗଲା । ଜଙ୍ଗଲ ପାଖେ ବାଛିର ଜମି କ ପୁରୁଣା ଜମି ଚାଷ କଲାବେଳେ ବାଘ ଖାଏ, ଚାଷ ଉଜୁଡ଼େ, ଜମି ପଡ଼ିଆ ପଡ଼େ, ତେଣୁ ସ୍ଥାନେ ସ୍ଥାନେ ଶିକାରୀ ଆଦିବାସୀଙ୍କୁ ଲାଇସେନ୍‌ସ ସହ ବନ୍ଧୁକ ଦିଆଗଲା, 'ମ୍ୟାନ୍ ଇଟର୍ କଲିଂ ସୋସାଇଟି' (ମଣିଷଖିଆ ବାଘ ମାରିବା ସମାଜ) ଗଢ଼ାଗଲା, ଚାଷ ଚାଲିଲା, ଆଦିବାସୀ ବିଭାଗ ଟଙ୍କାରେ ଯୋଡ଼ିଏ ସୁନ୍ଦର ଆଦିବାସୀ 'କଲୋନି' କରି ପ୍ରତ୍ୟେକଟିରେ ୪୦ଟି ଲେଖାଏଁ ଭୂମିହୀନ ପରିବାରଙ୍କୁ ଜମି, ପାଣି, ଖର୍ଚ୍ଚ ସବୁ ଯୋଗାଇଦେଇ ରଖାଗଲା । (୪) ଶସ୍ତା ଓ ସୁବିଧା ସୁଧରେ ଦରକାର ବେଳେ ସେମାନଙ୍କୁ ଖାଦ୍ୟଶସ୍ୟ ଯୋଗାଇବା ପାଇଁ ସ୍ଥାନେ ସ୍ଥାନେ 'ଗ୍ରେନ୍‌ଗୋଲା' କୋଠା ତୋଲାଗଲା, ଯେଉଁ କହାଉ ଅପହଞ୍ଚ ଗଣ୍ଡ ମଫସଲ ଭିତରେ, ମାଳ ଭିତରେ ସୁଦ୍ଧା ସରକାରୀ ପ୍ରକ୍ୟୋର୍‌ମେଣ୍ଟ ଗୋଦାମକୁ ମରାଇ ପ୍ରଚୁର ପରିମାଣରେ ଖାଦ୍ୟଶସ୍ୟ ମହଜୁଦ୍ କରି ରଖାଗଲା; ଗତ ମରୁଡ଼ି ଓ ଅନାହାର ମୃତ୍ୟୁବେଳେ ଖାଦ୍ୟଶସ୍ୟ କିଣିବାକୁ ମିଳୁଥିଲେ ସୁଦ୍ଧା ପଇସା ନ ଥିବାରୁ ଗରିବ ଲୋକେ ତାକୁ କିଣିପାରି ନ ଥିଲେ, ସେ ଅସୁବିଧା ଆଉ ରହିଲା ନାହିଁ, ଆଉ ସାହୁକାରର ଦ୍ୱାରସ୍ଥ ହେବାକୁ ପଡ଼ିଲା ନାହିଁ । (୫) ସାହୁକାରଙ୍କ ଦେଣା ଶୁଝା :—ଋଣ ବାକି ଅଛୁ ବୋଲି ମିଛରେ କହି, ବର୍ଷ ବର୍ଷ ଧରି ସାମାନ୍ୟ ମୂଳ ବାବତ କଲମ୍ବର ଆଡ଼କୁ ସାହୁକାରମାନେ ବାରମ୍ବାର ନେଉଥିଆ ଶାଗପଟାଳି କାଟି ଖାଇଲା ପରି ଆଦିବାସୀଙ୍କର ଉତ୍ପନ୍ନ ଶସ୍ୟ ବୋହି ନେଉଥିଲେ; ଗାଁ ଗାଁ ବୁଲି ବାକିଥିବା ଋଣ ବିଷୟରେ ଅନୁସନ୍ଧାନ କରି ଆଇନ ଅନୁସାରେ ସାହୁକାରର କେତେ ପ୍ରାପ୍ୟ ହୋଇଥାନ୍ତା, ଏତେ ବର୍ଷରେ ବଜାର ଦର ଅନୁସାରେ କେତେ ଦାମ୍‌ର ଜିନିଷ ସେ ନେଲାଣି ହିସାବ କରି, କେତେ ଋଣ ଭୁଞ୍ଜାଇ ସମାପ୍ତି ପତ୍ର ଅଣାଗଲା, ନ୍ୟାଯ୍ୟତଃ ଋଣ ପରିଶୋଧ ବାବତ ଯେଉଁକି ବାକି ପାଉଣା ଥିଲା ସରକାର ଆଦିବାସୀକୁ ସେତିକି ଋଣ ଦେଇ ତହିଁରେ ସାହୁକାରର ଋଣ ଶୁଝାଇ ଋଣ ଶେଷ କରାଗଲା ।

ଶସ୍ତା ଓ ସୁବିଧା ଦରରେ ଆଦିବାସୀ ଯେପରି ନିଜର ନାନା ଆବଶ୍ୟକ ଦ୍ରବ୍ୟ କିଣି ପାରିବେ, ଶୋଷକ ବେପାରୀଙ୍କ କବଳରେ ନ ପଡ଼ିବେ, ସେଥିପାଇଁ ସ୍ଥାନେ

ସ୍ଥାନେ ସରକାର ଗାଁ ଗହଳି ଭିତରେ 'ସୁଲଭ ମୂଲ୍ୟ ଦୋକାନ' ଗୁଡ଼ିଏ ନିଜ ଖର୍ଚ୍ଚରେ ଖୋଲିଲେ ଓ ଚଳାଇଲେ ।

(୬) ମାପ ପାଇଁ ଷ୍ଟାଣ୍ଡାର୍ଡ 'ମାଣ' ପ୍ରଚଳନ କରାଗଲା, ଠକେଇ ମାଣ ଖୋଜି ଖୋଜି ଜବତ କରାଗଲା ଓ ଧ୍ୱଂସ କରି ଦିଆଗଲା । ଓଜନ ଓ ମାପକୁ ଖୁବ୍ ନିଘା ଦିଆଗଲା, କର୍ମଚାରୀମାନେ ହାଟ ବଜାର ବୁଲି ବୁଲି ତନଖି କଲେ ।

(୭) ପାନୀୟଜଳ ସଙ୍କଟ ଦୂର କରିବା ପାଇଁ ସ୍ଥାନେ ସ୍ଥାନେ ଆଦିବାସୀ ଗାଁରେ କୂଅ ଖୋଳା ହେଲା ।

(୮) କୂଅ ଖୋଳା, ପୋଖରୀ ଖୋଳା, ଏମ୍. ଆଇ. ପ୍ରଜେକ୍ଟ (କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ତିଆରି), ନାନା କାର୍ଯ୍ୟ ପାଇଁ କୋଠାଘର ତୋଳା, ସଡ଼କ ତିଆରି ଏପରି ନାନା କାର୍ଯ୍ୟ କରାଗଲା । ଯେଉଁଠି ଅସମ୍ଭବ ନ ହେଲେ ଆଦିବାସୀଙ୍କୁ ହିଁ କଣ୍ଟ୍ରାକ୍ଟର ନିଯୁକ୍ତ କରାଗଲା, ସରକାରୀ ଓଭରସିଅର ଇଞ୍ଜିନିଅରଙ୍କ କାରିଗରି ସାହାଯ୍ୟ ଓ ନିଘାରେ କାମ ହେଲା, କାମ କରିବାକୁ ସ୍ଥାନୀୟ ଆଦିବାସୀ ହରିଜନ ଓ ଅନ୍ୟାନ୍ୟ ଦରିଦ୍ର ଲୋକେ ହିଁ ମଜୁରି ପାଇ ନିଯୁକ୍ତ ହେଲେ । ଆଦିବାସୀ ସଚ୍ଚୋଟ ଓ ପରିଶ୍ରମୀ, ତେଣୁ ତାଙ୍କ କାମ ଖାଣ୍ଟି କାମ ହେଲା, ଶସ୍ତାରେ ହେଲା । ସେମାନେ ନିଯୁକ୍ତି ପାଇଲେ, କୂଲି ମଜୁରି ବଢ଼ାଇ ଦିଆଗଲା ।

(୯) ନାନା ଉପାୟରେ ସେମାନଙ୍କ ଆୟ ବଢ଼ିଗଲା । ଅନେକ ଭୂମିହୀନ ତ ଭୂମି ପାଇଗଲେ, ଭାଗଚାଷ ପାଇଲେ, ପୁଣି ୧୯୬୮ରୁ ଆରମ୍ଭ କରି ଶେଷ ଫସଲ ଭାଗ ହେବାଯାଏ ଅନ୍ୟାୟରେ କେତେ ଅଧିକା ଫସଲ ଭାଗଚାଷୀଠୁ ନେଇଛୁ ମକଦ୍ଦମା ରାୟରେ ସେତକ ବି ଭାଗଚାଷୀଙ୍କୁ ଦେବ ବୋଲି ଆଦେଶ ହେଉଥିବାରୁ ଅନେକ ଆଦିବାସୀ, ଯାହାଙ୍କ ଘରେ କିଛି ନ ଥିଲା, ତାଙ୍କ ଘରେ ଶସ୍ୟ ଭର୍ତ୍ତି ହେଲା । ଏ ଟି ଆଇ ଏଲ୍ ଟି ମକଦ୍ଦମାରେ ଓ ଓ. ଟି. ପି. ଆକ୍ଟ ମକଦ୍ଦମାରେ ଜିତିଲେ ସେମାନେ ଜମି ପାଇ ଯାଉଥିଲେ ତାଛଡ଼ା ଏସବୁ ମକଦ୍ଦମା ଜୋରସୋରରେ ଚାଲିବାରୁ ଓ ମକଦ୍ଦମା ଲଢ଼ିବାକୁ ସରକାରୀ ଓକିଲ ସାହାଯ୍ୟ ପାଇବାରୁ ଅନେକ ସ୍ଥଳରେ ସେଭଳି ଘଟଣା ଜାଣି କଚେରୀକି ଯିବା ଆଶଙ୍କା କରି ଭୂମିମାଲିକମାନେ ବାହାରେ ବାହାରେ ଆଦିବାସୀଙ୍କୁ ଜମି ଫେରାଇ ଦେଲେ ।

(୧୦) ସରକାରଙ୍କ ସବୁ ବିଭାଗ ନିଜ ନିଜ ତରଫରୁ ସେସବୁ ଆଦିବାସୀ ଅଞ୍ଚଳରେ ସେମାନଙ୍କ ପ୍ରକଳ୍ପମାନ ଚଳାଇବାକୁ ଲାଗିଲେ ।

(୧୧) ଆଦିବାସୀଙ୍କ ଉପରେ ପୂର୍ବେ ଚାଲିଥିବା ସବୁ ପ୍ରକାର ଜୁଲୁମ୍, ଦୁର୍ବ୍ୟବହାର, ଶୋଷଣ, ଅତ୍ୟାଚାର, ଅପମାନ ଓ ଅମର୍ଯ୍ୟାଦା ଦୂର କରାଗଲା, ସରକାରୀ

କର୍ମଚାରୀଙ୍କ ପ୍ରତି, ସାହୁକାରଙ୍କ ପ୍ରତି ତାଙ୍କର ଭୟ ତୁଟିଲା, ତାଙ୍କ ଉନ୍ନୟନ ଓ ସ୍ୱାର୍ଥ ସଂରକ୍ଷଣ ପ୍ରତି ବିଶେଷ ନଜର ଦିଆଗଲା, ପୂର୍ବେ ଯେପରି ତାଙ୍କୁ ଦୂର ଦୂର କରି ହେଉଥିଲା ତା ପରିବର୍ତ୍ତେ ସେମାନଙ୍କୁ ଯେ କୌଣସି ସଭ୍ୟ ଭଦ୍ର ନାଗରିକ ପ୍ରତି ଯେଉଁପରି ବ୍ୟବହାର କରିଯାଏ ସେହିପରି ବ୍ୟବହାର କରାଗଲା, ଆଲୋଚନା ପାଇଁ ଆସିଲେ କମ୍ପାନୀ ସଭାରେ ତାଙ୍କ ମୁରବିମାନଙ୍କୁ ଚୌକିରେ ବସିବାକୁ ଦିଆଗଲା, ହୋଇଥାଉ ସେପରି ତାଙ୍କ ଭେକ।

(୨) ସେମାନଙ୍କ ଶିକ୍ଷା ପାଇଁ ଅଧିକ 'ସେବାଶ୍ରମ', ଚିକିତ୍ସା ପାଇଁ ବୁଲା ବୁଲି ଔଷଧ ବଣ୍ଟା ଓ ଅନ୍ୟାନ୍ୟ ବ୍ୟବସ୍ଥା, ଗୋ ଚିକିତ୍ସା ପାଇଁ ଟ୍ରେନିଂ ଭେଟିରିନେରି ଆସିଷ୍ଟାଣ୍ଟ ସର୍ଜନ୍, ଆୟ ବଢ଼ାଇବା ପାଇଁ ନାନା ବ୍ଲକ୍‌ରେ ନିଯୁକ୍ତି, କୁଟୀର ଶିଳ୍ପ ଶିକ୍ଷାଦାନ ଆଦି, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରୁଥିଲେ ଉଚିତ ମୂଲ୍ୟରେ ତାର ବିକ୍ରୀ ବ୍ୟବସ୍ଥା, ସେଟଲ୍‌ମେଣ୍ଟ୍ ଆଗରେ ସେମାନଙ୍କ ସ୍ୱାର୍ଥ ସଂରକ୍ଷଣ ପାଇଁ ବ୍ୟବସ୍ଥା ଏ ଦିଗରେ ମଧ୍ୟ ଯତ୍ନ କରିଚାଲି।

ଆଦିବାସୀଙ୍କ ନୈରାଶ୍ୟ, ବିଷାଦ, ଅସନ୍ତୋଷ କଟିଲା, ଅବସ୍ଥାର ଉନ୍ନତି ହେଲା, ସାହୁକାର ଓ ପୂର୍ବର ଭୂମି ମାଲିକମାନେ ମଧ୍ୟ ଆଶ୍ୱସ୍ତ ହେଲେ, ଜମିବାଡ଼ି ବିଷୟରେ ଏତେକାଳ ଆଦିବାସୀମାନେ ଯେଉଁ ଚେଷ୍ଟା ଲଗାଇଥିଲେ, କଟେଇରେ ବିଚାର ହେଲାପରେ ଯେଉଁ ମକଦ୍ଦମାରେ ଫଳ ଯାହାହେଉ, ଆଦିବାସୀଙ୍କର ଆଉ ଆପତ୍ତି କରିବାକୁ କାରଣ ରହିଲା ନାହିଁ। ଦୁଇପକ୍ଷ ଭିତରେ ତିକ୍ତତା କମି ଆସିଲା।

ସେଠି ଦୁଇବର୍ଷ ରହି '୧୯୫୪ ଅକ୍‌ଟୋବରରେ ମୁଁ ସେଠୁ ବଦଳି ହେଲି। ସେଠି ମୋ ରହଣି ଭିତରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ବିସ୍ନଗଡ଼ା ଆସିଥିଲେ। 'ଭୂ ସତ୍ୟାଗ୍ରହ' ସରିବା ପରେ ଯେଉଁ ଶାନ୍ତି ଓ ଉତ୍ସାହର ଆଶାପ୍ରଦ ନୂତନ ପରିବେଶର ସୃଷ୍ଟି ହୋଇଥିଲା ତାହାର ପୃଷ୍ଠଭୂମିରେ ସେଠି ଆରମ୍ଭ ହେଲା ଭୂଦାନ କାର୍ଯ୍ୟ, କେତେ ଭୂମିମାଲିକ ସାହୁକାର ଦରିଦ୍ର ଭୂମିହୀନଙ୍କ ପାଇଁ ଭୂମି ଦାନ ଦେଲେ।

# ତେଲ୍ୟାଲଣି

୧୯୫୬ ମାର୍ଚ୍ଚ ମାସ ୧୦ ତାରିଖରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ରମା ଦେବୀ, ଆଚାର୍ଯ୍ୟ ହରିହର ଦାସ ଆଦି ପଦଯାତ୍ରୀମାନେ କୁକେନ୍ଦ୍ରୁ ବାହାରି ପଡ଼ିଲେ ଘୁଣ୍ଟୁପୁରକୁ ବିଷମକଟକ ଯିବା ସଡ଼କରେ । ତାଙ୍କ ଡାଇରୀରେ ଲେଖାଅଛି :

"କୁକେନ୍ଦ୍ରୁ ଛାଡ଼ି ପ୍ରଥମ ରହଣି 'କୋଣ୍ଡାଜାମୁ', ତେଲେଙ୍ଗାକଣ୍ଡ ଗାଁ । ଗଦବ ପ୍ରଜା । 'ୟୁକ୍' ରୋଗୀ ପ୍ରଥମେ ଦେଖିଲି । ଇଞ୍ଜେକ୍‌ସନ୍ ସରକାରୀ ଡାକ୍ତର ଦେଉଥିଲେ । ପ୍ରଥମେ ପ୍ରଥମେ ଡରି ଡରି ରୋଗୀମାନେ ବାହାରୁଥିଲେ । ଏବେ ଭଲ ଫଳ ପାଇବାରୁ ସମସ୍ତେ ବାହାରିଲେଣି । ଏହାର ଚିକିତ୍ସା ବ୍ୟବସ୍ଥା ହେବାପାଇଁ ଗ୍ରାମସେବକମାନଙ୍କୁ (ତା ଅର୍ଥ ଯେଉଁ 'କର୍ମୀ'ମାନେ 'ଗ୍ରାମସେବା' କାର୍ଯ୍ୟ କରନ୍ତି ସେହିମାନଙ୍କୁ) ଇଞ୍ଜେକ୍‌ସନ ଦେଇ ଶିଖାଇବା ଦରକାର ।

ଆଶ୍ରମ ସ୍କୁଲ୍ (ଏଠି ଏହା ଅର୍ଥ 'ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ'ର 'ସେବାଶ୍ରମ' ବା ପ୍ରାଥମିକ ବିଦ୍ୟାଳୟ; 'ଆଶ୍ରମ ସ୍କୁଲ' ବା ହାଇସ୍କୁଲ ନୁହେଁ) ଗୋଟିଏ ଚାଲିଛି । ମାତ୍ର ଶିକ୍ଷାର ପ୍ରଣାଳୀର ବୈଚିତ୍ର୍ୟ ଦେଖି ବିସ୍ମିତ ହେଲି । ତେଲେଙ୍ଗାରେ ପିଲାଏ ୯।୧୦ ଘଣ୍ଟା କଥାବାର୍ତ୍ତା ହେବେ ମାତ୍ର ପଢ଼ିବେ କେବଳ ଓଡ଼ିଆ । (କେଉଁଠି କେନ୍ଦ୍ର ସଂଖ୍ୟାଲଘୁ ସମ୍ପ୍ରଦାୟଭୁକ୍ତ ହୋଇଥାଉ ପଛେ, ପ୍ରତ୍ୟେକେ ନିଜ ନିଜ ମାତୃଭାଷାରେ ଆଦ୍ୟଶିକ୍ଷା ପାଇବା ଉଚିତ ବୋଲି ତାଙ୍କ ମତ ଏହି ମନ୍ତବ୍ୟରୁ ପରିସ୍ଫୁଟ ହେଉଛି ।) ଶିକ୍ଷକଙ୍କ ଆପତ୍ତି, —"୫।୬ ମାସ ହେଲା ଏମାନେ 'ବନା' ଘୋଷୁଛନ୍ତି' ।"

ସେଦିନ ପଦଯାତ୍ରୀମାନେ ଆଗକୁ ଯାଇ ଶୁଣ୍ଠି-ଢାମିଣିରେ ରାତକ ରହିଲେ । ସେତେବେଳେ ଏ ଗୋଟିଏ ଖୁବ୍ ବାଘଖିଆ ଅଞ୍ଚଳ, ପାହାଡ଼ ତଳେ ଗାଁ, ସେଠି

ଗୁଡ଼ିଏ ଅଛି ଦରିଦ୍ର କନ୍ଧ ଓ ତାଙ୍କର ଗାଁରେ ଶ୍ରେଷ୍ଠ ଆଶ୍ରମ ଘରଟିଏ, ଯୋଡ଼ିଏ ନାରୀକର୍ମୀ ରହି ଆଖପାଖ ଗାଁରେ ବୁଲି ଗ୍ରାମସେବା କାର୍ଯ୍ୟ କରୁଥିଲେ ।

ଗାଁଟିର ପିଠିଆଡ଼େ ତ ପର୍ବତମାଳା, ଲମ୍ବି ରହିଛି ଉତ୍ତରକୁ କୋଟିଆକନ୍ଧ-ମାଳକୁ, ଗାଁ ସାମ୍ନାରେ ପଶ୍ଚିମରେ ବିଷମକଟକ ରାସ୍ତା, ଉତ୍ତରକୁ ଯାଇଛି, ତା ସେପାଖେ ସଙ୍କୀର୍ଣ୍ଣ ଉପତ୍ୟକା ସେକରେ କୈଲାସକୋଠା ମାଳଭୂମି, ସଡ଼କରୁ ଏଇପାଖରୁ ଶୁଙ୍ଗ ଦିଶିବାକୁ ପଡ଼େ । ମଟ୍ଟୁଡ଼ିବେଳେ ଏ ଅଞ୍ଚଳକୁ ବି ଖୁବ ବାଧା ପଡ଼ୁଥିଲା ।

ମାର୍ଚ୍ଚ ‹ ୪ରେ ସେମାନେ ବିଷମକଟକ-ମୁହାଁ ହୋଇ ଆହୁରି ଆଗକୁ ଗ୍ଲଲେ । ଡାହାଣହାତ ଗଲା 'ଦୁର୍ଗୀ', ସେ ଗାଁରେ ଅଣ-ଆଦିବାସୀମାନେ ହିଁ ରହୁଥିଲେ, କେତେଜଣ ଧନୀଘର ଥିଲେ । ସେଠି ପ୍ରାଚୀନ ଘର ଦୁର୍ଗୀର ପାଇ, ନାଗବଂଶୀ କ୍ଷତ୍ରୀୟ, ସେ ଦୁର୍ଗୀର ପୁରାତନ 'ମୋଖାସା-ଦାର୍' (ଜମିଦାର) ଲୋକେ କହନ୍ତି 'ରଜା' ଓ ସେହି 'ରଜାଘର' ହିସାବରେ ଲୋକଙ୍କଠୁଁ ତାଙ୍କର ନାନା ପ୍ରକାର 'ମାମୁଲ' ପ୍ରାପ୍ୟ ଥାଏ । ତାଙ୍କ ପାଖେ ତମ୍ବାପଟ୍ଟ ସନନ୍ଦ ଥାଏ ଯହିଁରୁ ଜଣାପଡ଼େ ଯେ ହିନ୍ଦୁ ରଜାଙ୍କ ଅମଳରେ ଥରେ ସଓରା-ବିଦ୍ରୋହ ଦମନ କରିଥିବାରୁ ରଜା ତାଙ୍କୁ ସେ ମୋଖାସା ଦାନ କରିଥିଲେ । ସେ ଅଞ୍ଚଳଯାକରେ ତାଙ୍କ ପ୍ରାଚୀନ ଆଭିଜାତ୍ୟ ଯୋଗୁଁ ଲୋକଙ୍କ ଭିତରେ ତାଙ୍କର ବେଶି ସମ୍ମାନ ଥିଲା ।

ଅପେକ୍ଷାକୃତ ନୂଆ ଧନୀଙ୍କ ଭିତରେ ଥିଲେ ଶ୍ରୀ ଶ୍ୟାମ ପଣ୍ଡା । ତାଙ୍କ ବାପା ଶ୍ରୀ ମଧୁସୂଦନ ପଣ୍ଡା କନ୍ଧମାନଙ୍କଠାରୁ ଅନେକ ଭୂମି ନେଇଥିଲେ ଓ ବଡ଼ ଭୂମିମାଲିକ ହୋଇଥିଲେ । ଶ୍ରୀ ଶ୍ୟାମ ପଣ୍ଡା ବଡ଼ ଭୂମି ମାଲିକ, ବଡ଼ ଚାଷୀ ଓ ବଡ଼ କଣ୍ଟ୍ରାକ୍ଟର ହୋଇ ଖୁବ୍ ଧନୀ ହୋଇଥିଲେ । ଭୂ ସତ୍ୟାଗ୍ରହ ଆନ୍ଦୋଳନ ବେଳେ ଆଖପାଖ ଗାଁର କନ୍ଧମାନେ ତାଙ୍କ ବିରୁଦ୍ଧରେ "ଅପହୃତ ଜମି ଆନ୍ଦୋଳନ" କରିଥିଲେ ।

ଦୁର୍ଗୀ ଟପିଲେ ସଡ଼କକରରେ ଡାହାଣ ହାତ ପର୍ବତତଳେ କନ୍ଧ ଗାଁଟିଏ ମୁଣ୍ଡିଗୁଡ଼ା । ସେଠି 'ଉତ୍କଳ ନବଜୀବନ ମଣ୍ଡଳ' ଗୋଟିଏ ଗ୍ରାମସେବା କେନ୍ଦ୍ର ଖୋଲିଥାନ୍ତି, ମୁଖ୍ୟକର୍ମୀ ପୁରୀଜିଲ୍ଲା ସାକ୍ଷୀଗୋପାଳ ଅଞ୍ଚଳର ଜଣେ ବିବାହିତା ମହିଳା ଶ୍ରୀମତୀ ରତ୍ନମଣି ମିଶ୍ର, ସ୍ୱାମୀ ଶ୍ରୀ ଗୋପୀନାଥ ମିଶ୍ର ସେତେବେଳେ ପୁରୀ ଜିଲ୍ଲାରେ ସମବାୟ ବିଭାଗରେ ଇନ୍‌ସପେକ୍ଟର୍ । ତାଙ୍କ ସହିତ ଆଉଜଣେ ନାରୀକର୍ମୀ ଥାନ୍ତି ।

ମାଟିକାନ୍ଥ ଓ ପିଣ୍ଡାଘାସ ଛୁଆଣି ଚାଳ ଥାଇ ସାଧାରଣ ଘରଟିଏ ହେଲେ ସୁଦ୍ଧା ଆଶ୍ରମ ଘରଟି ସୁରୁଚି ଓ ସରଳ ଉପାଦାନରେ ସୁସଜ୍ଜିତ ହୋଇ ରହିଥାଏ, ତାର ସୁନ୍ଦର ପରିବା ବଗିଚା, ଫଳ ବଗିଚା, ଫୁଲ ବଗିଚା । ବହୁତ ଦୂରରୁ ଦୂରରୁ କନ୍ଧ

ଗାଁମାନଙ୍କରୁ ଲୋକେ ଆସନ୍ତି, ତାଙ୍କ ଅସୁବିଧା ଓ ସମସ୍ୟା କଥା କହନ୍ତି, ଶ୍ରୀମତୀ 'ଅପା' ସଙ୍ଗେ ସଙ୍ଗେ ତାହା ପେଡ଼ ବୁଝିଥାନ୍ତି ଓ ସମାଧାନ ପାଇଁ ଚେଷ୍ଟା କରନ୍ତି । ଆଶ୍ରମ ଦ୍ୱାରା ସୂତାକଟା ଶିକ୍ଷା, ପାଠପଢ଼ା, ନିଶା ନିବାରଣ, ପ୍ରୌଢ଼ଶିକ୍ଷା, ଶିଶୁ ଶିକ୍ଷା, ଶୃଙ୍ଖଳିତ ଜୀବନଯାପନ ଶିକ୍ଷା, ଗାନ୍ଧୀ ବିଚାର ପ୍ରସାର, ଖଦୀ ପ୍ରସାର, ଔଷଧ ବଣ୍ଟନ, କପା ଚାଷ, ନାନା କାର୍ଯ୍ୟ କରା ହେଉଥାଏ, ଆଦିବାସୀଙ୍କ ଭିତରୁ କର୍ମୀ ତିଆରି ଚାଲିଥାଏ, ଅନ୍ୟାୟ ଶୋଷଣ ବନ୍ଦ କରିବାକୁ ଚେଷ୍ଟା କରା ହେଉଥାଏ । ଶ୍ରୀମତୀ ମାଳତୀ ଦେବୀଙ୍କ ଦ୍ୱାରା ପରିଚାଳିତ ଡୁମ୍ବି ଗୁଡ଼ା କେନ୍ଦ୍ର ପରି ଏହା ମଧ୍ୟ ଏ ଅଞ୍ଚଳରେ ଗୋଟିଏ ସକ୍ରିୟ ଗ୍ରାମସେବା କେନ୍ଦ୍ର ହୋଇଥାଏ ଓ ଏହାର ପ୍ରଭାବ ଦୂର ଦୂରକୁ ପଡ଼ୁଥାଏ । ନ୍ୟସ୍ତସ୍ୱାର୍ଥ ଲୋକେ ଏ କେନ୍ଦ୍ର ବିରୁଦ୍ଧରେ ଲାଗିଥାନ୍ତି । ଶ୍ରୀମତୀ ନିଶାମଣି ଦେବୀଙ୍କ ଉଦ୍ୟମରେ ଏ ଗାଁରେ ଜଣେ ନିଷ୍ଠାପର, ସାହସୀ, ଉତ୍ସାହୀ ଆଦିବାସୀ କର୍ମୀ ବାହାରିଥାନ୍ତି, ସେ ଶ୍ରୀ ବୃନ୍ଦମୁରୁ କାଳିଆ ଦୋରା ବା 'କାଳିଆ ଭାଇ', ଜାତିରେ 'ଜାତପ ଦୋରା' ଅର୍ଥାତ୍ 'ବୃଢ଼ା କନ୍ଧ' । ତାଙ୍କ ସ୍ତ୍ରୀ ଓ ଝିଅମାନେ ମଧ୍ୟ ଶିକ୍ଷିତା ହେଲେ ।

ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ରମା ଦେବୀ ଆଦି ସେଦିନ ମୁଣ୍ଡିଗୁଡ଼ାରେ ରହିଗଲେ । ତହିଁ ଆରଦିନ ମାର୍ଚ୍ଚ ୧୫ରେ ବାଟ ଧରିଲେ ।

ମୁଣ୍ଡିଗୁଡ଼ା ଛାଡ଼ି ସେମାନେ ଗୁଣୁପୁର-ବିଷମକଟକ ସଡ଼କେ ସଡ଼କେ ବିଷମକଟକ ନ ଯାଇ ସଡ଼କ ଛାଡ଼ିଦେଇ ବାଁକୁ ଚାଲିବାଟରେ ଗଲେ, ଉଦ୍ଦେଶ୍ୟ ଥିଲା ନା'ଟ୍ ବାଟରେ ଯାଇ ଜାମୁଗୁଡ଼ା ଆଶ୍ରମ ଦେଖି, ମୁମ୍ବି ଗୁଡ଼ା ଆଶ୍ରମ ଦେଖି ରାୟଗଡ଼ା-ବିଷମକଟକ ସଡ଼କ ଧରିବା । ଏସବୁ ଅଞ୍ଚଳ ଗତବର୍ଷର ମରୁଡ଼ିଯୋଗୁଁ ଖୁବ୍ ଅନାହାରକ୍ଲିଷ୍ଟ ହୋଇ ପଡ଼ିଥିଲା । ମାର୍ଚ୍ଚ ୧୫ରେ ସେମାନେ ଜାମୁଗୁଡ଼ା ଗାଁରେ ପହଞ୍ଚିଲେ, ସେଠି ଗୋଟିଏ ଗ୍ରାମସେବା କେନ୍ଦ୍ର ଥିଲା, ଯୋଡ଼ିଏ ମହିଳାକର୍ମୀ ସେ କେନ୍ଦ୍ର ପରିଚାଳନା କରୁଥିଲେ, ସେବାକେନ୍ଦ୍ରମାନଙ୍କରେ ଯାହା ଯାହା ହୁଏ, ହେଉଥିଲା, କନ୍ଧମାନେ ତା ପ୍ରଭାବରେ ଆଗଠୁଁ ବଦଳିଥିଲେ । ରାତିକ ସେଠି ରହିଲେ ।

ମାର୍ଚ୍ଚ ୧୬ରେ ଜାମୁଗୁଡ଼ାରୁ ବାହାରି ସେମାନେ ଡୁମ୍ବି ଗୁଡ଼ା ବାଟ ଧରିଲେ । ବାଟରେ ପଡ଼ିଲା ଛୋଟ କନ୍ଧ ଗାଁ ଟିଏ, ପୁଟିଗୁଡ଼ା । ସାମ୍ନାରେ ବଣ ଭର୍ତ୍ତି, ଉଚ୍ଚ ପର୍ବତ, ପୁଟିଗୁଡ଼ା ପର୍ବତ । ଏ ସମସ୍ତେ ପ୍ରାୟ ଭୂମିହୀନ, ପର୍ବତରେ ପୋଡୁଚାଷ କରନ୍ତି, ଶିକାର କରନ୍ତି । ମରୁଡ଼ି ଅନାହାରରେ ଏ କନ୍ଧଙ୍କର ବିଶେଷ ବାଧିକା ହୋଇଥିଲା । ସେହି ୧୬ ତାରିଖ ଦିନ ଚାଲି ଚାଲି ସେମାନେ ଡୁମ୍ବି ଗୁଡ଼ାରେ ପହଞ୍ଚିଲେ । ଡୁମ୍ବି ଗୁଡ଼ା ଗୋଟିଏ ବଡ଼ କନ୍ଧ ଗାଁ, ଆଖପାଖରେ ବି ସେପରି ଅନେକଗୁଡ଼ିଏ କନ୍ଧ ଗାଁ ।

ରଚନାତ୍ମକ କର୍ମୀ ବହୁତ, କିନ୍ତୁ ଆଜି ତାଙ୍କ ହାତରେ କ୍ଷମତା ଥିଲା, ସମସ୍ୟା ଯେମିତି ଗୁଣୁପୁର ସଓରା ସମତଳ ଉପତ୍ୟକାରେ, ଏଠି ବି ସେମିତି, ରାୟଗଡ଼ା ସବ୍‌ଡିଭିଜନ-ସାରା ନାନା ଆଦିବାସୀ ଗାଁରେ ସେମିତି । ଭୂମିହୀନ, ଭାଗଚାଷରେ ଶୋଷିତ, ସ୍ଥାନେ ସ୍ଥାନେ ଭାଗଚାଷ ଭୂମିରୁ ବିତାଡ଼ିତ, ଓଜନ ଓ ମାପରେ ପ୍ରତାରିତ, ନାନା ଉପାୟରେ ଶୋଷିତ, ମଜୁରି ଊଣା, କୂଲି କାମ କରିବାକୁ ସୁଯୋଗ ଅଳ୍ପ, କେବଳ ଏଥିକି ଯେ ପାଖରେ ପର୍ବତ, ବାଘ ଖାଉ, ଫାରେଷ୍ଟ ଧରୁ, ତଥାପି ପାହାଡ଼ ଗାଲ୍‌ରେ ଡିପରେ କିଛି 'ଡଙ୍ଗର ଚାଷ' କରି ହୁଏ, ବଣରୁ 'ଶାଗଟା ଡାଳଟା, ମୂଳଟା' ଖୋଜି ଆଣି ହୁଏ । ମଡ଼ୁଡ଼ି ଖାଦ୍ୟାଭାବ ବେଳେ ଏ ଗାଁ ଲୋକେ ଖୁବ୍ କଷ୍ଟ ପାଉଥିଲେ ।

ଏହି ଗାଁକୁ କର୍ମକେନ୍ଦ୍ର କରିଥିଲେ ପ୍ରସିଦ୍ଧ ନାରୀକର୍ମୀ ଶ୍ରୀମତୀ ମାଳତୀ ବିଶ୍ୱାଳ ଓ ତାଙ୍କ ସହକର୍ମିଣୀ ଶ୍ରୀମତୀ କେତକୀ ମହାନ୍ତି । ତାଙ୍କରି ଉଦ୍ୟମରେ ଏ ଗାଁରେ ଶିକ୍ଷା, ସଭ୍ୟତା ପ୍ରସାର, ଅଭ୍ୟାସ ପରିବର୍ତ୍ତନ, ନିଶା ନିବାରଣ, ଅନ୍ୟାୟ ଅତ୍ୟାଚାର ଶୋଷଣ ନିବାରଣ, ଭୟ ଦୂରୀକରଣ, ଉଦ୍ୟମ ଓ ଉଦ୍‌ଯୋଗ ପ୍ରବର୍ତ୍ତନ, କର୍ମୀ ସଂଗଠନ, ସୂତାକଟା, କପାଚାଷ, ଖଦୀ ବ୍ୟବହାର, ଗାନ୍ଧୀ ବିଚାର, ପ୍ରସାର, ଔଷଧ ବଣ୍ଟନ, ଶିଶୁ କଲ୍ୟାଣ, ନାରୀ ଶିକ୍ଷା ଓ ପ୍ରୌଢ଼ ଶିକ୍ଷା, ନାନା କାର୍ଯ୍ୟ ହେଉଥିଲା ଓ ଡୁମ୍ରିଗୁଡ଼ା ସେ ଅଞ୍ଚଳରେ ପ୍ରଭାବ ପକାଇଥିଲା ଓ କିଛି ଗାଁମାନଙ୍କର ଏକପ୍ରକାର ଦିଗ୍‌ଦର୍ଶକ ହୋଇଥିଲା, ନେତୃତ୍ୱ ନେଇଥିଲା । ଆଦିବାସୀ ସେବା କରିବାକୁ ସେ ଗ୍ରାମରୁ କେତେଜଣ ନାରୀକର୍ମୀ ଓ ପୁରୁଷ କର୍ମୀଙ୍କୁ ସେ ତାଲିମ୍ ଦେଇ ତିଆରି କରିଥାନ୍ତି । ତହିଁରୁ ଜଣେ ଶିବକନ୍ଧ, 'ଶିବ ଭାଇ' ବୋଲି ଜଣାଶୁଣା । ୧୯୫୩ ଅପରାହ୍ଣରେ ସେ ପାଖ ପାହାଡ଼ ଗାଲ୍‌ରେ ତାଙ୍କ କାନ୍ଦୁଲ କିଆରୀକୁ ଯାଇଥିଲେ, ମାଙ୍କଡ଼ ପଲ କାନ୍ଦୁଲ ଖାଇ ଯାଉଥିଲେ ବୋଲି ଓ ସେଠି ତାଙ୍କୁ ମଣିଷଖିଆ ମହାବଳ ବାଘ ଧରି ଖାଇଦେଲା । ତାଙ୍କ ନାଁ ଅନୁସାରେ ମୁଁ ଲେଖିଲି ଉପନ୍ୟାସ "ଶିବ ଭାଇ" । ସେଠି ନାନା ରଚନାତ୍ମକ କର୍ମ ଚାଲିଥାଏ, କେନ୍ଦ୍ରଟି କସ୍ତୁରବା ଗାନ୍ଧୀ ସ୍ମାରକନିଧିରୁ ସାହାଯ୍ୟ ପାଉଥିଲା ।

ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀ ସେଠି ତହିଁ ଆରଦିନ ମାର୍ଚ୍ଚ ୧୭ ତାରିଖ ଦିନଟିଏ ରହିଲେ, ଆଖପାଖ ଗାଁ ବୁଲି ଦେଖିଲେ, ସେ ଅଞ୍ଚଳସାରାର ନାନା ଗାଁର ଆଦିବାସୀ ସ୍ତ୍ରୀ ପୁରୁଷ ତାଙ୍କୁ ଦେଖାକଲେ ।

ମାର୍ଚ୍ଚ ୧୮ ତାରିଖରେ ଡୁମ୍ରିଗୁଡ଼ାରୁ ବାହାରି ସେମାନେ ସଡ଼କ ଧରି ବିଷମକଟକ ଗଲେ, ରାତିରେ ସେଠି ରହଣି । ମାର୍ଚ୍ଚ ୧୯ ତାରିଖରେ ୧୫ ମାଇଲ ଚାଲି ମୁନିଗୁଡ଼ାରେ ଯାଇ ରହିଲେ, ବାଟରେ ହାଟଶିଙ୍ଗୁଲାରେ ଦିନବେଳେ ରହିଥିଲେ । ମାର୍ଚ୍ଚ ୨୦ ତାରିଖରେ ରହିଲେ ଦନ୍ଦିଖାଲ୍‌ରେ ।

ମାର୍ଚ୍ଚ ୬୧ ତାରିଖରେ ସେମାନେ ଦନ୍ଧଖାଲ୍‌ରୁ ଚାଲିଗଲେ ଅମ୍ବାଦୋଳା । ସେଦିନ ଗୋପବାବୁ ତାଙ୍କ ଡାଇରି ଖାତାରେ 'ଅମ୍ବାଦୋଳାରେ କଥାବାର୍ତ୍ତା' ଶିରୋନାମା ଦେଇ ଲେଖିଛନ୍ତି :

"... ... ... M. C.ଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ କଥା—

ଭବିଷ୍ୟତ୍ ସମାଜ ବ୍ୟବସ୍ଥା ବା ରାଜ୍ୟ ବ୍ୟବସ୍ଥାରେ ସେମାନଙ୍କର ବା ବୁଦ୍ଧିଜୀବୀଙ୍କର ସ୍ଥାନ କେଉଁଠାରେ ତାହା ଭଲ ରକମ ବୁଝିନେଇ ସେହି ସ୍ଥାନ ଆଗରୁ ଦଖଲ କରିବା ଉଚିତ । ଏ ବିଷୟରଧାରା ତାଙ୍କର ହେଉନାହିଁ । ଗରିବ ଲୋକେ ମାଲିକ ହେବେ ଏକଥା ସେ ବୁଝୁନାହାନ୍ତି । ମଧ୍ୟବିତ୍ତ ଶ୍ରେଣୀଙ୍କ ବୁଦ୍ଧି ଯଦି ଗରିବଙ୍କ କାମରେ ନ ଆସେ ତାହେଲେ ତାଙ୍କ ବୁଦ୍ଧି ପାଇଁ ସମାଜ ବା ରାଷ୍ଟ୍ର ତାଙ୍କୁ ପୋଷିବ କାହିଁକି ? ବର୍ତ୍ତମାନ ଏ ପ୍ରଶ୍ନ ଉଠିଲାଣି ମଧ୍ୟବିତ୍ତଶ୍ରେଣୀ ଲୋକେ ଛଳେବଳେ କୌଶଳେ ସେହିପରି ଏକ ଅର୍ଥ ବାଢ଼ୁଛନ୍ତି, କିନ୍ତୁ ପ୍ରକୃତ ପ୍ରତ୍ୟକ୍ଷ ସେବା ବା କାମ ନ ଦେଖିଲେ ଜାଗ୍ରତ ଜନତା କେତେକାଳ ଏପରି ଭୁଲିବ ?

ଡାକ୍ତର ପ୍ରତ୍ୟକ୍ଷ ସେବାଦ୍ୱାରା ଗରିବ ଜନତାଙ୍କୁ ଏବଠୁ ବୁଝାଇବା ଦରକାର ଯେ ତାଙ୍କର ଡାକ୍ତରି ବିଦ୍ୟାଦ୍ୱାରା ଗରିବ ଲୋକଙ୍କର ଉପକାର ହେବ ।

ଆଗରୁ ସାବଧାନ ହେଲେ ଭଲ, ଶାନ୍ତିରେ ସବୁ ହୋଇଯିବ । ନ ହେଲେ ତାଙ୍କୁ ଗୋଟାଏ Shock ବା ଧକ୍କାର ଆବଶ୍ୟକତା ଉପୁଜିବ । ଧକ୍କା ପାଇଲେ ବଦଳିଲେ ଟିକିଏ ଖରାପ ହୋଇଥାଏ, ଉଭୟଙ୍କ ପ୍ରତି କ୍ଷତିକାରକ ହୋଇଥାଏ । ତେବେ ଏହି ମଧ୍ୟବିତ୍ତ ଶ୍ରେଣୀର ଲୋକେ ହିଁ ଧକ୍କା ଦେବାରେ ସାହାଯ୍ୟ କରିବେ ।

ଏହି ମନୋଭାବରେ କଥାବାର୍ତ୍ତା ହେଉ ହେଉ ପଞ୍ଚ (ଅର୍ଥାତ୍ କେନ୍ଦ୍ର ପଞ୍ଚ) ମହାଜନଙ୍କ ଏକ ସ୍କୁଲ୍‌ଘରରେ ପାଞ୍ଚ ହଜାର ଟଙ୍କା ଖର୍ଚ୍ଚ କରିବା କଥା କାନରେ ପଡ଼ିଲା । ପଞ୍ଚ ମହାଜନଙ୍କୁ କହିଲି ଯେ ଯେଉଁ ଶତ ଶତ ଗ୍ରାମବାସୀଙ୍କ ଶ୍ରମ ଉପରେ ଆପଣଙ୍କର ଏସବୁ ସମ୍ପଦ, ସେମାନେ ପାଣି ବିନା ମରୁଛନ୍ତି, ଔଷଧ ବିନା ମରୁଛନ୍ତି, ଜମି ବିନା, କାମ ବିନା ମରୁଛନ୍ତି, ତାଙ୍କ ପାଇଁ ତ କିଛୁ କରି ଦିଅନ୍ତୁ । ପାଞ୍ଚ ହଜାର ଟଙ୍କାରେ ପାଞ୍ଚଟା କୂଅ ହୋଇଥାନ୍ତା, ସେମାନେ ପ୍ରତ୍ୟକ୍ଷରେ ବୁଝିଥାନ୍ତେ ତାଙ୍କ ବଡ଼ପଣର ବେପାରରେ କେଉଁ ସ୍ଥାନ ?"

୧୯୫୬ ମାର୍ଚ୍ଚ ୨୨ ତାରିଖରେ ସେ ଲାଞ୍ଜିଗଡ଼ ପହଞ୍ଚିଲେ, ରହିଲେ, ଏଥର କଳାହାଣ୍ଡି ଜିଲ୍ଲା ହେଲା । ୨୩ ତାରିଖରେ ରୁପ୍ରା ରୋଡ୍‌ରେ ରହିଲେ, ୨୪ ତାରିଖରେ ଯାଇ କେଶିଙ୍ଗାରେ ରହଣି କଲେ । ସେଦିନ କମ୍ବୁରପଡ଼ାରେ ସଭା ହେଲା, ରାତିରେ

ଆଖପାଖର ଅନେକ ଧନୀ ଲୋକ ଓ ପାଠୁଆ ଲୋକ ଆସି ତାଙ୍କ ସଙ୍ଗରେ ଆଲୋଚନା କଲେ ।

୨୫ ତାରିଖରେ ସେ ବେଲଗାଁ ପହଞ୍ଚିଲେ ଓ ଅରଓଲ କମ୍‌ସର୍ ପହଞ୍ଚି ସେଠି ରହିଲେ । ହୋଇଗଲା ବଲାଙ୍ଗିର ଜିଲ୍ଲା । ସେଦିନର ପଦଯାତ୍ରାରେ ଶ୍ରୀମତୀ ରମା ଦେବୀ, ଆଚାର୍ଯ୍ୟ ହରିହର, ଗୋପବାବୁ ଓ ଅନ୍ୟାନ୍ୟମାନଙ୍କୁ ୧୭ ମାଇଲ ବାଟ ଚାଲିବାକୁ ପଡ଼ିଥିଲା, କିନ୍ତୁ ଦିନକେ ଏତେ ବାଟ ଚାଲିବା ଏ ପଦଯାତ୍ରାରେ ସେମାନଙ୍କ ପକ୍ଷରେ ନୂଆ ନ ଥିଲା ।

କମ୍‌ସରରେ ଗ୍ରାମସେବା କରୁଥାନ୍ତି ଶ୍ରୀ ଅଲେଖ ପାତ୍ର ଓ ସେଠି ସେ ଅଞ୍ଚଳରେ ନାନା ପ୍ରକାର ରଚନାତ୍ମକ କାର୍ଯ୍ୟ ଓ ନାନା ପ୍ରକାର ସମାଜସେବା କାର୍ଯ୍ୟ କରୁଥାନ୍ତି, ତାପରେ ସେ ସେହି ବଲାଙ୍ଗିର ଜିଲ୍ଲାରେ 'କେନ୍ଦୁମୁହାଣ'ରେ ଗୋଟିଏ ନୂଆ କର୍ମକେନ୍ଦ୍ର ଖୋଲିଥିଲେ ।

ଶ୍ରୀ ଅଲେଖ ପାତ୍ର ପୁରୀଜିଲ୍ଲାର ବାସିନ୍ଦା । ସେ କଲେଜ୍ ଛାଡ଼ି ୧୯୪୨ ଆନ୍ଦୋଳନରେ ଯୋଗଦେଇ ଜେଲ୍ ଗଲେ, ଜେଲ୍‌ରୁ ପଳାଇ କଲିକତା ଯାଇ ସେଠି ନିଜ ପରିଚୟ ଲୁଚାଇ ଜଣକ ଘରେ ଚାକର ରହିଲେ, ପୁଣି ସେଠୁ ଚାଲି ଆସି ଆନ୍ଦୋଳନରେ ମିଶିଲେ, ପୁଣି ଜେଲ୍ ଗଲେ ଓ ୧୯୪୪ରେ ଖଲାସ ହେଲେ । ତାପରେ ସେ କେନ୍ଦୁପାଟଣା ଯାଇ ମେଠ ଶିବିରରେ ଯୋଗଦେଇ ତାଲିମ୍ ନେଲେ ଓ ସେବାଗ୍ରାମ୍ ଯାଇ ୧୯୪୪-୪୬ ସେଠି 'ସେବାଗ୍ରାମ୍ ଖଦୀ ବିଦ୍ୟାଳୟ'ରେ ଖଦୀ ଟ୍ରେନିଂ ନେଲେ । ତାହାପରେ ସେ 'ସମଗ୍ର ଗ୍ରାମସେବା ଯୋଜନା' କାର୍ଯ୍ୟକ୍ରମ ଅନୁସାରେ କମ୍‌ସର୍‌ରେ ଗ୍ରାମସେବା କେନ୍ଦ୍ର କାମ କଲେ, ଭୂଦାନ କାମ ଲାଗିବାରୁ ଭୂଦାନ କାମ କଲେ ଓ ସେହି କାମରେ ଗୋପବାବୁଙ୍କ ସଙ୍ଗେ କିଛିଦିନ ରହିଥିଲେ ।

କମ୍‌ସର୍‌ରେ ଗୋପବାବୁଙ୍କ ପାଖକୁ ବହୁତ ଲୋକ ଆସିଲେ, ସଭା ହେଲା, ଗୋପବାବୁ ସଭାରେ ଭାଷଣ ଦେଇ ଭୂଦାନ ପ୍ରଚାର କଲେ । ଲୋକଙ୍କ ଭିତରେ ବହୁତ ଉତ୍ସାହ ଦେଖାଗଲା ।

ତହିଁ ଆରଦିନ ୨୬ ତାରିଖରେ ସେ କେନ୍ଦୁମୁହାଣ ଗଲେ, ସେଠି ବି ସେହିପରି ଜନସମାଗମ, ସଭା, ଭୂଦାନ ପ୍ରଚାର ହେଲା ଓ ବହୁତ ଉତ୍ସାହ ଦେଖାଗଲା । ତାହାପରେ କେନ୍ଦୁମୁହାଣରେ ସେ ଆଉ ତିନିଦିନ ରହିଲେ, ଆଖପାଖ ଗାଁ ବୁଲି ଦେଖିଲେ । ସେ ଦେଖିଲେ, ଗାଁ ଗାଁକେ କୁଷ୍ଠରୋଗୀ । ଲୋକେ ତାଙ୍କ ପାଖେ ଅଭିଯୋଗ କରୁଥାନ୍ତି ଯେ ସେଠି ଢେଙ୍କାନାଳୀ ଅତ୍ୟାଚାର ଚାଲିଛି, ମଦନପୁର

ଜମିଦାରଙ୍କ ଲୋକେ ଜୁଲୁମ୍ କରୁଛନ୍ତି, ମଝି-ସର୍ଦ୍ଦାର ଓ ଜମିଦାର ଉଠି ମାଙ୍ଗି ବସିଛନ୍ତି ।

ମାର୍ଚ୍ଚ ୩୦ରେ ସେ ଭଙ୍ଗରମୁଣ୍ଡା ହୋଇ ସର୍ଣ୍ଣେଇଁଲରେ ପହଞ୍ଚିଲେ, ସେଦିନ ସେଠି ରହଣି ହେଲା । ସେଠି ଶ୍ରୀ ଗୋପବନ୍ଧୁ ଚୌଧୁରୀ ମାରୱାଡ଼ି ବ୍ୟବସାୟୀମାନଙ୍କ ସହିତ କଥାଭାଷା ହେଲେ । ଏହି ସହରର ସ୍ତ୍ରୀ ଲୋକମାନଙ୍କର ଗୋଟିଏ ସଭା ହେଲା, ସେଠି ଶ୍ରୀମତୀ ରମା ଦେବୀ ଭାଷଣ ଦେଲେ ।

ମାର୍ଚ୍ଚ ୩୧ରେ ସେମାନେ ନୂଆପଡ଼ାରେ ପହଞ୍ଚିଲେ । ସେଠି ବି ମହିଳା ସଭା ହୋଇଥିଲା । ସେମାନେ ଅପ୍ରେଲ ପହିଲାରେ ମହଲେଇରେ ରହିଲେ ଓ ଅପ୍ରେଲ ୨ରେ ବଲାଙ୍ଗିରରେ ପହଞ୍ଚିଲେ ।

ବଲାଙ୍ଗିର ହାଇସ୍କୁଲରେ ବଡ଼ ସଭା ହେଲା, ଅନେକ ଲୋକ । ବଲାଙ୍ଗିର ସହରରେ ଅନ୍ୟାନ୍ୟ ନାନା ସ୍ଥାନରେ ସଭା ହେଲା, ସେଠି ଅପ୍ରେଲ ୩ ତାରିଖଟି ବି ରହଣି ହେଲା ।

ଅପ୍ରେଲ ୪ ତାରିଖରେ ସେ ଖଲିଆପାଲି ପହଞ୍ଚିଲେ, ସ୍ଥାନଟି ଭୀମ ଭୋଇଙ୍କ ସାଧନାପୀଠ ଓ ସମାଧିସ୍ଥଳ ବୋଲି ପ୍ରସିଦ୍ଧ । ସେଠି ତାଙ୍କ ପାଖକୁ ବହୁତ ଆଉ ବହୁତ ଲୋକ ଆସିଲେ, ସଭା ହେଲା । ସେ ଅଞ୍ଚଳରେ ପାଣି ଅଭାବ ବେଶି ଓ ମଦନିଶା ବେଶି ବୋଲି ସେ ଲକ୍ଷ୍ୟ କରୁଥାନ୍ତି ।

ଅପ୍ରେଲ ୫ରେ ସେ ଖଲିଆପାଲିରୁ ବାହାରି ବଲାଙ୍ଗିର ଜିଲ୍ଲା ଡେଇଁ ସମ୍ବଲପୁର ଜିଲ୍ଲାର ବରଗଡ଼ ସବ୍‌ଡିଭିଜନ ଅନ୍ତର୍ଗତ ପଦ୍ମପୁର ତହସିଲରେ ପ୍ରବେଶ କଲେ ଓ ଜାମୁଟ୍-ବାହାଲ୍ ଗାଁରେ ରହଣି କଲେ ।

ଅପ୍ରେଲ ୬ରେ ସେ ଗାଇସିଲେଟ୍ ଗାଁରେ ପହଞ୍ଚିଲେ । ଆଗରୁ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କଠାରୁ ଚିଠି ପାଇ ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟିର ସେକ୍ରେଟେରୀ ଶ୍ରୀ ମଦନ ମୋହନ ସାହୁ ଲୋକଙ୍କୁ ଆଗରୁ କହିଥିଲେ ଓ ସେମାନଙ୍କୁ ପାଛୋଟି ନେବାକୁ ଗାଇସିଲେଟ୍ ଆସି ଉପସ୍ଥିତ ରହିଥିଲେ । ପଛେ ସେହିବର୍ଷର ଜୁଲାଇ ମାସଠାରୁ ଶ୍ରୀ ସାହୁ ଭୂଦାନ କାର୍ଯ୍ୟରେ ବ୍ୟାପୃତ ରହିଲେ । ତାହାର ଉଣାବର୍ଷ ପୂର୍ବରୁ ୧୯୪୯ରୁ ଗୋପବାବୁ ଓ ରମା ଦେବୀଙ୍କ ସହିତ ତାଙ୍କର ପରିଚୟ ଥିଲା ଓ ୧୯୪୯ରୁ ୧୯୫୦ ଯାଏ ବଣ-ରାମଚନ୍ଦ୍ରପୁରରେ ଥିବା ମୌଳିକ ବିଦ୍ୟାଳୟରେ ସେ ଆଦିବାସୀ ସେବକ ତାଲିମ୍ କେନ୍ଦ୍ରରେ ଓ ଆଦିବାସୀ ସେବକ ତାଲିମ୍ ପକ୍ଷରେ ଶିକ୍ଷକ ହୋଇଥିଲେ । ଗାଇସିଲେଟ୍‌ରେ ଗୋପବାବୁ ଭୂଦାନ ପ୍ରଚାର କଲେ ଓ ଶ୍ରୀ ମଦନ

ମୋହନ ସାହୁ କହନ୍ତି ଯେ ଏଇଠି ହିଁ ଗୋପବାବୁ ପ୍ରଥମଥର 'ଭୂଦାନ' ଶବ୍ଦଟି ତୁଣ୍ଡରେ ଧରଲେ, ପୂର୍ବେ ଧର ନ ଥିଲେ ।

ଅପ୍ରେଲ ୭ ତାରଖରେ ପଦଯାତ୍ରୀମାନେ ବାଘାପାଲି ଗଲେ, ସେଠିକୁ ବହୁତ ଲୋକ ଆସିଲେ, ସଭା ହେଲା, ଭୂଦାନ ପ୍ରଚାର ହେଲା ଓ ଭୂଦାନ ପାଇଁ ଗୀତ ବୋଲା ହେଲା, ଗୀତ ଶ୍ରୋତାମାନଙ୍କୁ ଖୁବ୍ ଭଲ ଲାଗିଥିଲା ଓ ଜଣେ ବୃଦ୍ଧା ଗୀତରେ ଭୋଳ୍ ହୋଇ ନାଚଲେ ।

ଅପ୍ରେଲ ୮ରେ ସେ ପଦ୍ମପୁରରେ ପହଞ୍ଚିଲେ । ଗୃହଆଡ଼େ ଗାଁ ମାନ ଥାଇ ପଦ୍ମପୁର ଗୋଟିଏ ସହରଆ ବଡ଼ ପେଣ୍ଠ ଗାଁ, ସେଠ 'ବୋଡ଼ାସମ୍ବର' ଜମିଦାରଙ୍କ ଘରୁ ଓ କଚେରୀ, ପଦ୍ମପୁର ତହସିଲର ମୁକାମ ଓ କେତେ ଅନ୍ୟାନ୍ୟ ଅନୁଷ୍ଠାନ । ଜମିଦାରୀଟି ବଡ଼ ଓ ପୁରୁଣା । ସମ୍ବଲପୁର ଓ ସମ୍ବଲପୁର-ଗଡ଼ଜାତ ଆଦିବାସୀମାନଙ୍କରେ କନ୍ଧଶ୍ରେଣୀସ୍ଥ ଅନ୍ୟ ଗୋଟିଏ ଆଦିବାସୀ ଜାତିର ଲୋକ ଅଛନ୍ତି, ସେମାନେ 'ବିଞ୍ଝାଲ' । ବିଞ୍ଝାଲମାନେ ବହୁ ପରିମାଣରେ ହିନ୍ଦୁ ସଂସ୍କୃତିଦ୍ୱାରା ପ୍ରଭାବିତ, କନ୍ଧଙ୍କ ଜାତି-ପଦବୀ 'କନ୍ଧ', 'ମାଝି', 'ସାଓଁତା', 'ପ୍ରଧାନ' ଆଦି; ବିଞ୍ଝାଲଙ୍କ ଜାତି-ପଦବୀ 'ବରିହା' (ଅର୍ଥ 'ବର୍ଣ୍ଣଶଙ୍କର') । ଏମାନଙ୍କ ଭିତରେ ଯେଉଁମାନେ ଅପସ୍ଥାପନ୍ନ, ଶିକ୍ଷିତ, ସେମାନେ ଦାବୀ କରିଥାନ୍ତି ଯେ 'ବିଞ୍ଝାଲ' ଶବ୍ଦ 'ବିନ୍ଧ୍ୟାଚଳ' ଶବ୍ଦରୁ ଅପଭ୍ରଷ୍ଟ, ସେମାନଙ୍କ ପୂର୍ବପୁରୁଷ ବିନ୍ଧ୍ୟାଚଳ ପର୍ବତରୁ ଏଠିକି ଆସିଥିବା କ୍ଷତ୍ରୀୟ ବଂଶର, ଇତ୍ୟାଦି । ପଦ୍ମପୁରର ଜମିଦାର ସେହି ବିଞ୍ଝାଲ ଜାତିର । ପଦ୍ମପୁର ଜମିଦାରଙ୍କ ଭାଇ ଶ୍ରୀ ଲାଲ୍ ରଣଜିତ୍ ସିଂ ବରିହା ବିଲାତ ଯାଇ ସେଇଠି ପଢ଼ିଲେ, ସାହେବ୍ କନ୍ୟା ବିଭା ହେଲେ, ସେଠ ରହି ଉଡ଼ାଜାହାଜରେ କାମ କରୁଥିଲେ, ଫେରି ଆସି କଂଗ୍ରେସରେ ମିଶିଥିଲେ ଓ ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳରେ କେତେବର୍ଷ ମନ୍ତ୍ରୀ ହୋଇଥିଲେ, ତାଙ୍କର ଅକାଳମୃତ୍ୟୁ ହୋଇଥିଲା । କବି ଶ୍ରୀ ଗଙ୍ଗାଧର ମେହେର ୧୯୧୭ରେ ସରକାରୀ ଚାକରିରୁ ପେନ୍‌ସନ୍ ନେଇ ପଦ୍ମପୁରରେ କିଛିକାଳ ରହିଥିଲେ, ସେଠି ସେ ଜମିଦାରଙ୍କ ଅଦାଲତରେ ଅଡ଼ିଟର ଭାବେ ନିଯୁକ୍ତ ପାଇଥିଲେ । ପଣ୍ଡିତ ଶ୍ରୀ ରାଘବ ମିଶ୍ର ଲେଖିଛନ୍ତି ଯେ ଗଙ୍ଗାଧର ସେଠି 'ପ୍ରଣୟବଲ୍ଲରୀ' କାବ୍ୟ ଲେଖିଥିଲେ ଓ 'ଅର୍ଘ୍ୟଥାଳି' କବିତା ସଙ୍କଳନ ସମ୍ପୂର୍ଣ୍ଣ କରିଥିଲେ । ଜମିଦାର ଶ୍ରୀ ଲାଲ୍ ରାଜେନ୍ଦ୍ର ସିଂହବରିହା କବିଙ୍କୁ ଗୋଟିଏ ଗାଁ ଦାନ କରିଥିଲେ ଓ ସେ ଗାଁ ନା ରହିଲା "କବିବରପୁର" ।

ଶ୍ରୀ ଗୋପବନ୍ଧୁ ଚୌଧୁରୀ ସେଠି ପହଞ୍ଚିଲାବେଳକୁ ଜମିଦାରଙ୍କ ଦେୱାନ୍ ଥିଲେ ଜଣେ ଉଚ୍ଚଶିକ୍ଷିତ ଜନପ୍ରିୟ ବ୍ୟକ୍ତି, ସମ୍ବଲପୁର ନିବାସୀ ଶ୍ରୀ ଅନିରୁଦ୍ଧ ମିଶ୍ର, ପ୍ରକୃତରେ ଜମିଦାରୀର ସବୁ ଦାୟିତ୍ୱ ସେ ହିଁ ପରିଚାଳନା କରୁଥିଲେ ଓ ଜମିଦାର

ତାଙ୍କ ପରାମର୍ଶ ଗ୍ରହଣ କରୁଥିଲେ । ଶ୍ରୀ ମଦନ ମୋହନ ସାହୁଙ୍କଠାରୁ ଗୋପବାବୁଙ୍କ ଭୂଦାନ ଯାତ୍ରା କଥା ଶୁଣି ସେ ଅନୁପ୍ରାଣିତ ହୋଇଥିଲେ । ସେ ତାଙ୍କ ନିଜ ଜମିରୁ ୬୦ ଏକର ଜମି ଭୂଦାନ ଦେବ ବୋଲି ଘୋଷଣା କଲେ ଓ ଜମିଦାରଙ୍କୁ ମଧ୍ୟ ପରାମର୍ଶ ଦେଲେ । ଜମିଦାର ୧୦୦୦ ଏକର ପଡ଼ିଆ ଜଙ୍ଗଲ ସଫା କରାଇ ଜମି କାଢ଼ି ସେଠି ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ନାମ ଅନୁସାରେ 'ଗୋପବନ୍ଧୁ ନଗର' ବୋଲି ଗରିବ ଭୂମିହୀନଙ୍କ ପାଇଁ ଗାଁଟିଏ ବସାଇବାକୁ ଇଚ୍ଛା ପ୍ରକାଶ କଲେ, ଗୋପବାବୁ ନିଜ ନା ରଖିବାକୁ ରାଜି ନ ହେବାରୁ ଜମିଦାର ସେହି ଏକ ହଜାର ଜମି ଭୂଦାନକୁ ଦେଲେ । ସେଠି ଖାଇବା ପାଣି ଅଭାବ ଥିଲା, ଜମିଦାର ଗୋପବାବୁଙ୍କ ଆଗମନ ଉପଲକ୍ଷରେ ଗୋଟିଏ ବଡ଼ ପୋଖରୀ ଖୋଳାଇବାକୁ ଠିକଣା କଲେ, ଅପ୍ରେଲ ୮ରେ ଗୋପବାବୁ ତାର ଶୁଭ ଦେଲେ, କାର୍ଯ୍ୟ ଆରମ୍ଭ ହେଲା ।

ପଦ୍ମପୁରରେ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ ବିପୁଳ ସମ୍ବର୍ଦ୍ଧନା ଦିଆଗଲା, ବଡ଼ ସଭା ହେଲା, ହଜାର ହଜାର ଲୋକ ଆସିଲେ, ତନ୍ମଧ୍ୟରେ ଅଧିକାଂଶ ସ୍ତ୍ରୀ ଲୋକ, ସମ୍ବଲପୁର ଜିଲ୍ଲାରେ ସ୍ତ୍ରୀ ଲୋକମାନେ ସବୁ କାମରେ ଆଗୁସାର । ସେହି ସଭାରେ 'ଭୂଦାନ'କୁ ପଦ୍ମପୁର ଜମିଦାରଙ୍କ ଦାନ ଏକ ହଜାର ଏକର, ଶ୍ରୀ ଅନିରୁଦ୍ଧ ମିଶ୍ରଙ୍କ ଦାନ ୬୦ ଏକର, ମାଣ୍ଡିଆଢ଼ିପା ଗୌନ୍ତିଆଙ୍କ ପରିବାରର ମୋଟ ୬୦୦ ଏକର ଜମି ଥିଲା, ତନ୍ମଧ୍ୟରୁ ଦାନ ୧୦୦ ଏକର ମିଳିଲା ।

ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କର ଟିପାଖାତାରେ ତାଙ୍କର ସେତେବେଳେ ସମ୍ବଲପୁର ଜିଲ୍ଲାରେ ଭୂଦାନ-ପଦଯାତ୍ରା ବିଷୟରେ ତାରିଖ ଦିଆହୋଇ ଠାର ପରି ଟିକେ ଟିକେ କିଛି ଘଟନା ବା ମନ୍ତବ୍ୟ ଟିପା ହୋଇଛି, ତାହା ତଳେ ଲେଖିଲି :

"୮-୬—ପଦ୍ମପୁର—ବଡ଼ ସଭା—ଭୂଦାନ—ପାଣି ଅଭାବ—ବନ୍ଧ ଖୋଳାରେ ଶୁଭ—ଅନିରୁଦ୍ଧ ମିଶ୍ର—କର୍ମୀମାନେ—ହନ୍ଧ୍ୟାଙ୍କୁ ଗୋଲଉରିଆ—ପୁରୁଣା ଗାନ୍ଧୀ କର୍ମୀ—କର୍ମୀମାନେ—ସଭା—ଭଜନ"

କନଶିଙ୍ଗା—ଧନଞ୍ଜୟ ମିଶ୍ର—ଭାଷା କଥା—'କଟକ ଅନୁକରଣ—ବେଶଭୂଷା ସବୁ

୧୦-୪—ମ୍ଳେଚ୍ଛାମଣ୍ଡା (ପ୍ରକୃତରେ 'ମେଲଗ୍ର (ଅର୍ଥାତ୍ 'ଗାରଡ଼') ମୁଣ୍ଡା')—ବାହା (ଲ ?) ବାରଢ (ଆ ?)—ଲୋକଙ୍କ ମନରେ ହିଂସା ବଢ଼ୁଛି—ତାଙ୍କ ମା ଓ ସ୍ତ୍ରୀଙ୍କ ମନରେ ଆଶଙ୍କା—ଜଣେ ଅଶିକ୍ଷିତ ଯୁବକ ସଙ୍ଗେ ସାକ୍ଷାତ୍—ତାର କାନ୍ଥରେ ଲେଖା । ପିଠା କଥା । ଲଲ୍ ସାହେବଙ୍କ ସମ୍ବଲପୁରୀ ଗୀତ ବୋଲିବା—ସଭା—ଜମିଦାନ ।

୧୧-୪—ଘେଁସ୍—ବଡ଼ ସଭା—ଜମି ଦାନ ।

୧୨-୪—ଝର୍—ସୁର୍ମାଲ୍—ସଭା—ଜମିଦାନ—ଉଦସ୍କଳର ସାନ୍ଥ, ମନ-ବାହନ ।

୧୩-୪—ଡାଲ୍‌ପଦର୍—ବଡ଼ ସଭା—ଗରିବଙ୍କ ଦାନ—ହନୁମନ୍ତାସ୍ୱା—ଗାଁ ବାହାରେ ରହିବା—କର୍ମୀଙ୍କ ବୈଠକ ଓ ପରାମର୍ଶ

୧୪-୪—ପାଣିସେରା—ସଭା—ଭୂଦାନ—କଂଗ୍ରେସ କର୍ମୀ—ଟଙ୍କା ଅଭାବରୁ ପତନ—କଲି—ସରକାରୀ ଅନୁଷ୍ଠାନମାନ ନିର୍ଜୀବ ।

୧୫-୪—ସମଲେଇପଦର—ଗାଁରେ ଟିକିଏ ଭେଦର ସୂଚନା—କର୍ମୀଙ୍କୁ ସତର୍କ କରାଗଲା ।

(ସମଲେଇପଦରରେ ଶ୍ରୀ ରାମଚନ୍ଦ୍ର ପୁରୀ ବହୁବର୍ଷ ହେଲା ଗ୍ରାମସେବା କେନ୍ଦ୍ର କରି କର୍ମନିରତ ଥା'ନ୍ତି । —ଲେଖକ । )

୧୬-୪—ବଳିପାଲି—ଝଡ଼ତୋଫାନ—ଲୋକଗହଳି

୧୭-୪—ବରପାଲି—ଶିକ୍ଷକମାନଙ୍କ ସଙ୍ଗେ କଥାବାର୍ତ୍ତା—ପ୍ରଶ୍ନୋତ୍ତର—ସଭା—ଜମିଦାନ—ସଭାରେ ସ୍ତ୍ରୀ ଲୋକଙ୍କ ସଂଖ୍ୟା ଅତି କମ୍—ବରପାଲିଟା ବଜାର ପାଲଟି ଗଲାଣି ।

( ଶ୍ରୀ ଗୋପବନ୍ଧୁ ଚୌଧୁରୀ ଅନ୍ତତଃ ୩୨ ବର୍ଷ ପରେ ବରପାଲିକୁ ପୁଣି ଦେଖୁଛନ୍ତି, ସେତେବେଳେ ସେ ବରଗଡ଼ ସବ୍‌ଡିଭିଜନ୍‌ର ସେକେଣ୍ଡ ଅଫିସର ଥିଲେ ଓ ସେଇଠୁ ଛୁଟି ନେଇ ଆସି ସ୍ୱକାରରୁ ଇସ୍ତଫା ଦେଇଥିଲେ । — ଲେଖକ । )

୧୮-୪—କୁମ୍ଭାରୀ—କର୍ମୀଙ୍କ ସଙ୍ଗେ ଗାନ୍ଧୀର ଅହିଂସା ଆଲୋଚନା—ବସନ୍ତ—ସଭାରେ ଗୋଳମାଳ ।

୧୯-୪—ରେମେଣ୍ଡା—ଛାତ୍ରସଭା—ହେଡ଼ମାଷ୍ଟର (ପାକସ୍ତାନୀ)ଙ୍କ ପ୍ରଶ୍ନ—ସାଧାରଣ ସଭା ଭଲ ହେଲା ନାହିଁ—ଉଦ୍ୟୋକ୍ତାଙ୍କ ଭିତରେ ଟଣାଓଟରା—ଗଉଡ଼ଘର ବୋହୂ—ସଇଁତଲା ଧୂବ ସାହୁଙ୍କ ବୋହୂ—ବ୍ରାହ୍ମଣ ଘରେ ଭୋଜନ—ହରିଜନଙ୍କୁ ସମାନ ସ୍ଥାନ ତ ଦେଉଛନ୍ତି !—କୁରୁଡା ଗାଁରୁ ବହୁତ ଛାତ୍ର ଯୁବକ ଓ ଲୋକ ଆସିଛନ୍ତି ।

୨୦-୪-୫୨—କାଣିବାହାଲ—ଗଉନ୍ତିଆଙ୍କ 'ସାନ' (ଚତୁର୍ଥ ବିବାହ)—ବିପିନ୍ ଚନ୍ଦ୍ର—ପାଖ ଟକୁଡ଼ା ଗାଁର ଯୁବକବୃନ୍ଦ—'ଦାମୂଡ଼ି' ପଲେ—ଈଶ୍ୱର ସାହୁ

—ସଭା—'ଗୌନ୍ତିଆ'ଙ୍କ ଭଦ୍ର—'ନଟସ୍ୱା' ବିଜୟ—ଗ୍ରାମକୁ ସତର୍କ କରିବା—ବାଙ୍କ୍ ଯଯମ ।

୨୦-୪-୫୨—ମାନପୁର—କବିରାଜ ଘନଶ୍ୟାମ ✳ —(?)ଙ୍କ ଦର୍ଶନଲାଭ —ଓଁ··· —ବସ୍ତିପୁରରେ ଘରପୋଡ଼ି କାହାଣି—

ବରଗାଁ—(?)

( ✳ କବିରାଜ ଶ୍ରୀ ଘନଶ୍ୟାମ ପାଣିଗ୍ରାହୀ ଜଣେ ବିଶୁଦ୍ଧ ଗାନ୍ଧୀବାଦୀ ସ୍ୱାଧୀନଚେତା ଦେଶପ୍ରେମୀ । ସ୍ୱାଧୀନତା ଆନ୍ଦୋଳନ ବେଳେ ସେ ସେପରି ସବୁ ଆନ୍ଦୋଳନରେ ଜେଲ୍ ଯାଇଥିଲେ । ବରଗାରେ ପ୍ରବୁଣା ନାରୀକର୍ମୀ ଶ୍ରୀମତୀ ଦ୍ରୌପଦୀ ଦେବୀ ଗୋଟିଏ ମାତୃମଙ୍ଗଳ କେନ୍ଦ୍ର ପରିଚାଳନା କରୁଥିଲେ । ସେ ବସ୍ତିରେ ସେବାଘରେ ଥିଲାବେଳୁ ଶ୍ରୀମତୀ ରମା ଦେବୀ ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ସଙ୍ଗେ ତାଙ୍କର ସମ୍ପର୍କ ଥିଲା । )

୨୭-୪-୫ —ସମ୍ବଲପୁର—ବିପୁଳ ସମ୍ବର୍ଦ୍ଧନା—ବିରାଟ ସଭା—ବକ୍ତୃତା—ସବୁ ଦଳର ଉତ୍ସାହ—ଶିକ୍ଷିତ ସମାଜ—ପ୍ରାର୍ଥନା ପ୍ରୀତି—ଅତ୍ୟନ୍ତାନନ୍ଦ ପୁରୋହିତ ସାଙ୍ଗ ।"

ଏତିକି ସୂଚନାରୁ ନାନା କଥା ବୁଝି ହେଉଛି ।

ଶ୍ରୀ ମଦନ ମୋହନ ସାହୁ ଗୋପବାବୁଙ୍କର ସମ୍ବଲପୁର ଆଗମନ ବିଷୟରେ ଲେଖିଛନ୍ତି ଯେ ସମ୍ବଲପୁରବାସୀ ବିଶାଳ ପଟୁଆର ଓ ଶୋଭାଯାତ୍ରା ଯୋଗେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ, ପଟୁଆରରେ ବୁଲାଇଲେ, ବିରାଟ ସଭା ହେଲା, ଗୋପବାବୁ ଆଖି ଛଳଛଳ କରି ସଭାରେ "ସମ୍ବଲପୁରରେ ମୁଁ 'ଦ୍ୱିଜ' ହେଲି, ସମ୍ବଲପୁର ମୋର ଦ୍ୱିତୀୟ ଜନ୍ମସ୍ଥାନ ।" ଏତିକରେ ସମ୍ବଲପୁରବାସୀଙ୍କ ମନ କିଣି ହୋଇଗଲା । ଗୋପବାବୁ ଏପରି କହିବା ତାତ୍ପର୍ଯ୍ୟ, ଏହି ଜିଲ୍ଲାରେ ବରଗଡ଼ରେ ସେ ୧୯୨୧ରେ ସରକାରୀ ଚାକିରି ଇସ୍ତଫା କରିଥିଲେ, ଏଇଠୁ ଚାକିରି ଛାଡ଼ି ଦେଶସେବକ ହୋଇ ନୂଆ ଜନ୍ମ ଯେନିଥିଲେ ।

ତାଙ୍କ ଟିପାଖାତାରେ 'ସମ୍ବଲପୁରବାସୀଙ୍କ ପ୍ରତି' ବୋଲି ସେ ଲେଖାଟିଏ ଲେଖିଛନ୍ତି, ପଛେ ଗାରଟାଣି ଦେଇ କାଟିଛନ୍ତି, ତହିଁରେ ଅନୁମାନ ଏପରି କଥା ହୋଇଥିଲେ ଜଣାପଡ଼େ ଯେ ସେ ଲେଖାଟି କାମ ସରିଯାଇଛି, କେଉଁଠି ଭାଷଣ ଦେଇଥିଲେ ବା କେଉଁଥିରେ ଛପାଇଥିଲେ । ଲେଖିଛନ୍ତି :

"ପାଦରେ ଚାଲି ଚାଲି ବୁଲିବାକୁ ସମ୍ବଲପୁରକୁ ଆଉଥରେ ଭଲ କରି ଦେଖିବାର ଅପୂର୍ବ ସୁଯୋଗ ମିଳିଥିଲା । ମୋର ସରକାରୀ ଚାକିରି ଛାଡ଼ି ସାଧାରଣ-ସେବା ଜୀବନ ଏହି ସମ୍ବଲପୁର ଜିଲ୍ଲାରୁ ୧୯୨୧ରେ ଆରମ୍ଭ ହୋଇଥିବା ଯୋଗୁଁ ସମ୍ବଲପୁରକୁ ସବୁଦିନେ ମୋର ଜନ୍ମଭୂମି ଭଳି ବିଚାରୁଥାଏଁ । ଗାଁ ଗହଳିରେ ଯେପରି ସ୍ନେହ ଆଦର ପାଉଛୁଁ ତାହା ଭୁଲିବାର ନୁହେଁ । ଦେଶକଥା ଶୁଣିବାକୁ ଓ ଦେଶରେ ସାମ୍ୟ ମୈତ୍ରୀ ପ୍ରତିଷ୍ଠା କରି ତ୍ୟାଗ କରିବାକୁ ଧନୀ ଦରିଦ୍ରଙ୍କ ଭିତରେ ଅପୂର୍ବ ଉତ୍ସାହ ଦେଖି ଅନୁପ୍ରାଣିତ ହୋଇଛୁ । ଭୂଦାନଯଜ୍ଞର ଉପାଦେୟତା ଲୋକେ ଯେ ବୁଝୁଛନ୍ତି ତାହାର ଦୃଷ୍ଟାନ୍ତ ସମ୍ବଲପୁର ବାହାରୁ ଦେଖିବା ଆସିଥିଲି କିନ୍ତୁ ସମ୍ବଲପୁର ଆସି "ଗାଁରେ କାହାକୁ ଭୂମିହୀନ ରଖିବା ନାହିଁ" ଏପରି ସଙ୍କଳ୍ପ ଗାଁଏ ଗାଁଏ ଦେଖି ଅହିଂସାରେ ମୋର ବିଶ୍ୱାସ ବଢ଼ିଛି । ସମ୍ବଲପୁରର ଗାଁ-କର୍ମୀମାନଙ୍କଠାରୁ ଓ ଗ୍ରାମବାସୀମାନଙ୍କଠାରୁ ବିଦାୟ ନେଉଛୁ ।

ପୁଣି କେବେ ଦେଖା ହେବ ଭଗବାନ ଜାଣନ୍ତି । ଝାଡ଼ସୁଗୁଡ଼ା ପ୍ରଭୃତି ଅଞ୍ଚଳକୁ ଓ କେତୋଟି ଗାଁକୁ ଯାଇପାରିଲି ନାହିଁ । ସେଠା ଲୋକଙ୍କ ମନରେ ଦୁଃଖ ତ ରହିଲା । ମୁଁ ମଧ୍ୟ କେତୋଟି ଗାଁରେ ଦିନେ ଓଳିଏ ବିତେଇବାର ସୌଭାଗ୍ୟରୁ ବଞ୍ଚିତ ହୋଇଛୁ । ଏଭଳି ଗାଁମାନଙ୍କ ମଧ୍ୟରେ ପାଇକମାଲ, ବୁର୍ଜା, ଝଲୁରି, ଝୁଲୁର୍, ନାଁ ସବୁ ମୋର ମନେଅଛି । ସମ୍ବଲପୁର ଭାଇଙ୍କୁ ନମସ୍ତେ ।"

ତାହାପରେ ଗସ୍ତ-ଟିପା ଏହିପରି :

(୨) ଝାଙ୍କରପାଲି—ବୀରେଶ୍ୱର (୨) ଗୌନ୍ତିଆଙ୍କ ବକ୍ତୃତା—ଅଳ୍ପ କଥାରେ ସୁନ୍ଦର, ସରସ—ଗରିବ ଭିତରେ ଅହିଂସାର ଭାବନା—କଷ୍ଟକରି ସଦେଇ ଦେବେ୍ହ

(୩) ଝରଣମାଳ—ରମ୍ବତଓ୍ୱାରି ପ୍ରଥା—ଜମି ହସ୍ତାନ୍ତର ପାଇଁ ଅନୁମତି ଲୋଡ଼ା—ଗାଁ ବାଲାଙ୍କ ଗ୍ରାମ ଭାବନା

(୪) ଜନୁମବ—ଦୁଃଖିଶ୍ୟାମ ମହାନ୍ତି ଶର୍ମାଙ୍କ ପରିବାର—ମାଷ୍ଟରମାନେ ।

ଅନ୍ଧେଇ—ବିପୁଳ ଉତ୍ସାହ—ଟିକିଏ ସ୍ୱାର୍ଥ ଥିଲା ପରି ଲାଗିଲା—ସରକାରୀ କାମ ଆମେ କରେଇଦେବୁ, ଏ ଆଶା ।

(୫) ଚାର୍‌ମାଲ୍—ଶଶୀବାବୁ—ଦକ୍ଷ ପ୍ରଜାପତି—ସୁରେନ୍ଦ୍ର ବିଷାଲ ଓଗେର —ଗାଁରେ ସଭା—"ସ୍ତ୍ରୀ ଲୋକମାନେ ଆସିଲେ" —ରେଢ଼ାଖୋଲର ଜମି ସମସ୍ୟା ।

(୬) ରାମପୁର—ସଭା—ସହର ସଙ୍ଗ—ଏଠୁ ପହରା ବଦଳିଲା, ଭଗବାନ ଦେବେ୍ହ ରାମପୁରଙ୍କଠାରୁ ଗ୍ରାଫ ନେଲେ (ରଜାଙ୍କ ପୋଖରୀରେ ବାଡ଼ଦେବା କଥା—ଶିକ୍ଷିତ ସମାଜକୁ ଆହ୍ୱାନ

ତାହାପରେ ରହଣି କ ତସ୍ତ ତାରେଖ ଟିପା ହୋଇନାହିଁ କିନ୍ତୁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନର ଦୂରତା ଟିପା ହୋଇଛି, ତହିଁରୁ ଜଣାପଡ଼ୁଛି ଯେ ରହଣିସ୍ଥାନ ଗୁଡ଼ିକ ଗୋଟିକ ପରେ ଆଉ ଗୋଟିଏ ଏହିପରି ଥିଲା :

କୁକୁଡ଼ାବାହାଲ୍—ବାଲଦେବୀଙ୍ଗ—ଧଉରାପାଲି—ବଡ଼ପଦର—ମାଧପୁର—ମାଣବିଂଗଡ଼—କୁଟେଶ୍ୱର—କମୃଡହ—କାମୁଡ଼ୋଲ ।

ତାହାପରେ କଟକ ପହଞ୍ଚିବା ପର୍ଯ୍ୟନ୍ତ ଏ ପଦଯାତ୍ରାର କ୍ରମପର୍ଯ୍ୟାୟ ଆଉ ଟିପା ଖାତାରେ ଲେଖା ହୋଇନାହିଁ । ସମ୍ବଲପୁର ଗୁଡ଼ିବାର ଛଅମାସ ପରେ ମହାନଦୀ କୂଳେ କୂଳେ ନରସିଂପୁର, ବଡ଼ାମ୍ବା, ଆଠଗଡ଼ ବାଟେ ସେ ତାଙ୍କ ଶ୍ୱଶୁରଘର ଗାଁ । କଟକ ଜିଲ୍ଲାର ସତ୍ୟଭାମାପୁର ପହଞ୍ଚିଲେ । ଟିପାଖାତାରେ ଅଛି :

“ସତ୍ୟଭାମାପୁର—‘ମଧୁସ୍ମୃତି’ କସ୍ତୁରବା କେନ୍ଦ୍ର—ଉପବାବୁଙ୍କର ଷୋଭ—ସଭାରେ ଗାଁର ଲୋକ ଜଣେ ଜଣେ ଉଠି ତାଙ୍କର ଦୁଃଖ ଗାଇବା—ଭୁବନ—ରମା ଦେବୀଙ୍କ ଅସୁସ୍ଥତା

( ଶ୍ରୀମତୀ ରମା ଦେବୀ ବଣ୍ଡରୁ ବାହାରିଲେଠାରୁ ଏ ପର୍ଯ୍ୟନ୍ତ ଗୋପବାବୁଙ୍କ ସଙ୍ଗେ ପଦଯାତ୍ରା କରି କରି ଆସିଥିଲେ, କିନ୍ତୁ ଏଠି ତାଙ୍କୁ ସାମାନ୍ୟ ବସନ୍ତ ରୋଗ ଆକ୍ରମଣ ହେଲା, ସେ ସତ୍ୟଭାମାପୁରରେ ମାସେଯାକେ ରହି ବିଶ୍ରାମ କଲେ, ତାପରେ ଫେରି ଆସିଲେ । ସେହି କାରଣରୁ ସେ ଖଣ୍ଡସାହି ସଭାରେ ଉପସ୍ଥିତ ନ ଥିଲେ ।
—ଲେଖକ )

ଭେଡ଼ା—ବଡ ଲୋକ ଶିକ୍ଷିତ ଲୋକଙ୍କ ଅବସ୍ଥା—ଗରିବ ଲୋକଙ୍କ ମୁଖପାତ୍ର ହେବାକୁ ରାଧା. ଚୌ (ଜମିଦାର ଓ ଧନୀ ଶ୍ରୀ ଚୌଧୁରୀ ରାଧାନାଥ ନନ୍ଦ ?)ଙ୍କ ବ୍ୟାକୁଳତା—‘ରୁଟି’କୁ ଡର । ‘ହିନ୍ଦୁ କୋଡ୍ ବିଲ୍’ ଉପରେ ପ୍ରଶ୍ନୋତ୍ତର—କମ୍ୟୁନିଷ୍ଟଙ୍କ ଯୁକ୍ତି—ବଡ଼ ଲୋକଙ୍କ ପକ୍ଷେ Communist ଘୃଣା—

ମାହାଙ୍ଗା—ବଡ଼ ସଭା—ସ୍ତ୍ରୀ ଲୋକମାନଙ୍କ ସଂଖ୍ୟା ବହୁତ ଅଳ୍ପ—(—?) ଜମିଦାରଙ୍କ ଘର—ଗୋରୁଗାଈଙ୍କ ଯତ୍ନ—ଭୂଦାନ ଯଜ୍ଞ—(?) ପୁରୁଣା କର୍ମୀଙ୍କ ଭିତରେ ଚହଳ—ବହୁଶ୍ରେଣୀର ଓ ରାଜନୈତିକ ମତବାଦର କର୍ମୀ—ସାଙ୍ଗରେ ବୁଲିଥିଲେ ।

ସାଲେପୁର—‘ରାବଣରାଇଜ’—ବାଟରେ ନନକର ପାଖରେ ଜଣେ ଗରିବର ଉକ୍ତି—ସଭାରେ ନ ଥିବା ଲୋକେ ବେଶି—ସାମ୍ୟବାଦୀଙ୍କ ସଙ୍ଗେ ଯୁକ୍ତିତର୍କ—ବାମନ ବାବୁଙ୍କ (ଶ୍ରୀ ବାମନ ଚରଣ ପଣ୍ଡା ?) ଭୂଦାନ ।

ଖଣ୍ଡସାହି—ସଭାରେ ଗଣ୍ଡଗୋଳ—ସଭା ପରେ ଗଣଙ୍କ ଭିତରେ କଥାବାର୍ତ୍ତା କାନରେ ପଡ଼ିଲା—"ହଜୁରଙ୍କୁ କହିଲୁ ନାହିଁ ? ଏବେ କେମିତି ଦେବା ? ଜୁଲୁମ୍ ଆଇନ୍ ବଦଳେଇଥିଲେ ?"

ହୋତା ମହାଶୟଙ୍କ (ସହ ପଦଯାତ୍ରୀ ପଣ୍ଡିତ କୃପାସିନ୍ଧୁ ହୋତା ମହାଶୟଙ୍କ) ବକ୍ତୃତା—ହୋତା—ଭୂଦାନ ଉପରେ ପ୍ରଭାବ—ସାଲେପୁରଠାରେ ମଧ୍ୟ ବକ୍ତୃତା—ବଂଶୀଧର ମିଶ୍ରଙ୍କ ପରିଚୟ—'ପଲ୍ଲୀସେବକ ସମାଜ' ସମ୍ମିଳନୀ—ସାମ୍ୟବାଦୀ ସଙ୍ଘର ସହଯୋଗ—ସମ୍ବାଦପତ୍ରଙ୍କ ସହଯୋଗ—ଏମ୍. ଏଲ୍. ଏଙ୍କ ସହଯୋଗ—ପୁରୁଣା କର୍ମୀଙ୍କ ସହଯୋଗ—ଦ୍ୱିତୀୟ ପ୍ରାର୍ଥନା ସଭାରେ 'ସତ୍ୟାଗ୍ରହ' ସମ୍ବନ୍ଧରେ ବକ୍ତୃତା—ଭୂମିଦାନ—ଖଣ୍ଡସାହିରୁ ଗଡ଼ଜାତ (ଅର୍ଥାତ୍ ବର୍ଗକୁ ଯାହା ଗଡ଼ଜାତ) ବନ୍ଦ—ବିଶ୍ରାମ"

'ଭୂଦାନ' ଦୃଷ୍ଟିରୁ ଖଣ୍ଡସାହି ସଭା ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସଭା । ସେହି ସଭାରେ "ଓଡ଼ିଶା ଭୂଦାନ ଯଜ୍ଞ ସମିତି" ଗଠିତ ହେଲା 'ସେଠି ଓଡ଼ିଶା ପାଇଁ ଭୂଦାନର ଲକ୍ଷ୍ୟ ଧାର୍ଯ୍ୟ ହେଲା ଅଧଲକ୍ଷ ଏକର ଜମି । ପରେ ବିନୋବାଙ୍କ ପରାମର୍ଶ କ୍ରମେ ତାହା ହେଲା ଦେଢ଼ଲକ୍ଷ ଏକର ଜମି ।

ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ଟିପାଖାତାରେ ଅଛି ଯେ ସେ ଭୂଦାନ କର୍ମୀମାନଙ୍କ ପ୍ରତି ଗୋଟିଏ ବାଣୀ ଦେଇଥିଲେ । ଅନୁମାନ ହେଉଛି ତାହା ସେହି ଖଣ୍ଡସାହି ସଭାରେ । ସେ କହିଥିଲେ,—

"ତିନିମାସ କାଳର ଅଭିଜ୍ଞତା ସମସ୍ତଙ୍କୁ ଜଣାଇଦେବା କର୍ତ୍ତବ୍ୟ ମଣେ । ସର୍ବତ୍ର ଆମର ଅଭିଜ୍ଞତା ଶୁଣିବାକୁ ଲୋକେ ଖୁବ୍ ଆଗ୍ରହାନ୍ୱିତ । ତେବେ, ଯେଉଁଠାରେ କର୍ମୀମାନେ ଅଛନ୍ତି, ସେହିଠାରେ ସଭାରେ ଗହଳି ବେଶି । କର୍ମୀମାନେ ଆଗରୁ ପ୍ରଚାର ଚଳେଇଥିବା ଜାଗାରେ ଯଜ୍ଞକାମ ଖୁବ୍ ଭଲ ଭାବରେ ଆରମ୍ଭ ହୋଇଛି । ବଲାଙ୍ଗିର ଭଳି ନୂଆ ଜାଗାରେ ହେଉ ବା ସମ୍ବଲପୁର ଭଳି ପୁରୁଣା ଜାଗାରେ ହେଉ, କେଉଁଠାରେ ଯଜ୍ଞରେ ଦାନ ଦେବା ପାଇଁ କେଉଁଠୁ ବିରୋଧୀ ମନୋଭାବ ଦେଖିଲି ନାହିଁ, ତେବେ, —କେତୋଟି କଥା ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଛି :

କଥାଟା ନୂଆ, ଲୋକେ ଜାଣି ନାହାନ୍ତି, ସବୁ ଗାଁରେ ଯଜ୍ଞର ବିଚାରଟା ଶୁଣାଇଦେବା ଦରକାର ।

(୧) ଏକ ଅଞ୍ଚଳର କର୍ମୀମାନେ ଏକତ୍ରିତ ହୋଇ କୌଣସି ଜନପ୍ରିୟ ବୟୋଜ୍ୟେଷ୍ଠ କର୍ମୀଙ୍କ ସାହଚର୍ଯ୍ୟରେ ଏ ଯଜ୍ଞ ପାଇଁ ସମିଧ ସଂଗ୍ରହ କରିବେ ।

(ଗ) ଯେଉଁଠି ଯାହା ପ୍ରତିଶ୍ରୁତି ମିଳୁଛି ତାକୁ ଛପା ଫର୍ମରେ ଲେଖାଇ ନେବେ । ସକଳଙ୍କର ସମ୍ବାଦ ପ୍ରାଃ କମିଟିର ସମ୍ପାଦକ ଓ ଖବର କାଗଜମାନଙ୍କୁ ଜଣାଇଦେବେ ।

**ଖଣ୍ଡଗିରି ସଭାରେ 'ଓଡ଼ିଶା ଭୂଦାନ ଯଜ୍ଞ ସମିତି' ଗଠନ**

୭-୮-୫୨ରେ ଗୋପବାବୁ, ରମା ଦେବୀ ଆଦି ଯାଜପୁର ଗଲେ । ଯାଜପୁରରେ 'ଓଡ଼ିଶା ଭୂଦାନ ଯଜ୍ଞ ସମିତି'ର ଜରୁରୀ ବୈଠକ ବସିଲା । ବିନୋବାଜୀ ଓଡ଼ିଶାରେ ପଦଯାତ୍ରା କରିବେ (ସେ ଆସିଲେ ଜାନୁଆରୀ ୨୬, ୧୯୫୫ରେ), ତା ପୂର୍ବରୁ କିପରି ବ୍ୟାପକଭାବରେ ଭୂଦାନ କାର୍ଯ୍ୟର ଅଗ୍ରଗତି ହୋଇ ପାରିଥିବ, ସେହି ବିଷୟରେ ଆଲୋଚନା ହେଲା । ୨୮ ଜଣ କର୍ମୀ ଭୂଦାନ କାର୍ଯ୍ୟ ଲାଗି ପୂରା ସମୟ ଦେବେ ବୋଲି ପ୍ରତିଶ୍ରୁତି ଦେଲେ (ପରେ ଏ ସଂଖ୍ୟା ବହୁଗୁଣ ବଢ଼ିଲା)

ସର୍ବଶ୍ରୀ ଗୋପବନ୍ଧୁ ଚୌଧୁରୀ ଶ୍ରୀମତୀ ରମା ଦେବୀ, ଆଚାର୍ଯ୍ୟ ହରିହର, ପଣ୍ଡିତ କୃପାସିନ୍ଧୁ ହୋତା, ଗୁଣନିଧି ମହାନ୍ତି, ଈଶ୍ୱର ଲାଲ୍ ବ୍ୟାସ୍, ମନମୋହନ ଚୌଧୁରୀ, ଶରତ୍ ଚନ୍ଦ୍ର ମହାରଣା, ବୈଦ୍ୟନାଥ ଦାସ, ମଦନ ମୋହନ ସାହୁ, ରଙ୍ଗାଧର ଦାସ, ବ୍ରଜସୁନ୍ଦର ଦାସ, ଫକୀର ମିଶ୍ର, ନୀଳାମ୍ବର ଦାସ, ଗଦାଧର ଦଣ୍ଡ, ଗୋଲକ ପ୍ରସାଦ ରାୟ, ପଦ୍ମନାଭ ରାୟ, କାମାକ୍ଷୀ ପ୍ରସାଦ ଶର୍ମା, ପ୍ରାଣକୃଷ୍ଣ ପଟ୍ଟନାୟକ, ନବ କିଶୋର ମଲ୍ଲିକ, ସଚ୍ଚିଦାନନ୍ଦ ଦାସ, ଶିଶିର କୁମାର ଘୋଷ, ଭଗବାନ ଖଟେଇ । ସମିତିର 'ସଂଯୋଜକ' ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ।

ପରେ, ଓଡ଼ିଶା ସରକାର ଭୂଦାନ ଯଜ୍ଞ ଆକ୍ଟ ପ୍ରଣୟନ କଲେ । ତଦନୁସାରେ ଏକ ପ୍ରାଦେଶିକ ସରକାରୀ ଭୂଦାନ ଯଜ୍ଞ ସମିତି ଗଠିତ ହେଲା । ସେଥିରେ ଅବସରପ୍ରାପ୍ତ ଜିଲ୍ଲା ଜଜ୍ ଧର୍ମପ୍ରାଣ ଶ୍ରୀ ସାଧୁ ଚରଣ ମହାନ୍ତି ବି ଭୂଦାନରେ ଯୋଗଦେଲେ, ପି. ଏସ୍. ପି. ନେତା ଶ୍ରୀ ନିଶାମଣି ଖୁଣ୍ଟିଆ, ଗଣତନ୍ତ୍ର ପରିଷଦ ନେତା କଳାହାଣ୍ଡି ମହାରାଜା ମଧ୍ୟ 'ଭୂଦାନ'ର ସାଧାରଣ ଚଉହଣ ଉପରେ ରାଜନୈତିକ ମତଭେଦ, ଧର୍ମ ଦଳଗତ ମତଭେଦ ସଦସ୍ୟ ରହିଲେ । ଯେ ତା ଆଦର୍ଶକୁ ବିଶ୍ୱାସ କଲେ ସେ ଆସିଲେ । ଗୋପବାବୁଙ୍କ ପଦଯାତ୍ରା ଆରମ୍ଭ ସମୟରୁ ୧-୧-୫୨ରୁ ୧-୯-୫୨ ଭିତରେ ୨୫୨ ଜଣ ଦାତା ୧,୬୭୫ ଏକର ୪୦ ଡେସିମେଲ୍ ଜମି ଦେବା ପାଇଁ ପ୍ରତିଶ୍ରୁତି ଦେଇ ସାରିଥିଲେ (ଗ୍ରାମସେବକ, ତା ୨୫-୯-୫୨ ସଂଖ୍ୟା)

**୧୯୫୨ର ଦ୍ୱିତୀୟ ପଦଯାତ୍ରା—ବାଲେଶ୍ୱର, ମୟୂରଭଞ୍ଜ, କେନ୍ଦୁଝର**

ଗୋପବାବୁ ରମା ଦେବୀ ୧୯୫୨ରେ ସେତିକି ପଦଯାତ୍ରା କରି ବିଶ୍ରାମ କଲେ ନାହିଁ । ପୁଣି ୧୯୫୨ ଅକ୍ଟୋବର ୨ ତାରିଖରେ ଗୋପବାବୁ ଓ ରମା ଦେବୀ

ପଦଯାତ୍ରାରେ ବାହାରି ପଡ଼ିଲେ, ଏଥର ଗଲେ ଭଦ୍ରକ, ବାଲେଶ୍ୱର, ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାମାନ । ବୁଲି ବୁଲି ଡିସେମ୍ବର ୧୦ରେ ସେମାନେ ଫେରିଲେ । ଏ ଯାତ୍ରାରେ ୪୨୭ ମାଇଲ୍ ଚାଲିଲେ, ୪୭·୯୫ ଏକର ଜମି, ୭ ହଳ ବଳଦ ଓ ଭୂମିହୀନଙ୍କୁ ଦାଣ୍ଡିବା ପାଇଁ ଚାଷ ଉପକରଣ ଲାଗି ଟ ୮୧୭ଙ୍କା ଦାନ ପାଇଲେ ।

ଓଡ଼ିଶାର ୧୩ଟି ଜିଲ୍ଲା ଭିତରୁ ୧୧ଟି ଜିଲ୍ଲାରେ ପଦଯାତ୍ରା ଏ ବର୍ଷକ ଭିତରେ ସାରି ଭୂଦାନ ଯଜ୍ଞ ଆନ୍ଦୋଳନ ପ୍ରତି ଲୋକଙ୍କ ସମର୍ଥନ ଓ ଉତ୍ସାହ ଦେଖି ଗୋପବାବୁଙ୍କ ମନରେ ଖୁବ୍ ଆଶା ଉତ୍ସାହ ଜନ୍ମିଲା । ୨୯-୧୧-୫୨ରେ ବଡ଼ଚଣାରେ କର୍ମୀମାନଙ୍କୁ ଭାଷଣ ଦେଇ ସେ କହିଲେ :

('ଗ୍ରାମସେବକ' ପତ୍ରିକା, ୨୭-୧-୫୩ର ୪ର୍ଥ ସଂଖ୍ୟା)

"ଭୂଦାନ ଯଜ୍ଞ ଲୋକଙ୍କର ଆନ୍ଦୋଳନ । ଲୋକଙ୍କୁ ଭୂଦାନ ସ୍ପର୍ଶ କରିଛି ବୋଲି ସେ ଆଗେଇ ଚାଲିଛି ।

ଯେଉଁମାନେ ଲୁଣ ଦରକାର ନ ଥିବା ଲୋକ ମଧ୍ୟ ଲୁଣ ଆନ୍ଦୋଳନରେ ପଶିଥିଲେ । ଲଢ଼ିବା ପାଇଁ ସମସ୍ତେ ବ୍ୟାକୁଳ ଥିଲେ, ବାଟ ଖୋଜୁଥିଲେ, ଗାନ୍ଧିଜୀ ଲୁଣମେଣ୍ଟ ଖିଅକୁ ଲୋକଙ୍କୁ ଧରେଇ ଦେଇଥିଲେ ।

ଆଜି ଗଢ଼ିବା ପାଇଁ ଲୋକେ ବ୍ୟାକୁଳ, ତାକୁ ନ ଗଢ଼ିଲେ ଚଳିବ ନାହିଁ, ତେଣୁ ଭଗବାନ୍ ବିନୋବା ମୁହଁରେ 'ଭୂମି' ଧରେଇ ଦେଇଛି । ଏଥିପାଇଁ ଆମେ ସମସ୍ତଙ୍କର ସହଯୋଗ ଚାହୁଁଛୁ ।

ଦେଶ ଭିତରେ ସାଧାରଣ ରାଜନୈତିକ ମତଭେଦ ମନଭେଦ ବା ହୃଦୟ ଭେଦରେ ପରିଣତ ହୋଇଥିଲା । ଏ ଆନ୍ଦୋଳନ ବଢ଼ି ଚାଲିଲେ ସବୁ ରାଜନୈତିକ ବିଭେଦ ଲୋପ ପାଇବ । ଶେଷରେ କେବଳ ଦୁର୍ଜନ ଓ ସୁଜନ, କଞ୍ଜୁସ୍ ଓ ଉଦାର ଏ ଦୁଇଟି ଦଳ ରହିବ ।

ଏ ଆନ୍ଦୋଳନ ବ୍ୟକ୍ତିତ୍ୱର ପ୍ରଭାବରୁ ମୁକ୍ତ ହେଲାଣି । ତାକୁ ଲୋକଙ୍କୁ ସ୍ପର୍ଶ କଲାଣି । କର୍ମୀମାନଙ୍କ ଭିତରେ ଆତ୍ମବିଶ୍ୱାସ ଆସିବା ଦରକାର ।

ପର ପାଇଁ ଦେବା ପ୍ରବୃତ୍ତି ଆଜି ଜନତା ଭିତରେ ଆସିଲାଣି. ଦାନ ପ୍ରବୃତ୍ତି ବଢ଼ିଲାଣି । ସମାଜର କର୍ତ୍ତବ୍ୟବୋଧ ଆସିଗଲାଣି । ସବୁ ସୁନ୍ଦର ହୋଇଯିବ, —କ୍ରମେ ସମଗ୍ର ସମାଜକୁ ସ୍ପର୍ଶ କରିବ ।

ଆମେମାନେ ଥରକୁ ଥର ଜେଲ୍ ଗଲୁ, କିନ୍ତୁ କାମ କଣ ଅଟକିଲା ? ଆମ ଦେଶରେ ବର୍ତ୍ତମାନ ଏକ ଆତ୍ମଗ୍ଲାନି ରୂପ ନୈରାଶ୍ୟ ଖେଳୁଛି ।

ଭଲ ଲୋକ ଚୁପ୍ ହୋଇ ରହିପାରେ ନାହିଁ । ସେ ତାର୍ ଗୃହପାଖର ଦୁର୍ନୀତିର ମଧ୍ୟ ବିରୋଧ କରେ । ବିନୋବାର ଆନ୍ଦୋଳନ ପରିଗ୍ରହ ବିରୁଦ୍ଧରେ । ଯୁବକମାନେ ସ୍ପଷ୍ଟ ପ୍ରତିଜ୍ଞା କରନ୍ତୁ, ଯେଉଁ ସମ୍ପତ୍ତିରେ ସମସ୍ତଙ୍କ ଭୋଗର ସୁଯୋଗ ନାହିଁ ଆମେ ସେଭଳି ସମ୍ପତ୍ତି ଭୋଗ କରିବୁ ନାହିଁ । ଆମ ଆଗରେ ବର୍ତ୍ତମାନ ସମସ୍ୟା—ଆମେ ନିଜେ କରିବା ନା ପରିସ୍ଥିତି ଆମୁକୁ ଧକ୍କା ମାରି କରେଇବ ।"

୧୯୫୨ ନଭେମ୍ବରରେ ସେ ମୟୂରଭଞ୍ଜ ଜିଲ୍ଲାରେ ପଦଯାତ୍ରା କରିବାକୁ ପହଞ୍ଚିଲେ ବେଳେ ସେଠି ଗୋଟିଏ ସ୍ୱାଗତ ସଙ୍ଗୀତ ବୋଲା ହୋଇଥିଲା, ଗୀତର ଭାବ ତାଙ୍କ ଜୀବନର ଆଦର୍ଶ ସଙ୍ଗେ ମିଶିଗଲା, ତାଙ୍କୁ ଭାରି ଭଲ ଲାଗିଲା, ତାପରେ ସେ ଗୀତଟି ପ୍ରାର୍ଥନା ବେଳେ ବୋଲା ହେଉଥାଏ, ସେ ହୋଇଗଲା ଗୋଟିଏ ଭୂଦାନ କର୍ମୀ ପାଇଁ ମନ୍ତ୍ର :

"ଯେଉଁଠାରେ ଝାଳ ଲୁହ ପ୍ରଭୁ ହେ ସେହିଠାକୁ ମୋତେ ନିଅ
ଆଜୀବନ ଯିଏ କାନ୍ଦୁଛି ଖାଲି ପୋଛିବି ତା ଆଖି ଲୁହ ।
ଜୀବନକୁ ଯିଏ ମଣିଅଛି ଭାର, ଆଜୀବନ ମୁଦା ହୃଦର ଦୁଆର
ଜୀବନ ମରଣ ଭେଦ ନ ବୁଝିବା ବଞ୍ଚିବା ଯା ଦୁର୍ବିସହ ।
ସେହିଆଡ଼େ ମୋତେ ନିଅ ।

ସେହିଆଡ଼େ ମୋତେ ନିଅ ଭଗବାନ ନିଅ
ପୋଛିବି ମୁଁ ତାର ସଜଳ ଆଖିର ଲୁହ ।
କହିବି ତାହାରେ ଡାକି,—ଶୁଣ ମୋ ବ୍ୟଥାର ସାଥୀ
ଆମ ଭଗବାନ ଦେଇଛି ଯା ଦାନ ମୋ ଠାରୁ ତା କାଢ଼ି ନିଅ
ସାଥୀ ହେ, ମୋତେ ତୁମ ଲୁହ ଦିଅ ।"

## ଚଉରାଳିଶି

ଏଣିକି ଗୋପବାବୁଙ୍କ ଆଗରେ କାର୍ଯ୍ୟପନ୍ଥା ସରଳ ଆଉ ସ୍ପଷ୍ଟ,—ଭୂଦାନ । କାର୍ଯ୍ୟ ହେବ ଭୂଦାନ, ବିଚାର ହେବ ଭୂଦାନ, ସେହିଅନ୍ୟ ଲୋକଙ୍କ ଆଗରେ ପହଞ୍ଚାଇବାକୁ ପଡ଼ିବ, ତାଙ୍କୁ ବୁଝାଇବାକୁ ପଡ଼ିବ, ସେମାନେ ବୁଝିବେ, ନିଜକୁ ବଦଳାଇବେ, ସମାଜକୁ ବଦଳାଇବେ, ଦେଶ ବଦଳିଯିବ, ଲୋକମତ ଜାଗ୍ରତ ହେବ, ତେବେ ଗଣତନ୍ତ୍ର ବି ଠିକ୍ ଚାଲିବ । ତାଙ୍କର ଦୃଢ଼ ବିଶ୍ୱାସ ଆସିଥାଏ,—ବିନୋବା ବିଚାର ବିନୋବା ପ୍ରଦର୍ଶିତ ଭୂଦାନ ମାର୍ଗ ହିଁ ଅହିଂସ ଶୋଷଣହୀନ ସ୍ୱାବଲମ୍ବୀ ଗ୍ରାମସମାଜ ପ୍ରତିଷ୍ଠା କରି ପାରିବ, ଅନ୍ୟ ଉପାୟରେ ତାହା ହେବ ନାହିଁ, ସେହି କାର୍ଯ୍ୟପନ୍ଥା ବାଟେ ରୂପାୟିତ ହେବ ଗାନ୍ଧୀବାଦର ଆଦର୍ଶ । ତେଣୁ ସବୁଠୁ ବଡ଼ ରଚନାତ୍ମକ କାର୍ଯ୍ୟ, ସବୁଠୁ ଆଗ କାମ ହେବ ଭୂଦାନ ସଂଗ୍ରହ କାମ, ଭୂଦାନ ପନ୍ଥାର ନାନା କାର୍ଯ୍ୟକ୍ରମ । ସବୁ ଶକ୍ତି ଏକାଠି ଠୁଳ କରି ସେହି କାମରେ ଅଜାଡ଼ି ଦେବାକୁ ପଡ଼ିବ । ବଡ଼ଚଣା କର୍ମୀ ସମ୍ମିଳନୀରେ ୨୯-୧୨-୫୨ରେ ଦେଇଥିବା ତାଙ୍କ ବକ୍ତୃତାରୁ ହିଁ ଜଣାପଡ଼ୁଛି ଭୂଦାନ-ପନ୍ଥାରେ ତାଙ୍କର କେଡ଼େ ଆଶା କେଡ଼େ ଅଟଳ ବିଶ୍ୱାସ ଆସିଗଲାଣି ।

ଅନ୍ୟ କାମ ନାହିଁ । ଖାଲି ଭୂଦାନ କାମ ।

ସେହି ବିଚାରରେ ଉଦବୁଦ୍ଧ ହେଲେଣି ତାଙ୍କର ଦେଶସେବକ-ଜୀବନ ଆରମ୍ଭରୁ ସଙ୍ଗରେ ଚାଲିଥିବା ସହକର୍ମୀମାନେ, ତାଙ୍କ ପରିବାର, ଅଭ ଆଚାର୍ଯ୍ୟ ମହାଶୟ, ପଣ୍ଡିତ କୃପାସିନ୍ଧୁ ହୋତା, ଶ୍ରୀ ଈଶ୍ୱର ଲାଲ୍ ବ୍ୟାସ୍ (ବ୍ୟାସ୍‌ଜୀ), ଗୁଣନିଧି ମହାନ୍ତି, ଆଉ ଯେତେ ଯେତେ ଖଣ୍ଡସାହି ମଠରେ ପ୍ରତିଶ୍ରୁତି ଦେଇଥିଲେ, ଆହୁରି ଅନେକେ, ନାନା ଶ୍ରେଣୀର, ନାନା ବୃତ୍ତିର, ଚାରିଆଡ଼େ 'ଭୂଦାନ' ଆନ୍ଦୋଳନର ବାତ୍ୟା ।

ସେ ବୃତ୍ତାନ୍ତ, ସ୍ୱାଧୀନତା ଆନ୍ଦୋଳନ ପରେ ଏ ଗୋଟାଏ ନୈତିକ, ସାମୂହିକ ଚେତନାମୟ ଆନ୍ଦୋଳନର ବନ୍ୟା ପରି ମାଡ଼ିଯାଉ, ଆଉ ଲୋକ ବୁଝନ୍ତୁ, ତାଙ୍କ ସ୍ୱଭାବ ବଦଳନ୍ତୁ, ହୃଦୟ ତରଳନ୍ତୁ, ସେମାନେ ମନକୁ ଆଗେଇ ଆସିବେ । ତେଣୁ ସବୁ କର୍ମୀ ଅନ୍ୟସବୁ କାମ ଛାଡ଼ି ଭୂଦାନରେ ଲାଗନ୍ତୁ । ବନ୍ଦ ହୋଇଯାଉ ପଛେ ଏପର୍ଯ୍ୟନ୍ତ ଚାଲିଥିବା ଆଉସବୁ ରଚନାତ୍ମକ କାର୍ଯ୍ୟ ଓ ତାର କେନ୍ଦ୍ର, ୧୯୪'ରେ ସବୁ ଗଢ଼ି ଉଠିଲା, ପୁଣି ଦେଶ ସ୍ୱାଧୀନ ହେବାପରେ ବହୁଗୁଣେ ବଢ଼ି ଉଠିଲା, ସେମିତି, —ଥରେ 'ଭୂଦାନ ଗଙ୍ଗା'ର ସ୍ରୁଅ ମାଡ଼ିଯାଉ, ସମାଜ ବଦଳନ୍ତୁ, ଗୋଟିଏ ଜାଗାରେ କୋଟିଏ ରଚନାତ୍ମକ କେନ୍ଦ୍ର ଗଢ଼ିଦେବେ ଆମ ଲୋକେ, ଆଉ କାମ ଆଉ । ସେକଥା ସେ ୧୯୫୬ ଫେବୃଆରୀ ୧୪-୧୭ ବେରବୋଇ ପ୍ରାଦେଶିକ ଶ୍ରମ ଶିବିରରେ ଅତ୍ୟନ୍ତ ସ୍ପଷ୍ଟ କରିଦେଲେ ।

ଭୂଦାନ ପ୍ରଚାର ଚାଲିଲା । ସେଥିପାଇଁ ନାନା ବହି ଲେଖା ହେଲା, ଛପା ହେଲା, ବିକ୍ରି ହେଲା । ଭୂଦାନ କର୍ମୀ ଶ୍ରୀ ଶ୍ୟାମସୁନ୍ଦର ପଣ୍ଡା ଅନେକ ଭୂଦାନ ଗୀତ ରଚନା କଲେ । ବଢ଼ି ଉଠିଲା, ପ୍ରଚାର ପାଇଲା ଭୂଦାନ ସାହିତ୍ୟ, ସହରରେ ଗାଁରେ । ସୁସାହିତ୍ୟିକ ଶ୍ରୀ ଲକ୍ଷ୍ମଣ ମିଶ୍ର, ବି.ଏ. ଭୂଦାନ ପାଲା ଲେଖିଲେ ଓ ନିଜେ ଗାଇଲେ । ସେହିପରି ଆଉ କେତେ ଲେଖକ । ଗାନ୍ଧୀ ବିନୋବାଙ୍କ ଲେଖାମାନଙ୍କ ଅନୁବାଦ, ଭାରତର ଅନ୍ୟାନ୍ୟ ବିଶିଷ୍ଟ ଭୂଦାନ-ଦାର୍ଶନିକଙ୍କ ଉପାଦେୟ ଲେଖାମାନ ଓଡ଼ିଆରେ ଅନୂଦିତ ହୋଇ ପ୍ରଚାରିତ ହେଲା ।

'ଗ୍ରାମସେବକ' ପତ୍ରିକା ବି ଭୂଦାନ ଦର୍ଶନ ଓ ଭୂଦାନ କାର୍ଯ୍ୟର ମୁଖପତ୍ର ହୋଇଗଲା । ୧-୬-୫୬ ସଂଖ୍ୟାରୁ ପତ୍ରିକାର ଏ ପରିବର୍ତ୍ତନ ସହଜରେ ଆଖିରେ ପଡ଼େ । ବିନୋବା, ଜୟପ୍ରକାଶ ନାରାୟଣ, ଦାଦା ଧର୍ମାଧିକାରୀ, ଶଙ୍କରରାଓ ଦେଓ, ରବିଶଙ୍କର ମହାରାଜ, ସେଠ୍ ଗୋବିନ୍ଦ ଦାସ ଆଦି ବିଶିଷ୍ଟ ଭୂଦାନ ନେତାଙ୍କ ଲେଖାର ଅନୁବାଦ, ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଭୂଦାନର ଅଗ୍ରଗତି, ଓଡ଼ିଶାରେ ଭୂଦାନ କିଏ ଦେଲେ, କେତେ ଦେଲେ, ଏହିସବୁ କଥା ତହିଁରେ ବାହାରୁଥାଏ ।

ଭୂଦାନ ବିଷୟରେ ଛାତ୍ର, ଶିକ୍ଷକ, ଅଧ୍ୟାପକ, ଲେଖକ, ରାଜନୀତିଜ୍ଞ, ନାନା ଶ୍ରେଣୀର ବୁଦ୍ଧିଜୀବୀ, ଗାଁ ଆଡ଼ା ଏମାନଙ୍କ ଭିତରେ ନାନା ସ୍ଥାନରେ ଆଲୋଚନା ଚକ୍ର ବସୁଥାଏ, ନାନା ପ୍ରଶ୍ନ ଉଠୁଥାଏ ଓ ଆଲୋଚିତ ହେଉଥାଏ, ଏ ସତେ ଯେପରି ଗାନ୍ଧୀବାଦ ଆଲୋଚନାର ଗୋଟିଏ ନୂଆ ଅଭ୍ୟୁଦୟ । ଗୋପବାବୁ ନାନା ସ୍ଥାନରେ ଆଲୋଚନାରେ ମିଶନ୍ତି କହନ୍ତି । ସଙ୍କଳ୍ପସ୍ଥରେ ଭାଷଣ ସେ ଦିଅନ୍ତି କିନ୍ତୁ ସେ ତାଙ୍କ ଅଭ୍ୟସ୍ତ ଉପାୟ ନ ଥିଲା, ତାଙ୍କ ଉପାୟ ଖୋଲଖୋଲ ଘରୋଇ କଥାବାର୍ତ୍ତା, ପିଣ୍ଡା ପଦ୍ଧତିରେ, ଖୋଲା ଜାଗାରେ, ବୁଝାଇ ପାରିଲେ, କାହାର ସଂଶୟ ଛୁଟାଇ ପାରିଲେ

ତାଙ୍କ ଆନନ୍ଦ, ନିଜ ବାଗ୍ମିତା, ବକ୍ତାସୁଲଭ ଅଭିନୟ-କୌଶଳ ଏଥିରେ ତାଙ୍କର ବିଶ୍ୱାସ ନ ଥାଏ । ତାଙ୍କ ଉପାୟ ନିଜ ହୃଦୟକୁ ଅନ୍ୟ ଲୋକର ହୃଦୟ ସଙ୍ଗେ ସଂଯୁକ୍ତ କରିବା, ଜଣେ ବୁଝିପାରିଲେ ହିଁ ଯଥେଷ୍ଟ ।

ଅନେକେ ପ୍ରଭାବିତ ହେଲେ । ତାଙ୍କ ଭିତରୁ ଜଣେ ରେଭେନ୍ସା କଲେଜର ରସାୟନ ବିଜ୍ଞାନର ଅଧ୍ୟାପକ ଡକ୍ଟର ଦୟାନିଧି ପଟ୍ଟନାୟକ । ଶେଷରେ ସେ ଏତେବଡ଼ କ୍ୟାରିୟର ଛାଡ଼ି ଗବେଷଣା ଛାଡ଼ି ବିନୋବାଙ୍କୁ ଅନୁସରଣ କଲେ । ତାଙ୍କ ବଡ଼ଭାଇ ଢେଙ୍କାନାଳ ପ୍ରଜାମଣ୍ଡଳର ଏକଦା ନେତା ଶ୍ରୀ ହରମୋହନ ପଟ୍ଟନାୟକ ମଧ୍ୟ ଗୋପବାବୁଙ୍କ ପାଖାରେ ପଡ଼ିଲେ, ଭୂଦାନ ଯଜ୍ଞରେ ବଶିଷ୍ଟ କର୍ମୀ ହେଲେ ।

ଲୋକଙ୍କୁ ବୁଝାଇବାକୁ ପଡ଼ିବ । ସେଥିପାଇଁ ଗୋପବାବୁଙ୍କର ନାନା ଚେଷ୍ଟା, ନାନା ଯତ୍ନ । ଆଦିବାସୀ ଅଞ୍ଚଳରେ ଯେଉଁ କର୍ମୀମାନେ କାମ କରନ୍ତି, ସେମାନଙ୍କୁ ତାଙ୍କର ବାରମ୍ବାର ଉପଦେଶ, ସେମାନେ ଆଦିବାସୀ ଭାଷା ଶିଖନ୍ତୁ । ତାଙ୍କର '୯୫୦ର ଟିପାଖାତାରେ ଅଛି, ସେ ଯେଉଁ ଅଲ୍ପଦିନ କୁଜେନ୍ଦ୍ରିରେ ଥିଲେ ତାରି ଭିତରେ ସଓରା ଭାଷା ଶିଖିବାକୁ ଚେଷ୍ଟା କରିଥିଲେ, ଅନେକ ଶବ୍ଦ ଓ ବାକ୍ୟ ଓଡ଼ିଆରେ ଲେଖି ତାର ସଓରା ଶବ୍ଦ ବା ବାକ୍ୟ ସଓରାଙ୍କୁ ପଚାରି ସେ ଟିପି ରଖିଛନ୍ତି । ସେ ଲୋକଙ୍କୁ କଣ ପଚାରୁଥିଲେ କି ପ୍ରକାର କଥା ବି ଲୋକଙ୍କଠୁ ଶୁଣୁଥିଲେ ତହିଁରୁ କିଛି ସୂଚନା ମିଳିବ :—ମାମୁଲି ପ୍ରଶ୍ନଗୁଡ଼ିକ ଆଗ, —"ତୁମ ନା କଣ ? ତୁମ ଗାଁ ନା କଣ ? ବୟସ କେତେ ?" ତାପରେ 'ଜମି', 'ଗାଁର ଅବସ୍ଥା', 'କାରଣ କଣ ?' 'ସମାଧାନର ଉପାୟ କଣ ?' "ତୁମର ଜମି କେତେ ?' 'କିଆରି ବାଡ଼ି କେତେ ଅଛି ?' 'ଭୂମିରେ କି କି ଫସଲ ହୁଏ ?' ଧାନ, ମାଣ୍ଡିଆ, ସୁଆଁ, ଜଣା, ଗଙ୍ଗେଇ, ହରଡ଼, କୋଦୁଅ, ମୁଗ, ବିରିହି, 'ଏ ଗାଁରେ ପାଣି ମିଳିବଟି ?' —ଅଭି ଅଭିଯୋଗ ଆପତ୍ତିଗୁଡ଼ିକ :—'ମୁଁ କାଲିଠାରୁ ଖାଇ ନାହିଁ', 'ମୁଁ ଅଳ୍ପ ଖାଉଛି' 'ଆମ ଗାଁରେ ଖାଇବାକୁ ନାହିଁ', 'ଅମୁକୁ ଭୁଲିଲ ମିଳୁ ନାହିଁ', 'ବହୁତ ଦୂରରୁ ଚାଲି ଚାଲି ଆସିଲୁ', 'ଆମ ଗାଁ ବହୁତ ଦୂରରେ', 'ସବୁ ଲୋକଙ୍କର ଜମି ନାହିଁ', ଗା ଲୋକ ଖାଇବାକୁ ପାଇଲେ ନାହିଁ', ଇତ୍ୟାଦି । ତେଲୁଗୁ ଲୋକଙ୍କ ପାଇଁ ସେ ତେଲୁଗୁରେ ଛପା ପ୍ରଚାରପତ୍ର ସଙ୍ଗରେ ଧରିଥାନ୍ତି । ମୋଟ୍ କନ୍ଧ ଓ ଗଦବା ଭାଷା ବହୁର ପାଣ୍ଡୁଲିପି ନେଲେ, ଛପେଇଲେ, ତାଙ୍କ ଆବଶ୍ୟକ ହେବାରୁ କେତେଗୁଡ଼ିଏ ପ୍ରାର୍ଥନା ସଙ୍ଗୀତ, ମଦ ଛଡ଼େଇବା ଗୀତ କୁଇ କନ୍ଧ ଭାଷାରେ ଲେଖିଲି, ତାକୁ ବି ଛାପିଲେ, କର୍ମୀମାନେ ପଢ଼ିଲେ ଓ ବ୍ୟବହାର କଲେ ।

ସେ କାହାକୁ ବାଧ୍ୟ କରନ୍ତି ନାହିଁ, କେହି ଭୂଦାନର ଦର୍ଶନ ଓ ଉଦ୍ଦେଶ୍ୟ ବୁଝି ଇହିଁରେ ବିଶ୍ୱାସ ନ କରିବାଯାଏ ତାଠୁ ଭୂଦାନ ନିଅନ୍ତି ନାହିଁ, ମନା କରନ୍ତି,

ଯେତେ ମନମୁଣ୍ଡିଆ ମୂର୍ଖ ଲୋକ ହୋଇଥାନ୍ତୁ, ତାଙ୍କ ବିଚାରକୁ ସେ ସମ୍ମାନ କରନ୍ତି । ନିଜ ମତ ତାଙ୍କ ଉପରେ ଲଦନ୍ତି ନାହିଁ, ସେ ଖାଲି ସମସ୍ୟା ବୁଝାନ୍ତି, ଲୋକେ ଯେପରି ତାର ଜରୁରୀପଣିଆ ବୁଝିବେ ଓ କଣ କରିବା ଉଚିତ ତା ନିଜେ ଆନ୍ତରିକତା ସହକାରେ ଭାବିବେ, ବାଟ ଖୋଜିବେ, ନିଜ ଭିତରେ ପରାମର୍ଶ କରିବେ, ସେଇଆ କରନ୍ତି, ସେମାନେ ଭାବି ଭାବି ନିଷ୍ପତ୍ତି ନେଲାବେଳେ ସେ ଭୂଦାନ ବିଚାର କହନ୍ତି ଓ ସେଇଟା କେତେଦୂର ଉପାଦେୟ ତାକୁ ଭାବି ଦେଖିବାକୁ ଲୋକଙ୍କୁ କହନ୍ତି, କ୍ରମେ ସେମାନଙ୍କର ବିଶ୍ୱାସ ହୁଏ, ଯେତେବେଳେ ବିଶ୍ୱାସ ହୁଏ ନାହିଁ ଅବିଶ୍ୱାସ । ସବୁ ବିଷୟରେ ସେହିପରି କରିବା ତାଙ୍କ ବାଟ, ସେ 'ହାକିମୀ' କରନ୍ତି ନାହିଁ, ନିଜେ କାହାରି ନିଯୁକ୍ତ ହୁଅନ୍ତି ନାହିଁ, ନିଯୁକ୍ତ ହେବାକୁ ଚେଷ୍ଟା ବି କରନ୍ତି ନାହିଁ । ସେ ଏତେ ବୁଝେଇ, ଚେଷ୍ଟା କରି ଯଦି ଦେଖନ୍ତି ଲୋକେ ତାଙ୍କ ମତ ପ୍ରତି 'କମ୍ପ୍ରା କଲୁ' କଲେ, ସେବାଟେ ଚାଲିବାକୁ ଅମତ, ସେ ତାଙ୍କୁ ବାଧ୍ୟ କରନ୍ତି ନାହିଁ, ନିଜ ମତ ଯେନି ଆଡ଼େଇ ହୋଇ ଯାଆନ୍ତି, ନିଜ ବାଟ ଧରନ୍ତି, ବରଂ ଏକୁଟିଆ ଚାଲନ୍ତି ।

ତାଙ୍କ ମନର ଏହି ଉଦାରତା ଯୋଗୁ, ଅପରକୁ ସମ୍ମାନ ଓ ବିଚାର-ଆଚାରରେ ସ୍ୱାଧୀନତା ଦେବାର ପ୍ରବୃତ୍ତି ଯୋଗୁଁ ଅନେକ ସମୟରେ ସେ ନିଜର ପୂର୍ବତନ କ୍ଷେତ୍ରରୁ ଅଲଗା ହୋଇ ଯାଇଛନ୍ତି । ରାଜନୀତି କ୍ଷେତ୍ରରେ ୧୯୨୧ରୁ ୧୯୩୪ ଯାଏ ଓଡ଼ିଶାର ମୁଖ୍ୟତମ ନେତାଙ୍କ ଭିତରେ ଜଣେ ଥିଲେ ସେ, ୧୯୩୮ରୁ ବର୍ଷେ ବି ଉ: ପ୍ରା: କ: କ: ସଭାପତି ହୋଇଥିଲେ, ତାପରେ '୪୨ରେ " ବର୍ଷ ଜେଲ୍ ଗଲାବେଳେ ସୁଦ୍ଧା ଓଡ଼ିଶା କଂଗ୍ରେସ ରାଜନୀତି କ୍ଷେତ୍ରରେ ତାଙ୍କ ଆସନ ଯେ ମନ କଲେ ସୁପ୍ରତିଷ୍ଠିତ, ଅପ୍ରତିଦ୍ୱନ୍ଦ୍ୱୀ, ଏଥିରେ ସନ୍ଦେହ ନ ଥିଲା । କିନ୍ତୁ ୧୯୩୯ରୁ କ୍ରମେ ସେ ସେଥିରୁ ଦୂରେଇ ଯାଉଥିଲେ । ଥରେ ଲେଖିଥିଲେ, "ସମସ୍ତେ ତ ଜାଣନ୍ତି, ରାଜନୀତି କ୍ଷେତ୍ରରେ ମୁଁ ଗୋଟାଏ କାଣୀ ଗାଈ, କାଣୀ ଗାଈର ଭିନେ ଗୋଠ", ସେଠି ନେତାମାନେ କର୍ମୀମାନେ ତାଙ୍କ ଆଦର୍ଶ ତାଙ୍କ ଚିନ୍ତାର ସଙ୍ଗେ ଏକମତ ନ ଥିବାର ସେ ଦେଖିପାରିଲେ, ତାଙ୍କୁ ତାଙ୍କ ବାଟରେ ଚାଲିବାକୁ ଛାଡ଼ିଦେଇ ସେ ଅଲଗା ହୋଇଗଲେ ।

କୋରାପୁଟରେ ଭୂଦାନ କାର୍ଯ୍ୟରେ ବି ସେହିପରି ଘଟିଲା, '୯୫'ରେ ତ ସବୁ କର୍ମୀ ତାଙ୍କରି ମତ ହିଁ ଧରିଥିଲେ, ୧୯୫୭ରେ 'ନିର୍ମାଣ' କାମ ଆରମ୍ଭ ହେଲା, ସେ ଯେପରି ଚାହୁଁଥିଲେ ସେପରି ହେଲା ନାହିଁ, କର୍ମୀମାନେ ଭୂଦାନ ଛାଡ଼ି 'ନିର୍ମାଣ'କୁ ମୁଖ୍ୟ କଲେ, ୪୨ ବର୍ଷ ସେ ଜିଲ୍ଲାରେ ବୁଲି ବୁଲି ଭୂଦାନ ଗଢ଼ି ତାପରେ ସେଠୁ ସେ ଚାଲିଗଲେ । 'ନେତା' ହୋଇ 'କର୍ମୀ'ଙ୍କ ଉପରେ ବାଧ୍ୟତାମୂଳକ ଭାବେ କର୍ତ୍ତୃତ୍ୱ ଜାହିର କରିବା, ବାଧ୍ୟ କରି ତାଙ୍କୁ ନିଜ ବାଟରେ ଚଳାଇବା ତାଙ୍କର ନୀତି ବିରୁଦ୍ଧ,

ତାଙ୍କର ଗାନ୍ଧୀ-ବିଚାର ବିଷୟରେ ଧାରଣାର ବିରୋଧୀ । 'ବିଧା ମାରି ପଇସା ଯଚେଇବା' ଅହିଂସା-ଦର୍ଶନର ବ୍ୟତିକ୍ରମ, ବ୍ୟକ୍ତି-ସ୍ୱାଧୀନତା ଧାରଣାର ବିରୋଧୀ, ପରିଣାମରେ ବି କୃତ୍ରିମ, କ୍ଷଣସ୍ଥାୟୀ, ନିଷ୍ଫଳ,—ଏହିପରି ତାଙ୍କ ଧାରଣା । ତାଙ୍କ କାର୍ଯ୍ୟକ୍ଷେତ୍ର ମଣିଷର ସ୍ୱତଃ ବିଚାରର କ୍ଷେତ୍ର, ସେ କ୍ଷେତ୍ର ପ୍ରସ୍ତୁତକାରୀ, ମନ୍ତ୍ରିପ୍ରଣାଳୀ, ଦିଗ୍‌ଦର୍ଶକ, ତାଙ୍କ ନିଜ ବିଚାରର ବ୍ୟାଖ୍ୟାନ, ଆଚରଣ, ନିଜ ତ୍ୟାଗ ହିଁ ଅପର ଉପରେ ଯେତିକି ପ୍ରଭାବ ପକାଇବ ସେତିକି ।

## ପଇଁ ଗୁଳଣି

### ୧୯୬୩ ଆରମ୍ଭ

୧୯୬୨ ଡିସେମ୍ବର କି ୧୯୬୩ ଜାନୁଆରୀରେ ହେବ, ରାୟଗଡ଼ାରେ ମୁଁ ଏସ୍. ଡି. ଓ ଥାଏ, ସମ୍ବାଦ ମିଳିଲା ଯେ ଗୋପବାବୁ ରାୟଗଡ଼ା ଡିଭିଜନ୍‌କୁ ଆସୁଛନ୍ତି, ଗୁଣୁପୁର ତାଲୁକ୍‌ରେ ପାହାଡ଼ ତଳେ ଠାଏ ଆନ୍ଧ୍ର ଓ ଓଡ଼ିଶାର ସୀମା ପାଖେ ଓଡ଼ିଶାରେ ଅଛି 'କଟିଙ୍ଗା' ବୋଲି ଛୋଟ ଗାଁଟିଏ, ଗୋପବାବୁ କେଉଁଠୁ ଚାଲି ଚାଲି ଆସି ସେଇଠି ବାହାରିବେ, ସେଠୁ ତାଙ୍କୁ ଜିପ୍‌ରେ ଆଣିବାକୁ ପଡ଼ିବ ରାୟଗଡ଼ା, ତାପରେ ସେ ଆଉ କୁଆଡ଼େ ଯିବେ । ଏଇ ମହାନ୍ ତ୍ୟାଗୀ ମହାନ୍ କର୍ମଯୋଗୀ ମହାନ୍ ପଦଯାତ୍ରୀ ପ୍ରସିଦ୍ଧ ନେତାଙ୍କୁ ମୁଁ ଆଣିବାକୁ ଗଲି, ବାଟ ପାର୍ବତୀପୁର, କୁରୁପମ୍ ଆଉ ଏଲ୍‌ୱିନ୍‌ପେଟା ବାଟେ, ତା ପୂର୍ବରୁ ଓଡ଼ିଶା ପଡ଼ିଗଲା 'କେରେଡ଼ା' ଗାଁ । ପାଖେ, ପୁଣି ହେବ 'କଟିଙ୍ଗା'ରୁ ।

ଶୀତଦିନ କୁହୁଡ଼ି, କଟିଙ୍ଗାରେ ସୂର୍ଯ୍ୟ ଉଇଁ ଦି ଘଣ୍ଟା ହେଲେ ବା ତା ପରେ । ପାହାଡ଼ି ଆଲୁଅରେ ବଡ଼ ବଡ଼ ଗଛ ପରି ସେମାନେ ଝାଳିରୁ ଛିପକୁ ଉଠିଲେ,

ମୁଣ୍ଡରେ ଗାଲରେ କଣ ବାନ୍ଧିଛନ୍ତି, ଫୁଙ୍ଗା ଦେହ ଉପରେ ଖଦା ଘୋଡ଼ି ହୋଇଛନ୍ତି, ପିଠିରୁ କାନ୍ଧରୁ ତାଙ୍କ ବୁଜୁଲାବୁଜୁଲା ଓହ୍ଳାଇଛି, ତହିଁରେ ନଲ୍‌ଟଣ, ଅରଟ, ମୁଣି ।

ସେ ଖୁବ୍ ପ୍ରସନ୍ନ ଥିଲେ । କାରଣ ସେତେବେଳକୁ ଗସ୍ତଗଡ଼ା ସବ୍‌ଡିଭିଜନ୍‌ରେ 'ଭୂ ସତ୍ୟାଗ୍ରହ' ସରିଥାଏ, ସରକାର ଆଦିବାସୀମାନଙ୍କର ବହୁବିଧ ଉପକାର କରୁଥାନ୍ତି, ଆଦିବାସୀ ସେତେବେଳେ ଆନନ୍ଦିତ, ଆଶାୟୀ, ନିର୍ଭୟ । କେବଳ ପଦେ କହି ସେ ଏ କାର୍ଯ୍ୟର ମୂଲ୍ୟାୟନ କଲେ । କହିଲେ, "ଆନ୍ଧ୍ର ଦେଶରେ କେତେ ଗାଁ ମାନ ଦେଖି ଦେଖି ଆସିଲି । ସ୍ଥାନେ ସ୍ଥାନେ ଆନ୍ଧ୍ରର କନ୍ଧ ମୋ ପାଖରେ ଦଳ ଦଳ ହୋଇ ଆସି ଗୁହାରି କଲେ, ସତେଅବା ମୋ ହାତରେ ଅଛି, ମୁଁ ସରକାର, —କହିଲେ "ଓଡ଼ିଶାରେ ଆମ ଜାତିଭାଇଙ୍କ ଭାଗ୍ୟ ବଦଳିଛି, ଶୋଷଣ ବନ୍ଦ ହୋଇଛି, ମୂଲ ବଢ଼ିଛି, ଜମି ମିଳୁଛି, ଧାନ ମିଳୁଛି, ତାଙ୍କ ପାଇଁ କେତେ ଉପକାର ହେଉଛି, ଆମର ଏଠି ସେଇ ଦୁରବସ୍ଥାକୁ ସେଇ ଦୁରବସ୍ଥା, ଆମକୁ ଓଡ଼ିଶାରେ ମିଶାଇ ଦିଅ ।"

ଆନ୍ଧ୍ର ଓଡ଼ିଶା ସୀମା ଟପି ଓଡ଼ିଶାରେ ପହଞ୍ଚିଲୁ 'କେରେଡ଼ା'ରେ । ବହୁତ ଲୋକ ଜମା ହୋଇଥିଲେ । ଅଧିକାଂଶ ତେଲୁଗୁ, ବଡ଼ ବଡ଼ ଚାଷୀ ବେପାରୀ ସେଠି ଥିଲେ, ଆଉ ଥିଲେ କନ୍ଧମାନେ । ଅଟକିଲୁ । ସେମାନେ ଅଭ୍ୟର୍ଥନା କଲେ । ତେଲୁଗୁ ଜମି ମାଲିକମାନେ 'ଭୂଦାନ ଦେବୁ' କହିଲେ, ଭୂଦାନ କର୍ମୀମାନେ ଦାନପତ୍ର ଦେଇଥିଲେ, ସେମାନେ ପୂରଣ କରି ସାରିଥିଲେ ବଢ଼େଇ ଦେଲେ । ଭାବିଥିଲି ସେ ଖୁସି ହେବେ । ସେ ଛୁଇଁଲେ ବି ନାହିଁ । କହିଲେ "ଜମି ମୋର କଣ ହେବ ? ଭୂଦାନ କଣ ତୁମେ ଆଗେ ବୁଝିଛ ନା ? ବୁଝିଥିଲେ ତୁମର ତୁମେ ତୁମ ଗାଁ ଲୋକଙ୍କୁ ଭୂମିହୀନ ଗରିବଙ୍କୁ ଦିଅନ୍ତ, ପୋଷନ୍ତ, ମତେ କାହିଁକି ଯାଚନ୍ତ ? ରହ ମୁଁ ବୁଝେଇବି ।"

ସେ ଓହ୍ଲେଇ ପଡ଼ିଲେ । ବସିବାକୁ ଜାଗା ନାହିଁ । ବାଟ କଡ଼ରେ କେରେଡ଼ା ସପ୍ତାହ ହେଉ-ହେଉ । ସେତେବେଳେ ନୂଆ ସ୍କୁଲଟିଏ ତୋଳା ହୋଇଥାଏ, ତଳ ଓଦା, ଏଣ୍ଟାଚୁଡ଼ିଏ ପଡ଼ି ହୋଇଥାଏ । ସମସ୍ତେ ତାରି ଉପରେ ବସିଲୁ । ସେମାନଙ୍କ ସଙ୍ଗେ ସେ କଥାଭାଷା ହେଲେ, ଦୁଃଖ ସୁଖ ହେଲେ, ଦେଶର ସମସ୍ୟା ଗରିବଙ୍କ ସମସ୍ୟା ସେ ବୁଝେଇଲେ । ଓଡ଼ିଆରେ କହନ୍ତି, ପୁଣି ତେଲୁଗୁରେ କନ୍ଧ ଭାଷାରେ ବୁଝେଇ ଦିଅନ୍ତି । ମୁଣି ଦେଖାଇଲେ, ତେଲୁଗୁ ପ୍ରଚାରପତ୍ରଗୁଡ଼ିକ ଆନ୍ଧ୍ରଦେଶରେ ବି ସରି ଯାଇଛି । ଦୁଃଖିତ ହେଲେ । ପଠାଇଦେବ କହିଲେ । ଘଣ୍ଟାଏ ରହିଲେ । ଭୂଦାନ ଆଉ ଲେଖି ନେଲେ ନାହିଁ । କହିଲେ "ତୁମେ ଆଗେ ବୁଝ, ଆଗେ ଭାବ, ତୁମେ ନିଜେ ଉପାୟ ଚିନ୍ତା କର, ତାପରେ ଯାହାହେଲେ କରିବ ।"

ଆମର ପରମ ସୌଭାଗ୍ୟକୁ ସେ ସ୍ୱୟଂଗଡ଼ାରେ ଆମ ଆତିଥ୍ୟ ସ୍ୱୀକାର କଲେ । ମୁଁ ୧୯୫୪ରେ ବଦଳି ହେଲି । ସେ ମଝିରେ ମଝିରେ ଆସନ୍ତି, କେବେ କେବେ ରହନ୍ତି ଆମ ପାଖେ । ଲୋକାରଣ୍ୟ ହୋଇଯାଏ । ପୁରୀରେ ମୁଁ ଥିଲି ୧୯୫୪-୫୭ ସେଠିକୁ ବି ଆସିଛନ୍ତି କେତେଥର । ତାପରେ ଭୁବନେଶ୍ୱରକୁ ।

## ମାନପୁର

୧୯୫୩ ଅରମ୍ଭର ବଶିଷ୍ଟ ଘଟନା, ଓଡ଼ଶାର ପ୍ରଥମ ଗ୍ରାମଦାନ ଗାଁ, ମାନପୁର ।

ଗାଁଟି କେନ୍ଦ୍ରାପଡ଼ା ସବଡଭିଜନ୍‌ରେ । ସେ ଗାଁର ବାସିନ୍ଦା କେବଳ ଗୋଖା । ତାଙ୍କ ବୃତ୍ତି କୃଷି ଓ ମାଛମରା । ୧୧୪ଟି ପରିବାର, ଲୋକସଂଖ୍ୟା ୫୮୪ । ସେ ଗାଁ ଲୋକଙ୍କର ସମୁଦାୟ ଜମି ୪୨୨ ଏକର, କାହାର ବେଶି, କାହାର କମ୍, କାହାର ନାହିଁ । ସେମାନେ ଅନ୍ୟ ଗାଁର ୧୦୦ ଏକର ଜମି ଭାଗରେ ଚଷନ୍ତି ।

ତାଙ୍କ ପାଖେ ଭୂଦାନ-ଗ୍ରାମଦାନ ବାର୍ତ୍ତା ଆଗରୁ କେହି ପହଞ୍ଚାଇ ଥିଲେ । 'ଗ୍ରାମସେବକ' ପତ୍ରିକାରୁ ସେଠାର କେଇଜଣ ପାଠୁଆ, ଦରପାଠୁଆ ଯାହା ଜାଣିଥିଲେ । ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି, ବାନରସେନାରୁ ସ୍ୱାଧୀନତା ସଂଗ୍ରାମୀ ...କେନ୍ଦ୍ରାପଡ଼ାର ଲୋକାଲ ବୋର୍ଡ଼ର ଭାଇସ୍-ଚେୟାରମ୍ୟାନ୍ ଓ ପରେ ଚେୟାରମ୍ୟାନ୍ ଥିଲେ । ସେହି ଗ୍ରାମବାସୀମାନେ ତାଙ୍କୁ ଡକାଇଲେ । ସେ ସେମାନଙ୍କର ସନ୍ଦେହ ମୋଚନ କଲେ । ଗାଁ ଲୋକେ ରାଜି ହେଉଥିଲେ, କିନ୍ତୁ ଅଧିକ କିଛି ଜାଣିବାକୁ ଚାହୁଁଥିଲେ । ଭୂଦାନ ନେତାମାନେ ୨୮-୧-୫୩ରେ ମାନପୁର ଗଲେ, ଲୋକଙ୍କୁ ଡାକିଲେ, କଥାଭାଷା ହେଲେ, ପୁଣି ସେମାନେ ଭଲ କରି ଭାବନ୍ତୁ, ନିଜେ ବସି ବିଚାର କରନ୍ତୁ କଣ କରିବେ, ଏପରି କହି ଚାଲି ଆସିଲେ ।

ମାନପୁର ଗାଁ ଲୋକେ ଉତ୍ସାହରେ ମାତି ଉଠିଥିଲେ, ୩୦-୧-୧୯୫୩ରେ ସେମାନେ ସମସ୍ତେ ମିଶି ତାଙ୍କ ଗାଁର ସବୁ ଜମିକୁ ଦାନ ଦେଇଦେଲେ ବୋଲି ଦାନପତ୍ର ଲେଖିଦେଲେ । ତା ୧୨-୨-୫୩ରେ ପୁରୀଠାରେ ସର୍ବୋଦୟ ମେଳାରେ ଏହି ଗ୍ରାମଦାନ ଘୋଷିତ ହେଲା । ସମଗ୍ର ଭାରତରେ ମଙ୍ଗରୋଠ ପରେ ଏହା ଦ୍ୱିତୀୟ ଗ୍ରାମଦାନ ।

ସେ ଖବର ଚାରିଆଡ଼େ ଖେଳିଗଲା । ଓଡ଼ିଶାରେ ପ୍ରଥମ ଗ୍ରାମଦାନ ହେଲା, ମାନପୁରର ହରିଜନ ଗୋଖା ଚାଷୀ ସବୁଠା ଆଗ ଗ୍ରାମଦାନ ବିଚାରକୁ ମାନିନେଲେ । ଗ୍ରାମଦାନ ଦେଲେ ବୋଲି ଓଡ଼ିଶାରେ ଓ ଭାରତରେ ଚାରିଆଡ଼େ ପ୍ରଚାରିତ ହେଲା ।

ଲୋକେ ତାଙ୍କୁ ଧନ୍ୟ ଧନ୍ୟ କଲେ, ମାନପୁରର ଉଦାହରଣକୁ ଭୂଦାନ କର୍ମୀମାନେ ସବୁଆଡ଼େ କହି ବୁଲିଲେ, ସେହି ଦୃଷ୍ଟାନ୍ତର ପ୍ରଭାବ ଅନ୍ୟ ଗାଁମାନଙ୍କ ଉପରେ ବି ପଡ଼ିଲା ଓ ଭୂଦାନ-ଗ୍ରାମଦାନ-ସମ୍ପତ୍ତିଦାନ-ଶ୍ରମଦାନ-ଶାନ୍ତିସେନା ସଂଗ୍ରହ ଆନ୍ଦୋଳନକୁ ସାହାଯ୍ୟ କଲା। ମାନପୁର ବିଷୟରେ ନାନା ଲେଖା, ଫଟୋ, ଭାରତର ଅନ୍ୟାନ୍ୟ ଭାଷାର ପତ୍ର ପତ୍ରିକାରେ ଓ ଇଂରେଜୀ ପତ୍ର ପତ୍ରିକାରେ ପୃଥିବୀରେ ଅନ୍ୟଆଡ଼େ ବାହାରିଲା, ଖୁବ ପଢ଼ାଗଲା।

୧୯୫୩ ବୁଦ୍ଧ ପୂର୍ଣ୍ଣିମା ଦିନ ମାନପୁରରେ ଭୂମି ବଣ୍ଟନ ଉତ୍ସବ ହେଲା। ବହୁ ବିଶିଷ୍ଟ ବ୍ୟକ୍ତି ଗଲେ। ଆଚାର୍ଯ୍ୟ ମହାଶୟ ପୁରୋଧା ହେଲେ। ରମା ଦେବୀ ବଣ୍ଟନ କଲେ। ମାଳତୀ ଦେବୀ, ପଣ୍ଡିତ କୃପାସିନ୍ଧୁ ହୋତା, ଈଶ୍ୱରଲାଲ ବ୍ୟାସ, ଗୁଣନିଧି ମହାନ୍ତି, ନିଶାମଣି ଖୁଣ୍ଟିଆ, ଗୋପବାବୁ ଆଦି ବହୁ ନେତା ଥିଲେ। ଆଚାର୍ଯ୍ୟ ମହାଶୟ ପ୍ରତ୍ୟେକ ପଟ୍ଟା ପାଇବା ଲୋକ ମୁଣ୍ଡରେ ସିନ୍ଦୂର ତିଳକ ଲଗାଇଲେ, ତାଙ୍କୁ ଆଶୀର୍ବାଦ କଲେ। ମହୋତ୍ସବ ହେଲା।

ମାନପୁରରେ ଗ୍ରାମସେବା କେନ୍ଦ୍ର ହେଲା, ବହୁ ପ୍ରକାରେ ଲୋକଙ୍କୁ ସାହାଯ୍ୟ ଦିଆଗଲା, 'ନିର୍ମାଣ' କାର୍ଯ୍ୟ ଆରମ୍ଭ ହେଲା।

କିନ୍ତୁ ମାନପୁରରେ ଗ୍ରାମଦାନ ତିଷ୍ଠି ପାରିଲା ନାହିଁ, ଗୋପବାବୁଙ୍କ ଦେହାନ୍ତ ପରେ କେତେ ବାହାରିଆ ନିହିତ ସ୍ୱାର୍ଥ ଲୋକେ ସେ ଗାଁର ଏ ମେଣ୍ଟ, ଏ କଥା ବିସ୍ତାର ହୋଇ ପାରିଲେ ନାହିଁ, ଖୁଏତ ଆଶଙ୍କା କଲେ ସବୁ ଗାଁକୁ ବ୍ୟାପିବ, ସେମାନଙ୍କ ସ୍ୱାର୍ଥର ଅନିଷ୍ଟ ହେବ, ସେମାନେ ମାନପୁର ଲୋକଙ୍କୁ ନିବର୍ତ୍ତାଇବାକୁ ଲାଗିଲେ। ମାନପୁର ଗାଁ ଲୋକଙ୍କ ଭିତରେ ଲାଗିଗଲା ମତ ପରିବର୍ତ୍ତନ, ଭିନ୍ନ ମତ, କଳହଗୋଳ, ଶେଷରେ ସେ ଗାଁ ଗ୍ରାମଦାନ ତାଲିକାରୁ ଗଲା।

## ବେର୍‌ବୋଇ ଶ୍ରମଶିବିର—ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି

୧୯୫୧ରୁ ପ୍ରଦେଶସାରର ରଚନାତ୍ମକ କର୍ମୀମାନଙ୍କର କୌଣସି ସ୍ଥାନରେ ଗୋଟିଏ ଶ୍ରମ-ଶିବିର ହେଉଥାଏ, ସବୁଆଡ଼ୁ କର୍ମୀ ଆସନ୍ତି, ୭।୮ ଦିନ ରହନ୍ତି, ପ୍ରତିଦିନ ୪।୫ ଘଣ୍ଟା କୋଡ଼ି ଧରି ମାଟି ହାଣନ୍ତି, କାମ ସରିଲେ ମାପ ହୁଏ କିଏ କେତେ ମାଟି ଖୋଳିଲା, ଘଣ୍ଟାକୁ କେତେ, ତାଛଡ଼ା ସୂତାକଟା, ଆଲୋଚନା, କାର୍ଯ୍ୟ କ୍ଷେତ୍ରରେ ସଭ୍ୟମାନଙ୍କ ଅଭିଜ୍ଞତା, ନାନା ସମସ୍ୟା ଓ ତାର ସମାଧାନ, ଏସବୁ ଆଲୋଚନା ହୁଏ, ନେତାମାନେ ବି ଆଲୋଚନାରେ ଭାଗ ନିଅନ୍ତି।

## ନିଷ୍ପତ୍ତି—କେବଳ ଭୂଦାନ କାମ ହେବ

୧୪-୨-୧୯୫୩ରେ ବେର୍‌ବୋଇରେ ପ୍ରାଦେଶିକ ଶ୍ରମଶିବିର ଖୋଲିଲା । ୧୫-୨-୧୯୫୩ରେ ତାହା ସଙ୍ଗେ ସଙ୍ଗେ ସେଠି ଓଡ଼ିଶା 'ଭୂଦାନ ଯଜ୍ଞ ସମିତି' ସମ୍ପର୍କୀୟ ଯୋଡ଼ିଏ ସମିତିର ଯୌଥ ବୈଠକ ବସିଲା, ଗୋଟିଏ 'ଉତ୍କଳ ଭୂଦାନପ୍ରାପ୍ତି ସମିତି'ର ଆଉଟି 'ଉତ୍କଳ ଭୂଦାନ ବଣ୍ଟନ ସମିତି'ର । ଶ୍ରମ ଶିବିରରେ ଆଲୋଚନା କାର୍ଯ୍ୟ ଫେବୃଆରୀ ୧୪ରୁ ୧୭ ଯାଏ ଚାଲିଲା । ଆଲୋଚନା ସଭାରେ ଥିଲେ ପ୍ରଦେଶର 'ଗ୍ରାମସେବକ' (ଗ୍ରାମସେବା କେନ୍ଦ୍ର ମାର୍ଫତ୍‌ରେ ଥିବା କର୍ମୀ) ୧୪୭ ଜଣ, ଗ୍ରାମ-ସେବିକା ୧୪ ଜଣ, ପିଲା ୨୫ ଜଣ, ମୋଟ ୨୭୫ ଜଣ ଓ ଗୋପବାବୁ, ହୋତା ମହାଶୟ, ମନମୋହନ ଚୌଧୁରୀ ଆଦି । ସେତେବେଳେ କର୍ମୀମାନେ ମତଦେଲେ ଯେ ବର୍ତ୍ତମାନ ପରିସ୍ଥିତିରେ ଭୂଦାନ କାମ ମୁଖ୍ୟ କାମ ହୋଇଥିବାରୁ ଅନ୍ୟ ରଚନାତ୍ମକ ହୋଇପାରୁ ନାହିଁ, ବ୍ୟାହତ ହେଉଛୁ, କେତେ କର୍ମୀ ତାକୁ ସବୁ ବନ୍ଦ କରି ଖାଲି ଭୂଦାନରେ ଲଗିଛନ୍ତି, ଭୂଦାନ ଆନ୍ଦୋଳନ ଓ ଆଗ ପରି ବିଭିନ୍ନ କେନ୍ଦ୍ରରେ ବିଭିନ୍ନ ରଚନାତ୍ମକ କାର୍ଯ୍ୟ କରିବା ଏ ଦୁଇକଥା ଏକାଠି ଚାଲିବା ସମ୍ଭବ ହେଉ ନାହିଁ, ତେଣୁ ଖାଲି ଭୂଦାନ ହିଁ ଚାଲିବା ଉଚିତ । ଗୋପବାବୁ ତାଙ୍କ ମତ କହିଲେ ।

"ଭୂଦାନ କାମ ହିଁ ସବୁଠୁ ବଡ଼ ରଚନାତ୍ମକ କାମ, ଅନ୍ୟସବୁ ବନ୍ଦ କରି ଭୂଦାନରେ ଲଗିବା ଦରକାର ।"

ଶେଷରେ ନିଷ୍ପତ୍ତି ହୋଇଗଲା :—('ଗ୍ରାମସେବକ' ପତ୍ରିକା, ୨୩-୨-୫୩ର ଅଷ୍ଟମ ସଂଖ୍ୟା) "ବିଭିନ୍ନ ଅନୁଷ୍ଠାନର କର୍ମକର୍ତ୍ତା ଓ କର୍ମୀମାନେ ଯାହା କହିଲେ ସେଥିରୁ ଜଣାଗଲା ଯେ 'ଭୂଦାନ ଯଜ୍ଞ' କାମକୁ ଚଳାଇବା ପାଇଁ ଅନ୍ୟାନ୍ୟ କାମକୁ ଯେତେଦୂର ସମ୍ଭବ ସୀମାବଦ୍ଧ କରିଦେବା ଦରକାର, ବା ଦରକାର ହେଲେ ବନ୍ଦ କରି ଦେବାର ଆବଶ୍ୟକତା ଅନେକ କର୍ମୀ ଉପଲବ୍ଧି କରୁଛନ୍ତି ଓ ସେହି ଅନୁସାରେ ନିଷ୍ପତ୍ତି ମଧ୍ୟ କରି ସାରିଛନ୍ତି ।

'କସ୍ତୁରବା ନିଧି'ର ଗ୍ରାମସେବିକାମାନେ ଏଣିକି ନିଜ ନିଜ ଅଞ୍ଚଳରେ ଭୂଦାନ କାମକୁ ମୁଖ୍ୟ କାମ ରୂପେ କରିବେ । (ସ୍ପଷ୍ଟ ଅର୍ଥ,—'କସ୍ତୁରବା ନିଧି'ରେ ଯେଉଁଠି ଯେତେ 'ଅପା'-କେନ୍ଦ୍ର ଅଛି ସେ 'ଅପା'ମାନେ ସେ କେନ୍ଦ୍ର କାମ ନ କରି ଅର୍ଥାତ୍ କେନ୍ଦ୍ର କାମ ବନ୍ଦ କରି ଭୂଦାନ କାମରେ ବୁଲିବେ ।)

'ଉତ୍କଳ ଖଦି ମଣ୍ଡଳ'ର ଗ୍ରାମକର୍ମୀମାନେ ଅନ୍ୟାନ୍ୟ କାମ ଏକ ପ୍ରକାର ବନ୍ଦ ରଖି ଭୂଦାନ କାମରେ ହିଁ ଲଗିଛନ୍ତି, କେବଳ ଯେଉଁଠି ଚାଷର ପ୍ରୟୋଗ ହେଉଛି ସେଠି ନିତାନ୍ତ ଆବଶ୍ୟକ କାମ କରନ୍ତି (ସ୍ପଷ୍ଟ ଅର୍ଥ,—ଯେତେ ଯେତେ 'କେନ୍ଦ୍ର'ର

ତାଲିକା ଦିଆ ହୋଇଛି, କେତେଠି ଚରଖା ସଂଘ ଅମଳରୁ ୧୯୨୧ରୁ ବି କାମ ହେଉଥିଲା, କେତେଠି ୧୯୪୫ରୁ ବା ତାପରେ, ସେ କେନ୍ଦ୍ର ବି ବନ୍ଦ ହୋଇଯିବ, କର୍ମୀ ଯିବେ ଭୂଦାନ କାମରେ ବୁଲିବାକୁ) ।

ରାମଚନ୍ଦ୍ରପୁରର 'କସ୍ତୁରବା ଶିକ୍ଷା ଶିବିର'କୁ ବନ୍ଦ କରାଯାଇ ତାର ସଞ୍ଚାଳିକା ଶ୍ରୀମତୀ ଅନ୍ନପୂର୍ଣ୍ଣା ଦାସ ପୁରାପୁରି ଭୂଦାନ କାମରେ ଲାଗିବେ । (ସେହି ଶିକ୍ଷା ଶିବିରରେ ନାନା ସ୍ଥାନରେ ନାରୀକର୍ମୀ ତାଲିମ୍ ପାଉଥିଲେ, ତାଲିମ୍ ପାଇ ନୂଆ ନୂଆ କେନ୍ଦ୍ର କରୁଥିଲେ, ଆଦିବାସୀ ଅଞ୍ଚଳରେ ନବଜୀବନ ମଣ୍ଡଳର କେନ୍ଦ୍ରମାନଙ୍କରେ ବି ରହୁଥିଲେ । ଏଣିକି ନବଜୀବନ ମଣ୍ଡଳ ତାର ଅଲଗା କର୍ମୀ ତାଲିମ୍ କେନ୍ଦ୍ର ବାଜି ରାଉତ ଛାତ୍ରାବାସ ପାଖେ ରଖିଲା ) ।

ରାମଚନ୍ଦ୍ରପୁର ମୌଳିକ ତଥା ଶମ୍ଭୁ ଜିଉର-ବୁନିୟାଦିର ଶିକ୍ଷକ ଓ ଛାତ୍ରମାନେ ଭୂଦାନ କାମକୁ ନିଜ ଦୈନନ୍ଦିନ କାମର, ଏପରିକି ଶିକ୍ଷାକର୍ମର ଅନ୍ତର୍ଭୁକ୍ତ କରି ନେଇଛନ୍ତି ଓ ଏକ ସଘନ ଅଞ୍ଚଳ ଧରି କାମ ଆରମ୍ଭ କରିଛନ୍ତି ।''

ଏ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଫଳରେ ଭୂଦାନ କାମ ପାଇଁ ସଙ୍ଗେ ସଙ୍ଗେ କ୍ଷେତ୍ରରେ ପ୍ରବେଶ କରିବାକୁ ଗୋଟିଏ 'ଫଉଜ୍' ମିଳିଗଲେ, କାଳକ୍ରମେ ଓଡ଼ିଶାଯାକର ଏହି ରଚନାତ୍ମକ କର୍ମୀମାନଙ୍କ ମଧ୍ୟରୁ ଅଧିକାଂଶ ବରଗା ହେଲେ କୋରାପୁଟ ଜିଲ୍ଲାକୁ, ହେଠି ତାଙ୍କ ଭିତରୁ ଶତକଡ଼ା ୯୦ ଜଣ ରହିଗଲେ, କାମ କଲେ, ଆଗ ମିଳିମିଶି 'ଭୂଦାନ'ରେ ଲାଗିଲେ, ପଛେ ଯେତେବେଳେ ଲକ୍ଷ ଲକ୍ଷ ଟଙ୍କା ଅଣାଇ 'ସର୍ବସେବା ସଂଘ' ସେଠି ନିର୍ମାଣ କାମ କଲେ, ତାଙ୍କ ଭିତରୁ ଅଧିକାଂଶ ତହିଁରୁ ମାସିକ ବେତନ ପାଇ ସେହି 'ନିର୍ମାଣ' କାର୍ଯ୍ୟରେ ଲାଗିଗଲେ, କର୍ମୀ ଅଭାବରୁ ଭୂଦାନ କାମ ବ୍ୟାହତ ହେଲା । ପୁଣି ଏ ନିଷ୍ପତ୍ତି ଫଳରେ ଓଡ଼ିଶାର ଗାଁ ଗହଳରେ ଗାନ୍ଧୀବାଦୀ ରଚନାତ୍ମକ କର୍ମୀମାନେ ଏତେ କଷ୍ଟରେ ଏତେବର୍ଷ ଲାଗି କରି ଆସୁଥିବା ରଚନାତ୍ମକ କାର୍ଯ୍ୟର ଯେ ଏକପ୍ରକାର ପରିସମାପ୍ତି ଘଟିଗଲା ଏପରି କହିଲେ ଭୁଲ୍ ହେବ ନାହିଁ ।

ଅତଏବ ପ୍ରଶ୍ନ ଉଠିବ, ଏ ନିଷ୍ପତ୍ତି କଣ ଗୋଟାଏ ଆତ୍ମଘାତୀ-ଭୁଲ୍ ନିଷ୍ପତ୍ତି ? ତେବେ ଗୋପବାବୁ ତା କଲେ କାହିଁକି ?

ସବୁକଥା ବିଚାର କଲେ ଜଣାଯାଏ ଯେ ଏ ରଚନାତ୍ମକ କାର୍ଯ୍ୟମାନ ଆରମ୍ଭ କଲାବେଳେ ଗୋପବାବୁ ସାମ୍ନାରେ ଯେଉଁ ଆଦର୍ଶ ରଖି ଏସବୁ କରିଥିଲେ, ଏ ନିଷ୍ପତ୍ତି ବେଳେ ବି ତାଙ୍କ ଆଗରେ ଅବିକଳ ସେହି ଆଦର୍ଶ ଥିଲା, ସେ ନିଜ ବିଚାରରେ **consistent** ଥିଲେ ବୋଲି ଏ ନିଷ୍ପତ୍ତି ନେଲେ । ମୂଳରୁ ଆଦର୍ଶ ଥିଲା ଅହିଂସା, ଶୋଷଣହୀନ, ସ୍ୱାବଲମ୍ବୀ ଗ୍ରାମ ସମାଜ ପ୍ରତିଷ୍ଠା, ରଚନାତ୍ମକ କାମ କେବଳ ତାହାର

ଯାଇଁ ଅସ୍ତ୍ର । ଏତେବର୍ଷ ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟ ଚଳାଇ ସେ ଦେଖିଲେ ଯେ ତଥାପି ହିଂସା ଦ୍ୱେଷ ବଢ଼ୁଛି, ''ବୈମନସ୍ୟ' ଘୋଟୁଛି, ପଶ୍ଚିମୀ ହାଓ୍ୱା ବୋହୁଛି, ତା ପ୍ରଭାବରେ ସମାଜରେ ଆସୁଛି ହିଂସାତ୍ମକ ଶ୍ରେଣୀ-ସଂଘର୍ଷ ଧାରଣା'' । ଆସୁଛି ଦ୍ୱେଷ, ଅନୈତିକତା, ବିଶୃଙ୍ଖଳତା, ଖାଲି ଏ ରଚନାତ୍ମକ କାମ ତାକୁ ସମ୍ଭାଳି ପାରୁ ନାହିଁ, ତେଣୁ ଲୋଡ଼ା—ଯାହା ସେ ଭାବୁଛନ୍ତି ଶ୍ରେଷ୍ଠତମ ରଚନାତ୍ମକ କାମ ବୋଲି, ବ୍ରହ୍ମାସ୍ତ୍ର ବୋଲି,—ଭୂଦାନ ଆନ୍ଦୋଳନ । ତା ନ କରି ଖାଲି ବସି ସୂତାକାଟି ଖଦୀ ବୁଣି ଅହିଂସା, ଅହିଂସା ବୋଲି ମାଳା ଜପିଲେ କିଛି ହେବ ନାହିଁ, ଏପରି ସ୍ଥିତି ବଦଳିବ ନାହିଁ', ତେଣୁ ଏପରି ନିଷ୍ପତ୍ତି । ଯଦି ତାଙ୍କର ଏ ଆଦର୍ଶ ନ ଥାନ୍ତା, ଲକ୍ଷ୍ୟ ଥାନ୍ତା 'ରୁଚ୍ଛା ଗ୍ରାମ ସେବା, ଖଦୀ କାମ, ଆଦି', ତାଙ୍କର ସମାଜ ପରିକଳ୍ପନା ସହିତ ସେ କାର୍ଯ୍ୟର ସମ୍ପର୍କ ନ ଥାନ୍ତା, ସମ୍ପର୍କ ଥାନ୍ତା କେବଳ 'ଫିଜିକେଲ୍ ଟାର୍ଗେଟ୍' ଉପରେ, ତେବେ ସେ ଏ ନିଷ୍ପତ୍ତି ନେଇ ନ ଥାନ୍ତେ । କିନ୍ତୁ ତାଙ୍କର ଅଭିମୁଖ୍ୟ ସବୁବେଳେ ନୀତିଭିତ୍ତିକ, ଗୋଟିଏ ବିଶିଷ୍ଟ ଆଦର୍ଶ ଆଡ଼କୁ, ସେ ଶୁଦ୍ଧ ଗାନ୍ଧୀବାଦୀ, ସେ ଆଦର୍ଶ ପୂରଣରେ ବ୍ୟାହତ ନ ହେଲେ ସେ ସବୁବେଳେ ବାଟ ବଦଳେଇବାକୁ ପ୍ରସ୍ତୁତ, ଦରକାର ପଡ଼ିଲେ ଏକୁଟିଆ ବାଟ ଧରିବାକୁ ।

## ଶାସକମାନଙ୍କ ଦୃଷ୍ଟିଭଙ୍ଗୀ

ଦେଶର ରାଜନୈତିକ ଅବସ୍ଥା ବି ବେରବୋଇ-ନିଷ୍ପତ୍ତିର ଗୋଟିଏ କାରଣ ହୋଇଥିଲା । କଂଗ୍ରେସ ମନ୍ତ୍ରିମଣ୍ଡଳ କାର୍ଯ୍ୟଭାର ନେଲେ, ଦେଶ ରାଜନୈତିକ ସ୍ୱାଧୀନତା ବି ପାଇଲା, ଆଶା କରୁଥିଲା, ଏଥର ସବୁ ସ୍ୱପ୍ନ ସଫଳ ହେବ । ଶାସନ କ୍ଷେତ୍ରରେ ଯେଉଁମାନେ ରହିଲେ, ସେମାନେ ଦେଖିଲେ,—ସ୍ୱାଧୀନତା ପାଇଁ ଆନ୍ଦୋଳନ କରିବା ଓ ଶାସନର ଦାୟିତ୍ୱ ତୁଲାଇବା ଏକା କଥା ନୁହେଁ, ଦେଶ ଭିତରେ ନାନା ସମସ୍ୟା, ଆଗରୁ ଥିଲା, ନୂଆ ନୂଆ ଉପୁଜୁଛି, ଦେଶ ବାହାରୁ ନାନା ସମସ୍ୟା, ମୁହୂର୍ତ୍ତି ମୁହୂର୍ତ୍ତିକେ ଘୋଟି ଆସୁଛି, ଆମ ଦେଶ ଯାହା ଓ ଯେପରି, କାମ ତୁଲେଇବାକୁ ସମ୍ବଳ ଓ ମଣିଷ-ଉପାଦାନ ଯେଉଁଭଳି, ହଠାତ୍ ରାତାରାତି କିଛି ଆଖିଦୃଶିଆ ପରିବର୍ତ୍ତନ ଆଦୌ ସମ୍ଭବ ନୁହେଁ; ବୁଦ୍ଧି, କୌଶଳ, ପାଠ, ଶାଠ, ଧୈର୍ଯ୍ୟ, ବିଚାର, ନାନା କଥା ଲଗାଇ ସତର୍କ ରହି 'ଯୋଜନା' ଗଢ଼ି କାମ କରିବାକୁ ପଡ଼ିବ; ଅଭିଜ୍ଞତା, କାର୍ଯ୍ୟଦକ୍ଷତା, ବିଚକ୍ଷଣତା ଦରକାର; କେବଳ ଉତ୍ସାହ, ଆଦର୍ଶବାଦ, ସାତ୍ତ୍ୱିକତାରେ କାମ ହେବ ତା ନୁହେଁ । ପଇସା ଖର୍ଚ୍ଚ କରି ଗ୍ରାମଗୋଷ୍ଠୀ ଯୋଜନା ଚାଲିବ, ନଈ ନାଳ ବନ୍ଧା ହେବ, ସଡ଼କ ହେବ, ବିଜୁଳି ଶକ୍ତି ଆମଦାନୀ ହେବ, କାର୍ଯ୍ୟରେ ଲଗିବ, ଦେଶର ନାନା ଆବଶ୍ୟକ ପାଇଁ ବଡ଼ ବଡ଼ କାରଖାନା ବସିବ; ବହୁତ, ବହୁତ କାମ, ସବୁ କ୍ଷେତ୍ରରେ ଉତ୍ପାଦନ ବିପୁଳ ପରିମାଣରେ ବଢ଼ିବା

ଦରକାର, ସେଥିପାଇଁ ଖାଲି ଗ୍ରାମୋଦ୍‌ଯୋଗ ଓ କୁଟୀରଶିଳ୍ପ ଯଥେଷ୍ଟ ନୁହେଁ, ଆବଶ୍ୟକ ହେବ ପାଶ୍ଚାତ୍ୟ ଦେଶ ପରି ବିଜ୍ଞାନ, ଟେକ୍‌ନୋଲୋଜି, ବଡ଼ ପୁଞ୍ଜି, କଳ କାରଖାନା । ଗୋଟାକୁ ଲେଉଡ଼ିଲେ ଆଉ ଗୋଟାଏ ଆସେ, ବଳେ ଆସେ ଅବାଞ୍ଛନୀୟ ସମସ୍ୟା, ପୁଣି ତାର ସମସ୍ୟାର ସମାଧାନ ଦରକାର । ଖାଲି ଗ୍ରାମ-ସମାଜ ହିଁ ଦେଶ ନୁହେଁ, ଆଧୁନିକ ଦୁନିଆଁରେ ସହର ହେଲାଣି ଶକ୍ତି-କେନ୍ଦ୍ର, ବଢ଼ି ବଢ଼ି ଉଠୁଛୁ; ଖାଲି କୃଷୀ ମୂଲିଆ ନୁହନ୍ତି,—ଏକ ପ୍ରକାଣ୍ଡ ଶକ୍ତି ହେଲେଣି ଖଣି, କାରଖାନା, ବୃତ୍ତି ବ୍ୟବସାୟର ଶ୍ରମିକ, ପ୍ରକାଣ୍ଡ ସମସ୍ୟା ହେଲେଣି ସହରର ବେକାର, ଶିକ୍ଷିତ, ଅର୍ଦ୍ଧ ଶିକ୍ଷିତ, ଅଶିକ୍ଷିତ; ସମସ୍ୟା ତ ଗୁଣିଆଡ଼େ, ନୂଆ ନୂଆ ସମସ୍ୟା, ନିତ ନୂଆ ।

**କଂଗ୍ରେସ ଶାସକଙ୍କ ବଗ୍ଭର ସଙ୍ଗେ ସର୍ବୋଦୟ ମତବାଦୀଙ୍କ ମତର ଅମେଳ,—ନୈରାଶ୍ୟ**

କଂଗ୍ରେସୀ ଶାସକ ଆଉ ଖାଲି ଗାନ୍ଧୀବାଦୀ ଅର୍ଥନୀତିରେ ସୀମିତ ରହି ପାରିଲେ ନାହିଁ । ନୂଆ ସମସ୍ୟା ଦେଖି ନୂଆ ସମାଧାନ ବାଟ କରୁ କରୁ ତା ପ୍ରଭାବ, ନୂଆ ବଗ୍ଭରର ପ୍ରଭାବ, କ୍ଷମତା ଓ ଶାସନର ସ୍ଥିତିର ପ୍ରଭାବ ସେମାନଙ୍କ ଉପରେ ଓ ତାଙ୍କ ଅନୁଷ୍ଠାନ ଉପରେ ବି ପଡ଼ୁଥାଏ, ସେମାନେ ବଦଳୁଥାନ୍ତି, ବଦଳୁଥାନ୍ତି । ଉଦାହରଣ ନାନା କ୍ଷେତ୍ରରେ ଓ ନାନା ପ୍ରକାର । କ୍ଷମତାରେ ନଥିଲା ବେଳେ କର୍ମଚାରୀ ସଂସ୍ଥାର ନାନା ଦୋଷ ବାରି ହେଉଥାଏ, ଶାସନକୁ ଆସିଲା ପରେ ତାଙ୍କର ଉପରେ ନିର୍ଭର କରିବାକୁ ପଡ଼ୁଥାଏ, କାମ ଉଠାଇବାକୁ ଅନ୍ୟ ସଂସ୍ଥା ତ ନାହିଁ ।

କିନ୍ତୁ ବିଶୁଦ୍ଧ ଗାନ୍ଧୀବାଦୀମାନେ ଦେଖୁଥାନ୍ତି, ଏ ଲୋକେ, ଏ ବଗ୍ଭର, ଏ କାମ, ଏ ଅବସ୍ଥା ଗାନ୍ଧୀ-ନୀତିର୍ କେଉଁଠି ଭଳି ! ଦେଶ କଣ ଏଇଆ ଗ୍ଭହୁଁଥିଲା ! ଏଇଥିପାଇଁ ସ୍ୱାଧୀନତା ଆଣିଲି ! ଗରିବ ଆହୁରି ଗରିବ, ଧନୀ ଆହୁରି ଧନୀ, ଲକ୍ଷ ମିଛ କଳାବଜାର କଳାପୋଟଳି, ଲାଞ୍ଚ ବଢ଼ିଲି, ଭେଜାଲ୍ ବଢ଼ିଲି, ନିଶା ବନ୍ଦ ହେଲା ନାହିଁ, ମଦ ବଢ଼ିଲି, ଉପର ଶ୍ରେଣୀରେ ବି ମଦ, ଗ୍ଭରିତ୍ରିକ ବିକୃତି ଓ ଅଧୋଗତି ବ୍ୟାପୁଛି, ହିଂସା ବ୍ୟାପୁଛି, ଅଶାନ୍ତି, ବିକ୍ଷୋଭ, ନୈରାଶ୍ୟ ! ଯେଉଁମାନେ ସ୍ୱାଧୀନତା ଆନ୍ଦୋଳନରେ ନାନା ଦୁଃଖ କଷ୍ଟ ନିର୍ଯ୍ୟାତନା ସମୂହ କ୍ଷତି ସହି ପ୍ରାଣପାତ କରି ଲଗିଥିଲେ, କେତେ କେତେ ତ୍ୟାଗ ଦେଇଥିଲେ, ତାଙ୍କ ଭିତରୁ ବି ଅନେକେ ଗଲେଣି ବଦଳି, କିଏ ନଷ୍ଟ ହେଇସୁ, କିଏ ଓଲଟି ପଡ଼ିଲେଣି, ତ୍ୟାଗୀ ହେଲେଣି ଭୋଗୀ, କ୍ଷମତା-ଲଢ଼େଇରେ ମାତିଲେଣି, କିଏ କେଉଁବାଟେ ଆପଣା ସ୍ୱାର୍ଥ ବଢ଼ାଇବାରେ ଲାଗିଲେଣି । ସର୍ବୋଦୟବାଦୀମାନେ ସମସ୍ତଙ୍କର ଏଇ ମୂଲ୍ୟ-ଧ୍ୱଂସକାରୀ ସ୍ରୋତ ଦେଖି ତ ଚକିତ ହୋଇ ପଡ଼ୁଥିଲେ, ଭାବୁଥିଲେ—"ଗଲା, ଗଲା, ସବୁ ଭୁଷୁଡ଼ି ପଡ଼ିଲା, କି ଉପାୟ ?"

## ପୁରୁଣା ରଚନାତ୍ମକ କାର୍ଯ୍ୟ କେନ୍ଦ୍ର ବନ୍ଦ କରି ସମସ୍ତଙ୍କୁ ଭୂଦାନ କାମରେ ଲଗାଇବାରେ ସମ୍ଭାବିତ ବିପଦ

ତାହାରି ପରିପ୍ରେକ୍ଷୀରେ ଗୋପବାବୁ ଓ ତାଙ୍କ ସହିତ ସହମତ ସହକର୍ମୀମାନେ ତାଙ୍କ ପୁରୁଣା ରଚନାତ୍ମକ କାର୍ଯ୍ୟମାନଙ୍କୁ ଓ ସେହି କାର୍ଯ୍ୟମାନଙ୍କର କେନ୍ଦ୍ରମାନଙ୍କୁ ଦେଖିଲେ, ସେସବୁ ଏତେ କରି ନୂଆ ସମସ୍ୟାର ନୈତିକ ମୂଲ୍ୟ ଧ୍ୱଂସକୁ ରୋକି ହେଲା ନାହିଁ, ବରିଲ, —ରୋକିବାକୁ ଏକମାତ୍ର ଉପାୟ ଭୂଦାନ-ବିପ୍ଳବ । ତେଣୁ ଆଗ ସେ, ସମାଜ ବଦଳିବ, ଆଦର୍ଶ ମୂଲ୍ୟବୋଧ ପ୍ରତିଷ୍ଠା ହେବ, ହୃଦୟ ପରିବର୍ତ୍ତନ ହେବ, ତାପରେ ରଚନାତ୍ମକ କାମ ତହିଁରୁ ଉପୁଜିବ, ସଭୁଟି ।

ସେ ଏକ ପ୍ରକାର ଚରମପନ୍ଥୀ ନିଷ୍ପତ୍ତି । ଫଳ ନିର୍ଭର କରିବ ଆନ୍ଦୋଳନର ସାଫଲ୍ୟ ଉପରେ । ସଫଳ ହେଲେ ତ ହେଲା । ବିଫଳ ହେଲେ ଖାଲି ଯେ ଶ୍ରମ ନିଷ୍ଫଳ ହେବ, ଆଉର ନୈରାଶ୍ୟ ଘୋଟିବ ସେତିକି ନୁହେଁ, ଘୋର ଗହଳରେ ଯେଉଁଠି ଏତେକାଳ ଗାନ୍ଧୀବାଦୀ ଆଦର୍ଶ ଓ କର୍ମ ବିଷୟରେ ଲୋକଙ୍କୁ ମତାଇବାକୁ ଚେତାଇବାକୁ କେନ୍ଦ୍ର ଗୋଟିଏ ଗୋଟିଏ ଥିଲା, ସାନ ହେଉ ବଡ଼ ହେଉ, ଘୋରଅନ୍ଧ ଅନ୍ଧାର ଘୋଟିଲେ ବି "In that little Goschen there shall be light" ସେଗୁଡ଼ିକ ହୁଏତ ଅନ୍ଧାର ହୋଇଯିବ ।

## 'ନବଜୀବନ ମଣ୍ଡଳ'ର କେନ୍ଦ୍ରଗୁଡ଼ିକ ଆଗପରି ଆଦିବାସୀ କାମ କଲେ

ଆଦିବାସୀ ଅଞ୍ଚଳରେ କାମ କରୁଥିବା 'ନବଜୀବନ ମଣ୍ଡଳ'ର କେନ୍ଦ୍ରଗୁଡ଼ିକ ଆଗ ପରି ରହିଲା ଓ କାମ କଲା । ମାଳତୀ ଦେବୀ ଓ ନବବାବୁ ସେଗୁଡ଼ିକ ସହିତ ସଂଶ୍ଳିଷ୍ଟ । 'ନବଜୀବନ ମଣ୍ଡଳ' ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ, ତାର କର୍ମକର୍ତ୍ତା ଅଲଗା, କିନ୍ତୁ ନବବାବୁ ଓ ମାଳତୀ ଦେବୀ ହିଁ ପ୍ରକୃତରେ ତାର ପ୍ରାଣ । କୋରାପୁଟ ଜିଲ୍ଲାର ମୁଖ୍ୟ ଭୂଦାନ ପରିଚାଳକ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ 'ନବଜୀବନ ମଣ୍ଡଳ'ର ସଭାପତି ହେଲେ, କେନ୍ଦ୍ରର କର୍ମୀମାନେ ଭୂଦାନ କାର୍ଯ୍ୟରେ ସାହାଯ୍ୟ କଲେ, କିନ୍ତୁ ତାଙ୍କ ପ୍ରଧାନ କାମ ତାଙ୍କ ଆଦିବାସୀ-ସେବା କାମ, ସେମାନେ ତାହାହିଁ କଲେ । କସ୍ତୁରବା ଗାନ୍ଧୀ ସ୍ମାରକନିଧିଙ୍କ ଦ୍ୱାରା ପରିଚାଳିତ ଆଦିବାସୀ-ସେବା କେନ୍ଦ୍ରମାନଙ୍କ ଭିତରୁ କେତୋଟି ବି ଆଦିବାସୀ ସେବା କାର୍ଯ୍ୟରେ ରହିଲେ । ଶ୍ରୀମତୀ ମାଳତୀ ବିଶାଳ ଜନେ ଆଦିବାସୀଗତ ପ୍ରାଣା, କାଳକ୍ରମେ ଉପ୍ରିଗୁଡ଼ା କେନ୍ଦ୍ର ଗଲା, କିନ୍ତୁ ସେ ରହିଲେ ଅତି ଅନୁନ୍ନତ ଡଂଗ୍ରିଆ କନ୍ଧଙ୍କ ସେବା କରିବା ପାଇଁ ନିୟମଗିରି ପର୍ବତ ଉପରେ, ଲୁଟିକୋଣା (ବିଷମକଟକ ରେଲ ଷ୍ଟେସନ)ଠାରୁ ଗୁଲି ଗୁଲି ୨ ମାଇଲ ସମତଳ ବାଟ,

ତାପରେ ପାହାଡ଼ ଚଢ଼ି ଚଢ଼ିବା ସାଢ଼େ ତିନିହଜାର ଫୁଟ ଉଚ୍ଚରେ ଆଉ ଦଶମାଇଲ ଦୂରରେ ଖାମ୍ପେସି ଗାଁ, ସେଇଠି ଆଶ୍ରମ କୁଟୀର କଲେ, ସେଇଠି ରହିଲେ, ଅଛନ୍ତି ଏବେ ସୁଦ୍ଧା । ଖୁବ୍ ଭଲ କାମ କରି ଆସିଛନ୍ତି ଓ କରୁଛନ୍ତି ।

## ଭୂଦାନ ଯଜ୍ଞ ଆନ୍ଦୋଳନର ଉପାୟ ଓ ଉଦ୍ଦେଶ୍ୟ—ନୈତିକ ସତ୍ୟାଶ୍ରୟୀ ଅହିଂସ ଶୋଷଣହୀନ ସ୍ୱାବଲମ୍ବୀ ସମାଜ, ସାମୂହିକ ଚେତନା

ଏ ଯେଉଁ ଭୂଦାନ ଯଜ୍ଞ ଆନ୍ଦୋଳନର ବନ୍ୟା ବୁହାଇଦେଲେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ, ସେ ଖାଲି ଜମି ଟିକିଏ ଜଣକଠୁ ମାଗି ଆଉ ଜଣକୁ ଦେବା ନୁହେଁ, ସେଇଟା ତାର ନାନା ବାହ୍ୟ ପ୍ରକାଶ ଭିତରୁ ଗୋଟିଏ ପ୍ରକାର ପ୍ରକାଶ । ମଣିଷ ଖାଲି ନିଜ ସ୍ୱାର୍ଥ କଥା ଭାବନ୍ତି, ପର ଗଡ଼ି ମଲେ ବି ଭାବନ୍ତି ନାହିଁ । ଭାବନ୍ତୁ । ନିଜ ସମାଜରେ ସମସ୍ତେ ଯେପରି ସୁଖଶାନ୍ତିରେ ଚଳିବେ ରହିବେ, ପ୍ରତ୍ୟେକେ ସେହି କଥାକୁ ଚେତନ୍ତୁ, ତାହାର ଦାୟିତ୍ୱ ନିଅନ୍ତୁ । ମଣିଷ ସମାଜ ହିଁ ପ୍ରତି ମଣିଷର କାଳ କାଳକୁ ସ୍ଥାୟୀ ପରିବାର, ତାରି ପାଇଁ କାମ କରନ୍ତୁ, ଦିଅନ୍ତୁ । ସମସ୍ତେ ସେତିକରେ ଚଳିବେ, ନିଜର ବି ସେତିକି ରଖନ୍ତୁ, ବାକି ସବୁ ବାଣ୍ଟି ଦିଅନ୍ତୁ, ଦେଇ ଦିଅନ୍ତୁ ଯାହାର ନାହିଁ ତାକୁ । ଆଗ କିଛିହେଲେ ତ୍ୟାଗ ଦେବାକୁ ଅଭ୍ୟାସ କଲେ ନିଜ ଭିତରେ ସମାଜ ପାଇଁ ସ୍ନେହପ୍ରୀତି ଦାୟିତ୍ୱଜ୍ଞାନ ବଢ଼େ, ଆରମ୍ଭ ହୋଇଯାଉ ।

## ସର୍ବୋଦୟ ପାତ୍ର

ସେଥିପାଇଁ ଘରେ ଘରେ ରହୁ 'ସର୍ବୋଦୟ ପାତ୍ର' । ପ୍ରତି ପରିବାର, ପ୍ରତି ଲୋକ ଭାବୁ, ମୋର ଆଉ ଜଣେ ଭାଇ ଅଛି, ଆଜିକା ପାଇଁ ସେ ଥିଲେ ଯାହା ଖାଇଥାନ୍ତା ନେଇଥାନ୍ତା ସେ ଭାଗକ ମୁଁ ଏଥିରେ ଥୋଇବି । ପନ୍ଦରଦିନେ କି ମାସକରେ ସର୍ବୋଦୟ କର୍ମୀ ଆସି ସେତକ ନେଇଯିବେ, ସେତିକରେ ଆହୁରି ଭୂଦାନ-କର୍ମୀ ପୋଷି ହେବେ, ଭୂଦାନ ଓ ସର୍ବୋଦୟ ଆନ୍ଦୋଳନ କରି ବୁଲିବେ । ତାଙ୍କ ନିଯୁକ୍ତି ପାଇଁ ବେତନ କି 'ବାହାର ଟଙ୍କା' ଦରକାର ପଡ଼ିବ ନାହିଁ, ସେମାନେ ତ୍ୟାଗ-ବ୍ରତ ସେବା-ବ୍ରତ ଧରି କାମ କରିବେ । ପୁଣି ସେ ସର୍ବୋଦୟ-ପାତ୍ର ଆୟରୁ ନ ଥିବା ଲୋକ ସାହାଯ୍ୟ ପାଇବ, କାହା ପାଇଁ ହଳବଳଦ ବି ଦିଆଯାଇ ପାରିବ । ଯେ 'ସର୍ବୋଦୟ ପାତ୍ର' ରଖିବେ ସେ ବି ଭୂଦାନ ଦର୍ଶନ ପ୍ରତି କାଳକ୍ରମେ ଆକୃଷ୍ଟ ହେବେ ।

## ସମ୍ପତ୍ତି ଦାନ

ସେମିତି, 'ସମ୍ପତ୍ତି-ଦାନ', ପଇସା କଉଡ଼ି, ଜିନିଷ । ନିଜେ ଦେବା ଆରମ୍ଭ କଲେ ହିଁ ଭୂଦାନ ବିପ୍ଳବ ପ୍ରତି ବିଶ୍ୱାସ ଓ ଆସ୍ଥା ବଢ଼ିବ ।

### ଶ୍ରମଦାନ

ଯାହାର କିଛୁ ନାହିଁ ସେ ବି ନିଜେ ଖଟି ପର ପାଇଁ ଦାନ ଦେଇ ପାରିବ। କିଏ ନ ଥିବା ନିଃସହାୟ ଲୋକଙ୍କ ପାଇଁ ନିଜ ସମୟରୁ କିଛୁ ଦେଇ ଦେହ ମେହେନତ କରିବ। କିଏ ମାସକ ମଜୁରିରୁ ଦିନକ ମଜୁରି କି ଆୟ ହେଲେ ଦାନ କରିବ, ଏପରି ଯେତେବର୍ଷ ଦେଇ ପାରିବ ପ୍ରତିଶ୍ରୁତି ଲେଖିଦେବ, ଏକାଠି କଲେ ତା ଆର୍ଥିକ ମୂଲ୍ୟରେ ବି ଗରିବ ଲୋକଙ୍କ ସେବା ହେବ।

### ବୁଦ୍ଧିଦାନ

କିଏ ବୁଦ୍ଧିଜୀବୀ, ତାର ବି ଦାନ ଦେବାର ଅଛି, 'ବୁଦ୍ଧିଦାନ' ଦେଉ। ସର୍ବୋଦୟ ସଂଗଠନରେ ଲେଖାପଢ଼ା କାମ କରିଦେଉ କିଛି, ପରାମର୍ଶ ଦେଉ, ବାଟ ବତାଉ, କିଏ ଲେଖକଟିଏ,—ସର୍ବୋଦୟ ବିଚାର ଲୋକଙ୍କ ପାଖେ ପହଞ୍ଚାଉ।

### କର୍ମୀ-ଜୀବନଦାନ

ବାହାରନ୍ତୁ ଏଥିପାଇଁ ସ୍ୱେଚ୍ଛାସେବୀ ଆତ୍ମତ୍ୟାଗୀ କର୍ମୀ, ଏଥିରେ ଜୀବନ ବିତାନ୍ତୁ, 'ଜୀବନଦାନୀ' ହୁଅନ୍ତୁ।

### ଶାନ୍ତିସେନା

ସ୍ଥାନେ ସ୍ଥାନେ ଗଢ଼ା ହେଉନ୍ତୁ 'ଶାନ୍ତି-ସେନା'। କେଉଁଠି କଳଗୋଳ ହେଲେ ସେମାନେ ଯାଇ ଶାନ୍ତି ଅହିଂସା ବାଟରେ ବୁଝାଇ ଶୁଝାଇ ମିଳାମିଶା କରି ଦିଅନ୍ତୁ, ଲୋକଙ୍କୁ ବୁଝାନ୍ତୁ, ବୁଝାଉଥାନ୍ତୁ, ଯେପରି ତାଙ୍କ ମନରେ କାହାରି ପ୍ରତି ହିଂସା, ଦ୍ୱେଷ, ରାଗ ନ ରହେ। ସେମାନେ କାହା ମତାମତ, ଚେହାଚେହି, ଟାଉଟର ପାଲରେ ନ ପଡ଼ନ୍ତୁ, ପରସ୍ପରକୁ ଭଲ ପାଆନ୍ତୁ, ପରସ୍ପରଙ୍କ ଦାୟିତ୍ୱ ନିଅନ୍ତୁ, ଅସ୍ପୃଶ୍ୟତା, ସାଂପ୍ରଦାୟିକତା, ଜାତି କଳିଆ, ଲୁଷାକଲି, ହିଂସାବାଦ ନ ରହୁ। ଯେଉଁଠି ଅନ୍ୟାୟ ଅତ୍ୟାଚାର ହେଉଛି ନ ଡରି, ମାଡ଼ ଗାଳି ବିପଦକୁ ମୁଣ୍ଡପାତି ତା ଆଗରେ ଠିଆ ହେଉନ୍ତୁ, ଅହିଂସା ମାର୍ଗରେ 'ପ୍ରତିରୋଧ କରନ୍ତୁ। ତାଙ୍କ ଉପରେ ହିଁ ବଡ଼ ଦାୟିତ୍ୱ। ନିଜ ମଣ୍ଡଳ ଭିତରେ ନିତିଦିନ ଯାହା ଯାହା ଘଟୁଛି ତା ସହିତ ସେମାନେ ସମ୍ପର୍କ ରଖନ୍ତୁ, ଲୋକଙ୍କ ସୁଖ ଦୁଃଖ ବୁଝନ୍ତୁ, ତାଙ୍କ ମନକୁ ସର୍ବୋଦୟ ବିଚାର ଆଡ଼କୁ ଟାଣନ୍ତୁ।

## ଲୋକେ ବୁଝନ୍ତୁ, ବିପଦ ଆସନ୍ନ । ବିଛଣା ତଳେ ସାପ ଅଛି । ଆଗ 'ଲୋକ', ତାପରେ 'ଲୋକମତ', ଏ ଦୁଇଟି ଗଢ଼ା ହେଲେ ସରକାର ବି ତଦ୍ରୂପ ହେବ

ମଣିଷ ଖୁବ୍ ଭଲ କରି ବୁଝନ୍ତୁ ଗାନ୍ଧୀ ବିଷୟରେ, ବିନୋବା ବିଷୟରେ । ନିଜଠି ଯେଉଁ ସ୍ୱାର୍ଥ, ଲୋଭ, ଅହଂଭାବ ଅଛି ସେ ନିଜର ହିଁ କାଳ । ଧନୀମାନେ, ଯେଉଁମାନେ ସୁଖରେ ଅଛନ୍ତି ସେମାନେ,—ସମସ୍ତେ ବୁଝନ୍ତୁ, ଯାହାକୁ ସୁଖ ନିରାପତ୍ତା ଭାବୁଛନ୍ତି ସେ ପ୍ରକୃତରେ ତା ନୁହେଁ, ବିଛଣା ତଳେ ସାପ ଅଛି, ସେ ସାପ ସମାଜରେ ଅଗଣିତ ଲୋକଙ୍କ ନିଶ୍ୱାସ, ଦାରିଦ୍ର୍ୟ ଶୋଷଣ ନୈରାଶ୍ୟ ପ୍ରପୀଡ଼ିତ ଦରିଦ୍ର ନାରାୟଣଙ୍କ ରାଗ, ଅବହେଳା, ସେ ସାପ ଅନୈତିକତା, ହିଂସା, ବିଦ୍ୱେଷ,—ଉପାୟ ସର୍ବୋଦୟ ବିଚାର ଆଚାର ଓ ସମାଜ । ବିଚାର ବଦଳୁ, ହୃଦୟ ତରଳୁ, ସୁଖ ଶାନ୍ତି ମୈତ୍ରୀ ପ୍ରେମ ଉପରେ ପ୍ରତିଷ୍ଠିତ ଜୀବନ ଓ ସମାଜ ହିଁ କାମ୍ୟ, ସେଥିପାଇଁ ଦରକାର—ପର ପାଇଁ ତ୍ୟାଗ, ପରକୁ ଆପଣାର ଭାବି ତା ଦାୟିତ୍ୱ ନେବା ପାଇଁ ଆତ୍ମତ୍ୟାଗ, ସ୍ନେହ, ନିରଳସ ଶ୍ରମ । ଲୋକେ ଯେପରି ଶାସନ ପାଇବାକୁ ଉପଯୁକ୍ତ ହୁଅନ୍ତି, ସେହିପରି ଶାସନ ପାଆନ୍ତି । ସ୍ୱାଧୀନ ଗଣତାନ୍ତ୍ରିକ ଦେଶରେ ଲୋକମତ ହିଁ ସରକାରକୁ ଗଢ଼େ, ଚଳାଏ, ଲୋକେ ବଦଳିଲେ ସରକାର ବି ତାଙ୍କ ଇଚ୍ଛା, ତାଙ୍କ ସହଯୋଗରେ ସେହିପରି ପାଲଟିଯିବ । ଆଗ ଲୋକ ଶୁଦ୍ଧ ହେବେ, ଦାୟିତ୍ୱସମ୍ପନ୍ନ ହେବେ, ପର ହିତ ପାଇଁ, ସମାଜ ହିତ ପାଇଁ, ଦେଶ ହିତ ପାଇଁ ଭାବି ଶିଖିବେ, ସେଇଠୁ ତାଙ୍କଠି ହେବ 'ଲୋକମତ', ଲୋକମତ ଜାଗ୍ରତ ହେଲେ ସବୁ ଠିକ୍ ହେବ ।

## ଏକମାତ୍ର ପନ୍ଥା—ଭୂଦାନ

ଏ କାର୍ଯ୍ୟର ସୂତ୍ର—ଭୂଦାନ ଯଜ୍ଞ ଆନ୍ଦୋଳନ, ଜମି ମାଗିବା ଆରମ୍ଭ, କିନ୍ତୁ ଜମି ମାଗି ନେଇ ବାଣ୍ଟି ଦେବାରେ ତାର ଶେଷ ନୁହେଁ । ଏ ଗୋଟିଏ ନୈତିକ—ଆଧ୍ୟାତ୍ମିକ ବିପ୍ଳବ, ମଣିଷର ସମୁଦାୟ ପ୍ରବୃତ୍ତି, ସମୁଦାୟ ଚେତନାକୁ ନୂଆ ବାଟରେ ଉନ୍ନତ କରିବା ଉଦ୍ୟମ, ବୈଷୟିକ କଷ୍ଟ-ପୂରଣରେ ସୀମିତ ନୁହେଁ ।

## ଗ୍ରାମଦାନ

'ଭୂଦାନ' ପ୍ରତି ଆଗ୍ରହ ବଢ଼ିବ, ଆଉ ପାହାଚେ ଗଲେ 'ଗ୍ରାମଦାନ', ସମସ୍ତେ ସବୁ ଜମି ଭୂଦାନକୁ ଦେଇ ସମୁଦାୟ ଗାଁଟି ହିଁ ସର୍ବୋଦୟ ମାର୍ଗରେ ଚାଲିବ । 'ଗ୍ରାମଦାନ' ଗାଁରେ ଗୋପବାବୁ କଣ ଦେଖିବାକୁ ଆଶା କରୁଥିଲେ ପରେ ୨୧-୩-୫୮ରେ 'ଗ୍ରାମସେବକ' ପତ୍ରିକାରେ 'ପଦଯାତ୍ରାର ଅନୁଭୂତି' ବୋଲି ଲେଖାରୁ ତା ଜଣାପଡ଼ିବ । ପଦଯାତ୍ରାରେ ସେ ଖୁବ୍ ଜଙ୍ଗଲରେ ପଡ଼ି ଯାଉଥିଲେ,

ଭୂମି ପଦଯାତ୍ରାରେ ବାହାର ପଡ଼ିଥିଲେ ଆଉ ମାସେ ଦେଢମାସରେ ଏ ଦଫାର ଗ୍ରଣ୍ଡ ସରିଯିବେ, କିନ୍ତୁ ସେ ବୁଲୁଥିଲେ "ବେମାଦ ପରେ ନିଜ ଦେହରେ ବଳ କରି ହେବା ପାଇଁ ଓ ନିଜର ଜ୍ଞାନ ବଢ଼ାଇବା ପାଇଁ", ଉତ୍ତର ବାଲେଶ୍ୱର ଓ ବଙ୍ଗ ଦେଶ ସୀମା ଆଡ଼େ ବୁଲି ଦେଖିଲେ ।

## ଗ୍ରାମଦାନ ଗାଁ କେମିତି ଦିଶିବ

"କଣ ଦେଖି ବା କି ଲକ୍ଷଣ ପ୍ରମାଣରୁ ଜଣାପଡ଼ିବ ଯେ ଗାଁଟି ଗ୍ରାମଦାନ ଗାଁ ? ଏହାର ଉତ୍ତର ବଡ଼ କଠିନ ଲାଗୁଛି, କାରଣ ସମୃଦ୍ଧି ସମ୍ପନ୍ନ ଏକତା ଥିବା ଗାଁର ଅନେକ ଲକ୍ଷଣ ଗ୍ରାମଦାନୀ ଗାଁରେ ଥିବ ହିଁ ଥିବ । ଅଧିକ କଣ ଥିବ ? ଗ୍ରାମଦାନୀ ଗାଁର ବିଶେଷତ୍ୱ କଣ ?

ଅହିଂସକ ସମାଜ ଗଠନର ନିମ୍ନତମ ସୋପାନ ହି ଗ୍ରାମଦାନ, ତା ଉପରକୁ ଶୋଷଣହୀନ ଗ୍ରାମ ସ୍ୱରାଜ୍ୟର ସିଡ଼ି ଓ ଆଗ୍ରର । ତେଣୁ ମତେ ଲାଗୁଛି, ଗାନ୍ଧିଜୀଙ୍କ ରଚନାତ୍ମକ କାମ ମଧ୍ୟରୁ ଯେଉଁଗୁଡ଼ିକ ବାହାରୁ ଜଣାଯିବ, ସେହିସବୁ ଗ୍ରାମଦାନ ଗାଁର ଲକ୍ଷଣ ହେବା ଉଚିତ । ଯଥା—

(୧) ସବୁ ଘରେ ଢେଙ୍କି ଥିବ
(୨) ସମସ୍ତେ ଖଦଡ଼ ପିନ୍ଧୁଥିବେ,
(୩) ସୂତାକଟା ଚାଲୁଥିବ,
(୪) ସ୍ତ୍ରୀ ଲୋକମାନେ ପର୍ଦ୍ଦା ଛାଡ଼ି ସହଜ୍ରମେ ଗାଁର କାମ କରି ଯାଉଥିବେ,
(୫) ଘରେ ଘରେ ବା ସାଧାରଣ ଜାଗାମାନଙ୍କରେ ପାଇଖାନାମାନ ଥିବ,
(୬) ଗାଁ ମଝିରେ ଦୋକାନ ଥିବ,
(୭) ସାଥିରେ କୋଠଧାନ ଗୋଲା ଥିବ,
(୮) ଗ୍ରାମର ପ୍ରାର୍ଥନା ମନ୍ଦିର ଥିବ, ଇତ୍ୟାଦି
(୯) ଦିନର ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ କାର୍ଯ୍ୟ ହେଉଥିବ, ଯଥା—
  (କ) ସକାଳେ ସନ୍ଧ୍ୟେ ଗ୍ରାମ ଲୋକମାନେ ସମବେତ ପ୍ରାର୍ଥନା କରୁଥିବେ,
  (ଖ) ଚାଟରେ ପିଲାପିଲିମାନେ ଶିକ୍ଷା ପାଉଥିବେ
  (ଗ) ଦ୍ୱିପ୍ରହରେ ସୂତାଯଜ୍ଞ ଚାଲୁଥିବ,
  (ଘ) ଭୋରରୁ ସଫେଇର ଧୂମ୍ ଲାଗିଯିବ,

(୧୦) ସର୍ବୋପରି, ଗାଁର ଲୋକେ ସବଳ ଦେଖାଯାଉଥିବେ ବଳାସର ଚାକ୍ଷ ନ ଥିବ, କଠିନ ଶରୀର-ଶ୍ରମ-କ୍ଷମ, କର୍ମଠ ଜଣା ପଡ଼ୁଥିବେ,

(୧୧) ପିଲାମାନେ ହର୍ଷୋତ୍ଫୁଲ୍ଲ, ପ୍ରଫୁଲ୍ଲ ଓ ସୁସ୍ଥ ଥିବେ,

(୧୨) ଗୋରୁ ଗାଈ ହୃଷ୍ଟପୁଷ୍ଟ ଥିବେ, ଇତ୍ୟାଦି ।

## ମୂଳନୀତି ହୁଡ଼ିଲେ ଭୂଦାନ ଆନ୍ଦୋଳନ ନିରର୍ଥକ ହେବ

ଗ୍ରାମର ବଳ କେଉଁଥିରେ ଏବଂ ସେ ବଳକୁ ବଢ଼ାଇବା ଉଦ୍ୟମ ସତତ ଜାରି ରହିବା ଦରକାର । ଏଭଳି ନୈତିକବୋଧ ବଢ଼ିବା ଦରକାର, ସେ କହିଛନ୍ତି । "ପ୍ରେମ, ସହଯୋଗ, ଶ୍ରମ ଓ କୃଷି, ଏଥିରେ ଗାଁ ଗଣ୍ଡାର ପ୍ରକୃତ ବଳ । ସେ ବଳକୁ ନ ବଢ଼ାଇ ବରଂ କମେଇ ଗାଁ ଲୋକେ ସହରର 'ପଇସା ବଳ'କୁ ଅନୁକରଣ କରି ଅଧିକ ପଇସା ସମ୍ପନ୍ନ ସହରବାଲାଙ୍କର ଦାସ ହେଉଛନ୍ତି । ··· ··· ଯେଉଁ ଧାରଣାର ବଶବର୍ତ୍ତୀ ହୋଇ ଗ୍ରାମଦାନ ହେଲା ସତତ ଜାରି ରଖିବା ବରଂ ବଢ଼ାଇବା କାମ (ଭୂଦାନ ସଂସ୍ଥାର) ନିର୍ମାଣ କାର୍ଯ୍ୟଗର । ସେ ବିଷ୍ଟର ଯଦି ଗ୍ରାମଗୋଷ୍ଠୀ ଯୋଜନା ଭଳି ପଇସାର ମାହାତ୍ମ୍ୟ ସବୁବେଳେ ଲୋକଙ୍କ ଆଗରେ ରଖୁଥିବେ ତେବେ ମୂଳ ଗ୍ରାମଦାନ ଭାବନାର ପ୍ରତିକୂଳ ଭାବନା ସୃଷ୍ଟି ହେବ ଏବଂ ମୂଳ ଗ୍ରାମଭାବନା କ୍ଷୀଣରୁ କ୍ଷୀଣତର ହେବାକୁ ବସିବ । (୧୯୫୬ରୁ କୋରାପୁଟ ଜିଲ୍ଲାରେ 'ସର୍ବସେବା ସଂଘ' ଯେଉଁ 'ନିର୍ମାଣ' କାର୍ଯ୍ୟ କରିବାକୁ ଲାଗିଲେ, ଯେଥିପାଇଁ ଓଡ଼ିଶା ସରକାରରୁ ଓ ସର୍ବସେବା ସଂଘରୁ କେତେ ଟଙ୍କା ଆଣି ଖର୍ଚ୍ଚ କଲେ, ଗୋପବାବୁଙ୍କର ତାର 'ନିର୍ମାଣ' କାର୍ଯ୍ୟ ବିଷୟରେ ଏହିପରି ମତ ହେବାରୁ ସେ ତହିଁରେ ଅସଂପୃକ୍ତ ରହିଲେ) ଏହାର ପରିଚୟ ବା ପ୍ରମାଣ (୧୯୬୮ ଫେବୃଆରୀ-ମାର୍ଚ୍ଚରେ ବାଲେଶ୍ୱର ଜିଲ୍ଲାରେ) ଗୋଟିଏ ଦୁଇଟି କେନ୍ଦ୍ରରେ ଲକ୍ଷ୍ୟ କଲି, ସେଠାରେ ନୈତିକ ଶକ୍ତି ଲୋକଶକ୍ତିରେ ପ୍ରକାଶିତ ହେବା ପରିବର୍ତ୍ତେ, ପଇସାର ମାହାତ୍ମ୍ୟ ବଢ଼ୁଛି, ଏବଂ ତାର ଆନୁଷଙ୍ଗିକ-ଭେଦ, କଳି, ଅବିଶ୍ୱାସ ଓ ଶେଷରେ ଗ୍ରାମଦାନର ମୂଳଦୁଆ ଭୁସୁଡ଼ି ପଡ଼ିବାର ସୁସ୍ପଷ୍ଟ ଲକ୍ଷଣ ଦେଖା ଦେଲାଣି । ଏହାର ପ୍ରଭାବ ମଧ୍ୟ ଆଖପାଖ ଅନ୍ୟ ଗ୍ରାମଦାନୀ ଗାଁ ଉପରେ ବା ଗ୍ରାମଦାନ କରିବାକୁ ଇଚ୍ଛୁକ ଓ ଉଦ୍ୟତ ହୋଇଥିବା ଗ୍ରାମମାନଙ୍କ ଉପରେ ପଡ଼ୁଛି ।"

## ପୃଥିବୀରେ ଚଳନ୍ତା ସମସ୍ୟା ସୂଅ ବିରୁଦ୍ଧରେ ଭୂଦାନ ଏକ ଉଜାଣି ପହଁରା

ଭୂଦାନ ଆନ୍ଦୋଳନ ଗୋଟିଏ ଅଭିନବ କଠୋର କଠିନ ଆନ୍ଦୋଳନ । ପୃଥିବୀରେ ଯେତେବେଳେ **money** ('ପଇସା' ମାଧ୍ୟମରେ ଅର୍ଥ-ମାପ), **money-economy** ଚରମ କୋଣ ଆଡ଼କୁ ଗତି କରୁଛି, ପ୍ରତ୍ୟେକ କାର୍ଯ୍ୟ ପ୍ରତ୍ୟେକ

ଜିନଷର ଗୁଣ ନିର୍ଣ୍ଣୟ କରା ହେଉଛି ତାର **money value** (ପଇସା ମାପରେ ମୂଲ୍ୟ) ଦ୍ୱାରା, ଏପରିକି ପରସ୍ପର ଭିତରେ ବ୍ୟକ୍ତିଗତ ସମ୍ବନ୍ଧର, ବାପ-ପୁଅ ସମ୍ପର୍କର, ସାହିତ୍ୟ, ସଙ୍ଗୀତ, ଚିତ୍ର, ନୃତ୍ୟ ଆଦି ନାନା କଳାର, କିଏ 'ଭଲ', କିଏ 'ମନ୍ଦ', କିଏ 'ମାନନୀୟ', 'ପୂଜାସ୍ପଦ', କିଏ 'ହେୟ', ତାର ବି, ବଢ଼ି ଉଠୁଛି ସାଧାରଣ ମଣିଷଠି ପଇସା ଭେଟିବା ଛଡ଼େଇନେବା ରଖିବା **'money grabbing instinct'**, ଶ୍ରମ, ଉତ୍ପାଦନ, ବ୍ୟବସାୟ, ଦେଶ-ଦେଶ ଭିତରେ ସମ୍ବନ୍ଧ, ଦେଶ ଭିତରେ ଶାସନ, ସେବା, ସବୁ ହେଲଣି ଆସି **money**-ଭିତ୍ତିକ, ସେତେବେଳେ ଗାନ୍ଧୀବାଦୀ ଭୂଦାନ ଅର୍ଥନୀତି ଧାରା ଚାହୁଁଛି **money**ର ସ୍ଥାନ ଗୌଣ ହେଉ, ମଣିଷର ଆକାଙ୍କ୍ଷା, ପ୍ରବୃତ୍ତି, ସମ୍ପର୍କ ଭିତରକୁ ତାର ଛାଇ ନ ପଡ଼ୁ, ସମାଜ ତ ସ୍ୱାବଲମ୍ବୀ ହେବ, ଜଣକର ଶ୍ରମ ଓ ଉତ୍ପାଦନର ବଦଳ (**barter**) ଦେଇଭଲି ସେ ଅନ୍ୟ ଜଣକର ଶ୍ରମ ଓ ଉତ୍ପାଦନରୁ ସେ ନିଜେ ଭେଡ଼ି ନ ଥିବା ଆବଶ୍ୟକ ମେଣ୍ଟିଯିବ ।

## କେନ୍ଦ୍ରୀକରଣ ବନାମ୍ ବିକେନ୍ଦ୍ରୀକରଣ

ଖାଲି ସେତିକ ନୁହେଁ, ପୃଥିବୀରେ ସବୁ କ୍ରମେ ହୋଇଆସୁଛି କେନ୍ଦ୍ରୀଭୂତ, ଧନ, କ୍ଷମତା, ନାନା ବିଷୟରେ ଲୋକଙ୍କ ରୁଚି, ମତ, ଭୂଦାନର ଗାନ୍ଧୀ-ନୀତି, —ବିକେନ୍ଦ୍ରୀକରଣ । ବ୍ୟକ୍ତି ହେବ ସ୍ୱାଧୀନ, ନିଜର କଣ ଦରକାର, କଣ ତାକୁ ରୁଚେ ସେ ଭାବିବ, ସେ ହେବ ସରଳ, ନିରାଡ଼ମ୍ବର, ପରିଶ୍ରମୀ, ନୈତିକ, ପରୋପକାରୀ, ଆତ୍ମତ୍ୟାଗୀ, ପର ପ୍ରତି ସ୍ନେହୀ, ସତ୍ୟ ଓ ଅହିଂସା ତା ଦର୍ଶନ । ସେ ତେଣୁ ସ୍ୱୟଂନିୟନ୍ତ୍ରିତ । ଦେଶରେ ପ୍ରଧାନ ଏକକ ସେହି, ବ୍ୟକ୍ତି, କାହା ମତର ଧନର କ୍ଷମତାର ଦାସ ନୁହେଁ । ଗୁଡ଼ିଏ ବ୍ୟକ୍ତିଙ୍କ କୁଟୁମ୍ବ ପରି ସହଯୋଗରେ ଗୋଟିଏ ଗ୍ରାମ ସମାଜ, ନିଜ ଇଚ୍ଛାରେ ସ୍ୱୟଂନିୟନ୍ତ୍ରିତ, ଅହିଂସ, ଶୋଷଣହୀନ, ସ୍ୱାବଲମ୍ବୀ, ସେ ନିଜେ ଭିଆଏ ନିଜେ ଚଳେ, ନିଜ ଶକ୍ତି ଅନୁସାରେ କାମ କରେ ଉତ୍ପାଦନ କରେ, ସେ ସଂଯତ, ଅ-ଲୋଭୀ, ବେଶି ଚାହେଁ ନାହିଁ କି ହିଂସା କରେ ନାହିଁ । ଧନୀ-ନିର୍ଦ୍ଧନ ତାରତମ୍ୟ ସେଠି ନାହିଁ । ସହର ବି ସେପରି, ଧନ କମାଏଁ ସମାଜର ହିତ ପାଇଁ, ନିଜେ ସାଇତିବା ଅବସ୍ କରିବା ପାଇଁ ନୁହେଁ, ଧନୀ-ଦରିଦ୍ର ତାରତମ୍ୟ ସେଠି କମି କମି ଆସେ । ଗୁଡ଼ିଏ ସ୍ୱୟଂ ନିୟନ୍ତ୍ରିତ, ବିକେନ୍ଦ୍ରିତ, ଅହିଂସ, ସମାଜର ସହଯୋଗ-ଭିତ୍ତିକ ସମାହାର ହିଁ ରାଷ୍ଟ୍ର, ତାର ସବୁ କାମର ଉଦ୍ଦେଶ୍ୟ ବି ସେହିପରି ବ୍ୟକ୍ତି ସେହିପରି ସମାଜର ଆଦର୍ଶ ଅନୁରୂପ କାର୍ଯ୍ୟ କରିବା ।

ତେଣୁ ଭୂଦାନ-ଆନ୍ଦୋଳନ ଗୋଟିଏ ଦୃଷ୍ଟିରୁ ପୃଥିବୀଯାକରେ ଚାଲିଥିବା ସମସ୍ତ-ସ୍ରୋତର ବିପରୀତ ଦିଗରେ ଗାନ୍ଧୀ-ବିଶ୍ୱର ପ୍ରୟୋଗ କରି ନୈତିକ ବଳ ଲଗାଇ ଉଜାଣିପହଁରା । ବିନୋବା ଡାକୁଥିଲେ, ଗୋପବାବୁ ଡାକୁଥିଲେ,—

"ଜଗି ପଡ଼ନ୍ତୁ ସମସ୍ତେ ଏକା ସଙ୍ଗରେ ଏହି କାମରେ, ନ ହେଲେ, ଗଲ ଆଉ ପାରେହେବ ନାହିଁ, କାଳର କରାଳ ମୁଖ ମାଡ଼ି ଆସୁଛି, ମଣିଷର ମଣିଷପଣିଆ ସରି ଯାଉଛି, କାହା ଧନ, କୋଠାବାଡ଼ି ବଢ଼ିଲେ କଣ ହେବ ? ପୋଷାକ, ଯନ୍ତ୍ର ସଭ୍ୟତାର ସୁଖ ସୁବିଧା ବଢ଼ିଲେ କଣ ହେବ ? ଶାନ୍ତି ନାହିଁ, ସ୍ନେହ ନାହିଁ, ସ୍ୱାଧୀନ ବିଚାର ନାହିଁ, ନିରାପତ୍ତା ନାହିଁ, ଥାଇଚା ନାହିଁ । ହିଂସାର ଦାବାନଳ ଜଳି ଉଠୁଛି, ପରିଣାମ, —ବିସ୍ଫୋଟିକା । ଦାରିଦ୍ର୍ୟ ଅଭାବ ଆର୍ତ୍ତନାଦ ଯାତନା ବଢ଼ୁଛି । ସବୁ କ୍ଷେତ୍ରରେ ବଢ଼ୁଛି କେନ୍ଦ୍ରୀକରଣ, ପରମତ-ଦାସତ୍ୱ, ନିଜତ୍ୱ ନାହିଁ, ବ୍ୟକ୍ତିର ବ୍ୟକ୍ତିତ୍ୱ ନାହିଁ, ଜୀବନରେ ସୁଖ ନାହିଁ, ଯନ୍ତ୍ର ପରି ଜୀବନ, କଳ ପରି ମଣିଷ, ମାନବ ହେବ ଦାନବ । ସମାଜର ସବୁ କ୍ଷେତ୍ରରେ କେତେଟା ଲୋକ ମୁଠେଇ ଧରିଥିବେ ଚାବି, କଳ ପରି ଅନ୍ୟମାନଙ୍କୁ ନଚାଉଥିବେ, ତାଙ୍କଠୁ ବି ଚାବି ଛଡ଼େଇବାକୁ ଅନ୍ୟମାନେ ଆଗୁସାର, ତେଣୁ ବେରେ କାର ଧ୍ୱନି, 'ଏରକା' ବଣରେ ଯଦୁବଂଶ ପରି ।"

ଏ ନୂଆ କାର୍ଯ୍ୟ କଲାବେଳେ ଆଗ ମୌଳିକ ଆବଶ୍ୟକ, ମୌଳିକ ସମସ୍ୟା-ମାନଙ୍କୁ ଦୃଷ୍ଟି ଦେବାକୁ ପଡ଼ିବ, ଠେକ୍‌ଠୋକ୍ କାମ କରିବାକୁ ପଡ଼ିବ । ଏ ନୁହେଁ ସ୍ୱତନ୍ତ୍ରବଣତାମୟ ଉଚ୍ଛ୍ୱାସ, ଏ ନିତାନ୍ତ 'ପ୍ରାକ୍‌ଟିକାଲ୍' କାମ । ନାନା ସ୍ଥାନରେ ଗୋପବାବୁ ତାଙ୍କ ମତ ସ୍ପଷ୍ଟ କରି ଲେଖିଛନ୍ତି । ସେହି 'ପଦଯାତ୍ରୀର ଅନୁଭୂତି' ଲେଖାରେ ଅଛି :

"ଗ୍ରାମରେ ଲୋକଶକ୍ତି ଓ ବିଶେଷ କରି ଅହିଂସକ ଲୋକଶକ୍ତି ବଢ଼େଇବାର ବଡ଼ ଅନ୍ତରାୟ ବ୍ୟସନ । ନିଶାରେ ଯଦି ଦିନ ଭିତରୁ ଅଧେ ମୂଲ୍ୟବାନ୍ ସମୟ ମୋହବଶ ହୋଇ କଟିଯାଏ, ତେବେ ବିଚାର ବା ଶକ୍ତି ବଢ଼େଇବା ଉଦ୍ୟମ ହେବ କୁଆଡ଼ୁ ?

କି ନୈତିକ କି ଆର୍ଥିକ କୌଣସି ପ୍ରକାରର ଉନ୍ନତି ଯେ ନାରୀ ଜାଗରଣ ବିନା ହୋଇପାରିବ ନାହିଁ ଏହା ସ୍ୱତଃ-ସିଦ୍ଧ ।"

# ଛୟାଳିଶ

ଭୂଦାନ ଆନ୍ଦୋଳନର କାର୍ଯ୍ୟ କ୍ଷେତ୍ରରେ ୧୯୫୩ ଫେବୃଆରୀ ୧୪ରୁ ୧୭ ଯାଏ ପୁରୀ ଜିଲ୍ଲାର ଡେଲାଂ ପାଖ ବେରବୋଇରେ ବସିଥିବା କର୍ମୀ ସମ୍ମିଳନୀରେ ନିଷ୍ପତ୍ତି ନିଆଗଲା ଯେ ଆଗ ଉତ୍ତର ବଞ୍ଚାରପୁର ଅଞ୍ଚଳକୁ ଭୂଦାନ ଲାଗି 'ସଘନ-କ୍ଷେତ୍ର' କରାଯିବ, ଅର୍ଥାତ୍ ସେଠି ବହୁତ କର୍ମୀ ମିଶି ଏକାଠି ଭୂଦାନ ପ୍ରଚାର ଓ ଭୂଦାନ ସଂଗ୍ରହ ଆରମ୍ଭ କରିଦେବେ, ସେଠି ଗାଁମାନଙ୍କରେ ଭୂମିହୀନ ବେଶି, ଲୋକସଂଖ୍ୟା ବେଶି, କିନ୍ତୁ ଜମି ଅଳ୍ପ । ଚେଷ୍ଟା କରାଯିବ ଯେପରି ୧୦୦୦ ଦାତା ୧୦୦୦ ଏକର ଭୂଦାନ ଦିଅନ୍ତି । ଗୋପବାବୁଙ୍କୁ ମିଶାଇ ୪୦ ଜଣ କର୍ମୀ ସେ ଅଞ୍ଚଳରେ ବୁଲି ବୁଲି କାମ କଲେ । ଆଠଦିନ କାମ ହୋଇ ସ୍ଥିର ହେଲା । ଲୋକେ ଆଗ ଆଗ ଦୂରେଇ ଦୂରେଇ ରହିଲେ । ଗୋପବାବୁ କାହାରିକି ବାଧ୍ୟ କଲେ ନାହିଁ । ଥରେ 'ଟିଣା' ବୋଲି ଗୋଟିଏ ଗାଁରେ ସେ ଥାନ୍ତି, ଲୋକେ ଆସିଲେ ନାହିଁ । ସନ୍ଧ୍ୟାବେଳେ ସେ ଶୋଇଥାନ୍ତି, କେତେଜଣ ଆସିଲେ, ସେ ଶୁଣିଲାଭଳି ଫସ୍ ଫସ୍ ହେଲେ ଯେ ସେମାନେ ଭୂଦାନ ଦେବାକୁ ଆସିଛନ୍ତି । ଗଳା ଖଙ୍କାରିଲେ । ଗୋପବାବୁ ଉଠିଲେ ନାହିଁ । ସେମାନଙ୍କ ମନରେ ଧାରଣା ହେଲା, ସେମାନେ ଯାହା ଶୁଣିଥିଲେ ଯେ ଦେଖାହେଲେ ଗୋପବାବୁ ଭୂଦାନ ମାଗିବେ, ବଳେଇବେ, ସେ ଭୁଲ୍ ଧାରଣା, ଯାହାର ହୃଦବୋଧ ହେବ ସେ ଦେବ । ସେମାନେ ଚାଲିଗଲେ, ସେହିକଥା ପ୍ରଚାର କଲେ । ଲୋକଙ୍କ ଭୟ ଛୁଟିଲା, ଆସିଲେ, ଶୁଣିଲେ, ବୁଝିଲେ, ଭାବିଲେ, ଧୀରେ ଧୀରେ ମନ ତରଳିଲା, ଭୂଦାନ ଦେଲେ । କର୍ମୀମାନଙ୍କୁ ବି ଗୋପବାବୁଙ୍କର ସେହି ନିର୍ଦ୍ଦେଶ ଥାଏ । ଉତ୍ତର ବଞ୍ଚାରପୁରରେ ୧୦୦୦ରୁ ଅଧିକ ଦାତା ଭୂଦାନ ଦେଲେ, ମୋଟ ୬୧୧ ଏକର ମିଳିଲା, ସେ ଭୂମି ନ ଥିବା ଅଞ୍ଚଳ, ତେଣୁକୁ ହେଉଣ୍ଡ ସେଠି ଖୁବ୍ ହେଲା ବୋଲି କର୍ମୀମାନେ ଭାବିଲେ । ତାପରେ ସଘନ କ୍ଷେତ୍ର ହେଲା ଦକ୍ଷିଣ ଯାଜପୁର, ତାପରେ ପୂର୍ବ ଯାଜପୁର । ଗୋପବାବୁ ବୁଲୁଥାନ୍ତି ।

ଗୋପବାବୁ ବୁଲି ବୁଲି ସବୁ ଶ୍ରେଣୀର ଲୋକଙ୍କୁ ଭେଟୁଥାନ୍ତି, ବୁଝାଉଥାନ୍ତି, ଗାଁ ଲୋକ, ସହର ଲୋକ, ଛାତ୍ର, ଚାକିରିଆ, ଜମିଦାର, ମହାନ୍ତ, ନାନା ପ୍ରକାର ବୃତ୍ତିଜୀବୀ, ଦଳମତ ଶ୍ରେଣୀ ନିର୍ବିଶେଷରେ ସବୁ ଲୋକ । ଆଲୋଚନା, ବୈଠକ, ସଭା, ପ୍ରଶ୍ନୋତ୍ତର ଚାଲିଥାଏ ।

ଫେବୃଆରୀ ୨୨ରେ ଭୁବନେଶ୍ୱରରେ ସେ ଏମ୍. ଏଲ୍. ଏ.ମାନଙ୍କୁ ଭେଟିଥିଲେ, ସଭାରେ କହିଥିଲେ ।

୧୯୫୭ ଆରମ୍ଭରେ କେବେ ଗୋପବାବୁ ବିନୋବାଙ୍କ ପାଖକୁ ଜାମ୍‌ସେଦ୍‌ପୁର ଯାଇଥିଲେ । ତାଙ୍କ ସଙ୍ଗେ ରମା ଦେବୀ, ମନମୋହନ ବାବୁ, ଶରତ୍ ବାବୁ, ଆଗ୍ରଫି ହିନ୍ଦେର, ପଣ୍ଡିତ କୃପାସିନ୍ଧୁ ହୋତା, ବ୍ୟାସଜୀ, ଗୁଣନିଧି ମହାନ୍ତି ବି ଥିଲେ । ସେଠି କିଏ ଜଣେ କହିଲେ ଯେ ଧାନକଟା ସରିଲେ ଭୂଦାନ କାମ ଚାଲିବ, କାରଣ ଚାଷୀ ଧାନକଟାରେ ବ୍ୟସ୍ତ । ବିନୋବାଜୀ ବୁଝାଇଲେ ଯେ ଚାଷୀ ହାତରେ ବର୍ଷଯାକ ସବୁ ଋତୁରେ କିଛି ନା କିଛି କାମ ଥାଏ, ତା ହାତ କେବେ ଖାଲି ହେବ ବୋଲି ଅପେକ୍ଷା କରି ବସିଲେ ଭୂଦାନ କାମ ଚାଲିବ ନାହିଁ, ଭୂଦାନ ପାଇଁ ସବୁଦିନ ପ୍ରଶସ୍ତ, ଗୋପବାବୁ ସମର୍ଥନ କଲେ ।

ସେ ବର୍ଷ ବିହାରର ଚାଣ୍ଡିଲ୍‌ରେ ସର୍ବୋଦୟ ସମ୍ମିଳନୀର ୫ମ ବାର୍ଷିକ ସମ୍ମେଳନ ହେଲା । ସେଥିପାଇଁ ବଡ଼ ଖଦୀ-ଗ୍ରାମୋଦ୍‌ଯୋଗ ପ୍ରଦର୍ଶନୀଟିଏ ସେଠି ହୋଇଥାଏ । ପ୍ରଦର୍ଶନୀକୁ ଉଦ୍‌ଘାଟନ କରିବାକୁ ଗୋପବାବୁଙ୍କୁ ବିହାରର ନେତାମାନେ ନିମନ୍ତ୍ରଣ କଲେ । ତାଙ୍କ ଭାଷଣବେଳେ ସେ କହିଲେ ସେଠି କିପରି ଆଉ ଗୋଟିଏ କରୁଣ ପ୍ରଦର୍ଶନୀ ଚାଲିଛି, ଭୋଜନାଳୟ ପଛଆଡ଼େ ଅଇଣ୍ଠାପତ୍ରକୁ ସାନ ପିଲାଏ ଓଟାରି ଚଟିକି ଖାଉଛନ୍ତି, ତାଙ୍କ ହାତରୁ ଓଟାରୁଛନ୍ତି କାଉ କୁକୁର, ପୁଣି ବଡ଼ ମଣିଷ । ସମସ୍ତେ ତାଙ୍କ ଛଳ ଛଳ ଆଖି ଦେଖି ଚମକି ପଡ଼ିଲେ, ସଙ୍ଗେ ସଙ୍ଗେ ଦରିଦ୍ରଭୋଜନ ପାଇଁ ସେଠି ଆୟୋଜନ ହେଲା ଓ ତା ପରେ ସବୁ ସମ୍ମିଳନୀରେ ହେଲା ।

ପି. ଏସ୍. ପି. ନେତା ଶ୍ରୀ ନିଶାମଣି ଖୁଣ୍ଟିଆ ବି ଭୂଦାନ ପ୍ରଚାର କରୁଥାନ୍ତି । କଟକରେ ୨୯-୩-୫୭ରେ ବଡ଼ ସଭା ହେଲା, ସେଠି ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ଭାଷଣ ଦେଲେ, ନିଶାମଣି ବାବୁ ବି ଭାଷଣ ଦେଲେ । ସେବର୍ଷ ଅକ୍‌ଟୋବରରେ ଯେତେବେଳେ ଗୋପବାବୁ କଳାହାଣ୍ଡି ଜିଲ୍ଲାରେ ଭୂଦାନ ପଦଯାତ୍ରା କଲେ ସେତେବେଳେ ଗଣତନ୍ତ୍ର ପରିଷଦ ନେତା କଳାହାଣ୍ଡି ମହାରାଜା ବି ଭୂଦାନ ଦେଲେ, ସେ ଦାନ କଲେ ୧୦୦୦ ଏକର, ସେ ଗୋପବାବୁଙ୍କ ସଙ୍ଗେ କଳାହାଣ୍ଡିରେ ନାନା

ସ୍ଥାନ ବୁଲିଲେ । ଅନ୍ୟାନ୍ୟ ରାଜନୈତିକ ଦଳର କେତେ ନେତା ଭୂଦାନକୁ ସମର୍ଥନ କରୁଥାନ୍ତି ଓ ଭୂଦାନ କାର୍ଯ୍ୟରେ ସହଯୋଗ କରୁଥାନ୍ତି ।

ଜମିଦାରୀ ଉଠିଯିବାର ଥାଏ, ଜମିଦାରମାନଙ୍କଠୁ ଭୂଦାନ ମଗା ହେଉଥାଏ, ଦେଉଥାନ୍ତି, ଓଡ଼ିଶାରେ ଓ ଓଡ଼ିଶା ବାହାରେ ରହୁଥିବା କେତେ ଜମିଦାରଙ୍କ ପାଖକୁ ଭୂଦାନ ମାଗିବାକୁ ଗୋପବାବୁ ଓ ରମା ଦେବୀ ଯାଇଥିଲେ । ବହୁତ ଭୂଦାନ ସେପରି ବି ମିଳିଲା ।

ରାଜା, ଜମିଦାର, ନାନା ମତର ନାନା ଲୋକ, — ଏମାନେ କିଛି ଭୂଦାନ ଦେଲେ ବୋଲି ଯେ ଏମାନଙ୍କ ହୃଦୟ ହଠାତ୍ ବଦଳିଗଲା ଏପରି କେହି ଭାବୁ ନ ଥିଲେ, କିନ୍ତୁ ଆରମ୍ଭ ହେଲା, କ୍ରମେ ହୃଦୟ ପରିବର୍ତ୍ତନ ହେବ, ଏ ଆଶା ଗୋପବାବୁଙ୍କର ଥିଲା, ସେ ବିଶ୍ୱାସ କରୁଥିଲେ, —ପ୍ରତ୍ୟେକ ମନୁଷ୍ୟ ଅନ୍ତରରେ ଭଗବାନ ଅଛନ୍ତି, ସବୁଠି ଭଲପଣ ଅଛି, ତାର ବିକାଶ ଲୋଡ଼ା ।

ଇତ୍ୟବସରରେ ଓଡ଼ିଶା ଭୂଦାନ ଯଜ୍ଞ ଆକ୍ଟ ୧୯୫୩ ପାଶ୍ ହୋଇଗଲା । ୨୭-୧୦-୫୩ର 'ଗ୍ରାମସେବକ'ରେ ବାହାରିଲା ଯେ ସେତେବେଳକୁ ସେ ଆକ୍ଟ ରାଷ୍ଟ୍ରପତିଙ୍କ ଅନୁମୋଦନ ପାଇ ସାରିଲାଣି ।

"ଏକହଜାର ଦାତାଙ୍କଠାରୁ ଏକହଜାର ଏକର" ଏପରି ଲକ୍ଷ୍ୟ ଧାର୍ଯ୍ୟ କରି ସଘନ କାର୍ଯ୍ୟ ବାଲେଶ୍ୱର ପୁରୀ ଆଦି ଜିଲ୍ଲାରେ ହେଲା, ଗୋପବାବୁ ଓ ରମା ଦେବୀ ତହିଁରୁ କେତେକ ଉଦ୍ୟମରେ ନିଜେ ଯୋଗ ଦେଇଥିଲେ ।

୧୫-୧୦-୫୩ରୁ ୨୧-୧୦-୫୩ ଯାଏ ଗୋପବାବୁ କଳାହାଣ୍ଡିରେ ପଦଯାତ୍ରା କଲେ । ସେଠୁ ସେ ଗଲେ କୋରାପୁଟ ଜିଲ୍ଲାର ନାନା ଆଡ଼, ଜୀପ୍‌ରେ ବହୁତ ଦୂର ଦୂର, ପୁଣି ବୁଲି ବୁଲି ଦୂର ଦୂର ଗାଁ । ରାୟଗଡ଼ା ଗଲେ । ଅକ୍‌ଟୋବର ୨୮ରେ ସୁନାବେଡ଼ାରେ ଗୋଟିଏ ବଡ଼ ଭୂଦାନ ମେଳା କରାଇଲେ । କୋରାପୁଟରେ ଭୂଦାନର ବହୁଳ ପ୍ରଚାର ହେଲା । ସେଠୁ ସେ ବଲାଙ୍ଗିର ଗଲେ ଓ ୩୧-୧୦-୫୩ରୁ ଭୂଦାନ ନେତା ଶ୍ରୀ ଦାଦା ଧର୍ମାଧିକାରୀଙ୍କ ସଙ୍ଗରେ ଗସ୍ତରେ ବୁଲିଲେ । ସମ୍ବଲପୁର, ଅନୁଗୁଳ, କଟକ, ପୁରୀ, ଭୁବନେଶ୍ୱର, ବ୍ରହ୍ମପୁର, ଭଦ୍ରଖ, ବାଲେଶ୍ୱର ଗଲେ, ସବୁଠି ବଡ଼ ବଡ଼ ସଭା ହେଲା । ଦାଦା ଧର୍ମାଧିକାରୀଙ୍କ ସଙ୍ଗେ ଶ୍ରୀମତୀ କମଳା ଠକ୍‌କର ବି ଗସ୍ତ କରୁଥିଲେ । ସେମାନେ ୧୨-୧୧-୫୩ରେ ଓଡ଼ିଶାରୁ ଚାଲିଗଲେ ।

ତାପରେ ଗୋପବାବୁ ରାୟଗଡ଼ା ଓ ଗୁଣୁପୁର ଅଞ୍ଚଳରେ ବୁଲି ବୁଲି ଭୂଦାନ ପ୍ରଚାର କଲେ ।

୧୯୫୪ ଜାନୁଆରୀରେ ଗୋପବାବୁ କଟକ ଜିଲ୍ଲା କେନ୍ଦ୍ରାପଡ଼ା ଅଞ୍ଚଳରେ ଗସ୍ତ କଲେ, ତାପରେ ଏରସମାରେ ୩୦ ତାରିଖରେ ସର୍ବୋଦୟ ମେଳାରେ ଯୋଗ ଦେଲେ । ସର୍ବସେବା ସଂଘ ସମ୍ପାଦକ ବଲ୍ଲଭସ୍ୱାମୀ ଆସିଥିଲେ । ଗୋପବାବୁ ଫେବୃଆରୀରେ ବାଲେଶ୍ୱର, ଉତ୍ତର ବାଲେଶ୍ୱର ଆଡ଼େ ବୁଲିଲେ, ମାର୍ଚ୍ଚ ୨୪ରୁ ୩୦ ଯାଏ ଧର୍ମଶାଳା ଥାନାରେ ପଦଯାତ୍ରା କଲେ ଓ ତାପରେ ତା ୧୮-୨୦ ସର୍ବୋଦୟ ମେଳାରେ ଯୋଗଦେଲେ ।

ବଙ୍ଗଳାର ଭୂଦାନ ସଂଯୋଜକଙ୍କ ନିମନ୍ତ୍ରଣ ରକ୍ଷା କରି ଗୋପବାବୁ ୧୯୫୪ ମେ' ମାସ ୧୯ ତାରିଖରୁ ୩୦ ତାରିଖ ଯାଏ ମେଦିନୀପୁର ଜିଲ୍ଲାରେ ଭୂଦାନ ପାଇଁ ପଦଯାତ୍ରା କଲେ ।

ବର୍ଷାଦିନେ ସେ କୋରାପୁଟର ମୁନିଗୁଡ଼ାକୁ ଡାକ-ମୁକାମ କଲେ ଓ କୋରାପୁଟ ଜିଲ୍ଲାରେ ବୁଲିଲେ, ପୁଣି କଳାହାଣ୍ଡି, ବଲାଙ୍ଗିର, ଫୁଲବାଣୀ ଓ ଗଞ୍ଜାମ ଜିଲ୍ଲାରେ ଭୂଦାନ ଆନ୍ଦୋଳନ ପରିଚାଳନା କଲେ ।

୫-୭-୫୪ରୁ 'ଗ୍ରାମସେବକ' ମଲାଟରେ ତା ନାଁ ତଳେ ଛପା ହେଲା 'ଭୂଦାନ ଯଜ୍ଞର ବାର୍ତ୍ତାବହ' ।

ଅଗଷ୍ଟ ୫ରୁ ୨୪ ତାରିଖ ଯାଏ ସେ ପାରଳା, ମୁନିଗୁଡ଼ା, ନୂଆଗାଁ, ଭେଲ, କଣ୍ଟାବାଞ୍ଜି, ମୁନିଗୁଡ଼ା, ପାରଳା, ବ୍ରହ୍ମପୁର, ପୁରୀ ହୋଇ କଟକ ଆସିଲେ । ସବୁଠି ଭୂଦାନ କାମ କଲେ । ସେ ଚାଲି ଚାଲି ବୁଲିଥିଲେ, ପୁଣି ଦୂର ଦୂର ବାଟ ଜିପ୍‌ରେ ବୁଲିଥିଲେ । କୋରାପୁଟରେ ସେ ରାୟଗଡ଼ାରୁ ବାହାରି ଲକ୍ଷ୍ମୀପୁର ଗଲେ, ସେଠୁ ପଦଯାତ୍ରାରେ କାକିରିଗୁମା-ସିମିଳିଗୁଡ଼ା-ପଟାଙ୍ଗି ଯାଇ ସିମିଳିଗୁଡ଼ା ଲେଉଟି ଆସି ନନ୍ଦପୁର ଯାଇଥିଲେ । କୋରାପୁଟ ଜିଲ୍ଲାରେ ଏହି ଏହି ମାଇଲ ଜିପ୍‌ରେ ବୁଲି ତାଙ୍କର ରକ୍ତଚାପ ହେଲା, ଡାହାଣ ହାତ ଅବଶ ଲାଗୁଥାଏ, ତଥାପି ସେ ଗସ୍ତ କରୁଥାନ୍ତି ।

ଏହି ଦୀର୍ଘ ଗସ୍ତମାନଙ୍କରେ ଗୋପବାବୁ ଓଡ଼ିଶାରେ ଭୂଦାନ ଆନ୍ଦୋଳନ ପରିଚାଳନା କରିବା ସଙ୍ଗେ ସଙ୍ଗେ ଓଡ଼ିଶାରେ ବିନୋବାଙ୍କର ଆସନ୍ତା ଗସ୍ତ ପାଇଁ ନାନା ପ୍ରକାର ଆୟୋଜନ କରୁଥାନ୍ତି । ବିନୋବାଜୀ ୧୯୫୫ ଜାନୁଆରୀ ୨୬ ଦିନ ବଙ୍ଗ ଦେଶରେ ତାଙ୍କର ପଦଯାତ୍ରା ସାରି ବାଲେଶ୍ୱର ଜିଲ୍ଲାରେ ପ୍ରବେଶ କରିବେ, ଓଡ଼ିଶାର ଏମୁଣ୍ଡରୁ ସେମୁଣ୍ଡ ଚାଲି ଚାଲି ବୁଲି ଭୂଦାନ ବାର୍ତ୍ତା ପ୍ରଚାର କରିବେ, ତାଙ୍କ ରହଣି ସ୍ଥାନ ଠିକଣା କରିବା, ଅନ୍ୟାନ୍ୟ ସବୁ ପ୍ରକାର ବନ୍ଦୋବସ୍ତ କରିବା, ସେଥିପାଇଁ ସରକାରୀ ବେସରକାରୀ ଅନେକ ଲୋକଙ୍କ ସଙ୍ଗେ କଥାବାର୍ତ୍ତା ହେବା, ସେତେବେଳକୁ

ଓଡ଼ିଶାରେ ଭୂଦାନ ଆନ୍ଦୋଳନ ଯେପରି ଆହୁରି ବ୍ୟାପକ ହୋଇଥାଏ ସେଥିଲାଗି ଆୟୋଜନ କରିବା,—ଜନସାଧାରଣ ଓ କର୍ମୀମାନଙ୍କ ସଙ୍ଗେ ଆଲୋଚନା କରି ଏହିସବୁ କାର୍ଯ୍ୟ ସଫଳ କରିବାକୁ ସେ ପ୍ରାଣପଣେ ଚେଷ୍ଟା କରୁଥାନ୍ତି ।

'ଓଡ଼ିଶା ଭୂଦାନ ଯଜ୍ଞ ଆଇନ୍' ଅନୁଯାୟୀ 'ଓଡ଼ିଶା ଭୂଦାନ ଯଜ୍ଞ ସମିତି' ଗଢ଼ା ହୋଇଥାଏ, ତାର ପ୍ରଥମ ବୈଠକ ନଭେମ୍ବର ୧୧, ୧୯୫୪ରେ ପୁରୀରେ ବସିଲା । ଗୋପବାବୁ ସଭାପତି ହେଲେ ସେ ବୈଠକରେ ବିନୋବାଙ୍କ ଆସନ୍ତା ଗସ୍ତ ବିଷୟରେ ଓ ଭୂଦାନ କାର୍ଯ୍ୟ ବିଷୟରେ ନାନା ବ୍ୟବସ୍ଥାର ଆଲୋଚନା ହେଲା ।

# ସନ୍ତଗୁଳାଣି

## ଓଡ଼ିଶାରେ ବିନୋବାଙ୍କ ପଦଯାତ୍ରା—ଦେଓଳା

୧୯୫୫ ଜାନୁଆରୀ ୨୬ ତାରିଖ । ବାଲେଶ୍ୱର ଜିଲ୍ଲାରେ ଲକ୍ଷ୍ମଣନାଥ ଝିପି ଓଡ଼ିଶା ସୀମାରେ ଦେଓଳା ବୋଲି ଗାଁ ଟିଏ । ପାହାନ୍ତିରୁ ସେଠି ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି ରୁଣ୍ଡ ହୋଇଥାନ୍ତି, କେତେଆଡ଼ୁ ଲୋକ ଉଠି ଆସିଥାନ୍ତି । ଖୁବ୍ ଭିଡ଼ । ସକାଳୁ ବିନୋବାଜୀ ଆସି ପହଞ୍ଚିଗଲେ, ତାଙ୍କ ଦଳ ସଙ୍ଗେ ବଙ୍ଗଳାର ବିଶିଷ୍ଟ ସର୍ବୋଦୟ ନେତାମାନେ ବି ଥାନ୍ତି । ଜୟନାଦ, ଶଙ୍ଖ, ହୁଳହୁଳି ପଡ଼ିଲା । ଫୁଲମାଳ, ସୂତା ଭେଟି ଗଦା ହେଲା । ଓଡ଼ିଶା ବିନୋବାଜୀଙ୍କୁ ସ୍ୱାଗତ ଜଣାଇଲା ।

ଯେଉଁମାନେ ତାଙ୍କୁ ପାଛୋଟି ନେଇଗଲେ ତାଙ୍କ ଭିତରେ ଥିଲେ ଗୋପବାବୁ, ଆଚାର୍ଯ୍ୟ ହରିହର, ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ, ଓଡ଼ିଶା ଆସେମ୍ବ୍ଲିର ସେତେବେଳେ ବାଚସ୍ପତି ଶ୍ରୀ ନନ୍ଦ କିଶୋର ଦାସ,

ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ, ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀ, ଶ୍ରୀ ନିଶାମଣି ଖୁଣ୍ଟିଆ, ସବୁ ଜିଲ୍ଲାର ଭୂଦାନ କର୍ମୀ ଓ ଶ୍ରୀ ମନମୋହନ ଚୌଧୁରୀ ।

ଓଡ଼ିଶାରେ ବିନୋବାଜୀଙ୍କ ପଦଯାତ୍ରାରେ ହଜାର ହଜାର ବ୍ୟକ୍ତି ସମ୍ପୃକ୍ତ ଥିଲେ, ସ୍ତ୍ରୀ, ପୁରୁଷ, ଯୁବା, ବୃଦ୍ଧ ସମସ୍ତେ, ସେମାନେ ସବୁ ଶ୍ରେଣୀର, କିଏ କେତେଦୂର ପଦଯାତ୍ରାରେ ଯୋଗ ଦେଇଥିଲେ, କିଏ କେଉଁଠି ତାଙ୍କ ସଙ୍ଗେ ଆଲୋଚନା କରିଥିଲେ, ତାର ତାଲିକା କରିବା କଠିନ । ବିନୋବାଙ୍କ ଚେହେରା, ତାଙ୍କ କଥା, ତାଙ୍କ କାର୍ଯ୍ୟରୁ, ତାଙ୍କ ବିଷୟରେ ପ୍ରଚାରିତ ବିବରଣୀରୁ ତାଙ୍କ ନୀତି ନିୟମରୁ ଓ ତାଙ୍କ ଭାଷଣ ଶୁଣି ଲୋକଙ୍କୁ ସେତେବେଳେ ସେ ଲାଗୁଥିଲେ ଯେପରି ପୁରାଣ ଯୁଗର କେଉଁ ଋଷି ତପସ୍ୟାରୁ ଉଠି ଚାଲି ଆସିଛନ୍ତି ସଂସାରରେ ଶାନ୍ତି, ମୈତ୍ରୀ, କରୁଣା, ସୁନୀତି ପ୍ରତିଷ୍ଠା କରିବା ପାଇଁ, ଜଗତର ସବୁ ଭେଦ, ହିଂସା, ଦ୍ୱେଷ, ଅଭାବ, ନିରାନନ୍ଦ ଦୂର କରିବା ପାଇଁ, ସତ୍ୟଯୁଗ ପ୍ରତିଷ୍ଠା କରିବା ପାଇଁ । ସେ ପଦଯାତ୍ରା ଯୁଆଡ଼େ ଯୁଆଡ଼େ ଚାଲିଥାଏ ତେଣେ ଚାଲିଥାଏ ଗୋଟିଏ ପବିତ୍ରତାର ବାୟୁମଣ୍ଡଳ, ଚାରିଆଡ଼େ ନୂଆ ଆଶା, "ସତେ ଅବା ଯୁଗ ବଦଳିବ ।"

ଗୋପବାବୁ ମୂଳରୁ ଶେଷଯାଏ ବିନୋବାଙ୍କ ପଦଯାତ୍ରା ବେଳେ ଛାଇପରି ତାଙ୍କ ପାଖେ ପାଖେ ଥିଲେ ।

## ଲକ୍ଷ୍ମଣନାଥ

ବିନୋବାଜୀଙ୍କ ପ୍ରଥମ ରହଣି ପଡ଼ିଲା ବାଲେଶ୍ୱରର ଲକ୍ଷ୍ମଣନାଥରେ । ସେଠି ବଡ଼ ସଭା ହେଲା । ସଭାରେ ଓଡ଼ିଶାରେ ଭୂଦାନର ଅଗ୍ରଗତିର ହିସାବ ପଢ଼ା ହେଲା, —ଭୂଦାନ ମିଳିଛି ୧ ଲକ୍ଷ ୧୫ ହଜାର ଏକର, ଗ୍ରାମଦାନ ଗାଁ ସଂଖ୍ୟା—୪୭ । ବିନୋବାଜୀ କହିଲେ "ଓଡ଼ିଶାରେ ଭୂ-କ୍ରାନ୍ତିର ମହାନଦୀ ବୋହିବ ।"

## ଦୈନିକ କାର୍ଯ୍ୟ

ବିନୋବାଙ୍କ ପଦଯାତ୍ରା ଚାଲିଲା ନିର୍ଦ୍ଦିଷ୍ଟ ନିର୍ଘଣ୍ଟ ଅନୁସାରେ । ରାତି ୪ଟା ବାଜି ୧୫ ମିନିଟରେ ସେ ଯାତ୍ରା ଆରମ୍ଭ ହୁଏ, ସରେ ସକାଳ ୭ଟାରେ । ମଝିରେ ବାଟ ଚାଲୁ ଚାଲୁ ବିନୋବାଜୀ କାହା ସଙ୍ଗେ କିଛି ଆଲୋଚନା କରନ୍ତି, ଯାହାର ଯାହା ପ୍ରଶ୍ନ ଥାଏ ତାର ଉତ୍ତର ଦିଅନ୍ତି, ପୁଣି ଉତ୍ତର ଦିଅନ୍ତି ରହଣି ସ୍ଥାନରେ । ଭୂଦାନ ବିପ୍ଳବ ବିଷୟରେ ଅନେକଙ୍କର ଅନେକ ପ୍ରଶ୍ନ ଥାଏ, ବିରୋଧୀ ମତ ବି ସେ ଶୁଣନ୍ତି, ଯୁକ୍ତି ଶୁଣନ୍ତି, ପାଣ୍ଡିତ୍ୟପୂର୍ଣ୍ଣ, ବୁଦ୍ଧିମାନ୍ ଉତ୍ତର ଦେଇ ସଂଶୟ ଦୂର କରନ୍ତି, ବିନୋବା ଖୁବ୍ ବିଦ୍ୱାନ୍, ଖୁବ୍ ଜ୍ଞାନୀ, ଯୁକ୍ତିରେ ବି ବିଚକ୍ଷଣ । ଯାଉ ଯାଉ ଯେଉଁଠି ସୂର୍ଯ୍ୟ ଉଇଁ

ସେଠି ସେ ଯେକୌଣସି ଖୋଲାଜାଗାରେ ଆସନରେ ଆଖିବୁଜି ବସି ପଡ଼ନ୍ତି, ଧ୍ୟାନସ୍ଥ ହୁଅନ୍ତି, ନିଶ୍ଚଳ, ପ୍ରଶାନ୍ତ, ତାପରେ ସେଠି ଟିକିଏ ପ୍ରାର୍ଥନା ହୁଏ । ପୁଣି ବାଟ ଧରନ୍ତି । ରହଣି ସ୍ଥାନରେ ପହଞ୍ଚିଲା ପରେ ସେଠି ରୁଣ୍ଡ ହୋଇଥିବା ଜନତାଙ୍କୁ କିଛି ଟିକିଏ କହନ୍ତି ଅଳ୍ପ ସମୟ ପାଇଁ, ଚାଲିଯାନ୍ତି । ତାପରେ ସଭା ହୁଏ, ସୂତ୍ରଯଜ୍ଞ ହୁଏ, ପ୍ରାର୍ଥନା ହୁଏ, ବିନୋବା କହନ୍ତି । ଦ୍ୱିପ୍ରହରେ ବିଶ୍ରାମ ସମେତ ସବୁ ନିର୍ଘଣ୍ଟ ବନ୍ଧା । ଉପରଓଳି ପୁଣି ସଭା ହୁଏ, ବଡ଼ ସଭା, ବେଶି ବେଳ । ପ୍ରାର୍ଥନା, ସୂତ୍ରଯଜ୍ଞ, ବିନୋବାଙ୍କ ଭାଷଣ । ଶହ ଶହ ହଜାର ହଜାର ଲୋକ ତୁନି ହୋଇ ଶୁଣୁଥାନ୍ତି । ବିନୋବାଙ୍କ ସଭାରେ ସତେ ଯେପରି ଗୋଟିଏ ମନ୍ତ୍ର-ଶକ୍ତି କାର୍ଯ୍ୟ କରୁଥାଏ, ଲୋକେ ତନ୍ମୟ ହୋଇ ଶୁଣନ୍ତି ।

ରହଣି ସ୍ଥାନରେ ଗାନ୍ଧୀ-ସାହିତ୍ୟ, ବିନୋବା-ସାହିତ୍ୟ, ଭୂଦାନ-ସାହିତ୍ୟର ଗୋଟିଏ ପ୍ରଦର୍ଶନୀ ଖୋଲିଥାଏ, ସେଠି ବହି ଓ ଫଟୋ ବିକ୍ରୀ ହୁଏ । କେହି କେହି ଏ ବିନୋବାଙ୍କ 'ଗୀତା-ପ୍ରବଚନ' କିଣିଲେ ସେ ଚାହିଁଲେ ବିନୋବା ସେ ବହିରେ ଦସ୍ତଖତ କରି ଦିଅନ୍ତି, କେଉଁଠି ଧାଡ଼ିଏ ଲେଖି ଦିଅନ୍ତି "ନିତ୍ୟ ପଠନୀୟ" ।

ବର୍ଷା ହେଲେ ବି ସଭା ଭାଙ୍ଗେ ନାହିଁ, ବାଟ ଚଲା ବନ୍ଦ ହୁଏ ନାହିଁ, ବର୍ଷାରେ ଜୁଡୁବୁଡୁ ହୋଇ ବିନୋବା ଭାଷଣ ଦେଉଥାନ୍ତି, ଲୋକେ ଶୁଣୁଥାନ୍ତି, ଠିକ୍ ଠିକ୍ ବି ବିନୋବା ପଦଯାତ୍ରା କରୁଥାନ୍ତି । ବରଂ ସେ ଆନନ୍ଦରେ କହନ୍ତି "ଶୀତ, ବର୍ଷା, ଖରା, ସବୁ ତ ଈଶ୍ୱରଙ୍କ ଦାନ, ସବୁ କଲ୍ୟାଣକର ।"

## ବାଲେଶ୍ୱରରୁ ପୁରୀ

ଲକ୍ଷ୍ମଣନାଥରୁ ଜାନୁଆରୀ ୨୬ରେ ବାହାରି ବିନୋବା-ପଦଯାତ୍ରା ଚାଲିଲା ପୁରୀ ଆଡ଼େ । ବାଲେଶ୍ୱରରେ ୧୬ଟି ରହଣି ସ୍ଥାନ, ମୟୂରଭଞ୍ଜରେ ୩ଟି, କେନ୍ଦୁଝରରେ ୩ଟି, କଟକରେ ୨୫ଟି, ତାପରେ ୨୦ ମାର୍ଚ୍ଚରେ ବିନୋବାଜୀ ପୁରୀ ପହଞ୍ଚିଲେ । ସେଠି "ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ" ହେଲା ।

## ପୁରୀରେ ଅ: ଭା: ସର୍ବୋଦୟ ସମ୍ମିଳନୀ

ପୁରୀରେ ତାଳବଣିଆ ବାଲିରେ ପ୍ରକାଣ୍ଡ ଆୟୋଜନ ହୋଇଥାଏ, ଧାଡ଼ି ଧାଡ଼ି ହୋଇ ତାଳପତ୍ରଡ଼ାର ଘର ସବୁ, ଲମ୍ବା ଲମ୍ବା ତାଳପତ୍ରଡ଼ା ବା ଚାଳଛପର ଘର, ଚାଳ ଛାଉଣି କୁଟୀର କେତୋଟି, ସେହିପରି, ପ୍ରକାଣ୍ଡ ଭୋଜନଶାଳା, ଖାଇବା ଘର, ପ୍ରଦର୍ଶନୀ ଘର, ଅଫିସ୍, ନାନା ବ୍ୟବସ୍ଥା । ସେଠି ସଡ଼କ, ବିଜୁଳି ଆଲୁଅ, ପାଣିକଳ, ମାଇକ୍ ଆଦି ବ୍ୟବସ୍ଥା ହୋଇଥାଏ । ଓଡ଼ିଶା ସରକାର ସହଯୋଗ କରି ନାନା ବ୍ୟବସ୍ଥା କରିଥାନ୍ତି । ଭାରତର ଚାରିଆଡ଼ୁ ସେଠିକି ଆସିଥିଲେ ଭୂଦାନ କର୍ମୀ,

ଭୂଦାନ ନେତା, ସର୍ବୋଦୟ ପ୍ରେମୀ, ଦର୍ଶକ, ନାନା ବିଶିଷ୍ଟ ବ୍ୟକ୍ତି । ସେହିପରି ଓଡ଼ିଶାର ସ୍ୱରାଜ୍ୟ । ସେ ସମ୍ମିଳନୀରେ ନାନା ବିଦେଶୀ ଲୋକ ବି ଉପସ୍ଥିତ ଥିଲେ ।

ଓଡ଼ିଶା ବାହାର ଆଗନ୍ତୁକମାନଙ୍କ ଭିତରେ ଥିଲେ ଡକ୍ଟର ରାଜେନ୍ଦ୍ର ପ୍ରସାଦ, କାକା କାଲେଲ୍‌କାର୍, ଦାଦା ଧର୍ମାଧିକାରୀ, ଶ୍ରୀ ଶଙ୍କରରାଓ ଦେଓ, ପଣ୍ଡିତ ରବିଶଙ୍କର ମହାରାଜ, ଶ୍ରୀ ଜୟପ୍ରକାଶ ନାରାୟଣ, ଶ୍ରୀ ଧୀରେନ୍ ମଜୁମ୍‌ଦାର, ଶ୍ରୀ ସାଧୁ ଗୁରୁକ୍‌ଡୋଜି ମହାରାଜ—ସ୍ୱେ ଆଶ୍ଚର୍ଯ୍ୟ ଖଞ୍ଜଣୀବାଦକ, ଆଦି ।

ତେଣୁ ସମ୍ମିଳନୀ ପରି ସେଠି ବି ରମା ଦେବୀ ତାଙ୍କ ସହକର୍ମୀ ନାରୀକର୍ମୀମାନଙ୍କ ସଙ୍ଗେ ଦିନରାତି କାମ କରି ହଜାର ହଜାର ଲୋକଙ୍କୁ ରାନ୍ଧି ଖୁଆଇବା କାର୍ଯ୍ୟ ସୁସ୍ତୁରୂପେ ଚଳାଇଲେ । ସେ ବ୍ୟବସ୍ଥାରେ ଲୋକେ ଧନ୍ୟ ଧନ୍ୟ କଲେ, ନାନା କଥା ଶିଖିଲେ । ଶହ ଶହ ଲୋକଙ୍କ ପଂକ୍ତି ଭୋଜନ ଦେଖିବାଭଳି ହୋଇଥିଲା, ସେହିପରି ଏତେ ଲୋକରେ ସେଠିକାର ପରିଷ୍କାର ପରିଚ୍ଛନ୍ନତା । ଅସଂଖ୍ୟ ଲୋକଙ୍କ ଆନ୍ତରିକ ସହଯୋଗ ଯୋଗୁଁ ଏଡ଼େ ବଡ଼ ମେଳା କାମ ସେଠି ସୁବିଧା ଓ ଶୃଙ୍ଖଳାରେ ହୋଇଗଲା ।

ଅନେକହିନ୍ଦୁ ସହଯାତ୍ରୀଙ୍କୁ ନେଇ ବିନୋବାଜୀ ଜଗନ୍ନାଥ ମନ୍ଦିର ଭିତରକୁ ଯିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ମାତ୍ର ପଣ୍ଡାମାନେ ଓ ଜଗନ୍ନାଥ ମନ୍ଦିରର କର୍ମକର୍ତ୍ତାମାନେ ବିନୋବାଜୀଙ୍କୁ ମନ୍ଦିର ଭିତରକୁ ଛାଡ଼ିଲେ ନାହିଁ । ଗରୁଡ଼ସ୍ତମ୍ଭଠାରେ ସେ ଜଗନ୍ନାଥ ମହାପ୍ରଭୁଙ୍କୁ ଦଣ୍ଡବତ କରି ଫେରିଲେ ।

ସେଠି ୧୦ ତାରିଖରୁ ୧୪ ତାରିଖ ଯାଏ ସର୍ବସେବା ସଂଘର ବୈଠକ ବସିଲା, ତାହା ଭିତରେ ନାନା ଉପସମିତିର ବୈଠକମାନ, କର୍ମୀ ସମ୍ମିଳନୀ । ୨୪ ତାରିଖରୁ ୨୭ ତାରିଖଯାଏ ସର୍ବୋଦୟ ସମ୍ମିଳନୀ ହେଲା ।

ପୁରୀରେ ବାରଦିନ ରହି ବିନୋବାଜୀ ପହିଲି ଅପ୍ରେଲ୍ ୧୯୫୫ରେ ପୁଣି ବାହାରି ପଡ଼ିଲେ ପଦଯାତ୍ରାରେ, ନାନା ସ୍ଥାନରେ ରହଣି ହେଲା । ହେଲ୍‌ଦିଲି ବାଟେ କୋଣାର୍କ ଗଲେ, ସେଠୁ ବେର୍‌ହୋଇ ବାଟେ, ୧୦ ତାରିଖରେ ବେଗୁନିଆପଡ଼ା, ଖୋର୍ଦ୍ଧା, ନୟାଗଡ଼ ବାଟେ ଓଡ଼ଗାଁ ଦେଇ ଗଞ୍ଜାମ ଗ୍ଲଲେ ।

ଗଞ୍ଜାମର କରଚଲି ବାଟେ ସେ ଆସ୍କା ଗଲେ, ସେଠୁ ବ୍ରହ୍ମପୁର, ବ୍ରହ୍ମପୁରରେ ମେ ୭ ତାରିଖରୁ ୩ ଦିନ ଥିଲେ ।

## ଦକ୍ଷିଣକୁ ଯାତ୍ରା—ଗଞ୍ଜାମ ମାଳ

ତାପରେ ସେ ଧରିଲେ ଦିଗପହଣ୍ଡି, ପୋଡ଼ାମାରି, ଚନ୍ଦ୍ରପାଣି ବାଟ, ଗଞ୍ଜାମ ପାର୍ବତ୍ୟମାଳରେ ପଶିଲେ, ମେ ମାସ ୨୫ ତାରିଖରେ ପହଞ୍ଚିଲେ ଗଞ୍ଜାମ ମାଳରେ ରାମଗିରି-ଉଦୟଗିରି । ସିନ୍ଦୁବା ଘାଟି ବାଟେ ଯାଇ ମେ' ମାସ ୩୧ ତାରିଖରେ କୋରାପୁଟ ଜିଲ୍ଲାର ଗୁଣୁପୁର ତାଲୁକା ମେରିଙ୍ଗିରେ ପହଞ୍ଚିଲେ ।

## ରାୟଗଡ଼ା ସବ୍‌ଡିଭିଜନ୍‌ରେ—ମାଳରେ ପଦଯାତ୍ରା

୩୧-୫-୧୯୫୫ରୁ ଗ୍ରୀଷ୍ମୋପଯାକେ ସେ କୋରାପୁଟ ଜିଲ୍ଲାରେ ଗସ୍ତ କଲେ । ଏ ୧୨୦ ଦିନରୁ ସେ ଏକା ରାୟଗଡ଼ା ସବ୍‌ଡିଭିଜନ୍‌ରେ ୭୦ ଦିନରୁ ବେଶି ଗସ୍ତ କଲେ । ତାଙ୍କ ବାଟ ହୁଏତ ନିତି ମଡ଼ାବାଟଠୁ ଦୂରରେ, ନତୁବା ସେହିଭଳି ରାସ୍ତା, ଯେଉଁ ରାସ୍ତା ପଡ଼ିଛି ବଣ ପାହାଡ଼ ଭିତରେ, ସହରିଆ ସ୍ଥାନଠୁ ଦୂରରେ, ଚଳପ୍ରଚଳ ଅତି ଅଳ୍ପ । ତାଙ୍କ ବାଟରେ ପଡ଼ୁଥାଏ ଘଞ୍ଚ ଅରଣ୍ୟ, ଖାଖ ଉଚ୍ଚ ପର୍ବତ, ଚଢ଼ାଣି, ଗଭୀର ଖୋଲ, ପାହାଡ଼ି ନଈ ନାଳ । ଠାଏ ଠାଏ ଆଦିବାସୀଙ୍କ ପଲ୍ଲୀ, ଲେଙ୍ଗୁଟିପିନ୍ଧା କନ୍ଧ, କୁଭି ଖ୍ୱାଟୀ, ସଓରା, କୋଟିଆ କନ୍ଧ, ଅଜ୍ଞାତର କେଉଁ ପ୍ରାଚୀନ ସଭ୍ୟତା ଆବୋରି ରହିଛନ୍ତି, ଏ ଦୁନିଆଁ ଏ ସଭ୍ୟତା ଆଗରେ ଆବାକାବା, ଦୁସ୍ଥ, ଶୋଷିତ, ଅତ୍ୟାଚରିତ, ଅତି ଅନୁନ୍ନତ । ସେହି ଗାଁରେ ରହୁଥିବା ସରଳତର ନାଗରିକଙ୍କ ସଙ୍ଗେ ଘନିଷ୍ଠ ଭାବେ ମିଶି ମିଶି ଚାଲିଥାନ୍ତି ପଦଯାତ୍ରୀ ଦଳ, ତାଙ୍କ ଅବସ୍ଥା ଦେଖୁଥାନ୍ତି, ତାଙ୍କ ଆଗେ ପ୍ରଚାର କରୁଥାନ୍ତି ସର୍ବୋଦୟର ଆଶାପ୍ରଦ ଆଦର୍ଶ, ତାଙ୍କଠୁ ସ୍ନେହ ଓ ସମର୍ଥନ ପାଉଥାନ୍ତି । କିନ୍ତୁ ଗାଁ ଲୋକଙ୍କ ସଙ୍ଗେ ସାଙ୍ଗ ସୁଖରେ ରହି ପରସ୍ପରକୁ ସାହାଯ୍ୟ କରିବା, ଏକାଠି ମିଶି ଜଣ ଜଣକର କାମ ତୁଲେଇଦେବା, ଗୋଷ୍ଠୀଗତ ଜୀବନ,—ଯେ ସେହି ଅନୁନ୍ନତ ଆଦିବାସୀ ସମାଜର ବୈଶିଷ୍ଟ୍ୟ, କନ୍ଧ କହେ "ପାହାନାର୍ଦ୍ଧା (ବାଣ୍ଟି କରି) ତିନ୍ଦାବ (ସମସ୍ତେ ଖାଇବେ)", ବିନୋବା ବି କହିଲେ ସେହି କଥା । ସଓରା କନ୍ଧ ମନେ ରଖିଲେ ତାଙ୍କୁ 'ବିନ ବାବା', 'ବିନ ମାହାପ୍ରଭୁ' ବୋଲି । ବିନୋବା କହିଲେ ସେମାନେ ସତ୍ୟ ଯୁଗର ଲୋକ । ଆସିଗଲା ବର୍ଷାଋତୁ କୋରାପୁଟ ମାଳରେ ଯେ ଲାଗି ରହେ, ଶୀତ, ଗଲ ଗଲ ବର୍ଷା । ସେତିକିବେଳେ ବାଘ ମାତେ, ଯେଉଁ ଅଞ୍ଚଳରେ ପଦଯାତ୍ରା ଚାଲିଥାଏ ସେଠିତ ଗାଁ ମୁଣ୍ଡରୁ ବି ବାଘ ମଣିଷକୁ ଟେକି ନେଇଯାଏ, କି ଦିନ କି ରାତି,—ଆଉ କୋଟିଆକନ୍ଧ ମାଳରେ ବୁଲିଲାବେଳେ, କମ୍ପୁଡ଼ାବାଲିରୁ ଡାଂସୁରୁଡ଼ା, ପଛେ ଆଉଥରେ ଡାଂସୁରୁଡ଼ା, ହନୁମନ୍ତପୁର, ବେଲମ୍ବୁଡ଼ା, ଶିଖିରୁଡ଼ା, ସେ ଅଞ୍ଚଳ ଉଭୟ ମହାବଳ ବାଘ ଓ ବଣୁଆ ହାତୀପଲମାନଙ୍କର, ହାତୀ ବି ମଣିଷ ମାରେ, ଗାଁ ଭାଙ୍ଗିଦିଏ । ବର୍ଷାଦିନେ ଘଞ୍ଚ ବଣ, ହାତୀଆ ଘାସରେ ମଣିଷ ଲୁଚିଯାଏ, ଚଲାବାଟରେ ବି ଗଜା ଶାଳଗଛ

ଠିଆ ହୁଏ ପୁରୁଷେ ଉଚ୍ଚ, ତାଛଡ଼ା ନିବିଡ଼ ଶାଳବଣ, ବାଉଁଶ ବଣ, ଜଙ୍ଗଲ, ପ୍ରବଳ ମଶା, କୋରାପୁଟ ଜିଲ୍ଲାର ମଶା ବି ଭୟଙ୍କର, ଆନୋଫିଲିଜ ଜୟିପୁରେନ୍‌ସିଏନ୍‌, 'ଏଜେନ୍‌ସି ମ୍ୟାଲେରିଆ'ର ବାହକ, ସେ ଜ୍ୱରରେ ହୁହୁଁ ହୁହୁ ତାପ ହୁଏ ୧୦୪°, ସେରିବ୍ରେଲ୍ ହୁଏ, ମଣିଷ ମରନ୍ତି । ସ୍ଥାନେ ସ୍ଥାନେ 'ବ୍ଲାକ୍‌ୱାଟର' ଜ୍ୱର ବି ହେଉଥିଲା । ସେତେବେଳର କୋରାପୁଟ ମାଲ ସତେ ଅବା ଆଫ୍ରିକାର କଙ୍ଗୋ ବଣ, ଏବେ ଆଉ ସେ ଅବସ୍ଥା ନାହିଁ । ତାହାରି ଭିତରେ ବିନୋବାଙ୍କ ପଦଯାତ୍ରା, ବିନୋବାଙ୍କ ଅଣଷଠି, ଗୋପବାବୁଙ୍କ ଷାଠିଏ ଚାଲିଥାଏ, ଆଉ କେତେ ବୁଢ଼ା, ଟୋକା, —କେତେ ମହିଳା ବି ଥିଲେ ।

## କୁଚେଜନ୍ତ୍ରି

ମେଙ୍ଗେରିରେ ରହି ଯାତ୍ରୀଦଳ ବ୍ରହ୍ମପୁରରେ ଦିନେ ରହିଲେ, ଗୁଣୁପୁର ସହର ଆରପାଖେ ବଂଶଧାରା ନଦୀ ଡେଇଁଲେ ବ୍ରହ୍ମପୁର, ସେଠୁ ଗଲେ କୁଚେଜନ୍ତ୍ରି, ଯେଠି ଜୁନ୍ ମାସ ୨ ଓ ୩ ତାରିଖ ଏପରି ଦୁଇଦିନ ରହିଲେ ।

## ଗୁଣୁପୁର ବିଷମ କଟକ ରାସ୍ତାରେ—ଡାଂସୁରୁଡ଼ାରୁ ଫେରିଲେ

ତାପରେ ଚାଲିଲେ ବିଷମ କଟକ ଆଡ଼େ, ବାଟରେ ଚାକୁଣ୍ଡା, ଗୁଣ୍ଡି ଛାମିଣି (ସେଠି ନାରୀକର୍ମୀ କେନ୍ଦ୍ରଟିଏ ଥାଏ), ମୁଣ୍ଡିଲ୍ଲି (ସେଠି ଆଉ ଗୋଟିଏ କେନ୍ଦ୍ର) ହାଜାରୁ ଡାଂରେ ରହିଲେ । ବିଷମ କଟକରୁ ଜୁନ୍ ରେ ବାହାରି କୁଟ୍ରାଗଡ଼ା ଗଲେ, ଦୁଇ ଜାଗାରେ ବଂଶଧାରା ନଦୀରେ ପଶି ୧୦ ତାରିଖରେ ଡାଂସୁରୁଡ଼ାରେ ପହଞ୍ଚିଲେ, କୋଟିଆ କନ୍ଧମାଳର ଆରମ୍ଭ ଏଇଠୁ ।

## ବିଷମ କଟକ-ରାୟଗଡ଼ା—କୋରାପୁଟ୍ ସବ୍‌ଡିଭିଜନ୍-କୋରାପୁଟ

ସେତେବେଳକୁ କୋରାପୁଟ ଜିଲ୍ଲାରେ ତାଙ୍କର ଦୁଇମାସ ବୁଲିବା ନିର୍ଘଣ୍ଟ ଥାଏ, ତେଣୁ ସେଠୁ ଫେରି ପୁଣି ବାଟରେ କୁଟ୍ରାଗୁଡ଼ାରେ ରହିଲେ, ଚାଲିଲେ ପୁଣି ବିଷମ କଟକ । ସେଠି ୧୨ ତାରିଖ, ଚାଟିକୋଣା (ବିଷମ କଟକ ଯିବାକୁ ରେଲ୍ ଷ୍ଟେସନ୍)ରେ ୧୩ ତାରିଖ, ଚାଲିଆନ୍ତି ରାୟଗଡ଼ା ଯିବା ରାସ୍ତାରେ, ଶିବପୁର, ବୁଡ଼ଣି, ଦେଓଦଲାରେ ରହି ରାୟଗଡ଼ାରେ ୧୭ ଜୁନ୍‌ରେ ପହଞ୍ଚିଲେ । ରାୟଗଡ଼ା ସବ୍‌ଡିଭିଜନର ବଡ଼ ସହର ଓ ସଦର ମହକୁମା ସେ । ରାୟଗଡ଼ାରୁ ସେମାନେ ଚାଲିଲେ ରାୟଗଡ଼ା-କୋରାପୁଟ ରାସ୍ତାରେ, ବାଟରେ ଜପାଖାଲ୍, ଲୁମ୍ମା, କୁମ୍ଭିକୋଟାରେ ରହି କୋରାପୁଟ ସବ୍‌ଡିଭିଜନରେ ପଶିଲେ, କୁଟିଲି, କୁଟିଙ୍ଗା, ଲକ୍ଷ୍ମୀପୁର, ଡୁମୁଣିପୁର, କାକିରିଗୁମ୍ମା ଓ ଅନ୍ୟାନ୍ୟ ସ୍ଥାନରେ ରହି ରହି କୋରାପୁଟରେ ଜୁନ୍ ୨୯ରେ ପହଞ୍ଚିଲେ ।

## ଜୟପୁର

ପୁଣି ସେଠୁ ଯାତ୍ରୀମାନେ ତହିଁ ଆରଦିନ ଚାଲିଲେ କୋରାପୁଟ-ଜୟପୁର ସଡ଼କରେ, ମଝିରେ ୭ ମାଇଲଠି ଦେଓଘାଟିରେ ରହି ଜୁଲାଇ ପହିଲରେ ଘାଟି ଓହ୍ଲାଇ ପହଞ୍ଚିଲେ ଜୟପୁର ।

## ନବରଙ୍ଗପୁର ସବ୍‌ଡିଭିଜନ୍—ଡାବୁଗାଁରୁ ଲେଉଟିଲେ କୋରାପୁଟ

ଜୟପୁରରୁ ନବରଙ୍ଗପୁର ସଡ଼କ ଧରିଲେ, ଜୁଲାଇ ୬ରେ ପାପଡ଼ାହାଣ୍ଡି ପହଞ୍ଚିଲେ, ଯେଉଁଠି ୪୨ ବେଳେ ଗୁଳିମାଡ଼ ହୋଇଥିଲା । ଡାବୁଗାଁରେ ରହି ନାଟ୍ ବାଟ ଧରିଲେ କୋରାପୁଟ ଫେରିବାକୁ, ମୋକଆ ଫୁଟଗାଁ, ବାଲିପଟାଗୁଡ଼ାଠୁ ବଣ ଘାଟିବାଟେ, କୋରାପୁଟରେ ଜୁଲାଇ ୨୯ରେ ପହଞ୍ଚିଲେ ।

## ସୁନାବେଡ଼ା

ସେଠୁ ଧରିଲେ ସାଲୁର୍ ଯିବା ସଡ଼କ । ଡୁମ୍‌ରିପୁଟରେ ୨୨ ତାରିଖ ରହି ସୁନାବେଡ଼ାରେ ଜୁଲାଇ ୨୩ ଓ ୨୪ ଦୁଇଦିନ ରହିଲେ ।

## ଶିମିଳଗୁଡ଼ାରୁ କାକିରିଗୁମା-ଲକ୍ଷ୍ମୀପୁର

ଶିମିଳଗୁଡ଼ାରେ ୨୬ ତାରିଖରେ ରହିଲେ, ସେଠୁ ପୁଣି ବାଁକୁ ବଙ୍କେଇ ଚାଲିଲେ ରାୟଗଡ଼ା-କୋରାପୁଟ ସଡ଼କରେ ଥିବା ଲକ୍ଷ୍ମୀପୁର । ଲକ୍ଷ୍ମୀପୁରରେ ଜୁଲାଇ ୩୧ରେ ପହଞ୍ଚିଲେ ।

## ନାରାୟଣପାଟଣା

ଲକ୍ଷ୍ମୀପୁରରୁ ଖାଖ ଗଡ଼ାଣି ହୋଇ ପୂର୍ବଘାଟ ପର୍ବତମାଳାର ମେରୁଦଣ୍ଡ କାଟି ସାପେଇ ସାପେଇ ସଡ଼କ ଯାଇଛି ନାରଣପାଟଣା, ଡାହାଣେ ମୁଣ୍ଡଧରା ପାତାଳ ଖାଲ । ବାଘର ଖଣି ସେ ବାଟ, ସେହିପରି ଲକ୍ଷ୍ମୀପୁର-ରାୟଗଡ଼ା ବାଟ । ଲକ୍ଷ୍ମୀପୁର ପୁଲିସ୍ ଥାନା ହତାରେ ବି ୧୯୪୦-୪'ରେ ସକାଳୁ ମହାବଳ ବାଘର ପାହୁଲ ପଡ଼ିଥିବାର ଦିଶେ, ଥାନା ଇଲାକାରେ ବର୍ଷକୁ ଦୁଇଶ ଅଢ଼େଇଶ ଲୋକଙ୍କୁ ବି ବାଘ ଖାଉଥାଏ, ସେହିପରି ନାରଣପାଟଣା ଥାନାରେ ।

ସେ ବାଟରେ ମଝିରେ ରହିଲେ ପହିଲା ଅଗଷ୍ଟରେ ପଙ୍ଗାପାଲୁରରେ, ୨ ତାରିଖରେ ନାରଣପାଟଣାରେ ପହଞ୍ଚିଲେ । ସେ ଗୋଟିଏ ବଡ଼ ପେଣ୍ଠ ଜାଗା, ସେଠି ବହୁତ ଧନୀ ଜମିମାଲିକ ଓ ବେପାରି, ଆଖପାଖରେ କନ୍ଧ ଗାଁ । ସେଠି

ବିନୋବା ଦୁଇଦିନ ଥିଲେ, ଅଗଷ୍ଟ ୨ ଓ ୩ ତାରିଖ । ସେଠୁ ସଡ଼କ ପଡ଼ିଛି ଆନ୍ଧ୍ର ପ୍ରଦେଶର ସହର ପାର୍ବତୀପୁରକୁ ।

## ପାର୍ବତୀପୁର—ପୁଣି ରାୟଗଡ଼ା ସବ୍‌ଡିଭିଜନ୍—କଲ୍ୟାଣସିଂପୁରରୁ ଫେରିଲେ

ନାରଣପାଟଣାରୁ ବାହାରି ଯାତ୍ରୀଦଳ କୁମ୍ଭାରି, ବନ୍ଧୁଗାଁ, ଆଲମଣ୍ଡା, ରାଇକଣାରେ ରହି ରହି ଅଗଷ୍ଟ ୮ରେ ପାର୍ବତୀପୁର ପହଞ୍ଚିଲେ । ସେଠି ଆନ୍ଧ୍ର ଦେଶର ସର୍ବୋଦୟପ୍ରେମୀଙ୍କର ଅଭ୍ୟର୍ଥନା ପାଇଲେ । ସେଠୁ ଧରିଲେ ପାର୍ବତୀପୁର-ରାୟଗଡ଼ା ସଡ଼କ । କୋଟିପାମ୍‌ରେ ରହି ଓଡ଼ିଶାରେ ପୁଣି ପହଞ୍ଚିଲେ କେରଡ଼ାରେ, କେରେଡ଼ା ଓ ବଡ଼ରାଇସିଂରେ ରହି ରାୟଗଡ଼ା ପୂର୍ବରୁ ପୀତାମହଲ୍‌ରେ ରହିଲେ, ସେଠୁ ରାୟଗଡ଼ା-ମୁନିଗୁଡ଼ା ସଡ଼କରେ ଯାଇ କୋଡାପେଟାରେ ରହିଲେ ଅଗଷ୍ଟ ୧୩ରେ, ରାୟଗଡ଼ା ଟପି ଚାଲିଗଲେ । ନାଗାବଳୀ ନଦୀପାରି ହେଲେ ସଡ଼କ ବାଁକୁ ବଙ୍କେଇ ଚାଲି ଯାଇଛି କଲ୍ୟାଣସିଂହପୁର, ଅଣ୍ଡାମାଡ଼ା, ଶିକରପାଇରେ ରହି କଲ୍ୟାଣସିଂପୁରରେ ଅଗଷ୍ଟ ୧୭ରେ ପହଞ୍ଚିଲେ, ପୁଣି ଶିକରପାଇ ଲେଉଟି ଆସିଲେ, ନାଗାବଳୀ ପାରି ହୋଇ ନାଁ ବାଟ ଧରିଲେ, ରେବଲକୋଣାରେ ରହି ଥେରୁବେଲି ପହଞ୍ଚିଲେ, ସେଠି ରେଲ୍ ଷ୍ଟେସନ୍ ଅଛି, ରାୟଗଡ଼ା-ମୁନିଗୁଡ଼ା ସଡ଼କ ସେଠୁ ଦୁଇ ମାଇଲ ।

## ଥେରୁବାଲି, ମୁନିଗୁଡ଼ା, ଅମ୍ବାଦୋଳା, କୁମୁଡ଼ାବେଲି

ଥେରୁବେଲିରେ ବିନୋବାଜୀ ଦୁ ଦିନ ରହିଲେ, ଅଗଷ୍ଟ ୧୯ ଓ ୨୦ । ସେଠୁ ବାହାରି ପୁର୍ଲିକୋଣା, କୁମ୍ଭାରମୁଣ୍ଡାରେ ରହି ରୁଟିକୋଣାଠୁ ଖଣ୍ଡେ ଦୂର ନାନ୍ଦନୋଗୁଡ଼ାରେ ରହିଲେ, ସେଠି '୧୯୫୨-୫୩ରେ ସରକାର କନ୍ଧ 'କଲୋନି'ଟିଏ ବସାଇଥିଲେ । ସେଠୁ ଯାଇ ସଡ଼କ ଧରି ହାଟ-ମୁନିଗୁଡ଼ା, ମୁନିଗୁଡ଼ା, ଶିବପଦରରେ ରହି ସେ ଅମ୍ବାଦୋଳାରେ ଅଗଷ୍ଟ ୨୮ରେ ପହଞ୍ଚିଲେ, ତାପରେ ଧରିଲେ ଅମ୍ବାଦୋଳାରୁ ଜଗଦଲପୁର ଓ କୁମୁଡ଼ାବେଲି ଗିବା ସଡ଼କ । ଅମ୍ଲଭଟା, ଜଗଦଲ୍‌ପୁରରେ ରହି କୁମୁଡ଼ାବେଲିରେ ଅଗଷ୍ଟ ୩୦ରେ ପହଞ୍ଚିଲେ ।

## ଚନ୍ଦ୍ରପୁର କୋଟିଆ ମାଳ

ସେପ୍‌ଟେମ୍ବର ପହିଲରେ ବିନୋବାଜୀ ଧରିଲେ ଭୀଷଣ ଅସାଧ ବଣ ପର୍ବତ ବାଟ—ବାଘ, ହାତୀ, କୋଟିଆ କନ୍ଧ ଅଞ୍ଚଳ । କୁମୁଡ଼ାବେଲିରୁ ନାଁ ବାଟରେ ଏକାଥରେ '୨ ମାଇଲ ଚାଲି ଅଗଷ୍ଟ ୩୧ରେ ଡାଂସୁରୁଡ଼ାରେ ପହଞ୍ଚିଲେ । ସେଠି

ରହିଲେ ଆନ୍ଧ୍ରର ଦୁଇ ଦିନ, ସେପ୍ଟେମ୍ବର ୧ ଓ ୨ । ସେଠୁ ଚଉପଥ ହିଡ଼ିର ଦିଗକୁ, ଚନ୍ଦ୍ରପୁର ଯିବା ବାଟ । ଗୁହଲଧୂଆ ନଈ ପାରିହୋଇ ସେପ୍ଟେମ୍ବର ୩ ତାରିଖରେ ହନୁମନ୍ତପୁର ପହଞ୍ଚିଲେ, ସେଠି ରହି ଚନ୍ଦ୍ରପୁର ବାଟ ଛାଡ଼ିଦେଇ ବେଲମ୍ଗୁଡ଼ାରେ ରହି ସେପ୍ଟେମ୍ବର ୭ ତାରିଖରେ ଗୁଡ଼ାରି ପହଞ୍ଚିଲେ ।

## ଗୁଡ଼ାରି-ଗୁଣପୁର-କୁଟେନ୍ଦ୍ରି

ଗୁଣୁପୁର ତାଲୁକାର ପୂର୍ବପଟେ ଯେମିତି ଗୁଣୁପୁର, ପଶ୍ଚିମପଟେ ଗୁଡ଼ାରି ସେମିତି ଗୋଟିଏ ପେଣ୍ଠ ଜାଗା, ଯେଠି ବଡ଼ ବଡ଼ ଜମି ମାଲିକ ଓ ଧନୀ ସାହୁକାରମାନେ ରହନ୍ତି, ଗୁଡ଼ାପଟେ ଗରିବ ସଓରା ଗାଁ । ୭ ତାରିଖରେ ସେ ଗୌଡ଼ଛେପାଗୁଡ଼ା ଯାଇ ରହିଲେ । ସେଠୁ ବାଟ ପଡ଼ିଲା ଆଉ ଗୋଟିଏ ପର୍ବତମସ୍ତ କୋଟିଆକନ୍ଧ ମାଲକୁ । ୮ ତାରିଖରେ ପୁଣି ଫେରି ଆସି ଗୁଡ଼ାରିରେ ରହିଲେ, ଆରଦିନ ବଂଶଧାରା ପାରିହୋଇ ତେରେଗାଁ ଗଲେ, ତାପରେ ଲେଉଟିଲେ ବ୍ରହ୍ମପୁର ଆଡ଼କୁ, ୧୦ ତାରିଖରେ ଶ୍ରମିନୀ ହାଟରେ ରହି ୧୧ ତାରିଖରେ ବ୍ରହ୍ମପୁର ପହଞ୍ଚିଲେ । ତା ୧୧-୯-୧୯୫୫ରେ ବ୍ରହ୍ମପୁରରେ ବିନୋବା-ଜୟନ୍ତୀ ଦିନରେ ଜୟପ୍ରକାଶ ନାରାୟଣ ଆସି ଯୋଗ ଦେଇଥିଲେ ।

କଟକ ଜିଲ୍ଲାରେ ପ୍ରବଳ ଘରଭଙ୍ଗା ବଢ଼ି । କଟକ ଜିଲ୍ଲାର କର୍ମୀମାନେ ନିଜ ଅଞ୍ଚଳର ଦୁର୍ଦ୍ଦଶା ଦେଖିବାକୁ ଓ କେତେକ ଭୂଦାନ ନେତା ରିଲିଫ୍ କାମ କରିବାକୁ ବ୍ୟଗ୍ରତା ପ୍ରକାଶ କଲେ । ମାତ୍ର ବିନୋବାଜୀ ଓ ଗୋପବାବୁ ସେମାନଙ୍କୁ ଭୂଦାନ ବିପ୍ଳବରେ ଲାଗି ରହିବାକୁ ମତ ଦେଲେ ।

ବ୍ରହ୍ମପୁରରେ ସେ ବଂଶଧାରା ନଦୀ ପାରିହୋଇ ଗୁଣୁପୁରରେ ପହଞ୍ଚିଲେ । ଗୁଣୁପୁରରେ ବିନୋବା ରହିଲେ ସେପ୍ଟେମ୍ବର ୧୧ ଓ ୧୨ । ୧୩ ତାରିଖରେ ହିକୁମ୍ବା ଗଲେ, ସେଠି ଅନେକ ଧନୀ ସାହୁକାର ଓ ବଡ଼ ବଡ଼ ଜମି ମାଲିକ । ଖିଲିଂଗିରେ ରହି ପେନେକାମ୍, ଗୁଲୁଚି, ବଡ଼ ମୂଲଗା, ଗରଣ୍ଡା (୧୯-୯-୫୫ ରେ ରହିଲେ । ସେ ଅଞ୍ଚଳରେ ବେଶି କୋଣ୍ଡା, ଦୋରା ଆଦିବାସୀ । ସେ ଗୋଟିଏ ଦୁଃସ୍ଥ ଅଞ୍ଚଳ । ୨୦ ତାରିଖରେ ନୀଳମ୍ଗୁଡ଼ାରେ ରହି ୨୧ ସେପ୍ଟେମ୍ବରରେ ଏ ଯାତ୍ରାରେ ଦ୍ଵିତୀୟଥର କୁଟେନ୍ଦ୍ରି ପହଞ୍ଚିଲେ ଓ ସେଠି ୨୮ ତାରିଖ ଯାଏ ରହିଲେ ।

## ଜଗନ୍ନାଥପୁର ଓ ବଦାମ୍ନୁ

୧୯୫୫, ସେପ୍ଟେମ୍ବର ୨୯ରେ ସେ ଗୁଣୁପୁରରୁ ଆନ୍ଧ୍ରର ପାର୍ବତୀପୁର ଯିବା ସଡ଼କରେ ଓଡ଼ିଶାର ସୀମା ଜଗନ୍ନାଥପୁରରେ ପହଞ୍ଚିଲେ । ଓଡ଼ିଶା ରହିବେଲେ

ଓଡ଼ିଶାରେ ସେହି ତାଙ୍କର ଶେଷ ରହଣି, ବହୁତ ଲୋକ ଆସିଥିଲେ ବିଦାୟ ନେଲେ। ବିଦାୟବେଳେ କେତେ କର୍ମୀ କାନ୍ଦିଥିଲେ ।

ଓଡ଼ିଶାରେ ବିନୋବାଜୀଙ୍କ ପଦଯାତ୍ରା ସରିଲା । ଗୋପବାବୁ ଆଉ ତାଙ୍କୁ ଛାଡ଼ିବାକୁ ବାଧ୍ୟ ହୋଇଥିଲେ ।

ଆଠମାସ ଯାକ ବିନୋବାଙ୍କ ପଦଯାତ୍ରା ବେଳେ ଗୋପବାବୁ ତାଙ୍କ ପାଖେ ପାଖେ ରହି ପଦଯାତ୍ରା ସଫଳ କରିବାକୁ ସମୁଦାୟ ଆୟୋଜନ ପରିଚାଳନା କରିଥିଲେ ଓ ତଦାରଖ କରିଥିଲେ, ତାହା ସଙ୍ଗେ ସଙ୍ଗେ ଭୂଦାନ ଆନ୍ଦୋଳନର ସାଫଲ୍ୟ ପାଇଁ ନାନା ପ୍ରକାର ଉଦ୍ୟମ କରିଥିଲେ । ୧୯୫୫ରେ ପୁରୀରେ ସର୍ବୋଦୟ ସମ୍ମିଳନୀର ଆୟୋଜନ ବେଳେ ହଠାତ୍ ଦେଖାଗଲା ଯେ ତାଙ୍କୁ ରକ୍ତଚାପ ରୋଗ ଧରିଲାଣି, ବୟସ ଷାଠିଏ, ତଥିରେ ଦିନରାତି ଏତେ ଚିନ୍ତା, ଏତେ ପରିଶ୍ରମ, ସେ ନିଜକୁ ବିଶ୍ରାମ ଦେଇ ନାହାନ୍ତି, ସପରିବାର ବିନୋବାଙ୍କ କାର୍ଯ୍ୟରେ ଭୂଦାନ କାର୍ଯ୍ୟରେ ଲାଗି ରହିଥିଲେ । ମନମୋହନ ଚୌଧୁରୀ ଏସବୁ କାର୍ଯ୍ୟ ବୁଝିବା ଛଡ଼ା ବକ୍ତୃତା ବେଳେ ବିନୋବାଙ୍କ ଭାଷଣକୁ ପଦେ ପଦେ ଓଡ଼ିଆରେ ଅନୁବାଦ କରୁଥିଲେ, ଓଡ଼ିଶାର ଓ ବାହାରର ପତ୍ରିକାମାନଙ୍କୁ ଲେଖି ପଠାଉଥିଲେ । ବିନୋବାଙ୍କ ପଦଯାତ୍ରା ବିଷୟରେ ସେ ଗୋଟିଏ ପୁସ୍ତକ ଲେଖି ଛପାଇଲେ, —"କ୍ରାନ୍ତି ଯାତ୍ରା ।"

ବିନୋବା ଆସି ଭୂଦାନ ଆନ୍ଦୋଳନକୁ ଆହୁରି ଉତ୍ସାହିତ କଲେ । ସେ ନିଜେ ତାର ସୃଷ୍ଟିକର୍ତ୍ତା । ସମାଜ ଓ ବ୍ୟକ୍ତିଗତ ଜୀବନରେ ଭୂଦାନ ବିଚାରର ନାନା ଦିଗରେ ପ୍ରୟୋଗ ସେ ପରିଷ୍କାର କରି ବୁଝାଇଥିଲେ, ଅନେକ ବିଦ୍ୱାନ୍ ଓ ଚିନ୍ତାଶୀଳ ଲୋକଙ୍କ ସଙ୍ଗେ ଆଲୋଚନା କରି ସେମାନଙ୍କୁ ପ୍ରଭାବିତ କରିଥିଲେ, ବିଭିନ୍ନ ରାଜନୈତିକ ଦଳର ଲକ୍ଷ୍ୟ ଆଦରିଥିବା ନାନା ବ୍ୟକ୍ତି ତାଙ୍କ ସଙ୍ଗେ ଯୁକ୍ତ ହେଉଥିଲେ, ସେମାନଙ୍କୁ ବି ସେ ବୁଝାଇଥିଲେ । ସେ ଓଡ଼ିଶା ଛାଡ଼ିଲାବେଳକୁ ଓଡ଼ିଶାରେ ଚାରିଆଡ଼େ ଭୂଦାନ ଆନ୍ଦୋଳନ ବିଷୟରେ ଲୋକେ ଭାବୁଥିଲେ, ଅନେକ ଲୋକ ବିଶ୍ୱାସ କରୁଥିଲେ ଯେ ଦେଶର ଅବସ୍ଥା ସୁଧୁରିଯିବ, ବାଣ୍ଟିକୁଣ୍ଟି ଖାଇ ଭାଇ ଭାଇ ହୋଇ ପରସ୍ପର ସଙ୍ଗେ ସ୍ନେହ ଆନନ୍ଦରେ ଜୀବନ ବିତାଇଲା ଭଳି ନୂଆ ସମାଜ ପ୍ରକୃତରେ ହେବ ଓ ରହିବ ।

# ଅଠଗୃଳଣି

## ବିନୋବାଙ୍କ କୁଚେଇନ୍ଦ୍ରି ରହଣି ବେଳର କଥୋପକଥନ

ଓଡ଼ିଶାରେ ବିନୋବାଜୀଙ୍କ ପଦଯାତ୍ରା ଯେତେବେଳେ ସରି ଆସୁଥାଏ, ସେତେବେଳେ ୧୯୫୫ ସେପ୍ଟେମ୍ବର ୧୧ରୁ ୧୮ ଯାଏ ଆଠଦିନ ବିନୋବାଜୀ କୁଚେଇନ୍ଦ୍ରିରେ ରହିଥିଲେ, ବିଶ୍ରାମ ପାଇଁ ନୁହେଁ, ଓଡ଼ିଶାର ଭୂଦାନ ନେତାମାନଙ୍କ ସଙ୍ଗେ, କର୍ମୀମାନଙ୍କ ସଙ୍ଗେ, ଅନ୍ୟାନ୍ୟମାନଙ୍କ ସଙ୍ଗେ ଓ ବିଶେଷତଃ, 'ସର୍ବସେବା ସଂଘ'ର ସଦସ୍ୟମାନଙ୍କ ସଙ୍ଗେ, ଓଡ଼ିଶାର ଭୂଦାନ କାର୍ଯ୍ୟ ବିଷୟରେ ବହୁ ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରିବାକୁ ଥାଏ । ପଦଯାତ୍ରା ବେଳେ ଠା'କୁ ଠା' ବହୁତ ଦୂରରୁ ଦୂରକୁ କିଏ କେତେବେଳେ ଆସି ତାଙ୍କ ସଙ୍ଗେ ଦେଖା କରନ୍ତି, ଚାଲିଯାନ୍ତି । କୁଚେଇନ୍ଦ୍ରି ରହଣି ବେଳେ ଓଡ଼ିଶାର ଚାରିଆଡ଼ୁ ଓ ଓଡ଼ିଶା ବାହାରୁ ବହୁ ବିଶିଷ୍ଟ ଲୋକ ଆସି ଦେଖା କଲେ ।

ସେପ୍ଟେମ୍ବର ୧୭ରେ ବିନୋବା ତାଙ୍କର ଗୋଟିଏ ନୂଆ କାର୍ଯ୍ୟକ୍ରମ 'ସମ୍ପତ୍ତିଦାନ ଯଜ୍ଞ' ପ୍ରଥମେ କୁଚେଇନ୍ଦ୍ରିରୁ ହିଁ ଆରମ୍ଭ କଲେ । କେତେ ସାଧାରଣ ଚାଷୀ ମୂଲିଆ ସେମାନଙ୍କ ମାସିକ ଦେହ ମେହେନତିର ରୋଜଗାରରୁ ଦିନକର ରୋଜଗାର ବିନୋବାଙ୍କ 'ସମ୍ପତ୍ତି ଦାନ' ପାଣ୍ଠିକୁ ଦେବାକୁ ଦାନପତ୍ର ଲେଖିଦେଲେ, କିଏ ବର୍ଷେ ପାଇଁ, କିଏ କେତେବର୍ଷ ପାଇଁ, କିଏ ଜୀବନଯାକ । ଆଉ ୭ ଦିନେ ଏକା କୁଚେଇନ୍ଦ୍ରି ଗାଁରୁ ପ୍ରତିଶ୍ରୁତି ଦାନପତ୍ର ମିଳିଲା ୧୫୦ଟି, ବାର୍ଷିକ ଟ ୧୦୦୦ଙ୍କର, କୁଚେନ୍ଦ୍ରିରେ

ସମୁଦାୟ ପରିବାର ୨୦୦ଟି । ବିନୋବାଙ୍କ କୁନ୍ଦେନ୍ଦ୍ରି ରହଣି ଭିତରେ ୨୭ଟି, ଦାନପତ୍ର ମିଳିଥିଲା ।

କୋରାପୁଟ୍ ଜିଲ୍ଲାରେ ଗ୍ରାମଦାନ ଗାଁ ସଂଖ୍ୟା ବଢ଼ି ଲାଗିଥାଏ, ଆଉ ୭ ଦିନେ ବିନୋବା ଓଡ଼ିଶାରୁ ଗଲାବେଳକୁ କୋରାପୁଟ୍‌ରେ ଗ୍ରାମଦାନ ସଂଖ୍ୟା ଥିଲା ୬୦୨, ଆଉ ୪ ମାସରେ ହେଲା ୮୧୨ । ଗୋପବାବୁଙ୍କ ନିର୍ଦ୍ଦେଶରେ ଓଡ଼ିଶାଯାକର ଅଧିକାଂଶ ରଚନାତ୍ମକ କର୍ମୀ କୋରାପୁଟରେ ଭୂଦାନ କାମ କରୁଥାନ୍ତି, କୁନ୍ଦେନ୍ଦ୍ର ର ବିଶ୍ୱନାଥ ପଟ୍ଟନାୟକଙ୍କର ହିଁ ଆଦିବାସୀଙ୍କ ଭିତରେ ସବୁଠୁ ବେଶି ପ୍ରତିପତ୍ତି, ତାଙ୍କର ଉଦ୍ୟମ ହିଁ ସେଠି ଏବେ ଗ୍ରାମଦାନର ପ୍ରଧାନ କାରଣ ହୋଇଥାଏ, ଗୋପବାବୁ ଓ ନିଜେ ବିନୋବାଜୀ ହିଁ ବୁଝିଥାନ୍ତି, ଏ କାମରେ ମୁଖ୍ୟ ସେ ।

## 'ସର୍ବସେବା ସଂଘ' ନିର୍ମାଣ ଦାୟିତ୍ୱ ନେଲେ

ଗ୍ରାମଦାନ ପଛେ ପଛେ ଗ୍ରାମଦାନ ଗାଁରେ ନିର୍ମାଣ କାମ ଚାଲିବା କଥା, କରିବ କିଏ ? ଗ୍ରାମବାସୀଙ୍କର କୃଷି, କୁଟୀର ଶିଳ୍ପ ଆଦିର ଉନ୍ନତି ହେବ, ଆର୍ଥିକ ସ୍ୱାଚ୍ଛଲ୍ୟ ଆସିବ; ଶୋଷଣ, ଅନଗ୍ରସରତା ଦୂର ହେବ, ଶିକ୍ଷା, ସ୍ୱାସ୍ଥ୍ୟ ଆଦିର ଉନ୍ନତି ହେବ, ସେମାନେ ସ୍ୱାବଲମ୍ବୀ ହେବେ, ତାଙ୍କର ନୈତିକ ବିକାଶ ହେବ, ସେମାନଙ୍କର ସର୍ବାଙ୍ଗୀନ ଉନ୍ନତି ହେବ । ସେହି ଆଲୋଚନା ଆଗରୁ ବି ପଡ଼ିଥିଲା । ବିନୋବାଜୀ ସବୁଦିନେ କହନ୍ତି, ସେ ଏକୁଟିଆ ମଣିଷ, ତାଙ୍କର କେହି ନାହିଁ । ଭୂଦାନ ଆନ୍ଦୋଳନ ଯେତେବେଳେ ଚାଲିଲା, ସେତେବେଳେ ୧୯୫୨ ଜୁଲାଇ ମାସରେ ଯୁକ୍ତ ପ୍ରଦେଶର ସେବାପୁରୀରେ ଗୋଟିଏ ବୈଠକ ହେଲା, ସେହି ସେବାପୁରୀ ସମ୍ମିଳନୀରେ "ଅଖିଳ ଭାରତ ସର୍ବସେବା ସଂଘ" ବୋଲି ଅନୁଷ୍ଠାନଟିଏ ଗଢ଼ା ହେଲା । ଶ୍ରୀଯୁକ୍ତ ଧୀରେନ୍ ମଜୁମଦାର ତାର ସଭାପତି ରହିଲେ, ଶ୍ରୀ ଅଣ୍ଣାସାହେବ ସହସ୍ରବୁଦ୍ଧେ ତାର ସଂଯୋଜକ ଓ 'ମନ୍ତ୍ରୀ' ଅର୍ଥାତ୍ ସମ୍ପାଦକ, (ସେକ୍ରେଟେରୀ) ବଲ୍ଲଭସ୍ୱାମୀ ତାର ସମ୍ପାଦକ ଓ ପଛେ ତାର ଗୋଟିଏ ଦିନର ସଭାପତି ହେଲେ । 'ସର୍ବସେବା ସଂଘ' ବିନୋବାଜୀଙ୍କ ଅନୁଷ୍ଠାନ ନୁହେଁ, ତାଙ୍କ କର୍ତ୍ତୃତ୍ୱରେ ନ ଥିଲା, କିନ୍ତୁ ତାଙ୍କ ପରାମର୍ଶ ମାଗୁଥିଲା, ମାନୁଥିଲା, ତାଙ୍କ ଉଦ୍ଦେଶ୍ୟକୁ କାର୍ଯ୍ୟରେ ପୂରଣ କରିବାକୁ ଚେଷ୍ଟା କରୁଥିଲା । ତାର ନିଜର ଆର୍ଥିକ ଆୟ ନ ଥିଲା, କିନ୍ତୁ ସେ 'ଗାନ୍ଧୀ ସ୍ମାରକନିଧି'ରୁ ଟଙ୍କା ଆଣି କାର୍ଯ୍ୟ କରାଉଥିଲା ଓ ଅନ୍ୟାନ୍ୟ ଆଡ଼ୁ ସାହାଯ୍ୟ ସଂଗ୍ରହ କରୁଥିଲା । ସେବାପୁରୀ ସମ୍ମିଳନୀରେ ସେହି ସଂଘ ନିଷ୍ପତ୍ତି କଲା ଯେ ଭାରତର ସବୁଆଡ଼େ ଭୂଦାନ କାର୍ଯ୍ୟ ସେ କରିବ ଓ ଭୂଦାନ ଅଞ୍ଚଳରେ 'ନିର୍ମାଣ କାର୍ଯ୍ୟ' ବି କରିବ ।

ଗୋପବାବୁ ଚାହିଁଲେ ଯେ କୋରାପୁଟରେ ଗ୍ରାମଦାନ ଗାଁରେ ନିର୍ମାଣ କାର୍ଯ୍ୟ ଜୋରରେ ହେବ ସେଥିପାଇଁ ବ୍ୟବସ୍ଥା କରାଯାଉ । ସେ ନିଜେ ଭୂଦାନର ସମୁଦାୟ

ଆଦିବାସୀ ପ୍ରଧାନ ଅଞ୍ଚଳ ପ୍ରଦେଶଯାକ ଯିବାଆଡ଼େ ଚଳାଉଥାନ୍ତି ଯଦିଚ କୋରାପୁଟ ଜିଲ୍ଲାକୁ ଅଧିକ ଜୋର ଦେଇଥାନ୍ତି । କର୍ମୀମାନେ ସଂଖ୍ୟାରେ ବେଶି ନୁହନ୍ତି, ସର୍ବୋଚ୍ଚ ତ୍ୟାଗୀ ସ୍ୱେଚ୍ଛାସେବୀ କୋରାପୁଟ ପରି ଜିଲ୍ଲାରେ କାମ କରିବାକୁ ପାଇବା ବି କଷ୍ଟ, ତଥାପି ନିର୍ମାଣ କାର୍ଯ୍ୟ ବି କରିବାକୁ ହେବ । ସେହି ବିଷୟରେ କଥାବାର୍ତ୍ତା ପାଇଁ ସର୍ବସେବା ସଂଘର କର୍ତ୍ତୃପକ୍ଷଙ୍କୁ ବିନୋବାଙ୍କ କୁଟେନ୍ଦ୍ରି ରହଣିକୁ ଡକା ହୋଇଥାଏ । ସେମାନେ ପହଞ୍ଚିଗଲେ । ଆଲୋଚନା ହେଲା । ନିଷ୍ପତ୍ତି ହେଲା ଯେ ସର୍ବସେବା ସଂଘ କୋରାପୁଟ ଜିଲ୍ଲାରେ ନିର୍ମାଣ କାମ କରିବେ । ସଂଘ ରାଜି ହେଲେ । ସେହି ନିଷ୍ପତ୍ତି ଅନୁସାରେ ସର୍ବସେବା ସଂଘର ମନ୍ତ୍ରୀ ଶ୍ରୀ ଆଣ୍ଣାସାହେବ ସହସ୍ରବୁଦ୍ଧେ କୋରାପୁଟ ଜିଲ୍ଲାରେ ନିର୍ମାଣ କାର୍ଯ୍ୟର ଦାୟିତ୍ୱ ପରିଚାଳନା କରିବା ପାଇଁ ଆସିଲେ ।

ସର୍ବସେବା ସଂଘକୁ କୋରାପୁଟ ଡାକି ଆଣିବା ପାଇଁ ଗୋପବାବୁ ଓ କର୍ମୀମାନେ ନିଜେ ଆଗ୍ରହ ଦେଖାଇଥିଲେ, କିନ୍ତୁ ଗୋପବାବୁଙ୍କ ମନରେ ଆଶଙ୍କା ଥିଲା, —ନିର୍ମାଣ କାମ କହିଲେ ସେ ନିଜେ ଯେପରି କାର୍ଯ୍ୟ ଓ ଯାହା ବୁଝନ୍ତି, ସର୍ବସେବା ସଂଘ ସେପରି ଭାବିବେ ତ ? ନିର୍ମାଣ କାର୍ଯ୍ୟ ଓ ଭୂଦାନ କାର୍ଯ୍ୟ ପରସ୍ପର ବିରୋଧୀ ହେବ ନାହିଁ ତ ? ନିର୍ମାଣ ଲାଗିଲେ ଭୂଦାନ ଗ୍ରାମଦାନ କାର୍ଯ୍ୟ ଅବହେଳିତ ହେବ ନାହିଁ ତ ? ତାର ନୈତିକ ଭିତ୍ତି କ୍ଷତିଗ୍ରସ୍ତ ହେବ ନାହିଁ ତ ? 'ସର୍ବସେବା ସଂଘ' କହୁଥାନ୍ତି ଯେ ନିର୍ମାଣ କାର୍ଯ୍ୟ ପାଇଁ ବାହାରୁ ଲକ୍ଷ ଲକ୍ଷ ଟଙ୍କା ଆସିବ, ଓଡ଼ିଶା ସରକାର ବି ସେଥିପାଇଁ କେତେ ଲକ୍ଷ ସାହାଯ୍ୟ କରିବା ଆଶା କରାଯାଉଥାଏ, —ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ, ଯେ ନିଜେ ସର୍ବୋଦୟ ନେତା, ଆଦିବାସୀ ସେବାରେ ଅଗ୍ରଣୀ, ଆଦିବାସୀ ଉନ୍ନୟନ କାର୍ଯ୍ୟ ଉପରେ ସରକାର ଗୁରୁତ୍ୱ ଦେଉଥାନ୍ତି, ଗ୍ରାମଦାନ ଗାଁରେ 'ନିର୍ମାଣ କାର୍ଯ୍ୟ' ବି ଉତ୍କୃଷ୍ଟ 'ଆଦିବାସୀ ଉନ୍ନୟନ କାର୍ଯ୍ୟ' ଓ 'ଗୋଷ୍ଠୀ ଉନ୍ନୟନ' କାର୍ଯ୍ୟ, ତେଣୁ ନିର୍ମାଣ କାର୍ଯ୍ୟ ପାଇଁ ଯୋଜନା ଗଢ଼ିଲେ ଟଙ୍କା ପାଇଁ କାମ ଅଟକିବ ନାହିଁ, କେବଳ ଉତ୍କୃଷ୍ଟ କର୍ମୀ ଆବଶ୍ୟକ, —ସର୍ବସେବା ସଂଘ ଏହିପରି ଭାବୁଥାନ୍ତି ।

କୋରାପୁଟରେ ଭୂଦାନ କାର୍ଯ୍ୟ କରି ଆସୁଥିବା ଭୂଦାନ କର୍ମୀମାନେ ଏ ପ୍ରସ୍ତାବ ଶୁଣି ଆନନ୍ଦରେ ଅଧୀର ହେଉଥାନ୍ତି, ସେମାନେ ଦେଖି ଆସିଛନ୍ତି ସେଠି ଆଦିବାସୀ ଅତି ଦୁଃସ୍ଥ, ଜମି ନାହିଁ, ଜମି ଥିଲେ ତା ପଥର, ଟାଙ୍ଗର, ବଣ, ଅନୁର୍ବର, ଜମି ମରାମତି କରିବାକୁ ବହୁତ ଖର୍ଚ୍ଚ, ପାଣି ନାହିଁ, କୂଅଟିଏ ଖୋଳିଲେ ହଜାରେରୁ ତିନିହଜାର ଟଙ୍କା, କୌଣସି ବିଷୟରେ ଏ ଲୋକଙ୍କର ଉତ୍ପାଦିକା ଶକ୍ତି ଯଥେଷ୍ଟ ନୁହେଁ, ସବୁଦିନେ ଏମାନେ ଗରିବ, ଶୋଷିତ, ଏଥର ଲକ୍ଷ ଲକ୍ଷ ଟଙ୍କା ଆସିବ, ଉନ୍ନୟନ ହେବ, ଆଦିବାସୀଙ୍କ ଦୁଃଖ ଯିବ ।

କିନ୍ତୁ ଗୋପବାବୁ ଭାବୁଥାନ୍ତି, —ସ୍ଥାନୀୟ ସମ୍ବଳ ବାହାରୁ ଟଙ୍କା ଆଣି, ଉନ୍ନୟନ କଲେ ଲୋକେ ଆଉ ସ୍ୱାବଲମ୍ବୀ ହେବାକୁ ମନ କରିବେ ନା ପରମୁଖାପେକ୍ଷୀ ହେବାକୁ ହିଁ ଶିଖିବେ ? ପୁଣି, ଅର୍ଥ, —ଅନର୍ଥ । ଟଙ୍କାର ମୋହ, ଟଙ୍କାର ଚଟକ ଲାଗିଯିବ, ଟଙ୍କାରୁ ଲୋଭ, କଳି, ହିଂସାବାଦ, ବିଶୃଙ୍ଖଳା, —ନୈତିକ ଖଣ୍ଡି ଭୁଷୁଡ଼ି ପଡ଼ିବ ନାହିଁ ତ ? ଏତେଦିନ ଭୂଦାନ ଆନ୍ଦୋଳନ ଚାଲି ଆସିଥିଲା ନୈତିକ ଶକ୍ତିକୁ ଆଶ୍ରା କରି, ଲୋକ ଉପାସରେ ପଡ଼ି କଷ୍ଟ ସହି, ବାଘୁଆ ବଣ ପାହାଡ଼ରେ ବୁଲି ବୁଲି କର୍ମୀମାନେ ଯେ କାମ କରୁଥିଲେ, ହୃଦୟ ଢାଳିଦେଇ ଏଡ଼େ ବଡ଼ କାର୍ଯ୍ୟରେ ଲାଗିଥିଲେ, ସେମାନେ ଚାଲିଥିଲେ ମହାମାନବିକତାର ଆଦର୍ଶବୋଧରେ, କୌଣସି ପ୍ରତିଦାନକୁ ଆଶା କରି ନାହାନ୍ତି । ଟଙ୍କା ଆସିଲେ ତାଙ୍କ ମନ ତାଙ୍କ ନିଷ୍ଠା ଆଗପରି ଦୃଢ଼ ରହି ପାରିବ ତ ? ଅହିଂସ, ଶୋଷଣହୀନ, ପ୍ରେମମୈତ୍ରୀରେ ଏକାଠି ଛନ୍ଦାଛନ୍ଦି, ସାମୂହିକ ଦାୟିତ୍ୱ ଚେତନାରେ ପୁଷ୍ଟ ସମାଜ ଗଢ଼ିବା ହିଁ ଆଦର୍ଶ, —ବାହାରୁ ଏତେ ଏତେ ଟଙ୍କା ସାହାଯ୍ୟ ଆସି ତହିଁରେ କାମ ହେଲେ ଲୋକଙ୍କର ଆଉ ସେ ଆଦର୍ଶ ଆଡ଼କୁ ମନ ଯିବ ତ ?

## ନିର୍ମାଣ ବିଷୟରେ ଗୋପବାବୁଙ୍କ ମତ

ପରେ ତାଙ୍କର ଆଶଙ୍କା ହିଁ ସତ ହେଲା । କିନ୍ତୁ ତାଙ୍କ ମନରେ ଏସବୁ ଆଶଙ୍କା ଥିଲେ ସୁଦ୍ଧା ସେତେବେଳେ ସେ 'ସର୍ବସେବା ସଂଘ କର୍ତ୍ତୃକ ନିର୍ମାଣ କାର୍ଯ୍ୟ କରାଇବାକୁ ଆପତ୍ତି କରି ନ ଥିଲେ । ସେ ଆଶା କରିଥିଲେ ଯେ ନିର୍ମାଣ କାର୍ଯ୍ୟର ଧାରା ଓ ଲକ୍ଷ୍ୟ ବିଷୟରେ ତାଙ୍କର ଯାହା ମତ, ସର୍ବସେବା ସଂଘ ମଧ୍ୟ ସେହି ମତ ଗ୍ରହଣ କରିବେ ଓ ତାଙ୍କ ପରାମର୍ଶ ଅନୁସାରେ ନିର୍ମାଣ କାର୍ଯ୍ୟ କରିବେ । ତାଙ୍କ ମତରେ, ଭୂଦାନ କାମରେ 'ନିର୍ମାଣ କାର୍ଯ୍ୟ' ସରକାରୀ ଡେଭଲପ୍‌ମେଣ୍ଟ୍ କାର୍ଯ୍ୟ ଭଳି ନୁହେଁ, ଯହିଁରେ ଏତିକି ଟଙ୍କାରେ ଏତିକି 'ବାସ୍ତବ ଲକ୍ଷ୍ୟ' ହାସଲ କରିବା ଉଦ୍ଦେଶ୍ୟ ଥାଏ । ଏ କାମରେ ଯେତିକି ସୀମିତ 'ଡେଭଲପ୍‌ମେଣ୍ଟ୍' କାମ ହେବ ଯାହା ଲୋକଙ୍କ ଶକ୍ତିରେ, ସମ୍ବଳରେ, ସ୍ଥାନୀୟ 'ସମ୍ପତ୍ତିଦାନ ସଂଗ୍ରହ', 'ଶରୀର ଶ୍ରମଦାନ ସଂଗ୍ରହ', 'ସାମୂହିକ ଶ୍ରମ ଶିବିର' ଆଦି ବଳରେ ହୋଇପାରିବ, ସ୍ଥାନୀୟ ସମ୍ବଳ ବାହାରେ ପରାରୁ ଟଙ୍କା ଆଣି ଫୋଟାଇ କାମ ହେବ ନାହିଁ । ଆଉ କାମ, —'ନିଶା-ନିବାରଣ', ତହିଁରେ ପଇସା ବି ପଡ଼େ ନାହିଁ । 'ଜମି ବଣ୍ଟନ' ସାରିବାକୁ ପଡ଼ିବ, ତା ବି କରିବ । ଜମି ପାଇଥିବା ଲୋକଙ୍କୁ ନେଇ ଅନ୍ୟ କାମ ହେବ, ତାଙ୍କରି ଦ୍ୱାରା ହେବ ଜମି ମରାମତି, କିଆରି ବନ୍ଧା, ହୁଡ଼ାଦିଆ, ଜମିକୁ ପାହାଚ ପାହାଚ କରି ବାନ୍ଧିବା (ଟେରାସିଂ) ଆଦି । ସୂତାକଟା ଆଦି ସ୍ୱାବଲମ୍ବୀ କାମ ଅଛି, ସାନ ସାନ ଧନ୍ଦା ଅଛି । ସାମୂହିକ ଉଦ୍ୟମ ଓ 'ସମ୍ପତ୍ତି ଦାନ'ରେ କିଛି କୂଅ ଖୋଳା ହୋଇ ପାରିବ, କିଛି

ବଳଦ କିଣାଯାଇ ପାରିବ, ସେଥିପାଇଁ ପଇସା ନ ଥିଲେ କୋଡ଼ି କୋଡ଼ିଏରେ ହାଣି ହାଣି ଲୋକେ ଚାଷ କରିବେ । ସବୁ ଜୋର୍ ଦିଆଯିବ ଗ୍ରାମଦାନ, ଭୂଦାନ, ସମ୍ପତ୍ତି ଦାନ ଆଦି ଉପରେ, ଚାରିଆଡ଼େ ଭୂଦାନ ହାଓ୍ୱା ଖେଳିବ । ନୈତିକ ପରିବର୍ତ୍ତନ ଉପରେ ଅଧିକ ଅନୁପ୍ରାସ ଦିଆଯିବ । ସେହି ନୈତିକ 'ଭୂଦାନ ଆନ୍ଦୋଳନ' ସମୟରେ ହିଁ ନିର୍ମାଣ କାମ ହେବ, ଅନ୍ୟଥା ନୁହେଁ । ଲୋକଙ୍କ ଶକ୍ତି ସମ୍ବଳର ସୀମା ଭିତରେ ରହି ତାଙ୍କର ଆଗ କଣ ଜରୁରି ଦରକାର ତା ପରେ କଣ ଏହିପରି କ୍ରମାନୁସାରେ ଗୋଟିଏ ଗୋଟିଏ କାମ ଧରି ବ୍ୟାପକ ଆନ୍ଦୋଳନ ଚଳାଇ ତାକୁ ସୁସମ୍ପନ୍ନ କରାଯିବ, ତାପରେ ନିଆଯିବ ଆଉ ଗୋଟିଏ କାମ । ବାହାରୁ କର୍ମୀ ଆଣି ଏ କାମ ପାଇଁ ସେହିମାନଙ୍କ ଉପରେ ନିର୍ଭର କରାଯିବ ତା ନୁହେଁ । ସ୍ଥାନୀୟ କର୍ମୀ ତିଆରି ହେଉଥିବେ । କର୍ମୀମାନଙ୍କୁ ବେତନ ଦେଇ ନିଯୁକ୍ତ କରାଯିବ ତା ନୁହେଁ, ସେମାନେ ହେବେ ସ୍ୱେଚ୍ଛାସେବକ, ଆଦର୍ଶବାଦୀ, ଆତ୍ମତ୍ୟାଗୀ । ସ୍ଥାନୀୟ 'ସମ୍ପତ୍ତିଦାନ' ସଂଗ୍ରହ କରାଯାଉଥିବ, ଯାହା ମିଳିବ ସେଥିରୁ କର୍ମୀମାନେ ଯତ୍‌ସାମାନ୍ୟ ଅର୍ଥ ସାହାଯ୍ୟ ନେଇ ଚଳିବେ । ସ୍ୱେଚ୍ଛାସେବୀ କର୍ମୀଙ୍କୁ ହିଁ ପ୍ରାଧାନ୍ୟ ଦିଆଯିବ, ବେତନଭୋଗୀ କର୍ମୀଙ୍କୁ ନୁହେଁ । ଭୂଦାନ ଗ୍ରାମଦାନ ଉପରେ ଗୁରୁତ୍ୱ ଦିଆଯିବ, ମୁଖ୍ୟ କାର୍ଯ୍ୟ ତାହା ହିଁ, ତା ସଙ୍ଗେ ସଙ୍ଗେ ନିର୍ମାଣ କାର୍ଯ୍ୟ ଚାଲିବ ।

ପୂଜ୍ୟ ଗୋପବାବୁ ଯେଉଁ ନୀତି ଆଦର୍ଶ ଆଖି ଆଗରେ ରଖି ଏ ପର୍ଯ୍ୟନ୍ତ ଭୂଦାନ କାର୍ଯ୍ୟ ଚଳାଇ ଆସିଥିଲେ, 'ନିର୍ମାଣ କାର୍ଯ୍ୟ'ର ଦିଗ ଓ ବାଗ ବିଷୟରେ ତାଙ୍କର ଏ ପ୍ରକାର ଧାରଣା ତାହାର ଅନୁରୂପ ।

କିନ୍ତୁ ବିନୋବାଜୀଙ୍କ କୁଜେନ୍ଦ୍ରି ରହଣି ବେଳେ ୧୯୫୫ ସେପ୍‌ଟେମ୍ବର ୨୧ରୁ ୨୮ ଭିତରେ କୋରାପୁଟ ଜିଲ୍ଲାରେ ନିର୍ମାଣ କାର୍ଯ୍ୟ କରାଇବା ବିଷୟରେ ଯେତେବେଳେ ନିଷ୍ପତ୍ତି ହେଲା ଯେ 'ସର୍ବସେବା ସଂଘ' ସେ ଦାୟିତ୍ୱ ନେବେ ଓ ତଦନୁଯାୟୀ ସର୍ବସେବା ସଂପାଦକ ଶ୍ରୀ ଅଣ୍ଣାସାହେବ ସହସ୍ରବୁଦ୍ଧେ ନିଜେ ଆସି ନିର୍ମାଣ କାର୍ଯ୍ୟ ଚଳାଇଲେ, ତାହା ଗୋପବାବୁଙ୍କ ମତ ଅନୁସାରେ ଚାଲିଲା ନାହିଁ । ସେ ଆସିଲାବେଳଠୁ ଗୋପବାବୁ ତାଙ୍କ ସଙ୍ଗେ ସହଯୋଗ କଲେ, ତାଙ୍କୁ ପରାମର୍ଶ ଦେଲେ, କିନ୍ତୁ ଶ୍ରୀ ଅଣ୍ଣାସାହେବ ସହସ୍ରବୁଦ୍ଧେ ନିର୍ମାଣ କାର୍ଯ୍ୟ ବିଷୟରେ ଗୋପବାବୁଙ୍କ ମତକୁ ଗ୍ରହଣ କରି ପାରିଲେ ନାହିଁ, ନିର୍ମାଣ କାମ ବିଷୟରେ ତାଙ୍କ ଧାରଣା ବି ଭିନ୍ନ ।

## ଶ୍ରୀ ଅଣ୍ଣାସାହେବ ସହସ୍ରବୁଦ୍ଧେଙ୍କ ଭିନ୍ନ ମତ

ଅଣ୍ଣାସାହେବଙ୍କ ମତରେ, 'ନିର୍ମାଣ' କାର୍ଯ୍ୟ କରିବା ଅର୍ଥ ବ୍ୟାପକ ବହୁମୁଖୀ ଉନ୍ନୟନ ଯୋଜନା କରିବା, ଯେପରି, ଜମିର ଉନ୍ନତି, ଜଳଯୋଗାଣ, ଉନ୍ନତ

ପ୍ରଣାଳୀରେ ଚାଷ, ଉତ୍ପାଦନ ବୃଦ୍ଧି, ବଳଦ ଓ ନାନା ଚାଷ-ଉପକରଣ ଯୋଗାଣ, ପନିପରିବା ଚାଷ, ଫଳ ଚାଷ, ନାନା ଦ୍ରବ୍ୟର 'ପ୍ରସେସିଂ', ନୂଆ ନୂଆ କାରିଗରୀ ଧନ୍ଦା, ବଣ୍ଟନ, ଟେକ୍ନୋଲୋଜି ଆଦିର ପ୍ରୟୋଗ, କିଣାବିକା ବ୍ୟବସ୍ଥା, ଏଭଳି ନାନା କଥା । ସ୍ଥାନୀୟ ସମ୍ବଳ ଓ ଶକ୍ତି ଅନୁରୂପ ସାନ ସାନ କାମ ସେ ବୁଝେ, କି ଆଗ ଗୋଟିଏ କାମ, ତାପରେ ଆଉ ଗୋଟିଏ କାମ, ଏହିଭଳି କରିବା କାମ ତା ନୁହେଁ ।

ତାଙ୍କ ମତରେ, ଏ କାମ କରିବାକୁ ହେଲେ ବାହାରୁ ବହୁତ ଟଙ୍କା ଆସିବା ଦରକାର । ସ୍ଥାନୀୟ ସମ୍ବଳରେ ସେସବୁ ହେବ ନାହିଁ, ଦରିଦ୍ର ଆଦିବାସୀ ଅଞ୍ଚଳରେ ସ୍ଥାନୀୟ ସମ୍ବଳ ବି କିଛି ନାହିଁ କହିଲେ ଚଳେ । ଜମି ଟାଙ୍ଗର, ପଥର, ବର୍ଷାକୁ ଅନାଇଁ ଥାଏ, ଜଳସେଚନ ଅତି ବ୍ୟୟସାଧ୍ୟ, ଜମି ସମୀକରଣ, କୂଅ ଖୋଳା, ନାଳ ବନ୍ଧା, ଯାହାକଲେ ଖୁବ୍ ଖର୍ଚ୍ଚ, ପ୍ରକୃତି ଉପରେ ନିର୍ଭର କରି ବସିଥିଲେ ଅବସ୍ଥା ହିଁ ବଦଳିବ ନାହିଁ, ଆଦିବାସୀର ତ ବର୍ଷକୁ ଚାରିମାସ ଘରେ ଖାଇବାକୁ ବି ନ ଥାଏ । ଗାନ୍ଧୀ ସ୍ମାରକନିଧି ଏ କାର୍ଯ୍ୟ ପାଇଁ ସଙ୍ଘସେବା ସଂଘକୁ କେତେ ଲକ୍ଷ ଟଙ୍କା ଦେଲେ, ଓଡ଼ିଶା ସରକାର ବି କେତେ ଲକ୍ଷ ଦେଲେ ।

ତାଙ୍କ ମତରେ, ଏକ ପ୍ରକାର ଉପଯୁକ୍ତ ବେତନ ନ ଦେଲେ ନାନା ବୈଷୟିକ ଯୋଜନା କାମ ଲାଗି ଯୋଗ୍ୟ କର୍ମୀ ମିଳିବେ ନାହିଁ, ବିନା ଦରମାରେ କାମ ହେବ ନାହିଁ । ସେ ବେତନ ବ୍ୟବସ୍ଥା କଲେ । କୋରାପୁଟ ଜିଲ୍ଲାରେ ଭୂଦାନ କର୍ମୀ ବି ଅଧିକ ନ ଥିଲେ, କିଏ କେଉଁଠି ଥିଲେ କି କାମ କରୁଥିଲେ ଆଗ ଆଗ ସେକଥା ବି ଅଣ୍ଣାସାହେବଙ୍କୁ ଜଣାଇ ନ ଥିଲେ । ନିର୍ମାଣ କାମ ପାଇଁ କର୍ମୀ ମିଳୁ ନ ଥାନ୍ତି । ଯେଉଁ ଭୂଦାନ କର୍ମୀ ନିର୍ମାଣ କାମ କରିବାକୁ ମନ ବଳାଉଥାନ୍ତି ଶ୍ରୀ ସହସ୍ରବୁଦ୍ଧେ ତାଙ୍କୁ ବେତନ ଦେଇ ନିଯୁକ୍ତ କରୁଥାନ୍ତି ।

ପୁଣି, ତାଙ୍କ ଦୃଷ୍ଟିରେ, ନିର୍ମାଣ କାର୍ଯ୍ୟ ହିଁ ପ୍ରଧାନ କାମ । କର୍ମୀମାନେ ଜିଲ୍ଲାଯାକ ବ୍ୟାପକ ଭାବେ ଭୂଦାନର ହାଓ୍ୱା ଖେଳାଇବା କାମକୁ ସେ ରାଜି ନ ଥିଲେ । ସେ ଭାବୁଥିଲେ, ଯେଉଁଠି ଯେଉଁଠି ଗ୍ରାମଦାନ ହୋଇଛି, ତାହାର ଆଖପାଖରେ ଆଉ ଭୂଦାନ ଗ୍ରାମଦାନ ପାଇଁ ଆନ୍ଦୋଳନ ହେଉ, ତାହେଲେ ସେଠି ଗ୍ରାମଦାନ ଗାଁରେ ଯେଉଁ ନିର୍ମାଣ କାମ ହେଉଥିବ, ଭୂଦାନକର୍ମୀ ତହିଁରେ ବି ସାହାଯ୍ୟ କରୁଥିବେ । 'ନିର୍ମାଣ କାର୍ଯ୍ୟ' ଆରମ୍ଭ କରିଦେଲ ପରେ ତାଙ୍କୁ ତାହାର ଗୁରୁ ଦାୟିତ୍ୱରେ ଆବଦ୍ଧ ହୋଇ ରହିବାକୁ ପଡ଼ିଲ । ଲକ୍ଷ ଲକ୍ଷ ଟଙ୍କାର ଦାୟିତ୍ୱ, ତାର ହିସାବ ପରୀକ୍ଷା, ତାର ଉଚିତ ବିନିଯୋଗ, ନାନା ପଦାର୍ଥ କିଣାକିଣି, କର୍ମଚାରୀ ନିଯୁକ୍ତି, ନାନା ଦାୟିତ୍ୱ ନାନା ବ୍ୟକ୍ତିଙ୍କୁ ଭାର ଦେବା, କାର୍ଯ୍ୟ ତଦାରଖ, କ୍ଷେତ କାମ,

ଲୋକ-ସମ୍ପର୍କ କାମ, ନାନା ସମସ୍ୟା ସମାଧାନ, ଇତ୍ୟାଦି ଇତ୍ୟାଦି, —ଏସବୁ ସ୍ଥାୟିତ୍ୱକୁ ଅଡ଼େ ମୁଣ୍ଡକୁ ନେଲପରେ ସେ ନିର୍ମାଣ କାର୍ଯ୍ୟକୁ ହିଁ ମୁଖ୍ୟ ବୋଲି ମଣିଲେ, ଭାବିଲେ, ଭୂଦାନ କାର୍ଯ୍ୟ ଭୂଦାନ କର୍ମୀମାନେ ହିଁ କରନ୍ତୁ । ଅକ୍ଳାନ୍ତ ପରିଶ୍ରମ କରି ନିଷ୍ଠା ସହକାରେ ସେ ସେଠି ନିର୍ମାଣ କାର୍ଯ୍ୟରେ ଲାଗି ରହିଥାନ୍ତି । କିଛୁ ଆଖିଦୃଶିଆ କାମ ବି ହୋଇଥାଏ, ବାହାରୁ ଲୋକେ ଦେଖିବାକୁ ଆସୁଥାଆନ୍ତି, ଦେଖି ପ୍ରଶଂସା କରୁଥାନ୍ତି, ନାନା ଭାଷାରେ ସେ ବିଷୟରେ ଲେଖା ବାହାରୁଥାଏ, କେତେ ଲୋକ ଦେଖୁଥାନ୍ତି କି ବାଗରେ ନିର୍ମାଣ କାମ କଲେ ଭଲ ହୁଏ ।

## ଭିନ୍ନେ ମତ ହେବାର ପରିଣାମ

କିନ୍ତୁ କୋରାପୁଟ ଜିଲ୍ଲାରେ ସେହି 'ନିର୍ମାଣ କାର୍ଯ୍ୟ' ହିଁ ଭୂଦାନ କାର୍ଯ୍ୟର କାଳ ହେଲା । ତାହାର ଯୋଗୁଁ ବିଚିତ୍ର ପ୍ରକାରେ କୋରାପୁଟ ଜିଲ୍ଲାର ଭୂଦାନ କାର୍ଯ୍ୟରେ ଆସିଲା ନୈରାଶ୍ୟ ଓ ଦୁର୍ଭାଗ୍ୟ, ଓଡ଼ିଶାର ଭୂଦାନ ଆନ୍ଦୋଳନ ଉପରେ ତାର ପ୍ରଭାବ ପଡ଼ିଲା ।

ମୂଳରୁ ଓଡ଼ିଶାଯାକରେ ଭୂଦାନ କର୍ମୀଙ୍କ ସଂଖ୍ୟା ସୀମିତ ହିଁ ଥିଲା । ଭୂଦାନ ଯଜ୍ଞ ସମିତିର ସଂଯୋଜକ ଶ୍ରୀ ଶରତ୍ ଚନ୍ଦ୍ର ମହାରଣା କହନ୍ତି ଯେ ଭୂଦାନ ଆନ୍ଦୋଳନ ବେଳେ ସେ କୋରାପୁଟ ଜିଲ୍ଲାକୁ ପ୍ରଦେଶଯାକର ଅଧିକାଂଶ କର୍ମୀଙ୍କୁ ପଠାଇଥିଲେ, ତହିଁରୁ ଯେଉଁମାନେ ପୂର୍ବେ ଗାନ୍ଧୀଜୀଙ୍କ ରଚନାତ୍ମକ କେନ୍ଦ୍ରମାନଙ୍କରେ କାର୍ଯ୍ୟ କରୁଥିଲେ, ତାଙ୍କର ଭିତରୁ ପ୍ରତି ୧୧ ଜଣରୁ ୧୦ ଜଣ ସେ ଜିଲ୍ଲାରେ ରହିଗଲେ, କିନ୍ତୁ ଯେଉଁ ଅନ୍ୟାନ୍ୟ କର୍ମୀଙ୍କୁ ସେଠିକୁ ସେ ପଠାଇଥିଲେ, ତହିଁରୁ ୧୧ ଜଣରୁ ୧୦ ଜଣ ସେଠୁ ଫେରି ଆସିଲେ ।

କୋରାପୁଟରେ ବାଘ, ହାତୀ, ବଣ, ପାହାଡ଼, ମ୍ୟାଲେରିଆ, ଦୂରତା, ଅଶିକ୍ଷିତ ଅନୁନ୍ନତ ଅସ୍ୱାସ୍ଥ୍ୟକର ଆଦିବାସୀ ଗାଁରେ ବାହାରୁ ଆସିଥିବା ଅଣ-ଆଦିବାସୀଙ୍କ ଅଭ୍ୟସ୍ତ ଚଳଣି ଓ ପରିବେଶର ସାମାନ୍ୟତମ ସୁଖ ସୁବିଧା ବି ନ ଥାଏ, ଭାଷା ଭିନ୍ନେ, ସମାଜ ଭିନ୍ନେ, ସଂସ୍କୃତି ଭିନ୍ନେ, ନାନା ସମସ୍ୟା । ଭୂଦାନ କାର୍ଯ୍ୟ ବି ଖୁବ୍ ଧୈର୍ଯ୍ୟ, ସହିଷ୍ଣୁତା, ପରିଶ୍ରମ ଓ ଏକନିଷ୍ଠତା ଲୋଡ଼େ, ଓ ସେଠି, —ଲୋକ ଉପାସ ଦେହବାଧିକା କି ବିପଦକୁ ଖାତିର ନ କରି ନିଜ ଜୀବନକୁ ତୁଚ୍ଛ କରି ଚାଲି ଚାଲି ଦୂର ଦୂର ଅଞ୍ଚଳ ବୁଲିବା ପ୍ରୟୋଜନ ହୁଏ । ସେଠି ଅନୁନ୍ନତ ଆଦିବାସୀଙ୍କ ଭିତରେ ଯେଉଁ ତ୍ୟାଗର ମୂର୍ତ୍ତିମାନେ କାମ କରି ଆସୁଥିଲେ, ତାଙ୍କ ତ୍ୟାଗ ତପସ୍ୟା କେଡ଼େ କଠୋର ଓ ଅମାନୁଷିକ ମୁଁ ୧୯୫୭-୫୪ ଭିତରେ ରାୟଗଡ଼ା ଏସ୍. ଡି. ଓ. ଥିଲାବେଳେ ନିଜେ ତା ଆଖିରେ ଦେଖିଥିଲି । ଚାଲିଥିବେ ଖାଲି ପାଦ, ଖାଲି ଦେହ

ବିଶ୍ୱନାଥ ପଟ୍ଟନାୟକ, କେତେବେଳେ ଦେହରେ ଜର, ତାଉପରେ ଖାଇ ଫୁଟୁଛି, ୧୦୩°, ମାନିବେ ନାହିଁ, ହସି ହସି ବାଟ ଧରିବେ, ଆସୁ ପଛେ ମୃତ୍ୟୁ, ହୋଇଥାଉ ବାଘୁଆ ବାଟ, ଯେଉଁ ବାଟରେ ବାଘ ମଣିଷ ଖାଇଛି । ସେହିପରି ଥରେ, ସନ୍ଧ୍ୟା ଆଗରୁ ଜଙ୍ଗଲ ଭିତରେ ଠାଏ ତାଙ୍କ ସଙ୍ଗେ ଦେଖା । ସେ ବାଟ ଧରିଥାନ୍ତି, ଆଗରେ ଘାଟି ମୁଣ୍ଡରେ ମହାବଳ ଲୁଚି ଥାଏ । ଦୈବଯୋଗକୁ ଜୀପ୍ ପହଞ୍ଚିଗଲା, ବାଘ ପଳେଇଲା । ଆଉଥରେ ଡାଂଗୁଡ଼ୁଡ଼ାରୁ ହନୁମନ୍ତପୁର ଯିବା ବାଟରେ କର୍ମୀ ବୈଦ୍ୟନାଥ ଦାସଙ୍କୁ ମହାବଳ ବାଟ ଓଗାଳିଲା, ପଳାଇବାକୁ ବାଟ ନ ଥିଲା । ବୈଦ୍ୟନାଥ ଠିଆ ହୋଇ ରହିଲେ, ବାଘ ଗର୍ଜିଲା, ପାଟି ମେଲା କଲା, ତା ବଡ଼ ବଡ଼ ଦାନ୍ତ ଦେଖାଇଲା, ଲାଙ୍ଗୁଡ଼ ପିଟିଲା, ବସି ରହିଲା କିଛି ବେଳ । ମୁହାଁମୁହିଁ ଉଭୟେ । ବାଘ କଣ ଭାବି ମତ ପରିବର୍ତ୍ତନ କଲା ନାହିଁ ଜଣା, ହୁଏତ ସାମ୍ନାର ହାଡ଼ୁଆ ମଣିଷଟି ଦେହରେ ଯଥେଷ୍ଟ ଖାଦ୍ୟ ନାହିଁ ଭାବିଲା, ଚାଲିଗଲା । ଅନେକ ଲୋକଙ୍କୁ ସେଠି ବାଘ ଖାଇଛି ।

ରଚନାତ୍ମକ କର୍ମୀମାନଙ୍କ ଛଡ଼ା ଭୂଦାନ କାର୍ଯ୍ୟ ପାଇଁ ବାହାରୁ ଆସିଥିବା ଅନ୍ୟମାନେ ସେଠି କାହିଁକି ରହି ନ ପାରି ପଳାଇ ଆସୁଥାନ୍ତି, ବୁଝିବା କଷ୍ଟ ନୁହେଁ । କୋରାପୁଟ ଜିଲ୍ଲାବାସୀ କର୍ମୀ ତାଙ୍କ ଭିତରେ ୧୦ ଅଳ୍ପ ଥିଲେ, ସେଠୁ ଆବଶ୍ୟକ ପରିମାଣରେ ସ୍ୱେଚ୍ଛାସେବକ ସଂଗ୍ରହ କରିବା କଷ୍ଟ ଥିଲା ।

ଯେଉଁ ଭୂଦାନ କର୍ମୀମାନେ ସେଠି କାମ କରୁଥିଲେ ସେମାନେ ବେତନ ପାଉ ନ ଥିଲେ, କିନ୍ତୁ ନିଜ ଖର୍ଚ୍ଚ ଲାଗି ସାମାନ୍ୟ ମାସିକ ଭତ୍ତା ପାଉଥିଲେ; ଅଧିକାଂଶ ଗସ୍ତ ପାଦରେ ଚାଲି ଚାଲି, ତେଣୁ ସେ ବାବଦ ବି ଖର୍ଚ୍ଚ ଅଳ୍ପ, ସେମାନେ ସେଥିପାଇଁ କିଛି ଗସ୍ତଖର୍ଚ୍ଚା ବି ପାଉଥିଲେ । ଏହି ଭତ୍ତା ଓ ଗସ୍ତ ଖର୍ଚ୍ଚା ପାଇଁ 'ଗାନ୍ଧୀ ସ୍ମାରକନିଧି' 'ଉତ୍କଳ ଖଦିମଣ୍ଡଳ' ଓ 'ସର୍ବସେବା ସଂଘ' ସେମାନଙ୍କ ଗଚ୍ଛିତ ପାଣ୍ଠିରୁ କିଛି ଅର୍ଥ 'ଭୂଦାନ ଯଜ୍ଞ ସମିତି'କୁ ଦେଉଥିଲେ । ୬-୧-୧୯୫୨ରୁ ୩୧-୧୨-୫୬ ଯାଏ ଖର୍ଚ୍ଚ ଆଦର ଗୋଟିଏ ହିସାବ ଭୂଦାନ ଯଜ୍ଞ ସମିତିର ସଂଯୋଜକ ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ଗ୍ରାମସେବକର ୧୦ମ ସଂଖ୍ୟାରେ (୧୧-୩-୫୬ର 'ଗ୍ରାମସେବକ' ପୃ ୧୩୩) ଛପାଇଥିଲେ । ତହିଁରୁ କିଛି :

"ପୂରା ସମୟ ଦେଇ କାମ କରୁଥିବା କର୍ମୀଙ୍କୁ
ମାସିକ ଭତ୍ତା ଓ କେତେକ ସାମୟିକ ସାହାଯ୍ୟ

| | |
|---|---|
| ବାବଦ ମୋଟ | ଟ ୨,୬୯,୭୦୪/୩ |
| ଗସ୍ତ ଖର୍ଚ୍ଚା | ଟ ୬୬,୧୦୪୳୩ |
| | ଟ ୩,୩୫,୮୦୮୳/୬ |

'ଆୟ' ବିଷୟରେ :

'ସର୍ବସେବା ସଙ୍ଘ' ଓ 'ଗାନ୍ଧୀନିଧି'ରୁ ମୋଟ ଟ ୩,୬୧,୪୭୪୮୯
ସଂଗଠନର ୬ ବର୍ଷର ଆୟ, ମାତ୍ର ଟ ୧୭,୪୩୪୮

'ଅଗ୍ରଗତି' :

ଜମି ସମ୍ପୃକ୍ତ ଗ୍ରାମଦାନ ୧୭୦୦ଟି
ଗ୍ରାମଦାନକୁ ମିଶାଇ ଜମି ସମ୍ପୃକ୍ତ ୩,୮୬,୦୦୦ ଏକର
ଦାନପତ୍ର ୧,୨୭,୦୦୦ଟି

ଭୂମି ବଣ୍ଟନ ୩୬୫ଟି ଗାଁରେ, ୧୭,୬୧୫୫ ପରିବାରଙ୍କୁ, ୯୪,୧୧୭ ଏକର

ସମ୍ପତ୍ତି ଦାନ :

ବାର୍ଷିକ ଟ ୪୧,୦୦୦ର ପ୍ରତିଶ୍ରୁତି (ଦାନପତ୍ର ୨୭୦୦ଟି)

## ନିଧିମୁକ୍ତି

ହିସାବଟି ଡିସେମ୍ବର ୩୧, ୧୯୫୭ ଯାଏଁ ଦେବାର କାରଣ ଡିସେମ୍ବର ମାସରେ ପାଲନିରେ ସର୍ବୋଦୟ ସମ୍ମିଳନୀ ହେଲ ଓ ସେଠି ବିନୋବାଙ୍କ ନିର୍ଦ୍ଦେଶ ଅନୁସାରେ ନିୟମ ଧାର୍ଯ୍ୟ କରାଗଲା ଯେ ଏଣିକି 'ନିଧିମୁକ୍ତି' ହେବ, ତାର ଅର୍ଥ— 'ଗାନ୍ଧୀ ସ୍ମାରକନିଧି', 'ଉତ୍କଳ ଖଦୀମଣ୍ଡଳ', 'ସର୍ବସେବା ସଙ୍ଘ' ଆଦି କୌଣସି ସଂସ୍ଥାର ଗଚ୍ଛିତ ପାଣ୍ଠିରୁ ଭୂଦାନ କର୍ମୀମାନଙ୍କୁ ଆଉ ମାସିକ ଭତ୍ତା କି ପ୍ରେସ୍ ଖର୍ଚ୍ଚା କିଛି ମିଳିବ ନାହିଁ । ସେମାନେ 'ସମ୍ପତ୍ତିଦାନ', 'ସର୍ବୋଦୟ ପାତ୍ର' ଆଦି ସ୍ଥାନୀୟ ସାହାଯ୍ୟରୁ ଯାହା ମିଳିବ ତହିଁରେ କଷ୍ଟେମଷ୍ଟେ ଚଳିବେ । ତା ଅର୍ଥ, ସେମାନେ ସ୍ଥାନୀୟ ଲୋକଙ୍କଠୁ ମାଗିଖାଇ ପେଟ ପୋଷନ୍ତୁ, ନିଜେ ତ୍ୟାଗର ପରାକାଷ୍ଠା ଦେଖାଇ ଭୂଦାନ କାର୍ଯ୍ୟ କରନ୍ତୁ । ଅବିକଳ ସେହିକଥା ଗୋପବାବୁ ନିଜେ ମୂଳରୁ ହିଁ କର୍ମୀମାନଙ୍କୁ ବୁଝାଇ ଆସୁଥିଲେ । ସେ କହୁଥିଲେ ଯେ କର୍ମୀମାନେ ଗଚ୍ଛିତ ପାଣ୍ଠିରୁ ଯେଉଁ ସାମାନ୍ୟ ସାହାଯ୍ୟ ନେଉଛନ୍ତି ତାକୁ ବି ଆଉ ନ ନିଅନ୍ତୁ, ନ ହେଲେ ସେମାନେ ତ୍ୟାଗୀ ଓ ସ୍ୱାବଲମ୍ବୀ ଜନସେବକ ହେବାର ଆଦର୍ଶ ଦେଖାଇ ପାରିବେ ନାହିଁ । ଏବେ ସେହି ଉପଦେଶ 'ନିଧିମୁକ୍ତି' ନିୟମରେ ପରିଣତ ହେଲା ।

'ନିଧିମୁକ୍ତି' କର୍ମୀଙ୍କ ପାଇଁ ହେଲା ଗୋଟିଏ କଠୋର ପରୀକ୍ଷା । ପ୍ରଥମ ସମସ୍ୟା, କୋରାପୁଟ ଭଳି ଜିଲ୍ଲାରେ ଭୂଦାନ କର୍ମୀଙ୍କୁ ସାହାଯ୍ୟ ଦେବେ କିଏ ? ଯେଉଁ ଅଳ୍ପ ଲୋକେ ଥିଲାବାଲା, ତହିଁରୁ ଅନେକେ ଗୃହା ଭେଡା ଦେଇ ଦେଇ ଆଉ ଦେବାକୁ ବିମୁଖ । ତାଙ୍କ ଭିତରୁ ଅନ୍ୟମାନେ ଭୂଦାନ କାର୍ଯ୍ୟର ବିରୋଧୀ, କାରଣ ଏତେକାଳ ହେଲା ସେମାନେ ଆଦିବାସୀଙ୍କୁ ନାନା ଉପାୟରେ ଶୋଷଣ କରି ସମ୍ପତ୍ତି

ଅର୍ଜିଥିଲେ, ବଢ଼ାଇଥିଲେ, ଭୂଦାନବାଲା ସେ ଶୋଷଣ ଚକ୍ରଭିତରେ ଠିଆ ହେଲେ, ଆଦିବାସୀଙ୍କୁ ଆତ୍ମରକ୍ଷା କରିବାକୁ, ଶୋଷଣରେ ନ ପଡ଼ିବାକୁ ବୁଦ୍ଧି ଦେଲେ, ଭେଳେଇଲେ, ଭୂଦାନ ଗ୍ରାମଦାନ ଗାଁମାନଙ୍କରେ ଆଶା, ଅଭୟ, ନୂଆ ଚହ୍ଲର ଖେଳାଇଲେ, ଆଦିବାସୀ ଦମ୍ଭ ହେଲେ, ତାଙ୍କ ମେରୁ ବଢ଼ିଲା, ସେମାନେ ନିଜ ଗୋଡ଼ରେ ଠିଆ ହେବାକୁ ତିଆରି ହେଉଛନ୍ତି । ନିହିତସ୍ୱାର୍ଥ ମଝିଲା ଶ୍ରେଣୀ ବଡ଼ ଲୋକ ସହଜରେ 'ସମ୍ପତ୍ତିଦାନ' ଦେବେ ନାହିଁ, ଗୋପବାବୁ ମାଗିଲେ ଭିନେ କଥା, ତାଙ୍କ ବ୍ୟକ୍ତିତ୍ୱ ଆଗରେ ସତେ ଯେମିତି ବାଘ ବି ଛେଳି ପାଲଟିଯାଏ ।

ତେବେ ଗରିବ ଆଦିବାସୀ । କିନ୍ତୁ ପ୍ରତିବର୍ଷ ବୈଶାଖରୁ ଆଷାଢ଼ଯାଏ ସେମାନେ ନିଜେ ଖାଇବାକୁ ହାଁ ହାଁ, ଯଦି ମିଳେ ତେବେ ମହୁଲ, ଆମ୍ବ-କୋଇଲି, ତେନ୍ତୁଳ-ମଞ୍ଜି, ବଣରୁ କୌଣସି ଚେରମୂଳ ପତ୍ର ଖାଇ ଜୀବନ ରଖନ୍ତି, ଅନ୍ୟବେଳେ ବି ଅଧିବା, ମାଣ୍ଡିଆ ଚକୁଳାରେ ପାଣିଲ ଜାଉ ଟିକିଏ କରି ପିଇ କାମ ଚଳାନ୍ତି । ସେହି ଖାଦ୍ୟରୁ ଭାଗ ନେଇ ଖାଇ ଭୂଦାନ କର୍ମୀ ବଞ୍ଚିବେ, ପର୍ବତ ଚଢ଼ିବେ, ଗାଁ ଗାଁ ବୁଲିବେ, ବୁଲିଥିବେ, ପ୍ରଚାର କରୁଥିବେ । ଗୋପବାବୁ ନିଜେ ସେପରି କରିଛନ୍ତି ଦିନ ଦିନ, କନ୍ଧ ପରଜା ସଉରା ଘରେ ରହି ତା ହାଣ୍ଡିରୁ ଖାଇ ସ୍ୱର୍ଗୀୟ ଆନନ୍ଦଲାଭ କରିଛନ୍ତି । କିନ୍ତୁ ସମସ୍ତଙ୍କ ପକ୍ଷରେ ଏଭଳି ବ୍ରତ ପାଳିବା କଠିନ । ପୁଣି ଅଧିକାଂଶ କର୍ମୀ ଆସିଛନ୍ତି ସମତଳ ଜିଲ୍ଲାମାନଙ୍କରୁ, ଏଭଳି ଚଳଣି ତାଙ୍କ ସ୍ୱପ୍ନାତୀତ, ଯେ ଅଭ୍ୟାସ କଲେଣି, କଲେଣି ବଡ଼ କଷ୍ଟରେ । ଅନେକେ ବିବାହିତ, ଗାଁରେ ପିଲାକୁଟୁମ୍ବ ଛାଡ଼ି ଆସିଛନ୍ତି, ସେମାନେ ସେଠି କେମିତି ଚଳୁଥିବେ ସେ ଚିନ୍ତା ଘାରୁଛି ।

ତେଣୁ 'ନିଧିମୁକ୍ତ' ସେମାନଙ୍କ ପକ୍ଷରେ ଆହୁରି ଅସୁବିଧା ସୃଷ୍ଟି କଲା ।

ସେତିକବେଳେ ସେମାନଙ୍କ ମୁହଁ ସାମ୍ନାରେ ଦିଶୁଥାଏ ଶ୍ରୀ ଅଣ୍ଣାସାହେବ ସହସ୍ରବୁଦ୍ଧେଙ୍କ ତତ୍ତ୍ୱାବଧାନରେ ପରିଚାଳିତ 'ସର୍ବସେବା ସଂଘ'ର ସେଠି 'ନିର୍ମାଣ କାର୍ଯ୍ୟ', 'ନିଧିମୁକ୍ତ' ନିୟମ ସେ ସଂସ୍ଥାକୁ ଲାଗୁ ହୁଏ ନାହିଁ । ସେଠି ତ ନାନା ପ୍ରକାର କାର୍ଯ୍ୟ ପାଇଁ କର୍ମୀ ନିଯୁକ୍ତ ହୋଇ ରହିଥାନ୍ତି, ସେମାନେ ସମସ୍ତେ ବେତନଭୋଗୀ । ମହାରାଷ୍ଟ୍ରରୁ ଅନେକ ସ୍ୱେଚ୍ଛାସେବକ ଆସିଥାନ୍ତି, ତହିଁରୁ ଅନେକେ ମହାନଗରୀରେ ଚଳିବାରେ ଅଭ୍ୟସ୍ତ, ସମସ୍ତେ ଯେଉଁ ପ୍ରକାର ସୁଖ ସୁବିଧାରେ ଦାମୀ ଚଳନ ପ୍ରଣାଳୀରେ ନିଜ ନିଜ ଅଞ୍ଚଳରେ ରହୁଥିଲେ, କୋରାପୁଟରେ କେବଳ ରହି କାମ କରିବା ହିଁ ତାଙ୍କ ପକ୍ଷରେ ବଡ଼ ତ୍ୟାଗ, ସେମାନେ ନିଜ ଚଳଣିର ମାନ ସ୍ଥାନ କରି ଚଳୁଥାନ୍ତି, ତାଙ୍କ ନିଜ ଦୃଷ୍ଟିରୁ ଦେଖିଲେ ସେମାନେ ନିଶ୍ଚୟ ଅତି ଅଳ୍ପରେ 'ନିହାତି ନିକୁଛିଆ'ରେ ଚଳୁଥାନ୍ତି, କିନ୍ତୁ କୋରାପୁଟର ଭୂଦାନ କର୍ମୀଙ୍କ ପକ୍ଷରେ ସେପରି ଚଳଣି

ସୁପ୍ରାପ୍ତ, ଧନୀ ଲୋକଙ୍କ ଚଳଣିଠୁ ଭଲ, ଯେ କର୍ମୀମାନେ ସ୍ଥାନୀୟ କର୍ମୀଙ୍କ ଭଳି ସ୍ୱୟଂସମ୍ପୂର୍ଣ୍ଣ ହୋଇ ନ ଥିଲେ, ଆଦିବାସୀଙ୍କ ପରି ଚଳୁ ନ ଥିଲେ ଯେପରି ଚଳନ୍ତି ଭୂଦାନ କର୍ମୀ । ସେ ଉଦାହରଣରେ ପ୍ରଭାବ ବି ଏମାନଙ୍କ ଉପରେ ପଡୁଥାଏ । ଆଉ ଦିଶୁଥାଏ, ଏପଟେ ଏତେ କଷ୍ଟରେ ମାଗିଯାଚି ଜାଉଣାବେଳକୁ ସେପଟେ ମାସକୁ ମାସ ବେତନ, ପୁଣି ଏପଟେ ଏତେ ବଣ ପର୍ବତ ବୁଲା କାମ ତ ସେପଟେ ବାରବୁଲା କାମ ନୁହେଁ, ଠାଏକେ ରହି କିଛି ନିର୍ମାଣ କାମ କରାଇବାକୁ ପଡ଼େ ।

ଏହି ଅବସ୍ଥାରେ ଭୂଦାନକର୍ମୀ ଦେଖୁଥାନ୍ତି, 'ନିର୍ମାଣ କାମ'ରେ ଯୋଗଦେବାକୁ ସେମାନଙ୍କ ପାଇଁ ବି ବାଟ ଖୋଲା, ଯେଉଁଠି କର୍ମୀ ଦରକାର, ଏ ଅଞ୍ଚଳକୁ ଏ ଲୋକଙ୍କୁ ଯେ ଚିହ୍ନିଛନ୍ତି, ଲୋକଙ୍କ ଭିତରେ କାମ କରିଛନ୍ତି ସେମାନେ ତ ନିର୍ମାଣ କାର୍ଯ୍ୟ ଲାଗି ଖୁବ୍ ପ୍ରୟୋଜନ, ତେଣୁ ଡକରା ପଡ଼ୁଛି, ଯାହାର ଇଚ୍ଛା ସେ ସେପଟକୁ ଯାଇପାରିବ ।

ଫଳରେ କୋରାପୁଟର ଭୂଦାନ କର୍ମୀମାନେ କ୍ରମେ କ୍ରମେ ବେଶି ବେଶି ସଂଖ୍ୟାରେ ଭୂଦାନ କାର୍ଯ୍ୟକୁ ଛାଡ଼ିଦେଲେ, ନିର୍ମାଣ କାର୍ଯ୍ୟରେ ମିଶିଲେ ଓ ଭୂଦାନ କାର୍ଯ୍ୟ କରିବାକୁ ଲୋକ ନିଅଣ୍ଟ ହେଲେ । ଭୂଦାନ କାର୍ଯ୍ୟ—ନୂଆ ଭୂଦାନ, ଗ୍ରାମଦାନ ସଂଗ୍ରହ, ଭୂଦାନ ପ୍ରଚାର ଆଦି,—ଜିଲ୍ଲା ସାରା ବ୍ୟାପକ ଥିଲା, ଏଣିକି ବନ୍ଦ ହୋଇ ଆସିଲା । ବିଶ୍ୱନାଥ ପଟ୍ଟନାୟକ ଦେଖୁଥାନ୍ତି, ଭୂଦାନ କାମ କରିବାକୁ ବାହାରିବାକୁ କର୍ମୀ ମିଳୁ ନାହାନ୍ତି, ନୂଆ କର୍ମୀ ତିଆରି ହେଉ ନାହାନ୍ତି, ଅବସ୍ଥା ତ ବଦଳିଗଲାଣି, କର୍ମୀମାନଙ୍କଠାରେ ମନ ଫଟାଫଟି ଓ ବିଚ୍ୟୁତି ଦେଖାଦେଲାଣି, 'ନିର୍ମାଣ'ରେ ବେତନ ବନ୍ଦୋବସ୍ତ ଓ ପଇସା ଖର୍ଚ୍ଚ ହେବାର ଦେଖି ଲୋକଙ୍କ ମନ ସର୍ବୋଦୟ ବିଚାର ଆଡ଼କୁ, ତ୍ୟାଗ ତପସ୍ୟାର ଆଦର୍ଶ ଆଡ଼କୁ ନ ଯାଇ ପଇସା ଆଡ଼କୁ ଧାଇଁଲାଣି, ଲୋଭ, ସ୍ୱାର୍ଥପରତା, ହିଂସାବାଦ ବଢ଼ିବା ଆରମ୍ଭ ହେଲାଣି ।

ଗୋପବାବୁ ଭରସା ରଖିଥିଲେ ବିଶ୍ୱନାଥ ପଟ୍ଟନାୟକଙ୍କ ଉପରେ, ବସ୍ତୁତଃ ସେହି ଆଦିବାସୀପ୍ରାଣ ଆଦର୍ଶବାଦୀ ଆତ୍ମତ୍ୟାଗୀ ସଦାକର୍ମଠ ପରିଶ୍ରମୀ ଜନପ୍ରିୟ ଗାନ୍ଧିବାଦୀ କର୍ମୀ ହିଁ କୋରାପୁଟରେ ଭୂଦାନ କାର୍ଯ୍ୟର ପ୍ରଧାନ ଉଦ୍ୟୋକ୍ତା । ଆଜୀବନ ଗୋପବାବୁ ଓ ରମା ଦେବୀ ତାଙ୍କୁ ପୁତ୍ରତୁଲ୍ୟ ଦେଖି ଆସିଛନ୍ତି ଓ ସେ ମଧ୍ୟ ତାଙ୍କର ଆଦର୍ଶରେ ଅନୁପ୍ରାଣିତ, ତାଙ୍କ କୀର୍ତ୍ତି ପ୍ରତି ସେହିପରି ଅନୁରକ୍ତ । କିନ୍ତୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଭୂଦାନ କାର୍ଯ୍ୟ କରିବାକୁ ଲୋକ ପାଉ ନ ଥାନ୍ତି । ସେ 'ଉତ୍କଳ ନବଜୀବନ ମଣ୍ଡଳ'ର ସଭାପତି ଥାଇ ତାର ଦାୟିତ୍ୱ ତୁଲାଉଥାନ୍ତି, ଓଡ଼ିଶାର ସବୁଆଡ଼େ ମାଳ ଭିତରେ ତାର କେନ୍ଦ୍ରମାନଙ୍କ କାର୍ଯ୍ୟ ତାଙ୍କୁ ବୁଲି ବୁଲି ଦେଖିବାକୁ ପଡୁଥାଏ, ଏକା କୋରାପୁଟ ମାଳରେ ୧୨ଟି କେନ୍ଦ୍ର ଥାଏ, ଗଞ୍ଜାମ ମାଳରେ ୭ଟି, ପୁଣି ଅନ୍ୟତ୍ର

ଆଦିବାସୀଙ୍କ ସେବା, ଶୋଷଣମୁକ୍ତି, ସ୍ୱାର୍ଥରକ୍ଷା ମୂଳରୁ 'ନବଜୀବନ ମଣ୍ଡଳ'ର ଲକ୍ଷ୍ୟ । ଭୂଦାନର ନିର୍ମାଣ କାର୍ଯ୍ୟରେ ବି ସେ ସହଯୋଗ କରୁଥାନ୍ତି, ତହିଁରେ ନାନା କେନ୍ଦ୍ରରେ ଆଣ୍ଣାସାହେବ ସହସ୍ରବୁଦ୍ଧେଙ୍କୁ ଓ ନିର୍ମାଣ କର୍ମୀମାନଙ୍କୁ ସେ ପରାମର୍ଶ ଦେବାକୁ ପଡ଼ୁଥାଏ, କର୍ମୀମାନଙ୍କ ନାନା ସମସ୍ୟା ବିଷୟ ବି ସେ ବୁଝୁଥାନ୍ତି । କର୍ମୀ ସଂଖ୍ୟା ସୀମିତ, ଉପଯୁକ୍ତ କର୍ମୀ ମାତ୍ର ୫୦।୬୦ ଜଣ ଥାନ୍ତି, ଏକା ସଙ୍ଗରେ ନାନା କାମ ଲଗିଥାଏ, ଗ୍ରାମଦାନ ଗାଁ ୮୧୨, ତହିଁରୁ ପ୍ରାୟ ୧୫୦ ଗାଁରେ କିଛି ନିର୍ମାଣ କାର୍ଯ୍ୟ ଚାଲିଥାଏ, ଅନ୍ୟାନ୍ୟ ଲୋକଙ୍କ ସହିତ ରହି ତାଙ୍କ ମନରେ ଭୂଦାନ ପ୍ରତି ଆସ୍ଥା ଅତୁଟ ରଖିଲାଭଳି ମଧ୍ୟ କର୍ମୀ ଅଭାବ । ଏ ପରିସ୍ଥିତିରେ, ଜିଲ୍ଲାସାରା ଭୂଦାନ ଆନ୍ଦୋଳନର ବାତାବରଣ ଗଢ଼ି ରଖିବା, ଆହୁରି ଶହ ଶହ ସଂଖ୍ୟାରେ ଗ୍ରାମଦାନ ସଂଗ୍ରହ କରିବା, ଆହୁରି ଭୂଦାନ ସଂଗ୍ରହ କରିବା ଅସମ୍ଭବ ହୋଇ ପଡ଼ିଲା । ଯେଉଁ ନିର୍ମାଣ କାର୍ଯ୍ୟ ପ୍ରାଧାନ୍ୟ ପାଇଥିଲା ତାର ମୂଳଦୁଆ ହିଁ ଥିଲା ଭୂଦାନ ଆନ୍ଦୋଳନ, କିନ୍ତୁ ଏ ପରିସ୍ଥିତିରେ ତାର ମୂଳଦୁଆ ହିଁ ଦୁର୍ବଳ ହୋଇଗଲା ।

୧୯୫୨-୫୬ ବେଳେ ରାୟଗଡ଼ା ସବ୍‌ଡିଭିଜନ୍‌ରେ ଗ୍ରାମେ ଗ୍ରାମେ ଦେଖିଥିଲି, ଆଦିବାସୀ ଭୂଦାନ ବିଷୟ ବୁଝୁଥିଲେ, ତାଙ୍କ ପୂର୍ବ ସାମାଜିକ ରୀତିରେ ଯଥା କୁଇକନ୍ଧ ଭାଷାରେ "ପାହାନାହିଁ ଢଙ୍ଗାରି" ବା 'ବାଣ୍ଟିକୁଟି ଖାଇ ସମସ୍ତେ ଚଳିବେ' ବୋଲି ବିଚାର ଥିଲା, ବ୍ୟକ୍ତି ଓ ସମାଜ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିଲେ, ଗୋଷ୍ଠୀରେ ରହି ଚଳିବା, ଗାଁର ସମସ୍ତେ ଗାଁର ପ୍ରତ୍ୟେକଙ୍କୁ ଆପଣାର ଭାବି ସାହାଯ୍ୟ କରିବା ଆଦି ତାଙ୍କ ସାମାଜିକ ଚରିତ୍ରରେ ଯେଉଁ ବିଶେଷତ୍ୱ ଥିଲା, ଭୂଦାନ ବିଚାର ତାକୁ ଖାପି ଯାଉଥିଲା ଓ ସେମାନେ ତାକୁ ଆଦରିଥିଲେ, କେତେ ଜାଣି କେତେ ବୁଝି ଭୂଦାନ ଦେଉଥିଲେ । କିନ୍ତୁ କାଳକ୍ରମେ ତାଙ୍କର ଭିତରୁ ଲୋକେ ଭୂବନ୍ଦୋବସ୍ତ ବେଳେ କର୍ମଚାରୀଙ୍କୁ କହିଲେ ଯେ ସେମାନେ କାହାରିକୁ ଜମି ଦେଇ ନାହାନ୍ତି, କାହିଁକି ତାଙ୍କଠୁ କାଗଜରେ ଟିପ ନିଆ ହୋଇଥିଲା ତା ଜାଣନ୍ତି ନାହିଁ ।

ନିହିତ ସ୍ୱାର୍ଥଥିବା ଲୋକେ ମୂଳରୁ ଭୂଦାନକୁ ବିରୋଧ କରୁଥିଲେ ଓ ଲୋକଙ୍କୁ ମତାଇବାକୁ ଚେଷ୍ଟା କରୁଥିଲେ । ଗାଁରେ ଭୂଦାନ କର୍ମୀ ଥିଲାଯାଏ, ଭୂଦାନ ପ୍ରଚାର ଚାଲିଥିବା ଯାଏ ଓ ଭୂଦାନ କାର୍ଯ୍ୟରେ କର୍ମୀମାନେ ଲାଗିଥିବାଯାଏ ସେ ଚେଷ୍ଟା ବିଫଳ ହେଉଥିଲା, ସେମାନେ ବିରୋଧୀମାନଙ୍କୁ ବି ବୁଝାଉଥିଲେ । କର୍ମୀମାନେ ଭୂଦାନ କାର୍ଯ୍ୟକୁ ଛାଡ଼ି ନିର୍ମାଣ କାର୍ଯ୍ୟରେ ରହିଗଲାରୁ ବିରୋଧୀ ନିହିତ-ସ୍ୱାର୍ଥ ଲୋକଙ୍କ ପ୍ରଚାର ବଢ଼ିଲା । ଅନୁନ୍ନତ ଆଦିବାସୀ ଯେପରି ଅତି ସରଳ ବିଶ୍ୱାସୀ, କୂଟବୁଦ୍ଧି ଶୋଷକଙ୍କ ପ୍ରଚାରରେ ବି ସହଜରେ ପ୍ରଭାବିତ ହୁଏ, ତେଣୁ ତାର ହିତ ପାଇଁ ଦରକାର ଯେ ତାର ବିଶ୍ୱାସଭାଜନ ହୋଇ ପାରିଥିବା କର୍ମୀ ତାର ଘନିଷ୍ଠ ସମ୍ପର୍କରେ

ତା ଆଖପାଖରେ ରହିଥିବେ, ତା ମନରେ ସଂଶୟ ହେଲେ ତା ଦୂର କରୁଥିବେ, ତାର ଦମ୍ଭ ଓ ଆତ୍ମବିଶ୍ୱାସକୁ ବଳ ଯୋଗାଉଥିବେ । କର୍ମୀ ହିଁ ଅଭାବ ହେଲେ । ୧୯୫୭ ଅକ୍ଟୋବରରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଇସ୍ତଫା ଦେଇ ଅଲଗା ହୋଇଗଲେ । ଡକ୍ଟର ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ହେଲେ । ତାଙ୍କ ମତରେ —ଭୂଦାନ ଆନ୍ଦୋଳନର ଉପକାରିତା ନ ଥିଲା, ତା ଖାଲି 'ଦାରିଦ୍ର୍ୟ ବଣ୍ଟନ', ଦେଶର ବଡ଼ କାମ ହେବ, —ଉତ୍ପାଦନ ଓ ଅର୍ଜନ ବୃଦ୍ଧି, ଜୀବନଧାରଣର ମାନ-ବୃଦ୍ଧି । ତେଣୁ ସେ ଭୂଦାନକୁ ପସନ୍ଦ କଲେ ନାହିଁ । ତାଙ୍କ ସରକାରଙ୍କ ମନ ସେଭଳି ହେବାରୁ ଭୂଦାନ କାର୍ଯ୍ୟ ପ୍ରତି କର୍ମଚାରୀମାନଙ୍କ ଦୃଷ୍ଟିଭଙ୍ଗୀ ମଧ୍ୟ ଅନୁରୂପ ହେଲା । ସେତେବେଳେ ଭୂଦାନ ବିରୁଦ୍ଧରେ ପ୍ରଚାର ଚାଲିଲା ।

ଶୁଣାଯାଏ, ସେତେବେଳେ କେଉଁଠି ଗୋଟିଏ ବଡ଼ ହାଟରେ ବହୁତ ଆଦିବାସୀ ଜମିଥିଲାବେଳେ ଜଣେ ବଡ଼ 'ଅଧିକାରୀ' ହଠାତ୍ ଅଣ୍ଟାରେ ଅଣ୍ଟାରେ ଜଣେ ଆଦିବାସୀ ହାତରୁ ତା ଖୋଲା ଛତାଟି ଛଡ଼ାଇ ନେଇ କହିଲେ "ଏ ଛତା ମୁଁ ନେଇ ଯାଉଛି ।"

ବିସ୍ମିତ ଆଦିବାସୀଟି ପଚାରିଲା, "କାହିଁକି ମାହାପ୍ରୁ ?"

ସେ ହସି ହସି ବୁଝାଇଲେ, "ଏମିତି ପରା ଭୂଦାନ ଜମି ନେବାକଥା, ଆଉ କଣ ?"

'ଭୂଦାନ' କେଡ଼େ ଅସାର ଓ କେଡ଼େ ହାସ୍ୟାସ୍ପଦ ସେକଥା ବୁଝାଇ ଛତାଟି ଲେଉଟାଇ ଦେଲେ । ଆଉ ଯୋକେ ପ୍ରଚାର ଚଳାଇଲେ, "ଜାଣି ଜାଣି ନିଜ ଜମି ତୁମେ ପରକୁ ଦେଇ ଦିଅନ୍ତ କି ? କେହି ଦେଲାଣି ସେମିତି ? ଜମି ଏଣ୍ଡେ ମାଇଁ ମରା କେତେ ହଣାମରା ଚାଲେ, କେତେ ମାଲିମକଦମା ହୁଏ ? ତୁମେ ସତେ ବୁଝିଶୁଝି ଦାନ କରିଦେଲ ? ଏଡ଼େ ଦାତାକର୍ଣ୍ଣ ? ନା, ଭୂଦାନ ମିଛ, ଭୂଦାନ ଫାଙ୍କି ।"

ଆଉ ଜଣେ କହେ, "କୁମୁକ୍ (ଠକାମି) କଣ ଚିପଚନ୍ତି ନେଇଗଲା ମାହାପ୍ରୁ, ଯେଝୁ କନ୍ଧ ପରଜା କଣ୍ ଜାଣନ୍ତି ?"

ସେ ଯାହା ବୁଝେଇଲା, ଆଦିବାସୀର ସବୁ କଥା ଏକା ଉତ୍ତର, "ହୋ-ଇ ମାହାପ୍ରୁ ।" "ହୋ-ଇ ନାହିଁ ସେ ମାହାପ୍ରୁ ।"

ନୂଆ ନୂଆ ଅସୁବିଧା ବି ଦେଖାଦେଲା । ପ୍ରତି ଆଦିବାସୀର ଉନ୍ନ ଦରକାର ପଡ଼େ । ସମ୍ପତ୍ତି କିଛି ନାହିଁ, ଶୋଷଣ କବଳରେ ପଡ଼ି କିଛି ବଞ୍ଚେ ନାହିଁ । ସେମ

ହେଲେ ଆଦିବାସୀ ବିଶ୍ୱାସ କରେ କେଉଁ ଦେବତା କି କାହା ପ୍ରେତାତ୍ମା 'ସ୍ୱାମ୍ଭୁ ଧରିଛି', କାଳସୀ ନଚେଇ ଜଣାପଡ଼େ ସେ କଏ, କି ବଳି ଖୋଜୁଛି, ମଙ୍ଗୁଛି ଗା ଛେଳି, ନା ଘୁଷୁରି, ନା କୁକୁଡ଼ା । ଉତ୍ତର ମିଳିଲେ ବଳିଦେବାକୁ ତାକୁ କିଣିବାକୁ ସଙ୍ଗେ ସଙ୍ଗେ ଋଣ ଲୋଡ଼ା, ମହାଜନ ଅପେକ୍ଷା କରିଥାଏ, ଟଙ୍କାଏ ଦେଲେ ଚକ୍ର ବଢ଼ିକରିଏ ତା ବଦଳରେ ଛ ଟଙ୍କାର ଫସଲ ନେବ । ପୁଣି ଖାଦ୍ୟାଭାବ ଲାଗି ଋଣ ଦରକାର ପଡ଼େ, ଫାଟୁଆ ଧରି କି ବାଘ ଖାଇ ବୃଷ ବଳଦ ମ୍ଳିଗଲେ ଋଣ ଲୋଡ଼ା, ବାହାହେଲା ପୁଅକୁ କନ୍ୟା ମୂଲ୍ୟ ଦେବାକୁ ବି ଋଣ, ଶୋଷଣ ବନ୍ଦ ହୋଇ ଅର୍ଥ୍ରା ଦମ୍ଭ ନ ହେବାଯାଏଁ ବାରମ୍ବାର ଏଭଳି ଋଣ ତାର ଦରକାର । କିନ୍ତୁ ଭୂଦାନ ଗ୍ରାମଦାନ ହେଲାପରେ କେହି ଋଣ ଦେଲେ ନାହିଁ । ମହାଜନ କହିଲେ "ଜମିତ ଆଉ ତୁମ ହାତରେ ନାହିଁ, ଋଣ ଶୁଝିବ କେଉଁଠୁ ?" ଭୂଦାନ ଯଜ୍ଞ ଆଇନ୍ ହେଲା, ବଣ୍ଟା ଜମି ରେଜିଷ୍ଟ୍ରି ହେବ, କିନ୍ତୁ ତା ଆଗରୁ ଏନ୍‌କ୍ୱାଇରି ହେବା ଦରକାର, ଏସବୁ ସରକାରୀ କାମ ଗୁଟୁ ଗୁଟୁ ମାସ ମାସ ବିତିଗଲା । ଯେଉଁମାନେ ଭୂଦାନରେ ମିଶିବା ଆଗରୁ ଆଶା କରିଥିଲେ ଯେ ସବୁ ସୁବିଧା ହୋଇଯିବ, ଯେପରି,—ନିଅଣ୍ଟ ଥିଲେ ଆଉକିଛି ଜମି, ଜମିରେ ପାଣି ମାଡ଼ିବା ବ୍ୟବସ୍ଥା, ହଳବଳଦ ବିହନ କିଣା ପାଇଁ ଟଙ୍କା ମିଳିବ, ଋଣ ମିଳିବ,—ସେମାନେ ନିରାଶ ହେଲେ । ଗ୍ରାମଦାନ ଗାଁ ୮୧୨ରୁ ୧୫୦ ଗାଁରେ ଯିନା କିଛି ନିର୍ମାଣ କାମ ହେଲା, ଅନ୍ୟ ଗ୍ରାମଦାନ ଗାରେ କିଛି ହେଲା ନାହିଁ । ଭୂଦାନ ବିରୋଧୀ ଲୋକେ ଏଇସବୁ ଅସୁବିଧା ଆଡ଼କୁ ଆଙ୍ଗୁଠି ଦେଖାଇ ବୁଝାଇ ବୁଲିଲେ, "ଭୂଦାନରେ ମାତିଲେ ପରିଣାମ ଏଇଆ ହୁଏ ।"

ନିର୍ମାଣ କାର୍ଯ୍ୟ ଯୋଗୁଁ ୧୯୫୬ ପରେ ୧୯୬୩ ଯାଏ କୋରାପୁଟ ଜିଲ୍ଲାରେ ଭୂଦାନ କାର୍ଯ୍ୟ ବ୍ୟାହତ ହୋଇ ନିସ୍ତେଜ ହୋଇ ପଡ଼ି ରହିଲା । ସେହି ନିର୍ମାଣ କାର୍ଯ୍ୟ ଆସିଥିଲା ବିନୋବାଙ୍କ ଓଡ଼ିଶା ପଦଯାତ୍ରା ଶେଷ ଆଡ଼କୁ ୧୯୫୫ ସେପ୍‌ଟେମ୍ବର ୨୧ରୁ ୨୮ ଭିତରେ କୁଜେନ୍ଦ୍ରିରେ ତାଙ୍କ ରହଣିବେଳେ ଯେଉଁ ନିଷ୍ପତ୍ତି ନିଆଗଲା ତାହାରି ଯୋଗୁଁ । ସେତେବେଳେ ସେ ନିଷ୍ପତ୍ତି ପଛଆଡ଼େ ଥିଲା ବହୁତ ସଦିଚ୍ଛା ଓ ଆଶା ।

# ଅଣଗ୍ଣ

ବିନୋବାଜୀ ଓଡ଼ିଶାରୁ ଗଲାପରେ ଗୋପବାବୁ ଦ୍ୱିଗୁଣିତ ଉତ୍ସାହରେ କୋରାପୁଟ ଜିଲ୍ଲାରେ ଭୂଦାନ କାର୍ଯ୍ୟରେ ଲାଗି ରହିଲେ । ଭୂଦାନ ଅଫିସ୍ ଓ ସେ ସମ୍ପର୍କୀୟ ଅନ୍ୟାନ୍ୟ ଅଫିସ୍ ରାୟଗଡ଼ା ଠକ୍‌କର ଆଶ୍ରମରେ ଥାଏ, ଶ୍ରୀ ଆଣ୍ଣାସାହେବ ନିର୍ମାଣ କାର୍ଯ୍ୟର ଅଫିସ୍ କରିବାପାଇଁ ସେହି ଆଶ୍ରମ ପାଖେ ୟୁନିଅନ୍ ବୋର୍ଡ଼ ଜାଗାରେ ଖଣ୍ଡେ ଘର ତୋଳାଉଥାନ୍ତି ଓ ଗୋପବାବୁ ନିଜେ ମାଲ ଭିତରେ ଆଦିବାସୀ ଗାଁରେ ବୁଲି ବୁଲି ବୁଲୁଥାନ୍ତି, ଭୂଦାନ କାମ କରୁଥାନ୍ତି, କେଉଁ ଘରେ ରହୁଥାନ୍ତି, କେଉଁ ବୋଷେଇରେ ଖାଉଥାନ୍ତି, କର୍ମୀମାନଙ୍କୁ ପରାମର୍ଶ ଦେଉଥାନ୍ତି, ସବୁ କାମ ବୁଝୁଥାନ୍ତି ।

ବିନୋବାଜୀଙ୍କ ପରାମର୍ଶକ୍ରମେ କୋରାପୁଟ ଜିଲ୍ଲାର 'ନିର୍ମାଣ କାର୍ଯ୍ୟ'ର ଦାୟିତ୍ୱ ନେବା ପାଇଁ ସର୍ବସେବା ସଂଘର ମୁଖ୍ୟ ସଞ୍ଚାଳକ ଓ ସମ୍ପାଦକ ଶ୍ରୀ ଆଣ୍ଣାସାହେବ ସହସ୍ରବୁଦ୍ଧେ ସେତେବେଳକୁ ଆସିଗଲେଣି । ସେ ଗୋଟିଏ ଭଡ଼ା ଘରେ 'ସର୍ବସେବା ସଂଘ'ର କାର୍ଯ୍ୟାଳୟ ଖୋଲିଥାନ୍ତି, ନିର୍ମାଣ କାର୍ଯ୍ୟ କରୁଥାନ୍ତି, ଗୋପବାବୁ ତାଙ୍କୁ ପରାମର୍ଶ ଦେଉଥାନ୍ତି, ସବୁ କାର୍ଯ୍ୟ ବୁଝାଇ ଦେଉଥାନ୍ତି ଓ ସବୁ ପ୍ରକାର ସାହାଯ୍ୟ କରୁଥାନ୍ତି । ଆଣ୍ଣାସାହେବ ଜଣେ ନିଷ୍ଠାପର ନିରଳସ ପରିଶ୍ରମୀ ବୁଦ୍ଧିମାନ୍ ଅଭିଜ୍ଞ ନିର୍ମାଣ-କର୍ମୀ, ତହିଁରେ ତାଙ୍କର ଅସାଧାରଣ ଦକ୍ଷତା । ପ୍ରଧାନମନ୍ତ୍ରୀ ଶ୍ରୀ ଜବାହରଲାଲ ତାଙ୍କୁ ଯୋଜନା କମିଶନର ସଦସ୍ୟ ପାଇଁ ଡାକିଥିଲେ, କୋରାପୁଟ ଅଞ୍ଚଳ ତାଙ୍କୁ ସମ୍ପୂର୍ଣ୍ଣ ନୂଆ, କିନ୍ତୁ ତାଙ୍କର ଖୁବ୍ ଉତ୍ସାହ, କର୍ମପ୍ରବଣତା ଓ ମନବଳ । ଆଗ କର୍ମୀ ଦରକାର, ନିର୍ମାଣ କାର୍ଯ୍ୟର ଦାୟିତ୍ୱ ନେବେ । କର୍ମୀମାନଙ୍କ ତାଲିକାରୁ ବଛା ହୋଇ ଶ୍ରୀ ବ୍ରଜସୁନ୍ଦର ଦାସ ଆଦି କେତେଜଣ କର୍ମୀ ତାଙ୍କୁ ଦିଆ ହୋଇଥାନ୍ତି । ବିନୋବାଜୀ ଆନ୍ଧ୍ରରେ ପ୍ରବେଶ କଲେ, ତାଙ୍କୁ ବଳେଇ ଦେବାପାଇଁ ଅକ୍ଟୋବର

୧ ରେ ରମା ଦେବୀ, ଗୋପବାବୁ, ବିଶ୍ୱନାଥ ପଟ୍ଟନାୟକ, ଶରତ୍‌ବାବୁ, ଆଣ୍ଣାସାହେବ, ଅନ୍ୟାନ୍ୟ କର୍ମୀ ସେଠିକି ଗଲେ, କେଉଁ କର୍ମୀ କି କାମ କରିବେ ସେଦିନ ସ୍ଥିର ହେଲେ । ତିନୋଟି କାମ ଥାଏ, (୧) ଭୂଦାନ,—ଗୋପବାବୁ ତାକୁ ହିଁ ଅଗ୍ରାଧିକାର ଦେଉଥାନ୍ତି, ବେଶୀ ସଂଖ୍ୟାରେ 'ସବୁଠୁ ଭଲ କର୍ମୀ'—ସେଥିପାଇଁ ଦରକାର, (୨) ନିର୍ମାଣ,—ରମା ଦେବୀ ସେ ଭାରରେ ଥାନ୍ତି, ସେ କହୁଥାନ୍ତି 'ସବୁଠୁ ଭଲ କର୍ମୀ' ସେଥିପାଇଁ ଦରକାର, କର୍ମୀ ନିଅଣ୍ଟ, ସମୁଦାୟ ୫୦ କି ୬୦ ଜଣ । ଯାହାହେଉ, ଆଲୋଚନା ହୋଇ ତାଲିକା ହେଲା ।

ଆଣ୍ଣାସାହେବଙ୍କ ଆଗରେ ବହୁତ କାମ । ଜମି ବଣ୍ଟନ ଭାର ଥାଏ ରମା ଦେବୀ ଓ ଶ୍ରୀ ବୁଦ୍ଧନିଧି ମହାନ୍ତିଙ୍କ ଉପରେ । ତାପରେ ଆଣ୍ଣାସାହେବଙ୍କ 'ନିର୍ମାଣ' କାମ,—ଜମି ସଫା କରିବା, ମରାମତି କରିବା, ଚଉସମ କରିବା, କିଆରି ବାନ୍ଧିବା, ମୃତ୍ତିକା ପରୀକ୍ଷଣ କରିବା, ଚାଷ ଉପକରଣ ଯୋଗାଇବା, ହଳ ବଳଦ ବିହନ ଇତ୍ୟାଦି । ଚାଷ କରେଇବା । ଚାଷ ପାଇଁ ପାଣି । ବାଡ଼ ବଗିଚା କରେଇବା ।

ଜଙ୍ଗଲଜାତ ଦ୍ରବ୍ୟ, ଯାହା ଆଦିବାସୀ ଆହରଣ କରନ୍ତି, ତାର ବିକାକିଣା ପାଇଁ କୋଅପରେଟିଭ୍ ସୋସାଇଟି ଗଢ଼ିବା, ତାର **Processing**, ଆଦି କରାଇବା, ଆଦିବାସୀଙ୍କ ପାଇଁ ନାନା ପ୍ରକାର ଅର୍ଥକରୀ ବୃତ୍ତି ଓ ଧନ୍ଦା ଖଞ୍ଜିବା । ପଛେ ଗୋପାଳ ବାଡ଼ିରେ ଆଦର୍ଶ ଚାଷ କାମ ହେଲା, ସେଠି ଗୋଟିଏ **Electric Generator** ବି ରହିଲା । ଗରଣ୍ଡାରେ ଆଦର୍ଶ ଚାଷକାମ ହେଲା । ଶ୍ରୀ ଗୋବିନ୍ଦ ରେଡ୍ଡି ରହି ପ୍ରୟୋଗ କଲେ ।

ଜୟପୁରରେ ମହାରାଜାଙ୍କ ଦେଓ୍ୱାନ ବଙ୍ଗଳାରେ ଅଫିସ୍ ହୋଇଥାଏ, କାଠ ମାଗ କାମ (**wood prcessing**) କାର୍ଯ୍ୟାଳୟ ବସିଥାଏ, ଶ୍ରୀ ଏ ଭି ସ୍ୱାମୀ ବୋଲି ଜଣେ ବିଶେଷଜ୍ଞ (କେମିକେଲ୍ ଇଞ୍ଜିନିଅରିଂରେ **B.Sc**) ମଗା ହୋଇ ତା ମାଫତରେ ଥିଲେ । ଚମଡ଼ା ଟ୍ୟାନିଂ ପାଇଁ ବ୍ୟବସ୍ଥା ହେଲା, ଶ୍ରୀ ବଂଶୀଧର ନାଏକ—ଆଗେ ସେ ସୋଦପୁରରେ ଶ୍ରୀ ସତୀଶ୍ ଚନ୍ଦ୍ର ଦାଶଗୁପ୍ତଙ୍କ ପାଖେ ତାଲିମ୍ ପାଇ ବାରିରେ ଥିଲେ, ପଛେ ସେଠି ରାମଚନ୍ଦ୍ରପୁର ମୌଳିକ ସ୍କୁଲରେ ଶିକ୍ଷକ ଥିଲେ, ଆଣ୍ଣାସାହେବ ତାଙ୍କୁ ଆଣିଲେ । କାଗଜ ତିଆରି କାମ କରାଇଲେ । ରାୟଗଡ଼ାରେ **work shop** କଲେ, ସେଠି ଚରଖା ଆଦି ମରାମତି କରା ହେଉଥିଲା । ମହାରାଷ୍ଟ୍ରରୁ ଜଣେ ଶ୍ରୀ ଦାଢ଼େ ବୋଲି ଅଭିଜ୍ଞ ଇଞ୍ଜିନିୟର ଆସିଲେ, ବହୁ କଷ୍ଟରେ ଆଣ୍ଣାସାହେବ ତାଙ୍କୁ ଅଣାଇଲେ, ସେ କେନ୍ଦ୍ର ସରକାର ଅଧୀନରେ କାମ କରୁଥିଲେ । କଟକର ଇଂଜିନିଅର କଣ୍ଟ୍ରାକ୍ଟର ଶ୍ରୀ ସାମୁଏଲ ପଣ୍ଡାଙ୍କୁ ବି ଆଣ୍ଣାସାହେବ ନେଲେ ।

ସେ ଖୁବ୍ ଝଙ୍କରେ ଲାଗି ପଡ଼ିଥାନ୍ତି ଯେପରି ସେ ଅନୁନ୍ନତ ଅଞ୍ଚଳର ଚେହେରା ହିଁ ବଦଳିଯିବ, ସବୁ ବିଷୟରେ ପ୍ରାଚୁର୍ଯ୍ୟ ଆସିବ, ଆଦିବାସୀଙ୍କର ସବୁ ପ୍ରକାର ବୈଷୟିକ ଉନ୍ନୟନ ହେବ, ଶିକ୍ଷିତ ହେବେ, କାମ ଶିଖିବେ, ଉତ୍ପାଦନ କରିବେ, ସୁଖରେ ରହିବେ, ଏକଦା ଲେଙ୍ଗୁଟିପିନ୍ଧା ଅଧାପେଟା ଦରିଦ୍ର ଆଦିବାସୀ ହେବେ ସୁସଭ୍ୟ, ସମୃଦ୍ଧ । ସେଥିପାଇଁ ସେ ବାହାରୁ ବିଶେଷଜ୍ଞ, ସ୍ୱେଚ୍ଛାସେବକ ଆଦି ଆଣୁଥାନ୍ତି । ଲକ୍ଷ ଲକ୍ଷ ଟଙ୍କା ଆସିବ, ଖର୍ଚ୍ଚ ହେବ, ତାର ଠିକ୍ ଠିକ୍ ହିସାବ ବିହିତ ପ୍ରକାରେ ରହିବା ଦରକାର । ସେ ଦେଖିଲେ ଓଡ଼ିଶା କର୍ମୀ ତ୍ୟାଗୀ, ନିଷ୍ଠାପର, ଖୁବ୍ ପରିଶ୍ରମୀ, କିନ୍ତୁ ଅଫିସ୍‌ରେ ହିସାବ ରଖିବା ଆଦି ପାଇଁ ବିଶେଷ ଅଭିଜ୍ଞତା ସେମାନଙ୍କର ନାହିଁ, ଅଧିକାଂଶ ତା ପାରିବେ ନାହିଁ, ମହାରାଷ୍ଟ୍ରରୁ ପକ୍କା ଏକାଉଣ୍ଟେଣ୍ଟ୍ ମଗାଇ ଆଣିଲେ । ସେ ଲାଗିଥାନ୍ତି,—ନିର୍ମାଣ କାମ ବୁଦ୍ଧୁ କାମ, କିପରି ତା ହେବ ।

ଅଣ୍ଣାସାହେବଙ୍କ କାମ ବିଧିପ୍ରକାରେ ଯୋଜନା ତିଆରି କରିବା, ପ୍ରତି କାମର ଟିକିନିଖି, କିପରି ହେବ, କିଏ କରିବ, କେଉଁ ଜିନିଷ କେଉଁଠୁ ଆସିବ, ଆଦାୟ କେତେ, ଖର୍ଚ୍ଚ କେତେ, କେତେ ଲୋକ କେଉଁ ପ୍ରକାରେ ଲାଗିବେ, ଉପକାର ପାଇବେ, ପ୍ରତି କାମର ବ୍ୟବସ୍ଥା । ସେଥିପାଇଁ ପରିଶ୍ରମ ବହୁତ ।

## କର୍ମୀ

ଗୋପବାବୁଙ୍କ କାମ ଜୀବନମୂର୍ଚ୍ଛା, ପରିଶ୍ରମ, କଷ୍ଟ, କିନ୍ତୁ ଅଣ୍ଣାଙ୍କ କାମଠୁ ସମ୍ପୂର୍ଣ୍ଣ ଭିନ୍ନ । ଗ୍ରାମଦାନ ହୋଇଛି ବୋଲି ତ ନିର୍ମାଣ । ଭୂଦାନ ଆନ୍ଦୋଳନ ଯୋଗୁ ହିଁ ନିର୍ମାଣ, ଭୂଦାନ-ସଂସାର ଥିଲେ ହିଁ ନିର୍ମାଣର ସାର୍ଥକତା । ଆଗ ଭୂଦାନ, ଗ୍ରାମଦାନ, ସମ୍ପତ୍ତିଦାନ, ଶ୍ରମଦାନ, ସର୍ବୋଦୟ ପାତ୍ର, ଶାନ୍ତିସେନା, ଭୂଦାନପତ୍ରିକା ପ୍ରଚାର, ତାହିରେ ବିଶ୍ୱାସ ବୃଦ୍ଧି । ଯେକୌଣସି କାମ ପୂର୍ବରୁ ଆଗ ନିଶା ନିବାରଣ । ଜିଲ୍ଲାସାରା ଏତେ କାମ, କର୍ମୀ ନାହାନ୍ତି । ଯେ ଅଛନ୍ତି ଅତି ଅଳ୍ପ । ପୁରୁଣା କର୍ମୀ କାମ କରି କରି ଥକି ପଡ଼ିଛନ୍ତି, କିଏ ବା ମାଲଜରରେ ପଡ଼ିଛନ୍ତି, କାହାର ଘର ଜଞ୍ଜାଳ, ଦୂରକୁ ଯାଇପାରିବ ନାହିଁ । ଗୋପବାବୁ ନୂଆ କର୍ମୀ ବି ବାଛି ଗଢ଼ିବାକୁ ଚେଷ୍ଟା କରୁଥାନ୍ତି । ସେପରି ନୂଆ କର୍ମୀ ବାଛିବାକୁ, କାମରେ ଲଗାଇବାକୁ ବିଶ୍ୱନାଥ ପଟ୍ଟନାୟକଙ୍କୁ କହୁଥାନ୍ତି । ସେତେବେଳେ ସେ କୋରାପୁଟ ଜିଲ୍ଲା ଭୂଦାନ କାର୍ଯ୍ୟର 'ସଂଯୋଜକ' ଦାୟିତ୍ୱରେ ଥାନ୍ତି, ସବୁ କାମ ବୁଝାଶୁଝା କରୁଥାନ୍ତି । ସର୍ବଶ୍ରୀ ରାଧାରତନ ଦାସ, ଶାନ୍ତି ଦେବୀ, ମାଲତୀ ବିଶ୍ୱାଲ. ବାସ୍ତା, ମହମ୍ମଦ ବାଜ, ବୈଦ୍ୟନାଥ ଦାସ, ବଡ଼ ପ୍ରଫୁଲ୍ଲ, ସାନ ପ୍ରଫୁଲ୍ଲ, ଅକ୍ରୁର ଜେନା, ସନାତନ ମଲ୍ଲିକ, ଶ୍ୟାମସୁନ୍ଦର ଦାସ, ସନାତନ, ଅନାଦି ଦାସ, ନିମାଇଁ ଚରଣ ଦାସ, ବ୍ରଜସୁନ୍ଦର ଦାସ, ବୃନ୍ଦାବନ ଚନ୍ଦ୍ର

ଜେନା, ଅଲେଖ ପାଣ୍ଡ, ସାଉଁଟି, ବୃନ୍ଦାବନାଥ ଭଞ୍ଜ, ନିଶାକର ଦାସ, ଶଶିଭୂଷଣ ଦାସ, ଆଦି କର୍ମୀମାନେ ଖୁବ୍ କାମ କରୁଥାନ୍ତି । କର୍ମୀମାନେ ଆଦିବାସୀ ଭାଷା ବୁଝନ୍ତି ନାହିଁ, ଅସୁବିଧା ହେଉଥାଏ, ଗୋପବାବୁ ତା ପାଇଁ ଉପାୟ ବି ଭାବୁଥାନ୍ତି ।

ସରକାରଙ୍କଠୁ ସହଯୋଗ ମିଳୁଥାଏ । ମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ନିଜେ କୋରାପୁଟର ପୁରୁଣା କଂଗ୍ରେସ ନେତା, ସେ ଭୂଦାନ ସମର୍ଥକ । ସେହିପରି ଅନ୍ୟ କେତେଜଣ । ବିନୋବାଙ୍କ ପଦଯାତ୍ରା ବେଳେ ଓଡ଼ିଶା ସରକାର ପୂର୍ଣ୍ଣ ସହଯୋଗ କରିଥିଲେ, ନାନା ପ୍ରକାର ସାହାଯ୍ୟ କରିଥିଲେ । ସରକାରୀ କର୍ମଚାରୀମାନେ ନିଜ କର୍ତ୍ତବ୍ୟ ତୁଲାଇବା ଭିତରେ ଯେତିକି ସାହାଯ୍ୟ କରିବା ଆଇନ୍‌ସମ୍ମତ ଓ ସମ୍ଭବ, ମାଗିଲେ ସେତିକି କରୁଥିଲେ, କିନ୍ତୁ ଭୂଦାନ ଆନ୍ଦୋଳନ ଚଳାଇବା ତାଙ୍କ କାମ ନୁହେଁ କି ଦାୟିତ୍ୱ ନୁହେଁ, ତା ସେ କରୁ ନ ଥିଲେ ।

ଆଗ ଗୋପବାବୁ ଚେଷ୍ଟା କରୁଥିଲେ, 'ସମ୍ପତ୍ତିଦାନ' ସଂଗ୍ରହ ଖୁବ୍ ଜୋର୍‌ସୋର୍‌ରେ ଚାଲୁ, ତାହେଲେ ଆଗ କର୍ମୀ ସେଥିରେ ପୋଷି ହେବେ, ସେମାନେ ପାରିଶ୍ରମିକ, ମାସିକଭତ୍ତା ଏସବୁ ନେବା ଉଚିତ ନୁହେଁ, ନିଜେ ତ୍ୟାଗ ଓ ସ୍ୱାବଲମ୍ବନର ଆଦର୍ଶ ଦେଖାଇବା ଦରକାର, ଦରମା କି ଟଙ୍କା ମୋହ ଆଦୌ ନ ରହିବା ଦରକାର । 'ସମ୍ପତ୍ତିଦାନ' ସଂଗ୍ରହ ହୋଇପାରିଲେ ସେହି ସ୍ଥାନୀୟ ସମ୍ବଳ ନେଇ ସ୍ଥାନୀୟ ପ୍ରଧାନ ଆବଶ୍ୟକ ବି ପୂରଣ ହୋଇପାରିବ, —କେଉଁଠି କୂଅଟିଏ, ପୋଖରୀଟିଏ, କାହା ପାଇଁ ହଳ ବଳଦ, ଇତ୍ୟାଦି । ବାହାରୁ ଟଙ୍କା ଆଣି କାମ କଲେ ସ୍ୱାବଲମ୍ବନ ଆଦର୍ଶ ବି ରହିବ ନାହିଁ ।

ସେ ସେକାର୍ଯ୍ୟକୁ ଅଟକାଇ ରମା ଦେବୀ, ଗୁଣନିଧି ବାବୁ, ବ୍ୟାସ୍‌ଜୀ, ବିଶ୍ୱନାଥ ପଟ୍ଟନାୟକଙ୍କ ସଙ୍ଗେ ମିଶି ଭୂମି ବଣ୍ଟନ କାର୍ଯ୍ୟ ତ୍ୱରାନ୍ୱିତ କଲେ । ତା ସହିତ, ଗାଁ ଗାଁକେ କେତେ ହଳ ବଳଦ କାହାର ଦରକାର ତାଲିକା କରି ଜିଲ୍ଲା କଲେକ୍ଟରଙ୍କ ପାଖକୁ ପଠାଉଥିଲେ, ଚେଷ୍ଟା କରୁଥିଲେ, ସେଠୁ ବି ଯାହା ମିଳିବାର ମିଳୁ ।

ଗ୍ରାମଦାନ, ଭୂଦାନ, ଶ୍ରମଦାନ ଆଦି କାମ ଚାଲୁ ରହିଥିଲା । ମଦନିଶା ବନ୍ଦ କରିବା ପାଇଁ ବ୍ୟାପକ ଆନ୍ଦୋଳନ କରୁଥାନ୍ତି । ବୁଲୁ ବୁଲୁ ଯେଉଁଠି ଦେଖୁଥାନ୍ତି ଅତି ଅନୁନ୍ନତ ଆଦିବାସୀ, ସେଠି ଆଦିବାସୀ ସେବାକାର୍ଯ୍ୟ କରିବା ପାଇଁ କର୍ମୀ ଲଗାଉଥାନ୍ତି । ୧୬-୧୦-୧୯୫୫ରେ ବିଶ୍ୱନାଥ ପଟ୍ଟନାୟକଙ୍କ ପାଖରୁ ସଓରା ଗାଁ ବ୍ରାହ୍ମଣପେଣ୍ଠିରୁ ସେ ଚିଠି ଲେଖିଥିଲେ । ବିଶ୍ୱନାଥ ପଟ୍ଟନାୟକ ରାୟଗଡ଼ା 'ଭୂଦାନ ବଣ୍ଟନ କେନ୍ଦ୍ର'ରେ ଥାନ୍ତି । ଗୋପବାବୁ ଦୀର୍ଘ ପଦଯାତ୍ରାରେ ବୁଲୁଥାନ୍ତି । ସେତେବେଳକୁ ସେ ୬୦୦ ଦାନପତ୍ର ପୂରଣ କଲେଣି ।

୨୨-୧୦-୫୫ରେ ସେ ରାୟଗଡ଼ା ପାଖ ଜପାଖାଲରେ ପହଞ୍ଚିଲେଣି । ମୁଁ ଆଉ ପୁରୀରେ, ଜିଲ୍ଲାବୋର୍ଡ଼ ସ୍ପେସାଲ୍ ଅଫିସର । ମତେ ଯେଉଁ କାର୍ଡ଼ଟି ସେଦିନ ଲେଖିଥିଲେ ସେଥିରେ ଥିଲା :

"ବିନୋବାଜୀ ଏ ଜିଲ୍ଲାରୁ ହିଁ ଆନ୍ଧ୍ରକୁ ଗଲେ । ସୁବୁଦ୍ଧାୟିତ୍ୱ ଆମ ମୁଣ୍ଡରେ ପକାଇ ଦେଇଛନ୍ତି—ଅବଶ୍ୟ ତାକୁ ଜମେଇ ଦେବାକୁ ସେ ବାହାରୁ ଯଥେଷ୍ଟ ସାହାଯ୍ୟର ବ୍ୟବସ୍ଥା କରିଛନ୍ତି ।

ମୁଁ ବର୍ତ୍ତମାନ ଏକ ପଦଯାତ୍ରାରେ ବାହାରିଛି । ଗ୍ରାମଦାନ ମିଳିଥିବା ଅଞ୍ଚଳରେ ବୁଲି ବୁଲି ଯିବି । କନ୍ଧଙ୍କ ଘରେ ରହୁଛି, ତାଙ୍କର ସେବାରେ ଖାଉଛି, ବଡ଼ ଭଲ ଲାଗୁଛି; ଲୋଭ ମଧ୍ୟ ହେଉଛି, ସାକ୍ଷାତ୍ ଦରିଦ୍ର ନାରାୟଣଙ୍କର ଦର୍ଶନ ମିଳୁଛି ।"

୨୭-୧୦-୫୫ରେ ସେ ରାୟଗଡ଼ା ଫେରି ଆସିଲେ ।

୧୯୫୫ ନଭେମ୍ବରରେ ସେ କଟକ ଆସିଲେ । କଟକ ପୁରୀ ବାଲେଶ୍ୱର ଅଞ୍ଚଳରେ ସେପ୍ଟେମ୍ବରରେ ନଇବଢ଼ି ଓ ତୋଫାନ ହୋଇଥିଲା, ରିଲିଫ୍ କାମ ଲାଗିଥାଏ, ସେ ସେ ଅଞ୍ଚଳ ବୁଲି ଆସିଲେ । କଟକରେ ଯୋଗିଆ ସାହି ଭୂଦାନ ଆଶ୍ରମରେ ରହୁଥିଲେ । ପୁଣି ୨୪-୧୨-୫୫ରେ ସେ କୋରାପୁଟ ଯିବେ ବୋଲି ରେଲ୍ ଧରିଲେ । ନଭେମ୍ବର, ଡିସେମ୍ବର ୧୯୫୫ରେ ୧୯୫୬ ଜାନୁଆରି ମାସରେ ସେ ଆଗପରି କୋରାପୁଟ ଜିଲ୍ଲାରେ କାର୍ଯ୍ୟରେ ଲାଗିଥାନ୍ତି । ଜମି ବଣ୍ଟନ କାର୍ଯ୍ୟରେ କର୍ମୀମାନେ ବଉଗା ହେଉଥାନ୍ତି ।

୨୭-୨-୫୬ରେ ସେ ମଧ୍ୟପ୍ରଦେଶର ରାୟପୁର ଗଲେ, ୨୯-୨-୫୬ରେ ଝାଡ଼ସୁଗୁଡ଼ା ଗଲେ ଓ ସେଠୁ କୁଚିଣ୍ଡାକୁ ଗସ୍ତରେ ଚାଲିଗଲେ । ତେଣୁ ଫେରି ସେ କଟକ ଯୋଗିଆ ସାହି ଆଶ୍ରମରେ କିଛିଦିନ ରହିଲେ । ସେଠି ଥାଇ ବି ସେ କୋରାପୁଟ କାମ ବୁଝୁଥାନ୍ତି ଓ ବିଶ୍ୱନାଥ ପଟ୍ଟନାୟକଙ୍କ ପାଖକୁ ଚିଠି ଲେଖୁଥାନ୍ତି । ଯୋଗିଆ ସାହିରୁ ୩-୩-୫୬ରେ ବିଶ୍ୱନାଥ ପଟ୍ଟନାୟକଙ୍କ ପାଖକୁ ସେ ଲେଖିଥିବା ଗୋଟିଏ ଚିଠିରୁ ଜଣାପଡ଼େ ଯେ କୋରାପୁଟରେ ଭୂଦାନ କାମରେ ଯେଉଁ କର୍ମୀମାନେ ବେତନ ନେଇ କାମ କରୁଥିଲେ ବା ସାମୟିକ କାମ କରୁଥିଲେ ଆଉ ସେମାନଙ୍କ ନାମକୁ ଭୂଦାନ କମିଟି ମଞ୍ଜୁର କରୁଥିଲେ, ତାପରେ ତାଙ୍କୁ ବେତନ ବା ପାରିଶ୍ରମିକ ମିଳୁଥିଲା । ସେ ଚିଠିରେ ଅଛି ଯେ ବିଶ୍ୱନାଥ ପଟ୍ଟନାୟକ ପଠାଇଥିବା କର୍ମୀ ତାଲିକା ସେ ଯାଞ୍ଚ କରିଥିଲେ ଓ ଜଣାଇଥିଲେ ଯେ ତହିଁରେ କେତେ ନାଁ ନ ଥିଲା ଓ ଆଉ କେତେଗୁଡ଼ିଏ ନାଁର କମିଟି-ମଞ୍ଜୁରି ନ ଥିଲା, ଇତ୍ୟାଦି ।

୧୯୫୭ ମାର୍ଚ୍ଚ ୨୦ ପୂର୍ବରୁ ସେ ପୁଣି କୋରାପୁଟ ଜିଲ୍ଲାକୁ ଫେରି ଯାଇଥିଲେ। ସେଦିନ ସେ ମୋ ପାଖକୁ କୋରାପୁଟରୁ ଚିଠି ଲେଖିଥିଲେ। ତହିଁରୁ ଜଣାଯାଏ ଯେ କୋରାପୁଟ ଜିଲ୍ଲାରେ ନିଶା-ନିବାରଣ ହେବାର ଉଦ୍ୟମ ହେଉଥାଏ, ସେଥିପାଇଁ ବହୁତ ଆଦିବାସୀ କର୍ମୀ ଦରକାର ହେଉଥାନ୍ତି ଓ ଆଣ୍ଣାସାହେବ ସହସ୍ରବୁଦ୍ଧେ ୪୦୦।୫୦୦ କର୍ମୀଙ୍କର ଗୋଟିଏ ତାଲିମ୍ କେନ୍ଦ୍ର କଳ୍ପନା କରୁଥାନ୍ତି। ସେ କୋରାପୁଟ ଭୂଦାନ ଅଫିସରେ ରହୁଥାନ୍ତି, ରାୟଗଡ଼ା ବି ଯାଉଥାନ୍ତି। ବିଶ୍ୱନାଥ ପଟ୍ଟନାୟକ ସେତେବେଳେ ନାରାୟଣ ପାଟଣା ଅଡ଼େ ଆଲମଣ୍ଡାରେ ରହି ସେ ଅଞ୍ଚଳରେ କାର୍ଯ୍ୟ କରୁଥାନ୍ତି। ଏହାପରେ ଆଉ କୋରାପୁଟରୁ ୭-୪-୫୭ରେ ସେ ବିଶ୍ୱନାଥ ପଟ୍ଟନାୟକଙ୍କ ପାଖକୁ ସେ ଚିଠି ଲେଖିଥିଲେ। ସେତେବେଳେ ସେ ଗ୍ରାମଦାନ ଗାଁମାନଙ୍କ ପାଇଁ ଧାନ ମାଣ୍ଡିଆ ଆଦି କିଣିବା କାର୍ଯ୍ୟରେ ମଧ୍ୟ ଲାଗିଥାନ୍ତି। ସେ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବାକୁ କୋରାପୁଟ କଲେକ୍ଟର ଜଣେ ସବ୍-ଡେପୁଟିଙ୍କୁ ନିଯୁକ୍ତ କରିଥାନ୍ତି। ତାଙ୍କ ନାମ ଶ୍ରୀ ଭି. ଏସ୍. ଏନ୍. ପଟ୍ଟନାୟକ।

କୋରାପୁଟରେ କି କି କାମ ହେବ ବୋଲି ସେ ଚାହାନ୍ତି ଏହି ଚିଠିରେ ତା ଲେଖାଅଛି:—(୧) ଆଗ, ବଳିଥିବା ଭୂମି ବଣ୍ଟନ କାମ, ସେ କାମ ତୁଟିଗଲେ, —(୨) ନୂତନ ଗ୍ରାମଦାନ ସଂଗ୍ରହ ଓ ସମ୍ପତ୍ତି ଦାନ ସଂଗ୍ରହ, (୩) ବିନୋବା କହିଥିଲେ ଓ ସେହି ମର୍ମରେ ପିଲାନିରେ ବସିଥିବା ସର୍ବୋଦୟ ସମ୍ମିଳନୀରେ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ ୧୯୫୭ ଶେଷସୁଦ୍ଧା ଓଡ଼ିଶାରେ ଭୂଦାନ ପାଇଁ ପାଞ୍ଚଲକ୍ଷ ଏକର ଜମି ମିଳି ସାରିଥିବ, 'ଭୂଦାନର ମହାନଦୀ ବୋହିଯିବ', ସମସ୍ତେ ଭୂଦାନ ଦର୍ଶନରେ ଉଦ୍ବୁଦ୍ଧ ହୋଇ ସାରିଥିବେ, ଓ ଦ୍ୱିତୀୟତଃ, କର୍ମୀମାନେ କୌଣସି ସଂସ୍ଥାରୁ ସାହାଯ୍ୟ ନ ନେଇ ସଂପୂର୍ଣ୍ଣ ଭାବେ 'ନିଧିମୁକ୍ତ' ହୋଇ ଗ୍ରାମୀସ୍ତ ଉପରେ ନିର୍ଭର କରି ଚଳୁଥିବେ। ଭୂଦାନ ଯଜ୍ଞ ୧୯୫୭ରେ ଉଦ୍‌ଯାପିତ ହୋଇଯିବ। ୧୯୫୭ ପାଇଁ ଧାର୍ଯ୍ୟ ହୋଇଥିବା ଏହି ଲକ୍ଷ୍ୟ ପୂରଣ କରିବା ପାଇଁ ଓ ଏ ବିଷୟରେ ପ୍ରଚାର କରିବା ପାଇଁ କର୍ମୀମାନେ ପଦଯାତ୍ରା କରିବେ, ସେଥିପାଇଁ କର୍ମୀ ଯୋଗାଡ଼ ହେବେ, (୪) ସର୍ବୋଦୟ ସମ୍ମିଳନୀ ପୂର୍ବରୁ ପ୍ରତି ଯୋଡ଼ିଏ ଲେଖା ଥାନାରେ ସ୍ଥାନେ ସ୍ଥାନେ ଗ୍ରାମଦାନ ସମ୍ମିଳନୀ ହେବ ବୋଲି ମନମୋହନ ବାବୁ ଆଦିଙ୍କର ଇଚ୍ଛା; ଗୋପବାବୁଙ୍କର ତହିଁରେ ଆପତ୍ତି ନାହିଁ, କିନ୍ତୁ ତାଙ୍କର ଇଚ୍ଛା ଯେ ଯେଉଁଠି ଭୂମି ବଣ୍ଟନ କାମ ଚାଲିଛି ସେଠି କର୍ମୀମାନେ ସମ୍ମିଳନୀ ପାଇଁ ଚାନ୍ଦା ଉଠାଇବା ଆଦି ଆୟୋଜନ କାମ କରିବେ ନାହିଁ, ସେ କାମ ପାଇଁ ଅନ୍ୟ କର୍ମୀ ରହିବେ।

୧୯୫୭ ମେ' ମାସ ଶେଷ ସପ୍ତାହରେ ଗୋପବାବୁ ସସ୍ତ୍ରୀକ ଆସାମର ଲକ୍ଷ୍ମୀପୁରରେ ୨୭ରୁ ୨୯ ତାରିଖ ଯାଏ ସର୍ବୋଦୟ ମେଳାରେ ଯୋଗଦେବାକୁ ଗଲେ, ସେଠୁ ଫେରି ଆସିଲେ। ତାପରେ ପୁଣି କୋରାପୁଟ ଗଲେ।

୧୯୫୭ ଜୁନ୍ ମାସ ମଝି ବେଳକୁ କୋରାପୁଟରୁ କଟକ ଫେରି ଆସିଲେ, ବିଶ୍ୱନାଥ ପଟ୍ଟନାୟକ କୋରାପୁଟ ଭୂଦାନ ଅଫିସ୍‌ରେ ଥାଆନ୍ତି, ଗୋପବାବୁ ଫେରିଆସି ୨୧-୬-୫୭ରେ ତାଙ୍କୁ ପୁରୀରୁ ଚିଠି ଲେଖିଲେ । ସେ ଆଣ୍ଣାସାହେବଙ୍କର କେତେଗୁଡ଼ିଏ କାମରେ ଏଣେତେଣେ ବୁଲୁଥାଆନ୍ତି ଓ ଭାବୁଥିଲେ ଯେ ସେଠା କାମ ସକାଶେ ଦରକାର ପଡ଼ିଲେ ସେ ସେହି କାମରେ ଆଣ୍ଣାସାହେବଙ୍କ ସଙ୍ଗେ ଦେଖା କରିବାକୁ ଯିବେ । ସେ କୋରାପୁଟରୁ ଫେରିଲାବେଳେ ଅନୁଭବ କରୁଥିଲେ ଯେ ସେଠିକାର "ଭୂଦାନ ସଂଗଠନ ମଜବୁତ୍ ହେଉନାହିଁ, ସବୁ କର୍ମୀ 'ସଂଯୋଜକ'ଙ୍କ ଉପରେ ସବୁ ପକାଇ ଦେଇ ବସିବାକୁ ଚାହାନ୍ତି, ସେମାନଙ୍କର 'ସାମୂହିକ ଦାୟିତ୍ୱ' ଚେତନା ଦରକାର । ଖର୍ଚ୍ଚ ଅଯଥା ହେବ ନାହିଁ, ସୁନିୟନ୍ତ୍ରିତ କାମ ହେବ, ମନ ଦେଇ କାମ ହେବ ।" ଏସବୁ କଥା ସେ ସେ ଚିଠିରେ ବିଶ୍ୱନାଥ ପଟ୍ଟନାୟକଙ୍କୁ ଲେଖିଥିଲେ ।

ସେ ପୁଣି କେବେ କୋରାପୁଟ ଯିବେ ବୋଲି ବିଶ୍ୱନାଥ ପଟ୍ଟନାୟକ ପଚାରିଥିଲେ । ତା ଉତ୍ତରରେ ସେ ଲେଖିଥିଲେ ଯେ ବଣ୍ଟନ କାମ ପୂର୍ବରୁ ସେ ସମ୍ପତ୍ତିଦାନ କାମକୁ ସ୍ଥଗିତ ରଖିଥିଲେ, "ସେ କାମ ପୁଣି ଆରମ୍ଭ କରିବାର ସୁଯୋଗ ଓ ସହଯୋଗ ପାଇଲେ ମୁଁ କୋରାପୁଟ ଯିବି । ସୁଯୋଗ ଏହା—ସେଠିକା କର୍ମୀଙ୍କ ଭୂଦାନ କାର୍ଯ୍ୟକ୍ରମରେ ସମ୍ପତ୍ତିଦାନ ସଂଗ୍ରହର ସୁବିଧା କରିଦିବ ଓ ସେ ଧନକୁ କାମରେ ଲଗାଇବା ପାଇଁ ବ୍ୟବସ୍ଥା କରିଦିବ । ଏ କାମରେ ମଧ୍ୟ ସମସ୍ତଙ୍କର ସହଯୋଗ ଦରକାର । ଏ କାମ ନୂଆ ଗ୍ରାମଦାନ ସଂଗ୍ରହ ଭଳି ଏକ ବ୍ୟାପକ କାମ ହେବ । ଅନ୍ତତଃ କେତେଟା ଅଞ୍ଚଳରେ ସମ୍ପତ୍ତିଦାନ ଦ୍ୱାରା କର୍ମୀ ରଖିବା ବ୍ୟବସ୍ଥା ହେବାର ଉଦ୍ୟମ ହେବ । ମୋର ତ ବିଶ୍ୱାସ ସମ୍ପତ୍ତିଦାନ ଦ୍ୱାରା ବାତାବରଣ ଭଲ ହେବ ଏବଂ ସମ୍ପତ୍ତିଦାନ ଦ୍ୱାରା କର୍ମୀ ବ୍ୟବସ୍ଥା ହେଲେ ବର୍ତ୍ତମାନ ବାହାର ଟଙ୍କାରେ ଚଳିବା ଦ୍ୱାରା ଯେ ନିଃସହାୟ ଭାବ ଆସୁଛି ତାର ନିରାକରଣ ହେବ, ଆତ୍ମନିର୍ଭରଶୀଳତାର ଆଦର୍ଶ କାର୍ଯ୍ୟାନ୍ୱିତ କରିବା ସମ୍ଭବପର ବୋଲି ବିଶ୍ୱାସ ହେବ ।

# ପରିଶ

୧୯୫୬ ମାର୍ଚ୍ଚ ମାସରୁ ଆରମ୍ଭ କରି ୧୯୫୭ ଜୁନ୍ ମଝିଯାଏ ଶ୍ରୀ ଗୋପବନ୍ଧୁ ଚୌଧୁରୀ କୋରାପୁଟ ଜିଲ୍ଲାରେ ଭୂଦାନ କାର୍ଯ୍ୟ କଲେ, ତାପରେ ଚାଲି ଆସିଲେ। ତାହାପରେ ୧୯୫୭ ଜୁନ୍ ପର୍ଯ୍ୟନ୍ତ ଆଉ କୋରାପୁଟ ଜିଲ୍ଲାକୁ ଯାଇ ନାହାନ୍ତି। ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ପାଖକୁ ତା ପୂର୍ବରୁ ଚିଠିରେ ସେ ଲେଖିଥିଲେ ଯେ ଆଗ ସେଠିକା ଭୂଦାନ କର୍ମୀଙ୍କ କାର୍ଯ୍ୟକ୍ରମରେ 'ସମ୍ପତ୍ତିଦାନ' ସଂଗ୍ରହର ସୁବିଧା କରାଯିବ, ସେପରି ଭାବରେ ଯେଉଁ ଧନ ସଂଗୃହୀତ ହେବ ତାକୁ କାର୍ଯ୍ୟରେ ଲଗାଇବା ପାଇଁ ବ୍ୟବସ୍ଥା କରାଯିବ, ଅନ୍ତତଃ କେତେଟା ଅଞ୍ଚଳରେ ସମ୍ପତ୍ତିଦାନ ସଂଗୃହୀତ ଧନରେ କର୍ମୀ ରଖିବା ବ୍ୟବସ୍ଥା କରିବାକୁ ଉଦ୍ୟମ ହେବ, ତଦ୍ଦ୍ୱାରା ଭୂଦାନକର୍ମୀଙ୍କ ନିଃସହାୟତାଭାବ ଦୂରୀଭୂତ ହେବ ଓ ଆତ୍ମନିର୍ଭରଶୀଳତାର ଆଦର୍ଶ କାର୍ଯ୍ୟାନ୍ୱିତ କରିବା ସମ୍ଭବ ହେବ, ଯେ କାର୍ଯ୍ୟ ଆରମ୍ଭ ହେଲେ ସେ କୋରାପୁଟ ଯିବେ। ତାହା ହେଲ ନାହିଁ କି ସେଠିକି ସେ ଗଲେ ନାହିଁ। ସେ ଦେଖିଲେ ଯେ ସେଠି 'ନିର୍ମାଣ' କାମ ଲଗିବାରୁ ସେ ଯେଉଁଭଳି ଚାହୁଁଥିଲେ ତାହା ସେଭଳି ପରିଚାଳିତ ହେଲ ନାହିଁ, ଭୂଦାନ ସଂଗଠନ ସେଠି ଦୁର୍ବଳ ହେଉଛି, କର୍ମୀମାନେ ଭୂଦାନ କାମ ଛାଡ଼ି 'ନିର୍ମାଣ'ରେ ନିଯୁକ୍ତ ହେବାକୁ ଚାହୁଁଛନ୍ତି, ତାଙ୍କ ପାଇଁ ସେଠି କିଛି କାମ ନାହିଁ।

ତାପରେ ସେ କେନ୍ଦୁଝର ଜିଲ୍ଲାରେ ଭୂଦାନ କାର୍ଯ୍ୟକୁ ନିଘା ଦେଲେ। ସେଠି ଶ୍ରୀମତୀ ରମା ଦେବୀ ଗ୍ରାମଦାନ ସଂଗ୍ରହ କରୁଥାନ୍ତି ଓ ଶ୍ରୀ ଗୁଣନିଧି ମହାନ୍ତି, ଭଟ୍ଟବାବୁ ଆଦି ତାଙ୍କୁ ସାହାଯ୍ୟ କରୁଥାନ୍ତି। ୧୯୫୭ ଦ୍ୱିତୀୟାର୍ଦ୍ଧରେ ଗୋପବାବୁ ସେ ଜିଲ୍ଲାରେ ନାନାଆଡ଼େ ଗସ୍ତ କଲେ।

ସେହିବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ପିଏଚ୍.ଡି. ଡିଗ୍ରୀ ଦେବାକୁ ନିଷ୍ପତ୍ତି କଲେ ଓ ତାଙ୍କ ଅନୁମତି ମାଗିଲେ। ସେ ମନା କରିଦେଇ କହିଲେ,

"ଆଉ ଉପାଧି ଦରକାର ନାହିଁ । ପାଠ ମତେ ମୋ ସହକର୍ମୀଙ୍କଠାରୁ ଅଲଗା କରି ଦେଇଛୁ ।"

୧୯୫୬ରେ ସେ ସୁନ୍ଦରଗଡ଼ ଜିଲ୍ଲାରେ ମଧ୍ୟ ପଦଯାତ୍ରା କରି ସେଠି ଭୂଦାନ ସଂଗ୍ରହ, ଗ୍ରାମଦାନ ସଂଗ୍ରହ ଆଦି କାର୍ଯ୍ୟରେ ଲାଗିପଡ଼ିଲେ । ସେଠି ତାଙ୍କୁ ଜ୍ୱର ହେଲା, ୫।୭ ଦିନ ପର୍ଯ୍ୟନ୍ତ ବିଛଣାରେ ପଡ଼ି ରହିଲେ । ଭଲ ହେଲେ, ବର୍ଷା ଗଲେ, ପୁଣି ସେଠି ଜ୍ୱରରେ ପଡ଼ିଲେ, ଅନ୍ୟ ଔଷଧ ନ ଖାଇ ନିଜ ଚିକିତ୍ସା 'ପ୍ରାକୃତିକ ଚିକିତ୍ସା' କଲେ, ୫।୬ ଦିନ ପରେ ଭଲ ହେଲେ, କଟକ ଆସିଲେ ।

ସେହିବର୍ଷ ସେ '୧୯୫୭' ବୋଲି ନବାକ୍ଷରୀ ଛନ୍ଦରେ ଭୂଦାନ ଆନ୍ଦୋଳନ ବିଷୟରେ କବିତାଟିଏ ଲେଖିଲେ ।

୧୯୫୭ ମେ' ମାସରେ ତାଙ୍କୁ ୭୩ ବର୍ଷ ପୂରିଗଲା । ୧୯୫୨ରୁ ଅଧିକାଂଶ ସମୟ ପଦଯାତ୍ରା କରି କରି ବୁଲି ବୁଲି ବିତେଇଥାନ୍ତି, ଦେହରେ ଉଚ୍ଚ ରକ୍ତଚାପ ରୋଗ, ଜ୍ୱରରେ ପଡ଼ି ଶରୀର ଦୁର୍ବଳ, ତଥାପି ବିଶ୍ରାମ ନ ଥାଏ । ଦେହ ଭଲ ହେଲମାତ୍ରେ ପୁଣି ଗସ୍ତ । ବସ୍‌ରେ ଯିବେ, ଓହ୍ଲାଇ ପୁଣି ଗାଁ ଗହଳି ଭିତରକୁ ଚାଲି ଚାଲି ।

୧୯୫୭ ଜୁନ୍‌ରେ କୋରାପୁଟରୁ ଫେରିଲାପରେ କୋରାପୁଟରେ ଚାଲିଥିବା କାର୍ଯ୍ୟ ବିଷୟରେ ସେ କରି ଥିବା ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ସେ ଲେଖିଥିବା ନାନା ଚିଠିରୁ ସେ ବିଷୟରେ କିଛି ଧାରଣା ମିଳେ । କେତୋଟି ଚିଠିର ସାରାଂଶ ତଳେ ଦିଆହେଲା ।

କୋରାପୁଟରୁ ଫେରି ସେ ପୁରୀ ଯାଇଥିଲେ ।

(୧) ପୁରୀ, ୨୧-୭-୫୭—କୋରାପୁଟରେ ଭୂଦାନ ସଂଗଠନ ସୁଦୃଢ଼ ହେବା ପରିବର୍ତ୍ତେ ଦୁର୍ବଳ ହୋଇଯାଉଛି । କର୍ମୀମାନେ ସାମୂହିକ ଚେତନା ଘେନି କାମ କରୁ ନାହାନ୍ତି ।

(୨) ରାମଚନ୍ଦ୍ରପୁର (ବରୀ) ୧-୯-୫୭—ମତେ ଲେଖିଛ ଯେ କୋରାପୁଟରେ ପ୍ରତି ମାସରେ କିଛି ସମୟ ଦେବାକୁ । ପ୍ରଥମେ ତ ସେପ୍ରା ଭାବିଥିଲି, ମାତ୍ର ଦେଖିଲି, ମୋ ପାଇଁ କାମ ସେଠି କିଛି ନାହିଁ ।
ନିର୍ମାଣ କାମରେ ଆଣ୍ଣାସାହେବଙ୍କୁ ଜଣେଇ ଦେବାଡିକ ମୁଁ ସେ କାମରେ ସାହାଯ୍ୟ

କରୁଥିଲି । ମୁଁ ତ ଅନ୍ଧ ସେ କାମ କରିବ ନାହିଁ ? ସେ କାମ ପାଇଁ ଆପଣଙ୍କ ଶକ୍ତି ଯଥେଷ୍ଟ । ଭୂଦାନ କାମ ଅବଶ୍ୟ ଚାଲିବ—ଆପଣଙ୍କ ପରାମର୍ଶରେ ଚାଲିବ ।

ବର୍ତ୍ତମାନ କୋରାପୁଟରେ ବାବାଙ୍କ ଢଙ୍ଗରେ କାମର ହାଓ୍ୱା । ଏତେ ଝିଙ୍ଗାଉଛି ଯେ ସ୍ୱାବଲମ୍ବୀ ଉଦ୍ୟମ କିଛି ହେବ ନାହିଁ ଏବଂ ମୋର ତ ବାହିକ କେଜାଣି ଧାରଣା ଜନ୍ମିଛି ଯେ ସ୍ୱାବଲମ୍ବୀ ପଦ୍ଧତିରେ କର୍ମୀ ବାଛିବା ଉଦ୍ୟମ ନ ହେଲେ ଭୂଦାନ କାମର କିଛି ମହତ୍ତ୍ୱ ରହିବ ନାହିଁ । ତାପରେ ତେମେ ତ ଦେଖିନ୍ତି ଓ ଜାଣ, ଢଙ୍ଗାର ମୋହ ଆମର ପ୍ରାଦେଶିକ କାମକୁ ମଧ୍ୟ ଗ୍ରାସ କରିଛି ଓ କେମିତି ଟଳମଳାଇ କରି ଦେଉଛି । ବର୍ତ୍ତମାନ ସମ୍ମିଳନୀ ପରେ ଏ ନୂତନ ଉଦ୍ୟମ କେତେଦୂର ସଫଳ ହେଉଛି ଦେଖିବାର କଥା,—ସମୟ ଲାଗିଲେ ବଦଳିପାରେ ।

କୋରାପୁଟରେ ଭୂଦାନ କାମ ପାଇଁ ଭାବିବାର ବା କାମ କରିବାର ଲୋକ ତ କମ୍, ତେମେ ତ ସେଥିରେ ଅଗ୍ରଣୀ ଥିଲ, ମାତ୍ର ତେମେ ତ 'ନବଜୀବନ ମଣ୍ଡଳ'ରେ ବାନ୍ଧି ହୋଇ ସେ କାମରେ ବହୁତ ସମୟ ଦେଉଛ, ମୁଁ ଗତ ଦୁଇଥର କୋରାପୁଟରେ ଥିବା ବେଳେ ସ୍ପଷ୍ଟ ଦେଖିଲି । ବାଜି ତ' ସେ ପାଖରେ, ଘର ଛାଡ଼ିବ ନାହିଁ,

ସେଥିଯୋଗୁଁ ମଧ୍ୟ, କୋରାପୁଟରେ ସମସ୍ତ କଟାଇ କାମ କରି କରି କରିପାରିବେ ବୋଲି ମନରେ ଆଶଙ୍କା ହେଉଛି ।

ଏ ତ' ଗଲା ମୋ ମତ । ମା'ଙ୍କ କଥା ମା ଜାଣନ୍ତି, ମୋ ପାଇଁ ବୁଲୁବାବୁ ଓ ଶରତ୍ ବାବୁ ଗୋଟିଏ କରି ପ୍ରୋଗ୍ରାମ୍ କରିବାର ଭାର

ନେଇଛନ୍ତି । ଦେଖେ କେତେ ଦୂର କଣ ହେଉଛି ।”

ବର୍ଦ୍ଧା, ୨୧-୧୨-୫୭—“... ଆଣ୍ଣାସାହେବଙ୍କଠାରୁ ଏକ ଲମ୍ବା ଚିଠି ଆସିଛି । ମୁଁ ତାଙ୍କୁ ସବୁ ବିଷୟ ପତ୍ରରେ ଲେଖିଥିଲି, ସେ ଏକ ରିପୋର୍ଟ ଭଳି ଚିଠି ଦେଇଛନ୍ତି । ସେଥିରେ ଗୋଟିଏ ବିଷୟ ସେ ବଡ଼ ଦୁଃଖ କରି ଲେଖିଛନ୍ତି,

‘ଭୂଦାନ କର୍ମୀମାନେ କିଏ କେଉଁଠି କି କାମ କରୁଛନ୍ତି’ ସେ ‘ଜାଣି ପାରୁନାହାନ୍ତି ।’,—ଅଥଚ ତାଙ୍କର ହିଁ ଜାଣିବା ଉଚିତ । ମୁଁ ସେ ଅଂଶଟି ଶରତ୍‌ବାବୁ ଓ ବ୍ୟାନ୍‌ର୍ଜିଙ୍କୁ ପଠାଇ ଦେଇଛି । ସେମାନେ ଏହାର ପ୍ରତିକାର କରିବେ । ତୁମ ସେଠା ଭୂଦାନ ଅଫିସ୍‌ର ଏକ ଭୁଲ୍ ଧାରଣା ରହିଛି ଯେ ଆଣ୍ଣାସାହେବ ଏକ ପୋଷ୍ଟ ଅଫିସ୍ ବା ବ୍ୟାଙ୍କ, ମାତ୍ର ଭୂଦାନ କାମ ସଙ୍ଗେ ତାଙ୍କର ସମ୍ପର୍କ ନାହିଁ, ମାତ୍ର ଏଣେ ଏଣେ ଯାହା ଦେଖୁଛି ପ୍ରାଦେଶିକ ସ୍ତରରେ କୋରାପୁଟ କାମର ଚିନ୍ତା କେହି କରୁ ନାହାନ୍ତି । ମୋର ଧାରଣା— କୋରାପୁଟର କାମ ସ୍ୱତନ୍ତ୍ର ଆଣ୍ଣାସାହେବ ପ୍ରଭୃତିଙ୍କ ପରାମର୍ଶରେ ଚାଲିଥିବ । ପ୍ରକୃତରେ ମଧ୍ୟ ସେଇଆ ହିଁ ହେବା ଉଚିତ । କୋରାପୁଟର ତମାମ୍ କାମର ଏକ ଅଂଶ ଭଳି ଏକ ଡିପାର୍ଟମେଣ୍ଟ ଭଳି ଭୂଦାନ କାମ ରହିବ । ତାର ସେଠା ଭୂଦାନ ଅଫିସ୍ ପୂର୍ବପରି ଯଦି ଅବ୍ୟବସ୍ଥିତ ଭାବରେ ଥିବ ତେବେ ତାହା ତାଙ୍କର ପରାମର୍ଶରେ ସୁଧୁରି ନେବା ରହିବ ଏବଂ କେହି କେହି ଭୂଦାନ କର୍ମୀଙ୍କର ଯଦି ଆଣ୍ଣା ସାହେବଙ୍କ ନିର୍ମାଣ ମତକୁ ପସନ୍ଦ କରୁ ନ ଥିବେ ସେ କୋରାପୁଟର ଭୂଦାନ କାମରୁ ଅନ୍ତର ହୋଇଯିବା ଉଚିତ ହେବ ।”

ବାପ୍ପା (=ଶ୍ରୀ ବାପ୍ପା ସୁବ୍ରଜି, ଆଗରେ କୁକେଇ ଆଶ୍ରମରେ କର୍ମୀ ଥିଲେ) ଚିଠି ଦେଇଛି । ସେ ମଧ୍ୟ ଅମ୍ବାଦୋଲା ଛାଡ଼ି ଆସିବାକୁ ଚାହେଁ ନାହିଁ । ମୁଁ ତ ମୂଳରୁ ତାକୁ ମନା କରିଥିଲି ଅମ୍ବାଦୋଲା ଛାଡ଼ିବାକୁ । କଣ ନିବାରଣ କାମ କରିବା ପାଇଁ ଆଉ ଦୁଇଟି ଲୋକଙ୍କ ନାଁ ପଠାଇବ କି ? ଟିକିଏ ଭଲ କହିବା ବୋଲିବା ଲୋକ ଦରକାର ।

ତେମେ କୁଆଡ଼େ ବ୍ୟସ୍ତ, ମା କହୁଥିଲେ ଯେ ପାଠକୁ ସମସ୍ତେ ଖୋଜିଲେ ଅପାଠୁଆଙ୍କୁ ଖୋଜିଲେ ନାହିଁ, ତେମେ ବୈରାଗୀ ପାଲଟି ହିମାଳୟକୁ ଯିବ । ତେମ୍ନେ ତ ଟଙ୍କା ଦେଖି ନଜିଲ, ଏତେ ଏତେ ଲକ୍ଷ ଟଙ୍କା କୋରାପୁଟରେ ଖର୍ଚ୍ଚ ହେବ ତେମେତ ନାଚ ଉଠିଲ ।

ବୁଝିବା ଉଚିତ ଥିଲ ଯେ ଲକ୍ଷ୍ମୀଙ୍କ ସଙ୍ଗେ ସଙ୍ଗେ ସରସ୍ୱତୀଙ୍କୁ ଖୋଜା ପଡ଼ିବ ।

ମତେ ଓ ମା'ଙ୍କୁ ଯିବାକୁ ଲେଖିଛ । ଅମେ କାହିଁକି ଯିବୁଁ ?

ତମର ନବଜୀବନ ମଣ୍ଡଳ ତ ନୂଆ ଗାଁ ସଂଗ୍ରହର ବିରୋଧୀ । ତେଣେ ବିନୋବା କହୁଚ ଅଖିବୁଜି ଗାଁ ସଂଗ୍ରହ କରିଯାଅ, ପଛକୁ କିଏ ନିର୍ମାଣ କାମ କରିବ ସେକଥା ଚିନ୍ତା କର ନାହିଁ । ସେଠି ଯେ ନିର୍ମାଣ କାମ କରିବେ ତାଙ୍କର ଏହି ମତରେ (ଅର୍ଥ : ଆଣ୍ଣାସାହେବଙ୍କ ମତ ହେଲା—'ନିର୍ମାଣ', (ତା ମାନେ ଡେଭେଲପ୍‌ମେଣ୍ଟ) କାର୍ଯ୍ୟ ଆଗ ହେବ, ଭୂଦାନ କାର୍ଯ୍ୟ ବି ତା ସଙ୍ଗେ ସଙ୍ଗେ ହେଉଥିବ ଯେ, ବେଶି ନଘା ଦିଅଯିବ 'ନିର୍ମାଣ' କାର୍ଯ୍ୟକୁ । ଆମେ ବିନୋବାଙ୍କ କାମ (ଅର୍ଥ : 'ଭୂଦାନ ଯଜ୍ଞ' କାମ, ଭୂଦାନ, ଗ୍ରାମଦାନ, ସମ୍ପତ୍ତିଦାନ ପାଇଁ ପ୍ରଚାର, ସେସବୁ ସଂଗ୍ରହ, "ଭୂଦାନ ଦର୍ଶନ" ପ୍ରଚାର, ଇତ୍ୟାଦି ଇତ୍ୟାଦି) କରି ସେଠି କରିବୁ ଯେ ଯିବୁ ?

ତେମେ ତ 'ଭୂଦାନ' ଓ 'ନବଜୀବନ ମଣ୍ଡଳ' ଦୁଇ ଡଙ୍ଗାରେ ଗୋଡ଼ଦେଇ ଚଳେଇଛ—ତମର ଗୋଡ଼ ଫରକଟା, ସନ୍ଧି ଯାଉଛି, ('ଆଙ୍କା' ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଜଣେ ଡେଙ୍ଗା ଲୋକ, ପ୍ରାୟ ଛ'ଫୁଟ ଉଚ, ସେହିଆଡ଼କୁ ଉପଲକ୍ଷ ଦେଇ ଗୋପବାବୁ ତାଙ୍କର ସ୍ୱଭାବସୁଲଭ ଥଟ୍ଟା ଭଙ୍ଗୀରେ ଏ କଥା କହୁଛନ୍ତି, ପୁଣି ଏହା ଉହାଡ଼ରେ ଦେଖା ବି ଅଛି, ନୀତି ଉପଦେଶ ବି, 'ଚୁମ୍ବକ'ରେ ଅତି ଅଳ୍ପ ଶବ୍ଦରେ ବହୁତ କଥା କହିପାରିବା ତାଙ୍କ କଥାଭାଷା ଓ ଲେଖାର ବିଶେଷତ୍ୱ ଥିଲା—ଲେଖକ ।), ଆମେ ସଙ୍ଗେ ସଙ୍ଗେ ବୁଡ଼ି ମରିବୁଁ ।"

ଉତ୍କଳ 'ନବଜୀବନ ମଣ୍ଡଳ'ର ଉଦ୍ଦେଶ୍ୟ ଓ କାର୍ଯ୍ୟ ବିଷୟରେ ପୂର୍ବେ ଯାହା ବର୍ଣ୍ଣିତ ହୋଇଛି ଏଠାରେ ତାହା ସ୍ମରଣ କରାଯାଇପାରେ । କେତେବେଳେ କେଉଁ କର୍ମବୃନ୍ଦଙ୍କର, ଅଧ୍ୟୁଷିତ ଅଞ୍ଚଳମାନଙ୍କରେ କେଉଁ 'ସାହୁକାର'ଙ୍କର ଶୋଷଣ, ଜୁଲୁମ୍, ଅନ୍ୟାୟ, ଅତ୍ୟାଚାର ଅଗରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ (ଆଦିବାସୀ ଡାକନ୍ତି 'ଅଙ୍କା' ବୋଲି,) ୧୯୬୭ରୁ ୧୯୭୧ ଶେଷ ଯାଏ ଉତ୍କଳ ନବଜୀବନ ମଣ୍ଡଳର ସଭାପତି ହୋଇଥିଲେ ଓ ଶ୍ରୀ ଈଶ୍ୱରଲାଲ୍ ବ୍ୟାସ ତାର କୋଷାଧ୍ୟକ୍ଷ ଥିଲେ ।

"ପାଠକୁ ସମସ୍ତେ ଖୋଜିଲେ, ଅପାଠୁଆଙ୍କୁ ନାହିଁ" ଏ କଥାର ତାତ୍ପର୍ଯ୍ୟ—ଶ୍ରୀ ଅଣ୍ଣାଙ୍କ ତତ୍ତ୍ୱାବଧାନରେ ଯେଉଁ 'ନିର୍ମାଣ' କାର୍ଯ୍ୟ ଚାଲିଥିଲା, —ଯାହାର ଅର୍ଥ,

ସରକାରଙ୍କ ଦ୍ୱାରା କରାହେଉଥିବା ଡେଭେଲପ୍‌ମେଣ୍ଟ କାର୍ଯ୍ୟ ପରି କାମ । କଲେଜ-ପଢ଼ା ଯୁବକ, ଉଚ୍ଚ ଶିକ୍ଷିତ ଡିଗ୍ରୀଧାରୀ ଯୁବକ ନିଜେ ଚାହିଁଲେ ତହିଁରେ ବେତନଭୋଗୀ ହୋଇ ନିଯୁକ୍ତି ଖୋଜି ପାରୁଥିଲେ ଓ ବହୁ ହୋଇ ନିଯୁକ୍ତ ହେଉଥିଲେ । କିନ୍ତୁ ଓଡ଼ିଶାର 'ରଚନାତ୍ମକ କର୍ମୀମାନଙ୍କ ଭିତରୁ ଅଳ୍ପ କେତେଜଣଙ୍କୁ ଛାଡ଼ିଦେଲେ ଅନ୍ୟମାନେ କଲେଜ-ଆଲୋକ-ପ୍ରାପ୍ତ ନ ଥିଲେ, ସେମାନଙ୍କଠୁ ଲୋଡ଼ା ହେଉଥିଲା ମାନବପ୍ରୀତି, ଦରିଦ୍ର ସେବା, ଚରିତ୍ରବତ୍ତା ଓ ଅନ୍ୟାନ୍ୟ ନାନା ସଦ୍‌ଗୁଣ, ତାହା ସହିତ ତ୍ୟାଗ ତପସ୍ୟା, ନିଷ୍ଠା, ଅକ୍ଳାନ୍ତ କଠିନ ପରିଶ୍ରମ, ଇତ୍ୟାଦି । ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଯାହାଙ୍କୁ କୋରାପୁଟ ଜିଲ୍ଲାର 'ଗାନ୍ଧୀ' ବୋଲି ଲୋକେ କହୁଥିଲେ,—ଶିକ୍ଷାର ପ୍ରକୃତ ଅର୍ଥ ଅନୁସାରେ ସେ ଖୁବ୍ ଶିକ୍ଷିତ, କିନ୍ତୁ ସେ ହାଇସ୍କୁଲରୁ ସ୍କୁଲ୍ ଛାଡ଼ିଥିଲେ, କଲେଜରେ ପଢ଼ି ନ ଥିଲେ କି ତାଙ୍କର ଡିଗ୍ରୀ ନ ଥିଲା । ଗୋପବାବୁ ଲୋକ ବାଛୁଥିଲେ ଗୁଣ ଚିହ୍ନି, ଡିଗ୍ରୀ ଦେଖି ନୁହେଁ ।

ଗୋପବାବୁ ନିଜେ ହିଁ ଚାହିଁଥିଲେ, କୋରାପୁଟ ଭଳି ଅତିଶୟ ଅଭାବଗ୍ରସ୍ତ ଅଞ୍ଚଳରେ 'ନିର୍ମାଣ' କାର୍ଯ୍ୟ ହେଉ, କିନ୍ତୁ ବାହାରୁ ବହୁତ ଟଙ୍କା ଆସି ସେଠି ଉନ୍ନୟନ କାର୍ଯ୍ୟ ହେବ ସେ ଏ ଧାରଣାକୁ ପସନ୍ଦ କରୁ ନ ଥିଲେ । ସେ ଜାଣିଥିଲେ, ତହିଁରେ କ୍ଷତି ଘଟିବ, ଟଙ୍କା ଆସିଲେ ନାନା ନୂଆ ସମସ୍ୟା ଆସିଯିବ ।

ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓଡ଼ିଶା ସାରା ନବଜୀବନ ମଣ୍ଡଳର କାର୍ଯ୍ୟ ପରିଚାଳନା କରୁଥିଲେ ସୁଦ୍ଧା ଭୂଦାନ କାର୍ଯ୍ୟ ମଧ୍ୟ କରୁଥିଲେ, ସ୍ଥାନେ ସ୍ଥାନେ ନବଜୀବନ ମଣ୍ଡଳର କର୍ମୀମାନେ ମଧ୍ୟ ଅନ୍ୟାନ୍ୟ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଭୂଦାନ କାର୍ଯ୍ୟ ବି କରୁଥିଲେ, କିନ୍ତୁ ନିଜ ନିଜ କେନ୍ଦ୍ର ବନ୍ଦ କରି କେବଳ ଭୂଦାନରେ ଲାଗିବା କାମ ସେମାନେ କରୁ ନ ଥିଲେ ।

୧୯୫୭ ନଭେମ୍ବର, ବେଳଓ୍ୱାଡାରେ 'ସର୍ବସେବା ସଂଘ'ଙ୍କ ସଭା ହେଲା, ବିନୋବାଜୀ ଥିଲେ ଓ ଗୋପବାବୁ ମଧ୍ୟ ଯାଇଥିଲେ ।

ତାପରେ ପୁଣି ପାଲନୀରେ ସର୍ବସେବା ସଂଘର ସଭା ହେଲା. ଗୋପବାବୁ ଯାଇଥିଲେ, ବିନୋବାଜୀ ଥିଲେ । 'ନିଧିଚ୍ଛେଦ' ନୀତି ନିଆଗଲା । ତା ଅର୍ଥ—ଭୂଦାନ କର୍ମୀମାନେ 'ଗାନ୍ଧୀ ସ୍ମାରକନିଧି' ଆଦି ଅନୁଷ୍ଠାନଠୁ ବା ଅନ୍ୟ କାହାଠୁ ସାହାଯ୍ୟ ନେବେ ନାହିଁ, ସ୍ଥାନୀୟ ଲୋକଙ୍କଠୁ ସାହାଯ୍ୟ ନେଇ ଚଳିବେ । ଘରେ ଘରେ 'ସର୍ବୋଦୟ ପାତ୍ର' ବସାଇବେ, ଲୋକଙ୍କଠୁ 'ସମ୍ପତ୍ତି ଦାନ' ସାହାଯ୍ୟ ନେବେ, ଏହିପରି ସ୍ଥାନୀୟ ସାହାଯ୍ୟ ଉପରେ ନିର୍ଭର କରି ରହି ଚଳି ଭୂଦାନ କାମ କରିବେ । ଉଦ୍ଦେଶ୍ୟ ଥିଲା ଯେ ଯେଉଁମାନେ ଭୂଦାନ ବିଚାରକୁ ପ୍ରଚାର କରିବେ ସେମାନେ

ଏଭଳି ଉପାୟରେ ଚଳିଲେ, ସେମାନଙ୍କ ନିଜ ନିଜ ଆନ୍ତରିକତା, ତ୍ୟାଗ, ନିଷ୍ଠା ଓ ଆତ୍ମବଳ ସେମାନଙ୍କ ପରିମର୍ଶକୁ ଜୋର୍ ଦେବ, ସେମାନେ ବି ଅର୍ଥର ସାମାନ୍ୟତମ ମୋହଠୁ ଦୂରରେ ରହିବେ । ମାସିକ ବେତନ, କି ଭତ୍ତା, ଆଦି ନିର୍ଦ୍ଦିଷ୍ଟ ପାରିଶ୍ରମିକ ପାଇଲେ ତାଙ୍କ ମନକୁ ଅର୍ଥର ମୋହ ଗ୍ରାସ କରିବ, ତାହେଲେ ସେମାନେ ନିଜର ତ୍ୟାଗପୂତ ଆଦର୍ଶରେ ଅଟଳ ରହିପାରିବେ ନାହିଁ ।

ରାମଚନ୍ଦ୍ରପୁର (ବରି) ୭-୧-୫୭

ଗୋପବାବୁ ଖବର ପାଇଲେଣି ଯେ ଯେଉଁ କର୍ମୀମାନେ ନିର୍ମାଣ କାମରେ ଅଛନ୍ତି ସେମାନେ 'ନିଧିମୁକ୍ତି' ପ୍ରସ୍ତାବ ପରେ ସୁଦ୍ଧା ବେତନ ପାଉଛନ୍ତି ଓ ଗସ୍ତ ଖର୍ଚ୍ଚ ପାଉଛନ୍ତି, ସେମାନେ ଆଗପରି ନିର୍ମାଣ କାମ ହିଁ କରୁଛନ୍ତି, ଭୂଦାନ କାମରେ ଅଂଶ ନେଉ ନାହାନ୍ତି । ତାଙ୍କ ସଙ୍ଗର ଅନ୍ୟ ଯେଉଁ କର୍ମୀମାନେ ଭୂଦାନ ଗ୍ରାମଦାନ ଶ୍ରମଦାନ ସଂଗ୍ରହ ଆଦି କରୁଥିଲେ, 'ନିଧିମୁକ୍ତି' ପ୍ରସ୍ତାବ ପରେ ତାଙ୍କ ଭିତରୁ ବି କେହି କେହି ମନ କଲେଣି ଯେ ଆଉ ସେସବୁ କାମ କରିବେ ନାହିଁ, ନିର୍ମାଣ କାମ କଲେ ଦରମା ଓ ଗସ୍ତଖର୍ଚ୍ଚ ମିଳିବ, ସେହି କାମ କରିବେ ।

ସେହି ବିଷୟରେ ଆଣ୍ଣାସାହେବଙ୍କୁ କହିବାକୁ ପରାମର୍ଶ ଦେଇ ସେ ବିଶ୍ୱନାଥ ପଟ୍ଟନାୟକଙ୍କୁ ଲେଖିଛନ୍ତି :

"...ଯେ ପାରିଶ୍ରମିକ ପାଇଁ ଆସିଥିବେ, ତାଙ୍କ ମନ ଏ କାମରେ ଲାଗିବ ନାହିଁ, ତେଣୁ ନିଧିଚ୍ଛେଦ ହେଲା । ନିର୍ମାଣ କର୍ମୀମାନେ ମଧ୍ୟ ଅଡୁଆରେ ପଡ଼ିଲେ, ଥୋକେ ନିଧି ଛାଡ଼ିଲେ ଥୋକେ ହୁଏତ ନିଧି ଆଶ୍ରା କରିବାକୁ ପ୍ରବର୍ତ୍ତାଉଥିବେ ।...

ଆଣାଙ୍କୁ କହ, —ନିର୍ମାଣ କର୍ମୀଙ୍କ ମନ ଉପରସ୍ତରକୁ ନ ଗଲେ ଏବଂ ସେମାନେ ନିଧିମୁକ୍ତିକୁ ସମ୍ମାନ ଦୃଷ୍ଟିରେ ନ ଦେଖିଲେ ଭୂଦାନ ଆନ୍ଦୋଳନ ଆଗେଇବ ନାହିଁ ।"

୧୩-୨-୫୭

ଏ ଚିଠିର ସାରାଂଶ :—ଆଣ୍ଣାସାହେବ ଗୋପବାବୁଙ୍କ ପାଖକୁ ଆସିଥିଲେ, ମାର୍ଚ୍ଚ ୫ ଆଡ଼କୁ କୋରାପୁଟ ଆସନ୍ତୁ, ସେତେବେଳେ (ଭୂଦାନ ନେତା) ଧୀରେନ୍ଦ୍ର ମଜୁମଦାର ଓ ବଲ୍ଲଭସ୍ୱାମୀ ବି ଆସିବେ । ଗୋପବାବୁ ଆଣ୍ଣାଙ୍କୁ କହିଲେ "ବିଶ୍ୱନାଥ ଯଦି ସେତେବେଳେ ମତେ କିଛି କାମ ଦେବ ମୁଁ ସାରିଦେଇ ଆସିବି ।"

## ୧୯୫୭ ଫେବୃଆରୀରେ ଗୋପବାବୁଙ୍କ ଗସ୍ତ

ଫେବୃଆରୀରେ ସେ ପୁରୀରୁ ସାକ୍ଷୀଗୋପାଳ ଗଲେ, ଗୋଟିଏ ଶିବିର ହେଉଥିଲା, ଯୋଗଦେଲେ । ୨୦ ତାରିଖରେ ଅନ୍ୟ କେଉଁଠି ଗୋଟିଏ ଦାତା

ସମ୍ମିଳନୀ ହେଲ, ଗଲେ, ରମା ଦେବୀ ସେଠି ଭୂଦାନ ଗ୍ରାମଦାନ ଆଦି କାର୍ଯ୍ୟ କରୁଥାନ୍ତି ।

## ମେ' ୧୯୫୭ କଲଡ଼ିରେ ସର୍ବୋଦୟ ସମ୍ମିଳନୀ

୧୯୫୭ ମେ' ମାସରେ କେରଳର କଲଡ଼ିରେ ସର୍ବୋଦୟ ସମ୍ମିଳନୀ ହୋଇଥିଲ । କଲଡ଼ି ଶଙ୍କରାଚାର୍ଯ୍ୟଙ୍କ ଜନ୍ମପୀଠ । ଗୋପବାବୁ ଗଲେ, ଆଣ୍ଣାସାହେବ ସହସ୍ରବୁଦ୍ଧେ ବି ଥିଲେ । ବିନୋବାଜୀ ଉପସ୍ଥିତ ଥାଇ କୋରାପୁଟରେ ଗ୍ରାମଦାନ ସଂଗ୍ରହ ବିଷୟରେ ଆଲୋଚନା ପଡ଼ିଲ । ଆଣ୍ଣାସାହେବ ମତଦେଲେ ଯେ ଯେଉଁ ଗ୍ରାମସବୁ ଗ୍ରାମଦାନ ମିଳିସାରିଛି ନୂଆ ଗ୍ରାମଦାନ ପାଇଁ ଆନ୍ଦୋଳନ ସେହି ଗ୍ରାମମାନଙ୍କ ଆଖପାଖରେ ହିଁ ଚାଲୁ, ଅନ୍ୟତ୍ର ନୁହେଁ, ତାହେଲେ ନିର୍ମାଣ କାର୍ଯ୍ୟର ବି ସୁବିଧା ହେବ । ଗୋପବାବୁ ମତଦେଲେ ଯେ ସେପରି ନ ହୋଇ କୋରାପୁଟ ଜିଲ୍ଲା ତମାମ୍ ଗ୍ରାମଦାନ ସଂଗ୍ରହ ପାଇଁ ଆନ୍ଦୋଳନ ଚାଲୁ, ଯେଉଁଠି ଗ୍ରାମଦାନ ମିଳିବ ମିଳୁ, କିନ୍ତୁ ଆନ୍ଦୋଳନ ଦ୍ୱାରା ଜିଲ୍ଲାର ଚାରିଆଡ଼େ ଭୂଦାନ ଆନ୍ଦୋଳନର ବାତାବରଣ ରହିବ । ବିନୋବା ଗୋପବାବୁଙ୍କୁ ସମର୍ଥନ କଲେ । କଲଡ଼ି ସମ୍ମିଳନୀରୁ ଫେରି ୭-୬-୫୭ର ଚିଠିରେ ସେହିକଥା ସେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ଜଣାଇ ଦେଇଛନ୍ତି ଓ ନୂଆ ଗ୍ରାମଦାନ ସଂଗ୍ରହ ଉପରେ ବିନୋବା କିପରି ଗୁରୁତ୍ୱ ଦେଇଛନ୍ତି ତାହା ବୁଝାଇ ଲେଖିଛନ୍ତି ।

୭-୬-୫୭—"...ତୁମର ପଦଯାତ୍ରା ସଂକଳ୍ପ ଶୁଣି ବିଶେଷ ଆନନ୍ଦିତ ହେଲି ।" ୧୭ ଶେଷଯାଏ ଅଖଣ୍ଡ ପଦଯାତ୍ରା ଚାଲିଥ । ...(ଆଣ୍ଣାସାହେବଙ୍କ ମତ ଉଦ୍ଧୃତ କରି)..."ଯେ ଯେଉଁସବୁ ଗ୍ରାମଦାନ ହୋଇଯାଇଛି ତାର ଆଖପାଖରେ କରନ୍ତୁ" ...କିନ୍ତୁ ସେଦିନ ତ ବିନୋବା ଆଣ୍ଣାଙ୍କ ଯୁକ୍ତିକୁ ଖଣ୍ଡନ କଲେ ।... ବିନୋବା କହନ୍ତି ସବୁଆଡ଼େ ଗ୍ରାମଦାନର ହାୱା ଜୋର୍ ହେଉ, ବାକି ମଜ୍ଜିଥିବା ଗାଁମାନ ତେଣେରେ ହୋଇ ପାରନ୍ତି—ନୂଆ ଅଞ୍ଚଳରେ ଶୀଘ୍ର ହେବ—ଯେକୌଣସି ବାଧାଯୋଗୁ ଅଟକି ଯାଇଛି ସେ ବାଧା ତେଣେରେ ଦୂର ହେବ—ତେଣୁ ତା ଯୋଗୁ ଅନ୍ୟଆଡ଼ କାମ କାହିଁକି ବନ୍ଦ ହେବ ? ନିର୍ମାଣ କାର୍ଯ୍ୟର ସୁବିଧାକୁ ଅନାଇଁ ଆମ କାମ ହେବ ନାହିଁ । ନିର୍ମାଣ କାମ ଏକ ସ୍ୱତନ୍ତ୍ର ପର୍ଯ୍ୟାୟ, ସେଥିପାଇଁ ଅନ୍ୟ ପ୍ରକାର ଉଦ୍ୟମ ଚାଲିଛି ଓ ଚାଲିବ ।..."

## ଜୁନ୍ ୧୧-୨୪, ୧୯୫୭, ଶେଷଥର କୋରାପୁଟ ଯାତ୍ରା

ଚାରିଦିନ ପରେ ଗୋପବାବୁ କୋରାପୁଟ ପହଞ୍ଚିଲେ, ଜୁନ୍ ୧୧ରୁ ୨୪ ଯାଏ ଜିଲ୍ଲାର ଚାରିଆଡ଼େ ଗସ୍ତ କରି ଗ୍ରାମଦାନ ସଂଗ୍ରହ, ସମ୍ପତ୍ତିଦାନ ସଂଗ୍ରହ ଆଦି କାର୍ଯ୍ୟରେ

ନୂଆ ଉତ୍ସାହ ଖେଳାଇ ଦେଲେ । ଫେରି ଆସିଲେ । କୋରାପୁଟ ଜିଲ୍ଲାକୁ ସିଏ ତାଙ୍କ ଜୀବନରେ ସେଇ ଶେଷ ଥର ।

"...ପଦଯାତ୍ରା ଆରମ୍ଭ କରିପାରି ନାହିଁ, ଜାଣି ଦୁଃଖିତ । ବିନୋବାଜୀଙ୍କର ଖଣ୍ଡେ ଚିଠି ନ'ଲ ଆସିଛି । ସେଥିରେ ସେ ଲେଖିଛନ୍ତି 'ତାଙ୍କ ପଦଯାତ୍ରା ଭିତରୁ ୮୯ ଜଣ ଜରରେ ପଡ଼ିଗଲେ, ତଥାପି ତାଙ୍କର ଏକୁଟିଆ ପଦଯାତ୍ରା ନିରବଚ୍ଛିନ୍ନ ଚାଲିଛି, ଏଥିରେ ଭଗବାନଙ୍କ ହାତ ସେ ଦେଖୁଛନ୍ତି, ଶୂନ୍ୟ ହୋଇ ପାରିଲେ ପ୍ରଭୁ ନିଶ୍ଚୟ ସହାୟ ହୁଅନ୍ତି, ଏବଂ ଶୂନ୍ୟ ହେଲେ ହିଁ ସାତତ୍ୟ ଯୋଗ ଠିକ୍ ବଜାୟ ରହେ ।'

ଅନ୍ୟମାନେ ବାଟରେ ଅନେକେ ରହିସିବେ, କିନ୍ତୁ ମହାଯାତ୍ରୀ ପୃଥିବୀର ପଛକୁ ନ ଅନେଇ ଏକା ଚଳେଇଥିଲେ । କବି ପରି ଗାଇଛନ୍ତି, "ଏକେଲା ଚଲୋ ରେ—" ।

(—) ପ୍ରଭୃତଙ୍କ ମନ ସେପରି ଦୁର୍ବଳ ହେବ ତାହା ଆଗରୁ ଜଣାଥିଲା, ତାହା ସ୍ୱାଭାବିକ, ନିର୍ଧମୁକ୍ତି ଓ ଭୂଦାନ କାମର ମହତ୍ତ୍ୱ ତାଙ୍କ ଭଳି ଲୋକଙ୍କ ଆଗରେ ବଜାୟ ରଖିବା ପାଇଁ କେତେଜଣ ବା ଜଣେ ଜୋର୍‌ରେ ଅଣ୍ଟୁଅ ଜଳେଇଥିବା ଦରକାର । ତେଣୁ ତମର ପଦଯାତ୍ରା ଓ ନିରବଚ୍ଛିନ୍ନ ଭାବରେ ଗ୍ରାମଦାନ ସଂଗ୍ରହ ପାଇଁ ସଂକଳ୍ପ ଶୁଣି ମୋର ଖୁବ ଆନନ୍ଦ ହୋଇଥିଲା ।

କର୍ମୀଙ୍କର, ଓ ବିଶେଷ କରି ଅନ୍ୟ କର୍ମୀଙ୍କର, ଯେ (ସେ) ଜିଲ୍ଲାର ନୁହନ୍ତି, —ତାଙ୍କର ମତଗତ ଠିକ ରଖିବା କଷ୍ଟକର ହେବ, ଏ ଆଶଙ୍କା ନିର୍ମାଣକାର୍ଯ୍ୟ ଆରମ୍ଭରୁ ମୋର ରହିଛି । ସର୍ବସେବା ସଂଘ ଏ ନିର୍ମାଣ କାର୍ଯ୍ୟ କୋରାପୁଟ ଜିଲ୍ଲାରେ କରୁ, ଏକଥା ମନେ କାହିଁକି ସେତେବେଳେ ରୁଚୁ ନ ଥିଲା ମୁଁ ଏବେ ବୁଝି ପାରୁଛି । ଆଜି ନିର୍ମାଣ କାର୍ଯ୍ୟ ମାନ୍ଦ୍ରାଜ ଭଳି ଯଦି ସରକାର କରୁଥାନ୍ତେ, ତେବେ ଏ କାମର ଖରାପ ପ୍ରଭାବ କର୍ମୀଙ୍କ ଉପରେ ପଡ଼ନ୍ତା ନାହିଁ । ଆମେ ଯେତେ କଷ୍ଟରେ କେତେକଙ୍କୁ ତାଙ୍କର ଗଠନମୂଳକ-କେନ୍ଦ୍ର-ରୂପୀ ଗାତରୁ ଟାଣି ବାହାର କରିଥିଲୁ, ସେ ତ ଏବେ ପୁଣି ନିର୍ମାଣ କେନ୍ଦ୍ର ଭଳି ଏକ ଗାତ ଆଶ୍ରୟ କଲେଣି । ସେତିକି ନୁହେଁ, ସେ ଭୂଦାନର ମହତ୍ତ୍ୱ ପାଶୋରି ମଧ୍ୟ ଯାଉଛନ୍ତି ।" ତାପରେ ସେ ଲେଖିଛନ୍ତି :

"ଏସବୁ ଦେଖି ମୋର ମନେ ହେଉଛି, ତମକୁ ନିବେଦକ ସ୍ୱରୂପ (ବିଶ୍ୱନାଥ ପଟ୍ଟନାୟକ କୋରାପୁଟ ଭୂଦାନ ସଂସ୍ଥାରେ 'ନିବେଦକ' ଦାୟିତ୍ୱରେ ଥିଲେ) ଏବଂ କୋରାପୁଟର ଅଗ୍ରଦୂତ ସ୍ୱରୂପ 'ଗ୍ରାମଦାନ' କାମରେ ଖୁବ୍ ଲଗି ପଡ଼ିବାକୁ ହେବ । ନିର୍ମାଣ କାମରୁ ତମର ମନକୁ ଏକ୍‌ଦମ୍ ଅଲଗା କରିବାର ଦେଖିଲେ ତାର ପ୍ରଭାବ

ପଡ଼ିବ । ଆମେ 'ନିର୍ମାଣ କାମ ଭଲ କାମ ଏବଂ ଭୂଦାନ ପରେ ଏକମାତ୍ର କାମ' ଏକଥା ଜାଣିଥିଲେ ସୁଦ୍ଧା ଏବଂ ତାହା କହୁଥିଲେ ସୁଦ୍ଧା, ଲୋକ ସଂଗ୍ରହ ପାଇଁ ଏବେ ସହକର୍ମୀଙ୍କ ମନରେ ବୁଦ୍ଧିଭେଦର ସୃଷ୍ଟିର ଅବକାଶ ନ ଦେବା ପାଇଁ ନିର୍ମାଣ କାମର କୌଣସି ଦାୟିତ୍ୱ ନେଇନାହୁଁ, ବେଳେ ବେଳେ ପରାମର୍ଶ ଦେଇଥାଉ ସତ୍ୟ ସମିତିରେ, ମାତ୍ର ଜମର ନବଜୀବନ ମଣ୍ଡଳର ସଭାପତିତ୍ୱ କରିବା ଓ ସେଠା ନିର୍ମାଣ କେନ୍ଦ୍ରମାନଙ୍କର ଭଲ ମନ୍ଦ ବୁଝିବା ଦାୟିତ୍ୱ ମୁଣ୍ଡାଇବା ଫଳରେ ସହକର୍ମୀଙ୍କ ଆଖି ଝାପ୍ସା ହେଉଛି, ବୁଦ୍ଧିଭେଦର ଅବକାଶ ଘଟୁଛି ।

ଅନ୍ୟ ଜିଲ୍ଲାର କର୍ମୀଙ୍କୁ ବୁଝାଇବା କଠିନ ହେବ, ଯେତେବେଳେ ସେ ଦେଖୁଛନ୍ତି, ସବୁ ସ୍ଥାନୀୟ କର୍ମୀଙ୍କୁ ତେମେ ଗ୍ରାମଦାନ କାମରେ ଟାଣି ନ ରଖି ବରଂ ନିର୍ମାଣ କାର୍ଯ୍ୟରେ ପଶିବାକୁ ପ୍ରୋତ୍ସାହିତ କରୁଛ । ସମାନ ଦୃଷ୍ଟିରେ ସମସ୍ତଙ୍କ କାମ ପାଇଁ ଦେଖିବା ଏବଂ ଜିଲ୍ଲା ପ୍ରତି ଅଯଥା ଆସକ୍ତ (ନ) ହେବା—ମୋଟରେ ବିନୋବା ଯାହା ମୂଳରୁ କହୁଛନ୍ତି 'ନିଷ୍କାମ' ଭାବରେ କରିବା, ସେ କଥା ନ ହେଲେ ସହକର୍ମୀଙ୍କୁ କେମିତି ପ୍ରେରିତ କରିବ ? ତେଣୁ ମୋର ମନେହୁଏ ଅଖଣ୍ଡ ପଦଯାତ୍ରା ଏବଂ ହଠାତ୍ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ନିର୍ମାଣ କାମର ସବୁ ଦାୟିତ୍ୱରୁ ମୁକ୍ତ ହେବା ଛଡ଼ା ଅନ୍ୟ ବାଟ ନାହିଁ ।

ବିନୋବା ତ ଗତ 'ଭୂଦାନ ଯଜ୍ଞ' (ପତ୍ରିକା)ରେ ଚାରିଆଡ଼େ ଗ୍ରାମଦାନ ସଂଗ୍ରହ କରିବା କଥା ଜୋର୍ ଦେଇ କହୁଛନ୍ତି ଏବଂ ନିର୍ମାଣ କାମରୁ ବା ଅନ୍ୟ ପ୍ରକାରେ 'କିଛି ମିଳିବ' ଏ ଆଶାରେ ଗ୍ରାମଦାନ କରିବାଙ୍କୁ ସେ 'ନକଲି ଗ୍ରାମଦାନ' କହୁଛନ୍ତି ଏବଂ ତାହା ଗ୍ରହଣ କରିବା ଉଚିତ ନୁହେଁ ବୋଲି କହୁଛନ୍ତି । ତେଣୁ ସେଠି ଯେ ଯୁକ୍ତି ଚାଲିଛି ଯେ "ନିର୍ମାଣ କେନ୍ଦ୍ର ଚାରିପାଖ ଗାଁମାନଙ୍କରେ କେବଳ ଗ୍ରାମଦାନ ପ୍ରଚାର ଓ ଗ୍ରାମଦାନ ପୂରା ହେବା ଚାହି", ଏ ଯୁକ୍ତି ନିରାଧାର ଓ ଭ୍ରମାଦଜନକ ।

ତେମେ ଖୁବ୍ ଜୋର୍‌ରେ ଲାଗିଲେ ଏବଂ ନିର୍ମାଣ କାମର ଆଧାର ଛାଡ଼ି ଗ୍ରାମଦାନର ମୂଳତତ୍ତ୍ୱ ଉପରେ ନିର୍ଭର କଲେ କୋରାପୁଟର ଇଜ୍ଜତ୍ ରକ୍ଷା ହେବ, ଓଡ଼ିଆର ଲବ୍‌ଧ ଗୌରବ ମଳିନ ହେବ ନାହିଁ ।"

## ବମ୍ବେ ଗସ୍ତ

ତାପରେ ସେ ବମ୍ବେ ଗଲେ ।

କଟକ, ୧୦-୬-୫୭—ବିଶ୍ୱନାଥ ପଟ୍ଟନାୟକଙ୍କୁ ବହୁତ ଉତ୍ସାହ ଦେଇଥିଲେ । ଆହୁରି ଲେଖିଲେ :

"ଯାହା କରୁଚ ଗମ୍ଭୀର ବିଚାର କରି କର ଓ ଅନାସକ୍ତ ଭାବରେ କର । ମନେରଖ, ଆମେ ଭଗବାନ ନୋହୁଁ ଯେ ଲୋକଙ୍କ ସବୁ ଦୁଃଖ ପୂରଣ କରିବା ।"

ଗସ୍ତ, ଜାନୁଆରୀ '୧୯୫୮

ବିନୋବାଜୀ ଦକ୍ଷିଣରେ ପଦଯାତ୍ରା କରୁଥାନ୍ତି, ୧୯୫୮ ଶେଷଆଡ଼କୁ ଗୋପବାବୁ ପୁରୀ-ମାଡ୍ରାଜ ଏକ୍ସପ୍ରେସରେ ଗଲେ, ତାଙ୍କ ସଙ୍ଗେ ଦେଖା କରିବେ ବୋଲି । ଜଗନ୍ନାଥପୁରଠାରେ ଆରପଟୁ ଆସୁଥିବା ଜନତା ଏକ୍ସପ୍ରେସ୍ ସଙ୍ଗେ ଗୋପବାବୁଙ୍କ ଗାଡ଼ିର ଧକ୍କା ଲାଗିଲା, କିନ୍ତୁ ତାଙ୍କର କିଛି ହୋଇନାହିଁ । ଜନତା ଏକ୍ସପ୍ରେସରେ ମାଳତୀ ଦେବୀ ଓ ହରେମୋହନ ପଟ୍ଟନାୟକ ଆସୁଥିଲେ ।

ବିନୋବାଙ୍କୁ ଭେଟିଲେ, ଓଡ଼ିଶାରେ ଗ୍ରାମଦାନ ଆଦି କଥା ଆଲୋଚନା ହେଲା । ଫେରିଆସି ଫେବ୍ରୁଆରୀ ପହିଲାରେ ବିଶ୍ୱନାଥ ପଟ୍ଟନାଏକଙ୍କୁ ଚିଠି ଦେଲେ ଓ ଟେଲିଗ୍ରାମ୍ କଲେ ଯେ ସେ ଆସି ଦେଖା କରନ୍ତୁ ।

ଚିଠି, ୨-୨-୫୮

"ବିନୋବାଙ୍କ ମନରେ ଭାରି ଆଶା ଥିଲା, ଗ୍ରାମଦାନ ଖୁବ ବଢ଼ିଯିବ । ତାହା ଯେ ହେଲା ନାହିଁ ସେଥିପାଇଁ ତାଙ୍କ ମନରେ ଦୁଃଖ ଥିଲା ପରି ଜଣାପଡ଼ିଲା ।

ମତେତ ସବୁ ପଚାରିଲେ, ମୋଠାରୁ ଘଟଣା ସାଫ୍ ସାଫ୍ ଶୁଣିଲେ—ଆମେ କାହିଁକି କୋରାପୁଟ ଛାଡ଼ିଲୁ । ସେଠାରେ ରହିଥିଲେ ଗ୍ରାମଦାନ କାମରେ ହିଁ ଲାଗିଥାନ୍ତୁ, ମାତ୍ର ଆଣ୍ଣାସାହେବ ଓ ତୁମେମାନେ ନିର୍ମାଣ କାମକୁ ମନ ବଢ଼ାଇଥିଲ, ତେଣୁ ପଳାଇ ଆସିଲୁ ।

ବିନୋବାଜୀଙ୍କ ସ୍ପଷ୍ଟ ମତ ଯେ ଭୂଦାନ, ଗ୍ରାମଦାନ, ଶାନ୍ତିସେନା, ଏସବୁ ଆକାରରେ ନୈତିକ କାମ ନ ଚାଲିଲେ ନିର୍ମାଣ କାମ ବୃଥା ହେବ । ମୁଁ ମଧ୍ୟ କହିଲି,—ଆଣ୍ଣାସାହେବଙ୍କ ମତ ହୁଏତ ବର୍ତ୍ତମାନ ବଦଳିଛି, ସେ ନୈତିକ କାମ ବର୍ତ୍ତମାନ ଚାହିଁଲେଣି, ଏବଂ ମୁଁ ବି କହିଲି ଯେ ବିଶ୍ୱନାଥର ମତ ନ ବୁଝିଲେ କୋରାପୁଟ କଥା ମୁଁ କହି ପାରିବି ନାହିଁ । ଗ୍ରାମଦାନ କରେଇବ ତ ବିଶ୍ୱନାଥ କରିପାରିବେ । ମୁଁ କହିଛି, ବିଶ୍ୱନାଥ ଗ୍ରାମଦାନରେ ପୁରାପୁରି ଲାଗିଲେ, ଆପ୍ପା ସାହେବଙ୍କ କାମର ପୁରାପୁରି ବିରୋଧ ହେଲେମଧ୍ୟ ମୁଁ ସେଥିରେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛି । ସେ ଚାହାନ୍ତି ଆସନ୍ତା ସମ୍ମିଳନୀ ବେଳକୁ ଅର୍ଥାତ୍ ' ମାସ ମଧ୍ୟରେ, ଭଲ ରକମ ହଜାରେ ଖଣ୍ଡେ ଗ୍ରାମଦାନ ହେଲେ ଭାରି ଚମତ୍କାର ହୁଅନ୍ତା । ସେ କହିଛନ୍ତି ତମକୁ ପଚାରି ବୁଝିବାକୁ । ··· କେମିତି ଦେଖା ହେବ ? କେଉଁଠି ଦେଖା ହେବ ? ମୁଁ ତ (କୋରାପୁଟ ଜିଲ୍ଲା)

ଜୟପୁର ଶିବିରକୁ ଯାଉନାହିଁ । କାରଣ ମୁଁ ୧' ତାରିଖ ପରେ ପରେ ଟିକିଏ ଦୁଇମାସ ବା ଦେଢ଼ମାସ ପଦଯାତ୍ରା କରିଦେବାକୁ ବିଚାରିଛୁ । ବିନୋବାଙ୍କୁ ମୁଁ ମୋର କି କାମ ହେବ ପଚାରିବାରୁ କହିଲେ, 'ପରିଭ୍ରମଣ' । ..."

୧୭-୨-୫୮ର ଚିଠି

କୋରାପୁଟରେ କର୍ମୀମାନଙ୍କ ସଂଖ୍ୟା ଭିତରେ ଓ ଗ୍ରାମଦାନ ଗାଁରେ ଅଡୁଆ ଦେଖା ଦେଇଥାଏ । ସେ ବିଷୟରେ ଫେବୃଆରୀ ୧୭, ୧୯୫୮ରେ କଟକରୁ ସେ ପୁଣି ବିଶ୍ୱନାଥ ପଟ୍ଟନାୟକଙ୍କୁ ଚିଠିଟିଏ ଲେଖିଥିଲେ, ସହିତ ଆବଶ୍ୟକ ବୋଲି ଉପାଖ୍ୟାନଟିଏ କହି ବୁଝାଇଥିଲେ ଓ ଲେଖିଥିଲେ :

"ତମର ଚିଠିରେ ମତଭେଦକୁ ନେଇ ମନ କଷାକଷିରେ ପହଞ୍ଚିବାରୁ ଶିଥିଳତା ବଢ଼ିଛି ଓ ପ୍ରତିକ୍ରିୟା ମୁଣ୍ଡ ଟେକିଛି ।

ଗ୍ରାମଦାନ ପରେ ପରେ ଗ୍ରାମଦାନ ଗାଁର ଦୁର୍ବଳମନାଙ୍କର ଓ ଗ୍ରାମଦାନ ପାଖ ଗାଁରେ ବିରୋଧୀମାନଙ୍କୁ ଆମର ଲଗିପଡ଼ି ତାଣ କରି ଲଗିପଡ଼ିବା ଓ ବୁଝାଇବା ଉଚିତ ଥିଲା, ସେତିକି ହୋଇପାରିଲା ନାହିଁ । ଆମେ ନିର୍ମାଣ କାମରେ ବା ଯେଉଁମାନେ ଆମର ସହମତ ତାଙ୍କର ପଛରେ ଲଗିଲୁଁ —ସେମାନେ ମୁଣ୍ଡ ଟେକୁଛନ୍ତି । ଆମର 'ସାତ୍ୟତା' ଯୋଗ ଅଭାବରୁ ଏ ଦୁର୍ଦ୍ଦଶା । ତାପରେ, ଯେଉଁ 'ନୂତନ ଜୀବନ ମୂଲ୍ୟ' ସବୁ ଉଠାଇ ଗ୍ରାମଦାନର ପ୍ରଚାର କଲୁଁ ସେସବୁ 'ନୂତନ ମୂଲ୍ୟ' ନିର୍ମାଣ କାମରେ ଜୀଇଁ ରହିଲେ ନାହିଁ—ନିର୍ମାଣ କାମରେ 'ପୁରୁଣା ମୂଲ୍ୟ' ଟଙ୍କାର ପ୍ରାଧାନ୍ୟ ରହିଲା, ଫଳରେ ଗ୍ରାମଦାନର ଭାବନା କମ୍‌ଜୋର ହେଲା ।

ଯାହାହେଉ, ଇଂରେଜୀରେ ପ୍ରବାଦ ଅଛି ଯେ "ସଂଶୋଧନ କରିବାକୁ ବେଳ କେବେ ଗଡ଼ିଯାଇ ନ ଥାଏ ।" ଏବେ ମଧ୍ୟ ଲଗିପଡ଼ିଲେ କଠୋର ପ୍ରତିକୂଳ ପରିସ୍ଥିତିର ପ୍ରତିକାର ହେବ । ସେଥିପାଇଁ ମଧ୍ୟ ବେଶି ଲୋକ ପ୍ରଥମରେ ସାଙ୍ଗକୁ ଆସିବା ଦରକାର ନାହିଁ, ତେମେ ଆଗ ବାହାରିଲେ, ଅନନ୍ୟମନା ହୋଇ ଲଗିପଡ଼ିଲେ, ସାଙ୍ଗକୁ ବହୁତ ଆସିସିବେ ଏବଂ ଶୀଘ୍ର ଜଟିଳତା ଉଭେଇ ଯିବ ।

**ଶ୍ରୀ ବିଶ୍ୱନାଥ 'ଆଜ୍ଞା'ଙ୍କୁ ୧୭-୨-୫୮ରେ—ଗୋପବାବୁଙ୍କ ଚିଠି**

ଚିଠିର ସାରାଂଶ

(୧) କୋରାପୁଟର ଭୂଦାନ କର୍ମୀଙ୍କ ଭିତରେ ମତଭେଦ ହେଲା, ତା ଫଳରେ ମନାନ୍ତର ହେଲା, ତା ଫଳରେ କର୍ମୀ ଆଉ କାମକୁ ଦୃଷ୍ଟି ଦେଲେ ନାହିଁ ।

(୨) ଗ୍ରାମଦାନ ଗାଁର ଲୋକେ ଭୂଦାନ କର୍ମୀଙ୍କଠାରୁ ନିଘା ପାଇଲେ ନାହିଁ । ଗ୍ରାମଦାନ ଗାଁମାନଙ୍କରେ କାହାର କାହାର ମନରେ ଭୂଦାନ ଧାରଣା ପ୍ରତି ଦୃଢ଼ ବିଶ୍ୱାସ ବୋଧହୁଏ ନ ଥିଲା, ମନ ଦୁର୍ବଳ ଥିଲା । ତାଙ୍କ ପାଖ ଗାଁମାନଙ୍କରେ କେତେ ଲୋକ ଭୂଦାନ କାମକୁ ବିରୋଧ କରୁଥିଲେ । ଯେତେବେଳେ ସେଠିକି ଆଉ ଭୂଦାନ କର୍ମୀ ଅନାଇଲେ ନାହିଁ ସେତେବେଳେ ଯେଉଁ ଲୋକମାନଙ୍କର ମନ ଭୂଦାନ ପ୍ରତି ସନ୍ଦିଗ୍ଧ ଓ ଦୋଦୁଲ୍ୟମାନ ଅବସ୍ଥାରେ ରହିଥିଲା ସେଭଳି ଲୋକଙ୍କୁ ଭୂଦାନ ବିଷୟରେ ଭଲ କରି ବୁଝାଇ ଭୂଦାନ ପ୍ରତି ସେମାନଙ୍କ ମନକୁ ସର୍ବତୋଭାବେ ଅନୁରକ୍ତ ସଶ୍ରଦ୍ଧାବାନ, ସ୍ଥିର ଓ ଦୃଢ଼ କରିପାରିଲେ ନାହିଁ । ସେସବୁ ଲୋକେ ଗ୍ରାମଦାନ ଗାଁରେ ଥାଇ ସୁଦ୍ଧା ଭୂଦାନର ବିରୋଧୀ ହୋଇଗଲେଣି ।

(୩) ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ନିର୍ଦ୍ଦେଶ ଯେ ମାର୍ଚ୍ଚ ୭ ତାରିଖରେ ବାଲେଶ୍ୱର ଜିଲ୍ଲାର ଦୁପ୍‌ସାରେ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ ଭେଟନ୍ତୁ ।

ଚିଠିର (୩) ଅନୁସାରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ 'ଅଙ୍କା' ଦୁପ୍‌ସାରେ ପହଞ୍ଚି ପାରିଲେ ନାହିଁ, ୨୪-୪-୫୮ରେ କଟକରେ ଦେଖା କଲେ, ଗୋପବାବୁ ତାଙ୍କୁ ନାନା ପରାମର୍ଶ ଦେଲେ । 'ଅଙ୍କା' ସେଠୁ ଅନୁଗୁଳ ଗଲେ, ଅନୁଗୁଳରେ ନବଜୀବନ ମଣ୍ଡଳର କେନ୍ଦ୍ର କାର୍ଯ୍ୟାଳୟ । ସେ ସେଠୁ ୨୪ ଅପ୍ରେଲରେ ଫେରି କଟକରେ ଥୋରିଆ ସାହି ଘରେ ଗୋପବାବୁଙ୍କୁ ଦେଖାକଲେ । ସେତେବେଳେ ସନ୍ଧ୍ୟା ୯ଟା । ଯାହା ଯାହା ପରାମର୍ଶ ଦେଇଥିଲେ ତହିଁରେ ଥିଲା ନିମ୍ନୋକ୍ତ କାର୍ଯ୍ୟମାନଙ୍କ ଉପରେ ଗୁରୁତ୍ୱ :—(୧) ନିଶା ନିବାରଣ, (୨) ଆଦିବାସୀଙ୍କ ଭୟ ଛଡ଼ାଇବା, (୩) ଘରେ ଘରେ 'ସର୍ବୋଦୟ ପାତ୍ର' ବସାଇବା, (୪) 'ନିଧିମୁକ୍ତ' ସ୍ୱାବଲମ୍ବୀ କାର୍ଯ୍ୟ ହେବା, (୫) କର୍ମୀମାନେ ଲୋକଙ୍କଠାରୁ ସହଯୋଗ ନଅନ୍ତୁ, ତାଙ୍କ ସଙ୍ଗେ ମିଶି କାମ କରନ୍ତୁ । ଗୋପବାବୁ କହିଲେ "ମୁଁ ଯାହା କହିଲି ସବୁ ମନେ ରଖିଲୁଟି ? ନିଜ ଭିତରୁ ଭେଦ ଭୁଲି ଜୋର୍ ଦେଇ କାମରେ ନ ଲଗିଲେ କୋରାପୁଟର କାମ ସବୁ ଯିବ ।" ତାଙ୍କ ସଙ୍ଗେ ସେହି ଶେଷ ଦେଖା, ଶେଷ କଥା ।

୧୯୫୭ ପରେ କୋରାପୁଟ ଜିଲ୍ଲାରେ 'ଭୂଦାନ' 'ଗ୍ରାମଦାନ' ଆଦି କାର୍ଯ୍ୟ ସଙ୍କୁଚିତ ହୋଇଗଲା । ଗୋପବାବୁ ଯାହା ଆଶଙ୍କା କରିଥିଲେ ତାହା ହିଁ ଘଟିଲା । ପୁଣି ୧୯୬୩ରେ ଯେତେବେଳେ ଆଉଥରେ ବିନୋବା ବୁଲି ଆସିଲେ, ସେତେବେଳେ ପୁଣି ନୂଆ 'ଗ୍ରାମଦାନ' ମିଳିବା ଆରମ୍ଭ ହେଲା, ଗ୍ରାମଦାନ ସଂଖ୍ୟା ବଢ଼ିଲା ଓ ୧୯୬୩ ରେ ଅମର୍ଦ୍ଦା (ବାଲେଶ୍ୱର ଜିଲ୍ଲା)ରେ ସର୍ବୋଦୟ ସମ୍ମିଳନୀ ବସି ସଂକଳ୍ପ କରାଗଲା ଯେ 'ପ୍ରଦେଶ ଦାନ' ପାଇଁ ଉଦ୍ୟମ କରାଯିବ । ସେହି ଉଦ୍ଦେଶ୍ୟରେ କର୍ମୀମାନେ ଲଗିପଡ଼ିଲେ । ୧୬-୦-୧୯୬୯ରେ କୋରାପୁଟ ଜିଲ୍ଲା ଜୟପୁରରେ

ଗୋଟିଏ ଖୁବ୍ ବଡ଼ ସଭା ହେଲ ବହୁତ ଲୋକ ଆସିଥିଲେ । ସେଠି କୋରାପୁଟ ଜିଲ୍ଲାର ଭୂଦାନ କର୍ମୀ ଶ୍ରୀ ବୃନ୍ଦାବନ ଜେନା ବରିଷ୍ଠ ସର୍ବୋଦୟ ନେତା ଶ୍ରୀ ଶଙ୍କରରାଓ ଦେଓଙ୍କ ହାତକୁ କୋରାପୁଟ ଜିଲ୍ଲା ସମଗ୍ର 'ଜିଲ୍ଲାଦାନ' ହୋଇଗଲା ବୋଲି 'ଜିଲ୍ଲାଦାନ' ଦାନପତ୍ର ବଢ଼ାଇଦେଲେ, ଘୋଷଣା କରାଗଲା ଯେ ଓଡ଼ିଶାର ବୃହତ୍ତମ ଜିଲ୍ଲା କୋରାପୁଟ, ଯାହାର ଲୋକସଂଖ୍ୟା ସେତେବେଳେ ୧୯ ଲକ୍ଷ, ଅଧିକାଂଶ ହିଁ ଆଦିବାସୀ,—ସେ ଜିଲ୍ଲାଦାନ ହୋଇଗଲା । ଶ୍ରୀ ଗୋପବନ୍ଧୁ ଚୌଧୁରୀ ସେତେବେଳେ ନ ଥିଲେ, ୫ ବର୍ଷ ପୂର୍ବରୁ ଏ ସଂସାରରୁ ଚାଲି ଯାଇଥିଲେ ।

ସେ 'ଜିଲ୍ଲାଦାନ'ର ସ୍ଥାୟୀ ତାତ୍ପର୍ଯ୍ୟ କଣ ? ଜିଲ୍ଲାଯାକ ସମସ୍ତେ କଣ ନିଜ ଆଦର୍ଶରେ, ଚରିତ୍ରରେ, ଆଚରଣରେ, କାର୍ଯ୍ୟରେ, 'ଭୂଦାନ ଦର୍ଶନ', —ଗାନ୍ଧୀବାଦୀ ସର୍ବୋଦୟ ଆଦର୍ଶ ଗ୍ରହଣ କରିନେଇ ସମ୍ପୂର୍ଣ୍ଣଭାବେ ବଦଳିଗଲେ ? ତାଙ୍କ 'ହୃଦୟ ତରଳି ଗଲା' ? ଗାଁମାନଙ୍କରେ ଭୂମିହୀନ ହୋଇ ଗୋଟିଏ ବି କେହି ରହିଲେ ନାହିଁ ?

ମୁଁ ଜାଣେ ନାହିଁ ।

ଏତକ ଜାଣେ, —ସାରା ସଂସାରରେ ଯେଉଁ ଅଳ୍ପ କେହି କେଉଁଠି ଥିବେ ସେ 'ଋଷିସତ୍ୟ' ପାଳନ କରନ୍ତି, ଗୋପବାବୁ ଥିଲେ ତହିଁରୁ ଜଣେ । ଲୋକ ଦେଖାଣିଆ କାମକୁ ସେ ଘୃଣା କରୁଥିଲେ, ପରକୁ କଣ, ନିଜ ବିବେକକୁ ବି ସେ କେବେ ପ୍ରତାରଣା କରି ନାହାନ୍ତି, ମୁଁ ଦେଖିଛି ଭୂଦାନ ପ୍ରଚାର ବାତାବରଣ ବେଳେ କେତେ ଲୋକ ତାଙ୍କୁ ଭୂଦାନ ଯାଚିଛନ୍ତି, କିନ୍ତୁ ସେ ମନାକରି ଦେଇଛନ୍ତି, କହିଛନ୍ତି, "'ଭୂଦାନ' କଣ ଓ କାହିଁକି, ଏସବୁ ସେମାନେ ଭଲ କରି ନ ବୁଝିବା ଯାକେ, ତାଙ୍କ ଗରିବ ଗାଁ ଭାଇକୁ ନିଯାଦେବା ତାଙ୍କର ଦାୟିତ୍ୱ ଏକଥା ହୃଦୟ ଭିତରୁ ନ ବୁଝିବା ପର୍ଯ୍ୟନ୍ତ ଖାଲି ଫର୍ମ ପୂରଣ କରିବା 'ଭୂଦାନ' ନେବାର ଅର୍ଥ କଣ ?" ଯେଉଁଠି ଦେଖନ୍ତି ଯେ ଲୋକେ ପ୍ରକୃତରେ ବୁଝିଛନ୍ତି, ଭୂଦାନ ଦେବାକୁ ତାଙ୍କର ଆଗ୍ରହ ଆନ୍ତରିକ, ସେଠି ସେ 'ଭୂଦାନ' ନେଇଛନ୍ତି ।

ଏକଦା 'ଭୂଦାନ' ଖାଲି ଓଡ଼ିଶା ନୁହେଁ, ଖାଲି ଭାରତ ନୁହେଁ, ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିଥିଲା । 'ଭୂଦାନ' କହିଲେ ଖାଲି ବୁଝାଉ ନ ଥିଲା ଦରିଦ୍ର ଭୂମିହୀନଙ୍କ ପାଇଁ କିଛି ଭୂମିଦାନ, କିଛି ସମ୍ପତ୍ତିଦାନ, ଅର୍ଥନୈତିକ ସମସ୍ୟାର ଗୋଟିଏ ପ୍ରକାର ସମାଧାନର ମାର୍ଗ । ତା ଅର୍ଥ ଥିଲା ହିଂସା-ଦ୍ୱେଷ-ଔଦ୍ଧତ୍ୟ-ଲୋଭ-ନିଷ୍ଠୁରତା - ନୈରାଶ୍ୟ - ସ୍ୱାର୍ଥପରତା -ଶୋଷଣ-ଅନ୍ୟାୟ-ଅତ୍ୟାଚାର-ଅସଂଯମବିହୀନ, ସ୍ୱାଧୀନ, ମୁକ୍ତ, ଆତ୍ମଶାସିତ ପ୍ରେମମୈତ୍ରୀପ୍ଲାବିତ, ନିଶଙ୍କ, ନିରାତଙ୍କ, ସୁଖଶାନ୍ତ ଆନନ୍ଦମୟ ଗୋଟିଏ ନୂତନ ପୃଥିବୀ ହୋଇ ଏ ପୃଥିବୀର ରୂପାନ୍ତରୀକରଣ । ତାର

ଆନ୍ତରିକତା, ବିଶ୍ୱାସ, ଆଶା, ଆଧ୍ୟାତ୍ମିକତା ତା ଆଡ଼କୁ ସଂସାରର ଲୋକଙ୍କ ହୃଦୟକୁ ଉଠାଉଥିଲା । ଏ ଚିନ୍ତା, ଏ ଦୃଷ୍ଟିଭଙ୍ଗୀରେ ସବୁ ଧର୍ମ ସବୁ ଶାସ୍ତ୍ରର ଶ୍ରେଷ୍ଠ ବାଣୀର ସମନ୍ୱିତ ଥିଲା । ଏଥିରେ ମଧ୍ୟ ଥିଲା ଗାନ୍ଧୀ-ବାଣୀର, ବିନୋବା-ବାଣୀର, ଓଡ଼ିଶାରେ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ବାଣୀର, ଅନ୍ୟାନ୍ୟ ନାନା ସର୍ବୋଦୟ ନେତାଙ୍କ ବାଣୀର । ତେଣୁ ତାର ମନ୍ତ୍ର ଥିଲା 'ଜୟ ଜଗତ୍', ଭାରତରେ ତାର ମୁଖ୍ୟ ପ୍ରବର୍ତ୍ତକ ଥିଲେ ପରମପୂଜ୍ୟ ସନ୍ଥ ବିନୋବା, ଓଡ଼ିଶାରେ—ସର୍ବତ୍ୟାଗୀ, ଧୂଳିମାଟିର ସନ୍ଥ ପରମପୂଜ୍ୟ ଗୋପବନ୍ଧୁ ଚୌଧୁରୀ । 'ଭୂଦାନ' ଗୋଟିଏ ଅନୁଷ୍ଠାନ ଭିତରେ ପିଞ୍ଜରାବଦ୍ଧ ଗୋଟିଏ ସଂସ୍ଥା ନ ଥିଲା ।

କିନ୍ତୁ ଗୋପବାବୁଙ୍କ ତିରୋଧାନର ଅଳ୍ପ କେତେବର୍ଷ ପରେ ସେ କ୍ଷୀଣରୁ କ୍ଷୀଣତର ହୋଇଗଲା । ସେତେବେଳେ ଭାରତୀୟ ସ୍ତରରେ ବିନୋବାଙ୍କ ଛଡ଼ା ଅନ୍ୟ ଜଣେ ପ୍ରସିଦ୍ଧ ଭୂଦାନ ନେତା ଶ୍ରୀ ଜୟପ୍ରକାଶ ନାରାୟଣ ବିନୋବାଙ୍କଠୁ ଫାଟିଯାଇ ପ୍ରତିଷ୍ଠିତ ଶାସନ ବିରୁଦ୍ଧରେ ରାଜନୈତିକ ପ୍ରତିବାଦ ଓ ବିପ୍ଳବର ପନ୍ଥା ଧରିଲେ ଓ ଓଡ଼ିଶାରେ ଅଧିକାଂଶ ଭୂଦାନ କର୍ମୀ ଉଣା ଅଧିକେ ତାଙ୍କର ଅନୁଗାମୀ ହେଲେ, ସେତେବେଳେ ବିନୋବା ଓ ବିନୋବା ବାଣୀର ଅନ୍ତରାଳରେ ହିଁ ରହିଗଲେ, ତହିଁରୁ କେତେ ଭୂଦାନ କର୍ମୀ, ଏକଛତ୍ର ଶାସନ ବିରୁଦ୍ଧରେ ସ୍ୱର ନ ଉଠାଇ ଆଡ଼େଇ ହୋଇ ରହିଗଲେ, ସରକାରୀ ପୃଷ୍ଠପୋଷକତା ଲାଭ କରି ପୂର୍ବେ ଭୂଦାନ ଦ୍ୱାରା ସଂଗୃହୀତ ହୋଇଥିବା ଭୂମି ବଣ୍ଟନରେ କାର୍ଯ୍ୟ କଲେ, ଭୂଦାନ ସମ୍ପର୍କରେ ସରକାରୀ ନିଯୁକ୍ତି ଗ୍ରହଣ କଲେ, ବିନୋବା ଯେମିତି ଏମର୍ଜେନ୍‌ସିକୁ 'ଅନୁଶାସନ ପର୍ବ' ନାମ ଦେଲେ ସରକାର ପ୍ରଚାର କଲେ ଯେ 'ଏମର୍ଜେନ୍‌ସି' ଘୋଷଣା ଓ ତଦନୁରୂପେ ବିବିଧ କାର୍ଯ୍ୟାନୁଷ୍ଠାନ ପ୍ରତି ସନ୍ଥ ବିନୋବାଙ୍କର ମଧ୍ୟ ସମର୍ଥନ ରହିଛି । ସେତେବେଳେ ଅନେକ ବିଖ୍ୟାତ ଗାନ୍ଧୀବାଦୀ, ସ୍ୱାଧୀନତା-ସଂଗ୍ରାମୀ ଭୂଦାନ କର୍ମୀ ଓ ନେତା ଥାନ୍ତି ବନ୍ଦୀଶାଳାରେ । ଆସନ୍ତା ସେପ୍‌ଟେମ୍ବର, ୧୯୮୨ର ୧୧ ତାରିଖ ଦିନ ବିନୋବାଙ୍କ ଜନ୍ମଦିନ, ତାଙ୍କୁ । ୭ ବର୍ଷ ପୂରିଯିବ, ବହୁଦିନରୁ ସେ ତାଙ୍କ ପୌନାର୍ ଆଶ୍ରମରେ କାଳାତିପାତ କରୁଛନ୍ତି, 'ଭୂଦାନ ଆନ୍ଦୋଳନ' ସତେ ଯେପରି ଅତୀତ ଇତିହାସର ଗୋଟିଏ ଅଧ୍ୟାୟ, ଉପାମେଘଟିଏ ।

ଗୋପବାବୁ ନାହାନ୍ତି, ଆଚାର୍ଯ୍ୟ ମହାଶୟ ନାହାନ୍ତି, ପଣ୍ଡିତ କୃପାସିନ୍ଧୁ ହୋତା ମହାଶୟ ନାହାନ୍ତି, ବ୍ୟାସ୍‌ଜୀ ନାହାନ୍ତି, ଗୁଣ ଦାଦା (ଶ୍ରୀ ଗୁଣନିଧି ମହାନ୍ତି) ନାହାନ୍ତି, ଅନେକେ ନାହାନ୍ତି, ଜଣେ ସନ୍ଥ ବିନୋବା ତଟସ୍ଥ, ଧ୍ୟାନମଗ୍ନ, ସେ ଆଜି ଏ ଯୁଗସ୍ରୋତ ମଝିରେ 'ସୋତାପତ୍ତି' (ଓଲଟା ଆଡ଼କୁ ଯାଉଥିବା) ହୋଇ ନାହାନ୍ତି ।

ଭୂଦାନର ପଛେ ଯେଉଁ 'ନିର୍ମାଣ' କାର୍ଯ୍ୟ ଚାଲିଲା, ଓଡ଼ିଶାରେ ତାର ସଞ୍ଚାଳକ ପ୍ରସିଦ୍ଧ ଗାନ୍ଧିବାଦୀ ସଂଗଠକ ଓ କର୍ମୀ ପୂଜ୍ୟ ଶ୍ରୀ ଆଣ୍ଣାସାହେବ ସହସ୍ରବୁଦ୍ଧେ ଆଉ ନାହାନ୍ତି । 'ଗରଣ୍ଡା' ଗ୍ରାମରେ ଆଶ୍ଚର୍ଯ୍ୟ ଡେଭେଲପ୍‌ମେଣ୍ଟ କାର୍ଯ୍ୟ କରି ଦେଖାଇ-ଥିବା ତ୍ୟାଗୀ ସର୍ବଜନପ୍ରସ୍ତ ଭୂଦାନ କର୍ମୀ ଶ୍ରୀ ଗୋପାଳ ଗେରଡ଼ଡ଼ି ଆଉ ନାହାନ୍ତି, ସେ କେଉଁକାଳୁ 'ପୁଲିସ୍ ବନ୍ଧୁକର ଗୁଳିରେ' ନିହତ । ବହୁତ କଥା ବଦଳିଛି । ସ୍ଥାନୀୟ ସାହାଯ୍ୟ ଓ ସହଯୋଗ ଉପରେ ପ୍ରତିଷ୍ଠିତ ସ୍ୱାବଲମ୍ବୀ 'ନିର୍ମାଣ' ପରିବର୍ତ୍ତେ ଭୂଦାନ ଇଲାକା ବାହାରୁ, ଯେପରି ସରକାରୀ ଅର୍ଥ ଓ ସଂସ୍ଥା ଦ୍ୱାରା 'ନିର୍ମାଣ' ବା ଡେଭେଲପ୍‌ମେଣ୍ଟ ବ୍ୟାପକଭାବେ କରାଯାଉଛି ଓ ସେଥିପାଇଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହେଉଛି । ତାର କାରିଗର ସରକାରୀ କର୍ମଚାରୀମାନେ ।

ତଥାପି, ପୁରାତନ 'ଭୂଦାନ' ଆଦର୍ଶ ଓ ଚରିତ୍ର ଅଛି, ଲୁପ୍ତ ହୋଇନାହିଁ ।

୧୯୫୮ ଫେବୃଆରୀ ୨୭ରେ ଗୋପବାବୁ କଟକ ଯୋଡ଼ିଆ ସାହି ଘରୁ ବାହାରିଲେ । ବସ୍‌ରେ ଯାଉଥାନ୍ତି ବାଲେଶ୍ୱର ଜିଲ୍ଲା ଗସ୍ତରେ । ବାଲେଶ୍ୱର ଜିଲ୍ଲା ପାଖରେ ଓହ୍ଲାଇ ସେ ଭୂଦାନ କର୍ମୀ ଶ୍ରୀ ସୁଧାଂଶୁ ଶେଖର ଦାସଙ୍କ ପାଖକୁ ଗଲେ, ସେଠାରୁ ସେ ଚାଲି ଚାଲି ବହୁତ ଗାଁ ବୁଲିଲେ, ପୁଣି ଉତ୍ତର ବାଲେଶ୍ୱରରେ ବୁଲିଲେ । ଏହିପରି ୮।୯ ଦିନ ବିତିଲା । ସେତେବେଳକୁ ଜରରେ ପଡ଼ି ତାଙ୍କ ଦେହ ଦୁର୍ବଳ ଥାଏ ଓ ତାଙ୍କର ହାଇବ୍ଲଡ଼ପ୍ରେସର୍ (ରକ୍ତଚାପାଧିକ୍ୟ ରୋଗ) ଥାଏ । ମାର୍ଚ୍ଚ ୮ ତାରିଖରେ ସେ ବସରେ 'ମାଣିକୀ' ଗଲେ, ୧୧ କି ୧୨ ତାରିଖରେ କପ୍ତିପଦା (ମୟୂରଭଞ୍ଜ) ଗଲେ, ମୟୂରଭଞ୍ଜର ନାନା ସ୍ଥାନ ବୁଲିଲେ । ସେ ଦେଖି ଖୁସି ହେଉଥାନ୍ତି ଯେ କେତେଗୁଡ଼ିଏ କର୍ମୀ 'ନିଧିମୁକ୍ତ' ନିଷ୍ପତ୍ତି ଯୋଗୁଁ ଗାନ୍ଧୀ ସ୍ମାରକନିଧି ଆଦି ସଂସ୍ଥାରୁ କିଛି ଟଙ୍କା ନ ନେଇ ସୁଦ୍ଧା ନାନା ଦୁଃଖ କଷ୍ଟ ସହି ନିଷ୍ଠାପର ଭାବେ ଭୂଦାନ କାର୍ଯ୍ୟରେ ଲାଗି ରହିଛନ୍ତି । ସେ ସେମାନଙ୍କ ବ୍ୟକ୍ତିଗତ ସମସ୍ୟାମାନ ବୁଝୁଥାନ୍ତି, ସେମାନଙ୍କୁ ଉତ୍ସାହିତ କରୁଥାନ୍ତି, ପରାମର୍ଶ ଦେଉଥାନ୍ତି । ୨୧-୩-୫୮ରେ 'ଗ୍ରାମସେବକ' ପତ୍ରିକାରେ ପ୍ରକାଶିତ ତାଙ୍କ ଲେଖା 'ପଦଯାତ୍ରା ଅନୁଭୂତି' ତାଙ୍କର ସେହି ସମୟର ଲେଖା ।

ଶ୍ରୀମତୀ ରମା ଦେବୀ ସେତେବେଳେ କେନ୍ଦୁଝର ଜିଲ୍ଲାର 'କଣ୍ଡିଆ' ଗ୍ରାମରେ ଥାନ୍ତି, ସେହି ଜିଲ୍ଲାରେ ଭୂଦାନ କାର୍ଯ୍ୟ କରୁଥାନ୍ତି । ବ୍ରହ୍ମପୁରରେ ଗୋଟିଏ ସମ୍ମିଳନୀ ହେବାର ଥିଲା, ତେଣୁ ସେ ବ୍ରହ୍ମପୁର ଗଲେ, ସେଠି ତାଙ୍କୁ ଜ୍ୱର ହେଲା, ଜ୍ୱର ଦେହରେ ସେ କଟକ ଫେରି ଆସିଲେ, ସେଠି ଡାକ୍ତରୀ ପରୀକ୍ଷାରୁ ଜଣାଗଲା ଯେ ତାହା ଟାଇଫଏଡ ଜର, ସମସ୍ତେ ତାଙ୍କ ଚିକିତ୍ସାରେ ଲାଗିପଡ଼ିଲେ । ଗୋପବାବୁଙ୍କୁ ଏସବୁ କଥା ଜଣା ନ ଥାଏ । ସେ ମୟୂରଭଞ୍ଜ ଗସ୍ତରୁ କଟକ ଆସି ବାରିରେ ଥିଲେ,

କେନ୍ଦୁଝର ଓ ସୁନ୍ଦରଗଡ଼ ଜିଲ୍ଲାକୁ ଯିବାକୁ ସ୍ଥିର କରିଥିଲେ, ରମା ଦେବୀ ଅସୁସ୍ଥ ଶୁଣି କଟକ ଫେରି ଆସିଲେ । ରମା ଦେବୀଙ୍କ ସେବା ଶୁଶ୍ରୂଷାରେ ଲଗିଲେ । ରମା ଦେବୀଙ୍କୁ ଜର ଛାଡ଼ିଲା, ତାଙ୍କୁ ଖାଲି ଦୁର୍ବଳ ଲାଗୁଥାଏ, ବିଛଣାରେ ପଡ଼ିଥାନ୍ତି, କିଛି ଖାଇ ନ ଥାନ୍ତି, ଏହିପରି ସମୟରେ ଦିନେ ଗୋପବାବୁ କଟକ ଯୋଗଆ ସାହି ଘରେ ଥାଆନ୍ତି । ସେଦିନ ତାରିଖ ହୋଇଥିଲା ୨୧ ଅପ୍ରେଲ, ୧୯୫୮ ।

## ଏକାବନ

ସେଥର ରମା ଦେବୀଙ୍କୁ ଟାଇଫଏଡ୍ ହୋଇଛି ଶୁଣି ଶ୍ରୀ ଗୋପବନ୍ଧୁ ଚୌଧୁରୀ ଯେତେବେଳେ ମୟୂରଭଞ୍ଜ ଜିଲ୍ଲାରୁ କଟକ ଚାଲି ଆସୁଥିଲେ, ମୟୂରଭଞ୍ଜର କର୍ମୀମାନେ ତାଙ୍କୁ ପଚାରିଲେ, ''ପୁଣି କେବେ ଆସିବେ ?''

''ଆଉ ଦେଖା ହେବ ନାହିଁ'', ସେ ସେମାନଙ୍କୁ କହିଥିଲେ । କାହିଁକି ଏପରି କହିଲେ ତାହା କର୍ମୀମାନେ ବୁଝି ପାରିଲେ ନାହିଁ ।

୧୯୫୨ ଅପ୍ରେଲ ୨୮ର ସନ୍ଧ୍ୟାରେ ଯୋଗଆ ସାହି ଘରେ ଯେତେବେଳେ ସବୁଦିନ ପରି ସନ୍ଧ୍ୟା ପ୍ରାର୍ଥନା ମଣ୍ଡଳୀ ବସିଲା, ଶ୍ରୀ ଈଶ୍ୱରଲାଲ ବ୍ୟାସ୍ ବି ଉପସ୍ଥିତ ଥାନ୍ତି, ଦେଖାଗଲା ଯେ ଗୋପବାବୁ ପ୍ରାର୍ଥନା ବୋଲିଲାବେଳେ କାହିଁକି କେଜାଣି,— କାନ୍ଦୁଥାନ୍ତି । 'ଈଶୋପନିଷଦ୍'ର ସେ ଯେଉଁ ଓଡ଼ିଆ ଅନୁବାଦଟି ପଦ୍ୟରେ ରଚନା କରିଥିଲେ, ସେଇଟି ବୋଲା ହେଉଥାଏ । ଶ୍ରୀ ଈଶ୍ୱରଲାଲ ବ୍ୟାସ୍ ଲକ୍ଷ୍ୟ କରୁଥାନ୍ତି ଯେ ତହିଁରୁ ଦୁଇଧାଡ଼ି ଗୋପବାବୁ କାନ୍ଦି କାନ୍ଦି ବୋଲୁଥାନ୍ତି, ଧାଡ଼ି ଯୋଡ଼ିକ :—

''ତୁ ଅଗ୍ନି ବାଟ ଯେ ଦେଖାଉ
ତୁ ଡ୍ରଭ୍ଭ ସୁରଥ ଯେ ଦେଉ ।''

କଣ ଖାଲି ଭାବପ୍ରବଣ ହୋଇ ସେ କାନ୍ଦୁଥାନ୍ତି ସେତେବେଳେ ଜଣାପଡ଼ିଲା ନାହିଁ । ('ଗ୍ରାମସେବକ' ପତ୍ରିକାର ୮-୫-୧୯୬୪ ସଂଖ୍ୟାରେ ବ୍ୟାସଜୀଙ୍କ ଲେଖା 'ସ୍ମରଣେ'ରେ ଏ ବିଷୟ ଅଛି ।)

ତହିଁ ଆରଦିନ ଅପ୍ରେଲ ୨୯ ତାରିଖ । ଗୋପବାବୁ ନିଜେ କୋଡ଼ିହାଣି ଯୋଗିଆ ସାଧୁ ଆଶ୍ରମ ଅଗଣାରେ ଲେଞ୍ଜଟିଆ ଶାଗ କରିଥାନ୍ତି । ଆଚାର୍ଯ୍ୟ ଶ୍ରୀ ହରିହର ଦାସ, ଗୋପବାବୁଙ୍କ 'ହରିଭାଇନା' ଓ ଅନ୍ତରର ବନ୍ଧୁ, କାଦୁଆ ଆଶ୍ରମରେ ରହୁଥାନ୍ତି, ମଝିରେ ମଝିରେ ଯୋଗିଆ ସାଧୁ ଆଶ୍ରମକୁ ଆସୁଥାନ୍ତି । ସେଦିନ ସେ ସେଠି ଥିଲେ ଓ ଦୁହେଁ ପଖାଳ ଖାଇ ଭୁବନେଶ୍ୱର ଯିବାକୁ କଥା ଥାଏ । ଗୋପବାବୁ ଶାଗ ତୋଳିଲେ, ନିଜେ ଶାଗ ବାଛିଲେ, କହିଲେ

“ଆଜି ହରି ଭାଇନା ଶାଗ ପଖାଳ ଖାଇବେ । ଓଡ଼ିଆର ଜାତୀୟ ଖାଦ୍ୟ ପଖାଳ, ଶାଗ, ବଡ଼ି, ନଡ଼ିଆ । 'ପଖାଳ ଜାତିର ସଞ୍ଜୀବନୀ ସୁଧା—ହରେ ଏକାଧାରେ ଭୋକ ଶୋଷ ବାଧା ।”

ସେ ଓ ତାଙ୍କ 'ହରି ଭାଇନା' ପଖାଳ ଖାଇଲେ, ଏକାଠି ଦୁହେଁ ଗଲେ ଭୁବନେଶ୍ୱର । ଭୁବନେଶ୍ୱରରେ କେତେ ସ୍ଥାନକୁ ଗଲେ, କେତେ ଜଣଙ୍କୁ ଭେଟିଲେ, ତହିଁରୁ ଜଣେ ଶ୍ରୀ ସାଧୁଚରଣ ମହାନ୍ତି, ସେତେବେଳକୁ ଗୃକର ସାଉ ପେନ୍‌ସନ୍ ନେଉଥାନ୍ତି । ଭୂଦାନ ଆନ୍ଦୋଳନରେ ସେ ଥିଲେ ଜଣେ ଉତ୍ସାହୀ ଓ ନିଷ୍ଠାଶୀଳ ସଞ୍ଚାଳକ, ନିଜେ ବି ଭୂଦାନକୁ ଜମି ଦେଇଥିଲେ । ଗୋପବାବୁଙ୍କ ସଙ୍ଗେ ତାଙ୍କର ଆତ୍ମୀୟତା ଥିଲା । ଦୁଇବନ୍ଧୁ ସେଠୁ ଫେରି ଭୁବନେଶ୍ୱରରେ ସେତେବେଳେ ଦୁଇ ମାର୍କେଟ ବିଲ୍‌ଡିଂ ମଝିରେ ଥିବା ବସ୍‌ଷ୍ଟାଣ୍ଡକୁ ଯାଉଥାନ୍ତି, ବସ୍ ଧରି କଟକ ଫେରିବେ । ସେଠି ଦେଖିଲେ ଯେ ସଡ଼କ ଉପରେ ମାର୍କେଟ୍ ବିଲଡିଂରେ ବିଲାତି ମଦର ଦୋକାନଟାଏ, ତା କୋଠା ଉପରେ ବଡ଼ ବଡ଼ ଅକ୍ଷରରେ ତା ପରିଚୟ ଲେଖା ହୋଇଛି (୧୯୮’ ଅଗଷ୍ଟରେ ବି ସେଠି ସେମିତି ଦୋକାନଟାଏ ଅଛି, ଗୋଟିଏ ବହି ଦୋକାନ—'ମଡର୍ଣ୍ଣ ବୁକ୍ ଡିପୋ'କୁ ଲାଗିଛି ।) ଦେଖି ତାଙ୍କ ମୁହଁ ଶୁଖିଗଲା, ସେ କାଠ ହୋଇଗଲେ । ସେ କହିଲେ—

“ଦେଖନ୍ତୁ ଦେଖନ୍ତୁ ହରି ଭାଇନା । ଏଇଥିପାଇଁ କଣ ଆମେସବୁ ଜେଲ୍ ଗଲୁଁ ! ଏଇଥିପାଇଁ କଣ ଗାନ୍ଧୀ ଏତେ ଆନ୍ଦୋଳନ କଲେ, ଲକ୍ଷ ଲକ୍ଷ ଲୋକ ମାଡ଼ଖାଇ ଜେଲ୍‌ଯାଇ ସର୍ବସ୍ୱ ହରେଇଲେ, ଆମର ସ୍ୱରାଜ ଆସିଲା ? ଦେଶରେ ସମାଜରେ ଯେଉଁମାନେ ଲୋକଙ୍କ ଆଖିରେ ବଡ଼, ଉପରେ ଅଛନ୍ତି, ତାଙ୍କଠୁଁ ଅନ୍ୟମାନେ ଶିଖନ୍ତି । ସେମିତିଆ ଥୋଡ଼ାଏ ଲୋକ ତ ଏମିତି ହେଲେଣି, ନୈତିକତା

ନ ଭାଙ୍ଗିବ କିପରି ? ଭାଙ୍ଗି ଭାଙ୍ଗି ପଡ଼ୁଛି । ମଦନିଶା ବ୍ୟାପୁଛି, ଏ ଦେଶ, ଏ ସମାଜ କଣ ହୋଇଗଲା !" ଦିହେଁ ବସ୍‌ରେ ବସିଲେ, କଟକ ଫେରୁଥାନ୍ତି । ଦୁହିଁଙ୍କ ଭିତରେ ବାଟସାରା ଖାଲି ସେହିକଥା, ମଦ ଓ ଗୁଣ୍ଡିକି ସ୍ଖଳନା ବିଷୟରେ । ସ୍ୱାଧୀନ ଭାରତରେ, ପୁଣି କଂଗ୍ରେସ୍ ଶାସନରେ, ଓଡ଼ିଶାର ରାଜଧାନୀର କେନ୍ଦ୍ରସ୍ଥଳରେ ସମସ୍ତେ ଦେଖିଲାଭଳି ସ୍ଥାନରେ ଗୋଟାଏ ମଦ ଦୋକାନ ! ଗୋପବାବୁ ମର୍ମାହତ ହୋଇଥାନ୍ତି । ତାଙ୍କ ମନରେ ହା' ପଶିଯାଇଥାଏ । ସେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ ଡକ୍ଟର ହରେକୃଷ୍ଣ ମହତାବ । ଅନ୍ୟାନ୍ୟ ମନ୍ତ୍ରୀମାନେ ଥିଲେ—ଡକ୍ଟର ରାଧାନାଥ ରଥ, ଶ୍ରୀ ଦୀନବନ୍ଧୁ ସାହୁ, ଶ୍ରୀ ସତ୍ୟପ୍ରିୟ ମହାନ୍ତି, ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ, ଶ୍ରୀମତୀ ବସନ୍ତମଞ୍ଜରୀ ଦେବୀ, ଶ୍ରୀ ପବିତ୍ର ପ୍ରଧାନ, ଶ୍ରୀ ନୀଳମଣି ରାଉତରାୟ, ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ । ଉପମନ୍ତ୍ରୀମାନେ :—ଶ୍ରୀ ସାନ୍ତନୁ କୁମାର ଦାସ, ଶ୍ରୀ ବୀର ବିକ୍ରମାଦିତ୍ୟ ବନ୍ଦୋ, ଶ୍ରୀ କୁମୁଦ ଚନ୍ଦ୍ର ଦେଓ, ଶ୍ରୀ ହିମାଂଶୁ ଶେଖର ପାଢ଼ୀ । 'ନିଶାବନ୍ଦ' ଗାନ୍ଧୀନୀତିମାନଙ୍କ ଭିତରେ ଅନ୍ୟତମ, କିନ୍ତୁ ରାଷ୍ଟ୍ରୀୟ ଶାସନ ସଂସ୍ଥା ସେ ନୀତିକୁ ଗ୍ରହଣ କରି ନ ଥିଲା, ତେଣୁ ସରକାରଙ୍କଠୁ ଲାଇସେନ୍ସ ନେଇ ସହର ମଝିରେ 'ବିଚ୍ ବଜାରରେ' ମଦ ଦୋକାନ ଖୋଲିବା ମନା ନ ଥିଲା । କିନ୍ତୁ ଏ ସାମାନ୍ୟ ଘଟଣାଟାକୁ ଗୋପବାବୁ ମନରୁ ପୋଛିଦେଇ ପାରିଲେ ନାହିଁ । ତାଙ୍କୁ ଲାଗୁଥାଏ, ଯେଉଁ ନୀତି ଆଦର୍ଶକୁ ଆଖି ଆଗରେ ରଖି ଏଡ଼େବଡ଼ ସ୍ୱାଧୀନତା ଆନ୍ଦୋଳନ ଘଟିଗଲା, ଏତେଲୋକ ଏତେ କଷ୍ଟ ସହିଲେ ଓ ଯାହାଯୋଗୁଁ ସ୍ୱାଧୀନତା ଆସିଲା, ଏ ଆଚରଣ ଯେପରିକି ତା ପ୍ରତି ଅପମାନ ଓ ବିଶ୍ୱାସଘାତକତା । ମଦନିଶା, ଚରିତ୍ରହୀନତା, ଉଚ୍ଛୃଙ୍ଖଳତା, ବାରବର୍ଷର ତପ ଶେଷରେ ଶୁଖୁଆ ଧୋଡ଼ା ଖିଆପରି ଏ କଷ୍ଟ, ଏତେ ତ୍ୟାଗ ସ୍ୱୀକାର କରି ଦେଶ ସ୍ୱାଧୀନ ହେବାପରେ ତାର ଏହି ଅଧୋଗତି, ନୈତିକ ଅଧଃପତନ, ଏହି ବିଷୟରେ ଦୁଇବନ୍ଧୁ ବସ୍‌ରେ ବସି କଟକ ହେବାଯାକେ କଥାଭାଷା ହେଉଥାନ୍ତି ।

ଯୋଗିଆ ସାହି ଘରେ ପହଞ୍ଚି ଗୋପବାବୁ ସେଠି ବି ସେହିକଥା ଉତ୍ତେଜିତ ହୋଇ କହୁଥାନ୍ତି । ସେ କହୁଥାନ୍ତି ଯେ ଯୋକେ ରାଜନୈତିକ କର୍ମୀ ଓ ନେତା ମଧ୍ୟ ମଦ ପିଇବା ଅଭ୍ୟାସ କଲେଣି । ଯୋଗିଆ ସାହି ଘରେ ସନ୍ଧ୍ୟା ପ୍ରାର୍ଥନା ସରିଲା, ବିଶିଷ୍ଟ ସୋସିଆଲିଷ୍ଟ କର୍ମୀ ଶ୍ରୀ ରବି ଘୋଷ ଆସିଥାନ୍ତି, ଗୋପବାବୁ ତାଙ୍କୁ କହିଲେ, "ଆଚ୍ଛା, ରବି, ଆମ ଭାରତବର୍ଷରେ ବିଭିନ୍ନ ପ୍ରାଦେଶିକ ମନ୍ତ୍ରୀମଣ୍ଡଳରେ କେତେଜଣ ମଦପିଇବା ଲୋକ ଅଛନ୍ତି ତାର ଗୋଟାଏ ହିସାବ କର ତ, ଦେଖିବା ।"

ଆଶ୍ରମ ଘରେ ପିଣ୍ଡାରେ ସପ ପଡ଼ିଥାଏ, ସେ ତାହାରି ଉପରେ ଚେଇଁ ଚେଇଁ ଲମ୍ବି ଯାଇଥାନ୍ତି । ସେତିକିବେଳେ ଭୂଦାନକର୍ମୀ ଶ୍ରୀ ନିଶାକର ସାହୁ ତାଙ୍କଠୁ ବିଦା

ହେବାକୁ ଆସିଲେ, ଶ୍ରୀ ନିଶାକର ସାହୁ କୋରାପୁଟ ଯାଉଥାନ୍ତି । ଗୋପବାବୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କଠାରୁ ବିଦା ହେଲବେଳକୁ ତାଙ୍କୁ ଯାହା କହିଥିଲେ ଶ୍ରୀ ନିଶାକର ସାହୁଙ୍କୁ ବି ସେଇଆ କହିଲେ । କହିଥିଲେ, —ଗ୍ରାମଦାନ କାମ ଅଗ, ଗ୍ରାମଦାନ ଗାଁରେ କେବଳ ଆର୍ଥିକ ଉନ୍ନତି ପ୍ରତି ଧ୍ୟାନ ଦେବ, ତା ନୁହେଁ, ନୈତିକ ଉନ୍ନତି ପ୍ରତି ଧ୍ୟାନ ଦିଆଯାଉ, ନିଶା ନିବାରଣ ହେଉ, ନୂଆ କର୍ମୀ ଗଢ଼ା ହୁଅନ୍ତୁ । ନିଶାକର ବାବୁ ଗଲବେଳେ କହିଲେ, "କୋରାପୁଟ କାମ ବିଷୟରେ ଯାହା ଯାହା କହିଥିଲି ମନେ ରଖିଥିବଟି ? ଯାଅ, ପରେ ଚିଠି ଦେବ ।"

ଗୋପବାବୁ ଶୋଇ ପଡ଼ିଲେ । ରାତି ୧୦ଟା ବେଳେ ଡାକ୍ତର ଶ୍ରୀ ଶରତ୍ ଚନ୍ଦ୍ର ମିଶ୍ର ଥୋଉଆ ସାହି ଘରକୁ ବୁଲି ଆସିଥିଲେ । ନିର୍ଲୋଭ, ନିଷ୍ଠାପର ଜନସେବୀ ଡାକ୍ତର ଶରତ୍ ଚନ୍ଦ୍ର ମିଶ୍ର, ସମସ୍ତଙ୍କର ପ୍ରିୟ "ଶରତ୍ ବାବୁ" କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକେଲ୍ କଲେଜରେ ଜଣେ ଅଧ୍ୟାପକ, ସେ ଫିଜ୍ ମାଗନ୍ତି ନାହିଁ, କେତେ ଗରିବ ରୋଗୀଙ୍କୁ ଓଲଟି ନିଜଆଡ଼ୁ ଅର୍ଥ ସାହାଯ୍ୟ ଦିଅନ୍ତି, ଯେ ଡାକୁ ରାତି ଅଧ ହେଲେ ବି ଯାଆନ୍ତି, —ସେ ଗୋପବାବୁଙ୍କର ପ୍ରିୟ ଥିଲେ । ସେ ଆସି ଦେଖିଗଲେ ଗୋପବାବୁ ଶୋଇଛନ୍ତି । ସେ ଯିବାପରେ ସଙ୍ଗେ ସଙ୍ଗେ ଗୋପବାବୁଙ୍କ ନିଦ ଭାଙ୍ଗିଗଲା, ସେ ପଚାରି ବୁଝିଲେ ଯେ ଶରତ୍ ବାବୁ ଆସିଥିଲେ । ଏତିକି ଶୁଣି ସେ ପୁଣି ଶୋଇ ପଡ଼ିଲେ । କିନ୍ତୁ ପୁଣି ଟିକିଏ ପରେ ତାଙ୍କ ନିଦ ଭାଙ୍ଗିଗଲା । ସେ ପଚାରିଲେ ରମା ଦେବୀ କେମିତି ଅଛନ୍ତି, କିନ୍ତୁ ପୁଣି ଶୋଇପଡ଼ିଲେ ।

ତାଙ୍କର ଏପରି ପୂର୍ବେ କେବେ ହୋଇ ନ ଥିଲା, ତାଙ୍କ ସ୍ୱଭାବ ଯେ ଥରେ ତାଙ୍କୁ ନିଦ ହୋଇଗଲେ ସେ ସେମିତି ନିଘୋଡ଼ ନିଦରେ ରାତିଯାକ ବ୍ରାହ୍ମମୁହୂର୍ତ୍ତ ପର୍ଯ୍ୟନ୍ତ ଶୋଇ ରହନ୍ତି, ସେଦିନ ସେ ଅଭ୍ୟାସର ବ୍ୟତିକ୍ରମ ହେଲା ।

ଅଳ୍ପ ସମୟ ପରେ ପୁଣି ତାଙ୍କର ନିଦ ଭାଙ୍ଗିଲା, ଏଥର ସେ ଠିଆହୋଇ ପଡ଼ିଲେ, ପାଇଖାନା ଆଡ଼କୁ ଗଲେ, ପୁଣି ଫେରି ଆସିଲେ, ଖପର ଛାଉଣି ହୋଇଥିବା ଘରର ପିଣ୍ଡାର କୁଣାସ୍ଥ ଖମ୍ବ ପାଖେ ପିଣ୍ଡା ଉପରେ ବସି ପଡ଼ିଲେ, ଶ୍ୱାସରୋଗୀକୁ ଯେମିତି ଧଇଁ ପେଲେ, ତାଙ୍କର ସେହିପରି ହେଉଥାଏ, ସେ ଧକେଇ ହେଉଥାନ୍ତି ।

ସେତେବେଳକୁ ରମା ଦେବୀ ଟାଇଫଏଡ୍ ଜ୍ୱର ଛାଡ଼ିବାପରେ ଏଡ଼େ ଦୁର୍ବଳ ହୋଇ ଯାଇଥାନ୍ତି ଯେ ସେ ଅନିଦ୍ରା ହୋଇ ବିଛଣାରେ ପଡ଼ିଥାନ୍ତି । ତାଙ୍କ ଝିଅ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା (ଚୁନି ଦେଈ), ଶ୍ରୀମତୀ କୃଷ୍ଣପ୍ରିୟା ଦାସ ଓ ଅନ୍ୟ କେତେଜଣ କର୍ମୀ ତାଙ୍କ ସେବା କରୁଥାନ୍ତି । ଆଶ୍ରମରେ ଥାନ୍ତି ଅଗ୍ରଣୀ ମହାଶୟେ, କର୍ମୀ ଶ୍ରୀ ଫକୀର ମିଶ୍ର, ଶ୍ରୀ ଅଲେଖ ପାଣ୍ଡା ଆଦି । ତାଙ୍କ ପୁଅ ଶ୍ରୀ ମନମୋହନ ଚୌଧୁରୀ ସେତେବେଳେ ଦିଲ୍ଲୀରେ ଥାନ୍ତି, ତାଙ୍କ ଜ୍ୱାଇଁ ଶ୍ରୀ ଶରତ୍ ଚନ୍ଦ୍ର ମହାରଣା

ଥା'ନ୍ତି କେନ୍ଦୁଝର ଜିଲ୍ଲାରେ କଣ୍ଟିଆପଡ଼ାରେ, ଗୋପବାବୁଙ୍କ ସହୋଦର ଭାଇ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଭାଇବୋହୂ ଶ୍ରୀମତୀ ମାଳତୀ ଦେବୀ ଥା'ନ୍ତି ଅନୁଗୁଳ ଆଶ୍ରମରେ ।

ତାଙ୍କୁ ସେଠି ସେପରି ଅବସ୍ଥାରେ ବସିଥିବାର ଦେଖି ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀ ଓ ଶ୍ରୀମତୀ କୃଷ୍ଣପ୍ରିୟା ଦେବୀ ତାଙ୍କ ପାଖକୁ ଧାଇଁଗଲେ । ତାଙ୍କଠି କେବେ ଶ୍ୱାସବେଗ ଦେଖା ନ ଥିଲା, ବଡ଼େ଼ ଆଶ୍ଚର୍ଯ୍ୟ ହେଲେ ସେତେବେଳେ ଗୋପବାବୁ ସେମାନଙ୍କୁ କହିଲେ,

"ମୋର ଶ୍ୱାସବେଗ ହେଲାଣି, ଧଇଁ ଉଠୁଛି, ଭାରି କଷ୍ଟ ।" ଚହଳ ପଡ଼ିଗଲା । ସମସ୍ତେ ତାଙ୍କ ପାଖକୁ ଧାଇଁ ଆସିଲେ । ଶ୍ରୀ ଫକୀର ମିଶ୍ର ଦୌଡ଼ିଲେ ଡାକ୍ତର ଡାକ ।

ଗୋପବାବୁ ପୁଣି ଶୋଇବାକୁ ଚେଷ୍ଟା କଲେ । ନିଦହେବା ତ ଦୂର କଥା, ସେ ଶୋଇ ରହି ବି ପାରିଲେ ନାହିଁ । ସେ ଉଠି ବସିଲେ, ଧଇଁ ପେଲିଲା ପରି ହେଉଥାନ୍ତି, ତାଙ୍କୁ ଭାରି କଷ୍ଟ ହେଉଥାଏ, କହିଲେ "ପ୍ରାକୃତିକ ଚିକିତ୍ସା କରିବି, ପାଣି ଟବ୍‌ଟା ଆଣ ।"

ଆଣାଗଲା । ସେ ଟବ୍ ଭିତରେ ବସିଲେ । ଅଣ୍ଟାଯାକେ ପାଣି । କିନ୍ତୁ କିଛି ଫଳ ଦିଶୁ ନ ଥାଏ, ସେମିତି କଷ୍ଟରେ ଛଟପଟ ହେଉଥାନ୍ତି । ହଠାତ୍ ତାଙ୍କର ବ୍ୟସ୍ତ ହେବା ଛଟପଟ ହେବା କମିଗଲା । ସେ କହିଲେ, "ଓଃ ! ମୁଁ କଣ ଦେଖୁଛି ! କି ସୁନ୍ଦର ଆଲୋକ ! କି ଦିବ୍ୟ ଆଲୋକ ! ଆସିଛ ଯଦି ପ୍ରଭୁ, ମତେ କୋଳକୁ ନିଅ । ପୁଣ୍ୟମୟ, ତୁମରି ଇଚ୍ଛା ପୂର୍ଣ୍ଣ ହେଉ । ଦୟାମୟ, ତୁମରି ଇଚ୍ଛା ପୂର୍ଣ୍ଣ ହେଉ ।"

ଏହି କେତେପଦ କଥା ସେ ଦୁଇ ପାଞ୍ଚଥର କହିଲେ, ଆଉ କଣ ବି କହିଲେ, ପଷ୍ଟୋର ବାରି ହେଲା ନାହିଁ ।

ତାପରେ କହିଲେ, "ଦିଅ, ଏଥର ମତେ ଶୁଆଇ ଦିଅ, ମୁଁ ମରିଯାଏ ।" ଏତିକି କହିସାରିଲେ ପରେ ସେ ମୁଣ୍ଡକୁ ସାମ୍ନାକୁ ଓହଳାଇ ଦେଲେ । କିଏ ଜଣେ କହିଲେ, "ଜୟଗୁରୁ ।" ଗୋପବାବୁ ବି କହିଲେ, "ହଁ, ଜୟ ଗୁରୁ ।"

ତାଙ୍କ ତୁଣ୍ଡରୁ ଶେଷ ଉଚ୍ଚାରିତ ପଦ ସେତିକି ।

ସପ ପାରି ତାଙ୍କୁ ତଳେ ଶୁଆଇ ଦେବାକୁ ରମା ଦେବୀ କହିଲେ । ତଳେ ସପ ପରା ହେଲା, ତା ଉପରେ ରବର ଚଦର ଖଣ୍ଡିଏ । ତାଙ୍କୁ ଟେକିନେଇ ତା

ଉପରେ ଶୁଆଇ ଦିଆଗଲା, ମୁଣ୍ଡ ଥାଏ କୁଅଁଆଡ଼କୁ । ସେହିଠୁ ଗୋପବାବୁ ଘୁଡରୁ ବ୍ଳଦର କାଢ଼ି ପକାଇ ଜୋର୍‌ରେ ତାଙ୍କୁ ଫୋପାଡ଼ିଦେଲେ, ତାଙ୍କ ମୁହଁରୁ ଟିକିଏ ଫେଣ ବାହାରିଲା । ସେତେବେଳେ ଅଲେଖ ପାଢ଼ୀ ଧାଇଁ ଯାଇ କୋରାମିନ୍ ଆଣି ତାଙ୍କୁ ପନ୍ଦରଫୋଟା କୋରାମିନ୍ ଖୁଆଇ ଦେଲେ । ଶ୍ରୀମତୀ କୃଷ୍ଣପ୍ରିୟା ତାଙ୍କ ନାଡ଼ି ଦେଖିଲେ, ସେହିଠୁ ପାଟି କରି ଉଠିଲେ ଓ ତାଙ୍କ ଦୁଇହାତକୁ ଧରି କୃତ୍ରିମ ଶ୍ୱାସପ୍ରଶ୍ୱାସ କରାଇବାକୁ ଚେଷ୍ଟା କଲେ ।

ସେତିକିବେଳେ ଡାକ୍ତର ହରେନ୍ଦ୍ର ବସୁ ପହଞ୍ଚିଗଲେ, ଆଉ ୫ ମିନିଟ୍ ପରେ ପହଞ୍ଚିଗଲେ ଡାକ୍ତର ଶରତ୍ ଚନ୍ଦ୍ର ମିଶ୍ର । ଡାକ୍ତରମାନେ ଆସିଲାବେଳକୁ ଗୋପବାବୁ ଆଉ ନାହାନ୍ତି ।

୨୯ ଅପ୍ରେଲ ୧୯୫୮ ର ରାତି ୧୨ଟା ୫୫ରେ, ଡାକ୍ତରମାନେ ପହଞ୍ଚିବାର ପ୍ରାୟ ଅଧଘଣ୍ଟାଏ ପୂର୍ବରୁ ତାଙ୍କର ଅମରଆତ୍ମା ଏ ଶରୀର ଛାଡ଼ିଦେଇ ସ୍ୱର୍ଗଗାମୀ ହୋଇଥିଲା ।

ରମା ଦେବୀ ତଥାପି ଜାଣି ନ ଥିଲେ, ପ୍ରାଣକୃଷ୍ଣ ପଢ଼ିଆରୀ ମହାଶୟ ଆସି ଶୋକାକୁଳ ହେବାରୁ ସେ ବୁଝିଲେ, ମୂର୍ଚ୍ଛା ଗଲେ ।

## ବାବନ

ଖୋଳ ଚଢ଼େଇ ପିଞ୍ଜରା ଖାଲି କରିଦେଇ ଶୂନ୍ୟରେ ହଜି ଯାଇଥିଲା, ତାପରେ ଏ ବସୁଧାରେ ଶୋକର ଢେଉ ଉଠୁଥିଲା, ଭାଙ୍ଗୁଥିଲା ।

ରାତି ରାତି ଏ ଖବର ଖେଳିଗଲା ।

"ଏଁ ! ଗୋପବାବୁ ଚାଲିଗଲେ !" ଲୋକେ କନ୍ଦରୁ ଛୁଟି ଧାଇଁ ଆସିଲେ । ଏକା ଥୋଉଆ ସାହୁରୁ ବୋଲି ନୁହେଁ, ଚାରିଆଡ଼ୁ । ସେ' ପଢୁଲି 'ସମାଜ'ରେ ବାହାରିଥିଲି । ଖବର ପାଇ ସନ୍ଧ ଗୋଟାଏ ବେଳେ ପ୍ରକାଶ ବିଭାଗ ମନ୍ତ୍ରୀ ଶ୍ରୀ ରାଧାନାଥ ରଥ, ଶ୍ରୀ ସୁରେନ୍ଦ୍ର ପଟ୍ଟନାୟକ ଓ ଶ୍ରୀ ବନମାଳି ପଟ୍ଟନାୟକ ଆସିଥିଲେ । ଗାଡ଼ି ପଠା ହେଲି, ନବବାବୁ ଓ ମାଳତୀ ଦେବୀ ପାହାନ୍ତାକୁ ପହଞ୍ଚିଲେ । ଦିପହରେ ପହଞ୍ଚିଲେ ମନମୋହନ ବାବୁ ।

କଟକ ସହର ଓ ଓଡ଼ିଶା ସକାଳୁ କନ୍ଦ ଭାଙ୍ଗି ଛୁଟୁ ଛୁଟୁ ଶୁଣିଥିଲେ ଏ ଦାରୁଣ ଶୋକ-ସମ୍ବାଦ, ପିମ୍ପୁଡ଼ି ଧାର ପରି ମଣିଷ ଧାର ଲାଗିଗଲେ କଟକ ଥୋଉଆ ସାହୁ ଆଶ୍ରମ ମୁହଁକୁ ତାଙ୍କର ଶେଷ ଦର୍ଶନ ପାଇଁ । ସେମାନେ ଏ ଦେଶର ଜନତା, ସବୁ ଜାତି, ଶ୍ରେଣୀ, ସମ୍ପ୍ରଦାୟର, ସବୁ ବୟସର, ପିଲା, ବୁଢ଼ା, ଯୁବା, ପୁରୁଷ, ସ୍ତ୍ରୀ, ଧନୀ ବ୍ୟବସାୟୀ, ମୂଲିଆ, ହରିଜନ, ସମସ୍ତେ । ତାଙ୍କ ଭିତରେ ଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ, ଅନ୍ୟାନ୍ୟ ମନ୍ତ୍ରୀ, ଏମ୍. ଏଲ୍. ଏ. କେତେ, କେତେ ନେତା, କର୍ମୀ, ନାନା କ୍ଷେତ୍ରରେ ଓଡ଼ିଶାର ବରେଣ୍ୟ ଲୋକେ । ଓଡ଼ିଶା ଆସେମ୍ବ୍ଲି ବସିଥାଏ, ପ୍ରଶ୍ନୋତ୍ତର ସରିଲେ, ତାଙ୍କ ବିୟୋଗରେ ଶୋକ ପ୍ରସ୍ତାବ ପାଶ୍ ହେଲି, ଆସେମ୍ବ୍ଲି ସ୍ଥଗିତ ରଖାଗଲି । କଟକ ଡିଷ୍ଟ୍ରିକ୍ଟବୋର୍ଡ, ମ୍ୟୁନିସିପାଲିଟି ଅଫିସମାନ ବନ୍ଦ ରହିଲି, କଟକର ବାଲୁ ବଜାର, ଚୌଧୁରୀ ବଜାର, ନୟାସଡ଼କ ଆଦିରେ ଦୋକାନ ବଜାର ବନ୍ଦ ରହିଲି, କଟକ ସହର ତାର ମହାନ୍ ସନ୍ତାନର ତିରୋଧାନ ଯୋଗୁଁ ଶୋକ ପାଳିଲି । ସେହିପରି ଶୋକ ଦିବସ ପାଳିଲେ ବଡ଼, ରାମଚନ୍ଦ୍ରପୁର, ଓଡ଼ିଶାଯାକ ତାଙ୍କର ନାନା କର୍ମକେନ୍ଦ୍ର, ଓଡ଼ିଶାର ସାରା ସହରରେ ମଫସଲରେ ବସିଲି ଶୋକ ସଭା, ଲକ୍ଷ ଲକ୍ଷ ଲୋକ ଶୋକ କଲେ ।

ଦିନ ପ୍ରାୟ ୩ଟା ବେଳକୁ ଶବ ନେଇ ପଟୁଆର ଚାଲିଲି, ବିରାଟ ପଟୁଆର, ଅସମ୍ଭାଳ ଜନତା, ମୁହଁ କଳାକାଠ, ଆଖିରେ ଲୁହ, କାହାର ଶୋକ ଉଦ୍‌ବେଳ, ଚାଲିଲି ଥୋଉଆ ସାହୁରୁ ଜେଲ୍‌ଖାନା ରୋଡ଼ରେ, ସେଠୁ କଟକର ମୁଖ୍ୟ ରାସ୍ତା ମାରୱାଡ଼ିପଟି ନୟାସଡ଼କ ବାଟେ, ସେଠୁ ନଈକୂଳ, ସାହେବ୍‌ଜାଦା ବଜାର, ସ୍ୱରାଜ୍ୟାଶ୍ରମ, ବାଖରବାଦ ତାଙ୍କ ଘର, ସେଠୁ କାଠଯୋଡ଼ି ନଈ କୂଳେ କୂଳେ ଖାନ୍-ନଗର ମଶାଣିକି । ୧୯୩୬ରେ ଜେଲ୍‌ରୁ ଫେରିଲାବେଳେ ଯେପରି, —ରାସ୍ତା ଖୁନ୍ଦାଖୁନ୍ଦି, ଦୁଇକରେ କୋଠା ଛାତ ଉପରେ ବି ମଣିଷ ଆଟପଟାଳି, ମଝିରେ ମଝିରେ ଫୁଲମାଳ ପିନ୍ଧା ହେଉଛି, ରାସ୍ତା ଦିକର କୋଠା ଉପରୁ ପୁଷ୍ପ ବୃଷ୍ଟି ହେଉଛି, ହୁଳହୁଳି ପଡ଼ୁଛି, ସେଠି ନାହିଁ ଶ୍ରେଣୀ-ସଙ୍ଘର୍ଷ, ବର୍ଣ୍ଣ କି ଭାଷା କି ଧର୍ମ କି ବୁଦ୍ଧିର ଭେଦ, ଚାରିଆଡ଼ୁ ଅଜାଡ଼ି ହେଉଛି ହୃଦୟ-ଉଛୁଳା ସ୍ନେହ, ମୈତ୍ରୀ ।

ହେଇ, ଚାଲିଯାଉଛି ମଶାଣିକୁ ପଟୁଆର, —କୋକେଇରେ ବୁହା ହୋଇ ଚାଲିଯାଉଛନ୍ତି ସତେଅବା ଗୋଟିଏ ଯୁଗର ପ୍ରତୀକ, —ଚାଲି ଯାଉଛି, —ସତ୍ୟ, ଅହିଂସା, ପ୍ରେମ, ମୈତ୍ରୀ, ତ୍ୟାଗ, ନିରଳସ ଶ୍ରମ, ପରୋପକାର, ସଦାଚାର, ସୁନୀତି, ଆଦର୍ଶ, • ବିଶ୍ୱକୁଟୁମ୍ବିତାର ପ୍ରତୀକ, —ଗାନ୍ଧୀବାଦର ପ୍ରତୀକ, —ମହାତ୍ମାଜୀ ଚାଲିଯିବାର ୧୦ ବର୍ଷ ପରେ, —ଯାଉଛି —ବ୍ୟବସାୟୀ ମାର୍‌ୱାଡ଼ିଙ୍କ ଗୃହିଣୀ ଘର ଘର କାନ୍ଦୁଥିଲେ, —କାନ୍ଦୁଥିଲେ ମୂଲିଆଣୀ, ମେହେନ୍ତରାଣୀ, କାନ୍ଦୁଥିଲେ ମୌଲବୀ ଆଉ ପୁରୋହିତ, ମୁଁ କାର ଗର୍ଜନମସ୍ତ କ୍ଷମତା ଲଢ଼େଇ, ସ୍ୱାର୍ଥ ଅହଂକାର, ଲୋଭ, ଦୁରାଚାର, ଦୁର୍ନୀତି, ଅପବିତ୍ରତା ପୂରିଥିବା ସଂସାରରେ, ଚାଲିଛି ମଶାଣିକି ସନ୍ଥ-ଶରୀରଟିଏ, ଯେ ଥିଲେ ମୁଁ କାର ହୀନ, ଦୀନ, ପବିତ୍ର, ନିସ୍ପୃହ, ସନ୍ଥ୍ । ପଟୁଆର ଗାଉଛି ସେହି ଚିରନ୍ତନୀ ଅପୂର୍ବ ରାମଧୂନ୍—

"ରଘୁପତି ରାଘବ ରାଜା ରାମ୍
ପତିତ ପାବନ ସୀତା ରାମ୍"

ଏଇ ସେ କଟକ ସ୍ୱରାଜ୍ୟ ଆଶ୍ରମ, ସ୍ୱାଧୀନତା ଆନ୍ଦୋଳନର ଅନ୍ତୁଡ଼ିଶାଳ, ଏଇ ଗଳି ଗୋପବାବୁଙ୍କ ଘର, ଏଇ ସେ କାଠଯୋଡ଼ି ବାଲି, ଏଇ ବାଲିରୁ ଗଜୁରିଥିଲା ହଜାର ହଜାର ପ୍ରାଣରେ ସ୍ୱାଧୀନତା ବିପ୍ଳବର ଅଙ୍କୁର,—

"ଭାରତମାତାକୀ—"
"ଜୟ !"
"ମହାତ୍ମା ଗାନ୍ଧୀ କୀ"
"ଜୟ !"
"ବନ୍ଦେ ମାତରଂ"

ଆଉ ଏବେ, ମହାକାଳର ଛନ୍ଦାୟମାନ ପ୍ରଶାନ୍ତ ଗମ୍ଭୀର ସଙ୍ଗୀତ ଚାଲିଛି, —"ରଘୁପତି ରାଘବ—

ଟିକିଏ ପରେ, —କାଠଯୋଡ଼ି ବାଲିରେ ମହାଚଣ୍ଡିଆ ଆଗରେ ଜଳି ଉଠିଲା ଚିତାଗ୍ନି ।

ଗୋପବାବୁ ଚାଲିଗଲେ ।

## ତେପନ

ଦେଶସାରା ଶୋକୋଚ୍ଛ୍ୱାସ, ଶୋକସଭା, ଶୋକବାର୍ତ୍ତା, ନାନା ଲେଖା । ତାପରେ ପ୍ରତିବର୍ଷ ସ୍ମୃତି ସଭା, —ଜନ୍ମଦିନ, ପୁଣି ବର୍ଷିକିଆ ।

୧-୫-୧୯୫୮ର ଦୈନିକ 'ସମାଜ'ରେ ଏକଇଞ୍ଚିଆ ମୋଟା ମୋଟା ଅକ୍ଷରରେ ଶିରୋନାମା ଛପି බାହାରିଲା,—

"ପୂଜ୍ୟ ଗୋପବାବୁ ଆଉ ଇହଧାମରେ ନାହାନ୍ତି"

ତା ତଳକୁ, "ଓଡ଼ିଶାର ସମାଜସେବା ଓ ଜନକଲ୍ୟାଣ କ୍ଷେତ୍ରରୁ ବିରାଟ ବ୍ୟକ୍ତିତ୍ୱର ତିରୋଧାନ ।"...

..."ତାଙ୍କର ବିୟୋଗରେ ଓଡ଼ିଶାରେ ଶୋକଚ୍ଛାୟା"

ସେଥିରେ ବାହାରିଲା 'ପଣ୍ଡିତ ନୀଳକଣ୍ଠଙ୍କ ଶୋକବାର୍ତ୍ତା'—

"ପୁଣ୍ୟାତ୍ମା ଗୋପବନ୍ଧୁ ଚାଲିଗଲେ । ସେ ଥିଲେ ତ୍ୟାଗର ପ୍ରତୀକ । ମନୁଷ୍ୟକୁ ସର୍ବଦା ଆଦର୍ଶ ଭୂମିରେ ଦେଖି ମାନବଜଗତକୁ ଦେବତ୍ୱରେ ପରିଣତ କରିବା ଥିଲା ତାଙ୍କ ଚିରନ୍ତନ କାମନା ଓ ସେଥିପାଇଁ ଅତନ୍ଦ୍ରିତ ଅଧ୍ୟବସାୟ ।...ମହାତ୍ମା ଗାନ୍ଧୀଙ୍କ ମହାଦୀକ୍ଷାରେ ସେ ଅନୁପ୍ରାଣିତ ହୋଇ ଏ ଦେଶରେ ଯେଉଁ ଅକ୍ଷୟ କୀର୍ତ୍ତି ସଂସ୍ଥାପନ କରିଗଲେ ତାର ପଟାନ୍ତର ଏବେମଧ୍ୟ ନାହିଁ, କେବେ ମିଳିବ କହି ହେଉ ନାହିଁ ।..."

'ସମ୍ପାଦକୀୟ'ରେ ଶ୍ରୀ ରାଧାନାଥ ରଥ ତାଙ୍କ ଜୀବନୀ ଓ କାର୍ଯ୍ୟ ଆଲୋଚନା କରି ଦୀର୍ଘ ଲେଖାଟିଏ ପ୍ରକାଶ କରିଥିଲେ । ତାଙ୍କ ଗୁଣକୀର୍ତ୍ତନ କରିଥିଲେ । ନାନା କଥା ଭିତରେ ଲେଖିଥିଲେ—

"ବନ୍ଧୁତ୍ୱ ତୁଟିଗଲେ ମଧ୍ୟ ସେ ନୀତି ଓ ଆଦର୍ଶକୁ ଛାଡ଼ିବାକୁ ପ୍ରସ୍ତୁତ ନ ଥିଲେ । ...କେତେକ ନୈତିକତାବିହୀନ ଘଟଣା ବିରୁଦ୍ଧରେ ଜୀବନରେ ବହୁବାର ମଧ୍ୟ ଅନଶନ କରିଥିଲେ । ...ତାଙ୍କର ସମଗ୍ର ପରିବାରର ତ୍ୟାଗ ଓ ସେବା ଉତ୍କଳର ଜାତୀୟ ଜୀବନରେ ବିରାଟ ପ୍ରଭାବ ପକାଇଥିଲା । ଦରିଦ୍ର ଜନସାଧାରଣଙ୍କ ପାଇଁ ସେ ନିଜକୁ ଉତ୍ସର୍ଗ କରିଥିଲେ ଏବଂ ଅତି ସାଧାରଣ ଗରିବ ଲୋକଙ୍କ ପରି ଜୀବନଯାପନ କରୁଥିଲେ ।"

('ଗ୍ରାମସେବକ' ୫-୫-୧୯୫୮ରୁ ଉଦ୍ଧୃତ :—)

ରାଷ୍ଟ୍ରପତି ଡକ୍‌ଟର ରାଜେନ୍ଦ୍ର ପ୍ରସାଦ ଓଡ଼ିଶା ମୁଖ୍ୟମନ୍ତ୍ରୀ ଡକ୍‌ଟର ମହତାବଙ୍କୁ ତାଙ୍କ ଶୋକବାର୍ତ୍ତା ତାର କଲେ :—"...ତାଙ୍କୁ ହରାଇ ସାରା ଦେଶ, ବିଶେଷ କରି ଓଡ଼ିଶା, ଜଣେ ଏପରି ନିଷ୍ଠାପର ସେବକ ହରାଇଲା ଯେ କେବଳ ଦୀନତମ ଦରିଦ୍ରତମର ସେବାପାଇଁ ହିଁ ବ୍ୟାକୁଳ ଥିଲେ, ସେ କେବଳ ନିଜେ ସେବାରେ ଲାଗି ନ ଥିଲେ, ନିଜର ସମଗ୍ର ପରିବାରକୁ ବି ଦେଶସେବାରେ ଆତ୍ମନିୟୋଗ କରିବାକୁ ଉଦ୍‌ବୁଦ୍ଧ କରିଥିଲେ । ..."

ପଣ୍ଡିତ ନେହେରୁ ରମା ଦେବୀଙ୍କ ପାଖକୁ ତାର କଲେ,—

"...ଶୁଣି ମୁଁ ଅତିମାତ୍ରାରେ ଶୋକାଭିଭୂତ ହୋଇ ପଡ଼ିଲି..."

ଶ୍ରୀ ଜୟପ୍ରକାଶ ନାରାୟଣ ଓ ଶ୍ରୀମତୀ ପ୍ରଭାବତୀ ଦେବୀ ତାର କଲେ—

"...ଆମେ ମର୍ମାହତ ହୋଇଯାଇଛୁ । ଦେଶ ଉପରେ ଦାରୁଣ ପ୍ରହାର ପଡ଼ିଲା ।..."

ବିଦେଶ, ଭାରତ, ଓଡ଼ିଶାର ଗୃହୀଆଡ଼ୁ ଅସଂଖ୍ୟ ବ୍ୟକ୍ତି ଶୋକବାର୍ତ୍ତା ପଠାଇଲେ, କେନ୍ଦ୍ରମନ୍ତ୍ରୀମାନେ, ପ୍ରାଦେଶିକ ଲାଟ୍‌ମାନେ ମୁଖ୍ୟମନ୍ତ୍ରୀମାନେ, ମନ୍ତ୍ରୀମାନେ, ରାଜନୈତିକ ନେତାମାନେ, କର୍ମୀମାନେ, ଲେଖକ, ଅଧ୍ୟାପକ, କର୍ମଚାରୀ, ନାନା ବୃତ୍ତିଧାରୀ, ସମାଜର ସବୁ ଶ୍ରେଣୀର ମଣିଷ ।

୧୫-୫-୫୮ର 'ଗ୍ରାମସେବକ' ପ୍ରଥମ 'ସ୍ମୃତି ସଂଖ୍ୟା' । ତହିଁରେ ଅଗ୍ରଲେଖାଟି ବିନୋବାଙ୍କର । ବିନୋବା ଲେଖିଥିଲେ :—

"ସେ ଓଡ଼ିଶାର ଏ ଯୁଗର ସର୍ବଶ୍ରେଷ୍ଠ ପୁରୁଷ ଥିଲେ । ...ସେ ମହାତ୍ମା ଥିଲେ, କିନ୍ତୁ ତାଙ୍କ ହୃଦୟ ପରିବର୍ତ୍ତନର ପ୍ରକ୍ରିୟା କିଛି ଭିନ୍ନ ଥିଲା । ସେ ନିଜ ପରିବାରର ସମସ୍ତଙ୍କର ହୃଦୟ ପରିବର୍ତ୍ତନ କରାଇଥିଲେ । ସାରା ଦୁନିଆଁରେ ମଣିଷ

ମହାତ୍ମା ବୋଲାଇପାରେ । ମାତ୍ର ନିଜ ପରିବାରରେ ସେ ମହାତ୍ମା ବୋଲି ଗଣ୍ୟ ହୁଏ କି ନାହିଁ ତାହାହିଁ ମହତ୍ତ୍ୱର କଥା । ...ଗୃହସେବା ଛଡ଼ା ସେ ଅନ୍ୟକିଛି କାମ କରି ନାହାନ୍ତି ବା କରନ୍ତି ନାହିଁ । ...ଏ ପରିବାର ଭଳି ଅନ୍ୟ ପରିବାର ଆଉ ଭାରତରେ ଥିବାର ମୁଁ ଜାଣିନାହିଁ । ...ସେ ଯାବଜ୍ଜୀବନ ସନ୍ତ କାର୍ଯ୍ୟ କରିଛନ୍ତି..."

ବିଶିଷ୍ଟ ସାହିତ୍ୟିକ ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ ଲେଖିଥିଲେ :—

"ନିନ୍ଦା ପ୍ରଶଂସାର ଊର୍ଦ୍ଧ୍ୱରେ ସେ ଥିଲେ ନୀରବ ସାଧକ ଓ ଶ୍ରେଷ୍ଠ କର୍ମଯୋଗୀ—ନିଜ ପାଇଁ ଚିତ୍ତ୍ୱରପଥ ବାଛିବା ତାଙ୍କ ନୀତିବିରୁଦ୍ଧ ଥିଲା । ...ନିଜର ଐତିହ୍ୟ, ପରମ୍ପରା, ସାମନ୍ତ ମର୍ଯ୍ୟାଦା ଓ ଯୌବନସୁଲଭ ସୁଖବିଳାସ ପଦଦଳି ଷମତା ଉପରେ ପଦାଘାତ କରି ପୁଣି ସ୍ୱାଚ୍ଛନ୍ଦ୍ୟଲାଳିତା ସ୍ୱୀୟ ସହଧର୍ମିଣୀ ରମା ଦେବୀଙ୍କୁ ସେହି ଯଜ୍ଞର ସମିଧରୂପେ ଆଣି ଯେଉଁଦିନ ସେ ପଥ ଉପରେ ଛିଡ଼ା ହେଲେ, ସେଇଦିନୁଁ ଆମ ଶିକ୍ଷା ସଭ୍ୟତା ରାଜନୀତିର ଫମ୍ପା ଆବାଜ୍ ଯେମିତି ଆହୁରି ଜୋର୍‌ରେ ଶୁଣାଗଲା ଆଉ ତାହାରି ଭିତରୁ କ୍ରମେ ସ୍ପଷ୍ଟତର ହୋଇଉଠିଲା ଆମର ଯୁଗ ଯୁଗ ବ୍ୟାପୀ ବିରାଟ ସାଧନାଲବ୍‌ଧ ସ୍ୱାଧୀନତାର ଅସଲ ସ୍ୱରୂପ । ...ଏ ରାଜ୍ୟର ପଶ୍ଚ ପୋପରି ପୁରୁଣା ମେରୁଦଣ୍ଡଟା ଦୋହଲି ଯାଇ ଆରମ୍ଭ ହେଲା ଏକ ଅଭିନବ ବିପ୍ଳବ ।

ସବୁଠାରୁ ବେଶି ପାଇବାର ଯେତିକି ଶକ୍ତି ଓ ସାମର୍ଥ୍ୟ ଗୋପବାବୁଙ୍କର ଥିଲା, ସବୁଠାରୁ ବେଶି ଦେବାର ସାହସ କିମ୍ବା ଦୁଃସାହସ ହାସଲ କରିଥିଲେ । ଥରେ ସେ ଯେଉଁ କାମରେ ହାତ ଦେଉଥିଲେ ତାକୁ ଶେଷ ନ କରି, ତାହାର ଚରମ ନ ଦେଖି ସେ ତୃପ୍ତ ନ ଥିଲେ । ...ଥରେ ଯାହାକୁ ଛାଡ଼ିଲେ, ସେ ଆଡ଼କୁ ସେ ଆଉ ମୁହଁ ଫେରାଇଲେ ନାହିଁ...ପାରିବାରିକ ସଂଗଠନର ଏତେବଡ଼ ଆଦର୍ଶ ଆଉ କେଉଁଠି ଅଛି କି ନାହିଁ ସନ୍ଦେହ । ଯେଉଁ ଶିକ୍ଷାକୁ କେବଳ ପୋଷାକୀ ବୋଲି, ଯେଉଁ ବାବୁଆନୀକୁ ଅନ୍ୟର ଗୋଲାମୀ ଖୋଳ ବୋଲି ସେ ନିଜ ଦେହରୁ କାଢ଼ି ଫୋପାଡ଼ି ଦେଲେ, ସେଇ ଶିକ୍ଷା ସେଇ ବାବୁଆନୀକୁ ଆପଣା ପରିବାର ଉପରେ ସେ ଲଦି ଦିଅନ୍ତେ କିପରି ? ତାଙ୍କ ଆଦର୍ଶକୁ ଗତାନୁଗତିକ ଦୁନିଆଁ ଉପହାସ କରୁ, କିନ୍ତୁ ଜଗତରେ ଏଭଳି କୌଣସି ଶକ୍ତି ନାହିଁ, ଯାହା ତାଙ୍କୁ ନିଜ ନୀତିପଥରୁ କେବେ ଟଳାଇ ପାରିଛି ।"

ବିଶିଷ୍ଟ ସାହିତ୍ୟିକ ଡକ୍ଟର ମାୟାଧର ମାନସିଂହ ଲେଖିଥିଲେ :—

"...ଗୋପବାବୁଙ୍କ ଜୀବନ ଆମକୁ ନିକଟତମ ଦୃଷ୍ଟାନ୍ତ ଦେଇଯାଇଛି ଯେ ମନୁଷ୍ୟ ପ୍ରକୃତିରେ ବଞ୍ଚେ ପଦାର୍ଥର ସଂଗ୍ରହରେ ନୁହେଁ, ପଦାର୍ଥର ପ୍ରତ୍ୟାଖ୍ୟାନରେ । ...ମନୁଷ୍ୟର ପରମ ଆଦର୍ଶ ତ୍ୟାଗରେ । ନିଜର ସକଳ ଆସକ୍ତି କାଟି ପାରିଥିବାରୁ

ତାଙ୍କ ପ୍ରତି କୋଟିଜନ ହୃଦୟରେ ଗଭୀର ଆପଣ୍ତର ସଞ୍ଚାର କରାଇ ପାରିଛନ୍ତି । ତ୍ୟାଗ ଦେଇ ଗୋପବାବୁ ଆଜ ଓତପ୍ରୋତ ମିଶି ଯାଇଛନ୍ତି ସମଗ୍ର ଜନତାର ବ୍ୟକ୍ତିତ୍ୱରେ ।"

ଶ୍ରୀ ଧୀରେନ୍ଦ୍ର ମଜୁମ୍‌ଦାର (ସର୍ବସେବା ସଂଘ) ଲେଖିଲେ :

"ସେ ୪୦ ବର୍ଷ ହେଲା ସ୍ୱାଧୀନତା ସଂଗ୍ରାମ ତଥା ସମାଜସେବାରେ ନିଜ ଜୀବନକୁ ଏପରି ଓତପ୍ରୋତ କରି ଦେଇଥିଲେ ଯେ ସେ ନିଜେ ଗୋଟିଏ ସଂସ୍ଥା ହୋଇ ଯାଇଥିଲେ ।"

ପାଟ୍‌ନା ବିଶ୍ୱବିଦ୍ୟାଳୟର କୁଳପତି ଡକ୍‌ଟର ବଳଭଦ୍ର ପ୍ରସାଦ ଲେଖିଲେ :

"ଗୋପବାବୁ କେବଳ ଓଡ଼ିଶାର ନୁହେଁ, ଭାରତର ଅଦ୍ୱିତୀୟ ବ୍ୟକ୍ତି ଥିଲେ । ତାଙ୍କର ସମସ୍ତ ଜୀବନ ଆଦର୍ଶମୟ ଥିଲା । ସେ ଆଦ୍ୟରୁ ଅନ୍ତଯାଏ ସ୍ୱାର୍ଥତ୍ୟାଗର ମୂର୍ତ୍ତି ପ୍ରତୀକ ଥିଲେ ।"

ଶ୍ରୀମତୀ ସରଳା ଦେବୀ ଲେଖିଲେ, "ଗୋପବାବୁଙ୍କ ଭଳି ଲୋକ ଓଡ଼ିଶାରେ କ୍ୱଚିତ୍ ଜନ୍ମିଥିବେ ।"

ଶ୍ରୀ ମଦନ ମୋହନ ସାହୁ ଲେଖିଲେ—"ଓଡ଼ିଶାର କର୍ମକ୍ଷେତ୍ରରେ ସେ ମଧୁବନ୍ଧୁ ।"

ଶ୍ରୀମତୀ ବୈଦେହୀ ପଣ୍ଡା ଲେଖିଲେ, "ଓଡ଼ିଶାର ଗାନ୍ଧୀ ଆଉ ନାହାନ୍ତି ।" ଅସଂଖ୍ୟ ଲୋକ ତାଙ୍କୁ 'ଓଡ଼ିଶାର ଗାନ୍ଧୀ' ବୋଲି ଭାବୁଥିଲେ ।

ଶ୍ରୀ ଭଗୀରଥୀ ମହାପାତ୍ର, ଶ୍ରୀ ବୀରକିଶୋର ଦାସ, ଶ୍ରୀ ପଦ୍ମନାଭ ଗୁପ୍ତ ଆଦି ଅନେକେ ତାଙ୍କ ବିଷୟରେ ଲେଖିଲେ । ଶ୍ରୀ ପ୍ରାଣକୃଷ୍ଣ ପଢ଼ିଆରୀ ଗୋଟିଏ ତଥ୍ୟପୂର୍ଣ୍ଣ ଦୀର୍ଘ ଲେଖା ପ୍ରକାଶ କଲେ । ଆହୁରି ଅନେକ ଲୋକ ଲେଖିଥିଲେ ।

ଭାରତର ବିଭିନ୍ନ ସର୍ବୋଦୟ କର୍ମୀମାନେ ଅନେକେ ତାଙ୍କୁ ଡାକୁଥିଲେ 'ବାପା' ବୋଲି, ସେମାନେ ବି ଲେଖା ପ୍ରକାଶ କଲେ ।

(ଗ୍ରାମସେବକ ୨୧-୪-୫୧, ସ୍ମୃତି ସଂଖ୍ୟା)

ମୋ ଲେଖାଟିଏ, 'ପୂଜ୍ୟ ଗୋପବାବୁ' —ଏ ବହିରେ ଅଛି ।

ସୁଲେଖକ ଓ ସମାଜସେବୀ ଡାକ୍ତର ରାଧାଚରଣ ପଣ୍ଡା ଲେଖିଥିଲେ :

"ଉତ୍କଳମଣିଙ୍କ ପରେ ଓଡ଼ିଶାରେ 'ଆଦର୍ଶ ପୁରୁଷ' ଥିଲେ ୬ ଗୋପବନ୍ଧୁ ଚୌଧୁରୀ । ଉଚ୍ଚଶିକ୍ଷା, ଉଚ୍ଚ ପଦବୀ ଓ ପୈତୃକ ଧନଦୌଲତ ସବୁ ତ୍ୟାଗ କରି,

ରାଜନୀତିକ କ୍ଷମତାଲାଭ ପାଇଁ ଭ୍ରୂକ୍ଷେପ ନ କରି, ବିଶ୍ୱମାନବ ଗାନ୍ଧିଜୀଙ୍କ ନୀତିକୁ ଅକ୍ଷରେ ଅକ୍ଷରେ ପାଳନ କରି କେବଳ 'ଜନସେବା' କରିବା ବାଟରେ ନିଜର ସମସ୍ତ ସମୟ କାଟିବା ପାଇଁ ଗୋପବନ୍ଧୁ ଚୌଧୁରୀ ଯେଉଁ ତ୍ୟାଗ ଦେଖାଇ ଯାଇଛନ୍ତି ତା ବାସ୍ତବରେ ସମସ୍ତଙ୍କ 'ଆଦର୍ଶ' ହେବାକୁ ହେବ । ଓଡ଼ିଶାରେ ଗତ ୩୪ ବର୍ଷ ମଧ୍ୟରେ ମୁଁ ଦେଖିଥିବା ଅନ୍ୟ କୌଣସି ବ୍ୟକ୍ତି ଏପରି ଉଚ୍ଚ ଆସନ ପାଇଥିବା ମୁଁ ଜାଣେ ନାହିଁ ।…"

ଶ୍ରୀ ଶ୍ୟାମ ସୁନ୍ଦର ମିଶ୍ର (ହିନ୍ଦ୍ ସେବକ ସମାଜ) ନିଜ ସ୍ମୃତି ଲେଖି ଶେଷରେ ଲେଖିଲେ— "ପ୍ରାଣ ପୁଲକିତ ହେଉଛି କେବଳ ଏହି କଥା ଭାବି ଯେ ଏଡ଼େ ବଡ଼ ତ୍ୟାଗବୀର ଜଣେ ଆମ ଦେଶରେ ଜନ୍ମ ହୋଇଥିଲେ ।"

ଗୁଜୁରାଟର ଶ୍ରୀ ଈଶ୍ୱରଲାଲ୍ ବ୍ୟାସ୍ (ଓଡ଼ିଶାରେ ପ୍ରସିଦ୍ଧ ଜନସେବୀ ରଚନାତ୍ମକ କର୍ମୀ ଓ ପଚ୍ଛେ ସର୍ବୋଦୟ କର୍ମୀ ବ୍ୟାସ୍‌ଜୀ) ଲେଖିଲେ, "ତାଙ୍କର ସ୍ନେହ ମତେ ବାନ୍ଧି ରଖିଥିଲା । ମୁଁ ୭ ଦିନ ପାଇଁ ଓଡ଼ିଶାକୁ ଆସିଥିଲି । ଗାନ୍ଧୀଜୀଙ୍କ ନିର୍ଦ୍ଦେଶରେ ଓ ଗୋପବାବୁଙ୍କ ସ୍ନେହପୂର୍ଣ୍ଣ ନେତୃତ୍ୱରେ ମୁଁ ଓଡ଼ିଶାରେ ମୋ ଶକ୍ତି ମୁତାବକ ସେବାକାର୍ଯ୍ୟ କରି ଚାଲିଛି (ଶେଷରେ ଯୋରିଆ ସାହି ଆଶ୍ରମରେ ଥାଇ ଇହଧାମ ଛାଡ଼ିଲେ) ।

ଶ୍ରୀ ନାରାୟଣ ବୀରବର ସାମନ୍ତ ଲେଖିଥିଲେ :

"…ନୈତିକତା ଭିନ୍ନ ଭୌତିକତାର ବିକାଶ ବିଡ଼ମ୍ବନା ମାତ୍ର । ବରଂ ତାହା ଅଧୋଗାମୀ କରିବାରେ ଯଥେଷ୍ଟ ସାହାଯ୍ୟ କରେ । ଆମ ଗୋପବାବୁ ମାନବ ଚରିତ୍ରକୁ ବିଶ୍ଳେଷଣ କରି ଏହିପରି ବୁଝିଥିଲେ । ଭୋଗର ଅଭୂତପୂର୍ବ ଆଶାତୀତ ଆକର୍ଷଣମାନ ତରଙ୍ଗ ପରେ ତରଙ୍ଗ ଭଳି ତାଙ୍କ ପାଦତଳେ ନିସ୍ଫଳ ମୁଣ୍ଡ ପିଟିଛନ୍ତି । କିନ୍ତୁ ନିରସ୍ତ ହୋଇ ଫେରିଛନ୍ତି ତାଙ୍କ ହୃଦୟପର୍ବତର କମ୍ବା ପାଷାଣ-ଶଯ୍ୟାର ଅଟଳତା କିମ୍ବା ଅଚଳତା ନିକଟରେ ହାରି ମାନି । ସେହି ନୈତିକ ଆଲୋକ ପ୍ରଭାବରେ କୌଣସି ଭ୍ରାନ୍ତି ତାଙ୍କୁ ଛୁଇଁଇ ପାରି ନାହିଁ । ଏତେ ବିରାଟ କର୍ମମୟ ଜୀବନ ତାଙ୍କର ଏପରି ନିର୍ଦ୍ଦୋଷ ଓ ନିର୍ଭୁଲ ଥିଲା ଯେ ତାଙ୍କୁ ଦିନେହେଲେ କେବେ ସଂଶୋଧନ କରିବାକୁ ପଡ଼ି ନାହିଁ କିମ୍ବା ପୂର୍ବକୃତ ଭ୍ରାନ୍ତି ପାଇଁ ଅନୁତାପ କରିବାକୁ ପଡ଼ି ନାହିଁ ।"

ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ (କୋରାପୁଟର କଂଗ୍ରେସ ନେତା, ଏକଦା ମନ୍ତ୍ରୀ) "ମୁଁ ତାଙ୍କ କଥା ଅନୁଯାୟୀ ଚାକିରି ଛାଡ଼ି ଲୁଣ ସତ୍ୟାଗ୍ରହରେ ଯୋଗଦେଲି । ମୋ ରାଜନୈତିକ ଜୀବନ ସେଠୁ ଆରମ୍ଭ ହେଲା ଏବଂ ତାଙ୍କର ଆନୁକୂଲ୍ୟରେ ଆଜିକାଲି

ଅନେକ ଲୋକ ଆମ ଦେଶରେ ନେତା ହୋଇ ବାହାରିଲେଣି । କିନ୍ତୁ ଗୋପବାବୁଙ୍କ ଭଳି ନେତା ମିଳିବା ଅତି ବିରଳ । ସେ ଥିଲେ ନୀରବ ସାଧକ । ଗଠନମୂଳକ କାର୍ଯ୍ୟ ଥିଲା ତାଙ୍କର ପ୍ରାଣ, ସାଧନା ଓ ସାଧ ।”

ଅଧ୍ୟାପକ ବିରଜା ମୋହନ ସେନାପତି ଲେଖିଥିଲେ :—

“ତାଙ୍କୁ ସନ୍ଥ କହିଲେ କିଛିମାତ୍ର ଅସଙ୍ଗତ ହେବ ନାହିଁ···ଉଚ୍ଚଶିକ୍ଷିତ ଓ ବିଦ୍ୱାନ୍ ଥିଲେ ଏବଂ ତାଙ୍କର ଉଚ୍ଚ ଚିନ୍ତାଧାରା ଥିଲା, କିନ୍ତୁ ସେ ଅତି ସରଳ ଜୀବନଯାପନ କରୁଥିଲେ, ତାଙ୍କର କୌଣସି ଆଡ଼ମ୍ବର ନ ଥିଲା ଏବଂ ସେ ସଭା ସମିତିମାନଙ୍କରେ ବୃଥା ଭାଷଣ ଦେଉ ନ ଥିଲେ । ସେ ସଂଯତ ଭାବରେ କଥାଭାଷା କରୁଥିଲେ ଏବଂ ଅଳ୍ପ ଲୋକ ଓ ତାଙ୍କ ସହକର୍ମୀଙ୍କ ସହିତ ସାରଗର୍ଭକ ଆଲୋଚନା କରୁଥିଲେ । ଗୋପବାବୁ ଥିଲେ ନୀରବ କର୍ମୀ, ବୃଥା ବାକ୍ୟବ୍ୟୟ ନ କରି ସେ କାର୍ଯ୍ୟ କରିବାକୁ ଅଧିକ ପସନ୍ଦ କରୁଥିଲେ । ତ୍ୟାଗର ମହାନ୍ ଆଦର୍ଶରେ ଗୋପବାବୁଙ୍କ ମହତ୍ତ୍ୱ । ସେ ସର୍ବସ୍ୱ ତ୍ୟାଗ କରିଥିଲେ ।”

ଶ୍ରୀ ଫକୀର ମିଶ୍ର ଲେଖିଥିଲେ,—“ସେ ‘ଡିକ୍ଟେଟର୍’ ହୋଇ ପାରିଥିଲେ ନିଜ ପ୍ରସନ୍ନବଳରେ । ଡେପୁଟିଙ୍କୁ ଅଡେପୁଟିଙ୍କୁ, ନେତାଙ୍କୁ କର୍ମୀ ଓ ସେଥିରୁ ସତ୍ୟାଗ୍ରହୀ, ସେଠୁ ଶେଷରେ ଶୂନ୍ୟ, ନିରହଙ୍କାର, ତ୍ୟାଗବୀର ଆଖ୍ୟା ବୋହିବାକୁ ତ ସ୍ୱଭାବତଃ ନାରାଜ ।”

ଶ୍ରୀ ରାମକୃଷ୍ଣ ପତି, କମ୍ୟୁନିଷ୍ଟ ନେତା ଲେଖିଛନ୍ତି—(ଆଗ ସେ ଲେଖିଛନ୍ତି ଯେ ସେ କମ୍ୟୁନିଷ୍ଟ ନୀତିରେ ବିଶ୍ୱାସ କରନ୍ତି, ସର୍ବୋଦୟ ନୀତିରେ ନୁହେଁ, କିନ୍ତୁ—) “ଗୋପବାବୁଙ୍କ ଭଳି ସର୍ବୋଦୟବାଦୀ ଅଛନ୍ତି, କିନ୍ତୁ ଗୋପବାବୁଙ୍କଠାରେ ଅସୂୟା ପ୍ରକାଶ ପାଏ ନାହିଁ, କ୍ରୋଧ ପ୍ରକାଶ ପାଏ ଓ ସେ କ୍ରୋଧନୀତିରୁ ଜାତ ଦୃଢ଼ପ୍ରତ୍ୟୟ (conviction)ର ଖିଲାପ ହେଲେ ପ୍ରକାଶ ପାଏ, କିନ୍ତୁ ଅସୂୟା ପ୍ରକାଶ ପାଏ ନାହିଁ କାହିଁକି ? କାରଣ ଅତି ସ୍ପଷ୍ଟ । ଗୋପବାବୁ ସର୍ବୋଦୟବାଦକୁ ଜୀବନର ମଜ୍ଜାଗତ କରି ଦେଇଥିଲେ । ନିଜର ଜୀବନକୁ ଆଦର୍ଶ କରି ସମାଜରେ ରଖି, ସମାଜସେବା କରିବା ଲକ୍ଷ୍ୟ ତାଙ୍କ ମତରେ ସର୍ବୋଦୟବାଦ ଜୀବନର ଆଭିମୁଖ୍ୟ । ଗୋପବାବୁ କେଉଁ ପରିମାଣରେ ସଫଳ ହୋଇଛନ୍ତି ମୁଁ କହିପାରିବି ନାହିଁ, କିନ୍ତୁ ଆନୁପାତିକ ଭାବରେ ଦେଖିଲେ ଅନ୍ୟମାନଙ୍କଠୁ ସେ ବହୁତ ଉଚ୍ଚରେ । ସର୍ବୋଦୟବାଦ ଉପରେ ତାଙ୍କର ଦୃଢ଼ ବିଶ୍ୱାସ ଓ ଆସ୍ଥା ତାଙ୍କୁ ଅନ୍ୟମାନଙ୍କଠାରୁ ପୃଥକ୍ ରଖିଛି । ଅନ୍ୟାନ୍ୟ ରାଜନୈତିକ ପନ୍ଥାରେ ବିଫଳ ହେବାରୁ ସେ ସର୍ବୋଦୟବାଦକୁ ଆଶ୍ରୟସ୍ଥଳ କରି ନାହାନ୍ତି । ସର୍ବୋଦୟର ବଡ଼ ଅଙ୍ଗ ବ୍ୟକ୍ତିନିରପେକ୍ଷ

ମାନବବାଦ ନିଜର ଦାର୍ଶନିକ ଆଦର୍ଶ ବୋଲି ସେ ଗ୍ରହଣ କରିଥିଲେ । ଆତ୍ମସାତ୍ କରିବା ବା ରାଜନୈତିକ ପିପାସାକୁ ଚରିତାର୍ଥ କରିବା ପିପାସା ତାଙ୍କର ନ ଥିଲା ।

ଆଉ ଗୋଟିଏ ଦୃଷ୍ଟିରେ ମୁଁ ଗୋପବାବୁଙ୍କୁ ଦେଖେଁ ଓ ତାଙ୍କ ମୃତ୍ୟୁରେ ଏକ ଅପୂରଣୀୟ କ୍ଷତି ହେଲା ବୋଲି ଭାବେ । ଆମର ସମାଜରେ ନୈତିକତା ଦେଖିବାକୁ ମିଳେ ନାହିଁ । ତେଣୁ ଏପରି ସମାଜରେ ଜଣେ ଜଣେ ନୀତିବାନ୍ ମାନବ-ସେବା-ବ୍ରତୀ ତ୍ୟାଗୀ ପୁରୁଷଙ୍କର ଉପସ୍ଥିତି ସମାଜରେ ବହୁ ଲୋକଙ୍କୁ ଓ ଗୋଷ୍ଠୀଙ୍କୁ ମଧ୍ୟ ବିପଥରୁ କ୍ଷାନ୍ତ କରାଇଦିଏ । ବତୀଘର ଭଳି ସେମାନେ ବିପଦଗ୍ରସ୍ତ ନାବିକକୁ ପଥର ନିର୍ଦ୍ଦେଶ ଦିଅନ୍ତି ।"

୨୯-୪-୭୧ 'ଗ୍ରାମସେବକ'ର ସ୍ମୃତି ସଂଖ୍ୟାରେ ବିଶିଷ୍ଟ ଲେଖକ ଶ୍ରୀ ବିନୋଦ କାନନ୍‌ଗୋ 'ମୋ ମାପକାଠିରେ' ବୋଲି ଲେଖାଟିଏ ଲେଖିଲେ, ଲେଖିଥିଲେ :

"ଗୋପବାବୁ ଥିଲେ ଜଣେ ପ୍ରକୃତ 'ଜନସେବକ'...୧୯୩୧ ମାର୍ଚ୍ଚରୁ ୧୯୫୮ ଏପ୍ରିଲ ପର୍ଯ୍ୟନ୍ତ ତାଙ୍କୁ ଭଲ ଭାବରେ ଲକ୍ଷ୍ୟ କରିଛି ଓ ଦେଖିଛି ଯେ ଅନ୍ୟମାନେ ଯେତିକି ଦେଖୁଥିଲେ ତା ବାହାରେ ତାଙ୍କର ପଇସାଟିଏ ସୁଦ୍ଧା ନ ଥିଲା । ଯେଉଁଦିନ ସେ ଏ ସଂସାର ଛାଡ଼ି ଚାଲିଗଲେ ସେହିଦିନ ଉପରବେଳା ତାଙ୍କ ପାଖରେ ଦୁଇ ଟଙ୍କା ଥିଲା କିନା—ତା'ଠାରୁ ଅଧିକା ନୁହେଁ । ତାଙ୍କୁ ଅନ୍ୟ ଭାବରେ କିଏ ଯେତେ ବଡ଼ ବୋଲି ଦେଖିଥାଉ ପଛକେ ମୁଁ କେବଳ ଏଇ ଗୋଟିକ ଉପାୟରେ ତାଙ୍କ ବଡ଼ପଣିଆକୁ ପରୀକ୍ଷା କରିଛି । ମୋର (ସେ) ମାପକାଠିରେ ଶେଷ ପର୍ଯ୍ୟନ୍ତ ଉଠି ଯାଇଥିଲେ ଗୋପବାବୁ । ଏହି ଦୃଷ୍ଟିରୁ ଆଉ ଦୁଇଜଣଙ୍କୁ ମୁଁ ବରାବର ଲକ୍ଷ୍ୟ କରେ । ସେମାନେ ହେଉଛନ୍ତି ଆଚାର୍ଯ୍ୟ ହରିହର ଓ ରମା ଦେବୀ । ସେମାନଙ୍କୁ ପ୍ରଶଂସା କରିବାର ଯୋଗ୍ୟତା ହାସଲ କରିବାକୁ ମୁଁ ସମର୍ଥ ହୋଇନାହିଁ ।"

'ଗ୍ରାମସେବକ'ର ୮-୫-୧୯୬୩ ସଂଖ୍ୟାରେ ଡକ୍ଟର ହରେକୃଷ୍ଣ ମହତାବ ଲେଖିଥିଲେ :

"ଗୋପବନ୍ଧୁ ଚୌଧୁରୀ ଏକ ମହାନ୍ ବ୍ୟକ୍ତି ଥିଲେ, ଏଣୁ ତାଙ୍କର ଜୀବନୀର ବିଭିନ୍ନ ଦିଗ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରାଯାଇପାରେ । ଦେଶର ଜୀବନଧାରା ଋଷିମୁନିମାନଙ୍କଦ୍ୱାରା ସଂଚାଳିତ । ଅବସ୍ଥାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ବିରାଟ ସଂଗଠକମାନେ ବାହାରି ଜାତିର ପ୍ରବାହକୁ ନିୟନ୍ତ୍ରିତ କରନ୍ତି । ମହାତ୍ମା ଗାନ୍ଧୀ ସେହିପରି ଜଣେ ମୂଳପ୍ରବର୍ତ୍ତକ । ନୂତନ ପରିସ୍ଥିତିରେ ଭାରତକୁ ନୂତନ ଭାବରେ ଗଠନ କରିବା ପାଇଁ ସେ କାର୍ଯ୍ୟ କରିଥିଲେ । ତାଙ୍କର ସଂଗଠନ ଫଳରେ ଭାରତ

ସ୍ୱାଧୀନ ହେଲା । ସ୍ୱାଧୀନ ଭାରତର ସ୍ୱାଧୀନତା ରକ୍ଷା ଓ ସମୃଦ୍ଧି ପାଇଁ ମଧ୍ୟ ସେ ନୂତନ ଜୀବନଧାରାର ନିର୍ଦ୍ଦେଶ ଦେଇଥିଲେ । ସେ ନିର୍ଦ୍ଦେଶ ଆଜି ସମ୍ଭୋଗର ଲାଳସାରେ ବିସ୍ମୃତପ୍ରାୟ । କିନ୍ତୁ ଗୋପବନ୍ଧୁ ଚୌଧୁରୀ ଥିଲେ ସେ ନିର୍ଦ୍ଦେଶର ଜଣେ ପ୍ରତୀକ । ଜାତୀୟ-ଜୀବନ ସଂଯମ, ନିଷ୍ଠା ଓ ତ୍ୟାଗ ଉପରେ ପ୍ରତିଷ୍ଠିତ ହେବା ଉଚିତ—ଏହା ହିଁ ଥିଲା ଗାନ୍ଧିଜୀଙ୍କର ନିର୍ଦ୍ଦେଶ । ଏହି ନିର୍ଦ୍ଦେଶ ଅନୁସାରେ ଗ୍ରାମସେବା, ଭୂଦାନ ଇତ୍ୟାଦି କାର୍ଯ୍ୟକ୍ରମର ସୃଷ୍ଟି । ଗୋପବନ୍ଧୁ ଚୌଧୁରୀ ଗାନ୍ଧୀଜୀଙ୍କ ନିର୍ଦ୍ଦେଶ ଅକ୍ଷରେ ଅକ୍ଷରେ ଓ ନିଜ ପାରିବାରିକ ଜୀବନରେ ପାଳନ କରିଥିଲେ । ଏମ୍.ଏ. ପାଶ୍ କରି ସେ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ହୋଇଥିଲେ । ସମୃଦ୍ଧିଶାଳୀ ପରିବାରରେ ମଧ୍ୟ ତାଙ୍କର ଜନ୍ମ । କିନ୍ତୁ ଜୀବନସାରା ନିଜକୁ ଓ ନିଜର ପରିବାରବର୍ଗଙ୍କୁ ଯେପରି ଭାବରେ ସେ ସଂଯମ ଶୃଙ୍ଖଳା ଭିତରେ ଚଳାଇଥିଲେ, ତାହା ଆଜି ମନେକଲେ ରୋମାଞ୍ଚ ଜାତ ହୁଏ । ଏହି ପ୍ରକାର ସଂଯମ ଓ ଶୃଙ୍ଖଳାକୁ ତପସ୍ୟା କୁହାଯାଏ । ଗୋପବନ୍ଧୁ ଚୌଧୁରୀଙ୍କ ତପସ୍ୟା ନୂତନ ଭାରତର ମୂଳଦୁଆ ଭିତରେ ଲୁଚି ଯାଇଛି । କିନ୍ତୁ କାଳକ୍ରମେ ସେ ତପସ୍ୟା ପ୍ରତି ଲୋକଙ୍କର ଦୃଷ୍ଟି ଯିବ, ଏଥିରେ ସନ୍ଦେହ ନାହିଁ ।

...ଗାନ୍ଧିଜୀ ବା ଗୋପବନ୍ଧୁ ଚୌଧୁରୀଙ୍କ ପରି ବ୍ୟକ୍ତିଙ୍କ ତପସ୍ୟା ବ୍ୟର୍ଥ ହେବାର ନୁହେଁ ।...'' ତାଙ୍କର ଶତ୍ରୁ ତ କେହି ନ ଥିଲେ, କିନ୍ତୁ କେତେ ଲୋକ ତାଙ୍କ ପ୍ରତି ବିମୁଖ ବି ଥିଲେ । ସେହିପରି ଜଣେ ଥିଲେ ପୁରୁଣା କଂଗ୍ରେସ୍ କର୍ମୀ ଓ ବୈତ୍ତ ପାଖ ଚମ୍ପାପୁର 'ଗାନ୍ଧୀ ଆଶ୍ରମ'ର ପ୍ରତିଷ୍ଠାତା, ବିଦ୍ୱାନ୍, ଲେଖକ, ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର । ସେ ବିକ୍ରମ କେଶରୀ ବରାଳଙ୍କୁ ଗୋପବାବୁଙ୍କ ସମ୍ବନ୍ଧେ ୩୦-୧୦-୬୦ରେ କଟକ କାଳୀଗଳିରୁ ୧୧ ପୃଷ୍ଠା ଲେଖି ଦେଇଥିଲେ ତହିଁରୁ ପ୍ରାୟ ସମୁଦାୟ ତଳେ ଦିଆଗଲା :

ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର :

"୧୯୨୧ରେ ସେ ଡେପୁଟି ଚାକିରି ଛାଡ଼ି କଂଗ୍ରେସର ଅସହଯୋଗ ଆନ୍ଦୋଳନରେ ଯୋଗଦେଲେ । ତାପରେ ଜଣେକ ସହକର୍ମୀ ଦୃଷ୍ଟିରେ ମୁଁ ତାଙ୍କୁ ଦେଖିଛି । ମୋର କର୍ମପ୍ରବୃତ୍ତି ବଡ଼ ଉଗ୍ର, ଗୋପବାବୁ ଧୀର ଓ ଗମ୍ଭୀର । ମୋର କର୍ମନିଷ୍ଠାକୁ ଅନୁମୋଦନ କରୁଥିଲେ ଏବଂ ପସନ୍ଦ ମଧ୍ୟ କରୁଥିଲେ—କିନ୍ତୁ ମୋର ଉଗ୍ର ପ୍ରବୃତ୍ତିକୁ ସମାଲୋଚନା କରୁଥିଲେ । ମୁଁ ତାଙ୍କ ସମାଲୋଚନାକୁ ଗ୍ରହଣ ନ କରି ତାଙ୍କର ଅତି ଶୀତଳ ଓ ଧୀର ଗତିକୁ ପସନ୍ଦ କରିପାରେ ନାହିଁ ।

୧୯୨୧ ମସିହାର ଆନ୍ଦୋଳନର କାର୍ଯ୍ୟକ୍ରମରେ ବିଶେଷ ସକ୍ରିୟ ଅଂଶ ନେବାର ଗୋପବାବୁଙ୍କୁ ମୁଁ ଦେଖି ନାହିଁ । କିନ୍ତୁ ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହୃତ

ହେବାପରେ ୧୯୨୩ ମସିହାରେ ଜେଲ୍‌ରୁ ଖଲାସ ହୋଇ କଟକ ସ୍ୱରାଜ୍ୟାଶ୍ରମରେ ରହି କଂଗ୍ରେସ କାର୍ଯ୍ୟ କଲାବେଳେ ଗୋପବାବୁଙ୍କୁ ଭଲ କରି ଚିହ୍ନିବାକୁ ପାଇଲି । ଦେଶରୁ ସମସ୍ତ ପ୍ରକାର ଉନ୍ମାଦନା କମି ଯାଇଛି । କର୍ମୀସବୁ ଛତ୍ରଭଙ୍ଗ ଦେଇଛନ୍ତି । ଓଡ଼ିଶାର ପରିସ୍ଥିତି ଅତିଶୟ ନୈରାଶ୍ୟଜନକ । କଂଗ୍ରେସକୁ ଓଡ଼ିଶାରେ ବଞ୍ଚାଇ ରଖିବାକୁ ଆମ୍ଭେମାନେ ଯେ କେତେଜଣ ଅଦମ୍ୟ ଚେଷ୍ଟା କରୁଥିଲୁଁ ସେତେବେଳେ ଗୋପବାବୁଙ୍କ କାର୍ଯ୍ୟକଳାପ ଏବଂ ତାଙ୍କର ବାଳକସୁଲଭ ବ୍ୟବହାର ଏବଂ ଅସୀମ ଧୈର୍ଯ୍ୟ ଓ ବିଶ୍ୱାସ ଆମ ସମସ୍ତଙ୍କୁ ଏକାଠି ବାନ୍ଧି ରଖିଥିଲା ।

ସେ ଅଲକାଶ୍ରମକୁ ଗୋଟିଏ ବଡ଼ ଜାତୀୟ ଅନୁଷ୍ଠାନ ରୂପେ ଗଢ଼ିବାକୁ ଚେଷ୍ଟା କରୁଥିଲେ । କଂଗ୍ରେସର ସୂତାକଟେଇ ଖଦଡ଼ ଉତ୍ପାଦନ ଓ ବିକ୍ରି ବ୍ୟବସ୍ଥା ଗ୍ରହଣ କରିଥିଲେ । ଖାଲିଗୋଡ଼, ଖଣ୍ଡିଏ ଗ୍ରେଟ ଖଦଡ଼ ଧୋତି ପିନ୍ଧି ଖଦଡ଼ ଝୁଲିଟିଏ କାନ୍ଧରେ ଝୁଲାଇ ସାଇକେଲ ଚଢ଼ି ସବୁଆଡ଼େ ବୁଲୁଥିଲେ । ମନରେ କୌଣସି ଚିନ୍ତା ନ ଥାଏ । ସବୁବେଳେ ହର୍ଷଭାବ । ଥଟ୍ଟା ନକଲ୍‌ରେ ସହକର୍ମୀମାନଙ୍କ ସଙ୍ଗେ କଥାଭାଷା ହେବା, କର୍ମୀମାନଙ୍କ ଉପରେ ଅଟଳ ବିଶ୍ୱାସ ରଖି କାର୍ଯ୍ୟ କରିବାର ମୁଁ ତାଙ୍କୁ ଦେଖିଛି । ତାଙ୍କ ମନରେ କୌଣସି ଗର୍ବ କିମ୍ବା ଅହଙ୍କାର ଥିବାର ମୁଁ ଲକ୍ଷ୍ୟ କରି ନାହିଁ । ସବୁବେଳେ ବାଳକସୁଲଭ ସରଳ ସ୍ୱଭାବ ।

ଗୋପବାବୁ କିପରି ସରଳ ଓ ସରସ ପ୍ରାଣର ବ୍ୟକ୍ତିବିଶେଷ ଥିଲେ ତାହା ସହଜରେ ଜଣାପଡ଼ିବ । କିନ୍ତୁ ପରିସ୍ଥିତିର ଘଟଣାକ୍ରମେ ମନୁଷ୍ୟ ଜୀବନରେ କିପରି ପରିବର୍ତ୍ତନ ଘଟେ—ଗୋପବାବୁଙ୍କ ଜୀବନ ଚରିତ୍ର ଏକ ଜ୍ୱଳନ୍ତ ପ୍ରମାଣ ଦେବ ।

ଖଦଡ଼ କାମରେ ଯେଉଁମାନଙ୍କୁ ସେ ବିଶ୍ୱାସ କରି ଟଙ୍କାପଇସା ଦେଇଥିଲେ ସେମାନଙ୍କ ମଧ୍ୟରୁ କେତେଜଣ ତାଙ୍କୁ ସରଳବିଶ୍ୱାସୀ ଦେଖି ଠକିଦେଲେ । ଟଙ୍କା ପଇସା ବହୁତ ବରବାଦ୍ ହୋଇଗଲା । ଏହି କାରଣରୁ ଓଡ଼ିଶାର କର୍ମୀମାନଙ୍କ କାର୍ଯ୍ୟକୁଶଳତା ବିଷୟରେ ଗାନ୍ଧୀଜୀଙ୍କ ମନରେ ଆଶଙ୍କା ଜାତ ହେଲା । ଜିଲ୍ଲାବୋର୍ଡ଼ର କଂଗ୍ରେସ ସଭ୍ୟ କେହି କେହି ଜିଲ୍ଲାବୋର୍ଡ଼ କାର୍ଯ୍ୟରେ ବିଶୃଙ୍ଖଳା ସୃଷ୍ଟି କରୁଥିଲେ । ଏହିସବୁ ଦେଖି ତାଙ୍କ ସରଳପ୍ରାଣରେ ଆଘାତ ଲାଗିଲା । ସେ ସାଧାରଣ କର୍ମୀଙ୍କଠାରୁ ଅଲଗା ହୋଇଯାଇ ନୀରବ ସାଧନା କରିଥିଲେ । ଗାନ୍ଧିଜୀଙ୍କ ଆଦର୍ଶକୁ ଅନୁସରଣ କରି ଜୀବନ ଗଢ଼ିବାକୁ ତାଙ୍କର ସାଧନା ଆରମ୍ଭ ହେଲା । ସେହି ଆଦର୍ଶ ଅନୁସରଣ କରି ସେ ନିଜର ପୁତ୍ରକନ୍ୟାଙ୍କୁ ସରକାରୀ ବିଦ୍ୟାଳୟରେ ଅଧ୍ୟୟନ କରାଇ ନ ଥିଲେ । ସେ ସମସ୍ତ ପରିବାରଙ୍କୁ ନିଜ ଆଦର୍ଶରେ ଅନୁପ୍ରାଣିତ କରି ୧୯୩୦ ମସିହାର ଲବଣ ସତ୍ୟାଗ୍ରହରେ ଝାସ ଦେଇଥିଲେ ।

ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନର ମୂଳଭିତ୍ତି ସ୍ଥାପନ କରିବାକୁ ଆମ୍ଭେମାନେ ଯେତେଜଣ ଏକାଠି ହୋଇ ଦୃଢ଼ ସଂକଳ୍ପ କରିଥିଲୁ, ସେମାନଙ୍କ ମଧ୍ୟରେ ଉତ୍କଳମଣି ଗୋପବନ୍ଧୁଙ୍କ ପଛକୁ ଶ୍ରୀମାନ୍ ଗୋପବନ୍ଧୁ ଚୌଧୁରୀ ଆମ୍ଭ ସମସ୍ତଙ୍କ ମନ ଓ ହୃଦୟକୁ ଏକ ସୂତ୍ରରେ ବାନ୍ଧି ରଖିବାଭଳି ବ୍ୟକ୍ତି ଥିଲେ। ତାଙ୍କଠାରେ ବ୍ୟକ୍ତିତ୍ୱ ଥିଲା। ସେ ଆମ୍ଭ ସମସ୍ତଙ୍କର ଆଦରଣୀୟ ବ୍ୟକ୍ତି ଥିଲେ।

ଗୋପବାବୁ ଜଣେ ସାଧାରଣ ମନୁଷ୍ୟ। ଅସାଧାରଣ ମନୁଷ୍ୟର କୌଣସି ଚିହ୍ନ ତାଙ୍କଠାରେ ନ ଥିଲା। କିନ୍ତୁ ସେ ଜୀବନର ମହତ୍ତ୍ୱ ଉପଲବ୍ଧି କରିପାରିଥିଲେ। ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି—

"ଯଂ ଲବ୍ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ"

ମନୁଷ୍ୟ ଜୀବନରେ ସର୍ବଦା ସୁଖଭୋଗ କରିବାକୁ ଇଚ୍ଛା କରେ, କିନ୍ତୁ ଏପରି ସୁଖ ପାଇବାକୁ ଇଚ୍ଛା କରିବ ଯହିଁର ଅନୁଭୂତି କୌଣସି ପ୍ରକାରେ ପାଇ ପାରିଲେ ତହିଁରୁ ଅଧିକ ସୁଖ ଅନ୍ୱେଷଣ କରିବାକୁ ମନୁଷ୍ୟ ଆଉ ଇଚ୍ଛା କରିବ ନାହିଁ। ଏବଂ ତାର ମନକୁ ଏପରି ଗଢ଼ିବ ଯହିଁରେ କୌଣସି ଦୁଃଖ, ଯେତେ ଗୁରୁତର ହେଲେମଧ୍ୟ, ମନରେ ଆଉ ଅଶାନ୍ତି ଉପୁଜାଇବାକୁ ଅସମର୍ଥ ହେବ। ଗୋପବାବୁ ଏହି ସତ୍ୟ ଉପଲବ୍ଧି କରିପାରିଥିଲେ। ତେଣୁ ସଂସାର ବିଷୟବାସନା ଏବଂ ରାଜନୈତିକ କ୍ଷେତ୍ରରେ ପଦଲାଭ ଲାଳସାକୁ ତ୍ୟାଗକରି ଜୀବନର ଗତିକୁ ସମ୍ପୂର୍ଣ୍ଣଭାବେ ପରିବର୍ତ୍ତିତ କରିପାରିଥିଲେ। ସେ ଜଣେ ସାଧକ ବନିଗଲେ। ଦେଶସେବା କରିବାକୁ ଜୀବନ ଉତ୍ସର୍ଗ କରି ମଧ୍ୟ ଦୈନନ୍ଦିନ ଜୀବନରେ ଘଟଣାଚକ୍ରରେ ପଡ଼ି, ସମସ୍ତଙ୍କ ମନ ଈର୍ଷା, ଦ୍ୱେଷ ଓ ମାନ ଅଭିମାନରେ କିପରି ପ୍ରଭାବିତ ହେଉଛି ତାହା ଭାବିଲେ ଗୋପବାବୁ କିପରି ସାଧକ ଥିଲେ ତାହା ମୁଁ ଅନେକ ସମୟରେ ଚିନ୍ତା କରେ।

ତଥାପି ଗୋପବାବୁ ମନୁଷ୍ୟ ଥିଲେ, ତାଙ୍କର କେତେକ କଥା, କାର୍ଯ୍ୟ ଓ ବ୍ୟବହାରରେ ମୁଁ ତାଙ୍କ ପ୍ରତି ବିମୁଖ ହୋଇଛୁ। ତାଙ୍କ ପ୍ରତି ବିମୁଖ ହେଲେମଧ୍ୟ ତାହାଙ୍କ ସାଧନା ମତେ ପ୍ରଭାବିତ କରିଛି। ଗାନ୍ଧୀଜୀ ଗୋପବାବୁଙ୍କ କାର୍ଯ୍ୟ ସହିତ 'ଗାନ୍ଧୀ ସେବାଶ୍ରମ' (ତାଙ୍କ ଚମ୍ପାପୁର ଆଶ୍ରମ)କୁ ମିଶାଇଦେଇ କାର୍ଯ୍ୟ କରିବାକୁ ମତେ ପରାମର୍ଶ ଦେଇଥିଲେ ମଧ୍ୟ ମୋର ମନ ତାଙ୍କ ପ୍ରତି ଏପରି ବିମୁଖ ହୋଇଥିଲା ଯେ ତାହା ମୁଁ ପାଳନ କରିପାରିଲି ନାହିଁ। ମୁଁ ତାହାଙ୍କ କର୍ମକ୍ଷେତ୍ର ବରୀକୁ ଥରେମାତ୍ର ଯାଇ ଦେଖି ଆସିବାକୁ ମନକୁ ବଳେଇ ପାରି ନାହିଁ। ତାଙ୍କ ପ୍ରତି ମୋର ଆଉ କୌଣସି ଆକର୍ଷଣ ନ ଥିଲା। ସୁତରାଂ ଗୋପବାବୁଙ୍କ ବିଷୟରେ ମୁଁ ଯାହା ଲେଖୁଛି ତହିଁରେ ଅଯଥା ଗୁଣଗାନ କରିବାର ଆଭାସ ରହି ନ ପାରେ। ପ୍ରତ୍ୟେକ ବ୍ୟକ୍ତିର ବିଚାର ଓ ଦୃଷ୍ଟି କଦାପି ସମାନ ହୋଇ ନ ପାରେ। କିନ୍ତୁ ଲୋକସେବା ଜୀବନର ବ୍ରତ

କରିଥିଲେ—ଦେଶ ଓ ସମାଜର ମଙ୍ଗଳ ପାଇଁ ଯେଉଁଠାରେ ଏବଂ ଯାହାଙ୍କଠାରେ ଯାହାକିଛି ଅନୁକରଣ କରିବାର ମହତ୍ତ୍ୱ ପରିସ୍ଫୁଟ ହୋଇଥିବ ତାକୁ ଅନୁଧ୍ୟାନ କରିବା ଉଚିତ । ଏହି ଦୃଷ୍ଟିରେ ମୁଁ ଗୋପବାବୁଙ୍କୁ ବୁଝିବାକୁ ଚେଷ୍ଟା କରିଛି ଓ କରୁଛି ମଧ୍ୟ । କର୍ମମୟ ଜୀବନରେ ଘଟଣାସବୁ ପରିସ୍ଥିତି ଅନୁସାରେ ଜୀବନକୁ ପ୍ରଭାବିତ କରେ । ପରିସ୍ଥିତିର ପରିବର୍ତ୍ତନରେ ମନୁଷ୍ୟର ମନ ମଧ୍ୟ ବଦଳିଯାଏ । ଗୋପବାବୁ ଯାହା କରିଛନ୍ତି ଅବା କହିଛନ୍ତି ସେ ଜଣେ ସାଧାରଣ କର୍ମୀ ଥିବାରୁ ସେପରି ଘଟିଛି । କିନ୍ତୁ ସାଧାରଣ କର୍ମୀର ଦୃଷ୍ଟି ଓ ସ୍ତରର ମନୋବୃତ୍ତିର ଉପରକୁ ଉଠିବାକୁ ତାଙ୍କର ଅନବରତ ନୀରବ ସାଧନା ଥିଲା ଏହା ସ୍ୱୀକାର କରିବାକୁ ହେବ । ଏହିଠାରେ ସେ ଆମ୍ଭମାନଙ୍କ ତୁଳନାରେ ବହୁତ ଉଚ୍ଚରେ ଏବଂ ଏହା ହିଁ ତାଙ୍କ ଜୀବନର ବିଶିଷ୍ଟ ଗୁଣ ଓ ମହତ୍ତ୍ୱ ।

ଆଉ ଗୋଟିଏ କଥା ମୁଁ ଭାବେ । ନିଜକୁ ଓ ଓଡ଼ିଶାର ଅନ୍ୟ କର୍ମୀମାନଙ୍କ କାର୍ଯ୍ୟ ଓ ଚର୍ଯ୍ୟାକୁ ଗୋପବାବୁଙ୍କ ସହିତ ତୁଳନା କରେ । ଗୋପବାବୁ ନିଜ ପରିବାରକୁ ନିଜ ଆଦର୍ଶରେ ଯେପରି ଅନୁପ୍ରାଣିତ କରିଥିଲେ, ଓଡ଼ିଶା ବାହାରେ, ଭାରତର ଅନେକ ଅଞ୍ଚଳରେ ମୁଁ ବୁଲିଛି ଏବଂ ଅନେକ କାର୍ଯ୍ୟ ମଧ୍ୟ କରିଛି, ଭାରତରେ ନେହେରୁ ପରିବାର ବ୍ୟତୀତ ଅନ୍ୟତ୍ର ଏପରି ଉଦାହରଣ ଦେଖିବାକୁ ପାଇ ନାହିଁ । କିନ୍ତୁ ଗୋପବାବୁ ଅନ୍ୟ ସାଧାରଣ କର୍ମୀଙ୍କ ସୁଖଦୁଃଖରେ ଭାଗୀ ହୋଇ ସେମାନଙ୍କ ସହିତ ମିଳାମିଶି କାମ କରିବାକୁ ଅସମର୍ଥ ଥିବାଭଳି ଜଣାପଡ଼େ । ସେ ଅନେକଗୁଡ଼ିଏ କାର୍ଯ୍ୟର ଦାୟିତ୍ୱ ଗ୍ରହଣ କରିଥିଲେ ଏବଂ ଅନେକ କର୍ମୀ ମଧ୍ୟ ପାଇଥିଲେ । କିନ୍ତୁ ଓଡ଼ିଶାରେ ଗୋଟିଏ କାମକୁ ସ୍ଥାୟୀରୂପ ଦେଇ ଗଢ଼ିପାରି ନାହାନ୍ତି । ଗୋପବାବୁଙ୍କ କଥା ଭାବିଲେ ଆମ୍ଭେମାନେ ଯେଉଁ କେତେଜଣ ତାଙ୍କ ସହିତ ପ୍ରଥମରୁ ଓଡ଼ିଶାରେ ରାଜନୈତିକ ଜୀବନଯାପନ କରିବାକୁ କଂଗ୍ରେସ ଅନୁଷ୍ଠାନ ଗଢ଼ିବାରେ ମନପ୍ରାଣ ଉତ୍ସର୍ଗ କରିଥିଲୁ, ଆମ୍ଭମାନଙ୍କ ସମସ୍ତଙ୍କ ଜୀବନର କାର୍ଯ୍ୟକଳାପ ମନେ ପଡ଼ିଯାଏ । ଆମ୍ଭମାନଙ୍କ ଜୀବନରେ କାହାର କେଉଁଠାରେ କଣ ତ୍ରୁଟି ରହିଲା ଭାବିବାକୁ ପଡ଼େ । ସବୁବେଳେ ମୋ ମନରେ ଗୋଟିଏ ଭାବନା ଜାଗି ଉଠେ, ଗାନ୍ଧୀଯୁଗରେ ଭାରତର ଅନ୍ୟାନ୍ୟ ପ୍ରଦେଶରେ କେତେସବୁ ନୂତନ ଅନୁଷ୍ଠାନ ଗଢ଼ି ହୋଇ ଉଠିଲେ, —କିନ୍ତୁ ଓଡ଼ିଶାରେ ଆମ୍ଭେମାନେ କିଛି ଗଢ଼ି ପାରିଲୁ ନାହିଁ । ଏହିପରି ଭାବନା ଜାଗିଉଠିଲା ବେଳେ ମୁଁ ଦେଖେ ଗୋପବାବୁ ତାଙ୍କ ପରିବାରକୁ ଗୋଟିଏ ଅନୁଷ୍ଠାନ ରୂପେ ଗଢ଼ି ପାରିଛନ୍ତି, ସେହି ଅନୁଷ୍ଠାନ ବର୍ତ୍ତମାନ ଦେଶରେ ସର୍ବୋଦୟର ବାର୍ତ୍ତାର ଜୀବନ୍ତ ମୂର୍ତ୍ତି ରୂପେ କାମ କରୁଛି । ଗୋପବାବୁ ଜଣେ ଭାଗ୍ୟବାନ୍ ପୁରୁଷ । ତାଙ୍କର ସାଧନା ଓ କର୍ତ୍ତବ୍ୟନିଷ୍ଠା ଅନୁକରଣ କରିପାରିଲେ ମନୁଷ୍ୟ ଜୀବନରେ ପରମ ଆନନ୍ଦ ଅନୁଭବ କରିପାରିବ ।

ବର୍ତ୍ତମାନ ଦେଶ ଓ ସମାଜରୁ ଧର୍ମବିଶ୍ୱାସ ଲୋପ ପାଇଲାଭଳି ଜଣାପଡ଼ୁଛି । ଶାରୀରିକ ପରିଶ୍ରମ କରିବାକୁ ଶିକ୍ଷିତ ସମାଜ ଲଜ୍ଜାବୋଧ କରୁଛି । ଗୋପବାବୁ ଜଣେ ଧର୍ମପ୍ରାଣ ବ୍ୟକ୍ତି । ଭଗବାନଙ୍କ ଉପରେ ତାଙ୍କର ଅଟଳ ବିଶ୍ୱାସ । ଆଜିକାଲି ଦେଶସେବା କରିବାକୁ ଯେଉଁମାନେ ପଦାକୁ ବାହାରିଛନ୍ତି ସେମାନଙ୍କର ଧର୍ମବିଶ୍ୱାସ ନାହିଁ କି ଈଶ୍ୱର ବିଶ୍ୱାସ ନାହିଁ । ଦେଶର ସାଧାରଣ ପଲ୍ଲୀବାସୀଙ୍କ ମନରେ— ଦରିଦ୍ର ନାରାୟଣଙ୍କ ସେବା ହେଉଛି ଈଶ୍ୱରଙ୍କ ପ୍ରକୃତ ଆରାଧନା ଏବଂ ତାହା ହିଁ ପ୍ରକୃତ ଦେବତା ପୂଜା—ଏହି ଭାବ ପ୍ରଚାର କରିବାକୁ ତାଙ୍କର ସବୁଠୁଁ ଧରି ପଦଯାତ୍ରା ଓଡ଼ିଶାରେ ଦେଶସେବା ପାଇଁ ଗୋଟିଏ ନୂତନ ଆଦର୍ଶ ଗୋପବାବୁଙ୍କ ଜୀବନର ସାଧନା ମାର୍ଗ—ଆମ୍ଭମାନଙ୍କୁ ଦେଖାଇ ଦେଇଛି । ଗୋପବାବୁଙ୍କ ଜୀବନରେ ଏହା ଏକ ଅସାଧାରଣ ସାଧନା—ସେ ଜଣେ ସାଧକ ଥିଲେ କେବଳ ସେତିକି ନୁହେଁ, ସେ ତାଙ୍କର ସ୍ତ୍ରୀ ପୁତ୍ର କନ୍ୟା ଭାଇ ଭାଇବୋହୂ ଆଦି ନିଜର ସମସ୍ତଙ୍କୁ ଗଢ଼ି ଦେଇ ପାରିଛନ୍ତି ଏହା ହିଁ ତାଙ୍କ ମହତ୍ତ୍ୱକୁ ପ୍ରକାଶ କରୁଛି ଏବଂ ସାଧନାକୁ ସାର୍ଥକ କରିଛି । ତାଙ୍କର ଜୀବନ କାହାଣୀ ବହୁ ଲୋକଙ୍କୁ ଆଲୋକଦାନ କରିବ ଏଥିରେ ସନ୍ଦେହ ନାହିଁ । ମୁଁ ହେଉଛି ତାଙ୍କର ଜଣେକ ଅଭାଗା ସହକର୍ମୀ ।"

ଅନେକେ ତ ତାଙ୍କ ବିଷୟରେ ନାନାକଥା କହିଛନ୍ତି, କେହି ଲେଖିଛନ୍ତି । ସେସବୁ ଅଲଗା ଏକାଠି କଲେ ଚିତ୍ତାକର୍ଷକ ପୁସ୍ତକଟିଏ ହୁଅନ୍ତା । ବରି ଆଶ୍ରମରେ ଯେତେ ସାନ ଝିଅ ରହି ପଢ଼ୁଥିଲେ ସେଥିରୁ ଶ୍ରୀମତୀ ପ୍ରେମଲତା ଜେନା, ବରିର ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତିଙ୍କ ଝିଅ । ତାଙ୍କ ବରିର ସ୍ମୃତିରୁ କିଛି ଲେଖେ :

"ଆମ (ବରି) ଅଞ୍ଚଳରେ ସେ ସମସ୍ତିଙ୍କ ବୁଦ୍ଧିଦାତା ଥିଲେ, ବୁଢ଼ାଙ୍କ ସଙ୍ଗେ ବୁଢ଼ା, ଯୁବାଙ୍କ ସଙ୍ଗେ ଯୁବା ଓ ପିଲାଙ୍କ ସଙ୍ଗେ ପିଲା ହୋଇ ଚଳୁଥିଲେ । ସେ ଅତି ସରଳ ଥିଲେ, ଆହୁରି ମଧ୍ୟ ବଡ଼ ରାଗି ଥିଲେ । ସେ ଆମ ପିଲାଙ୍କ ସଙ୍ଗେ ଏତେ ମିଶନ୍ତି ଯେ ଆମେ ନିଜ ସାଥୀ ମନେକରୁ । ଯେତେବେଳେ ସେ ରାଗନ୍ତି ଆମେ ଭାବୁ ଏହି ଲୋକ ଏବେ ଖେଳୁଥିଲେ ନା ଏ ଆଉ ଜଣେ ? ୧୯୩୪ ମସିହାରେ ସେମାନେ ବରି ଯାଇଥିଲେ, ମୋର ତ ହେତୁ ନାହିଁ, ଶୁଣିଥିଲି । ସେହିଦିନଠାରୁ ବାପା ତାଙ୍କ ଦୀକ୍ଷାରେ ଦୀକ୍ଷିତ ହେଲେ, ଆମ ସାରା ପରିବାର ଆଶ୍ରମ ସଙ୍ଗେ ଜଡ଼ିତ ହେଲୁ, ମୁଁ ମଧ୍ୟ ସ୍କୁଲରେ ନ ପଢ଼ି ଆଶ୍ରମରେ ପଢ଼ିଲି ।

ବାପା ହରିଜନ ଘରେ ଖାଇବାରୁ ଆମେ ନିଆଁ ପାଣି ଅଟକ ହେଲୁ । ଆମ ପରିବାରର ସୁଖଦୁଃଖ ସବୁ ମା ରମା ଦେବୀ, ଚୂନୀ ଅପା, ଆଶ୍ରମର ଅନ୍ୟାନ୍ୟ ଅପାମାନଙ୍କୁ ପଠାଇ ସାହାଯ୍ୟ କରନ୍ତି । ମୋ ସା'ନ୍ତ ବାପାଙ୍କ ସହିତ ଗୋପବାବୁ ଭାରି ଥଟ୍ଟା କରନ୍ତି । ମୋ ସାଆନ୍ତ ବାପା ଭାରି ନୈଷ୍ଠିକ ଥିଲେ, ହରିଜନଙ୍କୁ ଛୁଅନ୍ତି ନାହିଁ,

ବାହାରକୁ ଆସିଲେ ଲୁଗା ନ ଧୋଇଲେ ଘରେ ପଶନ୍ତି ନାହିଁ । ବାପା ଯେତେ ଅସ୍ପୃଶ୍ୟତାକୁ ଦୂର କରିବାକୁ ବସିଲେ ବୁଢ଼ା ସେତିକି ଦୂରେଇ ରହନ୍ତି ।

ଏକଥା ଗୋପବାବୁ ତ ଭଲ କରି ଜାଣନ୍ତି । ବାପା ରାମଚନ୍ଦ୍ରପୁରରେ ମାଷ୍ଟର ଥିଲେ । ମା ରମା ଦେବୀ, ପୂଜ୍ୟ ଗୋପବାବୁ ତ ମଝିରେ ମଝିରେ ସେଠି ରହନ୍ତି, ଆମେ ମଧ୍ୟ ସେଠି ଥିଲୁ । ଆମ ସାଆନ୍ତ ବାପା ଦିନେ ସେଠିକି ଯାଇଥିଲେ । ଗୋପବାବୁ ମତେ ଡାକି କହିଲେ, "ତୋ ସାଆନ୍ତବାପାର ଜାତି ଅଜା ନେବୁ ।" ମୁଁ ଜିଦ ମାରିଲି, "ତାଙ୍କୁ ଆପଣ ମୋଟେ ପାରିବେ ନାହିଁ । ସେ ଏଠି ପାଣିଟୋପା ପିଇବେ ନାହିଁ ।" ମତେ କହିଲେ "ରହ ତୁ ଦେଖିବୁ ।" ସତକୁ ସତ ସାଆନ୍ତଙ୍କ ହାତ ଧରିନେଇ ବସାଇଲେ, ନିଜେ ମଧ୍ୟ ଖାଇ ବସିଲେ । ଆମ ଗାଁର ହରିଜନ, ସାଆନ୍ତବାପା ତାକୁ ଦେଖିଲେ ତିନିହାତ ଦୂରରେ ଚାଲନ୍ତି, ସେହି ଭାତ ଅଣି ପରଷିଲା, ବୁଢ଼ା ନ ଖାଇ ଯିବେ କୁଆଡ଼େ ? ଖାଇ ସାରିବା ପରେ ଗୋପବାବୁ ମତେ ଡାକି ମୋ ପିଠିରେ ଚାପୁଡ଼ା ମାରି କହିଲେ, "ଦେଖିଲୁ କିଏ ଜିତିଲା ? କହ ।" ସେଦିନ ମୁଁ, ମୋ ବୋଉ, ବାପା ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲୁ, କି ଦୈବୀଶକ୍ତି ଏ ଲୋକଟା ଠେଇଁ ଅଛି କେଜାଣି !

ଆଉ ଗୋଟିଏ ଘଟଣା, ଯେଉଁଟା ଆମ ସମାଜଠାରୁ ମତେ ମିଳି ନ ଥାନ୍ତା, ତାଙ୍କ ପାଇଁ ସେ ଅଧିକାର ମୁଁ ପାଇଲି । ମୋ ସାଆନ୍ତ ବାପା ମଲାବେଳକୁ ମୋ ବାପା ଘରେ ନ ଥିଲେ, 'ନିଆଁ' କିଏ ଦେବ ? ମା ରମା ଦେବୀଙ୍କୁ ଖବର ପଠାଇ ସାଆନ୍ତବାପାଙ୍କ କଥା କହୁଥିବା ବେଳେ ତାଙ୍କଠାରୁ (ଗୋପବାବୁଙ୍କଠାରୁ) ଜବାବ୍ ମିଳିଲା "ଝିଅ ନିଆଁ ଦେବ ।"

ସାହିରେ ସମସ୍ତେ ବିରୋଧ କଲେ, "ଝିଅ ପରଗୋତ୍ରୀ, ଦେଇପାରିବ ନାହିଁ ।" କିନ୍ତୁ ଗୋପବାବୁ ଯାଇ ଆମ ଦାଣ୍ଡରେ ଠିଆ ହେଲେ, ମତେ ଅଭୟ ଦେଲେ, "ତୁ ଶବ ସଙ୍ଗେ ଯା ନିଆଁ ଦେଇକରି ଆସିବୁ ।" ସେହିକଥା ମାନି ମୁଁ ନିଆଁ ଦେଇଥିଲି ।

ଶେଷ ବେଳର କଥା । ୧୯୨୮ ମସିହାରେ ତ ମା (ରମା ଦେବୀ) କଟକରେ ବେମାର ପଡ଼ିଥିଲେ । ଗୋପବାବୁ ବଗିରେ ରହୁଥିଲେ । ସେ ସକାଳେ ପଖାଳ ଖାନ୍ତି, ମୁଁ ପ୍ରତିଦିନ ପଖାଳ ଶାଗଭଜା ନେଇ ଯାଏ । ଆମେ ସମସ୍ତେ ତାଙ୍କୁ କହୁଁ "ଆପଣ କଟକ ଯାନ୍ତୁ, ମା ବେମାର, ଆପଣ କେମିତି ଏଠି ବସିଛନ୍ତି ?" ସେ କହନ୍ତି, "ଏତେ ଲୋକ ତ ଅଛନ୍ତି, ମୁଁ କଣ କରିବି ? ...ତୁ ଏତେ ବେସ୍ତ ହ' ନାହିଁ, ତୁମ ମା ଏବେ ମରୁ ନାହାନ୍ତି ।" ସେତେବେଳେ ତାଙ୍କ ମୁହଁକୁ ମୁଁ ଲକ୍ଷିଥିଲି, ଖୁବ୍ ଗମ୍ଭୀର, ଅଠା ଲୁହ, ଦୁଃଖିତରେ ତାଙ୍କୁ କେମିତି ଜଣାପଡ଼ୁଥିଲା ।

ମା'ଙ୍କର ଜର ନ କମିବାରୁ ଦିନେ ହଠାତ୍ ବାହାରିଲେ କଟକ ଯିବାପାଇଁ, ସବୁଦିନ ପରି ପଖାଳ ନେଇଗଲି, କହିଲେ "ଆଜ ପେଟ ଦେଇ ହାତରୁ ଖାଇବା ସରିଲି ।"

ମୁଁ କହିଲି "ପୁଣି କେବେ ଫେରିବେ ।"

ସବୁ ବେଳରେ ଖୁବ ଥାଏ, ମୋ ମୁହଁକୁ ଚାହିଁ ହସିଦେଲେ, ନିଜେ ନିଜେ କହି ହେଲେ, "ହଁ, କହୁଛୁ—ପୁଣି କେବେ ଫେରିବେ !—"

ମୁଁ ଅଟକା କଲି "ଆଉ କ'ଣ କଟକରେ ରହିଯିବେ ନା କଣ ?"

ଦଇବ ଦାଉଡ଼ି, ଏମିତ ତାଙ୍କୁ ଟାଣି ନେଉଛୁ ଆମେ ବା କାହିଁକି ଜାଣିବୁ ? ସେ ଏମିତି ସିଦ୍ଧପୁରୁଷ ଥିଲେ ଯେ କଟକ ଗଲେ ସେ ଆଉ ଫେରିବେ ନାହିଁ ଏକଥା ସେ ଜାଣି ପାରିଥିଲେ । ଅଉ ଫେରି ନାହାନ୍ତି, ନା ଆଉ ପଖାଳ ଖାଇ ନାହାନ୍ତି । କଟକରେ ଜନ୍ମ, କଟକରେ ମରଣ । ଆମ ଅଞ୍ଚଳରେ ମାୟା ଲଗାଇଥିଲେ ମାତ୍ର ।"

(ହାତଲେଖା, ରାସ୍ତଗଡ଼ା, ୯-୪-୬୦)

ସର୍ବୋଦୟ କର୍ମୀ ଶ୍ରୀମତୀ ବୈଦେହୀ ପଣ୍ଡା ୭-୭-୭୭ରେ ସତ୍ୟଭାମାପୁରରୁ ୰ ଗୋପବାବୁଙ୍କ ସମ୍ପର୍କରେ ତାଙ୍କର ସ୍ମୃତିରୁ କିଛି ଲେଖି ପଠାଇଛନ୍ତି । ସେ ଯେତେବେଳେ ଖୁବ୍ ସାନ ଥିଲେ ସେତେବେଳେ ୧୯୪୬ରେ ତାଙ୍କ ବାପା ତାଙ୍କୁ ବଗି ରାମଚନ୍ଦ୍ରପୁରରେ ଶ୍ରୀମତୀ ରମା ଦେବୀ ଓ ଗୋପବାବୁଙ୍କ ତତ୍ତ୍ୱାବଧାନରେ ଛାଡ଼ି ଥିଲେ, ସେଇଠି ରହି ସେ ମଣିଷ ହେଲେ । ସେ ଲେଖିଛନ୍ତି :

"ବଡ଼ୁ ଶ୍ରେଷ୍ଟ ଶ୍ରେଷ୍ଟ ଓ ବୟସ୍କା ଭଉଣୀ ସେଠାରେ ଥାନ୍ତି । ମୁଁ ସମସ୍ତିଙ୍କ ଠାରୁ ଶ୍ରେଷ୍ଟ ଥିଲି । ୧୯୪୭ରୁ ୧୯୫୬ ପର୍ଯ୍ୟନ୍ତ ମୁଁ ତାଙ୍କର ସ୍ନେହ ଓ ଶାସନ ଭିତରେ ଜୀବନ କଟାଇଛି । ସେ ମୋତେ ପ୍ରାୟ 'ପାଗଳୀ' ବୋଲି କହୁଥିଲେ, ମୋର ଗୀତ ଶୁଣି ଖୁବ୍ ଖୁସି ହେଉଥିଲେ । ସନ୍ଧ୍ୟାବେଳେ ମୋତେ ନିଜ କୋଳକୁ ଆଉଜାଇ ଅନେକ ଗପ କହୁଥିଲେ । ମୋ ପରି ଅନ୍ୟ ଝିଅମାନେ ମଧ୍ୟ ତାଙ୍କୁ ଘେରି ବସୁଥିଲେ । ଥରେ ଆମର (କନ୍ୟାଶ୍ରମର) ସଞ୍ଚାଳିକା ମୋତେ ଡାକି ନେଇ ଅନୁଷ୍ଠାନର ନିୟମ ଦୃଷ୍ଟିରେ କହିଲେ,

"ତୁମେ ଏପରି ବାପାଙ୍କ କୋଳରେ ଆଉଜି ବସିବା କଣ ଭଲ ? ସେ କେତେବଡ଼ ବ୍ୟକ୍ତି ତୁମେ ଜାଣିବା ଉଚିତ ।"

ତା'ପରେ ମୁଁ ଭୟରେ ଆଉ ସେପରି କରିବାକୁ ଚାହିଁଲିନି । ଦୁଇଦିନ ପରେ ବାପା ନିଜେ ଆସି ମୋତେ ଡାକି କହିଲେ, "କିରେ ମୋ ମା ମତେ ଭୁଲିଗଲୁ ? ଆଉ ତ ମୋ ପାଖକୁ ଆସୁନୁ !"

ମୁଁ ତାଙ୍କୁ କାନ୍ଦି କାନ୍ଦି ସବୁକଥା କହିଲି ଏବଂ ଆଜି ମଧ୍ୟ ମୋର ମନେଅଛି ସେ ମୋ କଥା ଶୁଣି ସଙ୍ଗେ ସଙ୍ଗେ ଉକ୍ତ ଭଉଣୀକୁ ଡାକି କହିଲେ, "ତୁ ଜାଣିବା ଉଚିତ ଯେ ସେ କେତେ ସରଳ, ତାର ମନ ବଡ଼ ପବିତ୍ର ଓ ସେ ତାର ମା ବାପାଙ୍କୁ ଛାଡ଼ି ଆସିଛି, ମତେ ବାପା ବୋଲି ଡାକୁଛି । ତୁ ତାର ସରଳ ମନରେ ଏପରି ଡର ଓ ଭୟ ସୃଷ୍ଟି କରିବା ଠିକ୍ ନୁହେଁ । ତାଛଡ଼ା ଏ ଟ୍ରଷ୍ଟ୍‌ର ଉଦ୍ଦେଶ୍ୟ ମଧ୍ୟ ତୋର ଜାଣିବା ଉଚିତ ।"

ପିଜୁଳି ଗଛରେ ଖୁବ୍ ପିଜୁଳି ପାଚିଥାଏ । ମୁଁ ଯାଇ ବାପାଙ୍କୁ କହିଲି ପିଜୁଳି ଖାଇବି ବୋଲି । ମତେ ଡାକି ନେଇ ଖଣ୍ଡିଏ କଦଳୀ ପତ୍ରରେ କିଛି ଲୁଣ ରଖି ମତେ ଗୋଟିଏ ପିଜୁଳି ଗଛରେ ଚଢ଼େଇ ଦେଇ ସେ କହିଲେ, "ତୋର ଯେତେ ଇଚ୍ଛା ପିଜୁଳି ଖାଇ ଓହ୍ଲାଇବୁ ।"

ବାପାଙ୍କଠାରୁ ସୂତାକଟା, ତୁଳାଭଣା, ନଈପହଁରା, ଗଛ ଚଢ଼ା ସବୁ ମୁଁ ଶିଖିଛି । ଥରେ ମୋର ଭୟ ଦୂର କରିବାକୁ ରାତିରେ ମତେ ବସ୍ତି ସେବାଘରୁ ଗୋବର୍ଦ୍ଧନବାବୁଙ୍କ ଘରକୁ ପଠାଇଲେ । ଏପରି ଚାରିଦିନ ଚାଲିଲା । ତା'ପରେ ମୋର ଡର ଛାଡ଼ିଲା ।

ରାମଚନ୍ଦ୍ରପୁରରେ ପ୍ରଥମେ ଉଠା ପାଇଖାନା ନିଜ ହାତରେ ସଫା କରିବାକୁ ହେଉଥିଲା । ବାପା ମତେ ସଫା କରିବାକୁ କହିଲେ । ମୁଁ କହିଲି—"ନା, ବ୍ରାହ୍ମଣଘର ଝିଅ ମୁଁ, ଏପରି ଅସନା କାମ କରି ପାରିବିନି ।" ସେ ଭାରି ମଜାରେ ହସି ହସି କହିଲେ, "ଅଚ୍ଛା, ତୁ ପାଣି ଢାଳିଦେ କି, ମୁଁ ସଫା କରିଦେବି ।" ମୁଁ ସେମିତି କରୁଥିଲି ।

ତା'ପରେ ୪।୫ ଦିନ ପରେ ଭାବିଲି, "ଏତେ ବଡ଼ ବ୍ୟକ୍ତି ଯଦି ଏ କାମ କରୁଛନ୍ତି ମୁଁ କିଆଁ ପାଇଁ ନ କରିବି ?" ତା'ପରେ ମୁଁ ତାଙ୍କୁ ଏକାଧାରରେ ବାପା, ଗୁରୁ ଓ ପରମ ହିତାକାଂକ୍ଷୀ ଭାବରେ ଧରିନେଲି । ଏପରି କୌଣସି କଥା ନ ଥାଏ ଯାହା ମୁଁ ବାପାଙ୍କୁ ନ କହେ । ମା' ଯଦି ଗାଳି ଦିଅନ୍ତି, ତେବେ ସେକଥା ମଧ୍ୟ ବାପାଙ୍କୁ କୁହାଯାଏ ।

ସେହି ୧୯୪୭ରେ ମୋର ଆଖି ଖରାପ ହେଲା । ବାପା ମତେ ରାମଚନ୍ଦ୍ରପୁରରୁ କଟକ ଆଣି ଡାକ୍ତରଙ୍କୁ ଦେଖାଇଲେ । ଡାକ୍ତରଙ୍କ ପରାମର୍ଶକ୍ରମେ ମୋତେ କଖାରୁଫଳ ଓ ପିଆଜ ଖାଇବାକୁ ଦିଆଗଲା । ମୁଁ ପିଲାଦିନରୁ ପିଆଜ ଖାଉ ନ ଥିଲି ଓ ଅନେକ ବ୍ରତ କରୁଥିଲି । ବାପା ପ୍ରତିଦିନ ମତେ ଜୋର୍‌କରି କଖାରୁଫଳ ଓ ପିଆଜ ଖୁଆଇଲେ ଓ ମୋର ଉପବାସ ବନ୍ଦ କଲେ । ତାପରେ ମୋର ଆଖି ଭଲ ହେଲା ।

ଥରେ ମୁଁ ବାପାଙ୍କ ସଙ୍ଗରେ ଡଙ୍ଗାରେ ଇନ୍ଦୁପୁର ଯାଉଥାଏ । ଭୀଷଣ ଜ୍ୱର ଯୋଗୁଁ ମୋର ବାନ୍ତି ହେଲା । ବାପା ନିଜ ହାତ ମୋ ମୁହଁ ପାଖେ ଦେଖାଇ ସବୁ ବାନ୍ତି ସଫା କଲେ ।

ବାପୁଜୀଙ୍କର ପ୍ରଥମ ବାର୍ଷିକୀ ଶ୍ରାଦ୍ଧ ପାଇଁ ରାମଚନ୍ଦ୍ରପୁରରୁ ପୁରୀ ପଦଯାତ୍ରାରେ ଯିବା ସ୍ଥିର ହେଲା । ଅନ୍ୟାନ୍ୟ କେତେଜଣଙ୍କ ଭିତରେ ସେ ମୋ ନାମ ରଖିଲେ, କାରଣ ମୋର ଭଜନ ବୋଲିବା କାମ ଥିଲା । ସେ ଯାତ୍ରା ମୋ ଜୀବନରେ ଚିରସ୍ମରଣୀୟ ହୋଇ ରହିଛି । କେତେ ଆଦର ସ୍ନେହ, ଗୋଡ଼ ଖଣ୍ଡିଆ ହେଲେ ନିଜ ହାତରେ ଔଷଧ ଲଗାଇ ପଟି ବାନ୍ଧିବାଠାରୁ ଆରମ୍ଭ କରି ରାତିରେ ହାତ ଧରି ବିଛଣାରେ ଶୁଆଇ ଦେଇ ମଶାରି ପକାଇ ସେ ଶୋଇବାକୁ ଯାଉଥିଲେ । କେତେ ପ୍ରକାର ଖାଇବା ଜିନିଷ ରାସ୍ତାରେ ଖାଇବାକୁ ଦେଉଥିଲେ ।

ପୂଜ୍ୟ ବିନୋବାଙ୍କର ଓଡ଼ିଶାରେ ପଦଯାତ୍ରା ଚାଲିଥାଏ । ମୁଁ ସେତେବେଳେ 'ସ୍ୱାବଲମ୍ବୀ' ('ସ୍ୱାବଲମ୍ବୀ' କର୍ମୀ, ଯେ ସୂତାକାଟି ଖଦୀବୁଣି ଅନ୍ୟାନ୍ୟ ଦେହ ମେହେନତ୍ କରି ନିଜ ଶ୍ରମରେ ବଞ୍ଚିବ, କୌଣସି ଅନୁଷ୍ଠାନ ଆଦିରୁ ସାହାଯ୍ୟ ନେବ ନାହିଁ) ଭାବରେ କାମ କରୁଥାଏଁ । ବାପା ମତେ ପଦଯାତ୍ରାର ଦାୟିତ୍ୱ ନେବାକୁ ଡାକିଲେ । ମୁଁ ସର୍ବୋଦୟ ସାହିତ୍ୟ ବିକ୍ରି ଓ 'ଗ୍ରାମସେବକ' ଗ୍ରାହକ କରୁଥାଏଁ । କେତେକ ରହଣି ସ୍ଥାନରେ ମଧ୍ୟ ଆଗୁଆ ଦଳରେ ରହି କାମ କରୁଥାଏ । ସବୁଠାରୁ ଅଧିକ ଟଙ୍କାର ସାହିତ୍ୟ ବିକ୍ରି କରିଥିବାରୁ ଓ ଗ୍ରାହକ ସଂଗ୍ରହ କରିଥିବାରୁ ବାପା ମତେ ପୂଜ୍ୟ ବିନୋବାଙ୍କ ପାଖକୁ ନେଇଗଲେ ଓ କହିଲେ, "ଇଏ ମୋର ପାଳିତ ମା । ସବୁଠାରୁ ଅଧିକ ସାହିତ୍ୟ ବିକ୍ରି କରିଥିବାରୁ ତାକୁ କିଛି ପଦବୀ ଦିଅନ୍ତୁ ।" ବାପାଙ୍କ କଥା ଶୁଣି ବାବା ହସିଲେ ଓ କହିଲେ "ସେ ମତେ ଏତେ ଭଲ ଭଜନ ଓ ଜଣାଣ ଶୁଣାଉଛି, ତାର ନାମ ମୁଁ ରଖିଛି 'ଭୂଦାନ ଯାତ୍ରା ନାଇଟିଙ୍ଗେଲ ।"

ସେହି ପଦଯାତ୍ରା ସମୟରେ ବାପାଙ୍କର ମା ସ୍ୱର୍ଗବାସୀ ହେଲେ । ବାପା ଓ ବାପି (ଶ୍ରୀ ନବକୃଷ୍ଣ ଚୌଧୁରୀ) ତାଙ୍କର ଶ୍ରାଦ୍ଧ ସାରି ନୟାଗଡ଼ରେ ଆମ ଦଳରେ ମିଶିଲେ । ଲଣ୍ଡାମୁଣ୍ଡ, ମୁହଁରେ ଦାଢ଼ି ନ ଥାଏ, ଗୋଟାଏ ଗାମୁଛା ମୁଣ୍ଡରେ

ବାନ୍ଧୁଥାନ୍ତି । ମୁଁ ଧାଇଁଯାଇ ବାପାଙ୍କୁ ପଚାରିଲି, "ଜଣେ ବୁଢ଼ୀ ମଲାରୁ ତ ଏପରି ଲଣ୍ଡା ହେଲେ, ମୋ ମଲାପରେ ଏପରି ଲଣ୍ଡା ହେବେ ତ ?"

ସେ ମୋ ମୁଣ୍ଡରେ ହାତରଖି କହିଲେ, "ସେପରି କହ ନାହିଁ । ତୋର ଏ ବୁଢ଼ାପୁଅ ଦିନେ ତୋ'ର କୋଳରେ ମୁଣ୍ଡ ରଖି ଏ ଦୁନିଆଁରୁ ବିଦାୟ ନେବ ।"

ଏକଥା ଶୁଣି ଦୁଃଖରେ ମୋ ଆଖି ଛଳଛଳ ହୋଇ ଉଠିଲା । ସେ ହସି ହସି ଭୁବନେଶ୍ୱରରୁ ନେଇଥିବା କୋବି ଓ ଉଖୁଡ଼ାର ଝୋଟେଇ ମୋତେ ଦେଇ କହିଲେ, "ତୋ ପାଇଁ ପରା ଆଣିଛୁ । ଏହାକୁ ନେଇ ସମସ୍ତିଙ୍କୁ ବାଣ୍ଟିବୁ ଓ ତୁ ଖାଇବୁ ।"

୧୯୫୫ରେ ପୁରୀରେ ବିରାଟ ସର୍ବୋଦୟ ସମ୍ମିଳନୀ ହେଲା । ଆମ ପ୍ରଦେଶରେ ହେଉଥିବାରୁ ଆମର ଦାୟିତ୍ୱ ଅନେକ ବଢ଼ି ଯାଇଥାଏ । ମତେ ବାପା ଶ୍ରୀଯୁକ୍ତ ରାମଦାସ୍ ଗାନ୍ଧୀଙ୍କ (ମହାତ୍ମା ଗାନ୍ଧୀଙ୍କ ତୃତୀୟ ପୁତ୍ର) କାମ କରିବା ପାଇଁ କହିଥାନ୍ତି । ତାଳପତ୍ର ଘରରେ ଖୁବ୍ ନଡ଼ିଆ, କୋରିବା ପରିବା କାଟିବା କାମ ଥାଏ । ଅଧିକ ରାତରେ ଆମେ ନିଦରେ ଢୁଳାଇଲେ ସେ ଧୀରେ ହାତ ଧରି ଉଠାଇ ଦିଅନ୍ତି ଓ ନିଜେ ସେ କାମ କରି ବସନ୍ତି । ମୁଁ ଚୁପ୍‌ଚାପ୍ ଶୋଇବାକୁ ଚାଲିଯାଏ । ଥରେ ଥରେ ଶ୍ରୀ ବୈକୁଣ୍ଠନାଥ ମହାନ୍ତିଙ୍କୁ ଡାକି ଏପରି ମଜାକଥା କହନ୍ତି ଯେ ସମସ୍ତିଙ୍କର ନିଦ ଭାଙ୍ଗି ଯାଏ, ଖୁବ୍ ମଜାରେ କାମ ଚାଲେ ।

ଏହିପରି ଦୀର୍ଘ ୧୦ ବର୍ଷ ଧରି ତାଙ୍କର ବ୍ୟକ୍ତିତ୍ୱର ସ୍ପର୍ଶରେ ମୁଁ ନବଜନ୍ମ ଲାଭ କରିଛି । ଅନେକ ଘଟଣା ମୁଁ ଭୁଲି ଯାଇଛି । ସେ ଏ ଦୁନିଆଁରୁ ବିଦାୟ ନେବାର ପରଦିନ ମୁଁ ବାଲେଶ୍ୱର କଲେକ୍ଟରଙ୍କ କୋଠିରେ ଏକ ମିଟିଂରେ ଯୋଗଦେବାକୁ ଯାଇ ସେ ଦାରୁଣ ସମ୍ବାଦ ପାଇ ବେହୋସ୍ ହେବାକଥା ପରେ ଜାଣିଲି ।

ମୋର ଏବେମଧ୍ୟ ଅନୁଭବ ହୁଏ ଯେପରି ତାଙ୍କର ଆଶୀର୍ବାଦ ମୋତେ ସମସ୍ତ ବିପଦରୁ ଦୁଃଖରୁ ଘେରି ରଖିଛି, ସେ ଅମରପୁରରୁ ମୋତେ ଠିକ୍ ବାଟ ଦେଖାଇ ଚାଲିଛନ୍ତି ।"

ଏ ଲେଖାଟି ଅତି ମାର୍ମିକ, ଆନ୍ତରିକ, ଜଣଙ୍କର ଉପଲବ୍ଧିର ପ୍ରତିଫଳନ । ତା ସହିତ ଏହା ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ ଚରିତ୍ରଚିତ୍ରଣ । ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କର ମହାନ୍ ଚରିତ୍ରର ନାନା ଦିଗ ଏଥିରୁ ପ୍ରତୀୟମାନ ହୁଏ । ମଣିଷକୁ ଭଲ ପାଇବା, ବୁଝିବା, ତାକୁ ନୂଆ କରି ଗଢ଼ିବା ସକାଶେ ତାଙ୍କର ଯେଉଁ ଅପୂର୍ବ କମିଆଁ, ତାକୁ କିଛି ଅଂଶରେ ବୁଝି ହୁଏ ।

ଫୁଲବାଣୀ ଜିଲ୍ଲାରେ ବଇଡ଼ା ଆଶ୍ରମ ସ୍କୁଲରେ ୧୯୫୪ରେ ହେଡ୍‌ମାଷ୍ଟର ଥିଲେ କଟକ ଜିଲ୍ଲା କେନ୍ଦ୍ରାପଡ଼ା ଆଡ଼ର ଶ୍ରୀ ଶୁକଦେବ ସାହୁ । ଆର୍ଥିକ ଦୁରବସ୍ଥା ଭିତରେ ସେ ପାଠ ପଢ଼ିଥିଲେ, ବହୁ କଷ୍ଟରେ ନିଜ ସଂସ୍ଥାନ କରିପାରିଥିଲେ । ସେ ହୋଇଥିଲେ ଜଣେ ସତ୍ୟାଗ୍ରହୀ, ସ୍ୱାଧୀନତା ସଂଗ୍ରାମୀ, ଜେଲ୍ ଯାଇଥିଲେ, ବର୍ଧାରେ ତାଲିମ୍ ପାଇଥିଲେ । ଜୁଲାଇ ୧୯୭୨ରେ ସେ ନିଜର ସେହିସବୁ ସ୍ମୃତିକଥା ଲେଖି ମୋ ପାଖକୁ ପଠାଇଥିଲେ । ତହିଁରୁ କିଛି ଉଦ୍ଧୃତାଂଶ ଦେଲି :

"(୧୯୪୧, ବର୍ଧା) ··· ଗୋପବାବୁ ଥିଲେ ସେ ଅଞ୍ଚଳର ସମସ୍ତଙ୍କର 'ବାପା' । ଯେକୌଣସି ଅସୁବିଧାରେ ପଡ଼ିଲେ ସେ ଅଞ୍ଚଳର ଲୋକେ ସେବାଘରକୁ ଆସନ୍ତି । ବିଶେଷକରି ହରିଜନ ଶ୍ରେଣୀର ଲୋକଙ୍କର ସେ ସତେ ଯେପରି ବାପ ମାଆ । ଗାନ୍ଧୀଜୀଙ୍କର ପରିକଳ୍ପିତ ସ୍ୱରାଜ୍ୟ ଉଦ୍ଦେଶ୍ୟରେ ଯେଉଁ ରଚନାତ୍ମକ କାର୍ଯ୍ୟମାନ ପ୍ରବର୍ତ୍ତନ କରାଯାଉଥିଲା ସେ ସବୁଗୁଡ଼ିକ ଗୋପବାବୁଙ୍କୁ କେନ୍ଦ୍ର କରି ବର୍ଧାରେ ପ୍ରବର୍ତ୍ତନ କରାଯାଇଥିଲା । ସେ ବାକ୍ୟବୀର ନ ଥିଲେ, ଥିଲେ ଜଣେ କର୍ମବୀର । ଏଣୁ ଗାନ୍ଧୀଜୀଙ୍କର ପ୍ରତ୍ୟେକ ବାକ୍ୟ ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ ।

ସେ ଥିଲେ ଗୋଟିଏ ଚଳନ୍ତା ଅନୁଷ୍ଠାନ ।

ଖଦୀରେ ଅଗାଧ ବିଶ୍ୱାସଥିବା କର୍ମୀମାନେ (ବ୍ରହ୍ମପୁର) ଜେଲରେ (୧୯୪୨ରୁ) ଥିବାବେଳେ ସରକାର ସେମାନଙ୍କର ପିନ୍ଧିବା ପାଇଁ ମିଲ୍ ଲୁଗା ଯୋଗାଉଥିବାରୁ ସେମାନେ ତାଙ୍କ ପୂର୍ବର ଲୁଗାମାନ ପିନ୍ଧିଲେ । ବହୁଦିନ ଧରି ଅଟକ ରହିବା ଫଳରେ ସେ ଗୋଟିଏ ବଡ଼ ସମସ୍ୟା ରୂପେ ଦେଖାଦେଲା । ତେଣୁ ଗୋପବାବୁ ଚରଖା ସଂଘ ତରଫରୁ ତୁଳା ମଗାଇ ନେଇ କର୍ମୀମାନେ ସୂତାକାଟିବା ବ୍ୟବସ୍ଥା କରିଦେଲେ । ଜେଲ୍‌ରେ ଚରଖା ଥାଏ ଓ ତନ୍ତ ମଧ୍ୟ ଥାଏ । କର୍ମୀମାନେ ସୂତାକାଟି ତୁଳାର ମୂଲ୍ୟ-ବାବଦ ଦେୟ ପରିଶୋଧ କରିସାରିବା ପରେ ଅବଶିଷ୍ଟ ସୂତାକୁ ସେଠାରେ ଲୁଗା ବୁଣିବା ବ୍ୟବସ୍ଥା କରିଥିଲେ । ନିଜେ ଗୋପବାବୁ, ତାଙ୍କର ପୁଅ ବୃନ୍ଦାବାବୁ ଓ ଆମେ ସବୁ ମିଶି ସେ ଲୁଗାତକ ବୁଣି ସମସ୍ତଙ୍କୁ ଯୋଗାଇଲୁ । ଏହିପରି ଭାବରେ ସେ ସମସ୍ୟାର ସମାଧାନ କରାଗଲା ।

ଖଦୀ ପିନ୍ଧିବା କେବଳ ତାଙ୍କର ବାହାରକୁ ଦେଖାଇବା ପ୍ରବୃତ୍ତି ନ ଥିଲା । ସେ ତାଙ୍କର ସମଗ୍ର ପରିବାର ସହ ସମସ୍ତ ପରିଧେୟ, ବିଛଣାପତ୍ର ଆଦି ଖଦୀ ବ୍ୟବହାର କରୁଥିଲେ । ନିଜେ ରାତି ୩ଟାରୁ ଉଠି ସମୂହ ପ୍ରାର୍ଥନାରେ ଯୋଗଦେଇ ସୂତାକାଟି ବସୁଥିଲେ, ପାଇଖାନା ସଫେଇଠାରୁ ବଗିଚାରେ ଶାରୀରିକ ପରିଶ୍ରମ କରିବା ପର୍ଯ୍ୟନ୍ତ କୌଣସିଟାକୁ ସେ ହେୟ ମନେ କରୁ ନ ଥିଲେ । ଜେଲ୍‌ରେ ଥିବାବେଳେ

ଆମ୍ଭମାନଙ୍କ ମେସ୍‌ର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଥିଲା ତାଙ୍କର କାର୍ଯ୍ୟ । ପ୍ରତିଦିନ ସକାଳବେଳା ରୋଷେଇଘରକୁ ଯାଇ ତତ୍ତ୍ୱାବଧାନ କରିବା ଏବଂ ଉପରବେଳା ନିଜେ ଚୂଲି ପାଖରେ ବସି ଆଚାର୍ଯ୍ୟ ମହାଶୟ, ହୋତା ମହାଶୟ ଓ ଗୁଣନିଧି ବାବୁଙ୍କ ସହ ରୁଟି ସେକିବା ତାଙ୍କର ଦୈନନ୍ଦିନ କାର୍ଯ୍ୟର ଅନ୍ତର୍ଭୁକ୍ତ ଥିଲା । ଗ୍ରାମୋଦ୍‌ଯୋଗ ପ୍ରତି ତାଙ୍କର ଦୃଢ଼ ଆସ୍ଥା ଥିଲା ଏବଂ ଜୀବନରେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମଧ୍ୟ ସେ ତାହା କାୟମନୋବାକ୍ୟରେ ପାଳନ କରିଥିଲେ । ଜେଲ୍‌ରେ ଥିବାବେଳେ କର୍ତ୍ତୃପକ୍ଷଙ୍କଠାରୁ ଗୋଟିଏ ଚକି (ପେଷା) ମଗାଇ ଅଟା ବଦଳରେ ଗହମ ଆଣି ନିଜେ ସଫା କରି, ଧୋଇ, ଶୁଖାଇ, ତାକୁ ଅଟା ପେଷି ମେସ୍‌ରେ ସମସ୍ତଙ୍କର ରୁଟି ପାଇଁ ଆବଶ୍ୟକ ହେଉଥିବା ଅଟା ଯୋଗାଇ ଦେଉଥିଲେ । ଦୈନିକ ୩।୪ ଘଣ୍ଟା ଅତି କମ୍‌ରେ ଏ ବାବଦରେ ସେ ଶାରୀରିକ ଶ୍ରମ କରୁଥିଲେ ।”

ଉତ୍ତମ ଭଜନ ଗାୟକ ଓ ସର୍ବୋଦୟ କର୍ମୀ ଶ୍ରୀ ନିଶାକର ଦାସ ୧-୧୧-୭୭ରେ କୋରାପୁଟ ଜିଲ୍ଲା ପାଡ଼ୁଆ ଅଞ୍ଚଳର କୁଲବିଣି ସର୍ବୋଦୟ ଆଶ୍ରମରୁ ତାଙ୍କର ସ୍ମୃତିକଥା ଲେଖି ପଠାଇଥିଲେ, ତନ୍ମଧ୍ୟରେ ଅଛି :

“ପୂଜ୍ୟ ବାପା ଗୋପବାବୁ ଥିଲେ ଓଡ଼ିଶା ସର୍ବୋଦୟ ପରିବାର ସମସ୍ତଙ୍କର ବାପା । ସେ କର୍ମୀମାନଙ୍କୁ ଏପରି ଗଢ଼ି ଯାଇଛନ୍ତି ଯେ ତାଙ୍କର ସକାଶେ ଆମ୍ଭେମାନେ ମଣିଷ ହୋଇଛୁଁ ।”

ତନ୍ମଧ୍ୟରେ ଥିବା ଗୋଟିଏ କୌତୁକପୂର୍ଣ୍ଣ ଘଟନା ଏହିପରି :—

“୧୯୫୭ ମସିହାରେ ଥରେ ଯୋରିଆ ସାହି ଭୂଦାନ ଅଫିସ୍‌ରେ ଥିଲି । ସର୍ବସେବା ସଘର କାର୍ଯ୍ୟ ଆରମ୍ଭ କୋରାପୁଟଠାରେ ହୋଇଥାଏ । ଶ୍ରୀ ନଟବର ସଡ଼େଇ ଜଣେ ଯୁବକ କୋରାପୁଟ ଜିଲ୍ଲାରେ ଦେଓପଟ୍ଟାଙ୍ଗୀଠାରେ ଗ୍ରାମଦାନ ଗ୍ରାମରେ କୃଷିର ବିକାଶ କରିବାକୁ ଟ୍ରେନିଂ ପାଉଥାନ୍ତି । ସେଦିନ ଘରୁ କୋରାପୁଟ ଆସିବା ବାଟରେ (କଟକ) ଯୋରିଆ ସାହି (ଭୂଦାନ ଅଫିସ ଓ ଆଶ୍ରମକୁ) ଗଲେ । ଖଦୀର ପାଇଜାମା ପିନ୍ଧିଥାନ୍ତି । ···ପୂଜ୍ୟ ବାପା ତାଙ୍କୁ ଦେଖି ପଚାରିଲେ, “ତୁମେ କଣ କରୁଛ ?”

ଶ୍ରୀ ନଟବର ସଡ଼େଇ କହିଲେ “ମୁଁ ଦେଓ ପଟ୍ଟାଙ୍ଗୀଠାରେ କୃଷି ଟ୍ରେନିଂ ପାଉଛି ।” ସେଠୁ ପୂଜ୍ୟ ବାପା କହିଲେ “ତୁମେ ଏ କୋଟ ପେଣ୍ଟ ପିନ୍ଧି କୋରାପୁଟ ଯାଇ ଆଦିବାସୀଙ୍କୁ କଣ ଶିକ୍ଷା ଦେବ ? ତମର ଏ ବେଶଭୂଷା ଦେଖି ଆଦିବାସୀମାନେ ଡରି ଜଙ୍ଗଲକୁ ପଳାଇବେ ।”

୧୯୫୮ ମସିହା ଅପ୍ରେଲ ମାସରେ ମୁଁ କୋରାପୁଟରୁ ଯାଇ କଟକ ଥୋରିଆ ସାହିରେ ଥାଏ । ତାଙ୍କ ଦେହାନ୍ତ ହେବା ଆଗଦିନ ବସ୍ତି ଆଶ୍ରମରୁ ଖୁବ୍ ବଡ଼ ପାଚିଲା ତରଭୁଜ ଅସିଥାଏ । ଆମ ସମସ୍ତଙ୍କୁ ବାପା ତାକୁ କାଟି କରି ଖାଇବାକୁ ଦେଲେ, ମଞ୍ଜି ତକ ସେ·ପିଣ୍ଡାକଡ଼ରେ ଗୋଟି ଗୋଟି କରି ନିଜେ ଶୁଖାଇଦେଲେ । ସକାଳୁ ଉଠି ଦେଖିଲେ ମଞ୍ଜି ତକ ଫିଙ୍ଗା ଯାଇଛି । ସେଠୁ ପ୍ରାର୍ଥନା ପରେ ଫକୀର ଭାଇନାଙ୍କୁ ଓ ଅନ୍ୟାନ୍ୟମାନଙ୍କୁ ଡାକି କହିଲେ, "କିଏ ଝାଡ଼ୁକୁ ଧରି ଗୋଡ଼କୁ ଟେକି ଏ ମଞ୍ଜି ତକ ଖୁବ୍ ଜୋର୍‌ରେ ଝାଡ଼ୁ କରି ଦେଇଛି, ଯଦ୍ଦ୍ୱାରା କି ମଞ୍ଜି ତକ ଦୂରରେ ପଡ଼ି ଯାଇଛି ।" ନିଜେ ସେ ମଞ୍ଜି ତକ ଗୋଟି ଗୋଟି କରି ଖୁଣ୍ଟିଲେ । ଫକୀର ଭାଇନା ଓ ଅନ୍ୟ କର୍ମୀମାନେ ବି ଖୁଣ୍ଟିଲେ । ସେଦିନ ସକାଳୁ ପିଣ୍ଡା ବାରଣ୍ଡାରେ ଉଠିଲାବେଳେ କିଏ ଜଣେ ପାଲଟାଳୁଗା ପିଣ୍ଡାକଡ଼ ବାଉଁଶ ଉପରେ ରଖିଥିଲେ । ସେ ପୂଜ୍ୟ ବାପାଙ୍କ ମୁଣ୍ଡରେ ବାଜିଗଲା । ଏ ପ୍ରକାର ଘଟଣା ସେଦିନ ସବୁ ଘଟୁଥାଏ ।

ସର୍ବୋଦୟ କର୍ମୀ ବଣେଇଗଡ଼ର ଖେଜରା ଗ୍ରାମର ଶ୍ରୀ ଭଜନ ଚନ୍ଦ୍ର ମାହାନ୍ତ ୧୪-୯-୬୭ରେ ଗୋପବାବୁଙ୍କ ବିଷୟରେ ଲେଖି ପଠାଇଲେ :

"୧୯୫୦ ମସିହା ଜୁନ୍ ମାସରେ ରାମଚନ୍ଦ୍ରପୁର ଆଶ୍ରମଠାରେ ସର୍ବପ୍ରଥମେ ଗୋପବାବୁଙ୍କ ସହିତ ସାକ୍ଷାତ୍ ହେଲା । ୫ ଜଣ କର୍ମୀଙ୍କ ମଧ୍ୟରୁ ମତେ ଏକୁଟିଆ ଡାକି କହିଲେ—

"ତୁମେ ଏକୁଟିଆ ଟ୍ରେନିଂ ନେଲେ କର୍ମୀଜୀବନ ସାର୍ଥକ ହେବ ନାହିଁ । ତୁରନ୍ତ ଯାଇ ମା' ପଦ୍ମାକୁ (ମୋ ସ୍ତ୍ରୀକୁ) ନେଇଆସ । କିଛି ନ ଭାବି ମୁଁ ପରଦିନ ସାହାନ୍ତଆରୁ ଘରକୁ ଫେରିଆସି ଅଶେଷ ବାଧାବିଘ୍ନ ସତ୍ତ୍ୱେ ମୋ ସ୍ତ୍ରୀଙ୍କୁ ନେଇ ରାମଚନ୍ଦ୍ରପୁର କସ୍ତୁର୍ବା ଟ୍ରେନିଂ କେମ୍ପ୍‌ରେ ପହଞ୍ଚାଇ ଦେଲି । ପରବର୍ତ୍ତୀ ଜୀବନରେ ମୁଁ ଅନୁଭବ କଲି ଯେ ମୁଁ ଯଦି ମୋ ସ୍ତ୍ରୀଙ୍କୁ ଟ୍ରେନିଂ ଦେଇ ନଥାନ୍ତି ତେବେ ଆଜୀବନ କର୍ମୀ ହୋଇ ରହିବା ସମ୍ଭବପର ହୋଇ ନ ଥାନ୍ତା ।

ଟ୍ରେନିଂ ଶେଷ ହେଲା, ମୋତେ ଏକୁଟିଆ ଡାକି କହିଲେ, "ତୁମେ ବର୍ତ୍ତମାନ କଣ କରିବ ?"

ମୁଁ କହିଲି, "ମୁଁ ନିଜ ଘର ଓ ଗ୍ରାମକୁ ମୂଳ କରି ଗ୍ରାମ ସଂଗଠନ କାମ ଆରମ୍ଭ କରିବି ।"

ମୋତେ ସତର୍କ କରି ଦେଇ କହିଲେ, "ଦେଖ, ନିଜ ଗ୍ରାମରେ କର୍ମୀ ହୋଇ ରହିବା ବଡ଼ ମୁସ୍କିଲ୍ କଥା । ସ୍ୱାବଲମ୍ବୀ ଯୋଜନା ପ୍ରସ୍ତୁତ କରି ଗାଁରେ କାମ

ଆରମ୍ଭ କରିଦେ; ଯେପରିକି ଭବିଷ୍ୟତରେ ନିର୍ଦ୍ଧନମୁକ୍ତ ଓ ଯନ୍ତ୍ରାମୁକ୍ତ ହୋଇ କର୍ମୀଜୀବନ ଯାପନ କରି ପାରିବୁ ।"

୧୯୫୨ ସାଲରେ ବିନୋବାଜୀ ଭୂଦାନ ପଦଯାତ୍ରା ଆରମ୍ଭ କଲେ । ଦିନେ ହଠାତ୍ ସ୍ୱପ୍ନରେ ଗୋପବାବୁ ମୋତେ ଡାକି କହିଲେ, "କିରେ ! ଆମ୍ଭେ ବୁଢ଼ାମାନେ ଭୂଦାନ ପଦଯାତ୍ରା ଆରମ୍ଭ କଲୁଣି, ତୁମେ ଶୋଇଚ ?" ମୁଁ ଚମକି ଉଠିଲି । ସତେ କଣ ଗୋପବାବୁ ଭୂଦାନ ପାଇଁ ସମସ୍ତଙ୍କୁ ଲଗାଇବେ ? ପରଦିନ ପୂଜ୍ୟ ଶରତ୍‌ବାବୁଙ୍କ ଠାରୁ ଗୋଟିଏ କାର୍ଡ଼ ଆସି ପହଞ୍ଚିଲା । ସେଥିରେ ଲେଖାଥିଲା, "ଗୋପବାବୁଙ୍କ ଇଚ୍ଛା ଆପଣ ଭୂଦାନ କାମରେ ଘର ଓ ଆଶ୍ରମ ଛାଡ଼ି ଚାଲି ଆସନ୍ତୁ ।"

ମୁଁ ସ୍ୱପ୍ନ କଥା ଭାବି ଆଶ୍ଚର୍ଯ୍ୟ ହେଲି । ଭାବିଲି, ମହାପୁରୁଷମାନଙ୍କ ସ୍ପିରିଟ୍ ବାୟୁମଣ୍ଡଳରେ ବୁଲି କାମ କରନ୍ତି ।

ପୁରୀରୁ ସିଧା ଚଣ୍ଡିଲ୍ ସର୍ବୋଦୟ ସମ୍ମିଳନୀକୁ ଗଲୁ । ବିନୋବାଜୀଙ୍କ ଉପସ୍ଥିତିରେ ସମ୍ମିଳନୀ ହେଉଥାଏ । ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ କର୍ମୀମାନଙ୍କ ସାଥିରେ ପଂକ୍ତି ଭୋଜନରେ ବସିଥାନ୍ତି । ମୁଁ ବାହାରେ ବୁଲି ସବୁ ଲକ୍ଷ୍ୟ କରୁଥାଏ । ଖାଇବା ଝାଲ ପକାଇବା ସ୍ଥାନରେ ପ୍ରାୟ ଦୁଇଶହ ଲୋକ ଜୁଣ୍ଟ ହୋଇ ଅଇଣ୍ଠା ଖଲି ଅଣ୍ଟାଳି ଚାଟୁଥାନ୍ତି । ମୁଁ ଯାଇ କହିଲି—"ବାପା, ଆସ ଗୋଟିଏ ଦୃଶ୍ୟ ଦେଖିବ ।"

ଆସିଲେ, ଦେଖିଲେ । ଆଖିରୁ ଲୁହ ଛଳ ଛଳ ହୋଇଗଲା । ସମ୍ମିଳନୀ ଆରମ୍ଭରେ ଉଠି ସେ ଏହି ଭୋକିଲା ଅଇଣ୍ଠା ପତରଚଟା ଲୋକଙ୍କ କଥା ଆଖିରୁ ଲୁହ ଗଡ଼ାଇ ଭାଷଣ ଦେଇଥିଲେ । ରାଗ ଓ ଦୁଃଖରେ ତାଙ୍କ ଶରୀର ଥରି ଉଠୁଥାଏ । ଗରିବ ଲୋକଙ୍କ କଥା ଭାବିବା ଓ କାମ କରିବା କଥା ସେଦିନୁ ମୋ ମନରେ ଚିର ଜାଗ୍ରତ ହୋଇ ରହିଲା । ସେହି ପ୍ରେରଣା ବଳରେ ମୁଁ "ସୁନ୍ଦରଗଡ଼ ଜିଲ୍ଲା କରଜମୁକ୍ତ ସଂଗ୍ରାମ ସମିତି" ଗଠନ କରି ସାହୁକାରମାନଙ୍କର ଶୋଷଣ ଓ ଅତ୍ୟାଚାରର ବିରୋଧରେ ଅଭିଯାନ ଚଳାଇ ସଫଳତା ଅର୍ଜନ କଲି ।

ପଦଯାତ୍ରାବେଳେ ପ୍ରତି ୬।୭ ମାଇଲ୍‌ରେ ଗୋଟିଏ କେମ୍ପ ହୁଏ । ଯେତେ ଅସୁବିଧାଜନକ ସ୍ଥାନରେ ପହଞ୍ଚିଲେ ସୁଦ୍ଧା ନିଜର ନୀତି ନିୟମକୁ ସେ କେବେହେଲେ ଲଂଘନ କରୁ ନ ଥିଲେ । କର୍ମୀମାନଙ୍କ ମଧ୍ୟରେ ନୈତିକ ସ୍ଖଳନ ଦେଖାଦେଲେ ଗଭୀର ଦୁଃଖ ଓ ରାଗରେ ଗର୍ଜନ କରି ଉଠୁଥିଲେ । ନୀତିବିହୀନ ଜୀବନ ଓ କର୍ମକୁ ସେ ଆଦୌ ପସନ୍ଦ କରୁ ନ ଥିବାର ମୁଁ ଲକ୍ଷ୍ୟ କରିଥିଲି । ମୋ ଜୀବନରେ ଏହାର ଯଥେଷ୍ଟ ପ୍ରଭାବ ପଡ଼ିଛି ।

ଲୋକଙ୍କୁ ବୁଝାଇଲାବେଳେ ସେ ଶାକଦ୍ୱୀପ କଥା କହୁଥାନ୍ତି । "ସେ ଦେଶରେ ସମସ୍ତେ ପରସ୍ପର ସହିତ ମିଳିମିଶି ଚଳୁଥିଲେ । ସେଠାରେ କେହି ଶାସକ ନ ଥିଲେ, କେହି ଶାସିତ ନ ଥିଲେ । କେହି ଦଣ୍ଡ ଦେବାବାଲା ନ ଥିଲେ, କେହି ଦଣ୍ଡିତ ହେବା ଲୋକ ନ ଥିଲେ । ନିଜ କାମ ନିଜେ ଶୃଙ୍ଖଳା ସହିତ କରୁଥିଲେ । ଆସ, ଆମେ ଆମ ଗାଁକୁ ସେହି ଶାକଦ୍ୱୀପରେ ପରିଣତ କରିବା । ଥିଲାବାଲା, ନ ଥିଲାବାଲା, ଉଚ୍ଚନୀଚ, ପଣ୍ଡିତ ଓ ମୂର୍ଖ ଯେତେ ପ୍ରକାର ଭେଦଭାବ ଅଛି ତାକୁ ଆମେ ଦୂର କରିବା ।"

"ଜମି ଦିଅ" ବୋଲି ସେ କହୁ ନ ଥିଲେ, ସର୍ବପ୍ରଥମେ ନୈତିକ ବାୟୁମଣ୍ଡଳ ତିଆରି କରୁଥିଲେ । ଲୋକେ ନିଜ ଇଚ୍ଛାରେ ଜମିଦାନ ଘୋଷଣା କରୁଥିଲେ ।"

କଟକ ଜିଲ୍ଲାରେ କନିକାର ସେବାସାହି ଗ୍ରାମର କର୍ମୀ ଓ ୧୯୫୫ରେ ବିନୋବା-ପଦଯାତ୍ରୀ ଶ୍ରୀ ପ୍ରଫୁଲ୍ଲ ଦାସ ତାଙ୍କ ବିଷୟରେ ନିଜ ଅନୁଭୂତିରୁ ଯାହା ଲେଖିଛନ୍ତି ତହିଁରୁ କିଛି ତଳେ ଦିଆଗଲା :

"ସପରିବାର ସାର୍ବଜନୀନ ସେବାକାର୍ଯ୍ୟରେ ଉତ୍ସର୍ଗୀକୃତ-ଓଡ଼ିଶାର ଚୌଧୁରୀ ପରିବାର ବୋଧହୁଏ ପୃଥିବୀ ଇତିହାସରେ ଅଦ୍ୱିତୀୟ । କାମରେ ସାମାନ୍ୟ ବିଶୃଙ୍ଖଳା, କର୍ମୀମାନଙ୍କ ନୈତିକ ଚରିତ୍ରରେ ସାମାନ୍ୟ ସ୍ଖଳନ ଦେଖିଲେ ସେ ଅକଳ୍ପନୀୟ ଭାବରେ ବିଚଳିତ ହେଉଥିଲେ । ଆମ୍ଭମାନଙ୍କ ପକ୍ଷରେ ଏହା ବେଳେ ବେଳେ ଅସହ୍ୟ ହେଉଥିଲା । ମୁଁ ବେଳେ ବେଳେ ଏହାର ପ୍ରକାଶ୍ୟ ପ୍ରତିବାଦ ବି କରୁଥିଲି । କିନ୍ତୁ ଏସବୁ ସତ୍ତ୍ୱେ ପ୍ରତି ମୁହୂର୍ତ୍ତରେ ଆମେ ତାଙ୍କର ଶାସନ ଚାହୁଁଥିଲୁ । ତାଙ୍କର ଉପସ୍ଥିତିକୁ ଅପରିହାର୍ଯ୍ୟ ମନେ କରୁଥିଲୁ । ସେ ନିଜ ଜୀବନକୁ ତୁଳା ଭଳି ଭଣି ଭଣି ସଜାଡ଼ୁଥିଲେ ଏବଂ ତାଙ୍କର ଅନୁଗାମୀମାନେ ସେହିପରି ନିର୍ଦ୍ଦୋଷ, ନିଷ୍କଳଙ୍କ ଏବଂ ଶୃଙ୍ଖଳିତ ଜୀବନଯାପନ କରନ୍ତୁ ଏହା ସେ ଚାହୁଁଥିଲେ ।

ଆଉଥରେ କୋରାପୁଟର କୁଜେନ୍ଦ୍ରି ସ୍କୁଲରେ ବିନୋବାଜୀଙ୍କ ରହଣି ପ୍ରାୟ ୫।୬ ଦିନ ସେଠାରେ ହୋଇଥିଲା । ବିନୋବାଜୀଙ୍କ ଓଡ଼ିଶା ଯାତ୍ରା ଶେଷ ହେଉଥିବାରୁ ଓଡ଼ିଶାର ସବୁ ସର୍ବୋଦୟ କର୍ମୀ ଏବଂ ଭାରତର ବିଭିନ୍ନ ଅଞ୍ଚଳର ବହୁ ନେତୃସ୍ଥାନୀୟ ଲୋକେ ସେଠାରେ ଏକତ୍ରିତ୍ ହୋଇଥାନ୍ତି । ଥରେ ରାତିରେ ଲାଉ ତରକାରି ଏତେ ପିତା ହେଲା ଯେ କେହି ମୁହଁରେ ଲଗାଇ ପାରିଲେ ନାହିଁ, କୌଣସି ପ୍ରକାରେ ଡାଲି ଲଗାଇ ଗଣ୍ଡେ ଗଣ୍ଡେ ଖାଇଲେ । କିନ୍ତୁ ଗୋପବାବୁଙ୍କୁ ସମ୍ଭାଳେ କିଏ? କାହା ଦୋଷରୁ ତରକାରି ପିତା ହେଲା ତାର ଖୋଲିଲା ଅନୁସନ୍ଧାନ, ରୋଷେଇଘରବାଲାଙ୍କର ଜମାନ୍‌ବନ୍ଦୀ, ଜେରା, ଶେଷରେ ଦୋଷୀର କୌଣସି ସନ୍ଧାନ ନ ମିଳିବାରୁ ରାସ୍ତା ଗଲା ବ୍ୟାସ୍‌ଜୀଙ୍କ ବିରୁଦ୍ଧରେ । ସେ ଖାଦ୍ୟପେୟ ଦାୟିତ୍ୱରେ ଥିବାରୁ ତାଙ୍କୁ ବି ଦିଆଗଲା

ଦଣ୍ଡ, ଅର୍ଥାତ୍ ଓଡ଼ିଶା ବାହାର କର୍ମୀଙ୍କ ଗୋଡ଼ତଳେ ପଡ଼ି କ୍ଷମା ମାଗିବାକୁ ହେବ ଷ୍ଟେଷନଘରବାଲଙ୍କ ଦୋଷ ପାଇଁ ଏବଂ ସମସ୍ତଙ୍କୁ ଖାଇବାରେ କଷ୍ଟ ଦେଇଥିବା ଯୋଗୁଁ । ସେତେବେଳକୁ ଅଧିକାଂଶ ଶୋଇଲେଣି । ତଥାପି ତାଙ୍କୁ ନିଦରୁ ଉଠାଇ କ୍ଷମା ମାଗିବାକୁ ହେବ ଏବଂ ତା ପରଦିନ ସକାଳେ ଓଡ଼ିଶା କର୍ମୀମାନଙ୍କୁ ଅନଶନ କରିବାକୁ ହେବ । ସେ ରାୟ ବିରୁଦ୍ଧରେ ଆପିଲ୍ ନାହିଁ ।

ହେ ଭଗବାନ ! ଅଧରାତିରେ ସେ ଯେଉଁ କାଣ୍ଡ କାରଖାନା ! ସେଦିନ ମୋତେ ବିରକ୍ତ ଲାଗୁଥିଲା ଏ କଠୋର ଦଣ୍ଡ ଦେଖି, କିନ୍ତୁ ଆଜି ଏକଥା ଲେଖିଲାବେଳେ ଭାବୁଛି, ସେ ଠିକ କରିଥିଲେ । ଆମେ ଆମର ପ୍ରତ୍ୟେକ କାର୍ଯ୍ୟକଳାପରେ ଯତ୍ନବାନ୍ ଓ ନିର୍ଭୁଲ୍ ହେବା ଦରକାର । ଏପରି କଠୋର ଅନୁଶାସନ ଅଭାବରୁ ହିଁ ଆମେ ସ୍ୱେଚ୍ଛାଚାରୀ ଓ ଉଚ୍ଛୃଙ୍ଖଳ ହୋଇଯାଉଛୁ । ଉଦ୍ଦାମ କର୍ମପ୍ରବଣତାର ସେ ଥିଲେ ମୂର୍ତ୍ତି ପ୍ରତୀକ ।

ଆଧୁନିକ ତଥାକଥିତ ପାଠୁଆ ପିଲାଙ୍କର ଶରୀର-ଶ୍ରମ-ବିମୁଖତା ଏବଂ କର୍ମକୁଣ୍ଠାକୁ ସେ ଘୃଣା, ସମାଲୋଚନା ଓ ବିଦ୍ରୂପ କରୁଥିଲେ, ଅଥଚ ଯେଉଁ ଶିକ୍ଷିତ ପିଲାଙ୍କ ଭିତରେ ଶରୀରଶ୍ରମ ପ୍ରତି ଆଦର ଦେଖୁଥିଲେ ତାର ସବୁ ଦୋଷ ନିର୍ବିଚାରରେ କ୍ଷମଣୀୟ ହେଉଥିଲା ।

ଥରେ କଟକ ଜିଲ୍ଲା ରାଣୀପଡ଼ା ବିନୋବା ପଦଯାତ୍ରା ରହଣିରେ ରାତି ୧୦ଟା ବେଳେ "ଅନାଦି ଦାସ କୁଆଡ଼େ ଗଲା ?" ବୋଲି ମୋତେ ପଚାରିଲେ । ସେତେବେଳକୁ ସମସ୍ତେ ଶୋଇଲେଣି, ମୁଁ ବସି ଖବର କାଗଜକୁ ରିପୋର୍ଟ ଲେଖୁଛି । ଅନାଦି ଗୋଟିଏ ହରିଜନ ପିଲା, ନୂଆ ମାଟ୍ରିକ୍ ପାଶ୍ କରିଥାଏ, ପଦଯାତ୍ରାରେ ସାଇକ୍ଲୋଷ୍ଟାଇଲ୍ ମେସିନ୍ ଦାୟିତ୍ୱ ତା'ରି । ଅତି ସରଳ, କର୍ମତତ୍ପର ଓ ନିରାଡ଼ମ୍ବର । ସେ ରାତିରେ ଖୁବ୍ ଗରମ ହେଉଥାଏ, ଆମ ଅଳ୍ପ କେତେଜଣଙ୍କୁ ଛାଡ଼ିଦେଲେ ଅଧିକାଂଶ କର୍ମୀ ରାଣୀପଡ଼ା ଗ୍ରାମଭିତରେ ପିଣ୍ଡା ବା ଚଉରା ଉପରେ ଶୋଇଥାନ୍ତି । ମୁଁ ଲଣ୍ଠଣ ନେଇ ଖୋଜିଲି କିନ୍ତୁ ପାଇଲି ନାହିଁ । ଗଲା—

ତାର ପ୍ରାୟ ୬।୭ ମାସ ପରେ ବୋଧହୁଏ କୋରାପୁଟରେ ଦିନେ ରାତିରେ ପୁଣି ସେମିତି ଅନାଦିକୁ ଖୋଜିଲେ । ଦୁର୍ଭାଗ୍ୟବଶତଃ ସେଦିନ ବି ତାକୁ ପାଇଲି ନାହିଁ । ମୋ କାନପାଖେ ମୁହଁ ଲଗେଇ ସେ ଚୁପ୍‌ଚାପ୍ କରି କହିଲେ, "ତୁ ଜାଣୁ ? ରାତିରେ ସେ କୁଆଡ଼େ ଯାଉଛି ?"

ଏକଥା ସେ ଏମିତି ଢଙ୍ଗରେ କହିଲେ ଯେ ଅନାଦି ଯେମିତିକି କଣ ଗୁରୁତର ପୋଲିସ୍-ଧର୍ତ୍ତବ୍ୟ ଅପରାଧ କରିବାରେ ଅଭ୍ୟସ୍ତ । ମୋତେ ଭଲ ଲାଗିଲା

ନାହିଁ, କାରଣ ଅନାଦିକୁ ମୁଁ ଖୁବ୍ ଭଲ ପାଉଥିଲି ଏବଂ ତାର ପ୍ରକୃତି ଭଲ ଭାବରେ ଜାଣିଥିଲି ।

"କୁଆଡ଼େ ଯାଉଛୁ ?" ମୁଁ ପଚାରିବାରୁ ଉତ୍ତର ମିଳିଲା ସେମିତି ଚୁପ୍ ଚୁପ୍ କାନ ପାଖରେ,—

"ସେ ବିଡ଼ି ଖାଏ, ରାତିରେ ସେ ବିଡ଼ି ଖାଇବାକୁ କୁଆଡ଼େ ପଳାଇ ଯାଉଛୁ । ତୋର ମନେଥିବ, ଆଉଦିନେ ରାତିରେ ମଧ୍ୟ ତାକୁ ଖୋଜୁଥିଲି । ମୁଁ ଠିକ୍ ଧରିଲି ସେ ବିଡ଼ି ଖାଏ ।"

ଏକଥା ଶୁଣି ମୋତେ ବଡ଼ ବିରକ୍ତ ଲାଗିଲା, କାରଣ ଅନାଦି ଯେ ବିଡ଼ି ଖାଏ ନାହିଁ ଏକଥା ମୁଁ ଭଲ ଭାବରେ ଜାଣିଥିଲି, କିନ୍ତୁ ତାଙ୍କ ମନ ଅନାଦି ବିରୁଦ୍ଧରେ ଏଡ଼େ ବିଷାକ୍ତ ହୋଇଯାଇଥିଲା ଯେ ତାହାକୁ ବଦଳାଇବା ମୋର ସାଧାଣାତ ଥିଲା ।

କିନ୍ତୁ ସେହି ଅନାଦିକୁ ଯେତେବେଳେ ଦିନେ ସେ ଦେଖିଲେ ଯେ ସେ ଚନ୍ଦ୍ରପୁର ମାଳ ଭିତରେ ଏକ ପାହାଡ଼ ଉପରେ ପ୍ରାୟ ଦେଢ଼ ମହଣ ଓଜନର ଏକ ଖୁଣ୍ଟ କାନ୍ଧରେ ପକାଇ ଗୀତ ଗାଇ ଗାଇ ଅନାୟାସରେ ଚାଲିଛୁ ଗୋପବାବୁଙ୍କ ଆଉ ସମ୍ଭାଳେ କିଏ ? ଅନାଦି ଉପରେ ସୁନା କଳସ ଢାଳି ଦେଲେ । କହିଲେ—

"ଯେ ଏତେ ଶାରୀରିକ କଷ୍ଟ ସହ୍ୟ କରୁଛୁ ସେ କଣ ମିଛୁଆ ହୋଇପାରେ ?"

ହାସ୍ୟ ସମ୍ବରଣ କରି ନ ପାରି ମୁଁ କହିଲି, "ନା ଆଜ୍ଞା, ସେ ବିଡ଼ି ଖାଏ ।" ସଙ୍ଗେ ସଙ୍ଗେ ଉତ୍ତର ମିଳିଲା, "ନା, ନା, କଦାପି ନୁହେଁ ।"

ସେ କହୁଥିଲେ,—ଆଧୁନିକ ଇଂରାଜୀ ଶିକ୍ଷାର ସବୁଠାରୁ ବଡ଼ ଦୋଷ ହେଉଛୁ, ଶିକ୍ଷିତମାନଙ୍କ ଶ୍ରମବିମୁଖତା, କପଟ ହଜୁଆର ପୁଅ ଖାଲି ଏ ବି ସି ଡି ଶିଖିଲେ କଥା ସରିଲେ, ସେ ଆଉ ମାଟି ଉପରକୁ ଓହ୍ଲାଇବାକୁ ନାରାଜ ।

ମୋର ବହୁତ ବଦଭ୍ୟାସ ଥିଲା ଯାହାକୁ ସେ ବରଦାସ୍ତ କରୁଥିଲେ, କିନ୍ତୁ ଧୀରେ ଧୀରେ ତ୍ୟାଗ କରିବାର ପରୋକ୍ଷ ଇଙ୍ଗିତ ଦେଉଥିଲେ । ଥରେ ତାଙ୍କ ନିର୍ଦ୍ଦେଶରେ କୌଣସି କାର୍ଯ୍ୟ ଉପଲକ୍ଷେ କୋରାପୁଟରୁ ଯାଇ କଟକରେ ପହଞ୍ଚିଲି । ତାଙ୍କୁ ଖର୍ଚ୍ଚର ଯେଉଁ ହିସାବ ଦେଇଥିଲି ସେଥିରେ ମୋର ରାଁଖିଆ ଖର୍ଚ୍ଚ ବି ଲେଖା ହୋଇଥିଲା । ସେ ଦେଖି ହସି ହସି କହିଲେ,

"କିରେ, କୋରାପୁଟରେ ତ ଘ'ଠାରୁ ହାଣ୍ଡିଆ ଶସ୍ତା, ତୁ ଘ'ରେ କାହିଁକି ପଇସାଗୁଡ଼ାକ ଖର୍ଚ୍ଚ କରୁଛୁ ?"

ମୋତେ ଖୁବ ଲାଜ ମାଡ଼ିଲା । ଦୀର୍ଘ ତିନିବର୍ଷ ଆଗରୁ ଯେଉଁ ଘ' ଛାଡ଼ିବାକୁ ମୋତେ ସେ ପରାମର୍ଶ ଦେଇ ଦେଇ ବିଫଳ ହୋଇଥିଲେ ଭୂଦାନ ଅଫିସରେ ତାଙ୍କର ଏହି ପଦେ କଥାରେ ମୁଁ ଘ'ଖିଆ ଛାଡ଼ିଦେଲି ।

ମୁଁ ବେଳେ ବେଳେ ମୁଣ୍ଡରେ ବାସ୍ନା ତେଲ ଲଗାଉଥିଲି । ବହୁତଦିନ ଗୋପବାବୁ ତାହା ଲକ୍ଷ୍ୟ କରୁଥିଲେ । ଦିନେ ଭୂଦାନ ଅଫିସ୍ ବାରଣ୍ଡାରେ ମୁଁ ତେଲ ଲଗାଉଥିବା ବେଳେ ଚୁପ୍ କରି ମୋ ପଛପଟରେ ମୋ ମୁଣ୍ଡ ଶୁଙ୍ଘିଦେଇ କହିଲେ—

"ହଇରେ ରାଧାନାଥ । (ସେ ଜଣେ ଭୂଦାନ କର୍ମୀ) ଦେଖିଲୁ ଦେଖିଲୁ ଏପରି ଗନ୍ଧ କଣ ହେଉଛି ! ପଚା ମାଛ କିଏ ରାସ୍ତାରେ ବିକି ନେଉଛି ନା ମୁନିସିପାଲିଟି ମଇଳା ଗାଡ଼ି ଗଲା ଏ ବାଟେ ?"

ରାଧାନାଥ, ରାଧାଶ୍ୟାମ, ଏପରିକି ସାନ ମା' ପର୍ଯ୍ୟନ୍ତ ସମସ୍ତେ ଚାରିପଟେ ବୁଲି ଆସିଲେ, ପଚା ମାଛ ଓ ମଇଳା ଗାଡ଼ିର ସନ୍ଧାନ ଖୋଜି ଏବଂ ସେଭଳି କିଛି ଯାଉନାହିଁ ବୋଲି ଜଣାଇଲେ । ମୁଁ ସାନ ମା'ଙ୍କୁ ଚୁପ୍ କରି ଗନ୍ଧର କାରଣଟା କହିଲି । ସାନ ମା' ବି ଖୁବ୍ ସନ୍ତର୍ପଣରେ ଗୋପବାବୁଙ୍କୁ ଏହା ଜଣାଇଲା । ହସି ହସି କହିଲେ—

"ଓ-ହୋ—ତୁମ ଗୁଣମଣି ଏମିତି ଗନ୍ଧଉଛନ୍ତି !" ମୋତେ ଖୁବ ଲାଜ ମାଡ଼ିଲା ।

ସେ ନିଜେ ଯେପରି ସରଳ ନିରାଡମ୍ବର ଜୀବନଯାପନ କରୁଥିଲେ କର୍ମୀମାନଙ୍କୁ ସେମିତି କରିବାକୁ କହୁଥିଲେ । ସାତହାତ ଖଦଡ଼ ଲୁଗା ବେଶିଦିନ ପିନ୍ଧିଲେ ଠିକ୍ ମଝିରୁ ଚିରିଯାଏ । ତାକୁ ସମ୍ପୂର୍ଣ୍ଣ ଚିରି ଦୋସିଆ କରି ସେ ପିନ୍ଧୁଥିଲେ । ସହକର୍ମୀଙ୍କୁ ଶିଖାଉଥିଲେ । ଅନ୍ଧାରିଆବେଳକୁ କଂସାଏ ପଖାଳ, ଶାଗ, ପୁଣି ବାରଷ୍ଟା ଗୋଟାକରେ ପରିବା ସିଝା, ଭାତ, ଖୁବ୍ ହେଲେ ଡାଲି, ଏହି ଦୁଇଥର ଥିଲା ତାଙ୍କର ପ୍ରଧାନ ଓ ପ୍ରିୟତମ ଖାଦ୍ୟ, ରାତିରେ ଶୋଇବା ପୂର୍ବରୁ ଖଣ୍ଡେ ଗୁଡ଼ ବା ଗୋଟାଏ କଦଳୀ ହେଲେ ଯଥେଷ୍ଟ । (କିନ୍ତୁ ପଚ୍ଛେ ରାସ୍ତଗଡ଼ାରେ ଅନ୍ଧାରୁଆରୁ ମୁଆଁ ପିଠା ବା ଚୂଡ଼ା, ବା ଛତୁ, ଦିପହରେ ଡାଲିନା ଭାତ, ଶାଗ, ବା ଡାଲିସିଝା, ତରକାରି, ଶାଗ, ତାପରେ ରାତିରେ ଆଉ କିଛି ନାହିଁ ।)

ଶ୍ରୀମତୀ ଆଦରମଣି ଦେବୀ (ଶ୍ରୀମତୀ ମହାନ୍ତି)—ଲେଖକ

ଗୋପବାବୁଙ୍କୁ ସମସ୍ତେ ଡରୁଥିଲେ, ଭକ୍ତି କରୁଥିଲେ । ଅଧିକାଂଶ କର୍ମୀଙ୍କ ଭିତରେ ତାଙ୍କର ପ୍ରିୟ ନାମ ଥିଲା 'ବାପା', ଏପରିକି ଖୋଦ୍ ଭନୋବାଜୀ ବେଳେ ବେଳେ 'ବାପା' ବୋଲି କହୁଥିଲେ । ପରିବାରର 'ବାପା' ଭଳି ସେ ସମସ୍ତଙ୍କୁ ସ୍ନେହ କରୁଥିଲେ । ପ୍ରତ୍ୟେକର ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ ସେ ଦେଖିବାକୁ ଭୁଲୁ ନ ଥିଲେ । ସେଥିପାଇଁ ତାଙ୍କର କ୍ରୋଧରେ ସମସ୍ତେ ଯେପରି ଥରହର ହେଉଥିଲେ, ତାଙ୍କର ସାନ୍ନିଧ୍ୟ ମଧ୍ୟ ସମସ୍ତେ କାମନା କରୁଥିଲେ ।

ସେବର୍ଷ ସେପ୍‌ଟେମ୍ବର ମାସରେ ପ୍ରବଳ ବର୍ଷା ହେଲା, ଦଳେଇଘାଇ ଭାଙ୍ଗିଲା । କୋରାପୁଟର ସମସ୍ତ ନଦୀ ହଠାତ୍ ବଢ଼ିଲା । ଡାଂସୁକୁଡ଼ାରେ ରହଣିର ଦୁଇଦିନ ପୂର୍ବରୁ ବଢ଼ିପାଣିର ସମ୍ବାଦ ପାଇ ଆମକୁ ଜଣାଇ ଦିଆଗଲା ଯେ ବଂଶଧାରା ନଦୀର ପାଣି ବଢ଼ୁଛି, ସୁତରାଂ କୁଟ୍ରାଗୁଡ଼ା ନ ଯାଇ ଆଜି ସମସ୍ତଙ୍କୁ ଡାଂସୁକୁଡ଼ା ଯିବାକୁ ହେବ । ପାହାଡ଼ ଜଙ୍ଗଲ ଭିତରେ ପ୍ରାୟ ୧° ମାଇଲ ଚାଲି ଡାଂସୁକୁଡ଼ାରେ ଯାଇ ପହଞ୍ଚିଲୁ । ଦିନ ପ୍ରାୟ ୧୧ଟା ବେଳେ ଅପ୍ରତ୍ୟାଶିତ ଭାବରେ ଆମେ ପହଞ୍ଚିଥିବାରୁ ଗ୍ରାମବାସୀମାନେ ଆମ ସକାଳ ଖାଇବାର କୌଣସି ବନ୍ଦୋବସ୍ତ କରିପାରିଲେ ନାହିଁ । କିନ୍ତୁ ଶୋକରେ ସମସ୍ତଙ୍କ ପେଟ ଜଳୁଥିବ ଏହା ଠିକ ଭାବିନେଇ ଗୋପବାବୁ ୧୬ ମାଇଲ ଦୂର ମୁନିଗୁଡ଼ାରୁ ଦୁଇ ଭାର ଇଡ଼ଲି ଓ କଦଳୀ ପଠାଇ ଦେଇଥାନ୍ତି । ସମସ୍ତ ପଦଯାତ୍ରୀ ଯେ କି ଆନନ୍ଦରେ ତାକୁ ଖାଇ କ୍ଷୁଧା ନିବାରଣ କଲେ ଆଜି ଭାବିଲାବେଳକୁ ସେହି ସ୍ୱର୍ଗତ ଆତ୍ମାଙ୍କ ପ୍ରତି ମୁଣ୍ଡ ନଇଁଆସେ ।

ତାପରେ ଚାରି ପାଞ୍ଚଦିନ ଆମ୍ଭେମାନେ ଦୁର୍ଭେଦ୍ୟ ଚନ୍ଦ୍ରପୁର ମାଳ ଭିତରେ ବୁଲିଲୁଁ (ଏଠି ମଣିଷଖିଆ ବାଘର ପ୍ରବଳ ଦାଉ, ସେହିପରି ମଧ୍ୟ ମଣିଷ-ମାରୁ ଗାଁ-ଉଜାଡ଼ ବଣୁଆ ହାତୀପଲଙ୍କର । —ଲେଖକ ।) ଏ ଅଞ୍ଚଳ ବାହାର ଦୁନିଆଁରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ରହିଥାଏ, ଅନାଂସମୀପ୍ସ ବାଧା ବିପଦର ସମ୍ମୁଖୀନ ହୋଇ । ପ୍ରତି ମୁହୂର୍ତ୍ତରେ ଆମେ ଗୋପବାବୁଙ୍କ ଅଭାବ ଅନୁଭବ କରୁଥିଲୁଁ । ପ୍ରାୟ ଏକ ସପ୍ତାହ ପରେ ମଟର ରାସ୍ତା ଓ ଗ୍ରେଟିଆ ବଜାରରେ (ବୋଧହୁଏ ଗୌଡ଼ ଡେପାଗୁଡ଼ାରେ) ଗୋପବାବୁଙ୍କୁ ଦେଖି ସମସ୍ତଙ୍କ ଛାତି କୁଣ୍ଢେ ମୋଟ ହୋଇଗଲା । ସେ ସମସ୍ତଙ୍କୁ ଆଉଁସି ପକାଇଲେ ଏବଂ ଭଲ ମନ୍ଦ ଖବର ପଚାରିଲେ । କାହାକୁ ମଧ୍ୟ କୁଣ୍ଢାଇ ପକାଇଲେ । ଏହା ହିଁ ଗୋପବନ୍ଧୁ-ଚରିତ୍ରର ମାଧୁର୍ଯ୍ୟ ଓ ମାଦକତା ।''

ରତ୍ନଗିରି (କଟକ ଜିଲ୍ଲା ଯାଜପୁର ସବ୍‌ଡିଭିଜନ୍‌)ର ଶ୍ରୀ ଦେବେନ୍ଦ୍ରନାଥ ପାଢ଼ୀ ତାଙ୍କର ସ୍ମୃତିରୁ କିଛି ଲେଖି ପଠାଇଛନ୍ତି ।

"୧୯୪୨ ମସିହାରେ ଜେଲ୍‌ରେ ଥିଲାବେଳେ ଗୋଟିଏ ଦିନର ଘଟଣା ମନେ ପଡ଼ୁଛି । ଆମେ କେତେଜଣ ସକାଳ ୮ଟା ବେଳେ ଖେଚେଡ଼ି ଖାଇସାରି ବୁଲୁଥିଲୁଁ । ସେହି ସମୟରେ ଗୋପବାବୁ ଆମକୁ ଦେଖି ପଚାରିଲେ,

"ଏହିପରି ସମୟ କାହିଁକି ନଷ୍ଟ କରୁଛ ? କିଛି ପଢ଼ାପଢ଼ି କର, ନହେଲେ ସୂତା କାଟ ।"

ମୁଁ କହିଲି, "ମୋର ଆଦୌ ଅରଟ ନାହିଁ ।"

ସେ ସଙ୍ଗେ ସଙ୍ଗେ କହିଲେ, "ମୋ ଅରଟ ନେଇ ସୂତା କାଟ ।"

ମୁଁ କେବେହେଲେ ଭାବି ନ ଥିଲି ତାଙ୍କ ଅରଟଟି ମତେ ଛାଡ଼ିଦେବେ ସୂତା କାଟିବା ପାଇଁ ! ତାଙ୍କ ସଙ୍ଗରେ ଯାଇ 'ସେଲ୍'ରୁ ସୂତା ଆଣିଲି, ତୁଳା ବାଛି ବଳଣା କଲି । ଖାଇବାକୁ ଭାତ ଆସିସିବାରୁ ଭାତ ଖାଇସାରି ସୂତାକଟା ଆରମ୍ଭ କଲି । ଏହିପରି ତାଙ୍କ ପାଖରୁ ତୁଳା ଆଣି ପ୍ରତିଦିନ ସୂତା କାଟିଲି, ମୋ ଦେଖାଦେଖି ଏହିପରି କେତେଜଣ ସୂତା କାଟିବା ଆରମ୍ଭ କଲେ । ସୂତା ନେଇ ଗୋପବାବୁଙ୍କୁ ଦେଲି । ସେ ସେହି ସୂତା ପଠାକୁ ପଠାଇ ମୋତେ ଗୋଟିଏ ଚରଖା ଏବଂ ଅଧସେର ତୁଳା ଅଣାଇଦେଲେ । ମୋର ସେହିଦିନଠାରୁ ନିଜର ଗୋଟିଏ ଚରଖା ଓ ଅଧସେର ତୁଳା ହେଲା । ସେହିଥିରୁ ମୁଁ ଜେଲ୍‌ରେ ଥିବାବେଳେ ଦୁଇଯୋଡ଼ା ଲୁଗା ଓ ଦୁଇଟି ଚାଦର ବୁଣି ଆସିଲାବେଳେ ସଙ୍ଗରେ ଆଣିଥିଲି । ଆଜି ଅବଧି ମୋର ସେହି ଚରଖାଟି ଓ ତାଙ୍କର ଦେଇଥିବା ଟାକୁଲି ଓ ତମ୍ବରୁ କାଠିଟିଏ ମୁଁ ସାଇତି ରଖିଛି ।

ମୁଁ ଜେଲ୍‌ରୁ ଖଲାସ ହୋଇ ଆସିଲା ପରେ ତାଙ୍କୁ ପଚାରିଲି, "ବର୍ତ୍ତମାନ ମୁଁ କଣ କରିବି ?"

ସେ ମହାପୁରୁଷ ମୋତେ କହିଲେ, "ତୁ ତୋର ଜମିବାଡ଼ିରେ ଚାଷ କର ଓ ଲୋକଙ୍କର ସେବା କର, ଆଗେ ଯେପରି କରୁଥିଲୁ ।" ମୁଁ ଚାଷ କଲି ଓ ଡାକ୍ତରୀ ବ୍ୟବସାୟ ଆରମ୍ଭ କଲି । ଜେଲ ଯିବା ପୂର୍ବରୁ ଏଠାରେ ଡାକ୍ତରୀ ଔଷଧପତ୍ର ବ୍ୟବସାୟ କରୁଥିଲି । ସେ ସମୟରେ ଏ ଅଞ୍ଚଳରେ କେହି ଇଞ୍ଜେକ୍‌ସନ୍ ଦେଇପାରୁ ନ ଥିଲେ । ଔଷଧପତ୍ର ଦେଉଥିବା ହେତୁ ମୋତେ 'ଡାକ୍ତର' ବୋଲି ଡାକିଲେ ।

ସେ ଏ ଅଞ୍ଚଳରେ ପ୍ରଥମେ ହରିଆନା ଷଣ୍ଢ ରଖି ଏ ଅଞ୍ଚଳରେ ଗୋ ଜାତିର ପରିବର୍ତ୍ତନ କରାଇଥିଲେ । ଏ ଅଞ୍ଚଳରେ ପ୍ରଥମେ ରଙ୍ଗଲାଙ୍ଗରେ ଗୋଟିଏ ବୋରିଂ

କୂଅ ଖୋଳାଇଥିଲେ, ଖରାଦିନେ ଚାଷର ଉନ୍ନତି କରିବା ପାଇଁ, ଯାହାକୁ ଏତେଦିନେ ସରକାର କରାଉଛନ୍ତି । ଆଜି ତାଙ୍କର ମନସ୍କାମନା ପୂର୍ଣ୍ଣ ହୋଇଛି । ଧାରପୁରରେ ଜସି ଫାର୍ମ୍ ଖୋଲୁଛି । ରତଳିଙ୍ଗ ପାଟରେ କେତେ ମିଲ୍ ଓ ହରଥାନା ଫାର୍ମ୍ ଖୋଲିଲେଣି । ସେ ୪୦।୪୫ ବର୍ଷ ଆଗରୁ ଏହିସବୁ କରିବେ ବୋଲି ମନ କରିଥିଲେ । ......ଆଜି ଆମେ ଯାହା କରିବା ପାଇଁ ଯାଉଛୁ ସେ ୪୦।୪୫ ବର୍ଷ ଆଗରୁ ସେସବୁ କରିବେ ବୋଲି ଠିକ୍ କରିଥିଲେ । ରାମଚନ୍ଦ୍ରପୁରରେ ଯେତେବେଳେ ବେସିକ୍ ସ୍କୁଲ ହେଲା ସେତେବେଳେ ସବୁ ଘରଗୁଡ଼ିକ ଛଣରେ ଛପର ହୋଇଥିଲା । ପ୍ରତିବର୍ଷ ଖରାଦିନ ଝଡ଼ରେ ଘରଗୁଡ଼ିକ ଉଡ଼ିଯାଉଥିଲା । ସେଥିପାଇଁ ସେ ପୁରୀ ଓ ସତ୍ୟବାଦୀ ଆଡ଼ୁ ଗୁଡ଼ାଏ ଝାଉଁଗଛ ଆଣି ବ୍ରାହ୍ମଣୀ ନଦୀ କରେ କରେ ପକାଇଥିଲେ । ଆମର ଏ ପାଖରେ ସେତେବେଳେ ଗୋଟିଏ ବୋଲି ଝାଉଁଗଛ ଦେଖିବାକୁ ମିଳୁ ନ ଥିଲା । ତାହା ଆଜି ବୁଢ଼ା ଝାଉଁଗଛ କେତୋଟି ପ୍ରମାଣ କରୁଛି । ତା ସାଙ୍ଗକୁ ୟୁକାଲିପ୍ଟସ୍ ଗଛଟି ଏ ଅଞ୍ଚଳର ପ୍ରଥମ ବୋଲି ପ୍ରମାଣ କରୁଛି । ତାଠାରୁ ମୋଟା ଓ ଉଚ୍ଚତର ଗଛ ଏ ଅଞ୍ଚଳରେ ନାହାନ୍ତି । ...ଆମ ଏହି ଅଞ୍ଚଳରେ ବିଲାତି ବାଇଗଣ ଓ କୋବି ପ୍ରଥମେ ଚାଷ କରିବା ଓ ଏ ଅଞ୍ଚଳରେ ପ୍ରଥମେ ସେହିସବୁ ଗଛରେ ସାର ଦେବା କରିଥିଲେ ସେ । ......ତାଙ୍କର ସବୁବେଳେ ଇଚ୍ଛା ଥିଲା, ଆମର ଏ ଅଞ୍ଚଳରେ ଯେଉଁ ଜିନିଷ ନାହିଁ ସେହିସବୁ ଲୋକଙ୍କ ଆଗରେ ଦେବା ।

ଆମ ଗ୍ରାମରେ ଗୋଟିଏ ସଭା ହେଲା, ସେଥିରେ ଗୋପବାବୁ, ବୋଉ (ରମା ଦେବୀ), ଭଗୀରଥ ଦାସ, ବୃନ୍ଦବାବୁ ଏବଂ ଚମ୍ପା ଦେଈ ଆସିଥାନ୍ତି । ଗ୍ରାମରେ ସ୍ତ୍ରୀ ଲୋକମାନେ କପାର ସୂତା କାଟିବେ, ପଢ଼ାପଢ଼ି କରିବେ । ଯେଉଁସବୁ ଗହଣା ପିନ୍ଧିଥିଲେ ତାକୁ ବର୍ଜନ କରିବେ ଏହିସବୁ କଥା ସଭାରେ ପଡ଼ିଲା । ସେତେବେଳେ ଅନୁ ଜେନାଙ୍କର ଘମାଘୋଟ ଜମିଦାରୀ ଥିଲା । ତାଙ୍କ ଘରେ ସ୍ତ୍ରୀ ଲୋକମାନେ ପ୍ରତିମାସରେ କଟକଫେସଣା (ଫ୍ୟାସନ୍) ଗହଣା ପିନ୍ଧନ୍ତି, ତା ଦେଖି ଆମମାନଙ୍କ ଘରେ ସ୍ତ୍ରୀ ଲୋକମାନେ ବଣିଆ ଡାକି ଜିନିଷ ତିଆରି କରନ୍ତି । ଏହି ବିଷୟରେ ମୁଁ ଗୋପବାବୁଙ୍କୁ ପଚାରିଲି । ସେ ମୋତେ କହିଲେ, "ହେଉ, ମୁଁ ତାହାର ବ୍ୟବସ୍ଥା କରିବି ।" କିଛିଦିନ ଗଲା ପରେ ଆମ ଗ୍ରାମକୁ ଆଶ୍ରମରୁ ଗୋଦାବରୀ ଦେଈ ନାମରେ ଜଣେ ନାରୀକର୍ମୀ ଆସି ପହଞ୍ଚିଲେ । ସେ ଅନୁ ଜେନାଙ୍କ ଘରେ ରହିଲେ ଓ ଆମ ଗ୍ରାମରେ ସ୍ତ୍ରୀ ଲୋକମାନଙ୍କୁ ସୂତାକଟା, ଲେଖାପଢ଼ା ଶିଖାଇଲେ ଓ ଗହଣା ପିନ୍ଧିବା କଣ ଦରକାର ସେ ବିଷୟରେ ସ୍ତ୍ରୀ ଲୋକମାନଙ୍କୁ ବୁଝାଇଲେ । ସେହିଥିରୁ ଆମ ଗ୍ରାମରେ ଗହଣା ପିନ୍ଧିବା ଉଠିଗଲା ।

କଟକ ଜିଲ୍ଲା ଯାଜପୁର ସବ୍‌ଡିଭିଜନରେ ପ୍ରୀତିପୁର ଅଡ଼ର କଣ୍ଟାପଡ଼ା ଗ୍ରାମର ବାସିନ୍ଦା ଶ୍ରୀ ପଦ୍ମନାଭ ରାଉତ, ୧୯୧୪ରେ ତାଙ୍କର ଜନ୍ମ । ସେ ଜଣେ

ଗାନ୍ଧୀବାଦୀ ସ୍ୱାଧୀନତା ସଂଗ୍ରାମୀ ଓ ଗୋପବାବୁଙ୍କ ଅନୁସରଣ କରିଥିବା ସର୍ବୋଦୟ କର୍ମୀ । ତା ୫-୭-୧୯୭୬ରେ ସେ ତାଙ୍କର କିଛି ସ୍ମୃତି ଲେଖି ପଠାଇଥିଲେ । ତହିଁରେ ଅଛି—

"ସ୍ୱର୍ଗତ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଏକ ବ୍ୟକ୍ତିବିଶେଷ ହେଲେହେଁ ତାଙ୍କର ପୂର୍ଣ୍ଣାଙ୍ଗ ଜୀବନଟି ହେଉଛି ତ୍ୟାଗ, କର୍ମ, ଜ୍ଞାନ ଓ ପ୍ରେରଣାର ଏକ ଦୀପ୍ତିମାନ ଉତ୍ସ ଓ ଅନୁଷ୍ଠାନ ।"

# ଚଉବନ

## ୰ ଗୋପବନ୍ଧୁ ଚୌଧୁରୀଙ୍କ ଲେଖା

୧୯୨୧ ଶେଷ୍‌ର କଂଗ୍ରେସରେ ଯୋଗଦେବା ପୂର୍ବରୁ ୰ ଗୋପବନ୍ଧୁ ଚୌଧୁରୀ ଲେଖାଲେଖି କରୁଥିଲେ କି ନାହିଁ ତାହା ମତେ ଜଣା ନାହିଁ । 'ସାଧାରଣ ସେବକ'ରେ କାର୍ଯ୍ୟ କରିବାବେଳଠୁଁ ଓଡ଼ିଆରେ ତାଙ୍କର ଅନେକ ଲେଖା ଅଛି । ସେସବୁ ସାହିତ୍ୟ ସୃଷ୍ଟି ପାଇଁ ଉଦ୍ଦିଷ୍ଟ ନ ଥିଲା, ତାର ସମ୍ପର୍କ ଥିଲା ମୁଖ୍ୟତଃ ତାଙ୍କର ଲକ୍ଷ୍ୟ ଓ କାର୍ଯ୍ୟ ସହିତ । ତେଣୁ ତହିଁରୁ ଅଧିକାଂଶ ଥିଲା ଗାନ୍ଧୀ ବିଚାର, ସର୍ବୋଦୟ କାର୍ଯ୍ୟ ଓ ଭୂଦାନ ଦର୍ଶନ, ଭୂଦାନ କାର୍ଯ୍ୟ ସମ୍ପର୍କରେ । ବିଚାର ଓ ଆଚରଣରେ ସେ ନିଷ୍ଠାପର ଗାନ୍ଧୀବାଦୀ ଥିଲେ, ତାଙ୍କର ଆକାଙ୍କ୍ଷା ଥିଲା ସେହି ଦର୍ଶନ ଓ ମାର୍ଗକୁ ଜନସାଧାରଣ କେମିତି ଜାଣନ୍ତୁ, ବୁଝନ୍ତୁ, ତାକୁ ଜନସାଧାରଣଙ୍କ ପାଖେ ପହଞ୍ଚାଇ ଦେବାକୁ ତାଙ୍କ ଉଦ୍ୟମର ଗୋଟିଏ ଅଙ୍ଗ ତାଙ୍କ ଲେଖା ।

### ସୂତାକଟା

ତାଙ୍କର ପ୍ରଥମ ଲେଖା 'କଟକ ପ୍ରିଣ୍ଟିଂ ପ୍ରେସ' ଦ୍ୱାରା ୧୯୨୫ରେ ପ୍ରକାଶିତ ୬୧ ପୃଷ୍ଠାର ଗୋଟିଏ ପୁସ୍ତକ, 'ସୂତାକଟା' । ସେଥିରେ ୧୯ଟି ରେଖାଚିତ୍ର ଅଛି । ସେତେବେଳେ ତା ମୂଲ୍ୟ ଛ'ଅଣା । ପୁସ୍ତକର ଭୂମିକାରେ ସେ ଲେଖିଛନ୍ତି ଯେ ଯେପରି ସୂତାକଟା ନ ଜାଣିବା ଲୋକ ସୂତା କାଟିପାରିବେ ଓ ଯେଉଁମାନେ ସୂତା କାଟୁଛନ୍ତି ସେମାନେ ତାର ଭଲ ହାତ ଶିଖି ସେତିକି ସମୟ ଭିତରେ ଅଧିକ

ଆଠ ଦଶ ଗୁଣ ଆହୁରି ଅଧିକ ସୂତା କାଟି ପାରିବେ ସେହି ଉଦ୍ଦେଶ୍ୟରେ ସେ ତାକୁ ଲେଖିଛନ୍ତି । ସୂତା କାଟିବା ସକାଶେ ତୁଳାକୁ କେମିତି ପ୍ରସ୍ତୁତ କରାଯିବ, ସୂତାକୁ କେମିତି ତୁଳା-ବଳଣା କରାଯିବ, ତୁଳା-ବଳଣାରୁ କେମିତି ସୂତା କଟାଯିବ ଏ ଧରଣର ବିଷୟ ଏ ପୁସ୍ତକରେ ଶିକ୍ଷା ଦିଆ ହୋଇଛି ।

## ଡାଇରିଖାତା

୧୯୨୭ରୁ ୧୯୩୧ ଯାଏ ସେ ପ୍ରତ୍ୟହ ଡାଇରି ଲେଖୁଥିଲେ, କିନ୍ତୁ ୧୯୩୧ରେ ହଠାତ୍ ଭାବିଲେ, "ଡାଇରି ଲେଖିବାରେ ମୋର ଆତ୍ମାଭିମାନ ନାହିଁ ତ !" ଆଉ ଡାଇରି ଲେଖିଲେ ନାହିଁ । ଏକଥା ସେ ତାଙ୍କ ଅସମ୍ପୂର୍ଣ୍ଣ ଓ ଅପ୍ରକାଶିତ 'ଆତ୍ମଜୀବନୀ'ରେ ଲେଖିଛନ୍ତି । ୧୯୩୦ ଅପ୍ରେଲରୁ ୧୯୩୧ ମାର୍ଚ୍ଚ ଯାଏ ତାଙ୍କର ପ୍ରଥମଥର କାରାବାସ ବେଳର ମାତ୍ର ଦୁଇଖଣ୍ଡ ଡାଇରି ଖାତା । ସେ ବିଷୟରେ ଏ ପୁସ୍ତକରେ ଅନ୍ୟତ୍ର ଆଲୋଚନା କରି ହୋଇଛି ।

## ଆତ୍ମଜୀବନୀ

ସେ ଆତ୍ମଜୀବନୀଟିଏ ଲେଖିବା ଆରମ୍ଭ କରି ତହିଁରେ ୧୯୨୩ ପର୍ଯ୍ୟନ୍ତ ନିଜ ଜୀବନର ଘଟଣାଗୁଡ଼ିକ ଲେଖିଥିଲେ, ଆଉ ଲେଖି ନାହାନ୍ତି । ମୁଖବନ୍ଧରେ ଲେଖିଥିଲେ "ମୋର ଅନୁଭୂତିରୁ ଯେତେ ଯାହା କର୍ମୀମାନଙ୍କର ଶିଖିବାର ଅଛି ତାହା ଲେଖିବା ସ୍ଥିର କରିଛି ।" ତାହାର ରଚନାକାଳ ୧୯୩୧ର ଦ୍ୱିତୀୟାର୍ଦ୍ଧ କିମ୍ବା ୧୯୩୪ । ଯାହା ଲେଖା ହୋଇଛି ତାହା ଅପ୍ରକାଶିତ । ଏଥିରୁ କିଛି ଅଂଶ ଏ ପୁସ୍ତକରେ ଉଦ୍ଧୃତ ହୋଇଛି ।

ଏହାପରେ ଓ ୧୯୪୦ ପର୍ଯ୍ୟନ୍ତ ୬ ଗୋପବନ୍ଧୁ ଚୌଧୁରୀଙ୍କର କୌଣସି ଲେଖା ମୁଁ ପାଇ ନାହିଁ । ତାଙ୍କ ସମ୍ପାଦନାରେ ବରିରୁ ଅଗଷ୍ଟ ୧୯୩୮ରେ 'ଗାନ୍ଧୀ ସେବାସଂଘ ପତ୍ରିକା' ବାହାରିଲା ଓ ବର୍ଷେ ଚାଲି ବନ୍ଦ ହୋଇଗଲା । ତହିଁରେ ତାଙ୍କର କେତୋଟି ଲେଖା ପ୍ରକାଶିତ ହୋଇଥିଲା ।

୧୯୪୦ ଜାନୁଆରି ପହିଲରୁ ସେ 'ସତ୍ୟାଗ୍ରହୀ' ପତ୍ରିକାକୁ ପୁନଃପ୍ରକାଶ କରିବାକୁ ଲଗିଲେ । ସେ ପତ୍ରିକାଟି ୧୯୩୧ରେ ଆଇନ-ଅମାନ୍ୟ ଆନ୍ଦୋଳନ ବେଳେ ବନ୍ଦ ହୋଇଯାଇଥିଲା । ୧୯୩୧ ପୂର୍ବରୁ ତାର କୌଣସି ସଂଖ୍ୟା ମୁଁ ପାଇପାରି ନାହିଁ । କିନ୍ତୁ ୧୯୪୦ରେ ପୁନଃ ପ୍ରକାଶ ପରେ ଯେଉଁ ସଂଖ୍ୟାଗୁଡ଼ିକ ବାହାରିଥିଲା ତାକୁ ଦେଖିଛି । ପ୍ରାୟ ବର୍ଷେ ଚାଲି ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ପ୍ରେସ-ସେନ୍ସରଶିପ୍ ଯୋଗୁଁ ୧୯୪୦ ଅକ୍ଟୋବର ୩୦ରୁ ତାହା ବନ୍ଦ ହୋଇଥିଲା । ସେହି ପ୍ରାୟ ବର୍ଷେ ଭିତରେ ତହିଁରେ ୬ ଗୋପବନ୍ଧୁ ଚୌଧୁରୀଙ୍କର ସ୍ୱଗୋଟି ଲେଖା

ଛପା ହୋଇଥିଲା । ତହିଁରୁ ଗୋଟିଏ ଲେଖା "ମାଲିକ ଓ ଶ୍ରମିକ" । ଲେଖାଗୁଡ଼ିକ ଏ ପୁସ୍ତକରେ ଅନ୍ୟତ୍ର ଆଲୋଚିତ ହୋଇଛି ।

ଏହାପରେ ୧୯୪୫ରେ ପ୍ରକାଶିତ ହେଲା ତାଙ୍କର ପୁସ୍ତକ "କୃଷୀମୂଲିଆ ଗାନ୍ଧୀ" ଓ "ଗାନ୍ଧୀ ଓ ଉତ୍କଳ" ।

୭ ଗୋପବାବୁ ମହାତ୍ମାଜୀଙ୍କର ସବୁ ଲେଖାକୁ ଛପା ହୋଇଥିବା ଭାଷଣକୁ, ଗାନ୍ଧୀଜୀ ଓ କଂଗ୍ରେସ ଆନ୍ଦୋଳନ ବିଷୟରେ ବିଭିନ୍ନ ସମୟରେ ପ୍ରକାଶିତ ବିଭିନ୍ନ ପୁସ୍ତକ ଓ ଲେଖାକୁ ତନ୍ନ ତନ୍ନ କରି ପଢ଼ୁଥିଲେ । ଗାନ୍ଧିଜୀଙ୍କ ବିଚାର ଓ ଉକ୍ତି ବିଷୟରେ ଗମ୍ଭୀର ଭାବେ ଚିନ୍ତା କରୁଥିଲେ ଓ ନିଜ ଦୈନନ୍ଦିନ ଜୀବନରେ ତାକୁ ଯେ କେବଳ ପ୍ରୟୋଗ କରୁଥିଲେ ସେତିକି ନୁହେଁ, ଯେ କୌଣସି ପ୍ରଶ୍ନ ତାଙ୍କ ଆଗରେ ପଡ଼ିଲେ ସେ ଭାବୁଥିଲେ, "ଏ ବିଷୟରେ ଗାନ୍ଧୀଜୀ କଣ କହିଛନ୍ତି ? ଏ ପରିସ୍ଥିତିରେ ସେ କିଛି ବାଟ ବତାଇଛନ୍ତି କି ?" ବିଶାଳ ଗାନ୍ଧୀ ସାହିତ୍ୟକୁ ବିଭିନ୍ନ ସମୟରେ ପଢ଼ିଲା ବେଳେ ଗାନ୍ଧୀଜୀଙ୍କର କୌଣସି କୌଣସି ଉପଦେଶ ବା ଉକ୍ତି, ତାଙ୍କ ଜୀବନର କୌଣସି କୌଣସି ଘଟଣାର ବର୍ଣ୍ଣନ ଆଦି ସେ ତାଙ୍କ ଟିପାଖାତାରେ ଟିପି ରଖୁଥିଲେ । ସେ ସେବିଷୟରେ ଯେତେ ଯେତେ ଅନ୍ୟାନ୍ୟ ପୁସ୍ତକ ପଢ଼ିଥିଲେ ତା ମଧ୍ୟରେ ଥିଲା ପଟ୍ଟାଭି ସୀତାରାମାୟାଙ୍କ "କଂଗ୍ରେସର ଇତିହାସ", ଜବାହରଲାଲ ନେହେରୁଙ୍କ ଜୀବନୀ ଓ ଅନ୍ୟାନ୍ୟ ଲେଖା, ମହାଦେବ ଦେଶାଇଙ୍କ 'ବାର୍ଦୋଲି ସତ୍ୟାଗ୍ରହ', 'ଏକ୍ ଧର୍ମଯୁଦ୍ଧ କେ ଖୁଦାଇ ଖିଦ୍‌ମତ୍‌ଗାର୍', ରାଜେନ୍ଦ୍ର ପ୍ରସାଦଙ୍କ 'ଚମ୍ପାରଣ ସତ୍ୟାଗ୍ରହ' ଆଦି ।

## କୃଷୀ ମୂଲିଆ ଗାନ୍ଧୀ

ସେହିସବୁ ଟିପାଖାତାଗୁଡ଼ିକ ଏକାଠି କରି ତହିଁରେ ଥିବା ଉପାଦାନକୁ ସମସ୍ତ କ୍ରମପର୍ଯ୍ୟାୟରେ ସଜାଇ ତାହାର ଉପରେ ଆଧାରିତ କରି ସେ "କୃଷୀ ମୂଲିଆ ଗାନ୍ଧୀ" ଲେଖିଲେ । ଛପା ୧୮୭ ପୃଷ୍ଠାର ପୁସ୍ତକଟିଏ । ଏତିକି ପୃଷ୍ଠା ଭିତରେ ସରଳ ଓଡ଼ିଆ ଭାଷାରେ,—ଯେପରିକି ଗାଁ ଗଣ୍ଡାର ଅଳ୍ପପାଠୁଆ ଲୋକେ ବି ସହଜରେ ଓ ଆଗ୍ରହରେ ପଢ଼ିବେ, ବୁଝିବେ,—ସେ ଲେଖିଲେ ସମ୍ଭବତଃ ତାଙ୍କ ଶ୍ରେଷ୍ଠ ପୁସ୍ତକ, "କୃଷୀ ମୂଲିଆ ଗାନ୍ଧୀ" । କିଣିବାକୁ ମହଙ୍ଗା ବି ନୁହେଁ । ପ୍ରଥମ ସଂସ୍କରଣର ପ୍ରତି ବହିର ମୂଲ୍ୟ ୫ ଟଙ୍କାରୁ କମ୍ ହୋଇଥିବ । ପାଞ୍ଚବର୍ଷ ପରେ ଟିକିଏ ପରିବର୍ଦ୍ଧିତ ହୋଇ ୧୯୫୪ରେ ବାହାରିଲାବେଳକୁ ମୂଲ୍ୟ ୫ ଟଙ୍କା ମାତ୍ର ।

ଏଥିରେ ଚୌଦଟି ଅଧ୍ୟାୟ ଅଛି । ବିଷୟସୂଚୀଟି ପ୍ରଥମ ସଂସ୍କରଣରେ ନ ଥିଲା । ୭ ଗୋପବନ୍ଧୁ ଚୌଧୁରୀ ଦ୍ୱିତୀୟ ସଂସ୍କରଣ ବେଳକୁ ତାକୁ ପ୍ରସ୍ତୁତ କରି ଯୋଡ଼ିଛନ୍ତି । ତହିଁରୁ ସମୁଦାୟ ପୁସ୍ତକଟି ବିଷୟରେ ମୋଟାମୋଟି ଧାରଣା ମିଳିଯାଏ । ବିଷୟସୂଚୀରୁ କେତୋଟି ଅଧ୍ୟାୟର ଶିରୋନାମା ଉଦ୍ଧୃତ କଲି—

"୧—ଗରିବଙ୍କ ପ୍ରତି ପ୍ରେମ—ରାମନାମ, ଅକ୍ଷୟ କବଚ

୨—ଗୃହକର, ଆପଣା ଘରର ଜଣେ। ଗୃହୀ ପ୍ରଜାଙ୍କୁ ନ୍ୟାୟ ମିଳିବାର ବାଟ

୬—କୁଷ୍ଠରୋଗୀ ସେବା—ଡରୁଆ ସାହସୀ ପାଲଟିଲ

୭—ସ୍ୱାର୍ଥ ବନାମ ସେବାଧର୍ମ—ପ୍ଳେଗ୍‌ରୋଗୀ ସେବା

୯—'ସତ୍ୟାଗ୍ରହ'ର ଜନ୍ମ—ନିରକ୍ଷରଙ୍କ ତ୍ୟାଗ ହିଁ ଶକ୍ତି।

୧୧—ସତ୍ୟାଗ୍ରହରେ ଗରିବ କୁଲି—ସତ୍ୟାଗ୍ରହରେ ସ୍ତ୍ରୀ ଲୋକ।

୮—କଂଗ୍ରେସ ଲୋକଙ୍କ ହୃଦୟ ସ୍ପର୍ଶ କରୁ—ଗାଁରେ ସଂଗଠନ ଶକ୍ତି।

୩୧—ଅସହଯୋଗ ଏକ ଅଧିକାର।

୩୨—ବଡ଼ କାମ ହିଂସାଦ୍ୱାରା ହୁଏ ନାହିଁ।

୩୫—ଅହିଂସ ଅସହଯୋଗର ଶକ୍ତି—ଅହିଂସା ଯୁଦ୍ଧର କଡ଼ା ନିୟମ—ଅହିଂସା ବାଟରେ ଦୁନିଆର ମୁକ୍ତି।

୪୩—ଅସହଯୋଗର ମହିମା—ଚାଷୀ ମୂଲିଆ ବନାମ ପାଠୁଆ—ଗାନ୍ଧୀ ଓ ଶିକ୍ଷିତ ଲୋକେ।

୫୪—"ରାଜ୍ୟର ସବୁ ଭାର ଚାଷୀ ଉପରେ"

୫୫—ବ୍ୟୂହ ରଚନା—ଚୋର କଟୁଆଳଙ୍କୁ ଦଣ୍ଡ ଦିଏ।

୫୮—ଅସହଯୋଗର ସୀମା—ଲୋକଙ୍କ ସାହସ ବଢ଼ିଲା

୫୯—ଲୋକଶିକ୍ଷା ସଂଗଠନ—ଚାଷୀ ମହାଜନ ସମ୍ବନ୍ଧ—ଅପରିଗ୍ରହର ଶକ୍ତି

୬୧—ସତ୍ୟାଗ୍ରହୀ ମୁଣ୍ଡ ଅଣ୍ଟା ରଖୁ—ସତ୍ୟାଗ୍ରହୀ ପ୍ରଭୁଙ୍କ ବଳରେ ଲଢ଼ନ୍ତି।

୬୩—ହୃଦୟ ପରିବର୍ତ୍ତନ ବିଜୟର ଚାବି—ଜୟରେ ପ୍ରତିପକ୍ଷର ଭାଗ ଅଛି।"

ପ୍ରତି ପରିଚ୍ଛେଦ ଗୋଟିଏ ଗୋଟିଏ ଅଲଗା ଅଲଗା ବିଷୟ। ପ୍ରତି ପରିଚ୍ଛେଦରେ ଲେଖକ କୌଣସି ବିଷୟ ଉଠାନ୍ତି, କେତେକ ଘଟଣା ବର୍ଣ୍ଣନା କରନ୍ତି ଓ ତହିଁରୁ ମିଳୁଥିବା ତାତ୍ପର୍ଯ୍ୟ କ ସିଦ୍ଧାନ୍ତ କଥା ବୁଝାନ୍ତି, ମଝିରେ ମଝିରେ ସେ ବିଷୟରେ ଗାନ୍ଧୀଜୀଙ୍କ ଲେଖା ବା ବକ୍ତୃତାରୁ କେତେବେଳେ ଉଦ୍ଧୃତ କରନ୍ତି ବା ସେ ବିଷୟରେ ଗାନ୍ଧୀ-ଜୀବନର ବିବିଧ ଘଟଣା ବର୍ଣ୍ଣନା କରନ୍ତି। ପରିଚ୍ଛେଦଟି ସରିଲା ବେଳକୁ ଗାନ୍ଧୀ-ଦର୍ଶନ ଓ ଗାନ୍ଧୀ-ଜୀବନର ନାନା କଥା ପାଠକ ବୁଝି-ସାରିଥାଏ ଓ ତହିଁରୁ ନିଜ ପାଇଁ କିଛି ପ୍ରେରଣା ବା ନୂଆ ଭାବ ପାଇଥାଏ।

୰ ଗୋପବନ୍ଧୁ ଚୌଧୁରୀ ବୁଝିଥିଲେ ଯେ ଗାନ୍ଧୀ ବିଚାର ଅନୁସାରୀ ନୂଆ ସମାଜ ନୂଆ ଦୁନିଆଁ ଗଢ଼ିବାକୁ ଗଲେ ଆଗ ସମାଜର ଚେର ମୂଳରେ ଲୋକ-ଶିକ୍ଷା କାର୍ଯ୍ୟ କରାଇବାକୁ ପଡ଼ିବ । ସେଥିପାଇଁ ଅପାଠୁଆ, ଅଳ୍ପ ପାଠୁଆ, ମଳମୁଣ୍ଡିଆ,' ଗଣ୍ଡ ମଫସଲର ସାଧାରଣ କ୍ଷେତ୍ର ଓ ସେହି କ୍ଷେତ୍ରର କର୍ମୀଙ୍କୁ ଦିଗ ଦେବା ଆଗ କାମ । ଏ ପୁସ୍ତକର ପ୍ରଥମ ସଂସ୍କରଣର ଆରମ୍ଭରେ "ନିଜ କଥା ପଦେ"ରେ ସେ ଲେଖିଛନ୍ତି ଯେ ଜେଲ୍‌ରେ ଥିଲାବେଳେ କେତେକ କର୍ମୀଙ୍କ ସଙ୍ଗେ ମିଶି ତାଙ୍କର ଧାରଣା ହେଲା ସେମାନଙ୍କ ମନରେ ଆତ୍ମବିଶ୍ୱାସ ପରିବର୍ତ୍ତେ ଅଛି ହୀନମନ୍ୟତା (ମନସ୍ତତ୍ତ୍ୱ ବିଦ୍ୟାରେ ଇଂରେଜୀରେ ଯେଉଁ ମନୋବିକାରକୁ କୁହାଯାଏ ଇନ୍‌ଫିରିଅରିଟି କଂପ୍ଲେକ୍ସ) । ସେମାନେ ଖାଲି ଭାବୁଛନ୍ତି, "ଆମେ ତ ଅପାଠୁଆ, ତହିଁରେ ଗରିବ, ଆମ ଦେଇ କଣ ହେବ ନା ଆମେ ଦେଶକୁ ଉଦ୍ଧାର କରିଦେବୁ ? ଆମ କଥା ଶୁଣିବ କିଏ ? ତେଣୁ ସେମାନେ ହତୋତ୍ସାହ, ନିଷ୍କ୍ରିୟ ହୋଇପଡ଼ୁଥିଲେ । ମନଟା ନିଜଆଡ଼କୁ ଦବି ଦବି ଗଲେ ହାତଗୋଡ଼ ବି ଚଳେ ନାହିଁ । ଯେଉଁ ଗାଁ କର୍ମୀମାନେ ବହୁଦିନରୁ କାମ କଲେଣି ତାଙ୍କ ମନର ବି ସେହି ଅବସ୍ଥା । ନିଜେ କିଛି ଭାବିଚିନ୍ତି କିଛି କାମ କରିବା ପ୍ରବୃତ୍ତି ତାଙ୍କଠି ନ ଥିଲା । ସେମାନେ ଅପେକ୍ଷା କରି ରହୁଥିଲେ ଉପରୁ ନେତାମାନଙ୍କ ଠାରୁ କଣ ନିର୍ଦ୍ଦେଶ ଆସିବ ତାହା ଜାଣିବାକୁ । ସେପରି ନିର୍ଦ୍ଦେଶ ଆସିଲେ ସେମାନେ ଆଖିବୁଜି ତାକୁ ପାଳନ କରନ୍ତି, ନ ଆସିଲେ କିଛି କରନ୍ତି ନାହିଁ । ୰ ଗୋପବାବୁ ଭାବିଲେ ଯେ ମହାତ୍ମା ଗାନ୍ଧୀଙ୍କ ଉକ୍ତିରୁ, ଲେଖାରୁ ଓ ତାଙ୍କ ଜୀବନର ନାନା ସମୟରେ ନାନା ଘଟଣାରେ ଉଦାହରଣ ଦ୍ୱାରା କର୍ମୀମାନଙ୍କର ଏ ନୈରାଶ୍ୟ, ହୀନମନ୍ୟତା ଓ ଜଡ଼ତା ଭାଙ୍ଗିବା ଜରୁରି କାର୍ଯ୍ୟ, ତା ନ ହେଲେ ଏଦେଶରେ ଅହିଂସାମାର୍ଗରେ ସ୍ୱାଧୀନତା ପାଇଁ ଯେଉଁ ଯୁଦ୍ଧ ଆରମ୍ଭ ହୋଇଛି ତାହା ବ୍ୟାହତ ହେବ । ସେ ଭାବୁଥିଲେ ଯେ କର୍ମୀମାନଙ୍କର ଏ ହୀନମନ୍ୟତା ଅଯୌକ୍ତିକ ଓ ଅକାରଣ, ପାଠ ନ ପଢ଼ିଥିଲେ ବି ଜଣେ ଅହିଂସା ଯୁଦ୍ଧରେ ଗୁରୁଦାୟିତ୍ୱ ତୁଲେଇ ପାରିବ । ଗୁଣ୍ଡୁଚି ମୂଷା ଲଙ୍କାକୁ ପୋଲ ବନ୍ଧା ହେଲାବେଳେ ତହିଁରେ ଯେମିତି ଯଥାଶକ୍ତି ଅବଦାନ ଦେଇଥିଲା ସେମିତି ପ୍ରତ୍ୟେକ ବ୍ୟକ୍ତି ଯଥାଶକ୍ତି କାର୍ଯ୍ୟ କରି ଅହିଂସା ଯୁଦ୍ଧରେ ସାହାଯ୍ୟ କରିପାରିବେ ।

ସେହି ସତ୍ୟଟି ସମସ୍ତଙ୍କୁ ଚେତାଇ ଦେବା ପାଇଁ ଓ ସାଧାରଣ ଲୋକଙ୍କ ମନରୁ ହୀନମନ୍ୟତା ଦୂର କରିବା ପାଇଁ ୰ ଗୋପବାବୁ ଏ ପୁସ୍ତକଟି ଲେଖିଥିଲେ, ଏହା ଗୋଟିଏ ସୁନ୍ଦର, ଉପଭୋଗ୍ୟ ପୁସ୍ତକ ହେବା ସଙ୍ଗେ ସଙ୍ଗେ ଗୋଟିଏ ଶିକ୍ଷଣୀୟ ପୁସ୍ତକ ହୋଇପାରିଛି ।

ଏ ପୁସ୍ତକର ଯେକୌଣସି ଅଧ୍ୟାୟକୁ ପରୀକ୍ଷା କଲେ, ସାଧାରଣ ଭାବେ ଏ ପୁସ୍ତକର ଗଠନଶୈଳୀ ବିଷୟରେ କିଛି ଧାରଣା ହେବ । କିଛି ନ ଭାବି ବାହାରିବ

ପୃଷ୍ଠା ଓଲଟାଉ ଓଲଟାଉ ଠାଏ ଅଟକିଗଲି । ଦେଖିଲି ଯେ ସେହି ପରିଚ୍ଛେଦର ସଂଖ୍ୟା 'ଛବିଶ', ତାହାର ଶିରୋନାମା "ଅରଟ ଖୋଜା" । ଏହାର ଆକାର ½+୧+½=୨ ପୃଷ୍ଠା । ଏଥିରେ ୭ଟି ପାରାଗ୍ରାଫ୍ ଅଛି । ତାହାର ଗୋଟିଏ ପାରାଗ୍ରାଫ୍ ବିଷୟ ଆଲୋଚନା କରାଯାଉ—

ପ୍ରଥମ ପାରାଗ୍ରାଫ୍—୧୯୦୮ରେ ମହାତ୍ମା ଗାନ୍ଧୀ "ହିନ୍ଦ୍-ସ୍ୱରାଜ" ବହି ଲେଖିଲେ । ସେତେବେଳେ ସେ "ମାନସଚକ୍ଷୁରେ ଦେଖିପାରିଲେ" ଯେ ଭାରତର ଗାଁ ଗଣ୍ଡାରେ ଘରେ ଘରେ ହାତରେ ସୂତାକଟା ଓ ଲୁଗାବୁଣା ନ ହେବା ପର୍ଯ୍ୟନ୍ତ ଭାରତର ମୁକ୍ତି ହେବ ନାହିଁ ।

ସେତେବେଳେ ଅରଟ କ୍ୱଚିତ୍ କେଉଁଠି ଚାଲୁଥାଏ । ଯେଉଁଠି ଅରଟ ଚାଲୁଥାଏ ବୋଲି ଗାନ୍ଧୀ ଶୁଣନ୍ତି ସୂତାକଟା ଶିଖି ଆସ କହି ସେଠିକି ସେ ଲୋକ ପଠାନ୍ତି ।

୧୯୧୭ ରେ "ଗୋଧରା" ବୋଲି ସ୍ଥାନରେ "ଶିକ୍ଷା ସପ୍ତାହ" ହେଉଥାଏ, ତହିଁରେ ସଭାପତି ହେବାକୁ ଗାନ୍ଧୀ ଗଲେ । ସେଠି ଜଣେ ଦେଶ-ସେବିକାଙ୍କ ସଙ୍ଗେ ଗାନ୍ଧୀଙ୍କର ଦେଖା ହେଲା । ସେ ଜଣେ ବିଧବା ସ୍ତ୍ରୀ ଲୋକ, ତାଙ୍କ ନାମ ଗଙ୍ଗାବେନ୍ ମଜ୍‌ମୁନ୍‌ଦାର । ସେ ଭଲ ଲେଖାପଢ଼ା ଜାଣି ନ ଥିଲେ, କିନ୍ତୁ ତାଙ୍କଠି ସାହସ ଓ ସାଧାରଣ ବୁଦ୍ଧି ଖୁବ୍ ଥିଲା । ସେ ଗୃହଆଡ଼େ ବୁଲି ଅଛୁଆ ଜାତିର ଲୋକଙ୍କ ସେବା କରୁଥିଲେ ଓ ଅଛୁଆ ନ ହେଲେ ବି ଅନ୍ୟ ଯେଉଁମାନେ ନାନା ଅତ୍ୟାଚାରର ଶିକାର ହୋଇଥାନ୍ତି ସେମାନଙ୍କ ସେବା କରୁଥିଲେ । ଗାନ୍ଧୀ ତାଙ୍କୁ କହିଲେ ଅରଟ କେଉଁଠି ଚାଲୁଛି ସେ ଖୋଜୁଛନ୍ତି । ଗଙ୍ଗାବେନ୍ ତାଙ୍କୁ କହିଲେ ଯେ ସେ ତାହା ଖୋଜି ବାହାର କରିବେ ।

ଏ ପର୍ଯ୍ୟନ୍ତ ପରିଚ୍ଛେଦ ଆରମ୍ଭରୁ ୧୬ଟି ଧାଡ଼ି ହେଲା ଓ ପ୍ରଥମ ପାରାଗ୍ରାଫ୍ ସରିଲା । ଧରାଯାଉ, ମଫସଲର ସାଧାରଣ ଓ (ସେତେବେଳେ) ଅପାଠୁଆ ଲୋକଗୁଡ଼ିଏ ଏ ପାରାଟି ଶୁଣିଲେ । ଧରାଯାଉ, ସେମାନଙ୍କ ଭିତରେ କିଛି ଦେଶସେବକ କର୍ମୀ ଅଛନ୍ତି । ସେମାନେ ଜାଣିବେ ଯେ ଗାନ୍ଧୀ ସାଧାରଣ ଲୋକ ନୁହନ୍ତି । ସେ ମହାତ୍ମା, ସେ ଋଷି ପରି ମହାମନୁଷ୍ୟ । ଭବିଷ୍ୟତରେ କଣ ହେବ ତା ସେ ମନ ଭିତରେ ଜାଣିପାରନ୍ତି । ସମସ୍ତଙ୍କର ଦୁଇ ଦୁଇଟା ଆଖି ତାଙ୍କର ଆହୁରି ଗୋଟିଏ ଆଖି, "ମାନସ-ଚକ୍ଷୁ", ଯେମିତି ଋଷିମାନଙ୍କ ମନ ଭିତରେ ଥାଏ ଯେ ସେ ଆଖିବୁଜି ଧ୍ୟାନରେ ବସିଗଲେ ସବୁ ତାଙ୍କୁ ଜଳ ଜଳ ଦିଶେ । ଏତକ ଶୁଣିବା ଦ୍ୱାରା ମହାତ୍ମାଙ୍କ ପ୍ରତି ପ୍ରଗାଢ଼ ବିଶ୍ୱାସ ଓ ଭକ୍ତି ବଢିଯିବ ଓ ଲୋକେ ବୁଝିପାରିବେ ଯେ ଦୂରଦ୍ରଷ୍ଟା ମହାତ୍ମା ଗାନ୍ଧୀ ଯେଉଁ ଉପଦେଶ ଦେଇଛନ୍ତି, ଯେଉଁ ମାର୍ଗ ଦେଖାଇଛନ୍ତି

ତା ଛଡ଼ା ଅନ୍ୟବାଟ ନାହିଁ । 'ହିନ୍ଦ୍ ସ୍ୱରାଜ' ବହିରେ ମହାତ୍ମା ଗାନ୍ଧୀ ତାଙ୍କ ନୀତି, ମାର୍ଗ ଓ ଲକ୍ଷ୍ୟ କଣ ତାହା ସ୍ପଷ୍ଟଭାବରେ ଲେଖିଛନ୍ତି । ଏ ପାରାଗ୍ରାଫ୍‌ରେ ଯାହା ଲେଖା ହୋଇଛି ତାକୁ ପଢ଼ିଲେ କି ଶୁଣିଲେ "ହିନ୍ଦ୍ ସ୍ୱରାଜ" ବହିଟି ଖୋଜି ଆଣି ପଢ଼ିବାକୁ କି ଶୁଣିବାକୁ ଆଗ୍ରହ ହେବ ।

ମହାତ୍ମା ଗାନ୍ଧୀ ଚରଖାରେ ସୂତା କାଟିବା ଓ ହାତରେ ଲୁଗା ବୁଣିବା ଉପରେ କେତେ ବଡ଼ ଗୁରୁତ୍ୱ ଆରୋପ କରନ୍ତି ଏଥିରେ ତାହା ଜଣାଇ ଦିଆଗଲା । ଗୃହଆଡ଼େ ଘରେ ଘରେ ସୂତାକଟା, ଲୁଗାବୁଣା ନ ହେଲେ, ଭାରତ ସ୍ୱାଧୀନ ହେବ ନାହିଁ; ଗାନ୍ଧୀଜି ଆଗତ କଥା ଭାବିଲା ବେଳକୁ ସେଇଆ ଦେଖୁଛନ୍ତି । ତେଣୁ ସେ ଭାରତର ମୁକ୍ତି ପାଇଁ କାମ କରିବାକୁ ଆଣ୍ଟା ଭିଡ଼ିବ ତାର ପ୍ରଧାନ କାମ ହେବ ସେଇଆ ନିଜେ କରିବା ଓ ଅନ୍ୟମାନଙ୍କୁ ମତାଇ କରାଇବା ।

ଲେଖା ହୋଇ ନ ଥିଲେ ବି ଏଥିରୁ ଆଉରି ଗୋଟିଏ ଅର୍ଥ ବାହାରୁଛି— ଯେଉଁମାନେ ଗାଁ ଗଣ୍ଡାର ଅପାଠୁଆ କର୍ମୀ, ବେଶି ଚାଷୀ ମୂଲିଆ ଶ୍ରେଣୀର, ଏଥିରୁ ସେମାନେ ବୁଝିବେ ଯେ ଅହିଂସା-ଯୁଦ୍ଧରେ ତ କର୍ମୀଠୁଁ ଆଗ ଦରକାର ଚରଖାରେ ସୂତା କାଟିବା, ଲୁଗା ବୁଣିବା, ଖଦୀ ପ୍ରଚାର କରିବା, ସେହି ସବୁଠୁ ବଡ଼ କାମ । ସେମାନେ ପାଠ ପଢ଼ି ନାହାନ୍ତି ବୋଲି ନିରାଶ ହୋଇ ପଛେଇ ରହିବେ କାହିଁକି ? ଯେଉଁ କର୍ମୀର ଧନ, ଜନ, ବିଦ୍ୟା ସବୁ ଗୁଣ ସେ ମଧ୍ୟ ପଛେଇ କାହିଁକି ହେବ ? ଆଦୌ ଦରକାର ନାହିଁ । ତା ହାତରେ ତ ମହାତ୍ମାଜି ବାଛିଥିବା ଅସଲ କାମଟି ହୋଇପାରିବ । ସେ ନିଜକୁ ପାଠୁଆ, ବିଜ୍ଞମାନଙ୍କ ଆଗରେ ହୀନ ମନେ କରିବ କାହିଁକି ବା ନିଜେ ଅପାରଗ ବୋଲି ଭାବିବ କାହିଁକି ?

ଠିକ୍ ତା ପଛକୁ ୰ ଗୋପବାବୁ ଉଦାହରଣଟିଏ ବି ଦେଇଛନ୍ତି, —ଗଙ୍ଗାବେନ୍ ମଜୁମଦାର । ସ୍ୱୟଂ ମହାତ୍ମାଜୀ ଗଙ୍ଗାବେନ୍‌ଙ୍କୁ ସମ୍ମାନ କରିଛନ୍ତି, ତାଙ୍କ କଥା ଲେଖିଛନ୍ତି । ସେ ଜଣେ ବିଶିଷ୍ଟ କର୍ମୀ । ତାଙ୍କର ତ ସେତେ ପାଠପଢ଼ା ନାହିଁ, ପୁଣି ସେ ବିଧବାଟିଏ, ତଥାପି ସେ କମସ୍ୟା ହେଲେ । ତାର କାରଣ, ପାଠ ସିନା ନାହିଁ, ସାହସ ଓ ସାଧାରଣ ବୁଦ୍ଧିରେ ସେ ଉଚ୍ଚଶିକ୍ଷିତା ଭଦ୍ରମହିଳାମାନଙ୍କଠୁଁ ବହୁତ ଉଚ୍ଚରେ ଓ ସେ ଖୁବ୍ ବଡ଼ କାମ କରନ୍ତି, —ଅସ୍ପୃଶ୍ୟତା ନିବାରଣ କରନ୍ତି, ଦୁଃଖୀ ଦରିଦ୍ର, ଅତ୍ୟାଚାରିତମାନଙ୍କ ସେବା କରନ୍ତି । ଏତିକି ଜାଣି ଗାଁ ଗଣ୍ଡାର ଅପାଠୁଆ ଚାଷୀ ମୂଲିଆ ଠିକ୍ ଧରିପାରିବେ ଯେ ପାଠ ନ ପଢ଼ିଥିଲେ କଣ ହେଲା, ସେମାନେ ବି ମହାତ୍ମା ଗାନ୍ଧୀଙ୍କ ବିଚାର ଅନୁସାରେ ବଡ଼ କର୍ମୀ ହୋଇ ପାରିବେ ।

ଏହା ଗୋଟିଏ ପାରାଗ୍ରାଫରୁ ବୁଝି ହେବ ୰ ଗୋପବନ୍ଧୁ ଚୌଧୁରୀ କେତେ ଦକ୍ଷ, କୁଶଳୀ ଓ ଶକ୍ତିଶାଳୀ ଲେଖକ ଥିଲେ । ସରଳ ଭାଷାରେ ଅଳ୍ପକେ ନିଜ

ଲେଖାରେ ଅନ୍ୟମାନଙ୍କୁ ଶିକ୍ଷାଦେବା ସଙ୍ଗେ ସଙ୍ଗେ ସେମାନଙ୍କୁ ଅନୁପ୍ରାଣିତ କରି-ପାରୁଥିଲେ । ତାଙ୍କ ଲେଖାର ଶୈଳୀ ଅନୁକରଣ କରିବା ବି କଷ୍ଟକର ।

ଏହି ଗୋଟିଏ ପୁସ୍ତକ ଯଦି ଆଲୋଚନା କରି କରି ଗ୍ରାମରେ ବା ସହରରେ ଗୋଟିଏ ଗୋଟିଏ ମଣ୍ଡଳରେ ପଢ଼ା ହେବ ତାହାର ପ୍ରଭାବ ସେହି ମଣ୍ଡଳର ସମସ୍ତଙ୍କ ଉପରେ ପଡ଼ିବ । ଲୋକଚରିତ୍ର ଉନ୍ନତ ମୂଲ୍ୟବୋଧ ଅବଲମ୍ବନ କରି ଗଠିତ ହୋଇ-ପାରିବ ଓ କର୍ମୀମାନଙ୍କ ମନରେ ସାହସ ଓ ଆତ୍ମବିଶ୍ୱାସ ଜନ୍ମି ସେମାନଙ୍କୁ କର୍ମତତ୍ପର କରିବ ।

ଏହା ମହାତ୍ମା ଗାନ୍ଧୀଙ୍କର ଜୀବନୀ ନ ହେଲେ ସୁଦ୍ଧା ଗାନ୍ଧିଜୀଙ୍କ ଜୀବନର ପିଲାଦିନଠୁ ନାନା ଘଟଣା ଏଥିରେ ବର୍ଣ୍ଣିତ ଅଛି । ସେଦିନୁଁ ଦରିଦ୍ର କୃଷୀ ମୂଲିଆଙ୍କ ପ୍ରତି ତାଙ୍କର ଗଭୀର ସମ୍ବେଦନା ଓ ସହାନୁଭୂତି, ସେମାନଙ୍କ ଉପରେ ଘଟୁଥିବା ନାନା ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ତାଙ୍କର ଅଜୀବନ ସଂଗ୍ରାମ ଓ ସେଥିପାଇଁ ଆତ୍ମତ୍ୟାଗ, ତାଙ୍କ ନିଘାରେ ବାରମ୍ବାର ପଡ଼ୁଥିବା ନାନା ଘଟନା ଯହିଁରେ ସାଧାରଣ ନିରକ୍ଷର ଦରିଦ୍ର କୃଷୀ ମୂଲିଆ ବା ସ୍ତ୍ରୀ ଲୋକ ଅପୂର୍ବ ସାହସ, ଅପୂର୍ବ ଆତ୍ମତ୍ୟାଗ ଦେଖାଇଥିଲେ, ନିଜ ଚରିତ୍ରରେ ସୁମହତ୍ ଗୁଣମାନଙ୍କ ପରିଚୟ ଦେଇଥିଲେ । ସେହି ଶ୍ରେଣୀର ବ୍ୟକ୍ତିଙ୍କର ସତ୍ୟାଗ୍ରହ ଆନ୍ଦୋଳନକୁ ବିପୁଳ ଅବଦାନର ଦୃଷ୍ଟାନ୍ତ, ଦକ୍ଷିଣ ଆଫ୍ରିକାରେ ରହଣି ବେଳଠାରୁ ଜୀବନର ଶେଷ ପର୍ଯ୍ୟନ୍ତ ମହାତ୍ମା ଗାନ୍ଧୀଙ୍କର ନାନା ସ୍ମରଣୀୟ କାର୍ଯ୍ୟ, ଅହିଂସା, ସତ୍ୟ, ଅସ୍ତେୟ ଆଦି ଏକାଦଶ ନୀତିର ନିଷ୍ଠାପର ଆଚରଣ ବିଷୟରେ ନାନା ଦୃଷ୍ଟାନ୍ତ ଏ ପୁସ୍ତକରେ ସେ ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି । ଜନସାଧାରଣଙ୍କ ମନରେ, କେବଳ କଂଗ୍ରେସ କର୍ମୀଙ୍କ ମନରେ ବୋଲି ନୁହେଁ,—ଆତ୍ମବଳ, ଆତ୍ମବିଶ୍ୱାସ, ସାହସ ସଞ୍ଚାର କରିବା ଓ ସେମାନଙ୍କ ମନରୁ ଭୟ, ନୈରାଶ୍ୟ, ଅବସାଦ ଦୂର କରିବା ଏ ପୁସ୍ତକର ପ୍ରଧାନ ଉଦ୍ଦେଶ୍ୟ । ଏହା କେବଳ ସାହିତ୍ୟ ନୁହେଁ, ଶିକ୍ଷାପ୍ରଦ 'ସନ୍ଥ ସାହିତ୍ୟ' ଶ୍ରେଣୀୟ । ଏହାମଧ୍ୟ ଡ଼ ଗୋପବନ୍ଧୁ ଚୌଧୁରୀଙ୍କ ନିଜ ଜୀବନ, ବ୍ୟକ୍ତିତ୍ୱ ଓ ଚରିତ୍ରର ପ୍ରତିଫଳନ । ସେ ଅବିକଳ ଏଥିର ବର୍ଣ୍ଣିତ ଆଦର୍ଶର ଜୀବନ୍ତ ରୂପ ଥିଲେ ଓ ଏଥିରେ ବର୍ଣ୍ଣିତ ଦୃଷ୍ଟାନ୍ତ ତାଙ୍କ ଜୀବନରେ ବାରମ୍ବାର ଘଟିଥିଲା । ସେ ମହାତ୍ମା ଗାନ୍ଧୀଙ୍କର ପରମ ଭକ୍ତ ଥିଲେ ଓ ନାନା ଦିଗରୁ ଅନ୍ୟ ଘଟରେ ଗାନ୍ଧୀ-ରୂପ ଥିଲେ, ମହାତ୍ମାଜୀଙ୍କର ଅତ୍ୟନ୍ତ ପ୍ରିୟ ଥିଲେ ।

## ଗାନ୍ଧୀ ଓ ଉତ୍କଳ

ଆକାର—ସାଧାରଣ ରଏଲ, ପୃ ୧୧୬, ପ୍ରକାଶ ୧୯୫ , ସତ୍ୟବାଦୀ ପ୍ରେସ୍, କଟକ (କିନ୍ତୁ 'ଭୂମିକା'—୧-୨-୧୯୫୫) ସମ୍ଭବତଃ ୧୯୪୫ରେ ପ୍ରଥମ ପ୍ରକାଶ) ।

ଏ ପୁସ୍ତକର ଭୂମିକାରେ ୰ ଗୋପବନ୍ଧୁ ଚୌଧୁରୀ ଯାହା ଲେଖିଛନ୍ତି ତହିଁରୁ ଜଣାଯାଏ ଯେ ଏଥିରେ ସେ "ଉତ୍କଳରେ ଗାନ୍ଧୀଙ୍କ ପଦଯାତ୍ରାର ଏକ ଇତିବୃତ୍ତ" ଲେଖିଛନ୍ତି । ବିବରଣୀଗୁଡ଼ିକରୁ କିଛି ୧୯୪୪ରେ ନିଜେ ଜେଲ୍‌ରେ ଥିଲାବେଳେ ନିଜ ସ୍ମୃତିରୁ ସଂଗ୍ରହ କରିଛନ୍ତି, କିଛି ସେଥର ଜେଲ୍‌ରେ ତାଙ୍କ ସହକର୍ମୀମାନଙ୍କ ସ୍ମୃତିରୁ,—ବିଶେଷତଃ ଆଚାର୍ଯ୍ୟ ମହାଶୟ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ, ପଣ୍ଡିତ ଲକ୍ଷ୍ମୀନାରାୟଣ, ଭାଗୁବାବୁ (ଶ୍ରୀ ଭାଗୀରଥୀ ମହାପାତ୍ର), ଶ୍ରୀ ନିତ୍ୟାନନ୍ଦ କାନନଗୋ ଆଦିଙ୍କ ସ୍ମୃତିରୁ ଓ ଗାନ୍ଧୀଙ୍କର ଅନେକ ଲେଖାରୁ ଓ ପୁରୁଣା 'ନବଜୀବନ', 'ହରିଜନ' ଆଦି ପତ୍ରିକାରୁ, ଆଉ ମଧ୍ୟ କେତେକ ଚିଠିପତ୍ରରୁ ସଂଗ୍ରହ କରିଛନ୍ତି । ତାହାଛଡ଼ା ଗାନ୍ଧୀଙ୍କର ଉତ୍କଳରେ ପଦଯାତ୍ରା ଆରମ୍ଭ ବେଳର କେତୋଟି ଆଲୋକଚିତ୍ର ମଧ୍ୟ ସେ ପାଇଥିଲେ ଓ ଏ ପୁସ୍ତକରେ ବ୍ୟବହାର କରିଥିଲେ ।

କିନ୍ତୁ ଏ ପୁସ୍ତକର ବିଷୟବସ୍ତୁ କେବଳ ଉତ୍କଳରେ ଗାନ୍ଧୀଜୀଙ୍କ ପଦଯାତ୍ରା ହିଁ ନୁହେଁ; ଭାରତର ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଦରିଦ୍ର ଉତ୍କଳବାସୀଙ୍କ ପ୍ରତି ତାଙ୍କର ଅଧିକ ସ୍ନେହ, ସହାନୁଭୂତି ଓ ସେମାନଙ୍କ ଦୁର୍ଦ୍ଦଶା ଲାଗି ସମବେଦନା ମଧ୍ୟ ଏହାର ଅନ୍ତର୍ଭୁକ୍ତ । ଲେଖକ ଲେଖିଛନ୍ତି "ଉତ୍କଳମଣିଙ୍କ ଯୋଗୁଁ ଗାନ୍ଧୀଙ୍କ ଦୃଷ୍ଟି ଉତ୍କଳ ଉପରେ ବେଶୀ ପଡ଼ିଥିଲା ।" ତାଙ୍କ ମୃତ୍ୟୁରେ ଶୋକାକୁଳ ହୋଇ ଗାନ୍ଧୀଜୀ ଯାହା ଲେଖିଥିଲେ ତହିଁରେ ଥିଲା—

"ପଣ୍ଡିତ ଗୋପବନ୍ଧୁଙ୍କର ମୃତ୍ୟୁରେ ଦେଶ ଅଧିକ ଦରିଦ୍ର ହୋଇଗଲା । ସେ ଜୀବିତ ନ ଥିଲେ ସୁଦ୍ଧା ତାଙ୍କ ଆତ୍ମା ଆମ ଭିତରେ ଅଛି । ସେହି ପବିତ୍ର ଆତ୍ମା ଓଡ଼ିଶାର କର୍ମୀକୁଳଙ୍କୁ ବାଟ କଢ଼ାଉ ।"

'୧୯୨୦'ର ବନ୍ୟା ପରେ ଉତ୍କଳର ଦୃଶ୍ୟ ଦେଖି ସେହିଦିନୁଁ ସେ କହିଥାନ୍ତି "ଉତ୍କଳର ଦୃଶ୍ୟ ସବୁବେଳେ ମୋ ଆଖି ଆଗରେ ନାଚୁଛି । ଉତ୍କଳର ଅସ୍ଥିକଙ୍କାଳସାର ଲକ୍ଷ ଲକ୍ଷ ଗରିବ ନରନାରୀଙ୍କ ରୂପ ମୋ ମନରୁ ଲିଭୁ ନାହିଁ ।" ଉତ୍କଳର ବଢ଼ି ମରୁଡ଼ି ସମ୍ବାଦ ପାଇଲାକ୍ଷଣି ଗାନ୍ଧୀ ଭାରତର ଧନୀମାନଙ୍କୁ ସେଥିପାଇଁ ଧନ ସାହାଯ୍ୟ ମାଗି ଉତ୍କଳକୁ ଅର୍ଥ ସାହାଯ୍ୟ ପଠାଉଥିଲେ । ଠକ୍କର ବାପା, ସାର୍ ବିଶ୍ୱେଶ୍ୱରାୟା, ଜୀବରାମଭାଇ କଲ୍ୟାଣୀ—ଉତ୍କଳକୁ ଏମାନଙ୍କର ସାହାଯ୍ୟ ମୂଳରେ ଥିଲେ ଗାନ୍ଧୀଜୀ । ନଭେମ୍ବର ୧୯୨୮ରେ ଗୋଟିଏ ଲେଖାରେ ଗାନ୍ଧୀଜୀ ଲେଖିଥିଲେ ଯେ ୧୯୨୧ରେ ଯେତେବେଳେ ଉତ୍କଳକୁ ପ୍ରଥମଥର ଗଲେ ଓ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନଙ୍କୁ ଦେଖିଲେ "ପିଲାଙ୍କ ମୁହଁରୁ କାମ (କରିବା)ର ଏକ ଆନନ୍ଦମୟ ତେଜ ଫୁଟି ଉଠୁଥିଲା; କିନ୍ତୁ ମୁଁ ଯେତେବେଳେ ଅକାଳରେ ପଡ଼ିଥିବା ତାଙ୍କ ବାପ ମା'ଙ୍କୁ ଦେଖିଲି, କଣ ଦେଖିଲି ଜାଣନ୍ତି ? ତାଙ୍କର କେବଳ ହାଡ଼ ଦିଦିଖଣ୍ଡି ଚମଯୋଡ଼ା ହୋଇଛି, ମରିବା କେବଳ ବାକି ରହିଛି । ତାଙ୍କର ଦୁରବସ୍ଥାର ମୂଳ କାରଣ ସେମାନେ କୌଣସି

ପ୍ରକାର କାମ କରିବାକୁ ନାରାଜ । ସମସ୍ତେ ସୂତା କାଟିବା ଛଡ଼ା ମତେ ଆଉ ଅନ୍ୟ ଉପାୟ ଦିଶୁ ନାହିଁ ।

୧୯୨୭ ସେପ୍ଟେମ୍ବରରେ ମାନ୍ଦ୍ରାଜରେ ମହାତ୍ମାଙ୍କ ଉତ୍କଳ ବିଷୟରେ କହିଲେ—

"ପୁରୀଠାରୁ ଦଶମାଇଲ ଭିତର ଅଞ୍ଚଳରେ ଆପଣମାନେ ଅସ୍ଥିକଙ୍କାଳସାର ମଣିଷ ଦେଖିବେ । ମୁଁ ତାଙ୍କଠାରୁ ଏହି ହାତରେ ଅଧଲା ପାହୁଲା ସଂଗ୍ରହ କରିଛି । ପାହୁଲାଗୁଡ଼ାକ ଛିଣ୍ଡା କନାରେ ଚିଣ୍ଟିପଡ଼ି ବନ୍ଧା ହୋଇଥାଏ । ସେଗୁଡ଼ାକ ମଇଳା ମାଟି ସଲ ସଲ । ତାଙ୍କ ହାତସବୁ ପକ୍ଷାଘାତ ରୋଗୀଙ୍କ ହାତଭଳି ହୋଇଥାଏ । ତାଙ୍କ ଆଗରେ ଆଧୁନିକ ସଭ୍ୟତା କଥା କିଏ କହିବ ? ତାଙ୍କ ଆଗରେ ଭଗବାନଙ୍କ ନାମ ନେଇ ବୃଥାରେ ତାଙ୍କୁ ଅପମାନ ଦେବେ ।"

ସେ ବଞ୍ଚିଥିବାଯାକେ ଓଡ଼ିଶାର ଦୁର୍ଦ୍ଦଶା କଥା ବାରମ୍ବାର 'ହରିଜନ', 'ୟଂ ଇଣ୍ଡିଆ', 'ନବଜୀବନ' ଆଦି ପତ୍ରିକାରେ ଲେଖୁଥିଲେ ଓ ଓଡ଼ିଶାର ବିପଦ ବେଳେ ସାହାଯ୍ୟ ଆୟୋଜନ କରାଉଥିଲେ ।

୧୯୨୪ରେ ବେଲ୍‌ଗାଁ କଂଗ୍ରେସକୁ ଓଡ଼ିଶାରୁ ଯାଇଥିବା କର୍ମୀଙ୍କୁ ସେ କହିଥିଲେ—

"ଓଡ଼ିଶାର ଯେଉଁ ଚିତ୍ର ମୋ ଆଖି ଆଗରେ ନାଚୁଛି ସେଥିରୁ ମୋର ଦୃଢ଼ ମତ ଯେ ଓଡ଼ିଶାବାସୀଙ୍କୁ ଦାନାଗଣ୍ଡିକ ଯୋଗାଇଦେବା ହିଁ ଓଡ଼ିଶା ପକ୍ଷରେ ସ୍ୱରାଜ । କଂଗ୍ରେସ କର୍ମୀମାନେ ଦଳାଦଳି ଭୁଲି ଜରନ୍ତୁ ଓଡ଼ିଶାବାସୀଙ୍କୁ ଅନ୍ନମୁଠାକ ଯୋଗାଇଦେବାର ବ୍ୟବସ୍ଥା କରନ୍ତୁ । ସେଥିର ସବୁଠାରୁ ଭଲ ବାଟ ଖଦଡ଼ ପ୍ରଚାର ଅଟେ ।"

୧୯୨୭ ନଭେମ୍ବରରେ ଦ୍ୱିତୀୟ ଥର ଓଡ଼ିଶା ଆସି ପରେ ସେ 'ମୋର ଓଡ଼ିଶା ଗସ୍ତ' ସେହି ଦୀର୍ଘ ଲେଖାଟିଏ ଗୁଜରାଟି 'ନବଜୀବନ'ରେ ଛପାଇଥିଲେ । ପୁରୀରେ ସ୍ୱୟଂ ଜଗନ୍ନାଥଙ୍କୁ ଏବେ ବିଲାତି ଲୁଗା ପିନ୍ଧାଉଛନ୍ତି ଓ ତାଙ୍କ ଆଗରେ ପଣ୍ଡାମାନେ ଯେଉଁ ଜୁଲୁମ କରୁଛନ୍ତି ସେକଥା ବି ଲେଖିଥିଲେ ।

ଗାନ୍ଧୀ ମଧୁବାବୁଙ୍କୁ ସମ୍ମାନ କରୁଥିଲେ ଓ ଆପଣା ଲେଖାରେ ଓ ବକ୍ତୃତାରେ ଅନେକଥର ସେ ମଧୁବାବୁଙ୍କ କଥା କହୁଥିଲେ । ସେ ୧୯୨୭ରେ ତୃତୀୟ ଥର ଓଡ଼ିଶା ଗସ୍ତରେ ଆସିଥିଲେ ଓ ଭଦ୍ରକର ଧୋଇ ଦେଖିଯାଇଥିଲେ ।

୧୯୨୮ ଡିସେମ୍ବର ୧୮ କି ୧୯ ତାରିଖରେ ୬ ଗୋପବନ୍ଧୁ ଚୌଧୁରୀ ଓ୍ୱାର୍ଦ୍ଧା ସତ୍ୟାଗ୍ରହ ଆଶ୍ରମରେ ଗାନ୍ଧୀଜୀଙ୍କୁ ଦେଖା କରିଥିଲେ ଓ ତାଙ୍କ ସଙ୍ଗେ ପ୍ରାୟ

ଘଣ୍ଟାଏ କଥାଭାଷା ହୋଇଥିଲେ । ଗାନ୍ଧୀଜୀ ଓଡ଼ିଶାର ଦୁଃଖଦୈନ୍ୟ କଥା କହୁ କହୁ କାନ୍ଦି ପକାଇଥିଲେ । ୰ ଗୋପବାବୁ ଲେଖିଛନ୍ତି— (ଗାନ୍ଧୀ ଓ ଉତ୍କଳ, ପୃ ୬୭)

"କେମିତି ସେ ନିଜ ହାତରେ ଓଡ଼ିଶାର ଦୁର୍ଭିକ୍ଷକ୍ଳିଷ୍ଟ ଲୋକଙ୍କ ହାତରୁ ଅଧିକ ପାହୁଲି ଆଣିଛନ୍ତି, ଇତ୍ୟାଦି ବିଷୟ କହୁ କହୁ ହଠାତ୍ ସ୍ୱର ମୋଟା ହୋଇ ଆସିଥିଲା, ଆଖି ଛଳ ଛଳ ହୋଇ ଉଚ୍ଛୁଳି ଉଠିଥିଲା— କିଛିକ୍ଷଣ କଥା ବନ୍ଦ ହୋଇଯାଇଥିଲା । ଲେଖକର କପାଳକୁ ଅଧଘଣ୍ଟାକ କଥାବାର୍ତ୍ତା ପ୍ରାୟ ଘଣ୍ଟାକୁ ଗଡ଼ିଯାଇଥିଲା । ଓଡ଼ିଶାର ଏକନିଷ୍ଠ ସେବକଟିଏ ଲୋଡ଼ା, ଯେ ମନପ୍ରାଣ ଢାଳି ଦେଇ ଗୋଟିଏ ଗୋଟିଏ କାମକୁ ଆଦରି ଜୀବନ କଟେଇଦେବେ,—ଏହି ମର୍ମରେ ଉପଦେଶ ଦେଇ ଗୀତାର ସେହି 'ବ୍ୟବସାୟାତ୍ମିକା ବୁଦ୍ଧି ନରଦେହ କୁରୁନନ୍ଦନ' ଶ୍ଳୋକଟି ବୋଲିଥିଲେ । ସେତିକିବେଳେ ଓଡ଼ିଶାର ଗାଁଗଣ୍ଡାକୁ ଯାଇ ଗ୍ରାମ-ସଙ୍ଗଠନରେ ଖଦଡ଼ର ପ୍ରଚାରରେ ଲାଗି ପଡ଼ିବାକୁ ସଜ୍ଜଇଥିଲେ—'ଚରଖା ସଙ୍ଘ'ର କାମ ବଢ଼ାଇବାକୁ କହିଥିଲେ । 'ଗାନ୍ଧୀ ସେବାସଙ୍ଘ'ର ଶାଖା ଖୋଲିବାକୁ ମଧ୍ୟ ପରାମର୍ଶ ଦେଇଥିଲେ ।"

ଗାନ୍ଧୀଜୀ ଚତୁର୍ଥ ଥର ଓଡ଼ିଶାକୁ ଆସିଲେ ୧୯୩୪ରେ ହରିଜନ ଗସ୍ତରେ । ୧୯୩୪ ମେ ୯ ତାରିଖ ସକାଳୁ ପୁରୀରୁ କଟକ ପଦଯାତ୍ରା କଲେ । ପୁରୀ ବଡ଼ଦାଣ୍ଡରେ ଉତ୍କଳମଣିଙ୍କ ପଥରମୂର୍ତ୍ତି ପ୍ରତିଷ୍ଠା କଲେ । ସେହି ସମୟରେ ସେ ଶ୍ରୀ ବିଶ୍ୱେଶ୍ୱରାୟାଙ୍କୁ ଚିଠି ଦେଲେ ଓଡ଼ିଶାକୁ ଆସି ବନ୍ୟା ନିୟନ୍ତ୍ରଣ ପାଇଁ ପରାମର୍ଶ ଦେବାକୁ । ବିଶ୍ୱେଶ୍ୱରାୟା ଦିନକୁ ସେତେବେଳେ ଟ ୧୦,୦୦୦ଙ୍କା ଫିସ୍ ନେଉଥିଲେ । କିନ୍ତୁ ଓଡ଼ିଶାରେ ବଢ଼ିବେଳେ ୧୦।୧୨ ଦିନ ଚାରିଆଡ଼େ ବୁଲି ତଦନ୍ତ କରି ରିପୋର୍ଟ ଦେଲେ ଅଥଚ ଫିସ୍ କି ଯିବା ଆସିବା ଖର୍ଚ୍ଚ ପଇସାଟିଏ ବି ନେଲେ ନାହିଁ (ପୃ ୫୮) । ଗାନ୍ଧୀ କଟକରୁ ରେଳରେ ପାଟନା ଗଲେ, ଅ: ଭା: କଂଗ୍ରେସ ସମ୍ମିଳନୀରେ ଯୋଗ ଦେଲେ, ପୁଣି ରେଳ ଚଢ଼ି ବୈଶ୍ୱରେ ଓହ୍ଲାଇ ସେଠୁ ପଦଯାତ୍ରା କରି ଗଲେ ଚମ୍ପାପୁର, ସେଠି ପଣ୍ଡିତ ଗୋବିନ୍ଦ ମିଶ୍ରଙ୍କ ଆଶ୍ରମ ଦେଖି ଖୁସି ହେଲେ । ସେଠୁ ଯାଇ ଲେଖନପୁରରେ ରହି ସତ୍ୟଭାମାପୁରରେ ୰ ମଧୁବାବୁଙ୍କ ଘରେ ରହିଲେ । ସେଠୁ ବହୁକୁଦ, ଶିଶୁଆ, ଭଗବତପୁର, କେନ୍ଦ୍ରାପଡ଼ା, ବରିମୂଳ, ଇନ୍ଦୁପୁର ହୋଇ ଯାଜପୁରର ଧୋସ୍ୱା ଅଞ୍ଚଳକୁ ଗଲେ, ସେଠି ଅନ୍ୟାସୀପୁର, ବରି, ସାହସପୁର ହୋଇ ବରୁଆଁ ପୁରୁଷୋତ୍ତମପୁର ଗଲେ । ପୂଜ୍ୟା ଶ୍ରୀମତୀ ରମା ଦେବୀ ମୂଳରୁ ପଦଯାତ୍ରାରେ ବୁଲୁଥିଲେ । ତାଙ୍କ ମା'ଙ୍କୁ ବସନ୍ତ ହେବା ଖବର ପାଇ ଚାଲି ଯାଇଥିଲେ, ମା' ମରିଗଲେ, ପୁରୁଷୋତ୍ତମପୁରଠି ପୁଣି ସେ ପଦଯାତ୍ରାରେ ମିଶିଲେ, ସେଠି ଆଚାର୍ଯ୍ୟ ମହାଶୟ ବି ଆସି ମିଶିଲେ, ତା ପୂର୍ବରୁ ସେ ଜେଲରେ ଥିଲେ ।

ରମା ଦେବୀ ମା'ଙ୍କ ମୃତ୍ୟୁ ଲାଗି କାନ୍ଦୁଛନ୍ତି ଦେଖି ଗାନ୍ଧୀ ତାଙ୍କୁ ବୁଝାଇଥିଲେ ଓ ସେତିକବେଳେ କହିଥିଲେ—

"ଆରେ ଏଥିରେ କାନ୍ଦିବାର କଣ ଅଛି ? ଆଗ ପଛର କଥା, ସମସ୍ତେ ସେହି ବାଟେ ଯିବେ । ପୁଣି ଦେଶସେବକର କାନ୍ଦିବାର ଅବସର କାହିଁ ? ସେ କାନ୍ଦିବାରେ ସମୟ ନଷ୍ଟ କପରି କରିବ ? ସେ ତ ପରର ସେବା ପାଇଁ ସମସ୍ତ ସମୟ ଦେଇ ଦେଇଛି । ତାର ସମୟ ଉପରେ ନିଜର ଅଧିକାର କଣ ?" (ପୃ ୭୫)

ନାନା ସ୍ଥାନରେ ରହି ରହି ଗାନ୍ଧିଜୀ ଯାଜପୁରରେ ପହଞ୍ଚିଲେ । ପୁରୀ ଜଗନ୍ନାଥ ମନ୍ଦିରକୁ ହରିଜନଙ୍କୁ ଛଡ଼ା ହୁଏ ନାହିଁ ବୋଲି ସେ ବି ତା ଭିତରକୁ ଗଲେ ନାହିଁ । ଯାଜପୁର ସଭାରେ ସେ କହିଥିଲେ—

"ଭଗବାନଙ୍କୁ ଆମେ ପତିତପାବନ କହିଥାଉଁ, ଦରିଦ୍ର ନାରାୟଣ କହିଥାଉଁ । ଏହିପରି ହଜାର ହଜାର ବିଶେଷଣ ଅଛି, ଯେଉଁଥିରୁ ଆମେ ଶିକ୍ଷା ପାଉଛୁଁ ଯେ ଭଗବାନ ଗୋଟିଏ ଲୋକ ବା ଗୋଟିଏ ଜାତିର ନୁହନ୍ତି । ସେ ସମସ୍ତଙ୍କର ଭଗବାନ ଅଟନ୍ତି ।" (ପୃ ୭)

ଯାଜପୁରରୁ ଭଣ୍ଡାରିପୋଖରୀ ହୋଇ ସେ ଭଦ୍ରକ ଗଲେ । ସେଠୁ ରେଲ ଧରିଲେ ।

୧୯୩୭ରେ ଲକ୍ଷ୍ନୌ କଂଗ୍ରେସରେ ଗ୍ରାମୋଦ୍ୟୋଗ ପ୍ରଦର୍ଶନୀ ଉଦ୍‌ଘାଟନ ବେଳେ ସେଠି ସମବେତ ଜନସାଧାରଣଙ୍କୁ ସେ କହିଥିଲେ ଯେ ସେମାନେ ସେ ପ୍ରଦର୍ଶନୀରେ ଓଡ଼ିଶାର କାରିଗର ଦେଖନ୍ତୁ; (ପୃ । ୬)

"(ଏଠି) ତମର ଆଖିର ସନ୍ତୋଷ ପାଇଁ ଏହାକୁ (ଏ ପ୍ରଦର୍ଶନୀକୁ) ସୁନ୍ଦର କରିଛୁଁ ; ଉପରନ୍ତୁ ତୁମର ଆତ୍ମାର ସନ୍ତୋଷ ପାଇଁ ଏମିତି ଖାଦ୍ୟ ରଖିଛୁଁ ଯେଉଁଥିରେ ତମ ଇନ୍ଦ୍ରିୟମାନେ ଶୁଦ୍ଧ ହୋଇଯିବେ । କାହିଁକି ଜାଣ ? ତୁମେ ଉତ୍କଳକୁ ଜାଣ କି ? ସେହି କ୍ଷୁଧାପୀଡ଼ିତ ଦରିଦ୍ର ଅସ୍ଥି କଙ୍କାଳସାର ଲୋକଙ୍କ ଦେଶରୁ କାରିଗରମାନେ ଆସିଛନ୍ତି । ସେମାନେ ହାତରେ ଶିଙ୍ଗରେ, ରୁପା, ସୁନାରେ ଚମତ୍କାର ଜିନିଷ ଗଢ଼ିଛନ୍ତି । ଯାଅ, ଏସବୁ ଜିନିଷ ଦେଖ, ଏସବୁ ଜିନିଷ କେମିତି ହେଉଛି ଦେଖ । କାରିଗରଙ୍କ ଦେହ ନ ଖାଇ ଶୁଖିଯାଇଛି, ତଥାପି ସେ କାରିଗରମାନେ ଆତ୍ମବଳରେ ନିର୍ଜୀବ ଧାତୁ ବା ହାଡ଼ରେ କପରି ଜୀବନ ଫୁଙ୍କି ଦେଇଭଳି ସଚେତନ ଜୀଅନ୍ତା ମୂର୍ତ୍ତି ଗଢ଼ିଛନ୍ତି ।"

(ଭକ୍ତ ସାହିତ୍ୟ, ସଙ୍ଗୀତ, ନୃତ୍ୟ, ସ୍ଥାପତ୍ୟ ଆଦି ସବୁ ପ୍ରକାର କଳାକ୍ଷେତ୍ରରେ ଓଡ଼ିଆଙ୍କ ପ୍ରତି ପ୍ରଯୁଜ୍ୟ । —ଲେଖକ )

ଶାସରେ ମହାତ୍ମାଙ୍କର ଓଡ଼ିଶାକୁ ଗସ୍ତ ୧୯୩୮ରେ (ମାର୍ଚ୍ଚ ୨୫ରୁ ୨୮ତାରିଖ) ପୁରୀ ଜିଲାର ଡେଲାଂରେ 'ଗାନ୍ଧୀ ସେବାସଂଘ'ର କର୍ମୀମାନଙ୍କ ବାର୍ଷିକ ସମ୍ମିଳନୀ ହେଲେ, ତା ସହିତ ଅନ୍ୟାନ୍ୟ ସମ୍ମିଳନୀ । ଗାନ୍ଧୀ ସେଠି ସାତଦିନ ଥିଲେ । ସେଠି ସେ ପ୍ରଦର୍ଶନୀ ଦେଖି କହିଥିଲେ,

"ଓଡ଼ିଶାର ଲୋକେ ଅଫିମୀ ବୋଲି ଏକ ଅପବାଦ ଅଛି । ଏପରିକି ପଣ୍ଡିତ ପାଠୁଆ ଲୋକେ ମଧ୍ୟ ଏଥିରୁ ମୁକ୍ତ ନୁହନ୍ତି ବୋଲି ମୁଁ ଦଶବର୍ଷ ତଳେ ଦେଖିଥିଲି ।

ଲୋକେ ମଧ୍ୟ ଆଳସ୍ୟ, ଜଡ଼ତାରେ ବୁଡ଼ି ରହିଛନ୍ତି । ଆଜି ଓଡ଼ିଶା ଏହି ଆଳସ୍ୟ ଜଡ଼ତା ପାଇଁ କାଙ୍ଗାଳ ଦେଶ ।

ଏହି ପ୍ରଦର୍ଶନୀ ଦେଖି ମୋର ଆଶା ହେଉଛି, ଓଡ଼ିଶା ଏସବୁ ପାପରୁ ମୁକ୍ତ ହୋଇପାରିବ, ପୁଣି ସେ ସୁଖସମୃଦ୍ଧିର ଦେଶ ହୋଇପାରିବ ।"

ଏହା ଓଡ଼ିଶାକୁ ତାଙ୍କର ପଞ୍ଚମ ଓ ଶେଷ ଗସ୍ତ । ସେ ଆଉ ପ୍ରାୟ ଦଶବର୍ଷ ପରେ ସ୍ୱର୍ଗଗମନ କଲେ ।

## ଇଂରାଜୀ ଶିକ୍ଷା

ମହାତ୍ମା ଗାନ୍ଧୀଙ୍କର ଏତିକ ଗସ୍ତର କାହାଣୀ ବର୍ଣ୍ଣନା କରିବା ଛଡ଼ା ଏଥିରେ ଅତି ସୁନ୍ଦର ଭାବେ ଗାନ୍ଧୀନୀତି ଓ ଗାନ୍ଧୀ ବିଚାରର ମନ୍ତବ୍ୟଆଲୋଚନା ଦିଆହୋଇଛି । ଯଥା—"ରାମମୋହନ ରାୟ, ବାଲ୍‌ଗଙ୍ଗାଧର ତିଲକ୍ ଓ ଗାନ୍ଧୀ ଇଂରାଜୀ ଶିକ୍ଷା ପାଇଥିଲେହେଁ ସେମାନେ ଚୈତନ୍ୟ, ଶଙ୍କର, କବୀର, ନାନକଙ୍କ ତୁଳନାରେ ନଗଣ୍ୟ ବାମନ । ଲୋକଙ୍କ ଉପରେ ତାଙ୍କର ସେପରି ପ୍ରଭାବ ନ ଥିଲା । ଶଙ୍କର ଏକା ଯାହା କରିଛନ୍ତି, ଇଂରାଜୀ ପଢ଼ୁଆ ହଜାର ହଜାର ମିଶି ତାହା ପାରିବେ ନାହିଁ । ସେମାନେ ଇଂରାଜୀ ଶିକ୍ଷା ନ ପାଇଥିଲେ ଆହୁରି ବଡ଼ ମଣିଷ ହୋଇଥାନ୍ତେ, ଚୈତନ୍ୟଙ୍କ ଭଳି ବଡ଼ କାମ କରିଥାନ୍ତେ । ଏ ଜାତିକୁ ପୁଣି ଜିଆଇବାକୁ ହେବ ତ ଇଂରାଜୀ ଶିକ୍ଷା ଦ୍ୱାରା ତାହା ହେବ ନାହିଁ ।" (ପୃ ୬)

ଯାହା ପେଟକୁ ଦାନା ମିଳେ ନାହିଁ, ଭୋକ ଉପାସରେ ଯେ ହାଡ଼ଚମ, ସେମିତି ମହାତ୍ମା ଗାନ୍ଧୀ ପୁରୀରେ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କୁ ୧୯୨୧ରେ ଦେଖିଥିଲେ, "ତାଙ୍କ ଆଗରେ ଭଗବାନଙ୍କ ନାମ ନେଇ ବୃଥା ତାଙ୍କୁ ଅପମାନ ଦେବେ । ଆମେ ଯଦି ତାଙ୍କୁ ଈଶ୍ୱରଙ୍କ କଥା କହିବା ସେ ଆମକୁ ସଇତାନ ବୋଲି ବିଚାରିବେ । ସେମାନେ ଈଶ୍ୱରଙ୍କୁ ଜାଣନ୍ତି ତ ଏକ ଭୟଙ୍କର ପ୍ରତିହିଂସାର ଭଗବାନ ବୋଲି ଜାଣନ୍ତି । ତାଙ୍କ ଆଖିରେ ଭଗବାନ ଏକ ସ୍ୱେଚ୍ଛାଚାରୀ ନିଷ୍ଠୁର ଭଗବାନ ।

ଓଡ଼ିଶାର ଗରିବ ଭଉଣୀମାନଙ୍କର ତ ମୂଳରୁ ଶାଢ଼ୀ ନାହିଁ । ସେମାନେ ତ ଛିଣ୍ଡାକନା ପିନ୍ଧି ଚଳୁଛନ୍ତି । ତଥାପି ତାଙ୍କର ଭଦ୍ରତାବୋଧ ପୂରାପୂରି ଲୋପ

ପାଇ ନାହିଁ । କିନ୍ତୁ ଆମେ ସେତିକ ହରେଇ ବସିଛୁ, ଏଥିରେ ସନ୍ଦେହ ନାହିଁ । ଏତେ ଲୁଗା ଥାଇ ଥାଇ ଆମେ ଲଙ୍ଗଳା ଏବଂ ସେମାନେ ଲଙ୍ଗଳା ହେଲେ ମଧ୍ୟ ତାଙ୍କ ଇଜ୍ଜତକୁ ଘୋଡ଼ାଇ ରଖିଛନ୍ତି... ।" (ପୃ ୧୧)

ଅର୍ଥରେ ତାଙ୍କୁ ପଚାରିଗଲା, "ଜନସାଧାରଣଙ୍କ ଉପରେ ଆପଣଙ୍କ ଏ ପ୍ରଭାବର କାରଣ କଣ ?"

ତା ଉତ୍ତରରେ ସେ କହିଲେ, "ଆହା ମୋ ସତ୍ୟାଗ୍ରହର ଫଳ । କୌଣସି କଥାରେ ସତ୍ୟ ଦେଖିଲାକ୍ଷଣି ମୁଁ ତାକୁ କାମରେ ଲାଇବା ପାଇଁ ଜୀବନମୂର୍ଚ୍ଛା ଉଦ୍ୟମ କରିଥାଏ ଏବଂ ତାକୁ ପୁରାପୁରି ହାତମୁଠାରେ ନ ପାଇବାଯାଏ ଚେଷ୍ଟା କରୁଥାଏ ।
(ପୃ ୧୨)

"ମୋର ଏ ପ୍ରଭାବ ଲୋକଙ୍କ ଭିତରକୁ, ଗଭୀରକୁ ପଶି ନାହିଁ, ଏମିତି ଦିନ ଆସିବ, ଯେତେବେଳେ ମୋ କଥାରେ ବହୁତ କମ୍ ଲୋକ ରହିବେ, ସେତେବେଳେ ମୁଁ ଦୁଃଖିତ ହେବ ନାହିଁ, ନିରାଶ ହେବ ନାହିଁ, ମୁଁ ମୋ ଉଦ୍ୟମ ଛାଡ଼ିବ ନାହିଁ ।" (ପୃ ୧୩)

କେଡ଼େ ସତ ଥିଲା ତାଙ୍କର ଯେ ଭବିଷ୍ୟତବାଣୀ ! ୧୯୪୪ର ପରିସ୍ଥିତିକୁ ସେହି କଣ୍ଠରେ କଲେ କେଡ଼େ ଆଶ୍ଚର୍ଯ୍ୟ ଲାଗେ !

୧୯୨୫ ଅଗଷ୍ଟରେ ଗାନ୍ଧୀ କଂଗ୍ରେସର ସଭାପତି ପଦ ଛାଡ଼ିଦେବାକୁ ପ୍ରସ୍ତାବ କରି ୰ ମୋତିଲାଲ ନେହେରୁଙ୍କୁ ଲେଖିଥିଲେ—

"ଭାରତର ପାଠୁଆ ଲୋକେ ଏବେ କଂଗ୍ରେସକୁ ଚଳାନ୍ତୁ । ତାର ବିକାଶ କରାନ୍ତୁ । ମୁଁ ତାଙ୍କ କାମରେ ବାଧା ଦେବି ନାହିଁ । ମୁଁ ତ ସାଧାରଣ ଲୋକଙ୍କ ଭାଗ୍ୟ ସଙ୍ଗେ ଆପଣା ଭାଗ୍ୟକୁ ମିଶାଇ ଦେଇଛି । ପୁଣି ଶିକ୍ଷିତ ସମାଜଙ୍କ ଚିନ୍ତା ସଙ୍ଗେ ମୋ ମତର ମୌଳିକ ଭେଦ ରହିଛି । ମୁଁ ପୁରାପୁରି ଗଠନ କାମରେ ଲାଗି ରହିବି ।"
(ପୃ ୧୭)

ମଧୁବାବୁଙ୍କ କୋଠିରେ ରହିଥିଲା ବେଳେ ଗାନ୍ଧୀ ଅଲକାଶ୍ରମର ସ୍କୁଲ ପିଲାଙ୍କୁ ଓ କର୍ମୀଙ୍କୁ କହିଥିଲେ ଯେ "ବର୍ତ୍ତମାନର ଶିକ୍ଷା ଆମର ବୁଦ୍ଧିକୁ ଆଧୁନିକ ସଭ୍ୟତାକୁ (ତା ଅର୍ଥ ଓ ଉଦ୍ଦେଶ୍ୟର ଓଲଟା ଭାବରେ ଗ୍ରହଣ କରିବାକୁ) ବ୍ଲଟିଂ ପେପର କରି ଦେଇଛି ।" (ପୃ ୨୦)

ଗାନ୍ଧୀ ଯେଉଁଠାକୁ ଯାଆନ୍ତି ସେଠି ସତ୍ୟାଗ୍ରହର ଖବର ବୁଝନ୍ତି । ୧୯ ୮ରେ ବାରଡୋଲି ସତ୍ୟାଗ୍ରହ ହେଲା, ସତ୍ୟାଗ୍ରହୀ ଜିତିଲେ । ସେଠି ବିଜୟ ଉତ୍ସବ ହେଲା, ସେହି ସଭାରେ ଗାନ୍ଧୀ କହିଲେ—

"ସ୍ୱଗରେ ସ୍ୱଳ ଖାଇବା କଥାଟାକୁ ମୁଁ ସେତେ କଠିନ କାମ ବୋଲି ଭାବେ ନାହିଁ, କିନ୍ତୁ ପ୍ରତିଦିନ କାମ କରିବା, ପ୍ରତି ମୁହୂର୍ତ୍ତରେ ନିଜ ସଙ୍ଗେ ନିଜେ ସଂଗ୍ରାମ କରିବା, ଆତ୍ମଶୁଦ୍ଧି କରିବା, ଏ ବଡ଼ ଭିଡ଼ କାମ ।" (ପୃ ୨୫)

ପୁଣାରୁ ପଦଯାତ୍ରା କରିବାକୁ ପୁଣା ଆସୁ ଆସୁ ଝାରସୁଗୁଡ଼ାରେ ଗାନ୍ଧୀ କହିଥିଲେ,

"ହନୁମାନର ହୃଦୟ ଚିର ଦେଖିଲାବେଳକୁ ଦିଶିଲା ରାମ ନାମ ଲେଖା ହୋଇଛି । ସେମିତି, ମୋ ହୃଦୟ ଚିର ଦେଖିଲେ ଦିଶିବ ସେଠି 'ଦରିଦ୍ର ନାରାୟଣ' ଲେଖା ହୋଇଛି ।" (ପୃ ୩୦)

ହରିଜନଙ୍କ ବିଷୟରେ ବିବୃତ୍ତିରେ ଲେଖିଥିଲେ,

"ତାଙ୍କ ଭିତରେ ସବୁଠୁ ଯେ ତଳେ ତାଙ୍କର ଭଲ ହେବାକୁ ମୁଁ ଚେଷ୍ଟା କରୁଛି । ତାଙ୍କର ସବୁଠୁ ତଳ ସ୍ତରରେ ଏମିତି ଲୋକ ଅଛନ୍ତି ଯାହାଙ୍କ ଦୃଷ୍ଟି ପଡ଼ିଲେ ଦୋଷ, ମୁଁ ତାଙ୍କର ସାଙ୍ଗରେ ଏକ ହେବାକୁ ବସିଛି । ମୁଁ ସେମାନଙ୍କୁ ମାଲବାରରେ ଓ ଓଡ଼ିଶାରେ ଦେଖିଛି ଏବଂ ମୋର ଦୃଢ଼ବିଶ୍ୱାସ ଜନ୍ମିଛି ଯେ ସେମାନଙ୍କ ଉନ୍ନତି ପାଇଁ କେବଳ ଆଇନରେ ସମାନ ସ୍ଥାନ ହେଲେ ହେବ ନାହିଁ, କେବଳ ହିନ୍ଦୁ ସଂସ୍କାରକ କର୍ମୀମାନେ ତାଙ୍କ ଭିତରେ ପ୍ରବଳ ଉଦ୍ୟମ କଲେ ତାହା ସମ୍ଭବ ହେବ ।" (ପୃ ୩୬)

ଓଡ଼ିଶାରେ ହରିଜନ ପଦଯାତ୍ରା ବେଳେ 'ହରିଜନ' ଖବର କାଗଜରେ ସେ ଲେଖିଥିଲେ—"ମୋର ଦୃଢ଼ଧାରଣା ହୋଇଛି ଯେ କୋଟି କୋଟି ଲୋକଙ୍କର ବେକାର ସମୟରେ ଅରଟ ହିଁ ଏକମାତ୍ର ଆଶ୍ରୟ, ତା ଛଡ଼ା ଆଉ କିଛି ନାହିଁ ।" (ପୃ ୭୩)

ସେହି ସମୟରେ କେନ୍ଦ୍ରାପଡ଼ା ସଭାରେ କହିଥିଲେ—

"ଭଉଣୀମାନଙ୍କଠାରେ ମୋର ପ୍ରାର୍ଥନା, ସେମାନେ ଆପଣା ଆପଣା ଆପଣା ପୁଅଝିଅଙ୍କୁ ପାଠ ପଢ଼ାନ୍ତୁ, ସଫାସୁତୁରା ରଖନ୍ତୁ ଓ ଗହଣା ପିନ୍ଧାନ୍ତୁ ନାହିଁ । ବଡ଼ ବଡ଼ ଭଉଣୀମାନଙ୍କଠାରେ ମୋର ପ୍ରାର୍ଥନା, ସେମାନେ ନିଜେ ଗହଣା ପିନ୍ଧିବା ଛାଡ଼ି ଦିଅନ୍ତୁ ।" (୨୧-୫-୧୯୩୪)

ଉତ୍କଳରେ ଗାନ୍ଧିଜୀଙ୍କ ଗସ୍ତ ବର୍ଣ୍ଣନା ଓ ଗାନ୍ଧୀଜୀଙ୍କର କେତେକ ମତ ଓ ମନ୍ତବ୍ୟର ଉପସ୍ଥାପନା, ଏତିକରେ 'ଗାନ୍ଧୀ ଓ ଉତ୍କଳ' ସୀମିତ ନୁହେ । ବିଭିନ୍ନ ଘଟଣା ଓ ବିଭିନ୍ନ ଚିତ୍ର ମାଧ୍ୟମରେ ଗାନ୍ଧିଜୀଙ୍କ ଚରିତ୍ର ଓ ବ୍ୟକ୍ତିତ୍ୱ ଚିତ୍ରଣ ଓ ବିଶ୍ଳେଷଣ ଏହାର ପ୍ରଧାନ କାର୍ଯ୍ୟ । ଯେପରିକି ଲେଖକ ଏ ପୁସ୍ତକରେ ଗୋଟିଏ ଅନୁସନ୍ଧାନ ଚଳାଇଛନ୍ତି, ଜାଣିବାକୁ ଓ ଜଣାଇବାକୁ । —"ଗାନ୍ଧୀ କିଏ ? ଗାନ୍ଧୀ କଣ ?"

ମୁଖ୍ୟ ଚରିତ୍ର ଗାନ୍ଧୀ, କଥାବସ୍ତୁର ଆରମ୍ଭ ମହାତ୍ମାଜୀ ଠକ୍କର ବାପ୍ପାଙ୍କଠୁଁ ଉତ୍କଳର ଦୁରବସ୍ଥା ବିଷୟ ଶୁଣିବାବେଳଠୁ, ଘର ଶେଷ—ଉତ୍କଳରେ ପଞ୍ଚମ ଥର ଭ୍ରମଣ ସାରି ସେ ଉତ୍କଳରୁ ଫେରିଯିବା ପର୍ଯ୍ୟନ୍ତ, ବୌଦ୍ଧିକ ଚିନ୍ତନ ଓ ମରମଭାବର ସଂଯୋଗ ଏଥିରେ ପଦେ ପଦେ, ବିସ୍ମୟ ଓ ଚିନ୍ତାଶୀଳତା ସହିତ କାରଣ—ଫଳସମ୍ପର୍କ କ୍ରମରେ ବୌଦ୍ଧିକ ଆଲୋଚନା ଓ ବିନ୍ୟାସ ବିଭିନ୍ନ ସ୍ଥାନରେ ଅଛି, ରସମୟ ଭାବଜଗତ୍ର ସୃଷ୍ଟି ହୋଇଛି, ପୁଣି ନିର୍ଲିପ୍ତ ଦୃଷ୍ଟିରେ ଶୀତଳ ବାସ୍ତବତାର ଚିତ୍ର ଜଳଜଳ ଦିଶୁଛି। ନାନା ବିଷୟ, ଆପାତତଃ ପରସ୍ପରଠୁ ଭିନେ, ଏପରିଭାବେ ସମୀକୃତ ଓ ସନ୍ନିବିଷ୍ଟ ହୋଇଛି ଯେ ସାମୂହିକ ଭାବରେ ଗୋଟିଏ ଭାବରାଜ୍ୟ ଓ ତା'ର ବାତାବରଣ ସୃଷ୍ଟି ହୋଇଛି। ଏ ସବୁ କେବଳ ଏକ ଶ୍ରେଣୀର ଆଧୁନିକ ଉପନ୍ୟାସ ହିଁ, ଶୈଳୀ ବି ଏକା ପ୍ରକାରର। ଲେଖକ କେଉଁଠି ହେଲେ କହି ନାହାନ୍ତି ଯେ ଏହା ଏକ ଉପନ୍ୟାସ, କିନ୍ତୁ ତାହା ଆପେ ବାରି ହେଉଛି, ସେହି ଶ୍ରେଣୀରେ, ହୁଏତ ନାନା ବିଷୟରେ ସଫଳତର ହୋଇ, ଯେପରି ବହୁ ପରବର୍ତ୍ତୀ କାଳରେ ଦେଖାଗଲା ଉପନ୍ୟାସ "ବ୍ରିଜ୍ ଅନ୍ ଦି ଡ୍ରିନା"ରେ, ବା ସୋଲ୍ଜେନିତ୍ସିନ୍ଙ୍କ "ଗୁଲାଗ୍ ଆର୍କି-ପେଲଗୋ"ରେ। ଏ ଲେଖକ ନିଜ ବିଷୟରେ ଅତ୍ୟନ୍ତ ବିନମ୍ର, ନିଜ ଉତ୍କର୍ଷକୁ ବରଂ ଲୁଚାଇବାକୁ ଲୋଡ଼ି ଆସିଛନ୍ତି, ପ୍ରକାଶ କରି ନାହାନ୍ତି, ପ୍ରଚାର ତ କାହିଁ ଦୂର କଥା, କିନ୍ତୁ ଶ୍ରଦ୍ଧାଳୁ ପାଠକ-ସମୀକ୍ଷକ, ସଂସ୍କୃତ କାବ୍ୟାଲୋଚନା ଶାସ୍ତ୍ରର ପରିଭାଷା ଅନୁଯାୟୀ ଭାବ-ରସ-ଗ୍ରାହୀ 'ରସିକ' ଅନ୍ଧ ଓ ଦୃଷ୍ଟିହୀନ ହେବାକଥା ନୁହେଁ। "ଗାନ୍ଧୀ ଓ ଉତ୍କଳ" ୮ ଗୋପବନ୍ଧୁ ଚୌଧୁରୀଙ୍କର ଗୋଟିଏ ମୌଳିକ ଶ୍ରେଷ୍ଠ ସାହିତ୍ୟକୃତି, ଗୋଟିଏ ଉପନ୍ୟାସ। କୋମଳ ସରଳ ସୁନିଶ୍ଚିତ ଅଳ୍ପ ଶବ୍ଦ ଚୟନ ଓ ପ୍ରୟୋଗ, ଶବ୍ଦ ବ୍ୟବହାରରେ ମିତବ୍ୟୟିତା, ଶବ୍ଦମାନଙ୍କ ଭାବବ୍ୟଞ୍ଜକତା, ବିଭିନ୍ନ ରୂପ ଓ ଚିତ୍ରଙ୍କର ସଫଳ ବିନ୍ୟାସକୌଶଳ, ଭାଷାର ଦାଢ଼ ଓ ମୁନ, ଏଗୁଡ଼ିକ ଏ ପୁସ୍ତକର ବିଶେଷତ୍ୱ। ସବୁଯାକ ଲାଗେ ସରଳ, ସହଜ, ସ୍ୱାଭାବିକ, ଯେପରି "ଅସାଧାରଣ କିଛି ନୁହେଁ ଏସବୁ।" କିନ୍ତୁ ପଦେ ପଦେ କେଡ଼େ ତାତ୍ପର୍ଯ୍ୟପୂର୍ଣ୍ଣ ! ନାନା କାହାଣୀ ନାନା ଘଟଣା ଉପଯୁକ୍ତ ସ୍ଥାନରେ ଥୋଇ ତାକୁ ଖଞ୍ଜିବା ସଜାଇବାରେ ମଧ୍ୟ ଲେଖକଙ୍କର ଉତ୍କର୍ଷ ଫୁଟି ଉଠେ। ଗାନ୍ଧୀ ଚରିତ୍ର ଗାନ୍ଧୀ ବ୍ୟକ୍ତିତ୍ୱ ଜୀବନ୍ତ ହୋଇ ଉଭା ହୁଏ।

ଆହୁରି, ତାହାର ଉହାଡ଼ରୁ, ଟିକିଏ ନିରେଖି ଦେଖିଲେ ଦିଶିଯାଏ ଲେଖକ ଗୋପବନ୍ଧୁ ଚୌଧୁରୀଙ୍କ ଚରିତ୍ରର ଛବି, ସେ ଅନ୍ତରାଳରେ ଥିଲେ ବି ଦ୍ରଷ୍ଟା ଓ କଥକ ତ ସେ ହିଁ, ସେ ହିଁ ବାଛୁଛନ୍ତି କ'ଣ ଦେବେ, କେଉଁଠି ଦେବେ, କିପରି ଦେବେ। ଅଧିକନ୍ତୁ, ତାଙ୍କ ନିଜ ଜୀବନରେ ଯେପରି ଆଦର୍ଶ ସେ ଅନୁସରଣ କଲେ, କ୍ଷମତା-ରାଜନୀତିରେ ନ ପଶି ମଳିମୁଣ୍ଡିଆ ମଫସଲିଆଙ୍କ ନିମ୍ନତମ କାଣ୍ଡିଶ୍ରେଣୀରେ ଏକ ହୋଇ ରହିବାକୁ ଗାନ୍ଧି ଯେପରି ରଚନାତ୍ମକ କର୍ମମାନ କଲେ, ଦେଶକୁ ତା'ର

ତେରରୁ ସୁଧାର ଗଢ଼ିବାକୁ ଆପ୍ରାଣ ଚେଷ୍ଟା କଲେ ତା'ର କାରଣ ଓ ସ୍ୱରୂପ ବି ଏ ପୁସ୍ତକରୁ ବୁଝିହୁଏ—ସେ ମହାତ୍ମା ଗାନ୍ଧୀଙ୍କ ମତକୁ ଅକ୍ଷରେ ଅକ୍ଷରେ ପାଳୁଥିଲେ। 'ଗାନ୍ଧୀ ଓ ଉତ୍କଳ' ଗୋଟିଏ ଚମତ୍କାର ମନୋରମ ଓ ଶିକ୍ଷାପ୍ରଦ ତଥ୍ୟପୂର୍ଣ୍ଣ କୃତି, ୰ ଗୋପବନ୍ଧୁ ଚୌଧୁରୀଙ୍କର ଦ୍ୱିତୀୟ ଶ୍ରେଷ୍ଠତମ କୃତି।

## କର୍ମୀ ତାଲିମ ପାଇଁ ପୁସ୍ତିକା

ଏହା ପ୍ରକାଶିତ ହୋଇଛି କି ନାହିଁ ଜଣା ନାହିଁ। ୧୯୪୫ରେ ଜେଲରେ ଥିଲାବେଳେ ସେ ଏହାକୁ ଲେଖିଥିଲେ। ଏ ବିଷୟଟି ଏ ପୁସ୍ତକର ୬୭୫ ପୃଷ୍ଠାରୁ ୬୭୯ ପୃଷ୍ଠାରେ ଆଲୋଚିତ ହୋଇଛି।

## 'ଗ୍ରାମସେବକ ପତ୍ରିକା' ଓ ତହିଁରେ ତାଙ୍କର ଲେଖା

( ୰ ଗୋପବାବୁଙ୍କ ମୃତ୍ୟୁ ପରେ କାଳକ୍ରମେ 'ଗ୍ରାମସେବକ' ନାମଟି ବଦଳାଇ ଏହାର ନାମ 'ସର୍ବୋଦୟ' ପତ୍ରିକା ରଖାଯାଇଛି। 'ଗ୍ରାମସେବକ' ଆଉ ବାହାରୁ ନାହିଁ। )

ପୂର୍ବେ କୁହାଯାଇଛି ଯେ ୰ ଗୋପବନ୍ଧୁ ଚୌଧୁରୀଙ୍କ ପ୍ରେରଣାରେ ଶ୍ରୀ ମନମୋହନ ଚୌଧୁରୀଙ୍କ ସମ୍ପାଦନାରେ ୧୯୪୭ ଜାନୁଆରୀରୁ 'ଗ୍ରାମସେବକ' ପତ୍ରିକା ବାହାରିଲେ। ଏହାର ଉଦ୍ଦେଶ୍ୟ ଥିଲା ଖଦୀ କାମ। ଖଦୀକୁ କେନ୍ଦ୍ର କରି ଗାନ୍ଧୀ ପରିକଳ୍ପିତ ବିବିଧ ଗଠନାତ୍ମକ କର୍ମ, ସମାଜରୁ ଅସ୍ପୃଶ୍ୟ, ହିଂସା, ଶୋଷଣ ଦୂରକରି ଗାନ୍ଧୀ ଦର୍ଶନ ଅନୁଯାୟୀ ସୁସ୍ଥ, ସ୍ୱାବଲମ୍ବୀ, ଅହିଂସ, ସୁଖୀ ସମାଜ ଗଠନ, ଏହିସବୁ ବିଷୟରେ ତାତ୍ତ୍ୱିକ ବିଚାର ଓ ଏ ଦିଗରେ କରି କାର୍ଯ୍ୟ ହେଉଛି ସେ ବିଷୟରେ ଆଲୋଚନା ଓ ସମ୍ବାଦ ପରିବେଷଣ। ପ୍ରଥମ ସଂଖ୍ୟାରେ ହିଁ ପତ୍ରିକାର ଉଦ୍ଦେଶ୍ୟଟି ବୁଝାଇ ଦିଆହୋଇଥିଲା। ସେତେବେଳେ ଅନ୍ୟାନ୍ୟ ଭାଷାରେ ଅନେକ ପତ୍ରିକା ଆଦି ବାହାରୁଥିଲେ ବି ଓଡ଼ିଶାରେ ସେପରି ପତ୍ରିକା ନ ଥିଲା। ଏଥିରେ ଗାନ୍ଧୀଜୀଙ୍କର ନାନା ଲେଖା ଓଡ଼ିଆରେ ଅନୂଦିତ ହୋଇ ବାହାରୁଥିଲା; ତାହାଛଡ଼ା ବିନୋବା, କୁମାରପ୍ପା, କିଶୋରଲାଲ ମଶ୍ରୁୱାଲା, କାକା କାଲେଲକର, ଶ୍ରୀମନ୍ନାରାୟଣ ଅଗରୱାଲ, ଦାମୋଦର ଦାସ ମୁନ୍ଦଡ଼ା ଆଦି ବିଶିଷ୍ଟ ଗାନ୍ଧୀବାଦୀଙ୍କର ହିନ୍ଦୀ, ଇଂରେଜୀ ବା ଅନ୍ୟ ଭାଷାରେ ଲେଖାକୁ ଓଡ଼ିଆରେ ଅନୁବାଦ କରି ତାହା ବାହାରୁଥିଲା। ଓଡ଼ିଶାର ଗାନ୍ଧୀବାଦୀମାନଙ୍କ ଭିତରୁ କେହି କେହି ଏଥିରେ ଲେଖା ପ୍ରକାଶ କରୁଥିଲେ। ପଛେ ଓଡ଼ିଶାରେ 'ଭୂଦାନ ଯଜ୍ଞ' କାର୍ଯ୍ୟ ଆରମ୍ଭ ହେବାବେଳକୁ ପତ୍ରିକାର ଆଦ୍ୟ ଉଦ୍ଦେଶ୍ୟ ସହିତ ଏହାର ଅନ୍ୟତମ ମୁଖ୍ୟ କାର୍ଯ୍ୟ ହେଲା 'ଭୂଦାନ ଯଜ୍ଞ'ର ଦର୍ଶନ ଆଲୋଚନା ଓ ପ୍ରଚାର ଓ ତାହାର କାର୍ଯ୍ୟ ବିଷୟରେ ବିବିଧ ନିଷ୍ପତ୍ତି, ନିର୍ଦ୍ଦେଶ,

ସମ୍ବାଦ ଓ ଆଲୋଚନା ପ୍ରକାଶ । ଓଡ଼ିଶାର ଓ ଭାରତର ଭୂଦାନ ନେତାମାନଙ୍କର ଓ ଓଡ଼ିଶାର ବିଶିଷ୍ଟ ଭୂଦାନ କର୍ମୀଙ୍କର ଲେଖା ଏଥିରେ ବାହାରିବାକୁ ଲାଗିଲା ।

ପତ୍ରିକାଟି ଆରମ୍ଭ ହେଲାଦିନୁ ମଝିରେ ମଝିରେ ୬ ଗୋପବନ୍ଧୁ ଚୌଧୁରୀ ତହିଁରେ ଲେଖୁଥିଲେ । ଏଥିରେ ପ୍ରକାଶିତ ତାଙ୍କର ଲେଖାଗୁଡ଼ିକ ଏକତ୍ର ସଙ୍କଳିତ ହୋଇ ନାହିଁ । ସଂଖ୍ୟାରେ ସେଗୁଡ଼ିକ ଏକଶତରୁ ଅଳ୍ପ ଅଧିକ ହେବ । ତହିଁରୁ ଅଳ୍ପ କେତୋଟିକୁ ଛାଡ଼ି ବାକିଗୁଡ଼ିକ ମୁଁ ପଢ଼ିଛି । କେତୋଟିରୁ କିଛି ଉଦ୍ଧୃତାଂଶ ଏ ପୁସ୍ତକରେ ପୂର୍ବେ ଦିଆହୋଇଛି । ବାକିଗୁଡ଼ିକ ବିଷୟରେ ନିମ୍ନରେ ସଂକ୍ଷେପରେ ଆଲୋଚନା କରୁଛି ।

'ଗ୍ରାମସେବକ'ରେ ତାଙ୍କର ଅନେକ ଲେଖାରେ ବିଭିନ୍ନ ସ୍ଥାନରେ ପ୍ରଦତ୍ତ ତାଙ୍କର ଭାଷଣମାନଙ୍କର ସାରାଂଶ ବା ତହିଁରୁ କିଛି ଉଦ୍ଧୃତାଂଶ ବାହାରିଥିଲା । ଅନେକ ଲେଖା ଏପରି ମିଳେ ଯହିଁରେ କୌଣସି ନୂଆ ପ୍ରୟୋଗ କରି ବା ଅନ୍ୟ କୌଣସି ରଚନାତ୍ମକ କାର୍ଯ୍ୟ କରୁ କରୁ ସେ ଯେଉଁ ଅଭିଜ୍ଞତା ବା ଅନୁଭୂତି ପାଇଥିଲେ ତାହା ଅନ୍ୟ କର୍ମୀମାନଙ୍କୁ ତହିଁରେ ସେ ଜଣାଇଛନ୍ତି । କେତୋଟି ଲେଖାରେ କର୍ମୀମାନଙ୍କ ପାଇଁ ତାଙ୍କର କିଛି ନିର୍ଦ୍ଦେଶ ଅଛି ବା କାର୍ଯ୍ୟ ବିଷୟରେ କିଛି ସମ୍ବାଦ ରହିଛି । ଯେଉଁମାନେ ତାଙ୍କଭଳି ଏକାବାଟରେ କାମ କରୁଛନ୍ତି ବା କରିବାକୁ ଆଗ୍ରହୀ ସେସବୁ ଲେଖା ସେମାନଙ୍କ କାର୍ଯ୍ୟରେ ଲାଗିବ ବୋଲି ଲେଖା ହୋଇଥିଲା । ଅଳ୍ପ କେତୋଟି ଉଦାହରଣ ଦିଏ —

୧୯୪୭ ମାର୍ଚ୍ଚରେ 'କାମ୍ବୋଡ଼ିଆ କପା' ବିଷୟରେ ଲେଖି ସେ ଲେଖା ଆରମ୍ଭ କଲେ । "ଆମ କାମ୍ବୋଡ଼ିଆ କପା ଫୁଟିଲାଣି ।" ଶେଷରେ ଅଛି, "ବର୍ଷେ ଆମଦାନି ସାରିଲେ ଜଣାପଡ଼ିବ ଗୁଣୁକେ ଆୟ କେତେ ।" ସେତେବେଳକୁ ସେ 'କାମ୍ବୋଡ଼ିଆ କପା' ଚାଷ ଆରମ୍ଭ କରିଥାନ୍ତି, କିନ୍ତୁ ସେ କୌଣସି ନୂଆ ଧାରଣାରେ ଉନ୍ମତ୍ତ କରି ଭାସିଯିବା ଲୋକ କେବେ ନ ଥିଲେ, ପ୍ରତି କଥା ଭଲ କରି ପରୀକ୍ଷା କରି ସ୍ୱତନ୍ତ୍ର ସେବିଷୟରେ ନିଜ ମତ ଓ ଆଭିମୁଖ୍ୟ ସ୍ଥିର କରୁଥିଲେ । ସେ ଅନ୍ଧାରରେ ସୂତା କାଟିବା ଆରମ୍ଭ କଲେ, ସେ ବିଷୟରେ ଜୁଲାଇ ସଂଖ୍ୟାରେ ଲେଖିଲେ; "ମୁଣ୍ଡରେ ଖିଆଲ ପଶିଲା, ଚଷମା କାଢ଼ି ସୂତା କାଟିଲି । ଆଖି ବୁଜି କାଟିବାକୁ ଚେଷ୍ଟା କଲି । କ୍ରମେ ଅଭ୍ୟାସ ବଢ଼ିଲା, ସାହସ ବଢ଼ିଲା । ସୂତା କାଟିଯାଉଛି, ମଜବୁତ୍ ଠିକ୍ ହେଉଛି, ସମ୍ଭବତଃ ବେଶୀ ହେଉଛି, ଗତି ଟିକିଏ କମ୍ ହେଉଛି, ବେଶୀ କମ୍ ନୁହେଁ, ଘଣ୍ଟାକେ ସ୍ୱାଭାବିକ ଜାଗାରେ ତିନିଶହ, ତିନିଶହ ପଚିଶ ଭିତରେ ହେଉଛି । ଏ ବିଷୟରେ କର୍ମୀମାନେ ପରୀକ୍ଷା କରି ଦେଖନ୍ତୁ, ଅନ୍ଧାରରେ ସୂତା କାଟିବା ସବୁଆଡ଼ୁ ଲାଭଜନକ ହେବ ।"

କପା ଚାଷ, ସେବା କାମ, ମୌଳିକ ଶିକ୍ଷା, ନସ୍ତୀତାଲିମ୍ କର୍ମୀମାନଙ୍କୁ ନାନା ନିର୍ଦ୍ଦେଶ ଓ ଉପଦେଶ, ଭୂଦାନ ବିଚାର, ନାନା ସ୍ଥାନରେ ସେ ଦେଖି ଆସିଥିବା ବିଷୟ, ନାନା ବିଷୟରେ ଗାନ୍ଧିଜିଙ୍କ ମତ, ବିନୋବାଙ୍କ ମତ ଏସବୁ ବିଷୟରେ 'ଗ୍ରାମସେବକ'ରେ ତାଙ୍କର କିଛି କିଛି ଲେଖା ବା ଭାଷଣରୁ ସଂକ୍ଷିପ୍ତ ଉଦ୍ଧୃତାଂଶ ଅଛି ।

ଆଉ କେତେଗୁଡ଼ିଏ ଲେଖା ସର୍ବସାଧାରଣଙ୍କ ପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ ଓ ବିଚାର-ଉଦ୍ରେକକାରୀ । ସେପରି କେତୋଟି ଲେଖା ବା ବକ୍ତୃତାର ଉଦ୍ଧୃତାଂଶରୁ ନିମ୍ନରେ କିଛି ଉଦ୍ଧୃତାଂଶ ଦିଆଗଲା—

'ଗାନ୍ଧୀ କାମ' ('ଗ୍ରାମସେବକ' ଅପ୍ରେଲ ୧୯୪୭ ସଂଖ୍ୟାରୁ)

"ଯେଉଁଠିର ଏକ ପ୍ରତିକୂଳ ହାଓ୍ୱା ଦେଶରେ ଖେଳିଯାଉଛି । ଯେଉଁ କାହିଁକି, ସମସ୍ତ 'ଗାନ୍ଧୀ କାମ' ପାଇଁ ଏକ ପ୍ରତିକୂଳ ବାତାବରଣ ସୃଷ୍ଟି ହେଉଛି । ଯେଉଁ ସୂଅର ବିରୁଦ୍ଧରେ ଗାନ୍ଧୀ ଠିଆ ହୋଇଥିଲେ, ଦେଶ ବି ଗୁଲିଥିଲା, ହଠାତ୍ ସେ ସୁଅର ଜୋର ସବୁଠାରୁ ବେଶୀ ହୋଇଯାଇଛି ।

ସୁଅ ବିରୁଦ୍ଧରେ ଯିବାକୁ ଆଗୁଆ ପନ୍ଥୀଙ୍କ ମନ ବି ଆଉ ସେତେ ହେଉ ନାହିଁ ।

ସବୁ କଥାରେ ପଇସାର ହିସାବ ହେଉଛି, ପାଠ ପଢ଼ି କେତେ ଖର୍ଚ୍ଚ ହେଲା ଓ କେତେ ରୋଜଗାର କରିବା କ୍ଷମତା ଲାଭ ହେଲା ତାହାର ବାପ, ମା ଓ ପିଲା ସମସ୍ତେ ଯୋଡ଼ୁଛନ୍ତି, ପିଲା ବଢ଼ିଁ ହେଲା କି ମାଙ୍କଡ଼ ହେଲା, ସ୍ୱାସ୍ଥ୍ୟ ଚରିତ୍ର କଣ ହେଲା ସେକଥା କେହି ଦେଖୁ ନାହାନ୍ତି ।

ଏଣେ ଦେଶର ପ୍ରାଣ ଯୁବକକୁଳ ପାଠ ପଢ଼ିଲାବେଳେ ବଡ଼ ବଡ଼ କଥା ଚିନ୍ତା କରୁଛନ୍ତି, ଉଚ୍ଚ କଳ୍ପନାରେ ଭାସୁଛନ୍ତି, କିଛି ନ ହେଲେ ତ ବଡ଼ ବଡ଼ ସ୍ଲୋଗାନରେ ଜୀବନକୁ ଦେଶକୁ ଗଢ଼ିବେ ବୋଲି ଖୁବ୍ କୋଳାହଳ କରୁଛନ୍ତି, କିନ୍ତୁ ସଂସାରରେ ପଶିବା ପରେ ସମାଜ ଓ ପରିବାରର ହାଓ୍ୱାରେ ସେସବୁ ଚିନ୍ତା କୁଆଡ଼େ ଉଭେଇଯାଏ, ଯାହା ପଢ଼ିଁଶିବାକୁ ଶିଖିଛନ୍ତି ଆଉ ପଢ଼ିଁବା ପାଣି ପାନ୍ତି ନାହିଁ, ପୁଣି ସେ ବାବୁଅପଙ୍କ ଚଳଣି ନିଜେ ପ୍ରତିକ୍ରିୟାଶୀଳ ହେଉଛନ୍ତି । ହୋଟେଲ, ଗ୍ର' ଷ୍ଟୋଭ, ପଣା, ତାସ୍, ସିନେମାରେ ସମସ୍ତ କୁଆଡ଼େ କଟିଯାଉଛି ତାର ଠିକଣା ନାହିଁ ।..."

କର୍ମୀମାନଙ୍କୁ ଉପଦେଶ

"ଯେମିତି ନିଜେ ନ କାଟିଲେ ଅନ୍ୟମାନେ କାଟିବେ ନାହିଁ, ଏହି ନୀତି ଆଶ୍ରୟ କରି ଖଦିପ୍ରେମୀମାନେ କାମ ଆରମ୍ଭ କରିଥିଲେ, ଆଜି ମଧ୍ୟ ସେହି ନୀତି ଅନ୍ୟ କ୍ଷେତ୍ରରେ ଧରିବାକୁ ହେବ । ନିଜେ ନ ବୁଣିଲେ ନୂଆ ତନ୍ତ୍ରୀ ସୃଷ୍ଟି କରିହେବ ନାହିଁ । ନିଜେ ସତ୍ୟ ଅହିଂସାକୁ ଆଶ୍ରୟ ନ କଲେ ଅନ୍ୟ ଲୋକେ କରିବେ ନାହିଁ ।"

## ଗଠନମୂଳକ କାମ (ଗ୍ରାମସେବକ, ଅଗଷ୍ଟ ୧୯୪୭)

[ସେ ଲେଖିଛନ୍ତି ଯେ କଂଗ୍ରେସ ଛଡ଼ା ଅନ୍ୟ କୌଣସି ରାଜନୈତିକ ଦଳର ତାଙ୍କର ଜଣେ ପୁରୁଣା ରାଜନୀତିକ ବନ୍ଧୁ ତାଙ୍କୁ ପତ୍ରରେ ଏଠି ଲେଖିଛନ୍ତି, "ବର୍ତ୍ତମାନ କ୍ଷମତା ହସ୍ତାନ୍ତର ପରେ, ଶାସନଶକ୍ତି ବଦଳେଇବା ପାଇଁ ସମସ୍ତ ଶକ୍ତି ଦରକାର । ଶାସନଗାଡ଼ିରେ ସମସ୍ତେ କାନ୍ଧ ନ ଲଗାଇଲେ ଚଳିବ ନାହିଁ । ଆପଣ କେବଳ ଗଠନମୂଳକ କାମରେ ପଡ଼ି ରହିଥିଲେ କେମିତି ହେବ ?" ଏ ଲେଖାଟି ତାହାର ଉତ୍ତର ।]

"ଦେଶରେ ଆଉ କୌଣସି ପ୍ରକାର କାମ କରିବାର ଅଛି ବୋଲି ସେ ବୁଝି ନ ଥିଲାପରି ଜଣାପଡ଼ିଲା, କଂଗ୍ରେସ ମହଲରେ ଅନେକେ ମଧ୍ୟ ଏହିପରି ବିଗ୍ରୁଥିବାର ଦେଖାଯାଉଛି ।

କିନ୍ତୁ ବର୍ତ୍ତମାନ ମନେ ହେଉଛି ଯେ ଶାସନଗାଡ଼ିକୁ ଚଳେଇବା ପାଇଁ ଯେତିକି ଏକଜୁଟ ହେବାକୁ ପଡ଼ିବ ସେ ଗାଡ଼ି ପାଇଁ ବାଟ ମଧ୍ୟ ସାଫ୍ ରଖିବା ଦରକାର । ବର୍ତ୍ତମାନ ଆକାଶ ଯେପରି ମେଘାଚ୍ଛନ୍ନ ଏବଂ ସେଥିରେ ଯେପରି ଗୃହଆଡ଼େ ବର୍ଷା, ସଡ଼କରେ ଯିବାର ଦରକାର ପଡ଼ୁଛି, ସେତେବେଳେ କେଉଁଠି ଯେ ବଢ଼ି ବଦଳରେ ବାଟଘାଟ ଭାଙ୍ଗିବ ତାହା କହି ହେବ ନାହିଁ । କ୍ଷମତା ହାତକୁ ଆସିବା ସଙ୍ଗେ ସଙ୍ଗେ ଲୋକଙ୍କ ଆଖି ବେଶୀ ବେଶୀ ବଢ଼ୁଛି । କିବା ରାଷ୍ଟ୍ର କିବା ସମାଜ କେଉଁଥିରେ ହେଲେ ସାମାନ୍ୟ ଅନାଚାର ବା ଅତ୍ୟାଚାରରେ ଜନମତ ଗର୍ଜି ଉଠୁଛି, ଏବଂ ତା' ଉପରକୁ ଶାସନଯନ୍ତ୍ରରେ ସାବାଳକ ମତାଧିକାର ମିଳୁଥିବା ଯୋଗୁଁ କେଉଁଠି ଯେ ହଠାତ୍ ବାଟଘାଟ ଧସିଯିବ ତାହା କେହି କହିପାରିବେ ନାହିଁ । ସେସବୁ ସଜାଡ଼ି, ଶାସନ-ଗାଡ଼ିର ବାଟଘାଟ ଠିକ୍ ରଖିବା ପାଇଁ ଗଠନମୂଳକ କାମର ଆବଶ୍ୟକତା ସମାନ ଗୁରୁତ୍ୱପୂର୍ଣ୍ଣ ଜଣାପଡ଼ୁଛି ।"

## ସେବା ଓ କ୍ଷମତା (ଗ୍ରାମସେବକ, ଜାନୁଆରି ୧୯୪୮)

[ଜଣେ ପତ୍ରପ୍ରେରକ ତାଙ୍କୁ ଲେଖିଥିଲେ,—"...ଏବେ ଆମ୍ଭକୁ ସ୍ୱରାଜ ମିଳିଲା ପରେ ବି କଣ ଆପଣ କହିବେ ସୂତାକଟା ଓ ଖଦି ପିନ୍ଧିବା ରହିବ ?" ଏ ଲେଖାଟି ସେହି ପ୍ରଶ୍ନର ଉତ୍ତରରେ ।]

ଏ ସବୁ ଭଉଣୀମାନେ ଭୁଲି ଯାଉଛନ୍ତି ଯେ ସ୍ୱାଧୀନତା ଅର୍ଥ ମାତ୍ର ବିଦେଶୀ ଶାସନ ଦୂର କରିବା ନୁହେଁ । ଏହା ତ କେବଳ ସ୍ୱାଧୀନତା ଦିଗରେ ଆବଶ୍ୟକ ପ୍ରଥମ ସୋପାନ ।

ଖଦି ତ ଅହିଂସା ଆଡ଼କୁ ଆମକୁ ନେଇଯିବାର ଏକ ଜୀବନ୍ତ ପନ୍ଥା । ଠିକ୍ ହେଉ ବା ଭୁଲ୍ ହେଉ ମୋର ଏହା ଅଟଳ ବିଶ୍ୱାସ ଯେ ଖଦି ଓ ଅହିଂସାର

ବର୍ଣ୍ଣିପରୁ ଜଣାପଡ଼ୁଛି ଯେ, ଏତେବର୍ଷ ଯାଏ ଆମେ ଖଦୀ ବ୍ୟବହାର କରୁଥିଲେ ସତ, କିନ୍ତୁ ତାର ମର୍ମ ବୁଝି ନ ଥିଲେ । ସେଥିଯୋଗୁଁ ଆମେ ଏବେ ସ୍ୱଜାତି ଭିତରେ ବୈରଭାବ ଓ ଆଇନ୍ ଅବମାନନା ଯୋଗୁଁ ଘଟୁଥିବା ତାଣ୍ଡବଲୀଳା ଦେଖୁଛେ ।

ଯନ୍ତ୍ରବଳ ମଣିଷକୁ ଦାବି ଦେବା ପରିବର୍ତ୍ତରେ ଆମେ ଖଦୀ ଜରିଆରେ ମନୁଷ୍ୟକୁ ତାହାର ରାଜା କରେଇବା ପାଇଁ ଲାଗିଛେଁ । ଖଦୀ ଜରିଆରେ ଆମେ ଆଜିକାର ଅସମାନତା ପରିବର୍ତ୍ତେ ମଣିଷ ମଣିଷ ଭିତରେ, ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ସମତା ସ୍ଥାପିତ ହେବାର ସୁଯୋଗ ଦେଖିବାକୁ ଚାହୁଁ । ଏହି ମାର୍ଗରେ, ଶ୍ରମିକ ଉପରେ ଧନର ଯେଉଁ ଆଧିପତ୍ୟ ରହିଛି ତା ବଦଳରେ ଧନ ଶ୍ରମିକର ଅଧୀନ ହେବା ଦେଖିବାକୁ ଚାହୁଁ ।

'ସେବା ଓ କ୍ଷମତା' (ଏ ବିଷୟରେ ବିଶେଷ ଲେଖା, ମୁଖ୍ୟତଃ କର୍ମୀଙ୍କ ପାଇଁ ଉଦ୍ଦିଷ୍ଟ । ବର୍ଧାରୁ ୭-୧-୧୯୪୮ରେ 'ଗ୍ରାମସେବକ'କୁ ପଠାଯାଇଥିଲା ।)

"କର୍ମୀ ଗାଁରେ କାମ କରୁ କରୁ ନାନା ରକମର ବାଧାବିଘ୍ନ ଆସି ପହଞ୍ଚିଯାଏ । ନିଜର ବୁଦ୍ଧିବଳ ଖଟେଇ, ଗାଁ ଲୋକଙ୍କୁ ସୁଗଠିତ କରି, ସେସବୁକୁ ଏଡ଼ାଇବାକୁ ଚେଷ୍ଟା କରୁଥାଏ ।

ଲୋକଙ୍କର କୁ ଅଭ୍ୟାସ, ଅଜ୍ଞାନ, କୁସଂସ୍କାର, ଏସବୁ ମଧ୍ୟ ଏକ ପ୍ରକାର ବାଧାବିଘ୍ନ । ଏସବୁ ଏଡ଼ି ଚଳିବାକୁ ଲୋକଙ୍କୁ ପ୍ରକୃତ ଲୋକଶିକ୍ଷା ଦେବାକୁ ପଡ଼ୁଥାଏ ।

ନୈସର୍ଗିକ ବିପଦ ପାଇଁ ଲୋକଙ୍କୁ ଆଳସ୍ୟ ଛାଡ଼ି ଅଧିକା କାମ କରିବାକୁ ଶିଖେଇବାକୁ ପଡ଼ୁଥାଏ ।

ଗାଁରେ ଶୋଷକର ବା ମୂର୍ଖ ସାହୁପଣ୍ଡାଙ୍କର ଅନ୍ୟାୟର ପ୍ରତିରୋଧ କରିବା ପାଇଁ ସତ୍ୟାଗ୍ରହ ଶିଖେଇବାକୁ ପଡ଼ୁଥାଏ ।

ଏସବୁ କାମ କରେଇନେବା ପାଇଁ ଲୋକଙ୍କ ସେବା କରି ତାଙ୍କର ମନ ଜିଣିବା ଦରକାର ହୋଇଥାଏ, ନିଜ ଉପରେ ଲୋକଙ୍କର ବିଶ୍ୱାସକୁ ଦୃଢ଼ କରିବାକୁ ହୋଇଥାଏ ।

ଅବଶ୍ୟ ନିଜର ବୁଦ୍ଧିକୁ ଦୃଢ଼ ଓ ସନ୍ତୁଳିତ ରଖି ଲୋକଙ୍କୁ ଠିକ୍ ବାଟ ଦେଖାଇବା ଦରକାର ।

ଏ କାମ କଠିନ କାମ, ସମୟ ସାପେକ୍ଷ, ହଠାତ୍ ଫଳ ମିଳି ନ ଥାଏ କିମ୍ବା ଆଖିକୁ ଦେଖାଯାଇ ନ ଥାଏ ।...

ବାହାରର ଶକ୍ତିର ଆଶ୍ରୟ ସତ୍ୟାଗ୍ରହୀର ନିଜ ଶକ୍ତିକୁ କମେଇଦିଏ । ସେ ତ ଲୋକମତକୁ ନିଜ ଆଡ଼କୁ ଟାଣିବା ପାଇଁ ନିଜେ ସତ୍ ବାଟରେ ଚାଲି କଷ୍ଟ ସହି ଚାଲିଥିବ; ତାହା ହିଁ ଶ୍ରେଷ୍ଠ ପନ୍ଥା ।

ଆଇନ ସାହାଯ୍ୟରେ (କର୍ମୀ) ଲୋକଙ୍କର କିଛି କରେଇପାରେ ନାହିଁ, ଅନ୍ୟାୟକୁ ଦୂର କରିପାରେ ନାହିଁ, ଏଣେ ଲୋକଶକ୍ତି ଆଇନକୁ ଅନେଇ ବସି ଦୁର୍ବଳ ହୋଇପଡ଼େ, ଲୋକଙ୍କ ବିଶ୍ୱାସ ସେବକ ଉପରୁ ତୁଟିଯାଏ ।

ଶାସନର ଦୃଢ଼ତା ଦୃଢ଼ ରଚନା ଉପରେ ନିର୍ଭର କରେ । ଯେଉଁ ରଚନାରେ ଶାସନ ଦୃଢ଼ ହେବ, ସେଥିରେ ଦୃଢ଼ ଭାବେ ଲାଗିବା ଦରକାର ।”

ସେହି ଲେଖାଟିରେ ଆଦିବାସୀଙ୍କ ବିଷୟରେ ଲେଖିଛନ୍ତି—

“ଆଜି ଆଦିବାସୀଙ୍କ କଥା ମନରେ ଯଦି ଉଠୁଛି, ତାହା ତାତ୍କାଳିକ ସମସ୍ୟା ସମାଧାନ ପାଇଁ ଉଠୁଥିବାର ଦେଖାଯାଉଛି । ପ୍ରଦେଶ ପ୍ରଦେଶ ଭିତରେ ସୀମା ନିର୍ଦ୍ଧାରଣ ହେବ, ସରହଦ୍ ନେଇ ଟଣାଓଟରାରେ ଆଦିବାସୀଙ୍କ କଥା ମନେପକାଇ ଲାଭ କ'ଣ ? ପ୍ରଦେଶକୁ ଖଣ୍ଡେ ଚାଲିଯିବ, ଗଡ଼ଜାତଟା ଭାରତ ଶାସନକୁ ଚାଲିଯିବ, ସେଥିପାଇଁ ଆଦିବାସୀଙ୍କୁ ମତେଇ ଗୋଳମାଳ କରେଇବା ଯେମିତି ଗର୍ହିତ କାମ, ସେମିତି ଦୃଢ଼ ଶାସନ ନାଁରେ ଆଦିବାସୀଙ୍କି ଗୁଳିଗୁଳାରେ ଚପେଇଦେବା ବା ଗାନ୍ଧୀର ଅହିଂସା କଥା କହି ଭୁଲେଇଦେବା ମଧ୍ୟ ଅଦୂରଦର୍ଶିତାର କାମ ।

ରଚନାତ୍ମକ କର୍ମୀ ଯଦି ଆଦିବାସୀ କଥାରେ ହାତ ଦେବାକୁ ଚାହାନ୍ତି ସେମାନଙ୍କର ତାକୁ ନିଜର କର୍ମକ୍ଷେତ୍ର କରି ଆଦରି ନେବା ଉଚିତ ଓ ଯୁଗଯୁଗର ଅନ୍ୟାୟର ପ୍ରତିକାର ଦିଗରେ ଲାଗିପଡ଼ି ରହିବା ଉଚିତ ।”

## ମୂଳିଆ ହେବା ଓ ମୂଳିଆଙ୍କ କାମ କରିବା

( ତାଙ୍କ ନିଜ କାମର ଅଭିଜ୍ଞତାରୁ ଲେଖିଛନ୍ତି । 'ଗ୍ରାମସେବକ' ଜାନୁଆରି ୧୯୪୮ )

“ମୂଳ କଥାଟା ମଧ୍ୟ ଠିକ ହୋଇଛି ଯେ ମୂଳିଆ ହେଲେ ଗ୍ରାମସେବକ ଅକ୍ଳେଶରେ ଲୋକଙ୍କର ନିଜର ହୋଇପାରିବ, ଲୋକଙ୍କ ମନ ପାଇବା ତ ଗୋଟିଏ କଥା, ଲୋକଙ୍କ ସଙ୍ଗେ ମିଶିବାର ଏଭଳି ସୁଯୋଗ ଅନ୍ୟ ଉପାୟରେ ମିଳିବ ନାହିଁ ।”

## କେନ୍ଦୁଝର କଥା (ଗ୍ରାମସେବକ, ଫେବୃଆରି ୧୯୪୮)

[ ସେ ତାଙ୍କ ଜୀବନରେ ପ୍ରଥମ ଥର ଜାନୁଆରି ୧୯୪୮ ରେ କେନ୍ଦୁଝର ଯାଇଥିଲେ । ସେଠୁ ଫେରି ଏ ଲେଖା । ]

"ଆଦିବାସୀ ପ୍ରଶ୍ନ ବଡ଼ ଜଟିଳ ହୋଇଛି ବୋଲି ଅନେକେ ମନେ କରୁଛନ୍ତି, ସେଥିରେ ଜଟିଳତା ନାହିଁ, ତାହା ଏକ ସରଳ ସତ୍ୟ । ବହୁକାଳରୁ ଏକ ପକ୍ଷାକୁ ଚାପି ରଖି ଅନ୍ୟ ପକ୍ଷ ଏ ଉଠିଯାଇ ଚାଲିଥାନ୍ତି, ସେ ସୌଭାଗ୍ୟ ସବୁଦିନେ ରହେ ନାହିଁ । ଚାପ ପଡ଼ିଥିବା ଲୋକେ ଚକ୍ଷୁ ଚେଇଁ ଉଠନ୍ତି, ହଲଚଲ ହେଲାକ୍ଷଣି ଉପରେ ମାଡ଼ିବସିଥିବାଙ୍କ ଆସନ ଟଳମଳ ହୁଏ ।...

ଏବେ ଦୁଇଟି ଚାପରେ ଆଦିବାସୀମାନେ ପେଷି ହୋଇ ପଡ଼ି ରହିଥିଲେ, ଏକ ବ୍ରିଟିଶ ଚାପ, ତାପରେ ଗଡ଼ଜାତ ଶାସକ ତଥା ଶାସକଙ୍କ ସହାୟକ ଉଚ୍ଚ-ଶ୍ରେଣୀର ଚାପ । ବ୍ରିଟିଶ ଚାପ ଯିବା ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କ କଳ୍ପନା ବା ଭବିଷ୍ୟତ ବାଣୀ ସତ୍ୟ ହେଲା । ରାଜସତ୍ତାଧାରୀ ଶାସକମାନଙ୍କୁ ଆଉ ଶୃଙ୍ଖଳ ନ ମିଳିବାରୁ ସୁବୁଦ୍ଧି ଦଶିବ, ସେ ମଧ୍ୟ ନିଜର ଚାପ ଛାଡ଼ିଦେଇ ଆଡ଼େଇ ହୋଇଯିବେ । ବର୍ତ୍ତମାନ ଯେଉଁ 'ଉଚ୍ଚବର୍ଣ୍ଣ' ସମାଜ ଚାପ ଦେଇ ବସିଛି ତାହା ତଳି କରିବା ବେଳ ଆସି ନାହିଁ କି ? ଏଥିରେ ଜଟିଳତା କ'ଣ ?

ବାଧହୋଇ ଯେ ଚାଲିଏ ବୋଝ ବୋହୁଥାଏ ସେଥିରୁ ଥୋକା ଖସିଲାକ୍ଷଣି ସେ ଲୁଚିପାରେ ଓ ସବୁତକ ପକେଇଦେବାକୁ ଚେଷ୍ଟା କରେ ।"

'ଗଠନମୂଳକ କାର୍ଯ୍ୟର ସୁଯୋଗ' (ଗ୍ରାମସେବକ, ଅପ୍ରେଲ ୧୯୪୮)

"...ଯେଉଁମାନେ କଂଗ୍ରେସ ଅଧିକାରୀ ହେବେ ସେମାନଙ୍କୁ ମଦ ଯେପରି ଛାଡ଼ିବାକୁ ହେବ, ମିଲ୍ ଲୁଗାକୁ ମଧ୍ୟ ସେହିପରି ଛାଡ଼ିବାକୁ ହେବ । ମନେ ରଖିବାକୁ ହେବ ସମସ୍ତେ ଗଠନମୂଳକ କାମରେ ସହଯୋଗ କରୁଛନ୍ତି ସତ, ମାତ୍ର ତାର ମୂଳପିଣ୍ଡକୁ ଠିକ୍ ରଖୁଛନ୍ତି କି ନାହିଁ, ତାର ଆଧାର ସତ୍ୟ ଓ ଅହିଂସାକୁ ଜୀବନ୍ତ ରଖୁଛନ୍ତି କି ନାହିଁ ।..."

'କରିବା କ'ଣ ?' (ଗ୍ରାମସେବକ, ଡିସେମ୍ବର ୧୯୪୮ । ଭଦ୍ରଖରେ ଷାଣ୍ମାସିକ କର୍ମୀ ସମ୍ମିଳନୀରେ ପ୍ରଦତ୍ତ ଭାଷଣରୁ)

"ବଡ଼ ବଡ଼ କଥା ଆମେ ବହୁତ ଶୁଣୁଛୁ । ଦେଶ ବିଦେଶରେ ଆମର ବଡ଼ ବଡ଼ ଲୋକେ ଯାଇ ଗାନ୍ଧୀ ଟେକ ଖୁବ୍ ମୁହଁରେ ରଖୁଛନ୍ତି, 'ଆମର ପିତା' 'ଆମର ଗୁରୁ' ଇତ୍ୟାଦି କଥା କହୁଛନ୍ତି । ସେ ଯେ ଦୀପଟି ଧରି ଜୀବନ ଶେଷ କଲେ, ସେ ଦୀପଶିଖା ପାଇଁ ଆମେ ବ୍ୟାକୁଳ ନା ବିଜୁଳି ଚମକକୁ ଅନେଇ ବସୁଛୁ ?

ଚନ୍ଦା ରାଜ୍ୟରେ ଦଖଲ ଦାନ ଆସିଲାଣି । ଲୋକଙ୍କ ଚନ୍ଦାକୁ ଜୋର କରି ନେବାର ବ୍ୟବସ୍ଥା ଚାଲିଛି । ଜନସମୂହକୁ ବାଧ୍ୟ କରି ଏକ ବାଟେ ଚନ୍ଦା କରିବାକୁ କଳବଳ କୌଶଳ ସବୁ ପ୍ରୟୋଗ କରାଯାଉଛି, ଯୁଆ ସାଙ୍ଗକୁ ଆମେ ବି ଗ୍ରେରକୁ ମାହାତ୍ମ୍ୟ ଦେବାକୁ ଚନ୍ଦା ରାଜ୍ୟରେ ପଦଗ୍ରହ କରୁଛୁ, ବହୁତ ଚନ୍ଦା ବହୁତ ବର୍ଷର

ମୁଣ୍ଡରେ ପୂରାଉଛନ୍ତି, କିନ୍ତୁ କାହାରିକି ସମ୍ଭାଳି ରଖିପାରୁ ନାହୁଁ, ଏସବୁ କଥା ଆଲୋଚନା କରିବେ ।"

**ଖାଦୀବୁଣା** (ଉକ୍ତ ସମ୍ମିଳନୀରେ ପ୍ରଦତ୍ତ ଆଉ ଗୋଟିଏ ଭାଷଣରୁ ଉଦ୍ଧୃତାଂଶ)

"ଖଦଡ଼ ପଛରେ ଏକ ସ୍ୱତନ୍ତ୍ର ବିଚାର, ଏକ ସ୍ୱତନ୍ତ୍ର ଅର୍ଥନୀତି, ଏକ ସୁନ୍ଦର ଜୀବନ ଦର୍ଶନ, ଏବଂ ତଦନୁଯାୟୀ ଏକ ସ୍ୱତନ୍ତ୍ର ବ୍ୟବସ୍ଥା ରହିଛି, ଏକଥା ଆମେ ପାସୋରି ପକାଇଥାଉଁ ।"

**ଗରିବ ହାତଫେର ଚୋଲଡ଼ା** (ଗ୍ରାମସେବକ, ଜାନୁଆରି ୧୯୪୯)

"...ଆମେ ଯାହା କରିବା ତାର ଫଳ ସମାଜ ଉପରେ କ'ଣ ହେବ ତାହା ବିଚାରିବା ଉଚିତ । ଆମ କାମରେ ଅନ୍ୟମାନେ ସୁଖଦୁଃଖ ଭୋଗିବେ ଏତିକି ଯଦି ବିଚାରନ୍ତେ ସମାଜର ଚେହେରା ବଦଳି ଯାଆନ୍ତା । ସମାଜରେ ମିଳିମିଶି ଆମକୁ ରହିବାକୁ ହେବ । ସବୁ କ୍ଷେତ୍ରରେ ଉତ୍ପନ୍ନ ବଢ଼ାଇବାକୁ ହେବ । ସ୍ୱାବଲମ୍ବନ ଦୃଷ୍ଟି ନ ରହିଲେ ସୂତାକଟା ତିଷ୍ଠିବ ନାହିଁ । ବିଡ଼ି ବଳିଲେ ତ ବେଶୀ ପଇସା ମିଳିବ, ରେଶମର ତିଆରି କଲେ ତ ଆହୁରି ମିଳିବ, ସୂତାକଟାରେ ଝଞ୍ଜଟ ତୁଳନାରେ ଆୟ ବହୁତ କମ୍ । ବିଶେଷ କରି ଆଜିକାଲିକାର ପଇସା ସାଉଁଟା ଯୁଗରେ ।...

ସ୍ୱାବଲମ୍ବନ ଦୃଷ୍ଟି ନ ରହିଲେ କଳାପୋତେଇ କମିବ ନାହିଁ । ତାହାଛଡ଼ା ବି ସ୍ୱାବଲମ୍ବନ ଦୃଷ୍ଟି ନ ବଢ଼ିଲେ, ଆଜି ଗରିବ ଯେ ଉତ୍ପନ୍ନକାରୀ ଅଣ୍ଟାରୁ ଯାଇ ସହରୀ ପାଠୁଆ ଓ ଧନୀଙ୍କ ପକେଟରେ ରହିଛି, ତାହା ପୁଣି ସହଜରେ ଫେରି ଆସିବ ନାହିଁ ।

**ତାଙ୍କ ନିଜ ପିଲାଙ୍କ ଶିକ୍ଷା** (ଗ୍ରାମସେବକ, ଫେବୃଆରି ୧୯୪୯)

[ ୧୯୪୯ ଜାନୁଆରୀରେ ବରୀ-ରାମଚନ୍ଦ୍ରପୁରରେ ମୌଳିକ ଶିକ୍ଷା ଶିବିରରେ ସେ ଗୋଟିଏ ବକ୍ତୃତା ଦେଇଥିଲେ, ତହିଁରୁ ଉଦ୍ଧୃତ । ]

"କେହି ମତେ ପଚାରିଛନ୍ତି ମୋର ପିଲାମାନଙ୍କୁ ସ୍କୁଲ କଲେଜରେ ନ ପଢ଼ାଇ ଶିକ୍ଷା କେମିତି ଦେଇପାରିଲି ।...ପ୍ରଚଳିତ ଶିକ୍ଷାପଦ୍ଧତି ଖରାପ, ତେଣୁ ତାକୁ ବର୍ଜନ କରିଥିଲୁଁ, ପୂରା ଭଲଟା ମିଳୁ ନାହିଁ ଅଧା ଭଲରେ ଚଳେଇ ଦେବା, ନାହିଁ ମାମୁଁଠୁଁ କଣାମାମୁଁ ଭଲ, ପିଲାଙ୍କ ଶିକ୍ଷା ସମ୍ବନ୍ଧରେ ଏ ନୀତି ମତେ ଭୟାନକ ଲାଗେ । ମନ୍ଦ ଶିକ୍ଷା ବର୍ଜନୀୟ, ତା ବଦଳାଇ ଭଲ ଶିକ୍ଷା ନ ମିଳିଲେ ବି ଚିନ୍ତା ନାହିଁ ଏହି ନୀତିରେ ଚାଲିଥିଲୁଁ; ଅହିଂସା ବି ସେୟା ଶିଖାଏ, ଶୁଦ୍ଧ କରିବା ଉଦ୍ଦେଶ୍ୟରେ ସ୍ଥାନ ଶୂନ୍ୟ ରଖିଦେବାକୁ ପଡ଼ିଲେ ଭଗବାନ ନିଶ୍ଚୟ ସେ ସ୍ଥାନକୁ ଭଲ ଦ୍ୱାରା ପୂର୍ଣ୍ଣ କରିଦେବେ । ପିଲାଙ୍କ ବୁଦ୍ଧିକୁ ବା ହୃଦୟକୁ କଳୁଷିତ କରିବୁ ନାହିଁ, ଏ ବିଶ୍ୱାସ ଥିଲା । ବୁଦ୍ଧି ବା ହୃଦୟ ଲୋପ ହୋଇଯିବ ନାହିଁ । ଖରାପ ପୂରାଇବାକୁ ନ ଦେଲେ, ଶୂନ୍ୟସ୍ଥାନ ନିଶ୍ଚୟ ଭଲ ଦ୍ୱାରା ପୂର୍ଣ୍ଣ ହେବ, ଭଗବାନ ସେତିକି ବିଶ୍ୱାସ ଦେଉଥିଲେ ।"

## ରାଷ୍ଟ୍ରଭାଷା ପ୍ରଚାର (ଗ୍ରାମସେବକ, ଜୁନ୍ ୧୯୪୯)

[ ମାଡ୍ରାସରେ 'ହିନ୍ଦୀ ପ୍ରଚାର ସଭା'ର 'ପ୍ରଚାରକ ତାଲିମ୍ କେନ୍ଦ୍ର'ରେ ୪-୫-୪୯ରେ ତାଙ୍କ ବକ୍ତୃତାରୁ— ]

(ତାମିଲ୍ ଦେଶରେ ହିନ୍ଦୀ-ବିରୋଧୀ ଆନ୍ଦୋଳନ ଆରମ୍ଭ ହୋଇଛି ବୋଲି ଉଲ୍ଲେଖ କରି ସେ କହିଲେ—) ''ଏସବୁ ଦେଖି ଶୁଣି ମୋର ମନେହୁଏ ରାଷ୍ଟ୍ରଭାଷା ପ୍ରଚାରକଙ୍କର ଦୁଇଟି କଥା ମନେରଖିବା ଆବଶ୍ୟକ । ଏକ, ଯେଉଁ ରାଷ୍ଟ୍ରଭାଷା ସୃଷ୍ଟି କରିବାକୁ ହେବ ତାହା—ଯେଉଁଥିପାଇଁ ଉଦ୍ୟମ ଦରକାର ।

ରାଷ୍ଟ୍ରଭାଷା ପ୍ରଚାର ଗାନ୍ଧିଜୀଙ୍କର ଗଠନମୂଳକ କାମର ଏକ ଅଙ୍ଗ ଏବଂ ତାହାର ବିକାଶ ଅନ୍ୟସବୁ ଅଙ୍ଗଗୁଡ଼ିକର ବିକାଶ ସଙ୍ଗେ ଜଡ଼ିତ । ରାଷ୍ଟ୍ରଭାଷା ପ୍ରଚାରକ-ମାନଙ୍କର ଜନତା ମନରେ ରଚନାତ୍ମକ କାମ ପ୍ରତି ଆଗ୍ରହ ସୃଷ୍ଟି କରିବା ଆବଶ୍ୟକ । ରଚନାତ୍ମକ କାମ ଏକ ପୂର୍ଣ୍ଣ ଚକ୍ର, ତାହାର ସବୁ ବିଭାଗକୁ ନ ଧରିଲେ କାମ ଆଗେଇବ ନାହିଁ । ପୁଣି ତା ପଛରେ ଯେ ଜୀବନଧାରା ଅଛି, ତାହାର ଟିକିଏ ସୁଗନ୍ଧ ଲୋକେ ନ ପାଇଲେ ସେଥିପ୍ରତି ଆକୃଷ୍ଟ ହେବେ ନାହିଁ । ତେଣୁ ରାଷ୍ଟ୍ରଭାଷା ପ୍ରଚାରକ ନିଜ ଜୀବନରେ ସେ ସୁଗନ୍ଧ ବିତରଣ କରିବାଭଳି ନିଜ ବ୍ୟକ୍ତିତ୍ୱକୁ ଗଢ଼ିବାକୁ ଉଦ୍ୟମ କରିବେ ।''

## ପଇସା ଅର୍ଥନୀତି ଓ ଆଦିବାସୀ

( ଗ୍ରାମସେବକ, ୧୯୪୯, ସେପ୍ଟେମ୍ବର, ଗାନ୍ଧୀ-ଜୟନ୍ତୀ ସଂଖ୍ୟାରେ ପ୍ରକାଶିତ 'ଟଙ୍କାର ବ୍ୟବହାର' ବୋଲି ଲେଖାରୁ ଉଦ୍ଧୃତାଂଶ । )

''ଟଙ୍କାକୁ ଶ୍ରେଷ୍ଠ ସମ୍ପତ୍ତି ବିଚାର କରିବା ଓ ତାର ଲୋଭକୁ ପ୍ରଶ୍ରୟ ଦେଇ ଟଙ୍କା କମେଇବା ପ୍ରବୃତ୍ତି ବଢ଼େଇବା କେତେଦୂର ଉଚିତ ? ତା ଉପରକୁ, ଟଙ୍କା କମେଇ, ନିଜର ପ୍ରକୃତ ଅଭାବ ଉପରେ ନାନା ପ୍ରକାର ଅଯଥା ଅଭାବ ସୃଷ୍ଟିରେ ପ୍ରଶ୍ରୟ ଦେବା କେତେଦୂର ଠିକ୍ ? ନଚେତ୍ ଆମେ ଯେପରି ଆତ୍ମାକୁ ବିକି ଟଙ୍କା ପଛରେ ଧାଇଁ ଆତ୍ମହତ୍ୟା କରିବାକୁ କୁଣ୍ଠିତ ହେଉ ନାହୁଁ ତାଙ୍କୁ (ଆଦିବାସୀଙ୍କୁ) ମଧ୍ୟ ନରକର ସେହିବାଟକୁ ଟାଣି ଆଣିବୁ ।''

## ଟଙ୍କା ଓ ଜନସେବା

(ଗ୍ରାମସେବକ, ୧୯୪୯, ସେପ୍ଟେମ୍ବର, ଗାନ୍ଧୀ ଜୟନ୍ତୀ ସଂଖ୍ୟା, 'ଏକ ପ୍ରଶ୍ନ' ଶୀର୍ଷକ ଲେଖାରୁ—)

''ମନେ ହୋଇଥାଏ, ଟଙ୍କା କମେଇଲେ ଓ ସେବା କାମକୁ ଟଙ୍କା ଦେଲେ ସେବା ହେବ, ଏ ମୋହରୁ ସାବଧାନ ରହିବା ଦରକାର ।...''

**ଟଙ୍କା ଲାଗି ଗୃଷ (ଗ୍ରାମସେବକ, ନଭେମ୍ବର ୧୯୪୯, "ମୌଳିକ ଭୁଲ୍" ଶୀର୍ଷକ ଲେଖାରୁ—)**

"ଗୃଷକୁ ଧରିବେ କ ନାହିଁ ସ୍ୱା କେହି ଶିକ୍ଷିତ ବା ବୁଦ୍ଧିଜୀବୀ ବିଗ୍ଚରଲକ୍ଷଣି ସେ ଆଗ ଗ୍ଚରୁଛି ଗୃଷରୁ ପଇସା କେତେ ମିଳିବ । ଯେଉଁ ପଇସା-ଅର୍ଥନୀତିର ଶିକ୍ଷା ଦିଆଯାଉଛି ତାହାଁ ମୁଣ୍ଡ ଭିତରେ ଅନର୍ଥ କଲାପରି ଲଗୁଛି । ପାଣି ପବନ ପରି ଖାଦ୍ୟ ଆବଶ୍ୟକ ଜିନିଷ ୯ବଂ ସେଥିପାଇଁ ଗୃଷ କରିବାକୁ ହିଁ ହେବ, ସେଥିରେ ଲାଭକ୍ଷତି କଥା ବିଗ୍ଚରିବାର ନୁହେଁ, ଏପରି ଗୋଟିଏ ଚିନ୍ତାଧାରା ଦରକାର ।"

**ଟଙ୍କା ଓ ଗାନ୍ଧୀ କାମ**

(ଗ୍ରାମସେବକ, ନଭେମ୍ବର ୧୯୪୯, 'ଆସାମ କର୍ମୀଙ୍କ ପ୍ରତି' ଶୀର୍ଷକ ଲେଖାରୁ—)

"ଟଙ୍କା ପଇସାରେ କାଳକାଳକୁ ନିର୍ଭରିନ୍ତ ହୋଇଗଲେ ମହାନ୍ତ ପାଲଟି ଯିବାର ଆଶଙ୍କା ଅଛି । ଲୋକମତ ଉପରେ ପ୍ରତିଷ୍ଠିତ ହୋଇ ରହିଥିଲେ ଗାନ୍ଧୀ କାମ ଠିକ୍ ଗ୍ଚଲେ । ଟଙ୍କା ପଇସା ହୋଇଗଲେ ଆଉ ଲୋକମତକୁ ଅନେଇବାକୁ ମନହୁଏ ନାହିଁ ।"

**କମ୍ୟୁନିଷ୍ଟବାଦର ବିରୋଧର ଉପାୟ (ସେହି ଲେଖାରୁ)**

"ଆଜି ଭାରତରେ କମ୍ୟୁନିଷ୍ଟବାଦର ପ୍ରଗ୍ଚର ଓ ପ୍ରସାର ଆଇନ ବନ୍ଧୁକ ବା ଦମନ ନୀତି ଦ୍ୱାରା ବନ୍ଦ ହୋଇପାରିବ ନାହିଁ । ଯଦି ତାର କେହି ପ୍ରକୃତ ବିରୋଧ କରିପାରେ ତାହା ହେଉଛି ଭାରତରେ ଆଧ୍ୟାତ୍ମିକ ସଂସ୍କୃତି ।

**ଛାତ୍ରଙ୍କୁ ଉପଦେଶ**

(ଗ୍ରାମସେବକ, ସେପ୍ଟେମ୍ବର ୧୯୪୯, ଗାନ୍ଧୀ ଜୟନ୍ତୀ ସଂଖ୍ୟାରେ ପ୍ରକାଶିତ 'ଏକ ପ୍ରଶ୍ନ' ଶୀର୍ଷକ ଲେଖାରୁ ଉଦ୍ଧୃତାଂଶ । )

"ଅନେକ ଯୁବକ ଯୁବତୀ ବିଶେଷତଃ ସ୍କୁଲ କଲେଜର ଛାତ୍ରମାନେ ନାନା ରକମର ପ୍ରଶ୍ନ ନେଇ ମୋ ସଙ୍ଗେ ଦେଖା ସାକ୍ଷାତ୍ କରିଥାନ୍ତି ବା ପତ୍ର ବ୍ୟବହାର କରିଥାନ୍ତି ।"

(ସେମାନଙ୍କର ଗୋଟିଏ ସାଧାରଣ ପ୍ରଶ୍ନ)

"ମୁଁ ପାଠ ପଢ଼ିବାକୁ ଗ୍ଚହେଁ, ପାଠ ଶେଷରେ ଦେଶସେବା କରିବାକୁ ଗ୍ଚହେଁ । ପାଠ ଭିତରେ ମୁଁ କଣ କପରି କଲେ ମୋର ଏ ସେବା ପ୍ରବୃତ୍ତି ବଜାୟ ରହିବ ଏବଂ ପଢ଼ା ଶେଷରେ ତାହା ଉଭେଇ ଯାଇ ନ ଥିବ ?"

(ସେ ପ୍ରଶ୍ନଟିର ଉତ୍ତରରେ ୬ ଗୋପବନ୍ଧୁ ଚୌଧୁରୀ ଲେଖିଛନ୍ତି—) କୌଣସି ଆଦର୍ଶରେ ଗ୍ଚଲୁଥିଲାବେଳେ ମନକୁ ସେ ଆଡ଼କୁ ରଖିବା ପାଇଁ ଅନ୍ୟ ବିଷୟ

ମଧ୍ୟରେ ଦୁଇଟି ବେଶୀ ଦରକାର । ଏକ, ସେ ଆଦର୍ଶ ସମ୍ବନ୍ଧରେ ଅଧିକରୁ ଅଧିକ ପୂର୍ଣ୍ଣ ଜ୍ଞାନ । ତାହା ସ୍ୱାଧ୍ୟାୟ ବା ଆଲୋଚନା ଦ୍ୱାରା ସମ୍ଭବ । ଦୁଇରେ, ସେ ଆଦର୍ଶ ଦିଗରେ ନିତ୍ୟ କିଛି ଆଗଉଥିବ, ସେଥିପାଇଁ ଖୁବ୍ କମ୍‌ରେ ସେହି ଦିଗରେ କିଛି ନା କିଛି କାମ କରିବା ଆବଶ୍ୟକ ।

ଏହିପରି ଚିନ୍ତା କଲେ ଦେଖାଯିବ ଯେ ସେବାଭାବ ବଜାୟ ରଖିବାରେ ଦୁଇଟି କଥା ବିଶେଷ ଦରକାର । ସେମାନେ ପ୍ରତ୍ୟହ କିଛି ସମୟ ସେହି ଆଦର୍ଶ ସମ୍ବନ୍ଧରେ ପଢ଼ାପଢ଼ି କରି ଚର୍ଚ୍ଚା କରିବେ, ଆଦର୍ଶକୁ ମନରେ ଅଧିକ ସ୍ପଷ୍ଟ ରୂପେ ଜମେଇ ଦେଉଥିବେ । ପୁଣି, ସେମାନେ ପ୍ରତ୍ୟହ କିଛି ସମୟ ସେ ଦିଗରେ କାମ କରିବେ । ଏ କାମ ଜୀବନଦର୍ଶନ ଅନୁସାରେ ନାନା ପ୍ରକାରର ହୋଇପାରେ । ସତ୍ୟ ଓ ଅହିଂସାର ଆଦର୍ଶରେ, ଦରିଦ୍ରରୁ ଦରିଦ୍ରତମଙ୍କ ସଙ୍ଗେ ଆମେ କିପରି ଏକରସ ହୋଇପାରିବା ସେହିପରି କିଛି କାମ କରିବା ଦରକାର । ଶ୍ରମମର୍ଯ୍ୟାଦା ପ୍ରତିଷ୍ଠା କରିବା ଏ ଦିଗରେ ଏକ ଭଲ କାମ । ସେଥିପାଇଁ ଅରଟକୁ ଦରିଦ୍ର ନାରାୟଣ ସେବାର ପ୍ରତୀକ ରୂପେ ନିତ୍ୟ ଚଲାଇ, ଉଦ୍ଦେଶ୍ୟ ମନେ କରାଯାଇପାରେ । ତାହା ନ ହେଲେ ଦରିଦ୍ର, ଅବହେଳିତ, ପୀଡ଼ିତ ଓ ନିଷ୍ପୀଡ଼ିତଙ୍କର ସେବା କରାଯାଇପାରେ । ଏହି ପ୍ରତ୍ୟକ୍ଷ ସେବା ଆବଶ୍ୟକ । ଏଠି ଗୋଟିଏ ଖାଲ ଅଛି । ମନେହୋଇଥାଏ, ଟଙ୍କା କମେଇଲେ ଓ ସେବା କାମକୁ ଟଙ୍କା ଦେଲେ ସେବା ହେବ । ଏ ମୋହରୁ ସାବଧାନ ରହି ବା ଦରକାର । ଲକ୍ଷ୍ୟହୀନ ଜ୍ଞାନ ସଞ୍ଚୟର ମୂଲ୍ୟ ନାହିଁ ।"

ଛୋଟ ଘଟଣା ଓ ବଡ଼ ପରିସ୍ଥିତି (ଗ୍ରାମସେବକ, ମାର୍ଚ୍ଚ ୧୯୫୧)

[ ୧୯୫୦ରେ ବ୍ରାହ୍ମଣୀ ନଈରେ ପ୍ରବଳ ବଢ଼ି ହୋଇଥିଲା, ତେଣୁ ଯାଜପୁର ସବ୍‌ଡିଭିଜନର ଧୋଷ୍ଠା ଅଞ୍ଚଳରେ ୧୯୫୧ବେଳକୁ ଧାନ ଚାଉଳ କେଉଁଠି କିଣିବାକୁ ବି ମିଳୁ ନ ଥାଏ, ତେଣେ ସରକାରଙ୍କ 'କଣ୍ଟ୍ରୋଲ' ନୀତି ଅନୁସାରେ ଗୋଟିଏ ସବ୍‌ଡିଭିଜନରୁ ତା ବାହାରକୁ ଖାଦ୍ୟଶସ୍ୟ ପଠାଇବା ମନା କରାଯାଇଥାଏ, ସେ ଧୋଷ୍ଠା ଅଞ୍ଚଳକୁ ଲାଗିଥିବା କଟକ ଜିଲାର କେନ୍ଦ୍ରାପଡ଼ା ସବ୍‌ଡିଭିଜନରୁ ଅବା ଆସି ପାରୁ ନ ଥାଆନ୍ତା, 'କଣ୍ଟ୍ରୋଲ' ଆଇନ ଅନୁସାରେ ତାହା ତ ମନା କରି ହୋଇଥିଲା । ଲୋକଙ୍କ ଡହଳବିକଳ ବଢ଼ିଲା, ୮ ଗୋପବାବୁ ଦେଖିଲେ ସରକାରଙ୍କ ଆଡ଼ୁ ପ୍ରତିକାର ବ୍ୟବସ୍ଥା ହେଉ ନାହିଁ । ସେ ଅତି ଦୁଃଖିତ ହୋଇ ଉତ୍ତ୍ୟକ୍ତ ହୋଇ ଖବରକାଗଜ-ମାନଙ୍କରେ ଲେଖା ଛପାଇଲେ, ତହିଁରେ ସରକାରଙ୍କୁ ସମାଲୋଚନା କରିଥିଲେ, ନିଜେ କଂଗ୍ରେସ ସରକାର ବିରୁଦ୍ଧରେ ଅସହଯୋଗ ଓ ସତ୍ୟାଗ୍ରହ କରିବେ ବୋଲି ଆଭାସ ଦେଲେ । ତେଣୁ ଗୃହିଆଡ଼େ ଚହଲ ପଡ଼ିଗଲା, ସରକାର ଶୀଘ୍ର ପ୍ରତିକାର ବ୍ୟବସ୍ଥା କଲେ । କିନ୍ତୁ ୮ ଗୋପବାବୁଙ୍କୁ ସେଥିପାଇଁ ସରକାରୀ ଅଧିକାରୀମାନେ

ତାଙ୍କର ସେ ଲେଖା ପାଇଁ ସମାଲୋଚନା କରିଥିଲେ । ତାହାର ଉତ୍ତରରେ ଏ ଚିଠିଲେଖା । ତହିଁରୁ ଉଦ୍ଧୃତାଂଶ—]

"...ମୁଁ ଯେ ଛୋଟିଆ କଥାରେ ବିବ୍ରତ ହୋଇ ବଡ଼ କଥାକୁ ନ ଭାବି ସରକାରଙ୍କୁ ସମାଲୋଚନା କରୁଛି ମୋର ସେହି ପ୍ରକୃତିଟା ଉଦ୍ଧୃତ ବାକ୍ୟାଂଶରେ ସମାଲୋଚିତ ହୋଇଛି । କିନ୍ତୁ କଣ କରାଯିବ, ଦଣ୍ଡିସ୍ତ ପ୍ରକୃତିରେ ଏହା ଦେଖା ଦେଇଥାଏ ଏବଂ 'ଟେକ୍ କେୟାର ଅଫ୍ ଦ ପେନ୍‌ସ୍ ଦ ପାଉଣ୍ଡ୍‌ସ୍ ଉଇଲ୍ ଟେକ୍ କେୟାର ଅଫ ଦେମ୍‌ସେଲ୍‌ଭସ୍—ଅଧଲା ପାହୁଲକୁ ନଜର ଦେଲେ ଟଙ୍କା ଆପଣା ମନକୁ ରହିଯିବ ?' ବୋଲି ଲୋକ ଏ ନୀତିକୁ ବଡ଼ ନୀତି ଭାବିଥାନ୍ତି, ତା ଉପରକୁ ବ୍ୟକ୍ତିଗତ ଭାବେ ମୁଁ ବ୍ୟକ୍ତିଗତ ଜୀବନଭାବେ ନିଜ ଜୀବନଟାକୁ ଏହି ଧାରଣାରେ ପକାଇ ନେଇ ଆସିଛି ।..."

**୧୯୫୧ରେ କଂଗ୍ରେସ ସରକାର ଓ କଂଗ୍ରେସକର୍ମୀଙ୍କ ବିଷୟରେ ତାଙ୍କ ଧାରଣା**

(ଗ୍ରାମସେବକ, ଅପ୍ରେଲ ୧୯୫୧, 'ହରିଜନ କାମ' ଶୀର୍ଷକ ପ୍ରବନ୍ଧରୁ ଉଦ୍ଧୃତାଂଶ ।)

"କଂଗ୍ରେସ କର୍ମୀମାନଙ୍କର ସେ ପୁରୁଣା ତପସ୍ୟା ବେଳର ତେଜ ନାହିଁ । ପ୍ରତିକ୍ରିୟା ସମସ୍ତଙ୍କୁ ଘୋଟିଛି । ସାଧାରଣ ଲୋକଙ୍କଠୁ ବେଶୀ ତେଜରେ ଯେ କଂଗ୍ରେସ ଲୋକେ ସଂସ୍କାର ବାଟରେ ମାଡ଼ି ଚାଲିଥିଲେ ତାଙ୍କର ଗୋଡ଼ ଥରେ ଖସିବାରୁ, ପଛକୁ ଖସିବା ବେଳକୁ ବେଶୀ ଜୋରରେ ତଳକୁ ଖସୁଛି । (ହିନ୍ଦୁ ସମାଜରେ) ସାଧାରଣ ଲୋକ ବା ଶିକ୍ଷିତ ସମାଜ ଭିତରୁ ତ ଏ କୁସଂସ୍କାର ('ହରିଜନ' ସ୍ଥାନ, ଅସ୍ପୃଶ୍ୟ ବୋଲି ମଣିବା କୁସଂସ୍କାର) ଯାଇ ନ ଥିଲା,—ଫଳରେ ଏ ବାତାବରଣର ଗ୍ରୂପ ଯେ ସରକାରୀ ମହଲର ଚାରିଆଡ଼େ ପଡ଼ିଥିବ ସେତିକ କର୍ମୀମାନେ ମନେରଖୁ ନାହାନ୍ତି । ତେଣୁ ପୁରାପୂରି ଆଶା ସରକାର ବା ସରକାରୀ ଅନୁଷ୍ଠାନ ଉପରେ ନ ରଖି ନିଜ ବଳରେ ପ୍ରତିରୋଧର ପନ୍ଥା ଭଲ । ସେମିତି, କଚେରୀରେ ନେଇ ଗରିବ ହରିଜନମାନଙ୍କୁ ପକେଇଦେବା ମଧ୍ୟ ଠିକ୍ ନୁହେଁ ବୋଲି ଲାଗେ । ଦଳିତ ଅଳ୍ପସଂଖ୍ୟକଙ୍କ ମଧ୍ୟରେ ଅହିଂସ ପ୍ରତିରୋଧ ଶକ୍ତି ଜଗେଇବା ପାଇଁ ସେହିପରି ନିଜେ ଅଗ୍ନି ପରୀକ୍ଷାରେ ପଡ଼ିବାର ଆଗ୍ରହ ସେବକଠାରେ ଥିବା ଉଚିତ ।"

**ସତ୍ୟାଗ୍ରହ ପନ୍ଥା** (ଗ୍ରାମସେବକ, ଅପ୍ରେଲ ୧୯୫୧)

"ଆଜି ଉପରୁ ତଳଯାଏ ଶାସକ ମହଲରୁ ଉପଦେଶ ଶୁଣୁଛୁ ଅସହିଷ୍ଣୁତା ଛାଡ଼, ନୈରାଶ୍ୟ ଛାଡ଼ । କିନ୍ତୁ ଖାଲି କଥାରେ ତାହା ପାଲଟିବ କି ? ଜନତା ଭିତରେ ଆତ୍ମପ୍ରତ୍ୟୟ ଓ ଜାଗରଣ ଲୋଡ଼ା । ହିଂସାର ବିପ୍ଳବ ଛଡ଼ା ଅହିଂସକ ବାଟ ଅଛି

ସେତକ ବିଶ୍ୱାସ ହିଂସାପନ୍ଥୀ ବିପ୍ଳବୀର ମନରେ ଜନ୍ମିବା ଦରକାର । ଏବେ ତ ସତ୍ୟାଗ୍ରହର ତେଜ ଲିଭିଗଲା ପରି ଲାଗୁଛି ।

ପ୍ରତ୍ୟେକ ଅହିଂସାବାଦୀ ଏ ବିଷୟରେ ଚିନ୍ତା କରନ୍ତୁ ଏବଂ ସକ୍ରିୟ ଅହିଂସାର ପ୍ରୟୋଗ କିପରି ସାହାଯ୍ୟ କରିବ ତାର ବାଟ ଖୋଜନ୍ତୁ । ଏହା କେବଳ ଶାସନକଳକୁ ସୁଧାରିବା ପାଇଁ ନୁହେଁ, ଏହା ସମାଜକଳ ବିରୁଦ୍ଧରେ ପାରିବାରିକ ଜୀବନରେ ଯେଉଁଠି ଅଳ୍ପସଂଖ୍ୟକ ବହୁସଂଖ୍ୟକଙ୍କ ଦ୍ୱାରା ଉତ୍ପୀଡ଼ିତ କ୍ଷମତା ପ୍ରତିଷ୍ଠିତ ଦ୍ୱାରା ଦୁର୍ବଳର ନିର୍ଯ୍ୟାତନା, ସେଠାରେ ଏଭଳି ମାର୍ଗଦର୍ଶନ ପାଇଁ କ୍ଷେତ୍ର ରହିଛି ।

ଆତ୍ମଶୁଦ୍ଧି ଦରକାର, ନିଜେ କେଉଁଠାରେ ଶୋଷଣ ନିର୍ଯ୍ୟାତନରେ ସାହାଯ୍ୟ କରୁଛି ତାର ଯାଞ୍ଚ-ପଡ଼ତାଳ କରିନେବା ଏକାନ୍ତ ଆବଶ୍ୟକ । କାଞ୍ଚନମୁକ୍ତି ଓ ଶ୍ରମଯଜ୍ଞରେ ନିଜର ଗ୍ଲାନିକୁ ପୋଛି ପକାଇବା ଉଚିତ ।”

## ଜଣେ କର୍ମୀଙ୍କ ଚିତ୍ର—ଶ୍ରୀ ଫକିର ମିଶ୍ର

(ଗ୍ରାମସେବକ, ମେ’ ମାସ, ୧୯୫୧ ସଂଖ୍ୟା । ‘ଉତ୍କଳ ମୌଳିକ ଶିକ୍ଷା ପରିଷଦ’ ଶୀର୍ଷକ ଲେଖାରୁ ଉଦ୍ଧୃତାଂଶ ।)

“(ଉତ୍କଳ ମୌଳିକ ଶିକ୍ଷା ପରିଷଦର ଜଣେ ନୂଆ ଟ୍ରଷ୍ଟି) ଏକ, ଶ୍ରୀ ଫକୀର ମିଶ୍ର, ଜଣେ ପକ୍‌କା ଶାସନୀ ବ୍ରାହ୍ମଣ, ମାଟି ପରିଚାଟା ହେଜେଇଛନ୍ତି ଆଉ ଖୋଜୁନାହାନ୍ତି, ’୪୨ ପୂର୍ବରୁ କମ୍ୟୁନିଷ୍ଟ ଭାବନାରେ ଉଦ୍‌ବିକ୍ଷିପ୍ତ ଥିଲେ, ’୪୨ କାରାବାସରେ ମୌଳିକ ଶିକ୍ଷା ପ୍ରତି ଆକୃଷ୍ଟ ହୋଇ ଏବେ ଏବେ ନିଜର ପରିବାରକୁ ସ୍ୱତନ୍ତ୍ର ଅସ୍ତିତ୍ୱ ଲୋପ କରି ପରିବାର ସେବା ଓ ଜନସେବାର କେନ୍ଦ୍ରକୁ ଏକ କରିବାକୁ ଉଦ୍ୟତ । ଶେଷୋକ୍ତ କାମଟିର ଶ୍ରେୟଃ ଅଧିକ ତାଙ୍କର ସହଧର୍ମିଣୀ ଆୟୁଷ୍ମତୀ ଇନ୍ଦିରାର । ନିଜ ଝିଅଙ୍କୁ ମଣିଷ କରି ଶିଖିବା ସଙ୍ଗେ ସଙ୍ଗେ ଗାଁ ଝିଅଙ୍କୁ ଶିଖାଇବା କର୍ତ୍ତବ୍ୟ ବୁଦ୍ଧି ନିଜ ଘର ଭୁଲିବାକୁ ବସିଛି ।”

## ସରକାରୀ ଚାକିରିରେ ଦୁର୍ନୀତିଗ୍ରସ୍ତ କର୍ମଚାରୀଙ୍କ ପ୍ରବେଶ

(ଗ୍ରାମସେବକ, ମେ’ ମାସ, ୧୯୫୧, ‘ମୌଳିକ ଶିକ୍ଷା ପ୍ରତି ଆଗ୍ରହ’ ଶୀର୍ଷକ ତା ୫-୫-୫୧ରିଖର ଲେଖାରୁ ।)

“ଅତି ଖରାପ ଶ୍ରେଣୀର ବା କଦର୍ଯ୍ୟ ମନୋଭାବ ବା ଚରିତ୍ରର ଲୋକ କଲେବଲେ କୌଶଳେ ସରକାରୀ ଚାକିରିରେ ପଶି ସେଠି ଅବାଧରେ ଗାଡ଼ି ଚଳେଇ ଯାଉଛନ୍ତି ।...”

## ଗଣଆନ୍ଦୋଳନର ସ୍ୱପ୍ନ

(ଗ୍ରାମସେବକ, ୧୯୫୩ ଜାନୁଆରୀ ପ୍ରଥମ ସଂଖ୍ୟାରେ ‘ପଦଯାତ୍ରୀର ଅନୁଭୂତି’ ଶୀର୍ଷକ ଲେଖାରୁ ଉଦ୍ଧୃତାଂଶ—)

“(୧୯୫୬)ରେ ଚଉଦମାସବ୍ୟାପୀ ଦୀର୍ଘ ଓ ପ୍ରଥମ ଭୂଦାନ ଯଜ୍ଞ ପଦଯାତ୍ରା ବେଳେ) ଯେ ଦେଶରେ ଧର୍ମଭାବ ବୁଡ଼ି ନାହିଁ ଏବଂ ଭୂଦାନ ଏକ ଧର୍ମଭାବ ଜନତାଙ୍କୁ ସ୍ପର୍ଶ କରିଛି । ...ଆଜି ପବନକୁ ମୁହଁ କରି ଚାଲିବା ଦରକାର ପଡ଼ୁ ନାହିଁ, ବରଂ ଏକ ତୋଫାନ୍ ମତେ ଠେଲି ଠେଲି ନେଉଥିଲା ଭଳି ମୋତେ ବେଳେ ବେଳେ ମନେ ହେଉଥିଲା । ଗଣ ଆନ୍ଦୋଳନ ସ୍ୱୟଂ ପ୍ରସାରୀ ।...

ଆନ୍ଦୋଳନ ହେଲେ ଆନ୍ଦୋଳନର ସୂତ୍ର ନେତା ଯେତିକି ଧରେଇ ଦେଇଥାନ୍ତି, ତାଠାରୁ ଜନତା ଅଧିକ ନୂଆ ନୂଆ ସୂତ୍ର ବାହାର କରି ଆନ୍ଦୋଳନ ଚଳେଇ ନିଅନ୍ତି । ବିପ୍ଳବର ମନ୍ଥନ ଆରମ୍ଭ ହେଲେ ନୂଆ ନୂଆ କର୍ମୀ ବାହାରିଥାନ୍ତି ।”

**ପଇସାର ସୟତାନ ଚକ୍ର (ଗ୍ରାମସେବକ, ୧୯୫୭ ଫେବୃଆରି ୭ମ ସଂଖ୍ୟା ।)**

[ନୟାଗଡ଼ ସବ୍‌ଡିଭିଜନର ବଡ଼-ପାଣ୍ଡୁସର ଗାଁରେ ଭୂଦାନ-ଯଜ୍ଞ ସଭାରେ ତାଙ୍କ ବକ୍ତୃତାରୁ ଉଦ୍ଧୃତ ।]

“ଉପାସକମାନଙ୍କ ଧନ ଅହଙ୍କାର ମନ୍ଦିର ଚୂଳରେ ସୁନା କଳସ ଚଢ଼ାଇବାରେ ପ୍ରକାଶ ପାଇଛି । ମାତ୍ର ଦେବତା ପୂଜା ଭିତରେ ଅନାଥର କି ବ୍ୟାଧିତର ପଶୁଛି କି ନାହିଁ ସେଥିପ୍ରତି କାହାର ଦୃଷ୍ଟି ପଡ଼ୁ ନାହିଁ ।

ଆଜି ରାଷ୍ଟ୍ରର ଉପାସନା କ୍ଷେତ୍ରରେ କଣ୍ଟି ଡାକୁଆ ଏବଂ କଣ୍ଡୁରି ପଡ଼ୋ ଯେଉଁ ମନ୍ଦିର ଗଢ଼ି ଯାଇଛନ୍ତି ସେଥିପ୍ରତି କାହାର ଦୃଷ୍ଟି ନାହିଁ । ଉପାସକମାନେ ଆପଣା ଉପାସନାର ମୂଲ୍ୟ ଖୋଜିବାରେ ବ୍ୟସ୍ତ ।...

**ଅନ୍ୟାୟ ଦୁର୍ନୀତି ଦେଖିଲେ ଭଲଲୋକର ସ୍ୱଭାବ**

(ଗ୍ରାମସେବକ, ଜାନୁଆରି ୧୯୫୭, ଚତୁର୍ଥ ସଂଖ୍ୟା । ୨୯-୧୨-୧୯୫୬ ତାରିଖରେ ବଡ଼ଚଣା ଥାନାର କର୍ମୀମାନଙ୍କ ସଭାରେ ଭାଷଣରୁ ଉଦ୍ଧୃତ ।)

“ଭଲ ଲୋକ ଚୁପ୍ ହୋଇ ରହିପାରେ ନାହିଁ । ସେ ତା’ର ଚାରିପାଖର ଦୁର୍ନୀତିର ମଧ୍ୟ ବିରୋଧ କରେ ।”

**ପ୍ରଚଳିତ ‘ଗଣତନ୍ତ୍ର’ରେ ‘ଅଳ୍ପସଂଖ୍ୟକ’ଙ୍କ ଅବସ୍ଥା**

(ଗ୍ରାମସେବକ, ୧୯୫୭, ଜୁନ୍ ୭ ସଂଖ୍ୟାରେ ପ୍ରକାଶିତ ‘ଗଣତନ୍ତ୍ର ଓ ଲୋକଶକ୍ତି’ ଶୀର୍ଷକ ଲେଖାରୁ । ଦକ୍ଷିଣ ବାଞ୍ଛାରପୁରର ପୁଟୁଙ୍ଗା ଗାଁରେ ବକ୍ତୃତାରୁ ଉଦ୍ଧୃତ ।)

“...ଆମେ ଧୋଇବାବାଲା ଦୁଇପଣିଆ ବା ତା’ଠାରୁ କମ୍ ପଣିଆ ଅଂଶୀଦାର । ନଧୋଇବା ଲୋକେ ଚଉଦପଣିଆ ବା ତା’ଠାରୁ ବଡ଼ ସର୍ବେଦାର୍ । ସବୁଠାରେ ତାଙ୍କ ସଂଖ୍ୟା ବେଶୀ । ବେଶୀଙ୍କ ସୁବିଧା ପାଇଁ ତାଙ୍କୁ ବଞ୍ଚେଇବା ପାଇଁ ଏ ଧୋଇବା ରାଜ୍ୟକୁ

ଧୋପ୍ପା କରି ରଖାଯାଇଛି ବୋଲି କହନ୍ତି । ବୃକ୍ତରେ, ପ୍ରତନିଧି ସଂଖ୍ୟାରେ, ବାହାରେ ପାଟି କରୁଥିବା ପାଠୁଆ ଦଳଙ୍କ ଭିତରେ ନଧୋପ୍ପାବାଲା ବହୁତ ବେଶୀ । ତେଣୁ ଏ ଭୋଟ ଯୁଦ୍ଧରେ ତାଙ୍କ କଥା ହିଁ ରହିବ । ସେ ଦୟା ନ କଲେ ଧୋପ୍ପାଙ୍କ ପାଇଁ କିଛି ହୋଇପାରିବ ନାହିଁ । ତେଣୁ ଧୋପ୍ପାଙ୍କର ଦୁଃଖ ଯିବା ପାଇଁ ଚହ୍ନଦପଣିଆଙ୍କ ମତ ଆମ ସପକ୍ଷକୁ ଅଣାଇବା ଦରକାର । ତାଙ୍କ ମନରେ ନ୍ୟାୟ ଜାଗ୍ରତ ନ କରାଇ ପାରିଲେ, ସେମାନେ ଆମ ପାଇଁ ସହାନୁଭୂତି ନ ଦେଖାଇଲେ କେମିତି କଣ ହେବ ?···

ଯେଉଁ ଗଣତନ୍ତ୍ରରେ କ୍ଷମତାର ଅପବ୍ୟବହାର ବା ଅପବ୍ୟବହାରର ପ୍ରତିରୋଧ ବା ପ୍ରତିକାର କରିବାର ଶକ୍ତି ଲୋକଙ୍କର ନ ଥାଏ ତାକୁ ଜୀବନ୍ତ ଗଣତନ୍ତ୍ର କୁହାଯାଇ ନ ପାରେ ।''

'ଅହିଂସକ ବିପ୍ଳବ' (ଗ୍ରାମସେବକ, ୧୯୫୪ ଡିସେମ୍ବର, ସଂଖ୍ୟା ୫୨)

''···ଆଜିକାଲି ଶାସନର ନୀତି ହେଉଛି ସେଇଆ—ଅଧିକ ସଂଖ୍ୟକଙ୍କ କଥା ରହୁଛି । ବେଳେବେଳେ ତାହା ଜୁଲୁମ ଅତ୍ୟାଚାର ବି ହୋଇଯାଉଛି । ଯେଉଁ ଶାସନରେ ଅଳ୍ପସଂଖ୍ୟକଙ୍କ ପାଇଁ ବିଚାର ବ୍ୟବସ୍ଥା ନାହିଁ ସେ ଶାସନକୁ ସୁଶାସନ କାହିଁକି କହିବୁ ? ତାହା ତ ହିଂସା ଉପରେ ପ୍ରତିଷ୍ଠିତ ହେଲା ।''

'ସତର୍କବାଣୀ' (ଗ୍ରାମସେବକ, ଅକ୍ଟୋବର ୧୯୫୪, ସଂଖ୍ୟା ୪୨)

''ଭୂଦାନ କର୍ମୀମାନେ କୌଣସି ରାଜନୈତିକ ଦଳ ଆଡ଼କୁ ନ ଢଳି ନିରପେକ୍ଷ ରହିବାକୁ ଯେପରି ନ ଭୁଲନ୍ତି ।''

## ଆଉ ଚାରୋଟି ପୁସ୍ତକ

(ଏହି ପରିଚ୍ଛେଦରେ 'ଗ୍ରାମସେବକ' ପତ୍ରିକାରେ ୰ ଗୋପବନ୍ଧୁ ଚୌଧୁରୀଙ୍କ ଲେଖା ଆଲୋଚନା ପୂର୍ବରୁ ତାଙ୍କର ଅପ୍ରକାଶିତ ଆତ୍ମଜୀବନୀ ଓ ଡାଇରୀ ଓ ଛଅଟି ପ୍ରକାଶିତ ପୁସ୍ତକକୁ ମିଶାଇ ଯେଉଁ ୮ଟି ପୁସ୍ତକ କଥା ଆଲୋଚନା କରାଯାଇଛି ତାକୁ ଛାଡ଼ି ଆଉ ଚାରୋଟି ପୁସ୍ତକ ଅଛି । ଉଭୟେ ପ୍ରକାଶିତ, ପଦ୍ୟ ଓ କ୍ଷୁଦ୍ର ଚଟି ଚଟି ବହି । ସେ ବିଷୟରେ ତଳେ ଆଲୋଚନା କରା ହୋଇଛି ।

'ସ୍ଥିତପ୍ରଜ୍ଞର ଲକ୍ଷଣ' (୧୯୫୧ରେ ପ୍ରକାଶିତ)

ଏହା 'ଶ୍ରୀମଦ୍ ଭଗବତ୍ ଗୀତା'ର ଦ୍ୱିତୀୟ ଅଧ୍ୟାୟରୁ ୫୪ ଠାରୁ ୭୨ ଶ୍ଳୋକର ଓଡ଼ିଆ ଅନୁବାଦ । '୯୫୫ରେ ୰ ବିନୋବାଜୀ ତାଙ୍କ କୋରାପୁଟ ଗସ୍ତ ବେଳେ ଏ ଅନୁବାଦଟି ପ୍ରସ୍ତୁତ କରିବାକୁ ୰ ଗୋପବାବୁଙ୍କୁ ଅନୁରୋଧ କରିଥିଲେ ଓ ଅନୁବାଦଟିକୁ ସଂଶୋଧନ କରିଥିଲେ । ଗୀତାର ଓଡ଼ିଆ ଅନୁବାଦରୁ 'ସ୍ଥିତପ୍ରଜ୍ଞର

ଲକ୍ଷଣ’ ପ୍ରତ୍ୟହ ଆଶ୍ରମରେ ବୋଲା ଯାଉଥିଲା, ୧୯୪୫ରେ କଟକ ଜେଲରେ କାରାବାସ ବେଳେ ୰ ଆଚାର୍ଯ୍ୟ ହରିହର ଦାସ, ୰ ଗୋପବନ୍ଧୁ ଚୌଧୁରୀ, ୰ ଭାଗୀରଥୀ ମହାପାତ୍ର ଓ ୰ ଲୋକନାଥ ମିଶ୍ର ମିଶି ସମୁଦାୟ ଭଗବଦ୍ ଗୀତାକୁ ଓଡ଼ିଆରେ ଅନୁବାଦ କରିଥିଲେ ଓ ତାହା ହିଁ ଆଶ୍ରମମାନଙ୍କରେ ବୋଲା ହେଉଥିଲା, କିନ୍ତୁ ୰ ବିନୋବାଜୀ ଚାହିଁଲେ ଯେ ଅନୁବାଦଟି ଖୁବ୍ ସରଳ ହେବା ଦରକାର, କେହିଁଠି ହେଲେ ଯେପରି କ୍ଲିଷ୍ଟ ନ ଲାଗେ । ଅନୁବାଦଟି ସେହିପରି ହୋଇଛି ଓ ଏଥିରେ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତର ନବାକ୍ଷରୀ ଛନ୍ଦ ବ୍ୟବହାର କରା-ହୋଇଛି । ୧୯ ’୫ରୁ ଏହି ଅନୁବାଦଟି ହିଁ ପୁର୍ବତନ ଅନୁବାଦ ପରିବର୍ତ୍ତେ ପ୍ରତିଦିନ କର୍ମୀମାନେ ପ୍ରାର୍ଥନାବେଳେ ବୋଲିଥାନ୍ତି ଓ ଏହା ଆଶ୍ରମମାନଙ୍କରେ ବୋଲା ହୋଇଥାଏ ।

ଅନୁବାଦଟି କେଡ଼େ ସରଳ, ଲଳିତ ଓ ଶକ୍ତିଶାଳୀ ତାହାର ପରିଚୟ ନିମ୍ନୋକ୍ତ ଉଦ୍ଧୃତାଂଶରୁ ମିଳିବ—

“ବରଜେ ଯେବେ ମନୋଗତ, ସର୍ବ କାମନା ଆହେ ପାର୍ଥ ।
ଆପେ ତୁଷ୍ଟ ସେ ଆତ୍ମାରେ ହିଁ ବୋଲିଏ ସ୍ଥିତ-ପ୍ରଜ୍ଞ ସେହି । ୫୫
ଦୁଃଖରେ ନାହିଁ ଉଦବେଗ ସୁଖରେ ନାହିଁ ଅନୁରାଗ ।
ଗୁଡ଼େ ସେ ତୃଷ୍ଣା ଭୟ କୋଧ ସ୍ଥିତଧୀ ମୁନି ସେ ପ୍ରସିଦ୍ଧ । ୫୬

‘୧୯୫୭’ (ପୃ ୩୩, ଗ୍ରାମସେବକ ସମବାୟ ପ୍ରକାଶନ ଲିଃ କଟକ)

ବିନୋବାଜୀ ଭୂଦାନକର୍ମୀଙ୍କ ଆଗରେ ଗୋଟିଏ ଲକ୍ଷ୍ୟ ଥୋଇଲେ ଯେ ୧୯୫୭ ଭିତରେ ଭାରତରେ ପାଞ୍ଚକୋଟି ଏକର ଜମି ଭୂଦାନମାର୍ଗରେ ସଂଗ୍ରହ କରାଯାଉ, ତାହାହେଲେ ସେତେବେଳର ଅଟକଳ ଅନୁସାରେ ଭୂମିହୀନଙ୍କୁ ବାଣ୍ଟିବା ପାଇଁ ଯେତିକ ଜମି ବାଣ୍ଟିବା ଆବଶ୍ୟକ ବୋଲି ଜଣାପଡ଼ୁଥିଲା ତାହା ପୂରଣ ହୋଇସିବ ଓ ଭୂଦାନଯଜ୍ଞର ଉଦ୍‌ଯାପନ କରାସିବ । ଖାସ୍ ‘୧୯୫୭’କୁ ସେ ଏଇଥି କହି ଗୁରୁତ୍ୱ ଦେଇଥିଲେ ଯେ ତାହାପୂର୍ବରୁ ଦୁଇଥର ଶତାବ୍ଦୀର ୫୭ ବର୍ଷରେ ଭାରତରେ ଗୋଟିଏ ଲେଖା ଐତିହାସିକ ବିପ୍ଳବ ଘଟିସାରିଛି, ୧ ୫୭ରେ ଭାରତରୁ ଇଂରେଜଙ୍କୁ ତଡ଼ିବା ଉଦ୍ଦେଶ୍ୟରେ ଆନ୍ଦୋଳନ ହୋଇ ବଙ୍ଗଦେଶର ପଲାସିରେ ଯୁଦ୍ଧ ଓ ୧ ୫୭ରେ ପୁଣି ଥରେ ସେହି ପ୍ରଚେଷ୍ଟା, ଯାହାକୁ ‘ସିପାହୀ ବିଦ୍ରୋହ’ ବୋଲି ଇଂରେଜମାନେ କହିଥିଲେ । ବିନୋବାଙ୍କର ସେହି ଲକ୍ଷ୍ୟ ବା ଆଶା ପୂରଣ କରିବାଲାଗି ଭୂଦାନକର୍ମୀମାନେ ଲାଗି ପଡ଼ିଥିଲେ । ସେହି ପରିପ୍ରେକ୍ଷୀରେ ୰ ଗୋପବନ୍ଧୁ ଚୌଧୁରୀ ଭୂଦାନ ପ୍ରଚାର ଉଦ୍ଦେଶ୍ୟରେ ଏ ପଦ୍ୟଟି ଲେଖିଥିଲେ । ପ୍ରଥମ ସାଢ଼େ ପାଞ୍ଚପୃଷ୍ଠା ଓଡ଼ିଆ ଭାଗବତର ନବାକ୍ଷରୀରେ ଲେଖା ହୋଇଛି, ବାକିତକ

ବା ଅଷ୍ଟାକ୍ଷରୀ ଧାଡ଼ିରେ । ଏଥିରୁ ତାଙ୍କ ଭାଷାର ବୈଶିଷ୍ଟ୍ୟ ଲକ୍ଷ୍ୟ କରି ହେବ, ସହଜ ସରଳଭାବେ ଧାଡ଼ିଏ ଦ'ଧାଡ଼ିରେ କିପରି ସେ ଅଳ୍ପକେ ବହୁତ ବୁଝାଇ ପାରୁଥିଲେ ତାହାର ନମୁନା ସ୍ୱରୂପ ତଳେ କିଛି ଉଦ୍ଧୃତ କରାଗଲା—

"ଗାନ୍ଧୀ ଯାଆନ୍ତେ ଦେହ ଛାଡ଼ି, ଆତ୍ମା ଯେ ଥିଲା ବନ୍ଧା ପଡ଼ି ।
× × × × ×
ମିଳି ଅନୁଚର ସକଳେ, ବିଚାର କଲେ ଏକମେଳେ ।
ପୂରଣେ ଗାନ୍ଧୀଙ୍କ କରମ, କରିବେ ସର୍ବେ କେଉଁ କାମ ।
ଦୁଇଟି ଗାନ୍ଧୀ କରୁଥିଲେ, ଗୋଟିକୁ ଅଧା ରଖିଗଲେ ।
ସତ୍ୟର ଅହିଂସା ଶକତି, ସାଧିଲେ ଦେଶର ମୁକତି ।
ସ୍ୱରାଜ୍ୟ ଦରିଦ୍ର ଦୁଆରେ, ଆଣି ଯେ ଦେବେ ସେ ଅଚିରେ ।
ଶେଷ କାମଟି ଅଧା ଥିଲା, ଦଇବ ତାକୁ ଘେନିଗଲା ।
× × × × ×
ତେଣୁ ମିଳି ସେ ଅନୁଚରେ, କଲେ ସଂକଳ୍ପ ଏକ ସ୍ୱରେ ।
ସର୍ବୋଦୟର ଆଦରଣେ, ଗଢ଼ିବେ ସମାଜ ଏ ଦେଶେ ।
× × × × ×
ଆଦି ଅନ୍ତ ମଝି ହବଂଦା ବିଚାର ସତ୍ୟାଗ୍ରହେ ତାହା ନିତ୍ୟ ଧର୍ମ ସାର ।
ଆଦ୍ୟରେ ବିଚାର, ମଧ୍ୟରେ ତପସ୍ୟା, ଶେଷରେ ବିଚାର ମାର୍ଗଟି ଅହିଂସା ।
× × × × ×
ସତତ ପାଦରେ ଚାଲି ବୁଲୁଥିବା ଘରେ ଘରେ ଯାଇ ସଦା ବୁଝାଇବା ।
ନୁହଇ କି ଏହା ସତ୍ୟାଗ୍ରହ ଭଲେ ? ନାହିଁ ସତ୍ୟାଗ୍ରହ ଏହା ସମଝିଲେ ।
× × × × ×
ବୁଝାଇ ବିଚାର ବଦଳାଇ ମନ, ହୃଦ ପାଲଟିବା ପ୍ରଧାନ ସାଧନ ।"

## ତାଙ୍କ ଗଦ୍ୟର କିଛି ବୈଶିଷ୍ଟ୍ୟତା

କହିବା ଓ ଲେଖିବା ଭାଷାରେ ଅନ୍ୟାନ୍ୟ ଇଂରାଜୀ ଶିକ୍ଷିତଙ୍କ ପରି ସେ ସ୍ଥାନେ ସ୍ଥାନେ ଓଡ଼ିଆ ଶବ୍ଦ ପରିବର୍ତ୍ତେ ଇଂରାଜୀ ଶବ୍ଦ ବ୍ୟବହାର କରିବା ଦେଖା ନ ଥିଲା । ସବୁ ଉଦ୍ଦିଷ୍ଟ ଅର୍ଥ ସମସ୍ତେ ବୁଝିଲା ଭଳି ସରଳ ଓଡ଼ିଆରେ ପ୍ରକାଶ କରୁଥିଲେ । ସେ ତ ଗାଁ ଲୋକଙ୍କ ସଙ୍ଗେ ଅଭିନ୍ନ ହୋଇ ମିଶି ଯାଇଥିଲେ, ସେହିମାନଙ୍କ ସଙ୍ଗେ ଜୀବନର ଅଧିକାଂଶ ସମୟ ବିତାଇଛନ୍ତି, ତାଙ୍କ ଭିତରେ ବି ଲୋକେ ଅଛନ୍ତି ଯେଉଁମାନେ ନିଜ ବାଗରେ ତାତ୍ତ୍ୱିକ ବିଚାର କରନ୍ତି, ନିଜ ଭାଷାରେ ଭାବ ପ୍ରକାଶ କରନ୍ତି, ସେଥିପାଇଁ ସେ ସଂସ୍କୃତ ତଥା ତତ୍ସମ ଶବ୍ଦ ବ୍ୟବହାର କରିଥାନ୍ତି ତାହା ଆଦୌ ନୁହେଁ । ଅଧିକାଂଶ ତ ସଂସ୍କୃତି ବୁଝନ୍ତି ବି ନାହିଁ (ଅନେକ ଉଚ୍ଚ ଶିକ୍ଷିତ ବି ସଂସ୍କୃତ ଶବ୍ଦର ଅବିକଳ

ବ୍ୟୁତ୍ପତ୍ତିଗତ ଅର୍ଥ ଓ ବ୍ୟବହାର ସିଦ୍ଧ ଅର୍ଥ କ୍ୱଚିତ୍ ବୁଝିଥିବାର ଜଣାପଡ଼େ), କିନ୍ତୁ ଶହ ଶହ ବର୍ଷର ପ୍ରାଚୀନ କଥିତ ଓଡ଼ିଆରେ ଗାଁ ଲୋକଙ୍କର ବୁଝିବାପାଇଁ ଅସୁବିଧା ହୁଏ ନାହିଁ । ଗାଁ ଲୋକଙ୍କ ପରି ସାଧାରଣ ଜୀବନର ଅଭିଜ୍ଞତାରୁ ବାଛି ଉପମା ସଜେଇ ୬ ଗୋପବାବୁ ବି ସୁନ୍ଦରଭାବେ ଅର୍ଥ ପ୍ରକାଶ କରନ୍ତି, ସାଧାରଣ ଚିତ୍ର ପାଲଟିଯାଏ ରୂପକ, କେତେବେଳେ ବା ସୁନ୍ଦର ଉପମା ଯୋଗାଏ । ସାନ କଥାଟିଏ ପଛଆଡ଼େ ଥାଇ ଆଲୁଅ ପକାଉଥାଏ ବଡ଼ ଭାବଟିଏ । ଏ ପୁସ୍ତକରେ ଦିଆହୋଇ-ଥିବା ନାନା ଉଦ୍ଧୃତାଂଶରୁ ତାର କିଛି ନମୁନା ମିଳିବ । ଯଥା—

“(ଯେଉଁମାନେ ପାଠ ପଢ଼ିଲାବେଳେ ନିଜ ଭବିଷ୍ୟତ ଜୀବନ ବିଷୟରେ ନାନା ବଡ଼ ବଡ଼ କଥା ଭାବୁଥାନ୍ତି ସେମାନେ ସଂସାରରେ ପଶିଲା ପରେ) ଯାହା ପହଁରିବାକୁ ଶିଖିଛନ୍ତି ଆଉ ପହଁରିପାରି ପାରନ୍ତି ନାହିଁ, ପୁଣି ସେ କାଦୁଅପଙ୍କ ଚକଟି ନିଜେ ପ୍ରତିକ୍ରିୟାଶୀଳ ହେଉଛନ୍ତି ।”

ସ୍ୱାଧୀନତା ଆସିଲା ପରେ ୧୯୪୭ ଅଗଷ୍ଟରେ ସେ ଲେଖିଛନ୍ତି—“ବର୍ତ୍ତମାନ ଆକାଶ ଯେପରି ମେଘାଚ୍ଛନ୍ନ, ସଡ଼କରେ ଯିବାର ଦରକାର ପଡ଼ୁଛି, ସେତେବେଳେ କେଉଁଠି ଯେ କେତେବେଳେ ବଢ଼ି ବାଦଲରେ ରାସ୍ତାଘାଟ ଭାଙ୍ଗିବ ତାହା କହି ହେବ ନାହିଁ ।” ଏଥିରେ ବର୍ଷାଦିନେ ପ୍ରାକୃତିକ ଅବସ୍ଥା ଓ ସମ୍ଭାବିତ ବିପଦ ଅର୍ଥ ଆସିଲେ ସୁଦ୍ଧା ପ୍ରକୃତ ତାତ୍ପର୍ଯ୍ୟ ତାହା ଉହାଡ଼ରେ ରହିଛି । ସ୍ୱାଧୀନତା ଆସିଲା ସତ, କିନ୍ତୁ ପରିସ୍ଥିତି ଅତ୍ୟନ୍ତ ବିପଦସଙ୍କୁଳ, କେତେବେଳେ ଯେ ତାହା ପ୍ରଭାବରେ କୁଆଡ଼େ ବିଭ୍ରାଟ ଘୋଟିଯିବ, ସୁଶାସନ ଓ ଦେଶର ନୂତନ ନିର୍ମାଣ କାର୍ଯ୍ୟ ଭଣ୍ଡୁର ପଡ଼ିବ, ସିଧା ସୁରୁଖୁରୁରେ ଶାସନକାର୍ଯ୍ୟ ଚଳାଇବା ବ୍ୟାହତ ହେବ ଠିକଣା ନାହିଁ, ତେଣୁ ଆବଶ୍ୟକ—ଗାନ୍ଧୀ ଦର୍ଶନର ଅନୁସରଣ କରି ସତ୍ୟ ଅହିଂସା ଆଶ୍ରୟ କରି ଦେଶରୁ ହିଂସା, ସାଂପ୍ରଦାୟିକତା, ଅସ୍ପୃଶ୍ୟତା, ସବୁ ପ୍ରକାର ବିଦ୍ୱେଷ ଦୂରୀକରଣ, ଦରିଦ୍ର ନାରାୟଣଙ୍କ ସେବା, ମୌଳିକ ପ୍ରାଥମିକ ସମସ୍ୟାମାନଙ୍କ ସମାଧାନ, ଅହିଂସ, ସ୍ୱାବଲମ୍ବୀ, ସତ୍ୟାଶ୍ରୟୀ, ପ୍ରେମମୈତ୍ରୀ ଶରୀର ଶ୍ରମ ଉପରେ ପ୍ରତିଷ୍ଠିତ ସମାଜ ଗଠନ, ପଦେ କଥାରେ ଗାନ୍ଧୀଜୀଙ୍କ ରଚନାତ୍ମକ କର୍ମ ଉପରେ ଅଧିକରୁ ଅଧିକ ଜୋରଦେଇ ଲାଗିବା, ଏହାହିଁ ଏ ଲେଖାଟିର ତାତ୍ପର୍ଯ୍ୟ ।

ଦେଶର ବଦଳୁଥିବା ସମସ୍ତ ବିଷୟରେ, କେଉଁ କାର୍ଯ୍ୟର କି ପରିଣତି ସେ ବିଷୟରେ ସେତେବେଳେ ସେ ଯାହା କହିଥିଲେ ତାର ସତ୍ୟତା ଏବେ ପ୍ରାୟ ପଚାଶବର୍ଷ ପରେ ଜଳ ଜଳ ଦିଶୁଛି, ତାଙ୍କ ଉକ୍ତିର ନାନା ପ୍ରମାଣ ଆଖିଆଗରେ ଦିଶୁଛି ।

## ଦିଲ୍ଲୀ ଡାଏରୀ

(ଡେମାଇ, ପୃ ୪୭୬, ପ୍ରକାଶ—୧୯୫୧, ପ୍ରକାଶକ—ଉତ୍କଳ ଖଦୀମଣ୍ଡଳ, କଟକ ।)

ତା ୧୦-୯-୪୭ରୁ ଆରମ୍ଭ କରି ନିଜ ଜୀବନର ଅନ୍ତିମ ଦିନ ୩୦-୧-୧୯୪୮ ପର୍ଯ୍ୟନ୍ତ ଦିଲ୍ଲୀରେ ମହାତ୍ମା ଗାନ୍ଧୀ ପ୍ରତିଦିନ ପ୍ରାର୍ଥନା ଶେଷରେ ଗୋଟିଏ ଭାଷଣ ଦେଉଥିଲେ । ସେହି ଭାଷଣଗୁଡ଼ିକ ଏକତ୍ର କରି 'ଦିଲ୍ଲୀ ଡାଇରୀ' ବୋଲି ପୁସ୍ତକଟିଏ ଛପା ହୋଇଥିଲା । ୰ ଗୋପବନ୍ଧୁ ଚୌଧୁରୀ ଓଡ଼ିଆରେ ତାକୁ ଅନୁବାଦ କରିଥିଲେ । ଏଥିରେ ୧୪୦ଟି ଭାଷଣ ବା 'ପ୍ରବଚନ' ଅଛି, ଶେଷଟି କେବଳ ଦୁଇପଦ, ଜଘନ୍ୟ ହିଂସ୍ର କ୍ରବ୍ୟାଦ୍‌ର ଗୁଳିରେ ଟଳି ପଡ଼ିବା ପୂର୍ବରୁ—"ହେ ରାମ !"

ଭାଷଣଗୁଡ଼ିକ ବିଭିନ୍ନ ବିଷୟରେ, କିନ୍ତୁ ତାର ପୃଷ୍ଠପଟ ସାଂପ୍ରଦାୟିକ ହିଂସାର, ଅଚ୍ଛେଦ, ଅବିଶ୍ୱାସ, ସଂଘର୍ଷ, ଧ୍ୱଂସର, ଯନ୍ତ୍ରଣା ଓ ଆର୍ତ୍ତନାଦର, ତେଣୁ ଆଜୀବନ ଆଶାବାଦୀ ମହାନ୍ ଆଦର୍ଶବାଦୀଙ୍କର ସ୍ୱର ଏଠି କ୍ଳାନ୍ତ, ଟଳଟଳ, ଯଦିଚ ଦୁର୍ବଳ ନୁହେଁ । ଜୀବନଯାକର ଲକ୍ଷ୍ୟ, ଦେଶପାଇଁ କାର୍ଯ୍ୟ ଓ ଶେଷରେ ତାର ପରିଣତି ଏ ବିଷୟରେ ମହାତ୍ମାଜୀ ନିଜ ଜୀବନ ସନ୍ଧ୍ୟାରେ କଣ ଭାବୁଥିଲେ ଓ କିପରି, ତୁଣ୍ଡରେ ସ୍ପଷ୍ଟ ଶବ୍ଦରେ ନ କହିଲେ ବି, ସାରଳା ଦାସଙ୍କ ମହାଭାରତରେ ଶରବିଦ୍ଧ ହେବା ପୂର୍ବରୁ ଶ୍ରୀକୃଷ୍ଣଙ୍କର ପ୍ରଚ୍ଛନ୍ନ ମୃତ୍ୟୁକାମନା ଭଳି ମହାତ୍ମାଜୀଙ୍କ ମନ ଉହାଡ଼ରେ ବି ଅନୁରୂପ ଚିନ୍ତାର ଛାଇ ପଡ଼ିଥିଲା,—ଏ ଭାଷଣଗୁଡ଼ିକୁ ଅନୁଧ୍ୟାନ କରି ପଢ଼ିଲେ ସେଭଳି ନାନା ଧାରଣା ମନକୁ ଆସିବ । ନାନା ବିଷୟରେ 'ଜାତିର ଜନକ'ଙ୍କ ମତାମତ ଓ ଶେଷ ଉପଦେଶାବଳୀ ମଧ୍ୟ ଏହି ତାତ୍ପର୍ଯ୍ୟପୂର୍ଣ୍ଣ ଭାଷଣଗୁଡ଼ିକରୁ ମିଳିବ ।

## ମହାତ୍ମା ଗାନ୍ଧୀଙ୍କ ଆତ୍ମକଥା—ଗୋପବନ୍ଧୁ ଚୌଧୁରୀଙ୍କ ଅନୁବାଦର ତୁଳନାତ୍ମକ ଅଧ୍ୟୟନ

ଲେଖକ—ମହାତ୍ମା ଗାନ୍ଧୀ

ମହାତ୍ମା ଗାନ୍ଧୀଙ୍କର ନିଜର ମୌଳିକ ଗୁଜରାଟୀ ଭାଷାରେ ଲେଖା ଆତ୍ମକଥାରୁ ସିଧା ଓଡ଼ିଆ ଅନୁବାଦ । ଇଂରାଜୀ, ହିନ୍ଦୀ ବା ଅନ୍ୟ କୌଣସି ଅନୁବାଦରୁ ନୁହେଁ । ଅନୁବାଦକ ୰ ଗୋପବନ୍ଧୁ ଚୌଧୁରୀ ।

ଏହି ଅନୁବାଦଟି ପ୍ରଥମେ ୧୯୪୭ରେ ପ୍ରକାଶିତ ହୋଇଥିଲା । ତାହାପରେ "ଗାନ୍ଧୀ ସ୍ମାରକନିଧି" (ଉତ୍କଳ)ଙ୍କ ଦ୍ୱାରା 'ଗାନ୍ଧୀ ରଚନାବଳୀ'ର ପ୍ରଥମ ଖଣ୍ଡ ହୋଇ ୧୯୬୮ରେ ପ୍ରକାଶିତ ହେଲା । 'ଗାନ୍ଧୀ ରଚନାବଳୀ'ରେ ଏହାର ଆକାର ଡେମାଇରେ ପୃଷ୍ଠା ୪୭୫ ।

ଓଡ଼ିଆରେ ଏହାର ଆଉ ଅନ୍ତତଃ ଯୋଡ଼ିଏ ଅନୁବାଦ ପ୍ରକାଶିତ ହୋଇଛି । ପ୍ରଥମଟି କରିଥିଲେ ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥ ('ସମାଜ' ସମ୍ପାଦକ) ତାହା ବିଷୟରେ ୬ ଗୋପବନ୍ଧୁ ଚୌଧୁରୀ ଉଲ୍ଲେଖ କରିଛନ୍ତି, ତାହା ଇଂରାଜୀ ଅନୁବାଦରୁ ଓଡ଼ିଆରେ ଅନୁବାଦ । ଦ୍ୱିତୀୟଟି ମଧ୍ୟ ଇଂରାଜୀରୁ ଓଡ଼ିଆରେ ଅନୁବାଦ । କିନ୍ତୁ ପ୍ରଥମଟି ପରି ସମ୍ପୂର୍ଣ୍ଣ 'ଆତ୍ମକଥା' ପୁସ୍ତକର ନୁହେଁ, ସେହି ପୁସ୍ତକର କେବଳ କିଛି ବଛା ବଛା ଅଂଶର । ସେ ପୁସ୍ତକର 'ମୁଖବନ୍ଧ'ରେ ୟୁନେସ୍କୋ ସଂସ୍ଥା ଲେଖିଛନ୍ତି; "୧୯୫୬ ନଭେମ୍ବରରେ ଦିଲ୍ଲୀରେ ହୋଇଥିବା ୟୁନେସ୍କୋର ନବମ ଅଧିବେଶନର ସାଧାରଣ ସମ୍ମିଳନୀରେ ଉକ୍ତ ସଂସ୍ଥାର ସଦସ୍ୟ ଦେଶର ପ୍ରତିନିଧିମାନଙ୍କର ଏକ ସିଦ୍ଧାନ୍ତ ଗୃହୀତ ହୋଇଥିଲା, ସେଥିରେ ଗାନ୍ଧୀଜୀଙ୍କ ବ୍ୟକ୍ତିତ୍ୱର (?) ଆଲୋଚନାଗୁଡ଼ିକୁ ଭିତ୍ତି କରି ତାଙ୍କ ରଚନାବଳୀରୁ କେତେକ ନିର୍ବାଚିତ ଅଂଶକୁ ପୁସ୍ତକ ଆକାରରେ ପ୍ରକାଶ କରିବା ନିମିତ୍ତ ୟୁନେସ୍କୋର ଡାଇରେକ୍ଟର-ଜେନେରାଲଙ୍କୁ ଅଧିକାର ଦିଆଯାଇଥିଲା ।" ସେହି ନିଷ୍ପତ୍ତି ଅନୁସାରେ ଶ୍ରୀ କୃଷ୍ଣା କୃପାଳିନୀ (ସେତେବେଳେ ନୂଆଦିଲ୍ଲୀସ୍ଥ 'ସାହିତ୍ୟ ଆକାଦେମୀ'ର ସେକ୍ରେଟେରୀ) ଗାନ୍ଧୀଜୀଙ୍କର ନାନା ଲେଖାରୁ ଓ ଶ୍ରୀ ପ୍ୟାରେଲାଲ୍, ଶ୍ରୀ ତେନ୍ଦୁଲକାର୍, ଶ୍ରୀ ମହାଦେବ ଦେଶାଇ, ଶ୍ରୀ କେ. କେ. ପ୍ରଭୁ ରାଓ ଓ ଶ୍ରୀ ୟୁ. ଆର୍. ରାଓ ଆଦିଙ୍କ ପୁସ୍ତକରୁ ଓ ଶ୍ରୀ ନିର୍ମଳ କୁମାର ବୋଷଙ୍କ ଦ୍ୱାରା ସଂଗୃହୀତ ମହାତ୍ମା ଗାନ୍ଧୀଙ୍କ ନାନା ଲେଖାର ସଂକଳନରୁ ଉଦ୍ଧୃତାଂଶଗୁଡ଼ିଏ ବାଛି ସବୁ ଏକାଠି କରି 'ଗାନ୍ଧୀ କଥାମୃତ' ବୋଲି ଇଂରାଜୀରେ ଗୋଟିଏ ସଂକଳନ ପ୍ରସ୍ତୁତ କଲେ । ୟୁନେସ୍କୋ ତାକୁ ପ୍ରକାଶ କଲେ ।

ସେହି ଇଂରାଜୀ ପୁସ୍ତକ 'ଗାନ୍ଧୀ କଥାମୃତ'କୁ ସୁସାହିତ୍ୟିକା ଶ୍ରୀମତୀ ନନ୍ଦିନୀ ଶତପଥୀ ଓଡ଼ିଆରେ ଅନୁବାଦ କଲେ ଓ ସେହି ଅନୁବାଦକୁ (ଭାରତୀୟ) ସାହିତ୍ୟ ଆକାଦେମୀ ୧୯୭୦ରେ ପ୍ରକାଶ କଲେ । ସେହି ପୁସ୍ତକଟି ଡେମାଇ ଆକାରରେ ୨୯୩ ପୃଷ୍ଠାର, ତନ୍ମଧ୍ୟରେ 'ଆତ୍ମଜୀବନୀ ସମ୍ପର୍କୀୟ' ବୋଲି ପରିଚ୍ଛେଦଟି, ଯାହା ଗାନ୍ଧୀଜୀଙ୍କ 'ଆତ୍ମକଥା'ରୁ ଉଦ୍ଧୃତ ହୋଇଛି, ତାହା ମାତ୍ର ୮୯ ପୃଷ୍ଠାର, ଯଦିଚ ସମୁଦାୟ "ଆତ୍ମକଥା'ର ଆକାର ୬ ଗୋପବନ୍ଧୁ ଚୌଧୁରୀଙ୍କ ଅନୁବାଦରେ ୪୫୬ ପୃଷ୍ଠା । ଶ୍ରୀମତୀ ଶତପଥୀ ଗଳ୍ପ ଲେଖିକା ହିସାବରେ ଯଶସ୍ୱିନୀ ଓ ତାଙ୍କ ମୌଳିକ ଲେଖାମାନଙ୍କରେ ତାଙ୍କର ଓଡ଼ିଆ ଭାଷା ସରଳ, ସଂକ୍ଷିପ୍ତ ହେଲେବି ଶକ୍ତିଶାଳୀ ଓ ତନ୍ମଧ୍ୟରେ ତାଙ୍କର ସ୍ୱକୀୟତା ଦୃଷ୍ଟ ହୁଏ । କିନ୍ତୁ ତାଙ୍କ ଦ୍ୱାରା ଇଂରାଜୀରୁ ଅନୂଦିତ ଭାରତ ସାହିତ୍ୟ ଆକାଦେମୀର ସେହି ପୁସ୍ତକଟିରେ ସର୍ବତ୍ର ମହାତ୍ମା ଗାନ୍ଧୀଙ୍କ ବାକ୍ୟଗୁଡ଼ିକର ଅବିକଳ ଅର୍ଥ ଫୁଟି ପାରି ନାହିଁ । କୌଣସି ଭାରତୀୟ ଭାଷାରୁ ଇଂରେଜୀରେ ଅନୁବାଦ କଲାବେଳେ ଦୁଇଭାଷାରେ କୁଶଳୀ ଓ ଅତ୍ୟନ୍ତ ନିଷ୍ଠାବନ୍ତ ନ ହୋଇପାରିଲେ ତାହା ସମ୍ଭବ ହୋଇପାରେ ନାହିଁ, ଇଂରାଜୀରୁ କୌଣସି ଭାରତୀୟ ଭାଷାରେ ଅନୁବାଦ କଲେ

ମଧ୍ୟ ସେହି ଅସୁବିଧା ହୁଏ । ସେହି ଅନୁବାଦର ପ୍ରଥମ ପୃଷ୍ଠାରେ ହିଁ ଦ୍ୱିତୀୟ ଓ ତୃତୀୟ ପାରାରେ ତେରଟି ଧାଡ଼ିରେ ସୁଦ୍ଧା ସେହି ଅବସ୍ଥା ଜଣାପଡ଼େ; କେତୋଟି ନମୁନା—

ଇଂରେଜୀ—ସାଃ ଆଃ ଅନୁବାଦ (ବନ୍ଧନୀ ଭିତରେ ମୋ ଟିପ୍ପଣୀ ।)

Has tickled me—ମୋତେ ସନ୍ତୋଷ ଦେଇଛୁ । (ହୋଇଥାନ୍ତା—ମତେ ଆମୋଦଜନକ ଲାଗୁଛି ।)

That I can recall—ମୋର ମନେହୁଏ (ନା, ମୋର ଯେତେଦୂର ମନେ ପଡ଼ୁଛି)

Experiments—ସମୀକ୍ଷଣଗୁଡ଼ିକ (ନା, 'ସମୀକ୍ଷା' ଅର୍ଥ 'ଭଲ କରି ଦେଖିବା' ହୋଇଥାନ୍ତା—ପରୀକ୍ଷାମୂଳକ ପ୍ରୟୋଗଗୁଡ଼ିକ)

Such power as I possess—କାର୍ଯ୍ୟ କରିବା ପାଇଁ ଶକ୍ତି ଲାଭ କରିଛି । (ହୋଇଥାନ୍ତା—ମୋର ଯଥାଶକ୍ତି ।)

They can only add to my humility—(ଗ୍ରୁଡ଼ି ଗଲେ ।)

What I want to achieve—ମୁଁ ଯାହା ପାଇବାକୁ ଉଦ୍ୟମ କରୁଛି । (ହୋଇଥାନ୍ତା—ମୁଁ ଯେଉଁ ଅଭୀଷ୍ଟ ସାଧନ କରିବାକୁ ଲୋଡ଼ୁଛି)

ସ୍ଥାନେ ସ୍ଥାନେ ଇଂରାଜୀ ଭାଷାର ଶବ୍ଦାନୁଯ୍ୟ ଖଣ୍ଡବାକ୍ୟ ଗଠନ ଓ ବାକ୍ୟାନୁଯ୍ୟ ପଦ୍ଧତି (Syntax) ଅନୁସରଣ ଓଡ଼ିଆ ଭାଷାକୁ ବେଖାପ ହୋଇ ଓଡ଼ିଆର ସ୍ୱାଭାବିକ ବ୍ୟବହାରର ସ୍ୱଭଭଙ୍ଗ କରିଛି ଓ ଅର୍ଥକୁ କ୍ଲିଷ୍ଟ କରିଛି । ଏ ତ୍ରୁଟି ଅତି ସାଧାରଣ ଓ ଦୃଷ୍ଟିଆର ନ ହେଲେ ଆପେ ଆପେ ଘଟିଯାଏ, ଯଥା ସେହି ପ୍ରଥମ ପୃଷ୍ଠା ୨ୟ ପାରାରେ—

ସାହିତ୍ୟ ଆକାଦମୀ ଅନୁବାଦ

"କିନ୍ତୁ ଅଧ୍ୟାତ୍ମିକ କ୍ଷେତ୍ରରେ ମୋର ସମୀକ୍ଷଣଗୁଡ଼ିକ ଯାହାକି କେବଳ ମୋତେ ହିଁ ଜଣା, ଏବଂ ଯେଉଁଗୁଡ଼ିକରୁ ମୁଁ ରାଜନୈତିକ କ୍ଷେତ୍ରରେ କାର୍ଯ୍ୟ କରିବା ପାଇଁ ଶକ୍ତିଲାଭ କରିଛି, ସେଗୁଡ଼ିକ ବର୍ଣ୍ଣନା କରିବା ମୋର ଏକାନ୍ତ ଇଚ୍ଛା ।"

୰ ଗୋମତୀ ଚୌଧୁରୀଙ୍କର ଅନୁବାଦର ଗୋଟିଏ ଅଂଶକୁ ସାଃ ଆଃ ଅନୁବାଦର ସେହି ଅଂଶ ସଙ୍ଗେ ତୁଳନା କଲେ ପ୍ରଭେଦଟି ବୁଝି ହେବ ।

| ସାଃ ଆଃ ଅନୁବାଦ | ୰ ଗୋଃ ଚାଙ୍କ ଅନୁବାଦ |
|---|---|
| (ମରାଠୀରୁ ଇଂରେଜୀ—ଇଂରେଜୀରୁ ସାଃ ଆଃଙ୍କ ଓଡ଼ିଆ ଅନୁବାଦ, ଅନୁବାଦିକା ଶ୍ରୀମତୀ ନନ୍ଦିନୀ ଶତପଥୀ ।) | (ମରାଠୀରୁ ଓଡ଼ିଆ) |

| ସା: ଆ: ଅନୁବାଦ | ୵ ଗୋ: ଚାଙ୍କ ଅନୁବାଦ |
| --- | --- |
| "ପ୍ରକୃତରେ ନିଜ ଜୀବନୀ ଲେଖା ଆରମ୍ଭ କରିବା ମୋର ଅଭିପ୍ରାୟ ନୁହେଁ ।" (ଠିକିଏ ଭୁଲ୍ ରହିଗଲା, ଇଂରେଜୀରେ 'My biography' ବୋଲି ନାହିଁ, ଅଛି "A real biography" । | (ମୂଳ ମରଠୀରେ ଏ ବାକ୍ୟଟି ବୋଧହୁଏ ନ ଥିଲା । ତେଣୁ ୵ ଗୋ: ଚ: ଲେଖି ନାହାନ୍ତି ।) "କିନ୍ତୁ ମୋର ଆତ୍ମକଥା ମୁଁ କାହିଁକି ଲେଖିଲି ?" |
| "ସତ୍ୟର ଯେଉଁ ଅସଂଖ୍ୟ ପରୀକ୍ଷା ମୁଁ କରିଛି କେବଳ ସେହି କଥାଗୁଡ଼ିକ ମୁଁ କହିବାକୁ ଚାହେଁ, ଏବଂ ଯେହେତୁ ଏହି ପରୀକ୍ଷାଗୁଡ଼ିକ ବ୍ୟତୀତ ମୋ ଜୀବନରେ ଅନ୍ୟ କିଛି ନାହିଁ, ତେଣୁ ଏହି କଥାଗୁଡ଼ିକ ଆତ୍ମଜୀବନୀର ରୂପ ଗ୍ରହଣ କରିବା ସ୍ୱାଭାବିକ ।" | "ମୁଁ ସତ୍ୟର ଯେ ସମସ୍ତ ପ୍ରୟୋଗ କରିଛି, ଆତ୍ମକଥା ବାହାନାରେ ସେସବୁ ପ୍ରୟୋଗର ବର୍ଣ୍ଣନା କରିବା ମୋର ଉଦ୍ଦେଶ୍ୟ । ସେଗୁଡ଼ିକ ମୋ ଜୀବନ ସଙ୍ଗେ ଓତଃପ୍ରୋତ ଭାବରେ ଜଡ଼ିତ ହୋଇଥିବାରୁ ସେଗୁଡ଼ିକ ବର୍ଣ୍ଣନା କରିବାକୁ ଗଲେ ମୋ ଆତ୍ମକଥା ପରି ଲେଖାଟିଏ ହୋଇଯିବ । |

ଡକ୍ଟର ଗ୍ରଧାନାଥ ରଥ କରିଥିବା ଓଡ଼ିଆ ଅନୁବାଦଟି ମୁଁ ଦେଖି ନାହିଁ, କିନ୍ତୁ ୵ ଗୋପବନ୍ଧୁ ଚୌଧୁରୀ ତାକୁ ପଢ଼ି ଇଂରାଜୀ ଅନୁବାଦ ସହିତ ଓ ମୂଳ ଗୁଜରାଟି ପୁସ୍ତକ ସହିତ ତୁଳନା କରି ସେ ବିଷୟରେ ନିଜର ମନ୍ତବ୍ୟ ତାଙ୍କ ନିଜ ଅନୁବାଦର ଆରମ୍ଭରେ "ଅନୁବାଦର କଥା" ବୋଲି ଅଗ୍ରଲେଖାରେ ୧୭-୨-୪୭ରେ ଲେଖି ଯାଇଛନ୍ତି—

"...ଜେଲ୍‌ରେ କେତେକ ବନ୍ଧୁ କହିଲେ ଯେ ଓଡ଼ିଆରେ ପୁଣି ଥରେ ଅନୁବାଦ କରାଯାଉ । ସେତେବେଳେ ମୁଁ ଆତ୍ମକଥାର ଗୁଜରାଟୀ ମୂଳ ଲେଖା ପଢ଼ୁଥାଏଁ । ତା ସହିତ ମିଳାଇ ଦେଖିବାରୁ ଜଣାଗଲା ଯେ, ଇଂରାଜୀ ଅନୁବାଦରୁ (ଓଡ଼ିଆରେ) ଅନୁବାଦ କରିବାକୁ ଯାଇ ମୂଳ ଭାବ ଠିକ୍ ଠିକ୍ ଫୁଟି ନାହିଁ । କଥାଟାକୁ ବୁଝେଇବାକୁ ଯାଇ ବାକ୍ୟ ସଂଖ୍ୟା ବଢ଼ି ଯାଇଛି । ଗାନ୍ଧିଜୀଙ୍କର ରଚନାଶୈଳୀ ରହି ନାହିଁ, ବରଂ କେତେକ ଜାଗାରେ ଅର୍ଥ ଭିନ୍ନ ହୋଇଯାଇଛି । ତେଣୁ (ଗାନ୍ଧୀ ରଚନାବଳୀର) ପ୍ରଥମ ଖଣ୍ଡର ନୂତନ ସଂସ୍କରଣ ପାଇଁ ମୂଳ ଗୁଜୁରାଟୀ ସଙ୍ଗେ ମିଳାଇ ଆଉଥରେ ପୁରାପୁରି ଅନୁବାଦ କରିବା ସ୍ଥିର କଲି ।..." ତାହାପରେ—ସେ ଡ: ଗ୍ରଧାନାଥ ରଥଙ୍କ ଭାଷାର ସୌନ୍ଦର୍ଯ୍ୟ ଓ ସରଳତାକୁ ପ୍ରଶଂସା କରି ଲେଖିଛନ୍ତି—

"ପ୍ରଥମ ଅନୁବାଦଟି ଶ୍ରୀ ରାଧାନାଥ ରଥ କରିଥିଲେ । ତାଙ୍କର ଭାଷାର ସୌନ୍ଦର୍ଯ୍ୟ ଓ ସରଳ ପ୍ରବାହ, ଏ ଅନୁବାଦରେ ମୋ ହାତରୁ ବାହାରିବା ସମ୍ଭବ ନୁହଁ । ତା ସାଙ୍ଗକୁ ମୁଁ ଗୁଜୁରାଟୀରେ ନଆ ଶିଖାଳି ଓ ମୋର ଓଡ଼ିଆ ଜ୍ଞାନଭଣ୍ଡାର ମଧ୍ୟ କମ । ଗାନ୍ଧିଜୀଙ୍କ ମୂଳ ଗୁଜୁରାଟୀ ଲେଖା ଅତି ସରଳ, ସାଧାରଣ ଗାଉଁଲି ଭାଷାରେ ଲେଖା । କିନ୍ତୁ ତାର ଇଂରାଜୀକୁ ଓଡ଼ିଆ କଲାବେଳକୁ ସେ ସରଳତା ଓ ସେ ଭାବ ରଖିବା କଷ୍ଟକର । ଗାନ୍ଧିଜୀ ଏହି ବହିରେ ଥରେ ଲେଖିଛନ୍ତି, —"ମୁଁ ଶବ୍ଦ ବ୍ୟବହାର ଜଗିରଖି କରିଥାଏ । ମିତବ୍ୟୟ କରିଥାଏ... ।"

"ମୁଁ ନିଜକୁ ଏତିକି ପ୍ରଶଂସାପତ୍ର ଦେଇପାରେ ଯେ, ମୋର ତୁଣ୍ଡରୁ ବା କଲମରୁ ନ ଭାବିଚିନ୍ତି କିମ୍ବା ନ ମାପି ତଉଲି କୌଣସି କୌଣସି ଶବ୍ଦ ପ୍ରାୟ କେବେ ବାହାରେ ନାହିଁ ।"

୬ ଗୋପବନ୍ଧୁ ଚୌଧୁରୀ ଲେଖିଛନ୍ତି—"ତେଣୁ ତାଙ୍କର (ମହାତ୍ମା ଗାନ୍ଧୀଙ୍କର) ପ୍ରତ୍ୟେକ ଲେଖିର ପଛରେ ବିଶେଷ ଅର୍ଥ ଥାଏ, ଯେପରି ଦୁଇଟି ଅର୍ଥ ବାହାରି ଉଦ୍ଦେଶ୍ୟ ବଣା ନ କରେ ସେଥିପ୍ରତି ସେ ବିଶେଷ ସାବଧାନ ଥାଆନ୍ତି ।"

୬ ଗୋପବନ୍ଧୁ ଚୌଧୁରୀ ଏ ବିଷୟରେ ଅବହିତ ଓ ନିଷ୍ଠାବନ୍ତ ଓ ଯତ୍ନଶୀଳ, କେବଳ ସେତିକି ନୁହେଁ, ତାଙ୍କର ଇଂରେଜୀ ଓ ଓଡ଼ିଆ ଲେଖାରେ ମଧ୍ୟ ସବୁବେଳେ ସେ ଏହି ମତ ଧରିଥାନ୍ତି ଯେ, "ଏକଃ ଶବ୍ଦଃ ସମ୍ୟକ୍ ଜ୍ଞାତଃ ସୁପ୍ରଯୁକ୍ତଃ ସ୍ୱର୍ଗେ ଲୋକେଚ କାମଧୁକ୍ ଭବତି" (ସାହିତ୍ୟ ଦର୍ପଣ) ।

ସେ ମୂଳ ମରାଠୀ ଲେଖାରୁ ଅନୁବାଦଟି ଓଡ଼ିଆରେ କରିଛନ୍ତି । ସେ ମଧ୍ୟ ସରଳ କଥିତ ଭାଷାର ଶବ୍ଦ ବ୍ୟବହାର କରିଛନ୍ତି । ଏଥିରେ ପ୍ରତି ଶବ୍ଦର ଗୋଟିଏ ବିଶିଷ୍ଟ ଅର୍ଥ ଥାଏ ସଂସ୍କୃତ ପରି ବହୁ ଅର୍ଥ ନ ଥାଏ । ଭାଷା ସରଳ, ଲଳିତ, କୋମଳ, ସଂକ୍ଷିପ୍ତ ଓ ଅର୍ଥଗୌରବପୂର୍ଣ୍ଣ । ଅନୁବାଦଟି ଏପରି ସ୍ୱାଭାବିକ ଶୁଭୁଛି ଯେ ପଢ଼ିଲେ ଏହା ଓଡ଼ିଆରେ ଗୋଟିଏ ମୌଳିକ ରଚନା ବୋଲି ଭ୍ରମ ହେବ, ଏହା ସଫଳ ଅନୁବାଦର ଗୋଟିଏ ବିଶିଷ୍ଟ ଗୁଣ । ସଂସ୍କୃତ ଗୋଷ୍ଠୀର ଗୋଟିଏ ଭାରତୀୟ ଭାଷାରୁ ଅନ୍ୟ ଗୋଟିଏ ଭାରତୀୟ ଭାଷାରେ ଅନୁବାଦ କଲେ ଆପେ କେତେକ ସୁବିଧା ହୋଇଥାଏ, କାରଣ କେତେ ତତ୍ସମ ଶବ୍ଦ ଉଭୟ ଭାଷାରେ ଏକା ଅର୍ଥରେ ବ୍ୟବହାର କରାଯାଇଥାଏ ଓ ଉଭୟ ଭାଷାରେ ବାକ୍ୟ ସୃଷ୍ଟି ଏକା ସଂସ୍କୃତ ବ୍ୟାକରଣ ନିୟମକୁ ମାନି କରା ହୋଇଥାଏ । ଇଂରାଜୀରେ ତାହା ଭିନ୍ନ । ଇଂରାଜୀ Syntax ଅନୁସାରେ ଭାରତୀୟ ଭାଷାରେ ବାକ୍ୟ ରଚନା କଲେ ସ୍ଥାନେ ସ୍ଥାନେ ତାହା ଅଶୁଦ୍ଧ

ହୁଏ, ଅର୍ଥର ସୂକ୍ଷ୍ମତା ଫୁଟିବା ଫୁଟିବା ବି କଷ୍ଟକର ହୁଏ । ଗାନ୍ଧିଜୀଙ୍କ 'ଆତ୍ମକଥା'କୁ ଇଂରାଜୀରେ ୰ ମହାଦେବ ଦେଶାଇ କରିଥିଲେ । ତାକୁ ୰ ଗୋପବନ୍ଧୁ ଚୌଧୁରୀଙ୍କ ଓଡ଼ିଆ ଅନୁବାଦ ସଙ୍ଗେ ମିଳାଇ ଦେଖିଲେ ସହଜରେ ଜାଣିହେବ ଯେ ଓଡ଼ିଆ ଅନୁବାଦଟି ତାଠାରୁ କେତେ ଚମତ୍କାର, ସ୍ୱାଭାବିକ ଓ ସରସ । ଅଂଶଗୁଡ଼ିକ ତହିଁରୁ ଏଠୁ ହେଠ୍ କିଛି ଉଦ୍ଧୃତ କଲି—

୧—(ପୃ ୩୫) "ଶେଠ (ଜେବଦେବ) କହିଲେ, "କିନ୍ତୁ ମୁଁ ତତେ କହୁଛି ଯେ, ସେଠି ଧର୍ମକୁ ରଖି ହେବ ନାହିଁ । ତୁ ଜାଣୁ ତୋର ପିତାଙ୍କ ସାଙ୍ଗରେ ମୋର କିପରି ସମ୍ବନ୍ଧ ଥିଲା । ସେଥିପାଇଁ ମୋ କଥା ତୋର ମାନିବା ଉଚିତ ।"

ମୁଁ ଜବାବ ଦେଲି ଯେ, ଆପଣଙ୍କ ସାଙ୍ଗରେ ସମ୍ବନ୍ଧ ମତେ ଜଣାଅଛି । ଆପଣ ମୋର ମୁରବି ସମାନ । କିନ୍ତୁ ଏ ବିଷୟରେ ମୁଁ ନାଚାର । ମୋର ବିଲାତ ଯିବା ସଙ୍କଳ୍ପ ମୁଁ ବଦଳାଇ ପାରିବି ନାହିଁ । ମୋର ବାପାଙ୍କ ବନ୍ଧୁ ଓ ପରାମର୍ଶଦାତା ଯେଉଁ ପଣ୍ଡିତ ବ୍ରାହ୍ମଣ ଅଛନ୍ତି, ତାଙ୍କର ମତ ଯେ ମୋର ବିଲାତ ଯିବାରେ କିଛି ଦୋଷ ନାହିଁ । ମୋର ମା ଓ ଭାଇଙ୍କର ଅନୁମତି ମଧ୍ୟ ମତେ ମିଳିଛି ।"

୨—(ପୃ ୩୯) "ହୋଟେଲ ଆମ ବୁଦ୍ଧିଙ୍କି ମାଡ଼ି ମାଡ଼ି ପଡ଼ିଲା ଭଳି ଲାଗିଲା । ହୋଟେଲ ମଧ୍ୟ ମହଙ୍ଗା । ମୋର ମନେଅଛି, ହୋଟେଲ ପାହୁଣା ମୋ ସାଙ୍ଗରେ ତିନି ପାଉଣ୍ଡ (ପଇଁତାଳିଶ ଟଙ୍କା) ଯାଏ ପଡ଼ିଥିଲା । ମୁଁ ତ ତାହାଦେଖି ଆବାକାବା ହୋଇଗଲି । ତିନି ପାଉଣ୍ଡ ଦେଇ ଭୁଖା ଉପାସ ରହିଲି । ହୋଟେଲର କିଛି ମତେ ରୁଚୁ ନ ଥାଏ । ଗୋଟିଏ ଜିନିଷ ନିଏ, ତାହା ମତେ ଭଲ ଲାଗିଲା ନାହିଁ ତ ଅନ୍ୟ ଗୋଟିଏ ଫରମାସ କରେ—କିନ୍ତୁ ପଇସା ତ ଦୁଇଟିଯାକ ପାଇଁ ଦେବାକୁ ହୁଏ । ସେଯାଏ ବମ୍ବେଇରୁ ଯାହା ଜଳଖିଆପିଠା ଆଣିଥିଲି ତା'ର ଉପରେ ମୁଁ ଚଳୁଥାଏ କହିଲେ ଠିକ୍ ହେବ ।

ନୂଆ ବସା ହେଲା ସତ୍ୟ, ମାତ୍ର ସେ ବସାଘରେ ମତେ ଛଟପଟ ଲାଗୁଥାଏ । ଘର କଥା ମନେପଡ଼ିଲା । ମୋର ସ୍ନେହ ମୂର୍ତ୍ତିମନ୍ତ ହେଲା । ରାତି ହେଲେ କାନ୍ଦିବା ଆରମ୍ଭ ହୁଏ । ଘରର ନାନା କଥା ମନେପଡ଼ି ନିଦ ଆଉ କାହୁଁ ହୁଅନ୍ତା ? ଏ ଦୁଃଖର କଥା କାହାରି ଆଗରେ କହେ ନାହିଁ । କହି ବା ଲାଭ କଣ ?"

"ପ୍ରଥମ ଅନୁବାଦଟି ଶ୍ରୀ ରାଧାନାଥ ରଥ କରିଥିଲେ । ତାଙ୍କର ଭାଷାର ସୌନ୍ଦର୍ଯ୍ୟ ଓ ସରଳ ପ୍ରବାହ, ଏ ଅନୁବାଦରେ ମୋ ହାତରୁ ବାହାରିବା ସମ୍ଭବ ନୁହଁ । ତା ସାଙ୍ଗକୁ ମୁଁ ଗୁଜୁରାଟୀରେ ନୂଆ ଶିଖାଳି ଓ ମୋର ଓଡ଼ିଆ ଜ୍ଞାନଭଣ୍ଡାର ମଧ୍ୟ କମ । ଗାନ୍ଧିଜୀଙ୍କ ମୂଳ ଗୁଜୁରାଟୀ ଲେଖା ଅତି ସରଳ, ସାଧାରଣ ଗାଉଁଲି ଭାଷାରେ ଲେଖା । କିନ୍ତୁ ତାର ଇଂରାଜୀକୁ ଓଡ଼ିଆ କଲାବେଳକୁ ସେ ସରଳତା ଓ ସେ ଭାବ ରଖିବା କଷ୍ଟକର । ଗାନ୍ଧିଜୀ ଏହି ବିଷୟରେ ଥରେ ଲେଖିଛନ୍ତି, —"ମୁଁ ଶବ୍ଦ ବ୍ୟବହାର ଜଗିରଖି କରିଥାଏ । ମିତବ୍ୟୟ କରିଥାଏ··· ।"

"ମୁଁ ନିଜକୁ ଏତିକ ପ୍ରଶଂସାପତ୍ର ଦେଇପାରେ ଯେ, ମୋର ତୁଣ୍ଡରୁ ବା କଲମରୁ ନ ଭାବିଚିନ୍ତି କିମ୍ବା ନ ମାପି ତଉଲି କୌଣସି କୌଣସି ଶବ୍ଦ ପ୍ରାୟ କେବେ ବାହାରେ ନାହିଁ ।"

୰ ଗୋପବନ୍ଧୁ ଚୌଧୁରୀ ଲେଖିଛନ୍ତି— "ତେଣୁ ତାଙ୍କର (ମହାତ୍ମା ଗାନ୍ଧୀଙ୍କର) ପ୍ରତ୍ୟେକ ଶବ୍ଦଟିର ପଛରେ ବିଶେଷ ଅର୍ଥ ଥାଏ, ଯେପରି ଦୁଇଟି ଅର୍ଥ ବାହାରି ଉଦ୍ଦେଶ୍ୟ ବଣା ନ କରେ ସେଥିପ୍ରତି ସେ ବିଶେଷ ସାବଧାନ ଥାଆନ୍ତି ।"

୰ ଗୋପବନ୍ଧୁ ଚୌଧୁରୀ ଏ ବିଷୟରେ ଅବହିତ ଓ ନିଘାମନ୍ତ୍ର ଓ ଯତ୍ନଶୀଳ, କେବଳ ସେତିକି ନୁହେଁ, ତାଙ୍କର ଇଂରେଜୀ ଓ ଓଡ଼ିଆ ଲେଖାରେ ମଧ୍ୟ ସବୁବେଳେ ସେ ଏହି ନୀତି ଧରିଥାନ୍ତି ଯେ, "ଏକଃ ଶବ୍ଦଃ ସମ୍ୟକ୍ ଜ୍ଞାତଃ ସୁପ୍ରଯୁକ୍ତଃ ସ୍ୱର୍ଗେ ଲୋକେଚ କାମଧୁକ ଭବତି" (ସାହିତ୍ୟ ଦର୍ପଣ) ।

ସେ ମୂଳ ମରାଠୀ ଲେଖାରୁ ଅନୁବାଦଟି ଓଡ଼ିଆରେ କରିଛନ୍ତି । ସେ ମଧ୍ୟ ସରଳ କଥିତ ଭାଷାର ଶବ୍ଦ ବ୍ୟବହାର କରିଛନ୍ତି । ଏଥିରେ ପ୍ରତି ଶବ୍ଦର ଗୋଟିଏ ବିଶିଷ୍ଟ ଅର୍ଥ ଥାଏ ସଂସ୍କୃତ ପରି ବହୁ ଅର୍ଥ ନ ଥାଏ । ଭାଷା ସରଳ, ଲଳିତ, କୋମଳ, ସଂକ୍ଷିପ୍ତ ଓ ଅର୍ଥଗୌରବପୂର୍ଣ୍ଣ । ଅନୁବାଦଟି ଏପରି ସ୍ୱାଭାବିକ ଶୁଭୁଛି ଯେ ପଢ଼ିଲେ ଏହା ଓଡ଼ିଆରେ ଗୋଟିଏ ମୌଳିକ ରଚନା ବୋଲି ଭ୍ରମ ହେବ, ଏହା ସଫଳ ଅନୁବାଦର ଗୋଟିଏ ବିଶିଷ୍ଟ ଗୁଣ । ସଂସ୍କୃତ ଗୋଷ୍ଠୀର ଗୋଟିଏ ଭାରତୀୟ ଭାଷାରୁ ଅନ୍ୟ ଗୋଟିଏ ଭାରତୀୟ ଭାଷାରେ ଅନୁବାଦ କଲେ ଆପେ କେତେକ ସୁବିଧା ହୋଇଥାଏ, କାରଣ କେତେ ତତ୍ସମ ଶବ୍ଦ ଉଭୟ ଭାଷାରେ ଏକା ଅର୍ଥରେ ବ୍ୟବହାର କରାଯାଇଥାଏ ଓ ଉଭୟ ଭାଷାରେ ବାକ୍ୟ ସୃଷ୍ଟି ଏକା ସଂସ୍କୃତ ବ୍ୟାକରଣ ନିୟମକୁ ମାନି ଚଳା ହୋଇଥାଏ । ଇଂରାଜୀରେ ତାହା ଭିନ୍ନ । ଇଂରାଜୀ Syntax ଅନୁସାରେ ଭାରତୀୟ ଭାଷାରେ ବାକ୍ୟ ରଚନା କଲେ ସ୍ଥାନେ ସ୍ଥାନେ ତାହା ଅଶୁଦ୍ଧ

ହୁଏ, ଅର୍ଥର ସୂକ୍ଷ୍ମତା ଫୁଟିବା ଫୁଟିବା ବ କଷ୍ଟକର ହୁଏ । ଗାନ୍ଧିଜୀଙ୍କ 'ଆତ୍ମକଥା'କୁ ଇଂରାଜୀରେ ୮ ମହାଦେବ ଦେଶାଇ କରିଥିଲେ । ତାକୁ ୮ ଗୋପବନ୍ଧୁ ଚୌଧୁରୀଙ୍କ ଓଡ଼ିଆ ଅନୁବାଦ ସଙ୍ଗେ ମିଳାଇ ଦେଖିଲେ ସହଜରେ ଜାଣିହେବ ସେ ଓଡ଼ିଆ ଅନୁବାଦଟି ତାଠାରୁ କେଡ଼େ ଚମତ୍କାର, ସ୍ୱାଭାବିକ ଓ ସରସ । ଆଖିବୁଜି ତହିଁରୁ ଏଠି ସେଠି କିଛି ଉଦ୍ଧୃତ କଲି—

୧—(ପୃ ୩୫) "ଶେଠ (ଦେବଦେବଗ୍ର) କହିଲେ, "କିନ୍ତୁ ମୁଁ ତତେ କହୁଛି ଯେ, ସେଠି ଧର୍ମକୁ ରକ୍ଷି ହେବ ନାହିଁ । ତୁ ଜାଣୁ ତୋର ପିତାଙ୍କ ପାଖରେ ମୋର କିପରି ସମ୍ବନ୍ଧ ଥିଲା । ସେଥିପାଇଁ ମୋ କଥା ତୋର ମାନିବା ଉଚିତ ।"

ମୁଁ ଜବାବ ଦେଲି ଯେ, ଆପଣଙ୍କ ପାଖରେ ସମ୍ବନ୍ଧ ମତେ ଜଣାଅଛି । ଆପଣ ମୋର ମୁରବି ସମାନ । କିନ୍ତୁ ଏ ବିଷୟରେ ମୁଁ ନାଚାର । ମୋର ବିଲାତ ଯିବା ସଂକଳ୍ପ ମୁଁ ବଦଳାଇ ପାରିବି ନାହିଁ । ମୋର ବାପାଙ୍କ ବନ୍ଧୁ ଓ ପରାମର୍ଶଦାତା ଯେଉଁ ପଣ୍ଡିତ ବ୍ରାହ୍ମଣ ଅଛନ୍ତି, ତାଙ୍କର ମତ ଯେ ମୋର ବିଲାତ ଯିବାରେ କିଛି ଦୋଷ ନାହିଁ । ମୋର ମା ଓ ଭାଇଙ୍କର ଅନୁମତି ମଧ୍ୟ ମତେ ମିଳିଛି ।"

୨—(ପୃ ୩୯) "ହୋଟେଲ ଆମ ଦୁହିଁଙ୍କି ମାଡ଼ ମାଡ଼ି ପଡ଼ିଲା ଭଳି ଲାଗିଲା । ହୋଟେଲ ମଧ୍ୟ ମହଙ୍ଗା । ମୋର ମନେଅଛି, ହୋଟେଲ ପାହୁଣା ମୋ ଭାଗରେ ତିନି ପାଉଣ୍ଡ (ପଇଁଚାଳିଶ ଟଙ୍କା) ଯାଏ ପଡ଼ିଥିଲା । ମୁଁ ତ ତାହାଦେଖି ଆବାକାବା ହୋଇଗଲି । ତିନି ପାଉଣ୍ଡ ଦେଇ ଭୁକା ଉପାସ ହେଲି । ହୋଟେଲର ଖିଆ ମତେ ରୁଚୁ ନ ଥାଏ । ଗୋଟିଏ ଜିନିଷ ନିଏ, ତାହା ମତେ ଭଲ ଲାଗିଲା ନାହିଁ ତ ଅନ୍ୟ ଗୋଟିଏ ବରାଦ କରେ—କିନ୍ତୁ ପଇସା ତ ଦୁଇଟିଯାକ ପାଇଁ ଦେବାକୁ ହୁଏ । ସେଯାଏ ବମ୍ବେଇରୁ ଯାହା ଜଳଖିଆପତ୍ର ଆଣିଥିଲି ତା'ର ଉପରେ ମୁଁ ଚଳୁଥାଏ କହିଲେ ଠିକ୍ ହେବ ।

ନୂଆ ବସା ହେଲା ସତ୍ୟ, ମାତ୍ର ସେ ବସାଘରେ ମତେ ଛଟପଟ ଲାଗୁଥାଏ । ଘର କଥା ମନେପଡ଼ିଲା । ମୋର ସ୍ନେହ ମୂର୍ତ୍ତିମନ୍ତ ହେଲା । ରାତି ହେଲେ କାନ୍ଦିବା ଆରମ୍ଭ ହୁଏ । ଘରର ନାନା କଥା ମନେପଡ଼ି ନିଦ ଆଉ କାହୁଁ ହୁଅନ୍ତା ? ଏ ଦୁଃଖର କଥା କାହାକୁ ଆଗରେ କହିହେ ନାହିଁ । କହି ବା ଲାଭ କଣ ?"

ଏହି ଭାଷାରେ ଆମେ ଭାବ ପ୍ରକାଶ କରୁଁ । ଯାହାତଳେ ଗାର ପଡ଼ା ହୋଇଛି, ୰ ଗୋପବନ୍ଧୁ ଚୌଧୁରୀ ତାକୁ ଜାଣି ଜାଣି ବାଛି ବ୍ୟବହାର କରିଛନ୍ତି । ଅଧିକନ୍ତୁ ସେ ଏପରି ଶବ୍ଦଗୁଡ଼ିକ ବାଛି ବାଛି ଛନ୍ଦିଛନ୍ତି ଯେ ତାଙ୍କ ଉଦ୍ଦିଷ୍ଟ ଭାବ ପ୍ରକାଶ ପାଇଁ ସେସବୁ ଶବ୍ଦ ସେଠି ନ ହେଲେ ନ ଚଳେ । ଏଥିରେ ପ୍ରତ୍ୟେକ ଶବ୍ଦ ଅପରିହାର୍ଯ୍ୟ । କାଟିଦେଲେ ବା ବଦଳାଇଦେଲେ ଅର୍ଥ ବଦଳିଯିବ । ଅନୁବାଦଟିର ବିଶିଷ୍ଟ କୃତିତ୍ୱ,—ଏହାକୁ ପଢ଼ିଲେ ଏହା ଗୋଟିଏ ଅନୁବାଦ ବୋଲି ଲାଗେ ନାହିଁ କିମ୍ବା ଭାବ ହୁଏ ନାହିଁ, ଲାଗେ ଯେପରିକି ଏହା ଓଡ଼ିଆ ଭାଷାରେ ରଚିତ ହୋଇଥିବା ଗୋଟିଏ ମୌଳିକ କୃତି । ଅନ୍ୟ କାହା କହିବା କଥାର ଭାଷାନ୍ତରିତ ଅନୁବାଦ ନୁହେଁ, ଲେଖକ ସ୍ୱାଧୀନ ଭାବରେ ନିଜ ମାତୃଭାଷାରେ ଯାହା ଭାବିଛନ୍ତି, ଅବିକଳ ତାହାହିଁ ଲେଖିଛନ୍ତି । ପୃଥିବୀଯାକ ଯେ ଯେଉଁଠି ଅନ୍ୟ ଭାଷାରୁ ଅନୁବାଦ କରନ୍ତି, ନିଜକୃତ ଅନୁବାଦ ଏହିପରି ହେଉ ବୋଲି ସେମାନଙ୍କର ଲକ୍ଷ୍ୟ ଓ କାମନା ଥାଏ, କ୍ୱଚିତ୍ ତାହା ସିଦ୍ଧ ହୁଏ । ଏଠି ସେ ସିଦ୍ଧି ମିଳିଛି ।

ଓଡ଼ିଆ, ଆସାମୀ (ଅହମୀୟା) ଓ ବଙ୍ଗଳା ତିନୋଟି ଭାଷା ନାନା ବିଷୟରେ ଏକାପରି, ତିନିଙ୍କର ଆଈମା ଏକ, ସେ ସଂସ୍କୃତ । ତିନିଙ୍କର ମା' ଏକ—ଅର୍ଦ୍ଧ ମାଗଧୀ । ଏକା ତତ୍ସମ ଶବ୍ଦ ଏ ତିନି ଭାଷାରେ ଅଛି । କିନ୍ତୁ ଏତେ ସାଦୃଶ୍ୟ ଥାଇ ସୁଦ୍ଧା ଏ ତିନୋଟିଯାକ ଭାଷାରେ ପରସ୍ପରଠୁ ଭିନ୍ନେ ହୋଇ ବ୍ୟାକରଣଗତ ନାନା ସୂକ୍ଷ୍ମ ପ୍ରଭେଦ ରହିଛି, ଯେତିକ ଯେ ଗୋଟି ଗୋଟିକର ସ୍ୱତନ୍ତ୍ର ପରିଚୟ ଓ ଯେତିକ ସେମାନଙ୍କ ନିଜ ନିଜ ସ୍ୱତନ୍ତ୍ର ରୂପ । କେଉଁଠି କେଉଁ ଶବ୍ଦମାନଙ୍କର ରୂଢ଼ି ଅର୍ଥରେ ପ୍ରୟୋଗ, କେଉଁଠି କେଉଁ 'ଶବ୍ଦାନ୍ୱୟ' ବା 'ବାକ୍ୟାନ୍ୱୟ', କେଉଁଠି ବିଭକ୍ତି, କାରକ ବା ପ୍ରତ୍ୟୟ—ସଂଯୋଗ ପଦ୍ଧତି ଗୋଟିଏ ଭାଷାର ସ୍ୱତନ୍ତ୍ର ରୂପର ଚିହ୍ନ ହୋଇଥାଏ । ଏ ସ୍ୱତନ୍ତ୍ର ପ୍ରୟୋଗବିଧି ଶହ ଶହ ବର୍ଷର ପାରମ୍ପରିକ ଲୋକ-ଭାଷା ବ୍ୟବହାର ଦ୍ୱାରା ସ୍ୱୀକୃତ, ସୁପରିଚିତ ଓ ସ୍ଥିରୀକୃତ । ସେତକ ବାଦ୍ ଦେଲେ ଭାଷା ହୋଇଯିବ "ବାରଜାତି ତେର ଗୋଳ" ସିନା, ତାର ସ୍ୱତନ୍ତ୍ର ସତ୍ତା ହିଁ ବୁଡ଼ିଯିବ । ଲୋକତୁଣ୍ଡରେ ସେହି ସ୍ୱୀକୃତ ବ୍ୟବହାରକୁ ଅନୁଧ୍ୟାନ କରି ବ୍ୟାକରଣ ତିଆରି ହୁଏ, ଓଡ଼ିଆରେ ମଧ୍ୟ ଏହାହିଁ ସତ୍ୟ । ୰ ଗୋପବନ୍ଧୁ ଚୌଧୁରୀଙ୍କ ଓଡ଼ିଆ ଅନୁବାଦର ଭାଷା, 'ଖାଣ୍ଟି' ଓଡ଼ିଆ ଭାଷାର ଗୋଟିଏ ସୁନ୍ଦର ଉଦାହରଣ । ନିଜର ଚିନ୍ତାରେ କାର୍ଯ୍ୟରେ ପ୍ରତି କ୍ଷେତ୍ରରେ 'ଖାଣ୍ଟି' ହେବା ଓ 'ଖାଣ୍ଟି' ବ୍ୟବହାର କରିବା ତାଙ୍କ ସ୍ୱଭାବଗତ ଥିଲା । ଅନୁବାଦଟିରୁ ଯେଉଁ ସାମାନ୍ୟ ଉଦାହରଣ ଏଠି ଉଦ୍ଧୃତ କରାହୋଇଛି ତହିଁରୁ ତଳେ ଗାର ଦିଆଯାଇଥିବା ଶବ୍ଦ ବା ଖଣ୍ଡବାକ୍ୟଗୁଡ଼ିକ ତାଙ୍କ ଲେଖାରେ ଓଡ଼ିଆ ଭାଷାର ବୈଶିଷ୍ଟ୍ୟତାର କେତୋଟି ନମୁନା ।

ଏହି ଅନୁବାଦଟିକୁ ଟ ମହାଦେବ ଦେଶାଇକୃତ ଇଂରେଜୀ ଅନୁବାଦ ସହିତ ମିଳାଇ ପଢ଼ିଲେ ସ୍ପଷ୍ଟ ଓଡ଼ିଆ ଅନୁବାଦର ଉତ୍କର୍ଷ ଜଣାପଡ଼ିବ । ଇଂରାଜୀ ପୁସ୍ତକଟିର ନାମ "An autobiography or My experiments with truth" । ୧୯୨୭ରେ ଏହାର ପ୍ରଥମ ଭାଗ ବାହାରିଥିଲା, '୨୯ରେ ଦ୍ୱିତୀୟ ଭାଗ । ତାହା ପୂର୍ବରୁ ଏହା ମହାତ୍ମା ଗାନ୍ଧୀଙ୍କ Young India ପତ୍ରିକାରେ ଧାରାବାହିକ ଭାବେ ବାହାରୁଥିଲା । ମୋ ପାଖରେ ଥିବା ପୁସ୍ତକଟି ଏହାର ଏକାଦଶ ସଂସ୍କରଣ, ୧୯୬୯ରେ "ଦ ନବଜୀବନ ଟ୍ରଷ୍ଟ" ପ୍ରକାଶ ସଂସ୍ଥା ଏହାକୁ ପ୍ରକାଶ କରିଥିଲେ । ଏଠାରେ ଉଦ୍ଧୃତ ହୋଇଥିବା ଦ୍ୱିତୀୟ ନମୁନାଟି ହେଉଛି ଇଂରାଜୀ ପୁସ୍ତକର ୬୩ ପୃଷ୍ଠାରେ ମିଳିବ । ମିଳାଇ ଦେଖିଲେ ଜଣାପଡ଼ିବ ଯେ ମରାଠୀରୁ ଓଡ଼ିଆରେ ଟ ଗୋ: ଚ: କରିଥିବା ଅନୁବାଦଟି ଯେପରି ସ୍ୱଚ୍ଛ, ସରଳ, ସ୍ୱାଭାବିକ ଲାଗୁଛି, ଇଂରାଜୀଟି ତାହା ନୁହେଁ ଓ ଦ୍ୱିତୀୟରେ, —ଇଂରାଜୀ ଅନୁବାଦଟି ଏହାଠାରୁ ଟିକିଏ ସଂକ୍ଷିପ୍ତତର ଓ କୃତ୍ରିମତରେ, ତାହା ଓଡ଼ିଆ ଅନୁବାଦ ପରି ହୃଦୟଗ୍ରାହୀ ହୋଇପାରି ନାହିଁ ।

## ପଞ୍ଚାବନ

### କଟକରେ ଓଡ଼ିଆ ସାହି ଆଶ୍ରମ (ଗୁଣନିଧି ଭବନ)

ଟ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀ ୧୯୫'ରେ ବରୀ ଆଶ୍ରମ ଛାଡ଼ି ବାହାରିଆସିବା ପରେ ସେମାନଙ୍କର ସ୍ଥାୟୀ ରହଣି ସ୍ଥାନ ହେଲା କଟକ ଓଡ଼ିଆ ସାହିରେ ଥିବା 'ଓଡ଼ିଆ ସାହି ଆଶ୍ରମ' ଯାହାର ନାମ ରହିଛି 'ଗୁଣନିଧି ଭବନ' । ସେହି ସମୟରୁ ସେଠାରେ ଭୂଦାନ ଯଜ୍ଞ ସମିତିର ପ୍ରାଦେଶିକ କାର୍ଯ୍ୟାଳୟ ରହି ଆସିଛି । ଟ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀ ଗସ୍ତରେ ନ ଥିଲାବେଳେ ସେଠାରେ ରହୁଥିଲେ ଓ ସେହି ସ୍ଥାନରେ ୧୯୫୮ରେ ତାଙ୍କର ମୃତ୍ୟୁ ହେଲା ।

ଯେଉଁ ଭୂମି ଉପରେ ଘରଟି ତୋଳା ହୋଇଛି ସେଇଟି ଥିଲା ଟ ଗୁଣନିଧି ମହାନ୍ତିଙ୍କର ପୈତୃକ ସମ୍ପତ୍ତି । ୧୯୨୧ରେ ସେ ସରକାରୀ ପି. ଡବ୍ଲୁ. ଡି. ଓଭରସିୟରର ଚାକିରିରୁ ଇସ୍ତଫା ଦେଇ କଂଗ୍ରେସରେ ଯୋଗ ଦେଇଥିଲେ । ସେ

ଜଣେ ଆତ୍ମତ୍ୟାଗୀ, ନିଷ୍ଠାପର କଂଗ୍ରେସ କର୍ମୀ ଥିଲେ ଓ ତାଙ୍କ କର୍ମୀ ଜୀବନର ଆରମ୍ଭରୁ ୰ ଗୋପବାବୁଙ୍କର ଜଣେ ଘନିଷ୍ଠ ସହକର୍ମୀ ଥିଲେ । ସେ ମୃତଦାର ଓ ନିଃସନ୍ତାନ, ଦେଶସେବା ହିଁ ତାଙ୍କ ଜୀବନର ଏକମାତ୍ର ବ୍ରତ ଥିଲା । ୧୯୩୬ରେ ଓଡ଼ିଶାରେ ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥିବାବେଳେ ସେହି ଜମି ଉପରେ ଗୋଟିଏ ସ୍କୁଲଘର ଥିଲା ଓ କଂଗ୍ରେସ ସରକାରଙ୍କ ସହାୟତାରେ ସେଠି ୧୯୪୧ ପର୍ଯ୍ୟନ୍ତ କଂଗ୍ରେସର ଗ୍ରାମୋଦ୍‌ଯୋଗ କାର୍ଯ୍ୟର ଅଙ୍ଗୀଭୂତ ସାବୁନ୍ ତିଆରି, କାଗଜ ତିଆରି ଆଦି କାର୍ଯ୍ୟ ସେଠି ହେଉଥିଲା । ୰ ଗୁଣନିଧି ବାବୁ ତାର ତତ୍ତ୍ୱାବଧାନ କରୁଥିଲେ । ସେହି ଘରଡିହ ଜମିଟିକୁ ୰ ଗୁଣନିଧିବାବୁ ଗୋଟିଏ ଟ୍ରଷ୍ଟ୍‌କୁ ଦାନ କରିଦେଲେ, ଟ୍ରଷ୍ଟୀ ଥିଲେ ୰ ଗୋପବାବୁ ଓ ଭୁବନାନନ୍ଦ ଦାସ । ଟ୍ରଷ୍ଟୀ ଦୁହେଁ ରେଜିଷ୍ଟର୍ଡ଼ ସଂସ୍ଥା 'ଉତ୍କଳ ଖଦୀମଣ୍ଡଳ' କମିଟିକୁ ଦାନ କରିଦେଲେ । '୯୫୬ରେ ସେଠି ଆଉରି ଘର ତୋଳିବାକୁ ଗୋପବାବୁ, ଆଚାର୍ଯ୍ୟ ମହାଶୟ, ଶ୍ରୀମତୀ ରମା ଦେବୀ ଆଦି ଚନ୍ଦା ସଂଗ୍ରହ କଲେ, କେତେ ବଖରା ଘର ତୋଳା ହେଲା ଓ ସେଠି ଖଦୀ ସରଞ୍ଜାମ ତିଆରି ହେବା ବ୍ୟବସ୍ଥା ହେଲା । ଅରଟ, ତୁଳାଭିଣା ଆଦି ସେଠି ତିଆରି ହୋଇ ଅଳ୍ପ ମୂଲ୍ୟରେ ଓଡ଼ିଶାର ସବୁଆଡ଼େ ବଣ୍ଟା କରାଗଲା ।

୧୯୫୦ରୁ ସେହି ଘର ହେଲା ଗୋପବାବୁ, ରମା ଦେବୀ ଆଦିଙ୍କର ନିବାସସ୍ଥଳ ।

୧୯୫୭ରୁ ଏହି ଘରେ ଉତ୍କଳ ପ୍ରାଦେଶିକ ସର୍ବୋଦୟ ମଣ୍ଡଳର କାର୍ଯ୍ୟାଳୟ ରହି ଆସିଛି । '୯୫ ରୁ ଏଠି ଭୂଦାନ କାର୍ଯ୍ୟ, ରଚନାତ୍ମକ କାର୍ଯ୍ୟ ଓ ସର୍ବୋଦୟ ବିଷୟରେ ନାନା ସଭା ଓ ଆଲୋଚନା ହୋଇ ଆସୁଛି । ଏ ଘରେ କସ୍ତୁରବା ଗାନ୍ଧୀନିଧି, ହରିଦାସପୁର ସେବା ସମିତି ଓ ଗଙ୍ଗାବେନ୍ ଟ୍ରଷ୍ଟ୍‌ର ଶାଖା ଅଫିସ୍ ଅଛି । ସର୍ବୋଦୟ ରିଲିଫ୍ କମିଟି, ଆଚାର୍ଯ୍ୟ ହରିହର ଦାସ ମେମୋରିଏଲ୍ ଟ୍ରଷ୍ଟ୍, "ପିପୁଲ୍‌ସ ୟୁନିଅନ୍ ଅଫ୍ ସିଭିଲ୍ ଲିବର୍ଟିସ୍" ସଂସ୍ଥାମାନଙ୍କ ଅଫିସ୍ ମଧ୍ୟ ଏହିଠାରେ ଅଛି ।

ଶ୍ରୀମତୀ ରମା ଦେବୀ, ଶ୍ରୀ ଶରତ୍ ଚନ୍ଦ୍ର ମହାରଣା, ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ଓ ଅନେକ ପୁରୁଷକର୍ମୀ ଓ ନାରୀକର୍ମୀ କଟକରେ ଥିଲାବେଳେ ଏଇଠି ଥାଆନ୍ତି । ଶ୍ରୀମତୀ ରମା ଦେବୀ ଏଠି ଥିଲାବେଳେ ବେଳେବେଳେ କେହି ନିରାଶ୍ରୟା ବାଳିକା ବା ନାରୀ ଆଶ୍ରୟ ପାଇଁ ଏଠି ପହଞ୍ଚିଗଲେ ଏଠି ତାଙ୍କୁ ଆଶ୍ରୟ ଦିଆଯାଏ ।

ଏଠି ଗୋଟିଏ ସର୍ବୋଦୟ 'ଆଶ୍ରମ'ର ନିୟମ ଓ ନିର୍ଘଣ୍ଟ ଅନୁସାରେ ଦୈନନ୍ଦିନ କାର୍ଯ୍ୟ କରାଯାଏ, ଯଥା—

ଭୋର ୪ଟା—ଶଯ୍ୟାତ୍ୟାଗ । ୪॥ଟା—ପ୍ରାର୍ଥନା ସଭା । ୫ରୁ ୭—ବ୍ୟକ୍ତିଗତ ଓ ସମୂହ ସଫେଇ, ସ୍ନାନାଦି ନିତ୍ୟକର୍ମ । ୭॥—ଜଳଖିଆ । ତାହାପରେ—କିଛି

ସମସ୍ତ ବଗିଚ୍ଚ ଓ କାର୍ଯ୍ୟାଳୟ କାମ । ବାହାରେ ସର୍ବୋଦୟ ବିଚାର ପ୍ରଚାର, ବେଳେବେଳେ ଡାକ୍ତରଖାନା ଯାଇ ରୋଗୀ-ସେବା । କୂଳ ବୃଦ୍ଧ ବୃଦ୍ଧା ସଂଗ୍ରହ ପାଇଁ ଉଦ୍ୟମ, ଇତ୍ୟାଦି... । ୧୧ଟାରୁ ୧—ମଧ୍ୟାହ୍ନ ଭୋଜନ । ତାହାପରେ ୩ଟା ପର୍ଯ୍ୟନ୍ତ—ବିଶ୍ରାମ, ଅଧ୍ୟୟନ, ସୂତାକଟା । ୬ଟା—ସାନ୍ଧ୍ୟ ପ୍ରାର୍ଥନା ସଭା । ସନ୍ଧ୍ୟା ୭ରୁ ୯—କାର୍ଯ୍ୟର ଆଲୋଚନା, ଆସନ୍ତା ଦିନ ପାଇଁ ଯୋଜନା, ଅଧ୍ୟୟନ, ଭୂଦାନ ଅଫିସ୍ କାର୍ଯ୍ୟ । ରାତି ୧୦ଟା—ଶୟନ ।

ଏଠି ପ୍ରାର୍ଥନାବେଳେ 'ଆଶ୍ରମ ଭଜନାବଳୀ'ରୁ ଆବୃତ୍ତି ହୁଏ । ଈଶୋପନିଷଦ୍‌ର ଓଡ଼ିଆ ଅନୁବାଦ, ଭଗବଦ୍ ଗୀତାରୁ 'ସ୍ଥିତପ୍ରଜ୍ଞ ଲକ୍ଷଣ', କେତୋ ଶ୍ଳୋକ, 'ସର୍ବଧର୍ମ ପ୍ରାର୍ଥନା' ଆବୃତ୍ତି କରାଯାଏ ଓ ବିନୋବାଙ୍କ 'ଗୀତା ପ୍ରବଚନ'ରୁ କିଛି କିଛି ଅଂଶ ପାଠ କରାଯାଏ । ଏଠି ଖାଦ୍ୟ ନିରାମିଷ, ଅତି ସରଳ ଓ ସାଧାସିଧା । କେହି ରୋଗୀ ଥିଲେ ତାଙ୍କ ପାଇଁ ପଥ୍ୟ ରନ୍ଧା ହୁଏ । ଏଠି ଚାକର ପୂଝାରି ନ ଥାନ୍ତି, ସବୁ କାର୍ଯ୍ୟ ନିଜ ହାତରେ କରିବାକୁ ପଡ଼େ ।

ଆଶ୍ରମର କୌଣସି ସ୍ଥିର ପାଣ୍ଠି ନ ଥାଏ କି ଆଶ୍ରମ ପାଇଁ ସରକାରୀ ସାହାଯ୍ୟ ନିଆଯାଏ ନାହିଁ, ସବୁ ଖର୍ଚ୍ଚ ଗୃହୀମାନଙ୍କଠାରୁ ତୁଳାଯାଏ ।

କାଳକ୍ରମେ ଘରଗୁଡ଼ିକର ଟିଣଛାତ ଖରାପ ହୋଇଗଲା । ତେଣୁ ଚୌଧୁରୀଙ୍କର ମହାରାଜ ଓ ଶ୍ରୀମତୀ ମଣିବେନ୍ ନାଣାବଟୀ ଘରଗୁଡ଼ିକର ଛାତ ବଦଳାଇଦେଲେ ଓ ଘରର ସୁରକ୍ଷା ପାଇଁ ଜଣେ ଟ୍ରଷ୍ଟୀ ନିଯୁକ୍ତ କଲେ ।

୬ ଗୋପବନ୍ଧୁ ଚୌଧୁରୀଙ୍କ ପରେ ଏ ଘରେ ୬ ଗୁଣନିଧି ମହାନ୍ତି, ୬ ଈଶ୍ୱରଲାଲ ବ୍ୟାସ୍, ୬ ଆଚାର୍ଯ୍ୟ ହରିହର, ୬ କୃପାସିନ୍ଧୁ ହୋତା ସେମାନଙ୍କ ଅନ୍ତିମ ଜୀବନ ବିତାଇଥିଲେ । ୬ ବ୍ୟାସ୍‌ଙ୍କ ମୃତ୍ୟୁ ଡାକ୍ତରଖାନାରେ ହେଲା, ଅନ୍ୟମାନଙ୍କର ଏହି ଘରେ ।

## ଛପନ

### ୬ ଗୋପବନ୍ଧୁ ଚୌଧୁରୀଙ୍କର କେତେକ ସହକର୍ମୀ—

### ୬ ଆଚାର୍ଯ୍ୟ ହରିହର ଦାସ

ଦେଶପୂଜ୍ୟ ପୁଣ୍ୟାତ୍ମା ଆଚାର୍ଯ୍ୟ ହରିହର ଦାସ ଆଜୀବନ ଦେଶାତ୍ମବୋଧ, ମାନବପ୍ରୀତି ଓ ସମାଜସେବାର ପରାକାଷ୍ଠା ଦେଖାଇ ତେସ୍ତରିବର୍ଷ ଅତିକ୍ରମ କରି ୧୯୭୧ ଫେବୃଆରୀ ୧୧ ତାରିଖ ଦିନ ଇହଲୀଳା ସମ୍ବରଣ କଲେ । ପୁଣ୍ୟଶ୍ଳୋକ

ସତ୍ୟବାଦୀ ପାଖ ଶ୍ରୀ ରାମଚନ୍ଦ୍ରପୁର ଶାସନରେ ସେ ଗତ ଶତାବ୍ଦୀରେ ୧୮୭୮ ଫେବୃଆରୀ ୧ ତାରିଖରେ ଗୋଟିଏ ସମ୍ଭ୍ରାନ୍ତ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିଲେ । ସେ ବୟସରେ ଉତ୍କଳମଣି ୰ ପଣ୍ଡିତ ଗୋପବନ୍ଧୁ ଦାସଙ୍କଠାରୁ ମାତ୍ର ୪ ମାସ ସାନ ଓ ୰ ଗୋପବନ୍ଧୁ ଚୌଧୁରୀଙ୍କଠାରୁ ୧୭ ବର୍ଷ ୭ ମାସ ବଡ଼ । ତାଙ୍କ ପିତା ମହାଦେବ ବ୍ରହ୍ମା ଓ ମାତା ୰ ତ୍ରିବେଣୀ ଦେବୀ । ସେ ଅଜାତଶତ୍ରୁ ଥିଲେ, ସାତ୍ତ୍ୱିକତା, ନିଃସ୍ୱାର୍ଥତା ଓ ସେବାର ପ୍ରତିମୂର୍ତ୍ତି ଥିଲେ, ଭଗବଦ୍‌ଗୀତା ବର୍ଣ୍ଣିତ ସ୍ଥିତପ୍ରଜ୍ଞ ଓ କର୍ମଯୋଗୀ ଥିଲେ । ଜାତି-ଧର୍ମ-ଗୋଷ୍ଠୀ ନିର୍ବିଶେଷରେ ଅପରପ୍ରତି ଅକୃତ୍ରିମ ସ୍ନେହ, ଅପରର ଦୁଃଖବେଳେ ଗଭୀର ସହାନୁଭୂତି ଓ ବିକାରଶୂନ୍ୟ ହୋଇ ଅକୁଣ୍ଠିତ ଅକ୍ଳାନ୍ତ ଭାବେ ରୋଗୀର ସେବା-ଶୁଶ୍ରୂଷା କରିବା ତାଙ୍କର ସ୍ୱାଭାବିକ ପ୍ରବୃତ୍ତି ଥିଲା । ତାଙ୍କର 'ମୁଁ' ବା 'ମୋର' ବୋଲି କୌଣସି ପ୍ରକାରର ସ୍ୱାର୍ଥ-ଚେତନା ହିଁ ନ ଥିଲା, ଯେପରିକି ସଂସାରରେ ସବୁ ତାଙ୍କର, ସମସ୍ତେ ତାଙ୍କର । ସେ ଭଗବତ୍‌ପ୍ରାଣ ଥିଲେ, ସମ୍ପୂର୍ଣ୍ଣରୂପେ ପରମେଶ୍ୱରଙ୍କୁ ନିବେଦିତ ଥିଲେ । ତାଙ୍କର ଭଗବତ୍ ଉପଲବ୍ଧି ସାଧନା ଆପେ ଆପେ ଅବିରତ ଚାଲିଥିଲା ତାଙ୍କ ଜୀବନଚର୍ଯ୍ୟା ଭିତରେ ଓ ତାଙ୍କ କାର୍ଯ୍ୟ ମାଧ୍ୟମରେ ଓ ତା'ର ତେଜ ଫୁଟିଥିଲା ତାଙ୍କର ଅସାମାନ୍ୟ ଋଷିସୁଲଭ ବ୍ୟକ୍ତିତ୍ୱରେ । ସେ ନିଜେ ସର୍ବଧର୍ମ ସମନ୍ୱୟ ସାଧନ କରିଥିଲେ, ପଇତା ଛାଡ଼ିଥିଲେ, ଜାତିଭେଦ ମାନୁ ନ ଥିଲେ, କିନ୍ତୁ ସେ ଶାସ୍ତ୍ରପୁରାଣରେ ମହାଜ୍ଞାନୀ ଥିଲେ, ସବୁ ମନ୍ତ୍ର ପଢ଼ି ସବୁ କ୍ରିୟା ଅନୁଷ୍ଠାନ କରୁଥିଲେ, ହିନ୍ଦୁ ଦେବଦେବୀଙ୍କ ପୂଜା କରୁଥିଲେ, କେତେକ ହରିଜନ-ସବର୍ଣ୍ଣ ବିବାହରେ ପୌରହିତ୍ୟ କରିଥିଲେ । ସେ କହୁଥିଲେ "ମୋ ଭିତରେ ସବୁ ଧର୍ମ ଅଛି ।" ସେ ଅତ୍ୟନ୍ତ ସରଳ ଓ ନିରାଡମ୍ବର ଭାବେ ଚଳୁଥିଲେ, କିନ୍ତୁ ଚରିତ୍ରବଳ ଓ ନୀତିମତ୍ତାରେ ଆଦର୍ଶ ଥିଲେ । ଅନ୍ୟମାନଙ୍କୁ ତାଙ୍କ ଉପଦେଶ ଥିଲା—"ଭଲ ମଣିଷ ହୁଅ, ଦେଶ କାମ କର ।" ସେ ନିଷ୍ଠାପର ଗାନ୍ଧୀବାଦୀ ଥିଲେ, ମହାନ୍ ସ୍ୱାଧୀନତା-ସଂଗ୍ରାମୀ, ମହାନ ସର୍ବୋଦୟ ନେତା ଓ ଭୂଦାନ ନେତା ଥିଲେ । ସେ ୰ ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ଅନ୍ତରଙ୍ଗ ସହକର୍ମୀ ଥିଲେ ଓ ୰ଗୋପବନ୍ଧୁ ଚୌଧୁରୀଙ୍କ ଘନିଷ୍ଠ ସହଯୋଗୀ ଥିଲେ । ୰ ଗୋପବାବୁ ତାଙ୍କୁ ବଡ଼ଭାଇ ବୋଲି ମାନୁଥିଲେ ।

୰ 'ଆଚାର୍ଯ୍ୟ ମହାଶୟ' (ଏହି ନାମରେ ସେ ଓଡ଼ିଶାରେ ସର୍ବତ୍ର ପରିଚିତ ) ପାଞ୍ଚବର୍ଷ ବୟସରେ ମାତୃହୀନ ହେଲେ । ସେ ହାଇସ୍କୁଲର ଛାତ୍ର ଥିଲାବେଳେ ତାଙ୍କର ବିବାହ ହେଲା, ତାଙ୍କ ସ୍ତ୍ରୀ ବାଳିକା ଅବସ୍ଥାରେ ହିଁ ମରିଗଲେ । ତାପରେ ସେ ତାଙ୍କ ସ୍ତ୍ରୀଙ୍କ ସାନ ଭଉଣୀକୁ ବିଭା ହେଲେ, କିନ୍ତୁ ସେ ସ୍କୁଲ ପଢ଼ାସାରି କଲେଜରେ ଏଫ୍.ଏ. ପଢ଼ୁଥିବା ବେଳେ ତାଙ୍କର ସେ ସ୍ତ୍ରୀ ମଧ୍ୟ ନିଃସନ୍ତାନ ଅବସ୍ଥାରେ ମରିଗଲେ । ଆଉ ସେ ବିଭା ହେଲେ ନାହିଁ ।

ସେ ନିଜ ଗ୍ରାମର 'ଭଣ୍ଡାରିକୁଳର ସ୍କୁଲ'ରେ ପଢ଼ିଲା ଦିନୁଁ କୃତୀ ଛାତ୍ର, ପ୍ରତି ଶ୍ରେଣୀରୁ ପ୍ରଥମ ସ୍ଥାନ ପାଉଥିଲେ, ସେତେବେଳେ ଅଲଗା ସଂସ୍କୃତ ପାଠ ବି ପଢ଼ୁଥିଲେ। ଭଣ୍ଡାରିକୁଳର ସ୍କୁଲର ବୃତ୍ତି ପରୀକ୍ଷା ଦେଇ ବୃତ୍ତି ପାଇ ପୁରୀ ଜିଲ୍ଲା ସ୍କୁଲରେ ପଢ଼ିଲେ, ସେଠି ବି ପ୍ରତ୍ୟେକ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇଲେ, ଖେଳରେ ବି ପାରଦର୍ଶିତା ଦେଖାଇଲେ। ସେ ୧୯୦୧ରେ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ବୃତ୍ତି ପାଇ ପାଶ୍ କଲେ ଓ କଟକ ରେଭେନ୍ସା କଲେଜରେ ପଢ଼ି ଏଫ୍.ଏ. ପାଶ୍ କଲେ। ଏଫ୍.ଏ. ପଢ଼ୁଥିଲାବେଳେ ତାଙ୍କର ଏଡ଼େ ବଦ୍‌ବସ୍ତ ଥିଲା ଯେ ସେ ନିଜ ସହପାଠୀ-ମାନଙ୍କ ଭିତରୁ କେତେଜଣଙ୍କୁ ଟିଉସନ୍ କରୁଥିଲେ। ତନ୍ମଧ୍ୟରୁ ଜଣେ ଥିଲେ ଏମ୍. ଏ. ଆହ୍ୱାଦ୍, ପରେ ଡେପୁଟି ମାଜିଷ୍ଟ୍ରେଟ୍ ହେଲେ। ଏଫ୍. ଏ. ପରେ ପଣ୍ଡିତ ଆଚାର୍ଯ୍ୟ ମହାଶୟ କଲିକତା ଯାଇ ଆଇନ୍ (ଲ') ପଢ଼ିଲେ, ବି. ଏଲ୍. ପାଶ୍ କଲେ, ବି. ଏଲ୍. ପଢ଼ା ସରିବା ପୂର୍ବରୁ ତାକୁ ଛାଡ଼ିଦେଇ ଫେରି ଆସିଲେ।

ସେ ପୁରୀ ହାଇସ୍କୁଲରେ ଅସ୍ଥାୟୀଭାବେ କିଛିଦିନ ଶିକ୍ଷକ ହୋଇଥିଲେ। ତାପରେ ସେ ନୀଳଗିରିର ଗଡ଼ଜାତ ରାଜାଙ୍କର ହାଇସ୍କୁଲରେ ନୀଳଗିରିରେ ୧୨ ବର୍ଷ ପର୍ଯ୍ୟନ୍ତ ଶିକ୍ଷକ ହୋଇ ରହିଲେ। ହେଡ୍‌ମାଷ୍ଟର ଥିଲେ ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଦାସ। କିନ୍ତୁ ଇଂରେଜ ସରକାରଙ୍କ ପଲିଟିକାଲ୍ ଏଜେଣ୍ଟଙ୍କ ପରାମର୍ଶରେ ରାଜା ହାଇସ୍କୁଲ ଉଠାଇଦେଇ ତାକୁ ମାଇନର ସ୍କୁଲ କରିଦେବାରୁ ସେଠୁ ଆଚାର୍ଯ୍ୟ ମହାଶୟ ଚାଲି ଆସିଲେ ଓ କଟକରେ ବେସରକାରୀ ହାଇସ୍କୁଲ ପ୍ୟାରୀମୋହନ ଏକାଡେମିରେ ପାଞ୍ଚବର୍ଷଯାକେ ଶିକ୍ଷକତା କଲେ। ୧୯୧୨ରେ ସତ୍ୟବାଦୀରେ ହାଇସ୍କୁଲ ହେଲା। ସେହିବର୍ଷ ଶେଷଆଡ଼କୁ ଉତ୍କଳମଣିଙ୍କ ଡକରା ପାଇ ଆଚାର୍ଯ୍ୟ ମହାଶୟ ସେହି ସ୍କୁଲରେ ଶିକ୍ଷକ ହୋଇ ଯୋଗଦେଲେ ଓ ସେଠି ରହି ଛାତ୍ରାବାସର ଦାୟିତ୍ୱ ନେଲେ। ସେଇଠି ତାଙ୍କୁ 'ଆଚାର୍ଯ୍ୟ' ବୋଲି କୁହାଗଲା ଓ ସେହି ସମୟରୁ ସମ୍ମାନପ୍ରକାରେ ତାଙ୍କ ନାମ ଆଦ୍ୟରେ ସେ ପଦଟି ରହି ଆସିଛି। ସେହି ଗୋଟିଏ ସ୍କୁଲରେ ସେ ପ୍ରାୟ ୧୨ ବର୍ଷ ପର୍ଯ୍ୟନ୍ତ ଶିକ୍ଷକ ହୋଇ ରହିଲେ। ୧୯୨୧ରେ ସତ୍ୟବାଦୀ ହାଇସ୍କୁଲକୁ "ଜାତୀୟ ହାଇସ୍କୁଲ"ରେ ପରିଣତ କରାଯାଇଥିଲା ଓ ତହିଁରେ ପୁଣି ସେ ଶିକ୍ଷକ ହୋଇ ରହିଥିଲେ। ୧୯୨୦ରୁ ଉତ୍କଳମଣି ଗୋପବନ୍ଧୁ ଦାସ ଓ ଆଚାର୍ଯ୍ୟ ମହାଶୟଙ୍କ ସମେତ ଉତ୍କଳମଣିଙ୍କ ସହକର୍ମୀମାନେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସରେ ଯୋଗ ଦେଇଥିଲେ। ୧୯୨୪ରେ ଆଚାର୍ଯ୍ୟ ମହାଶୟ ପୁରୀ ଉଠିଗଲେ।

ତାଙ୍କ ଦୀର୍ଘ ୧୭।୧୮ ବର୍ଷ ଶିକ୍ଷକ ଜୀବନରେ ସର୍ବଦା ସେ ଆଦର୍ଶ ଶିକ୍ଷକ ଥିଲେ। ସେ ସମସ୍ତଙ୍କଠୁଁ ଅଧିକ ପରିଶ୍ରମ କରୁଥିଲେ। ସେ ଗଣିତବିଦ୍ୟାରେ ବିଚକ୍ଷଣ ଧୁରନ୍ଧର ଥିଲେ ଓ ଜ୍ୟାମିତି, ଗଣିତ, ବୀଜଗଣିତ ଆଦି ଖୁବ୍ ଭଲ ପଢ଼ାଉଥିଲେ।

ସତ୍ୟବାଦୀ ସ୍କୁଲରେ ଶିକ୍ଷକ ଥିଲାବେଳେ ସେ 'Child's easy first grammar' ବୋଲି ଉପାଦେୟ ପୁସ୍ତକଟିଏ ଲେଖିଥିଲେ ଓ ଓଡ଼ିଶାରେ ବହୁବର୍ଷ ପର୍ଯ୍ୟନ୍ତ ପିଲମାନେ ତାକୁ ଆଗ୍ରହ ଓ ଯତ୍ନ ସହକାରେ ପଢ଼ୁଥିଲେ । ଶିକ୍ଷକ ଥିଲାବେଳେ ସେ ଗୋଟି ଗୋଟି କରି ପ୍ରତ୍ୟେକ ପିଲ ସଙ୍ଗେ ବ୍ୟକ୍ତିଗତ ସମ୍ପର୍କ ରଖିଥିଲେ, ପାଠରେ ବା ଅନ୍ୟ ପ୍ରକାରେ ତାର କି କି ଅସୁବିଧା ହେଉଛି ତାକୁ ପଚାରି ଓ ତା ଘରକୁ ଯାଇ ସେସବୁ ବୁଝୁଥିଲେ, ତାକୁ ଅଭୟ ଓ ସାହସ ଦେଉଥିଲେ ଓ ବାଟ ବତାଉଥିଲେ । କଟକ ପ୍ୟାରୀମୋହନ ଏକାଡେମୀରେ ଥିଲାବେଳେ ବି ସେ ସେଇଆ କରୁଥିଲେ । ସତ୍ୟବାଦୀ ସ୍କୁଲରେ ଅନେକ ପିଲ ଆବାସିକ ହୋଇ ରହୁଥିଲେ, ସେ ଆପଣା ବାପ ମା ପରି ସେମାନଙ୍କୁ ପାଳୁଥିଲେ, ରୋଗ ହେଲେ ରାତି ରାତି ଜଗୁଥିଲେ, ଅସୁଖ ବେଳେ ନିଜ ହାତରେ କାଛୁ, ଘା, ଝାଡ଼ା, ବାନ୍ତି, ଧୋଉଥିଲେ, ତାଙ୍କ ସେବା-ଶୁଶ୍ରୂଷା କରୁଥିଲେ ଓ ସେମାନଙ୍କୁ ହୋମିଓପ୍ୟାଥି ଔଷଧ ଦେଉଥିଲେ । ପ୍ରତ୍ୟେକ ପିଲର ଦିନ ଦିନକର ପରିବର୍ତ୍ତନ ଉପରେ ସେ ନଜର ରଖୁଥିଲେ ଓ ସେମାନଙ୍କ ଚରିତ୍ର ଗଠନ ପ୍ରତି ବିଶେଷ ଧ୍ୟାନ ଦେଉଥିଲେ । ପିଲଙ୍କର ସେ ଅତ୍ୟନ୍ତ ସ୍ନେହଭାଜନ ଓ ବିଶ୍ୱାସଭାଜନ ହୋଇଥିଲେ । ସେ ପିଲମାନଙ୍କୁ କେବେ ରାଗି କଥା କହନ୍ତି ନାହିଁ, ତାଙ୍କର ସବୁଠୁ ବଡ଼ ଗାଳି "ଅସଭ୍ୟ !" ସେ ନିଜେ ବହୁପ୍ରକାର ସମାଜସେବା କରି ଆସିଥିଲେ ଓ କରୁଥିଲେ, ତାଙ୍କ ଜୀବନ ହିଁ ସେବା ପାଇଁ ଉତ୍ସର୍ଗୀକୃତ, ସେ ପିଲମାନଙ୍କୁ ମେଳାଇ ସଂଗଠିତ କରି ସଙ୍ଗରେ ନେଇ ନାନା ସମାଜସେବା କାର୍ଯ୍ୟ କରୁଥିଲେ ଓ ସେମାନଙ୍କ ଦ୍ୱାରା କରାଉଥିଲେ, ଯେପରି ଦୀନଦୁଃଖୀ ସେବା, ଗାଁ ଗାଁ ବୁଲି କଲେରାରୋଗୀଙ୍କ ସେବା, ଗାଁ ସଫେଇ, ଶବଦାହ, ଔଷଧ ବିତରଣ, ସେବା ଶୁଶ୍ରୂଷା, ବନ୍ୟାପ୍ରପୀଡ଼ିତ ଦୁର୍ଗତଙ୍କ ସେବା, ନିରକ୍ଷରତା ଦୂରୀକରଣ ଓ ଛୁଆଁ ଅଛୁଆଁ ଜାତି ଜାତି ଭେଦ ଦୂରୀକରଣ, ନିଶା ନିବାରଣ, କୁସଂସ୍କାର ଦୂରୀକରଣ, ଦେଶାତ୍ମବୋଧ, ସ୍ୱଦେଶୀ, ଶ୍ରମମର୍ଯ୍ୟାଦା, ଶ୍ରମିକର ମର୍ଯ୍ୟାଦା ଆଦି ପ୍ରଚାର ଇତ୍ୟାଦି । କେଉଁଠି କିଛି ବିପଦ ପଡ଼ିବାର ଖବର ମିଳିଲେ ଛାତ୍ରମାନଙ୍କୁ ନେଇ ସେଠି ସେ ପହଞ୍ଚି ଯାଉଥିଲେ । ସେ ପିଲମାନଙ୍କୁ ଆଦର୍ଶ ମନୁଷ୍ୟ କରି ଗଢ଼ୁଥିଲେ । ପିଲଏ ତାଙ୍କୁ ଦେଖି ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ସୁଧୁରୁଥିଲେ, ଶିଖୁଥିଲେ, ସେମାନଙ୍କର ବିକାଶ ହେଉଥିଲା ।

ସେ ରାତି ୪ଟା ବେଳେ ଉଠନ୍ତି । କଟକରେ ଶିକ୍ଷକ ଥିଲାବେଳେ ସେ ରାତି ୪ଟାରୁ ସକାଳ ୭ଟା ଯାଏ ପିଲଙ୍କ ଖାତା ସଂଶୋଧନ କରୁଥିଲେ ଓ ତା'ପରେ ସେମାନଙ୍କ ଅସୁବିଧା ବୁଝିବାକୁ ସେମାନଙ୍କ ଘରକୁ ବୁଲି ଯାଉଥିଲେ । ସେଠି ଗରିବ ଛାତ୍ରଙ୍କ ଅସୁବିଧା ଦୂର କରିବାକୁ ସେ ଗୋଟିଏ 'ଶସ୍ତା ମେସ୍' ଚଳାଇଲେ, ଖାଦ୍ୟ ଖାଲି ଭାତ ଡାଲି । ପିଲଏ ଭୋରରୁ ଉଠନ୍ତି, ପ୍ରାର୍ଥନା କରନ୍ତି, ତାପରେ କୁସ୍ତି

କସରତ୍ ଓ ବାଡ଼ିଖେଳ କରନ୍ତି । ଏକାଡେମି ସ୍କୁଲ୍‌ରେ ସେ ଗୋଟିଏ 'ସ୍ୱେଚ୍ଛାସେବକ ବାହିନୀ' ଗଢ଼ିଲେ, ପିଲମାନେ ଲୋକଙ୍କ ବିପଦଆପଦ ବେଳେ ଯାଇ ଠିଆ ହୁଅନ୍ତି ଓ ସାହାଯ୍ୟ କାମ କରନ୍ତି ।

ସେ ଜଣେ ପୁରୀ ଜିଲ୍ଲାସ୍କୁଲରେ ଛାତ୍ର ଥିଲାବେଳୁ ସେବାକାର୍ଯ୍ୟ କରି ଆସିଥିଲେ । ସେହି ଛାତ୍ରାବସ୍ଥାରେ ସେ ଯାଇ ହଇଜା ରୋଗୀଙ୍କ ସେବା କରୁଥିଲେ । ପୁରୀ ଜିଲ୍ଲାସ୍କୁଲରେ ଶିକ୍ଷକ ଥିଲାବେଳେ ଓ ପରେ ନୀଳଗିରି ହାଇସ୍କୁଲରେ ଶିକ୍ଷକ ଥିଲାବେଳେ ସେ ସେବାକାର୍ଯ୍ୟ କଲେ । ଥରେ ସେଠି ଗୋଟିଏ ଅଛୁଆଜାତିର ଲୋକ ମରିଗଲା, ତାର ଶବକୁ ଦାହ କରିବାକୁ କେହି ବାହାରିଲେ ନାହିଁ । ସେ କାର୍ଯ୍ୟ କରିଥିଲେ ଆଚାର୍ଯ୍ୟ ମହାଶୟ ଜଣେ । ସେ ସତ୍ୟବାଦୀ ସ୍କୁଲରେ ଥିଲାବେଳେ ହଇଜାର ପ୍ରକୋପ ଭୟାନକ ଥିଲା, ବିଶେଷତଃ ପୁରୀ ଯାଉଥିବା ଜଗନ୍ନାଥ ସଡ଼କ ଉପରେ ବହୁତ ପୁରୀଯାତ୍ରୀ ହଇଜାରେ ମରି ପଡ଼ୁଥାନ୍ତି, ମଢ଼ାଗୁଡ଼ାକୁ ବିଲୁଆ ଶାଗୁଣା ଖାଉଥାନ୍ତି, ଦୋକୁଆଭୟ ବ୍ୟାପେ । ସେତେବେଳେ ଆଚାର୍ଯ୍ୟ ମହାଶୟ ସତ୍ୟବାଦୀ ସ୍କୁଲ ଛାତ୍ରଙ୍କୁ ଘେନି ପହଞ୍ଚିଯାଇ ମଢ଼ା ଉଠାଇ ସତ୍କାର କରିବା କାର୍ଯ୍ୟରେ ଲାଗିପଡ଼ନ୍ତି ।

୧୯୨୨ରେ ସତ୍ୟବାଦୀରୁ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ 'ସମାଜ' ଖବର କାଗଜ ପ୍ରକାଶ କଲେ । ସେ ଜେଲ୍ ଗିବାରୁ ଆଚାର୍ଯ୍ୟ ମହାଶୟ ୧୦-୬-୧୯୨୨ରେ ତାର ସମ୍ପାଦକ ହେଲେ ଓ ସତ୍ୟବାଦୀ ପ୍ରେସ୍‌ର ଦାୟିତ୍ୱ ତୁଲାଇଲେ ।

ସେହିବର୍ଷ ସେ କଂଗ୍ରେସ ପକ୍ଷରୁ ପୁରୀ ଜିଲ୍ଲାବୋର୍ଡ଼ର ସଭ୍ୟ ହେଲେ । ୧୯୨୪ରେ ଉତ୍କଳମଣିଙ୍କ ପରାମର୍ଶକ୍ରମେ ପୁରୀରେ 'ବଧିରାଶ୍ରମ' ପ୍ରତିଷ୍ଠିତ ହେଲା । ଆଚାର୍ଯ୍ୟ ମହାଶୟ ସତ୍ୟବାଦୀ ସ୍କୁଲ ଛାଡ଼ି ସେ ଅନୁଷ୍ଠାନର ପରିଚାଳକ ହେଲେ ଓ ପୁରୀରେ ରହିଲେ । ଅନୁଷ୍ଠାନଟି ଆଗ ୬ ଡାକ୍ତର ବାଳକୃଷ୍ଣ ମିଶ୍ରଙ୍କ ଘରେ ଆରମ୍ଭ ହୋଇଥିଲା । ଆଚାର୍ଯ୍ୟ ମହାଶୟ ସେହି ଅନୁଷ୍ଠାନ ପାଇଁ କାର୍ଯ୍ୟ କରୁଥାନ୍ତି ଓ କଂଗ୍ରେସ କାର୍ଯ୍ୟ କରୁଥାନ୍ତି । ପୂର୍ବରେ ଉତ୍କଳମଣି ଗୋପବନ୍ଧୁ ଜନସେବା ପାଇଁ "ପୁରୀ ସେବା ସମିତି" ବୋଲି ଅନୁଷ୍ଠାନଟିଏ ଗଢ଼ିଥିଲେ, ସେ ତାର ଭାର ମଧ୍ୟ ଆଚାର୍ଯ୍ୟ ମହାଶୟଙ୍କୁ ଦେଲେ । ସେହି ଅନୁଷ୍ଠାନର କର୍ମୀମାନଙ୍କ ମଧ୍ୟରେ ୬ ମୁରଲି ତ୍ରିପାଠୀ ଅନ୍ୟତମ । ସେ ପୁରୀର ଶ୍ରେଷ୍ଠ ସମାଜସେବକ ହୋଇ ଆଜୀବନ କାର୍ଯ୍ୟ କରିଥିଲେ । 'ସେବା ସମିତି'ର କର୍ମୀମାନେ ପୁରୀରେ ହଇଜା ବେଳେ ରୋଗୀ ସେବା କରୁଥିଲେ, ଶବ ସତ୍କାର କରୁଥିଲେ; ରଥଯାତ୍ରା ଭିଡ଼ ବେଳେ, ଅନ୍ୟାନ୍ୟ ପର୍ବପର୍ବାଣି ବେଳେ ଶୃଙ୍ଖଳା ରଖୁଥିଲେ, ଆହତମାନଙ୍କ ସେବା କରୁଥିଲେ ଓ ଅନ୍ୟାନ୍ୟ ଲୋକସହାୟକ କାର୍ଯ୍ୟ ପାଇଁ ପ୍ରସ୍ତୁତ ହୋଇ ରହୁଥିଲେ । ଏ ଅନୁଷ୍ଠାନଟି ପୁରୀର ଗୋଟିଏ ପୁରୁଣା ଅନୁଷ୍ଠାନ

ଓ ଧର୍ମାଜସେବୀ ୵ ମୁଗର ଶିପାଠୀ ପୁରୀର ସ୍ମୃତି ସହିତ ଜନମାନସରେ ଅଭିନ୍ନ ହୋଇ ଅଙ୍ଗାଙ୍ଗୀଭାବେ ଜଡ଼ିତ ।

୧୯୨୮ରେ ୵ ଉତ୍କଳମଣିଙ୍କର ଅକାଳରେ ତିରୋଧାନ ହେଲା । ୵ ଆଚାର୍ଯ୍ୟ ମହାଶୟ ପୁରୀ ଜିଲ୍ଲାସ୍କୁଲରେ ଛାତ୍ର ଥିଲାବେଳୁ ଦୁହିଁଙ୍କର ଘନିଷ୍ଠ ସମ୍ପର୍କ ଥିଲା, ୵ ଉତ୍କଳମଣି ତାଙ୍କର ଗୋଟିଏ ଉପର ଶ୍ରେଣୀରେ ପଢୁଥିଲେ । ପୁଣି ରେଭେନ୍‌ସା କଲେଜରେ ଦୁହେଁ ଛାତ୍ର ହୋଇଥିଲେ । ସ୍କୁଲ ଛାତ୍ରାବସ୍ଥା ବେଳୁ ଦୁହେଁ ଦେଶ ପାଇଁ ଭାବୁଥିଲେ, ଏକାଠି ସ୍ୱପ୍ନ ଦେଖୁଥିଲେ, ଏକାଠି ସେବାକାର୍ଯ୍ୟ କରୁଥିଲେ । ଉଭେଁ ନୀଳଗିରି ହାଇସ୍କୁଲରେ ଶିକ୍ଷକ ହୋଇଥିଲେ, ଉଭେଁ ସତ୍ୟବାଦୀ ହାଇସ୍କୁଲରେ ଏକତ୍ର କାର୍ଯ୍ୟ କରିଥିଲେ ଓ ୧୯୨୦ରେ କଂଗ୍ରେସରେ ଯୋଗ ଦେଇଥିଲେ । ବର୍ତ୍ତମାନ ତାଙ୍କ ସ୍ଥାନ ଶୂନ୍ୟ ପଡ଼ିଗଲା ।

୵ ଗୋପବନ୍ଧୁ ଚୌଧୁରୀ ୧୯୨୧ରେ ଚାକିରି ଛାଡ଼ି କଂଗ୍ରେସ ଆନ୍ଦୋଳନରେ ଯୋଗ ନ ଦେଉଣୁ ଯେତେବେଳେ ୵ ଉତ୍କଳମଣିଙ୍କୁ ଭେଟିବାକୁ ଯାଉଥିଲେ, ସେ ଦେଖିଥିଲେ ୵ ଆଚାର୍ଯ୍ୟ ମହାଶୟଙ୍କୁ । ସେହିଦିନୁ ଦୁହିଁଙ୍କର ପରସ୍ପର ପ୍ରତି ଶ୍ରଦ୍ଧା ଥିଲା । ୧୯୨୮ରେ ଉତ୍କଳମଣିଙ୍କ ମୃତ୍ୟୁ ପରେ ସେ ଆଚାର୍ଯ୍ୟ ମହାଶୟଙ୍କ ପାଖକୁ ପୁରୀ ଯାଇ ତାଙ୍କୁ କହିଲେ—

"ଆପଣ ଫଳକୁ ମଣିଷ କରୁଥିଲେ, ବର୍ତ୍ତମାନ ସ୍ୱରାଜ୍ୟାଶ୍ରମରେ ବହୁତ ଯୁବକ ଅଛନ୍ତି, ସେମାନଙ୍କୁ ସେଇଠି ବଢ଼ିବେ ।" ଏହିପରି ତାଙ୍କୁ ପ୍ରବର୍ତ୍ତାଇଲେ । ତାଙ୍କ କଥାରେ ୵ ଆଚାର୍ଯ୍ୟ ମହାଶୟ ପୁରୀ ଛାଡ଼ି କଟକ ଆସିଲେ ଓ 'ସ୍ୱରାଜ୍ୟାଶ୍ରମ'ରେ ରହିଲେ । ସେତେବେଳେ ତାହା ଓଡ଼ିଶାରେ କଂଗ୍ରେସ କାର୍ଯ୍ୟର ମୁଖ୍ୟ କେନ୍ଦ୍ର ହୋଇଥିଲା । ଓଡ଼ିଶାର ସବୁଆଡ଼ୁ ସେଠିକି କର୍ମୀମାନେ ଆସୁଥାନ୍ତି । ସେଠି ଶିକ୍ଷା ଓ ତାଲିମ୍ ଦେଇ କର୍ମୀ ତିଆରି ଚାଲିଥାଏ, କଂଗ୍ରେସର ନାନା ରାଜନୈତିକ ଓ ରଚନାତ୍ମକ କାର୍ଯ୍ୟ ହେଉଥାଏ । ଆଚାର୍ଯ୍ୟ ମହାଶୟ ସେହି କାର୍ଯ୍ୟରେ ଲାଗି ରହିଲେ । ତାଙ୍କ ସ୍ୱଭାବ, ବ୍ୟବହାର, ସେବାଭାବ, ସାତ୍ତ୍ୱିକତା ଓ ନିରଳସ କାର୍ଯ୍ୟ ସମସ୍ତିଙ୍କୁ ଆକୃଷ୍ଟ କଲା ।

୧୯୨୯ରେ କେନ୍ଦ୍ରାପଡ଼ାରେ ଅନୁଷ୍ଠିତ କଟକ ଜିଲ୍ଲା ରାଜନୈତିକ ସମ୍ମିଳନୀର ସେ ସଭାପତି ହୋଇଥିଲେ । ୧୯୩୦ରେ ସେ କିଛିଦିନ ପୁରୀରେ ରହିଲେ । ସେଠି 'ବଡ଼ ଆଖଡ଼ା ମଠ' ତଳ ଖଦଡ଼ ଦୋକାନରେ ବସି ସେ ରାଜନୈତିକ ପରାମର୍ଶ ଦେଉଥିଲେ । ଜାନୁଆରୀ ୨୬ ଦିନ ପୁରୀରେ ସେ ସ୍ୱାଧୀନତା ଶପଥ ପାଠ କଲେ । ମହାତ୍ମା ଗାନ୍ଧୀଙ୍କ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା, ଓଡ଼ିଶାରୁ ପ୍ରଥମ ଦଳ ସତ୍ୟାଗ୍ରହୀ ବାଲେଶ୍ୱର ଜିଲାର ଇଞ୍ଚୁଡ଼ିରେ ଲୁଣ ମାରିବାକୁ ୵ ଗୋପବନ୍ଧୁ ଚୌଧୁରୀଙ୍କ

ନେତୃତ୍ୱରେ ବାହାରି ପଡ଼ିଲେ, ୬ ଗୋପବନ୍ଧୁ ଚୌଧୁରୀ ବାଟରେ ଗିରଫ ହେଲେ, ତାହାପରେ ସେହି ଉଦ୍ଦେଶ୍ୟରେ ନେତୃତ୍ୱ ନେଇ ଯାତ୍ରା କରିବାକୁ ୬ ଗୋପବନ୍ଧୁ ଚୌଧୁରୀ ୬ ଆଚାର୍ଯ୍ୟ ମହାଶୟଙ୍କ ଉପରେ ଭାର ନ୍ୟସ୍ତ କଲେ । ୬ ଆଚାର୍ଯ୍ୟ ମହାଶୟ ସତ୍ୟାଗ୍ରହୀ ଦଳର ନେତୃତ୍ୱ ନେଇ ପଦଯାତ୍ରାରେ ଯାଇ ଇଞ୍ଚୁଡ଼ିରେ ଲୁଣ ମାରିଲେ ଓ ତେଣୁ ୧୩ ଅପ୍ରେଲରେ ଗିରଫ ହୋଇ ଜେଲ ଗଲେ, ହଜାରିବାଗ୍ ଜେଲରେ ରଖାଗଲେ । ଗାନ୍ଧୀ-ଇରୱିନ୍ ଚୁକ୍ତି ଫଳରେ ଅନ୍ୟାନ୍ୟ ସତ୍ୟାଗ୍ରହୀମାନଙ୍କ ସହିତ ସେ ଜେଲରୁ ମୁକ୍ତ ହେଲେ । ସେ ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେଲେ, ୬ ପଣ୍ଡିତ ନୀଳକଣ୍ଠ ଦାସ ଓ ଗୋପବନ୍ଧୁ ଚୌଧୁରୀ ଯୁଗ୍ମ ସମ୍ପାଦକ ହେଲେ । ସେ ଅଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ହେଲେ । ସେ ସତ୍ୟାଗ୍ରହ ଆନ୍ଦୋଳନରେ ଲାଗି ରହିଲେ । ୧୯୩୨ରେ ଦ୍ୱିତୀୟଥର ଜେଲ ଗଲେ ଓ ୧୯୩୪ରେ ଖଲାସ ହେଲେ ।

ସେତେବେଳକୁ ଓଡ଼ିଶାରେ ମହାତ୍ମା ଗାନ୍ଧୀଙ୍କ ହରିଜନ-ପଦଯାତ୍ରା ଚାଲିଥିଲା । ୬ ଆଚାର୍ଯ୍ୟ ମହାଶୟ ଜେଲରୁ ବାହାରି ସିଧା ମହାତ୍ମା ଗାନ୍ଧୀଙ୍କ ପାଖକୁ ଚାଲିଗଲେ, କଟକ ଜିଲାର ବେରୁଆଁ ପୁରୁଷୋତ୍ତମପୁରଠାରେ ତାଙ୍କ ପାଖେ ପହଞ୍ଚିଲେ ଓ ପଦଯାତ୍ରା ସରିବାଯାକେ ତାଙ୍କ ସଙ୍ଗେ ସଙ୍ଗେ ଚାଲିଥିଲେ । ସେ 'ଗାନ୍ଧୀ ସେବାସଂଘ'ର ସଭ୍ୟ ହୋଇଥିଲେ ଓ ଓଡ଼ିଶାରେ ସଂଘର ବିଭିନ୍ନ କାର୍ଯ୍ୟ ସହିତ ସମ୍ପୃକ୍ତ ଥିଲେ । ସେ 'ହରିଜନ ସେବାସଂଘ'ର ସଭ୍ୟ ଥିଲେ ଓ ପରେ ସଭାପତି ହେଲେ । ମୂଳରୁ ସେ ଛୁଆଁ ଅଛୁଆଁ ମାନୁ ନ ଥିଲେ । ହରିଜନ ଘରେ ହରିଜନ ତାଙ୍କୁ ପଖାଳ ଦେଲେ ସେ ଆନନ୍ଦରେ ଖାଆନ୍ତି । ସେ ମେହେନ୍ତରଙ୍କ ସାହିରେ ସଫେଇ କରିଛନ୍ତି । ସେ ଅସ୍ପୃଶ୍ୟତା ନିବାରଣ ପ୍ରଚାର କରୁଥିଲେ । କୌଣସି ଶାରୀରିକ କାର୍ଯ୍ୟକୁ ହୀନ ମନେ କରୁ ନ ଥିଲେ । ଯୁଦ୍ଧବେଳେ ପୁରୀ ସହରରେ ସଡ଼କର ଅଳିଆ ଓ ନର୍ଦ୍ଦମା ସଫା କରିବାକୁ ମେହେନ୍ତର ନ ମିଳିବାରୁ ସ୍ୱେଚ୍ଛାସେବକମାନଙ୍କ ସଙ୍ଗେ ସେ ନିଜ ହାତରେ ସେ କାମ କରିଥିଲେ । ୧୯୩୬ ବନ୍ୟାରେ ସେ ବନ୍ୟାବିପନ୍ନଙ୍କ ସାହାଯ୍ୟ କାର୍ଯ୍ୟରେ ନେତୃତ୍ୱ ନେଇଥିଲେ । ୧୯୩୭ରେ ସେ ଆଇନ ଅମାନ୍ୟ କରି ଜେଲ୍ ବରଣ କରିଥିଲେ । ୧୯୩୮ରେ ସେ ଡେଲାଂରେ ହୋଇଥିବା 'ଗାନ୍ଧୀ ସେବାସଂଘ' ସମ୍ମିଳନୀରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ୧୯୩୮ରେ ତାଙ୍କୁ ଷାଠିଏବର୍ଷ ପୂରିବାରୁ କଟକ ଟାଉନ୍‌ହଲରେ ତାଙ୍କ ଜନ୍ମ ଜୟନ୍ତୀ ପାଳିତ ହେଲା ଓ ତାଙ୍କୁ ଅଭିନନ୍ଦନ ଦିଆଯିବା ସଙ୍ଗେ ସଙ୍ଗେ ପାଞ୍ଚହଜାର ଟଙ୍କା ଭେଟି ଦିଆଗଲା । ସେ ଟଙ୍କାତକ ହରିଜନ ସେବା ପାଣ୍ଠିକୁ ପଠାଇଦେଲେ । ପରେ ଆଉଥରେ ସର୍ବୋଦୟ କର୍ମୀମାନେ ତାଙ୍କ ପାଇଁ ଚବିଶିହଜାର ଟଙ୍କା ଉଠାଇଥିଲେ, ତାକୁ ସେ ସର୍ବୋଦୟ କାର୍ଯ୍ୟ ପାଇଁ ଦାନ କରିଥିଲେ । ତାଙ୍କ ଜୟନ୍ତୀ ଉପଲକ୍ଷରେ 'ଶ୍ରଦ୍ଧାଞ୍ଜଳି' ବୋଲି

ସ୍କୁ ପ୍ରକଟିଏ ଛପା ହେଲ, ମହାତ୍ମା ଗାନ୍ଧୀ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ଠକ୍କରବାପା, ସରୋଜନୀ ନାଇଡୁ ଆଦ ବାର୍ତ୍ତା ପଠାଇଥିଲେ । ୧୯୪୦ରେ ସେ ଆଇନ୍ ଅମାନ୍ୟ କର ଜେଲ୍ ଯାଇଥିଲେ । ୧୯୩୪ରେ ଗୋପବନ୍ଧୁ ଚୌଧୁରୀ ବରୀରେ କର୍ମ କେନ୍ଦ୍ର କରିବା ସମୟରୁ ସେଠିକି ସେ ଅନେକଥର ଯାଇଥିଲେ । ସେ ଅଞ୍ଚଳରେ ସରକାର ମୌଳିକ ଶିକ୍ଷା କାର୍ଯ୍ୟକ୍ରମ ବନ୍ଦ କରିଦେବାରୁ ୰ ଗୋପବାବୁ ଆଦ ନିଷ୍ପତ୍ତି କଲେ ଯେ ବେ-ସରକାରୀ ଭାବେ ତାହା ଚାଲୁ ରହିବ । ସେହି ଉଦ୍ଦେଶ୍ୟରେ ୧-୪-୧୯୪୧ରୁ "ମୌଳିକ ଶିକ୍ଷା ପରିଷଦ" ଗଢ଼ା ହେଲ, ୰ ଆଚାର୍ଯ୍ୟ ମହାଶୟ ତାର ସଭାପତି ହେଲେ ଓ ୰ ଗୋପବନ୍ଧୁ ଚୌଧୁରୀ ତାର ସମ୍ପାଦକ ରହିଲେ । ସେ ଦୁହେଁ ଓ ତାଙ୍କ ସଙ୍ଗେ ଶିକ୍ଷାବିତ୍ ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ତାହାର କାର୍ଯ୍ୟକ୍ରମର ମୁଖ୍ୟ ଉଦ୍ୟୋଗୀ ହେଲେ । ୧୯୪୨ରେ ସେ "ଭାରତ ଛାଡ଼" ଆନ୍ଦୋଳନରେ ଜେଲ ଗଲେ, ଆଗ କଟକ ଜେଲରେ ଓ ତାପରେ ବ୍ରହ୍ମପୁର ଜେଲରେ ରହିଲେ । ଜେଲରେ ଆଚାର୍ଯ୍ୟ ମହାଶୟ, ଗୋପବାବୁ ଓ ରାଧାବାବୁ ଓ ସେମାନଙ୍କ ସହିତ ଆଉ କେତେଜଣ ସହକର୍ମୀ ନିଜର ଭୋଜନ ବ୍ୟବସ୍ଥା ପାଇଁ ଗୋଟିଏ ସ୍ୱତନ୍ତ୍ର ମେସ୍ କରିଥାନ୍ତି । ପ୍ରଥମ ତିନିଜଣଙ୍କ ନାମର ଆଦ୍ୟ ଅକ୍ଷରଗୁଡ଼ିକ ମିଶାଇ ତା ନା ରହିଥିଲ "ଗୋ: ଆ: ରା:" ମେସ । ସେମାନଙ୍କ ଜେଲ ଜୀବନ ଓ 'ଗୋ ଆ ରା' ମେସ୍ ବିଷୟରେ ଏଥିରେ ପୂର୍ବେ ବର୍ଣ୍ଣିତ ହୋଇଛି । ତାଙ୍କ ସହିତ ଜେଲରେ ପ୍ରାୟ ୬୦୦ ବନ୍ଦୀ ରହୁଥିଲେ । କର୍ମୀମାନଙ୍କ ପାଇଁ ଜେଲ ଗୋଟିଏ ବିଦ୍ୟାଳୟ ପାଲଟି ଯାଇଥିଲ, ନାନା ବିଦ୍ୟା ଓ ନାନା କାର୍ଯ୍ୟ ଶିକ୍ଷା ଦିଆଯାଉଥିଲ । ୰ ଆଚାର୍ଯ୍ୟ ମହାଶୟ ସେଠି ଗୀତା, ଉପନିଷଦ୍ ପଢ଼ାଉଥିଲେ । ୧୯୪୪ରେ ସେ ଜେଲରୁ ବାହାରିଲେ । ତାହାପରେ ସେ ବରୀରେ ଓ ପୁରୀ ଜିଲ୍ଲାରେ ବର୍ଷ ବର୍ଷ ପର୍ଯ୍ୟନ୍ତ ବିବିଧ ଗାନ୍ଧୀବାଦୀ ରଚନାତ୍ମକ କାର୍ଯ୍ୟ କରି ଲଗିଥାନ୍ତି । ୰ ପଣ୍ଡିତ କୃପାସିନ୍ଧୁ ହୋତା ୧୯୩୪ରୁ ଢେଙ୍କାନାଳ ପାଖ ବେରବୋଇରେ ଆଶ୍ରମ କରି ସେଠି ରହି ବିବିଧ ରଚନାତ୍ମକ କାର୍ଯ୍ୟ କରୁଥାନ୍ତି ଓ କରାଉଥାନ୍ତି । ଆଚାର୍ଯ୍ୟ ମହାଶୟ ସେଠିକୁ ବି ବେଳେବେଳେ ଯାଉଥାନ୍ତି । ୧୯୧୮ରେ ହୋତା ମହାଶୟ ସତ୍ୟବାଦୀ ସ୍କୁଲରେ ଶିକ୍ଷକ ହୋଇ ଯୋଗ ଦେଇଥିଲେ । ୧୯୪୪ ପରେ ବେରବୋଇ ଓ ତା ଆଖପାଖରେ ମ୍ୟାଲେରିଆ ଜ୍ୱର (ବାତଜ୍ୱର) ବହୁତ ବ୍ୟାପିଲ । ପୋଖରୀଗୁଡ଼ିକରୁ କଳଦଳ ଦଳ ସଫା କଲେ ମଶା ପିଟିବେ ବୋଲ କଳଦଳ କଢ଼ାଇବାକୁ ସେ ଓ ଆଚାର୍ଯ୍ୟ ମହାଶୟ ପ୍ରଚାର କରିବାକୁ ଲଗିଲେ ଓ ସେଥିପାଇଁ ଲୋକଙ୍କୁ ସଂଗଠିତ କରିବାକୁ ଲଗିଲେ । କାର୍ଯ୍ୟଟି ଆରମ୍ଭ କରିବାକୁ କେହି ଆଗଭର ହେଲେ ନାହିଁ । ତହୁଁ କାହାକୁ ଅପେକ୍ଷା ନ କରି ଦୁହେଁ ପୋଖରୀ ସଫା କଲେ, ଆଚାର୍ଯ୍ୟ ମହାଶୟଙ୍କ ବୟସ ଛଅଷଠି ବର୍ଷ ଥାଏ ଓ ପଣ୍ଡିତ କୃପାସିନ୍ଧୁଙ୍କୁ ଷାଠିଏ ବର୍ଷ ଥାଏ । ସେମାନଙ୍କ ଅଦମ୍ୟ ଉତ୍ସାହ ଓ ଅକ୍ଳାନ୍ତ ପରିଶ୍ରମ ଦେଖି ଅନ୍ୟମାନେ ଲଗିପଡ଼ିଲେ ଓ ପୋଖରୀରୁ କଳଦଳ କାଢ଼ିବା ଆନ୍ଦୋଳନ ବ୍ୟାପକ ଭାବେ ବ୍ୟାପିଗଲା ।

ସେ ଗାନ୍ଧିଜୀଙ୍କ ରଚନାତ୍ମକ କର୍ମକ୍ଷେତ୍ରରେ ହିଁ ମନ ଓ ଶ୍ରମ ବିନିଯୋଗ କରୁଥାନ୍ତି, ସବୁଦିନେ କ୍ଷମତା ରାଜନୀତିଠୁଁ ଦୂରେଇ ରହୁଥାନ୍ତି । ୰ ଉତ୍କଳମଣି ଗୋପବନ୍ଧୁଙ୍କ ସ୍ମୃତିରେ ପୁରୀରେ "ଗୋପବନ୍ଧୁ ସେବାସଦନ" ପ୍ରତିଷ୍ଠିତ ହୋଇଥାଏ । ସେଥିପାଇଁ ଭିଙ୍ଗାରପୁରର ଜମିଦାର ୧୪ ଏକର ଜମି ଦେଇଥାନ୍ତି । ସେଠି ମୁଖ୍ୟ କାର୍ଯ୍ୟ ଥିଲା ଖଦୀକାମ ଓ ଅନ୍ୟାନ୍ୟ ରଚନାତ୍ମକ କାମ । ଆଚାର୍ଯ୍ୟ ମହାଶୟ ସେଇଠି ରହିଲେ ଓ ସେ କାମର ବୁଝାଶୁଝା କଲେ । ତାଙ୍କର ସେଥିରେ ମୁଖ୍ୟ ସହାୟକ ଥିଲେ ୰ ପଣ୍ଡିତ କୃପାସିନ୍ଧୁ ହୋତା । ୧୯୫୦ରେ ଅନୁଗୁଳ ସର୍ବୋଦୟ ସମ୍ମିଳନୀରେ ସେ ସକ୍ରିୟ ଅଂଶ ନେଲେ । ୧୯୫୧ରେ ପୁରୀ ଜିଲ୍ଲାରେ ପ୍ରବଳ ବନ୍ୟା ହେଲା, ଚନ୍ଦନପୁରରେ ଘାଇ ହେଲା ଓ ଅନ୍ୟାନ୍ୟ ଆଡ଼େ ଜଳାର୍ଣ୍ଣବ ହେଲା । ସେ ସେହି ବଢ଼ି ବେଳେ ସାହାଯ୍ୟ କାମ କଲେ । ତେସ୍ତରିବର୍ଷ ବୟସ ହୋଇଥାଏ, କ୍ଷୀଣ ଶରୀର, ଚନ୍ଦନପୁରରେ ସୁଅ ଛୁଟିଥାଏ, ବଢ଼ି ଅଞ୍ଚଳ ଦେଖିବାକୁ ସେ ପାଣିରେ ପଶି ଚାଲିବାକୁ ଲାଗିଲେ, ତାଙ୍କ ଦେଖାଦେଖି ପୁରୀର ଜିଲ୍ଲା କଲେକ୍ଟର ବି ପାଣିରେ ପଶିଲେ, କାର୍ଯ୍ୟ ଆରମ୍ଭ ହୋଇଗଲା ।

୧୯୫୧ ସନ୍‌କେ କଂଗ୍ରେସର ଶାସକଗୋଷ୍ଠୀ ସହିତ ରଚନାତ୍ମକ କର୍ମୀମାନଙ୍କର ମତାନ୍ତର ବଢ଼ି ଯାଇଥାଏ, ଦେଶର ଅବସ୍ଥା ଦେଖି ସେମାନେ ନିରାଶ ହେଉଥାନ୍ତି । ୧୯୫୨ ଜାନୁଆରି ୭ ତାରିଖ ଦିନ ୰ ଗୋପବନ୍ଧୁ ଚୌଧୁରୀ ବାରିରୁ ଦୀର୍ଘ ଭୂଦାନ ପଦଯାତ୍ରାରେ ବାହାରି ପଡ଼ିଲେ । ଚୌସ୍ତରିବର୍ଷ ବୟସ୍କ ବୃଦ୍ଧ ୰ ଆଚାର୍ଯ୍ୟ ହରିହର ମଧ୍ୟ ତାଙ୍କ ସଙ୍ଗେ ପଦଯାତ୍ରା କଲେ । ସେମାନେ ଓଡ଼ିଶାର ବହୁ ଜିଲ୍ଲା ବୁଲିଲେ, କୋରାପୁଟ, ଗଞ୍ଜାମର ଦୁର୍ଭେଦ୍ୟ ମାଳ ଭିତରେ ତୀଖ ପାହାଡ଼ ଚଢ଼ି ଓହ୍ଲେଇ ଅଗନାଗ୍ନି ବଣ ଭିତରେ ବି ବାଟ ଚାଲୁଥାନ୍ତି, ସ୍ଥାନେ ସ୍ଥାନେ ରହୁଥାନ୍ତି, ଗାଁ ବୁଲୁଥାନ୍ତି, ଅସଂଖ୍ୟ ଲୋକଙ୍କୁ ଭେଟୁଥାନ୍ତି, ଅବସ୍ଥା ବୁଝୁଥାନ୍ତି, ମନ୍ତ୍ର କହୁଥାନ୍ତି ଓ ଭୂଦାନ ଦର୍ଶନ ବୁଝାଉଥାନ୍ତି, ୫୦୦ ମାଇଲରୁ ଅଧିକ ବାଟ ଚାଲିଥିଲେ, ଭୂଦାନ ଆରମ୍ଭ ହୋଇଗଲା ।

ସେହି ସମୟରୁ ଆଚାର୍ଯ୍ୟ ମହାଶୟ ଭୂଦାନ କାର୍ଯ୍ୟରେ ଲାଗି ରହିଲେ । ସେ ପୁରୀରେ ଗୋପବନ୍ଧୁ ସେବାସଦନରେ ରହୁଥାନ୍ତି, କେତେବେଳେ ସତ୍ୟବାଦୀରେ "ଦରିଦ୍ର ନାରାୟଣ ସେବାସଂଘ" (କାଦୁଆ ଆଶ୍ରମ)ରେ ରହନ୍ତି, କେବେକେବେ କଟକ ଆସି ଥୋରିଆ ସାହିରେ ଆଶ୍ରମ (ଏବେ 'ଗୁଣନିଧି ଭବନ')ରେ ରହୁଥାନ୍ତି । ସେ ବିବିଧ ରଚନାତ୍ମକ କାର୍ଯ୍ୟ ସହିତ ସଂଶ୍ଳିଷ୍ଟ ଥାନ୍ତି, ଲୋକସମ୍ପର୍କ ରଖିଥାନ୍ତି, ପ୍ରେରଣା ଦେଉଥାନ୍ତି, ସଦ୍‌ବୁଦ୍ଧି ଓ ସତ୍ ପରାମର୍ଶ ଦେଉଥାନ୍ତି । ୰ ଗୋପବାବୁଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥାଏ ।

୧୯୫୫ରେ ତାଙ୍କଠୁଁ ପ୍ରେରଣା ଓ ଆଶୀର୍ବାଦ ନେଇ ପ୍ରାଦେଶିକ କୁଷ୍ଠରୋଗ ଅଫିସର ୬ ଡାକ୍ତର ଅନାଦି ସାହୁ "ପୁରୀ ସହର ସ୍ୱାସ୍ଥ୍ୟ ପରିଷଦ" ଅନୁଷ୍ଠାନ ପ୍ରତିଷ୍ଠା କଲେ । କେତେ କେତେ ସାହିରେ ସେ ଅନୁଷ୍ଠାନର ସେବିକାମାନେ ଓ ସ୍ୱେଚ୍ଛା-ସେବକମାନେ ଘର ଘର ବୁଲି କୁଷ୍ଠରୋଗ ବିଷୟରେ ବୁଝାଇଲେ ଓ ଖୋଜି ଖୋଜି ପରୀକ୍ଷା କରି କରି କାହାଠି ସେ ରୋଗ ଅଛି ତାକୁ ଚିହ୍ନି ରୋଗମୁକ୍ତି ପାଇଁ ଚିକିତ୍ସା ବ୍ୟବସ୍ଥା କଲେ । ସେ କାର୍ଯ୍ୟ ଆଚାର୍ଯ୍ୟ ମହାଶୟଙ୍କର ଅତ୍ୟନ୍ତ ପ୍ରିୟ ଥିଲା ।

୨୯-୪-୧୯୫୮ରେ ଶ୍ରୀମତୀ ରମା ଦେବୀଙ୍କ ଅସୁସ୍ଥତା ବେଳେ ଆଚାର୍ଯ୍ୟ ମହାଶୟ ଯାଇଥିଲେ । ୬ ଗୋପବନ୍ଧୁ ଚୌଧୁରୀଙ୍କର ଜୀବନର ଶେଷଦିନ ସକାଳେ କଟକ ଯୋଣଆ ସାହି ଆଶ୍ରମରେ ତାଙ୍କ "ହରିଭୋଇନା" ପଖାଳ ଖାଇବେ ବୋଲି ଗୋପବାବୁ ଶାଗପଟାଳିରୁ ଶାଗ ତୋଳିଥିଲେ, ଦୁଇବନ୍ଧୁ ଏକାସାଙ୍ଗରେ ଭୁବନେଶ୍ୱର ଆସିଥିଲେ ଓ ଫେରିଥିଲେ । ସେଦିନ ରାତି ୧୧.୫୫ରେ ୬ ଗୋପବନ୍ଧୁ ଚୌଧୁରୀ ଚାଲିଗଲେ । ତାଙ୍କଠୁଁ ସାଢେ ସତରବର୍ଷ ସାନ, ଘନିଷ୍ଠ ବନ୍ଧୁ ଓ ସହକର୍ମୀ ୬ ଗୋପବାବୁଙ୍କ ମୃତ୍ୟୁ ସେହି ଅଶୀବର୍ଷର ବୃଦ୍ଧ କୋମଳପ୍ରାଣ ଆଚାର୍ଯ୍ୟ ମହାଶୟଙ୍କୁ କେଡ଼େ ବାଧୁଥିବ ତାହା ସହଜରେ ଅନୁମେୟ । ତଥାପି ସେ ସମସ୍ତିଙ୍କୁ ଦମ୍ଭ ଦେଲେ, ଭୂଦାନ ଓ ଗଠନାତ୍ମକ କାର୍ଯ୍ୟର ନେତୃତ୍ୱ ନେଲେ ଓ କାର୍ଯ୍ୟରେ ଲାଗିପଡ଼ିଲେ ।

୧୯୫୮ ଅଗଷ୍ଟ ୧୫ରେ ୬ ଆଚାର୍ଯ୍ୟ ମହାଶୟ ବାଲେଶ୍ୱରରୁ ତାଙ୍କ ଐତିହାସିକ ପଦଯାତ୍ରା ଆରମ୍ଭ କଲେ । ଉଦ୍ଦେଶ୍ୟ ତିନୋଟି—(୧) ଗ୍ରାମଦାନ ମାଗିବା (୨) ଖଦୀ ପ୍ରଚାର କରିବା ଓ (୩) ଶାନ୍ତିସେନା ଗଢ଼ିବା । '୧-୪- ୯୫୯ରେ ସେ ମୟୂରଭଞ୍ଜରୁ ପଦଯାତ୍ରା କଲେ । ସେ ପଦଯାତ୍ରାରେ ନାନା ସ୍ଥାନ ବୁଲୁଥାନ୍ତି । ୧୯୬୦ରେ ସେ ଓ୍ୱାଙ୍ଗାରେ ନିଖିଳ ଭାରତ ସର୍ବୋଦୟ ସମ୍ମିଳନୀର ସଭାପତି ହେଲେ ବୋଲି ପଦଯାତ୍ରା ବନ୍ଦ କଲେ । ସେ ସଭାରେ ସେ ଓଡ଼ିଆରେ ଭାଷଣ ଦେଇଥିଲେ । ସଭା ପରେ ୧୯୬୦ ଅପ୍ରେଲ '୧୯ରୁ ମେ ଦ୍ୱିତୀୟଥର ମୟୂରଭଞ୍ଜରୁ ପଦଯାତ୍ରା ଆରମ୍ଭ କଲେ, ଚାଲି ଚାଲି ପାହାଡ଼ ଚଢ଼ି ବଣ ଭେଦି ସେ କୋରାପୁଟ ଜିଲାରେ ପହଞ୍ଚିଲେ, ସେତେବେଳକୁ ୮୨ ବର୍ଷ ବୟସ୍କ ଆଚାର୍ଯ୍ୟ ମହାଶୟ ପାଞ୍ଚହଜାର ମାଇଲ ଚାଲିଲେଣି । ନୂଣପୁରର ଖଡ଼ାଣ ଅଞ୍ଚଳରେ ସେ ପହଞ୍ଚିଲାବେଳକୁ ତାଙ୍କୁ ଭୀଷଣ ଜ୍ୱର ହେଲା, ପଦଯାତ୍ରା ବନ୍ଦ କରିବାକୁ ପଡ଼ିଲା ଓ ଚିକିତ୍ସା ପାଇଁ ରାୟଗଡ଼ା ଆଣିବାକୁ ପଡ଼ିଲା । ସେଥିପାଇଁ ଗାଡ଼ିଟିଏ ଦରକାର ପଡ଼ିଲା, କିନ୍ତୁ ସାଧାରଣ ନିର୍ବାଚନ ସମୟ, ଗାଡ଼ି ମିଳୁ ନ ଥାଏ । ବହୁ କଷ୍ଟରେ ଖଣ୍ଡିଏ ମିଳିଲା । ରାୟଗଡ଼ାରେ ହୋମିଓପ୍ୟାଥି ଡାକ୍ତର ଶ୍ରୀ ରାଧାକୃଷ୍ଣ ଚୂଳ ତାଙ୍କୁ ଚିକିତ୍ସା କରି ଭଲ କଲେ । ଜ୍ୱରରୁ ଉଠି ସେ ବ୍ରହ୍ମପୁର ଯାଇ ପ୍ରାଦେଶିକ ସର୍ବୋଦୟ ସମ୍ମିଳନୀରେ ଯୋଗ ଦେଲେ ।

ଦେହ ଦୁର୍ବଳ, ବୟସ ୮୩, ଆଖିକୁ ଆଉ ଭଲ କରି ଦିଶୁ ନାହିଁ, ତଥାପି ସେ ପୁଣି ପଦଯାତ୍ରାରେ ବାହାରିବାକୁ ଅସ୍ଥିର ହେଲେ । ଦୁଇ ଆଖିରେ କେତେବର୍ଷ ହେଲା କ୍ୟାଟାରାକ୍ଟ ହୋଇଥାଏ, ଭଲ ଦିଶେ ନାହିଁ, ବିଶେଷତଃ ଟିକିଏ ଅନ୍ଧାରୁଆ କି କୁହୁଡ଼ିଆ ହେଲେ ଓ ଅନ୍ଧାର ହେଲେ ତାଙ୍କୁ ଖାତିର ନ କରି ସେ ଭୁଷ୍‌ଭାଷ୍‌ ନିଜ ଇଚ୍ଛା ଅନୁସାରେ ଚାଲି ବାହାରି ପଡ଼ନ୍ତି । ରାତି ୪ଟାରୁ ଉଠି ନିତ୍ୟକର୍ମ କରିବା ତାଙ୍କ ଅଭ୍ୟାସ । ଅନ୍ୟନ ଏପରି ଘଟଣା ବି ଘଟିଥାଏ ଯେ ସେ ଅନ୍ଧାରୁଆରୁ ଗାଧୋଇବାକୁ ବାହାରିପଡ଼ି ପଡ଼ି ଯାଇଥାନ୍ତି । ତାହାସତ୍ତ୍ୱେ ସେ ଦୀର୍ଘପଥ ପଦଯାତ୍ରା କରିଥାନ୍ତି । କ୍ୟାଟାରାକ୍ଟ ଆହୁରି ବଢ଼ିଲା । ସେ ଜିଦ୍‌ ଧରିଲେ ଯେ ସେ ଆଖି ଅପରେସନ କରାଇବେ । ଅଧ୍ୟାପକ (ସେତେବେଳେ ପାଟନାରେ ଭାଇସ୍‌ ଚ୍ୟାନ୍‌ସେଲର୍‌) ଡକ୍ଟର ବଳଭଦ୍ର ପ୍ରସାଦଙ୍କ ଉଦ୍ୟମରେ ୧୯୬୧ରେ ପାଟନା ମେଡ଼ିକାଲ କଲେଜର ଚକ୍ଷୁ ବିଭାଗର ମୁଖ୍ୟ ବିଖ୍ୟାତ ଚକ୍ଷୁ ଡାକ୍ତର ଡକ୍ଟର ଦୁଖନ୍‌ ରାମ୍‌ ତାଙ୍କ ଅପରେସନ୍‌ କଲେ । ଅପରେସନ୍‌ ପରେ ରୋଗୀଓ୍ୱାର୍ଡ଼ରେ ଆଚାର୍ଯ୍ୟ ମହାଶୟଙ୍କ ବ୍ୟବହାର ବି ଅସାଧାରଣ ଥିଲା । ସେ ନିଜ ଦେହକଥା ଆଦୌ ଭାବୁ ନ ଥିଲେ, ଅନ୍ୟାନ୍ୟ ରୋଗୀଙ୍କ ବିଷୟ ବୁଝୁଥିଲେ ଓ କେହି ଡାକ୍ତର ଆସିଗଲେ ଆଗ ସେହି ଅନ୍ୟମାନଙ୍କୁ ଦେଖି ଆସିବାକୁ ତାଙ୍କୁ କହୁଥିଲେ । ଯାହାହେଉ, ଅପରେସନ୍‌ ସେତେ ସଫଳ ହେଲା ନାହିଁ । ସେ ଆଉ ପଦଯାତ୍ରାରେ ବାହାରି ପାରିଲେ ନାହିଁ । ତଥାପି ସେ ପ୍ରାଣପଣେ ନାନା ସମାଜକଲ୍ୟାଣ କାର୍ଯ୍ୟରେ ପ୍ରାଣପଣେ ଲାଗିଥାନ୍ତି । ୧୯୬୧ ନଭେମ୍ବର ୧୧ ତାରିଖରେ ସେ ଆଲହାବାଦ୍‌ ବିଶ୍ୱବିଦ୍ୟାଳୟର ଛାତ୍ରସଂଘର ବାର୍ଷିକ ଅଧିବେଶନରେ ମୁଖ୍ୟବକ୍ତା ହୋଇ ବକ୍ତୃତା ଦେଇଥିଲେ । ସେ ୧୯୬୨ରୁ ୧୯୬୭ ଶେଷଯାକେ ପୁରୀରେ ରହିଲେ । ସେ ଖାଲି ବସି ନ ଥାନ୍ତି । ଯେତେବେଳେ ସୁବିଧା ମିଳେ ସେତେବେଳେ ଗାଡ଼ିରେ ଯାଇ ଓଡ଼ିଶାର ନାନା ଦୂର ଅଞ୍ଚଳ ବୁଲନ୍ତି, ସମସ୍ୟା ବୁଝନ୍ତି, ଭୂଦାନ ଓ ବିବିଧ ରଚନାତ୍ମକ କାର୍ଯ୍ୟର ହାଲ୍‌ଚାଲ ବୁଝନ୍ତି, ପରାମର୍ଶ ଦିଅନ୍ତି ଓ ସଦ୍‌ବିଚାର ଦିଅନ୍ତି, ନାନା ବୟସ ନାନା ଶ୍ରେଣୀର ଲୋକ ତାଙ୍କ ପାଖକୁ ଆସନ୍ତି । ସେହି ସମୟ ଭିତରେ ସେ ରାଉରକେଲା, ସମ୍ବଲପୁର ଜିଲା ଓ କୋରାପୁଟ ଜିଲାକୁ ବି ଯାଇଥିଲେ । ୧୯୬୪ରେ ଛାତ୍ର ଆନ୍ଦୋଳନ ବେଳେ ହୁଲ୍‌ସ୍ଥୁଲ୍‌ ପଡ଼ି ଯାଇଥିଲା । ୧୯୬୩ରେ ସେ ସତ୍ୟବାଦୀରେ କଲେଜ ପ୍ରତିଷ୍ଠା ପାଇଁ ହୋଇଥିବା ସଭାର ସଭାପତି ହେଲେ ଓ ସେହିବର୍ଷ ସତ୍ୟବାଦୀ କଲେଜର ମ୍ୟାନେଜିଂ କମିଟିର ସଭାପତି ହେଲେ । ଛାତ୍ରମାନେ କେବଳ ତାଙ୍କର ମଧ୍ୟସ୍ଥତାକୁ ସ୍ୱୀକାର କଲେ ଓ ତାଙ୍କ ଉଦ୍ୟମରେ ଆନ୍ଦୋଳନ ବନ୍ଦ ହେଲା । ସେତେବେଳେ ସେ ଅସମ୍ଭବ ପ୍ରକାରେ ପରିଶ୍ରମ କରିଥିଲେ ।

୧୯୬୮ରୁ ସେ କଟକରେ ଯୋଗିଆସାହି 'ଆଶ୍ରମ'ରେ ପୂର୍ଣ୍ଣ ବିଶ୍ରାମରେ ରହିଲେ । ସେଠି ସେ ଚିକିତ୍ସିତ ହେଉଥାନ୍ତି । ତଥାପି ଯେତେବେଳେ ଶୁଣିଲେ ସେ

କେନ୍ଦ୍ରାପଡ଼ାରେ ସାଂପ୍ରଦାୟିକ ଗଣ୍ଡଗୋଳ ହୋଇଚାଲି ସେ ଅତ୍ୟନ୍ତ ବ୍ୟଥିତ ହୋଇ ସେଠିକି ଚାଲିଗଲେ ଓ ସେଠି କିଛିଦିନ ରହିଲେ । ଯୋଗଆସାହୁ ଆଶ୍ରମରେ ଶ୍ରୀମତୀ ରମା ଦେବୀ, ତାଙ୍କ କନ୍ୟା ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା, ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି, ଶ୍ରୀମତୀ ସୁଭଦ୍ରା ସ୍ୱାଇଁ, ଶ୍ରୀ ସୁରେନ୍ଦ୍ର ସ୍ୱାଇଁ ଓ ଶ୍ରୀ ସୁରେଶ ପ୍ରଧାନ ଆଚାର୍ଯ୍ୟ ମହାଶୟଙ୍କ ସେବାରେ ଲାଗି ରହିଲେ । ୧୯୭୧ ଫେବୃଆରି ୨୧ ତାରିଖ ସକାଳ ୭ଟା ୪୭ ମିନିଟ୍‌ରେ ତାଙ୍କର ମହାପ୍ରୟାଣ ହେଲା ।

## ୬ ପଣ୍ଡିତ କୃପାସିନ୍ଧୁ ହୋତା

୬ ଗୋପବନ୍ଧୁ ଚୌଧୁରୀଙ୍କ ମୃତ୍ୟୁର ଦ୍ୱାଦଶ ଦିନରେ ଓଡ଼ିଶା ପ୍ରଦେଶର ଭୂଦାନ କାମ ଓ ଅନ୍ୟାନ୍ୟ ସର୍ବୋଦୟ କାମ ବିଷୟରେ ଆଲୋଚନା କରିବା ପାଇଁ କଟକ ଯୋଗଆ ସାହୁ ଆଶ୍ରମରେ ଗୋଟିଏ ସଭା ହୋଇଥିଲା । ସେଠି ୭୪ ବର୍ଷ ବୟସ୍କ ବଳିଷ୍ଠ ନିର୍ଭୀକ ସ୍ୱାଧୀନଚେତା ସ୍ୱାଧୀନତା ସଂଗ୍ରାମୀ, ବିଶିଷ୍ଟ ଗାନ୍ଧୀବାଦୀ ରଚନାତ୍ମକ କର୍ମୀ ଓ ସର୍ବୋଦୟ-ଭୂଦାନ ନେତା ପଣ୍ଡିତ କୃପାସିନ୍ଧୁ ହୋତା ଭାଷଣ ଦେଇ କହିଥିଲେ—

"ଆମେ ଗୋପବନ୍ଧୁ ଚୌଧୁରୀଙ୍କ ଭକ୍ତଦଳ ନୋହୁଁ । ଯେଉଁ ବିଚାରର ସେବାରେ ସେ ଜୀବନ ଉତ୍ସର୍ଗ କରିଥିଲେ, ସେହି କାମରେ ଲାଗିଥିବା କର୍ମୀ ହେଉଛୁଁ ଆମେ । ଗତ ଚାଳିଶିବର୍ଷ ଧରି ମୁଁ ୬ ଗୋପବାବୁଙ୍କୁ ଦେଖି ଆସିଛି, ଆମେ ଏକା ସାଙ୍ଗରେ କାମ କରିଛୁ, କେତେବେଳେ ସେ ମୋ ଭର୍ତ୍ସନା ମୁଣ୍ଡେଇଛନ୍ତି, କେତେ-ବେଳେ ମୁଁ ତାଙ୍କ ଭର୍ତ୍ସନା ମୁଣ୍ଡେଇଛି । କିନ୍ତୁ ସେ ଜଣେ ଟାଣୁଆ ଲୋକ ଥିଲେ, ଗାନ୍ଧୀ କାମରେ ଟାଣପଣ ସହିତ ସେ ଲାଗିଥିଲେ । ଏବେ ତାଙ୍କ କାମକୁ ପୂର୍ଣ୍ଣ କରିବା ପାଇଁ ଆମେ ଅଣ୍ଟା ଭିଡ଼ିବା ନା ଖାଲି ସେ ଜଣେ ମହାତ୍ମା ମହାପୁରୁଷ ଥିଲେ ବୋଲି ବାହୁନିବା ?"

କେବଳ ଏତିକିରୁ ଜଣାପଡ଼େ ୬ ପଣ୍ଡିତ କୃପାସିନ୍ଧୁ ହୋତାଙ୍କର ବ୍ୟକ୍ତିତ୍ୱ ଓ ଚରିତ୍ର । ସେ ନିଜ ବିଚାର, ନିଜ ମତ, ନିଜ ପଥରେ ଦୃଢ଼, ଅଟଳ ଥିଲେ, ଗତାନୁଗତିକ ମନ୍ଥର ବାହାର ଥିଲେ, ତାଙ୍କ କଥାରେ କାର୍ଯ୍ୟରେ କିଏ କଣ ଭାବିବ ସେଥିକି ଖାତିର କରୁ ନ ଥିଲେ, ଅତ୍ୟନ୍ତ ସ୍ପଷ୍ଟବାଦୀ ଥିଲେ, କେତେବେଳେ କାହାକୁ ଅପ୍ରିୟ ଲାଗୁ ପଛେ, ଯାହା ଅନୁଭବ କରୁଥିଲେ, ନିର୍ଭୀକଭାବେ ତାହା କହି ଦେଉଥିଲେ । ବଳିଷ୍ଠ ଓ ରୂପବନ୍ତ ବପୁ, ତେଜସ୍ୱାନ୍ ମୁହଁ ଓ ସ୍ୱର, ମୁକ୍ତ ସ୍ୱାଧୀନ ନିର୍ଭୀକ ବିଚାର, ଉନ୍ନତ ଚରିତ୍ର ଓ ସମାଜ କଲ୍ୟାଣ ପାଇଁ ନିଃସ୍ୱାର୍ଥ ଅକ୍ଳାନ୍ତ ଭାବେ ନିବେଦିତ ଜୀବନ ସମେତ ତାଙ୍କର ବ୍ୟକ୍ତିତ୍ୱ ଆକର୍ଷଣୀୟ ଓ ପ୍ରଭାବଶାଳୀ ଥିଲା । ସେ ଅତି ଉଚ୍ଚଶ୍ରେଣୀର ରକ୍ଷଣଶୀଳ ସମ୍ଭ୍ରାନ୍ତ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇ ଅଠରବର୍ଷ

ବୟସରୁ ଅଚ୍ଛୁତ ହରିଜନଙ୍କ ଘରକୁ ଯାଉଥିଲେ, ହରିଜନଙ୍କ ଘରେ ଖାଉଥିଲେ, ପଇଟା ଗ୍ରହଣ କରୁଥିଲେ, ହଳ ଧରୁଥିଲେ, ଜାତିଭେଦ ମାନୁ ନ ଥିଲେ ଓ ସବୁ ଧର୍ମକୁ ସମ୍ମାନ କରୁଥିଲେ । ସ୍ୱାଧୀନତା ଆନ୍ଦୋଳନରେ ୭ ଥର ଜେଲ୍ ଯାଇଥିଲେ, ଅଠାବନ ବର୍ଷ ବୟସରେ ତାଙ୍କ ଜେଲ ଜୀବନରେ ସେ ଗୋଟିଏ ହରିଜନ ଯୁବକକୁ (ସ୍ୱ ମୋହନ ନାୟକ, ପଦ୍ମଶ୍ରୀ) 'ପୁଅ କରିଥିଲେ' ଓ ନିଜେ ଯେତେବେଳେ ମରିବେ ସେତେବେଳେ ସେହି ହରିଜନ 'ପୁଅ' ତାଙ୍କୁ ମୁଖାଗ୍ନି ଦେବେ ବୋଲି ଚାହିଁଥିଲେ (ଓ ପରେ ତାହା ହିଁ ହେଲା) । ସେ କ୍ଷମତା ରାଜନୀତିକୁ ପିଠି ବୁଲାଇ ଦେଇ ଗାନ୍ଧିଜୀଙ୍କ ରଚନାତ୍ମକ କର୍ମରେ ଲାଗି ରହିଥିଲେ ଓ ୧୯୨୨ରୁ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ପ୍ରାୟ ଷାଠିଏ ତେଇଶିବର୍ଷ ପର୍ଯ୍ୟନ୍ତ ଭୂଦାନ, ଗ୍ରାମଦାନ ଓ ବିବିଧ ରଚନାତ୍ମକ କାର୍ଯ୍ୟ କରୁଥିଲେ । ସେ ପ୍ରାୟ ଏକୋଅଶୀ ବର୍ଷ ଭୋଗ କରିଥିଲେ । ସେ ସ୍ୱ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କଠାରୁ ଓ ସ୍ୱ ଆଚାର୍ଯ୍ୟ ହରିହରଙ୍କଠାରୁ ପ୍ରାୟ ୭ ବର୍ଷ ସାନ ଓ ସ୍ୱ ଗୋପବାବୁଙ୍କ ଠାରୁ ପ୍ରାୟ ୧୦ ବର୍ଷ ବଡ଼ । ୧୯୧୭ରୁ ସେ ସ୍ୱ ଉତ୍କଳମଣିଙ୍କର ଜଣେ ସହକର୍ମୀ ହୋଇଥିଲେ ଓ ସ୍ୱ ଗୋପବାବୁ କଂଗ୍ରେସରେ ଯୋଗଦେଲା ଦିନୁ ତାଙ୍କର ଜଣେ ସହକର୍ମୀ ହୋଇଥିଲେ ।

ସ୍ୱ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ଜନ୍ମ ୧୮୮୪ର କୁମାର ପୂର୍ଣ୍ଣିମା ଦିନ ପୁରୀଜିଲା ସତ୍ୟବାଦୀ ପାଖ ବିଶ୍ୱନାଥପୁର ବ୍ରାହ୍ମଣଶାସନ ଗ୍ରାମ ନୂଆଗାଁରେ । ତାଙ୍କ ପିତା ସ୍ୱ କବିରାଜ ମଧୁସୂଦନ ହୋତା । ଚାରି ଭାଇ ତିନି ଭଉଣୀରୁ ସ୍ୱ କୃପାସିନ୍ଧୁ ହୋତା ଚତୁର୍ଥ ଭାଇ । ତାଙ୍କ ବାଲ୍ୟଶିକ୍ଷା ନିଜ ଗ୍ରାମରେ ଆଗ ଚାହାଲିରେ, ତାପରେ 'ଭର୍ଗ୍ଗୀକୁଳର ବିଦ୍ୟାପୀଠ'ରେ ଓ ତାପରେ ପୁରୀ ହରଚଣ୍ଡୀ ସାହି ଏମ୍. ଇ. ସ୍କୁଲରେ ଓ ତାପରେ ଆଉ ଦୁଇବର୍ଷ ପର୍ଯ୍ୟନ୍ତ କଟକ ଟ୍ରେନିଂ ସ୍କୁଲରେ ହୋଇଥିଲା, ସେହି ଅବସ୍ଥାରେ ସେ ମାତୃହୀନ ହେଲେ ।

ଶିକ୍ଷକ ଟ୍ରେନିଂ ପାଶ୍ କରି ସେ ବଉଦରେ କିଛିକାଳ 'ଇନ୍‌ସପେକ୍‌ଟିଂ ପଣ୍ଡିତ' ହୋଇ ଚାକିରି କରିଥିଲେ । ତାପରେ ସେ ଚାକିରିରେ ତାଙ୍କ ବଡ଼ଭାଇଙ୍କୁ ରଖାଇ ନିଜ ଗ୍ରାମକୁ ଫେରି ଯେଠି 'ଭର୍ଗ୍ଗୀକୁଳର ସ୍କୁଲ'ରେ ୫ ୮ଙ୍କା ଦରମାରେ ଶିକ୍ଷକ ହେଲେ । ଏତିକବେଳେ ପ୍ରାୟ ୧୯୦୪-୫ରୁ ସେ ହରିଜନଙ୍କ ଘରେ ଖାଇଲେ, ତାଙ୍କ ପିଲଙ୍କୁ ଡାକି ଆଣି ସନ୍ନି ସହିତରେ ସେମାନଙ୍କୁ ପଢ଼ାଇଲେ ।

ତାଙ୍କର ଏହି ଜାତି ଅଜାତି ଭେଦ ଦୂରୀକରଣ, ଅସ୍ପୃଶ୍ୟତା ନିବାରଣ କେବଳ ତାଙ୍କ ସ୍ୱାଧୀନ ନିଜସ୍ୱ ମୌଳିକ ବିଚାର ଓ ମାନବିକତାର ଫଳ । ସାଧାରଣ-ଭାବେ ଓଡ଼ିଶାରେ ଏସବୁ ଆରମ୍ଭ ହେବାର ବହୁବର୍ଷ ପୂର୍ବରୁ ସେ ଏପରି କରିଥିଲେ ।

ସେତିକବେଳେ ସେ ବିବାହ କଲେ, ପତ୍ନୀଙ୍କ ନାମ ସାବିତ୍ରୀ ।

୧୯୦୭ରେ ଓଡ଼ିଶାର ତତ୍କାଳୀନ ସ୍କୁଲ୍ ଇନ୍‌ସପେକ୍ଟର ଭକ୍ତକବି ମଧୁସୂଦନ ରାଓ ତାଙ୍କ ଶିକ୍ଷାଦାନ କାର୍ଯ୍ୟରେ ଖୁସି ହୋଇ ତାଙ୍କୁ ଖୋର୍ଦ୍ଧା ହାଇସ୍କୁଲରେ 'ଦ୍ୱିତୀୟ ପଣ୍ଡିତ' ଭାବେ ନିଯୁକ୍ତ କଲେ । ସେଠି ସେ ୨ ବର୍ଷ ଶିକ୍ଷକତା କଲେ ।

ଖୋର୍ଦ୍ଧାରେ ଶିକ୍ଷକ ଥିଲାବେଳେ ସେ ଅସ୍ପୃଶ୍ୟତା, ଜାତିଭେଦ, ଧର୍ମ ସଙ୍କୀର୍ଣ୍ଣତା ଆଦି ବିରୁଦ୍ଧରେ ପ୍ରଚାର କରୁଥାନ୍ତି, ହାଡ଼ି ପାଣ, ଅନ୍ୟାନ୍ୟ ବ୍ରାହ୍ମଣେତର ଜାତି, ମୁସଲମାନ, ସମସ୍ତଙ୍କ ଘରକୁ ଯାଆନ୍ତି ଓ ସମସ୍ତଙ୍କ ଘରେ ଖାଆନ୍ତି, ପ୍ରଚାର କରୁଥାନ୍ତି—ସବୁ ମଣିଷ ଏକ ଜାତି । ସେତେବେଳର ଏବଠୁ ବହୁଗୁଣେ ଅଧିକ ରକ୍ଷଣଶୀଳ ଗ୍ରାମ-ସମାଜରେ ତାଙ୍କ ବିରୁଦ୍ଧରେ ଭୀଷଣ ପ୍ରତିକ୍ରିୟା ହେଉଥାଏ ଓ ତାଙ୍କ ସହକର୍ମୀମାନେ ତାଙ୍କୁ ଘୃଣା କରିବା ସଙ୍ଗେ ସଙ୍ଗେ ଏକପ୍ରକାର ଏକଘରିଆ କରୁଥାନ୍ତି ।

୬ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ସତ୍ୟବାଦୀରେ ବନ-ବିଦ୍ୟାଳୟ ଆରମ୍ଭ କଲେ । ୧୯୧୭ରେ ତାଙ୍କଠୁଁ ଡକରା ପାଇ ଖୋର୍ଦ୍ଧା ସରକାରୀ ଚାକିରି ଛାଡ଼ି ଆସି ୬ ପଣ୍ଡିତ କୃପାସିନ୍ଧୁ ହୋତା ତହିଁରେ ଯୋଗଦେଲେ, ତାଙ୍କ ଜୀବନରେ ନୂଆ ଯୁଗ ଆରମ୍ଭ ହେଲା । ସେଠି ସେ ମାତ୍ର ୨୯ ଦିନ ଶିକ୍ଷକତା କଲେ । ୧୯୧୫ ଜାନୁଆରୀ ୯ ତାରିଖରୁ ମହାତ୍ମା ଗାନ୍ଧୀ ତାଙ୍କର ଦକ୍ଷିଣ ଆଫ୍ରିକା ରହଣି ପରେ ଭାରତ ଫେରିଥାନ୍ତି । ତାଙ୍କ ବିଚାରର ପ୍ରଭାବ ଭାରତରେ ଚହଟିଥାଏ ଓ ସତ୍ୟବାଦୀ ବିଦ୍ୟାଳୟର ସ୍ୱଦେଶପ୍ରେମୀ ସମାଜସେବୀ ନେତାମାନେ ତହିଁରେ ପ୍ରଭାବିତ ହୋଇଥାନ୍ତି । ଉତ୍ତମ ମନୁଷ୍ୟ ଓ ଉପଯୁକ୍ତ ଦେଶସେବକ ଗଢ଼ିବା ସତ୍ୟବାଦୀ ବିଦ୍ୟାଳୟର ବିଶିଷ୍ଟ ଲକ୍ଷ୍ୟ ହୋଇଥାଏ । ୬ ପଣ୍ଡିତ କୃପାସିନ୍ଧୁ ହୋତା ଶିକ୍ଷକତାରେ ଆଉ ଆବଦ୍ଧ ନ ରହି ୧୯୧୬-୧ରୁ ସ୍ୱଦେଶପ୍ରୀତି, ଖଦୀ ଓ ସୂତାକଟା ସମେତ ସ୍ୱଦେଶୀ ସ୍ୱାବଲମ୍ବୀ ଉତ୍ପାଦନ, ଅହିଂସା ଓ ଅହିଂସ ପ୍ରତିରୋଧ ସମେତ ଗାନ୍ଧୀ ବିଚାର, ସମବାୟ, ଅସ୍ପୃଶ୍ୟତା ନିବାରଣ, ଧର୍ମାନ୍ଧତା, ଜାତିଭେଦ ଓ କୁସଂସ୍କାର ବିଲୋପ, ନାରୀ ଶିକ୍ଷା ଓ ନାରୀ ଜାଗରଣ ଓ ଓଡ଼ିଶାରେ ଆନ୍ଦୋଳନ ଆରମ୍ଭ ହେବାରୁ ସେ କଂଗ୍ରେସ-ଆନ୍ଦୋଳନ ବୁଲି ବୁଲି ପ୍ରଚାର କରିବାକୁ ଲାଗିଲେ ଓ କାର୍ଯ୍ୟ କରିବାକୁ ଲାଗିଲେ ।

୧୯୨୫ ପୂର୍ବରୁ ସତ୍ୟବାଦୀଠାରୁ ପାଞ୍ଚମାଇଲ ଦୂରରେ ଭାର୍ଗବୀ ନଦୀ କୂଳରେ 'ସାରଙ୍ଗଯୋଡ଼ି' ଗ୍ରାମରେ ସେ ଗୋଟିଏ ଆଶ୍ରମ ଗଢ଼ିଥିଲେ, ସେଠି ସେ ରହୁଥିଲେ, ଅତି ଦରିଦ୍ର ଓ ସରଳଭାବେ ନିରାଡ଼ମ୍ବର ଶ୍ରମକ୍ଳିଷ୍ଟ ଜୀବନଯାପନ କରୁଥିଲେ । ସେତେବେଳେ ବିଶ୍ୱନାଥପୁରରେ ତାଙ୍କ ଘରେ ରହୁଥିଲେ ତାଙ୍କ ସ୍ତ୍ରୀ, ତାଙ୍କର ସ୍ୱରବର୍ଷର ଝିଅ ବୀଣା ଓ ତାଙ୍କ ମୃତ ସାନଭାଇଙ୍କ ବାଳବିଧବା ସ୍ତ୍ରୀ ୬ ସୁନାମଣି

ଦେବୀ । ତାଙ୍କ ବଡ଼ ଝିଅ ହେମା ୧୧ ବର୍ଷରେ ବିଭା ହୋଇଥାଏ, କିନ୍ତୁ ସେ ମାମୁଁଘରେ ରାୟ ଚନ୍ଦ୍ରଧରପୁରରେ ରହୁଥାଏ, ଶାଶୁଘରକୁ ଯାଇ ନ ଥାଏ । '୧୬ରେ ତାଙ୍କ ସ୍ୱାମୀଙ୍କର ମୃତ୍ୟୁ ହେଲା, ମା' ମଲା ପରେ ଝିଅ ସୁନାମଣି ଦେବୀଙ୍କ ପାଖେ ରହିଲା । ସେହି ୧୯୨୨ରେ ୰ ପଣ୍ଡିତ କୃପାସିନ୍ଧୁ ପୁରୀ ଜିଲ୍ଲା କଂଗ୍ରେସ କମିଟିର ସଭାପତି ହେଲେ । ୧୯୨୬-୨୮ରେ ୰ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ପରାମର୍ଶରେ ସେ ଓ ସୁନାମଣି ଦେବୀ ସାରଙ୍ଗଯୋଡ଼ାରୁ ସତ୍ୟବାଦୀ ଉଠିଗଲେ । ତାଙ୍କ ବଡ଼ଝିଅ ହେମା ବି ତାଙ୍କ ପାଖେ ରହିଲା । ସେତେବେଳେ ସତ୍ୟବାଦୀ ସ୍କୁଲ ନ ଥାଏ, ଶିକ୍ଷକମାନେ ନ ଥାନ୍ତି । ୰ ଆଚାର୍ଯ୍ୟ ମହାଶୟ ପୁରୀରେ ରହୁଥାନ୍ତି । ସତ୍ୟବାଦୀରେ ଖଦୀ କାମ ଆରମ୍ଭ ହୋଇଥାଏ ଓ ସେଠି ହରିଜନ ପିଲାଙ୍କ ପାଇଁ ପ୍ରାଇମେରି ସ୍କୁଲଟିଏ ଦୁଇଜଣ ବ୍ରାହ୍ମଣ ଶିକ୍ଷକ ଓ କର୍ମୀ ରାମଚନ୍ଦ୍ର ରଥ ଓ ରଘୁନାଥ ମିଶ୍ର ଆଦି ଚଳାଉଥାଏ । ଅଳ୍ପଦିନ ପରେ ୰ ଉତ୍କଳମଣି ଚାଲିଗଲେ । ତାହାପରେ ୰ ପଣ୍ଡିତ କୃପାସିନ୍ଧୁ ହେମା ଝିଅକୁ ଶାଶୁଘରକୁ ପଠାଇଦେଲେ ଓ ୰ ଜୀବରାମ କଲ୍ୟାଣୀଙ୍କ ସହାୟତାରେ ୰ ସୁନାମଣି ଦେବୀଙ୍କୁ ସାବରମତୀ ଆଶ୍ରମକୁ ପଠାଇଦେଲେ ।

୧୯୩୦ରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ୰ ସୁନାମଣି ଦେବୀ ସେତେବେଳେ ସତ୍ୟବାଦୀ ଫେରି ଆସିଲେ । ୰ ପଣ୍ଡିତ କୃପାସିନ୍ଧୁ ଆନ୍ଦୋଳନରେ ଯୋଗଦେଲେ, ତାଙ୍କୁ ୨ ବର୍ଷ ୧୧ ମାସ ଜେଲ୍‌ଦଣ୍ଡ ହେଲା । ସେ ହଜାରିବାଗ୍ ଜେଲକୁ ନିଆଗଲେ । ତାପରେ ସେ କଂଗ୍ରେସ ଆନ୍ଦୋଳନରେ ବାରମ୍ବାର ଜେଲ ଗଲେ । '୪୨ ଆନ୍ଦୋଳନରେ ନେଲଦ୍ୱେଗକୁ ମିଶାଇ ସେ ସମୁଦାୟ ସାତଥର ଜେଲ ଯାଇଥିଲେ ।

୧୯୩୪ରେ ସେ 'ଗାନ୍ଧୀ ସେବାସଂଘ'ର ସଭ୍ୟ ହେଲେ । ସେହିବର୍ଷ ବିବିଧ ରଚନାତ୍ମକ କାର୍ଯ୍ୟ କରିବା ପାଇଁ 'ଆଶ୍ରମ' ହେଲା ଡେଲାଂ ଷ୍ଟେସନ ପାଖ ବେରବୋଇ ଗାଁରେ । ଛନବଖରା ଝାଟିମାଟି ଚାଳଘର । ଗୋଟିଏ ବଖରାରେ ୰ ସୁନାମଣି ଦେବୀ, ୰ ପଣ୍ଡିତ କୃପାସିନ୍ଧୁଙ୍କ ସାନ ଝିଅ ବୀଣା ଓ ଆଉ ଯୋଡ଼ିଏ ଝିଅ ରହୁଥିଲେ । ମଝି ବଖରାରେ ଝିଅମାନେ ପଢନ୍ତି, ତୂଳା ଭିଣା ହୁଏ, ରନ୍ଧନ ଭୋଜନ କାର୍ଯ୍ୟ ହୁଏ, ହାଣ୍ଡି, ବାସନ, ଅରଟ, ଚରଖା ଆଦି ସେହି ଘରେ ରହେ, ଆରମୁଣ୍ଡ ବଖରାରେ ୰ ପଣ୍ଡିତ କୃପାସିନ୍ଧୁ ରହନ୍ତି, କେବେକେବେ ଆଚାର୍ଯ୍ୟ ମହାଶୟ ବି ରହନ୍ତି । ବେରବୋଇ ଆଶ୍ରମ ୰ ପଣ୍ଡିତ କୃପାସିନ୍ଧୁଙ୍କର କର୍ମକେନ୍ଦ୍ର ଓ ନିବାସସ୍ଥଳ ହୋଇଥିଲା । ୧୯୩୮ ରେ ପ୍ରସିଦ୍ଧ ଡେଲାଂ ସମ୍ମିଳନୀ (ନିଖିଳ ଭାରତ ଗାନ୍ଧୀ ସେବାସଂଘ ସମ୍ମିଳନୀ) ସେହି ଆଶ୍ରମ ନିକଟରେ ବସିଥିଲା । ସେଥିରେ ପଣ୍ଡିତ ହୋତା ଲାଗି ପଡ଼ିଥିଲେ । ୧୯୪୫ରେ ଜେଲରୁ ଖଲାସ ହୋଇ ଆସି ସେଠି ସେ ଆଗପରି ରହି ରଚନାତ୍ମକ କାର୍ଯ୍ୟ କରିଥିଲେ ଓ ଅନ୍ୟମାନଙ୍କୁ ଅନୁପ୍ରାଣିତ କରି ତାଙ୍କ ଦ୍ୱାରା ସେ

କାର୍ଯ୍ୟ କରୁଥିଲେ । ସେହି ସମୟରେ ବେରବୋଇ ଆଖପାଖରେ ବହୁତ ବାତଜ୍ୱର ଓ ମ୍ୟାଲେରିଆ ବ୍ୟାପିଲା । ଜଳୁଆ ପୋଖରୀଗୁଡ଼ିକରୁ ବିଲାତି ଦଳ କାଢ଼ିବାକୁ ସେ ଲୋକଙ୍କୁ ବହୁତ କହିଲେ, ତା ହେଲେ ମଶା ପିବେ । କେହି ନ ବାହାରିବାରୁ ସେ ଓ ଆଚାର୍ଯ୍ୟ ମହାଶୟ ପୋଖରୀରେ ପଶି ଦିନଯାକ ଖଟି ବିଲାତି ଦଳ କାଢ଼ିଲେ ଓ ସେମାନଙ୍କ ଦେଖାଦେଖି ସମସ୍ତେ ଲାଗିଗଲେ । ସେ ଅଞ୍ଚଳଯାକ ଏହି କାମ ଲାଗିଗଲା ।

୰ ଆଚାର୍ଯ୍ୟ ମହାଶୟ, ୰ ଗୋପବନ୍ଧୁ ଚୌଧୁରୀ ଓ ଅନ୍ୟାନ୍ୟ ଗାନ୍ଧୀବାଦୀ ରଚନାତ୍ମକ କର୍ମୀଙ୍କ ପରି ସେ ମଧ୍ୟ କ୍ଷମତା ରାଜନୀତି ଆଡ଼କୁ ପିଠି ବୁଲାଇ ଦେଇ ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟ କରୁଥିଲେ । ସେ ୧୦ ବର୍ଷ ପର୍ଯ୍ୟନ୍ତ ପୁରୀଜିଲ୍ଲା କଂଗ୍ରେସ କମିଟିର ସଭାପତି ହୋଇଥିଲେ, ତହିଁରୁ ବି ଇସ୍ତଫା ଦେଇ ଦେଲେ ।

୧୯୪୯ରୁ ସେ ପ୍ରଚାର କରୁଥିଲେ—ବ୍ୟକ୍ତିଗତ ସମ୍ପତ୍ତି ନ ରହୁ । ସମସ୍ତେ ଖାଇବା ଚଳିବାକୁ ସୁବିଧା ଓ ଅଧିକାର ପାଆନ୍ତୁ । ସେତେବେଳେ 'ଭୂଦାନ' ଆନ୍ଦୋଳନ ନ ଥିଲା ।

ବେରବୋଇରେ କିଛିବର୍ଷ ରହିବା ପରେ ସେ ପୁରୀରେ 'ସେବା ସମାଜ' ଘରେ ଅଧିକାଂଶ ସମୟ ରହିଲେ, ଝିଅମାନଙ୍କୁ ତାଲିମ ଦେବାପାଇଁ ସେଠି ସେ ଗୋଟିଏ ଟ୍ରେନିଂ କେନ୍ଦ୍ର ଚଳାଇଲେ । ସେ କେନ୍ଦ୍ରକୁ ଓଡ଼ିଶା ସରକାରଙ୍କ 'ଆଦିବାସୀ ଓ ଗ୍ରାମମଙ୍ଗଳ' ବିଭାଗ ୪ ବର୍ଷ ପର୍ଯ୍ୟନ୍ତ ଅର୍ଥ ସାହାଯ୍ୟ କରିଥିଲେ ।

୧୯୫୨ ଜାନୁଆରୀ ୭ ତାରିଖ ଦିନ ୰ ଗୋପବାବୁ, ଶ୍ରୀମତୀ ରମା ଦେବୀ, ୰ ଆଚାର୍ଯ୍ୟ ହରିହର ଆଦି ଦୀର୍ଘ ଭୂଦାନ ପଦଯାତ୍ରାରେ ବାହାରିଲେ ବେଳେ ପଣ୍ଡିତ କୃପାସିନ୍ଧୁ ହୋତା ମଧ୍ୟ ସେହି ପଦଯାତ୍ରାରେ ଚାଲିଲେ । ସେ ଭୂଦାନ ଆନ୍ଦୋଳନରେ ଆତ୍ମନିୟୋଗ କଲେ ଓ ତାପରେ ଆଜୀବନ ସେହି କାର୍ଯ୍ୟ କଲେ । ସେହି ପ୍ରଥମ ପଦଯାତ୍ରା ପରେ ମଧ୍ୟ ତାଙ୍କର ପଦଯାତ୍ରା ଚାଲିଲା । କଟକ, ପୁରୀ ଓ ଗଞ୍ଜାମ ଜିଲ୍ଲା-ମାନଙ୍କରେ ସେ ଭୂଦାନ ପଦଯାତ୍ରା କରୁଥିଲେ । ୧୯୫୮ ଅପ୍ରେଲ୍ ୨୧ରେ ୰ ଗୋପବାବୁଙ୍କ ଦେହାନ୍ତ ହେଲା ପରେ ଆଚାର୍ଯ୍ୟ ମହାଶୟ ଅଗଷ୍ଟ ମାସରୁ ଦୀର୍ଘ ପଦଯାତ୍ରା ଆରମ୍ଭ କଲେ । ୰ ପଣ୍ଡିତ କୃପାସିନ୍ଧୁ ହୋତା ବେଳେ ବେଳେ ଆଚାର୍ଯ୍ୟ ମହାଶୟଙ୍କ ପଦଯାତ୍ରାରେ ବିଭିନ୍ନ ଜିଲ୍ଲାରେ ତାଙ୍କ ସଙ୍ଗେ ଚାଲିଥାନ୍ତି । ୰ ଆଚାର୍ଯ୍ୟ ମହାଶୟଙ୍କ ପଦଯାତ୍ରା ବେଳେ ୧୯୫୯ ଅକ୍ଟୋବର ୨୪ରେ ବଲାଙ୍ଗିରରେ ଶିକ୍ଷକ ଓ ଛାତ୍ରମାନଙ୍କ ସଭାରେ ତାଙ୍କ ଭାଷଣରେ କହିଥିଲେ—

"ଆଗାମୀ ସମାଜର ବିଶ୍ୱବିଦ୍ୟାଳୟ କୋଡ଼ି କାଙ୍କର ବିଶ୍ୱବିଦ୍ୟାଳୟ ହେବ ।"

ସେକଥା ସେ ବହୁବର୍ଷ ପୂର୍ବରୁ ବି କହି ଆସୁଥିଲେ । ତାଙ୍କ ମତରେ ଉପଯୁକ୍ତ ଶିକ୍ଷା କେବଳ ପୁସ୍ତକଗତ ବିଦ୍ୟା ଅଧ୍ୟୟନ ନୁହେଁ, ତାହା ଶ୍ରମ ଉପରେ ଆଧାରିତ ଓ ଜନଗୋଷ୍ଠୀ ସହିତ ସମାଜର ଜାଗ୍ରତ ଆବଶ୍ୟକ ସହିତ ସମ୍ପର୍କିତ ।

୧୯୬୦ରେ ୮୦ କୃପାସିନ୍ଧୁ ହୋତା, ୮ ବୃନ୍ଦାବନ ମହାନ୍ତି ଓ ଶ୍ରୀମତୀ ମାଳତୀ ଦେବୀ ସମ୍ବଲପୁର ଜିଲ୍ଲାରେ ପଦଯାତ୍ରା କରୁଥାନ୍ତି । ସେହି ସମୟରେ ଝାଡ଼ସୁଗୁଡ଼ାରୁ ମହାରାଷ୍ଟ୍ରର ସେବାଗ୍ରାମ ଯିବାକୁ ପଦଯାତ୍ରା କଲେ, ସେଠି ସର୍ବୋଦୟ ସମ୍ମିଳନୀ ହେବାର ଥାଏ । ୧୭୨ ମାଇଲ ବାଟ ଚାଲି ଚାଲି ଓଡ଼ିଶା, ମଧ୍ୟ ପ୍ରଦେଶ ଓ ମହାରାଷ୍ଟ୍ର ଦେଇ ଯଥା ସମୟରେ ସେବାଗ୍ରାମରେ ପହଞ୍ଚିଲେ ଓ ସମ୍ମିଳନୀରେ ଯୋଗ ଦେଲେ । ସେମାନେ ବାଟେ ବାଟେ ରହଣି କରି କରି ସର୍ବୋଦୟ ଓ ଭୂଦାନ ବିଷୟର ପ୍ରଚାର କରି କରି ଚାଲିଥାନ୍ତି ।

ସେ ସେହି କାର୍ଯ୍ୟରେ ନିରତ ହୋଇ ରହିଲେ ।

୧୯୬୫ରେ ସେ ଅସୁସ୍ଥ ହେଲେ, କଟକ ଯୋବ୍ରା ସାହି ଆଶ୍ରମରେ ଶ୍ରୀମତୀ ରମା ଦେବୀ ଓ ଅନ୍ୟାନ୍ୟ କର୍ମୀଙ୍କ ସେବା ଶୁଶ୍ରୂଷାରେ ରହି ଚିକିତ୍ସିତ ହେଉଥିଲେ, ୧୯୬୫ ଜୁଲାଇ ୨୬ ତାରିଖ ଦିନ ସେଠି ତାଙ୍କର ତିରୋଧାନ ହେଲା ।

ସେ କହୁଥିଲେ,—ଧର୍ମ ଗୋଟିଏ, ତା ନାଁ 'ମଣିଷ ଧର୍ମ', ସବୁ ମଣିଷ ଜାତିର କେବଳ ଗୋଟିଏ ଶ୍ରେଷ୍ଠତ୍ୱ, ସେ 'ମଣିଷ-ପଣିଆଁ' । ଗାନ୍ଧୀ ସେଇଥିପାଇଁ ବଡ଼, ସେ 'ମହାତ୍ମା' ନୁହନ୍ତି, ପ୍ରକୃତ ମନୁଷ୍ୟ ।

ସେ କହୁଥିଲେ,—" 'ଅନାଶ୍ରିତ' ଶବ୍ଦ ଉପରେ ମୋ ଜୀବନ ଆଧାରିତ ।" ଯେ ଯାହା ଦେଲି ସେ ଖାଉଥିଲେ, ନ ହେଲେ ଉପାସ ରହୁଥିଲେ । ଯୁଆଡ଼େ ଗଲେ ଘର ମିଳିଲେ ଘରେ ଶୋଉଥିଲେ, ନ ହେଲେ ଅପନ୍ତରାରେ ଶୋଉଥିଲେ । ଅଣ୍ଟ ଲୁଚା ନ ଥିବା ଝେଡ଼ ଲୁଗା ଖଣ୍ଡିଏ ସେ ପିନ୍ଧୁଥିଲେ, ଦେହ ଲୁଚା ନ ଥିବା ଝେଡ଼ ଚାଦର ଖଣ୍ଡିଏ ସେ ପକାଉଥିଲେ, ପାରି ଶୋଇବା ପାଇଁ ମସିଣା ଖଣ୍ଡେ ତାଙ୍କର ଥିଲା, ତାଙ୍କର ଦରକାର ଆବଶ୍ୟକ ପଦାର୍ଥଗୁଡ଼ିକ ପଶିଥିବା ପାଞ୍ଚ କେଜି ଓଜନର କଳା ଝେଡ଼ ଝୁଲାମଣି ଖଣ୍ଡିଏ ସେ କାନ୍ଧରେ ପକାଉଥିଲେ, ତାଙ୍କର ସମୁଦାୟ ସମ୍ପତ୍ତି ଏତିକି ମାତ୍ର ଥିଲା ।

ସେ କହୁଥିଲେ, "ଦେଶର ଅସଲ ସମସ୍ୟା ଦାରିଦ୍ର୍ୟ ନୁହେଁ,—ବଡ଼ଲୋକ ।"

"ଶଗଡ଼ ଗୁଳାରେ ଚାଲିବା ଅଭ୍ୟାସ ନ ଛାଡ଼ିଲେ ମଣିଷ ତାର ବସ୍ତିରକୁ ଚଟିକା ରଖିପାରିବ ନାହିଁ ।"

ପରେ ସେ କହୁଥିଲେ, "ସ୍ୱାଧୀନତାଠୁ ସତ୍ୟ ଅନେକ ଗୁଣ ବଡ଼ । 'ଭାରତୀୟତା' ମଧ୍ୟ ଏକ ସଙ୍କୀର୍ଣ୍ଣ ଗୋଷ୍ଠୀବାଦ ।"

ସରଳ, କଥିତ ଓଡ଼ିଆରେ ସେ ମୌଳିକ ଓ ଗମ୍ଭୀର ଚିନ୍ତାଶୀଳ କଥାଗୁଡ଼ିଏ କହି ଯାଉଥିଲେ । ସେ ଜଣେ ଆକର୍ଷଣୀୟ ବକ୍ତା ଥିଲେ ।

ସମାଜରେ ବଞ୍ଚିତ, ଅବହେଳିତ ଗୋଷ୍ଠୀ ପ୍ରତି ତାଙ୍କର ବହୁତ ମମତା ଥିଲା । ନାରୀ ଜାଗରଣ ପ୍ରତି ତାଙ୍କର ବିଶେଷ ମମତା ଓ ଉତ୍ସାହ ଥିଲା କାରଣ ସମାଜରେ ନାରୀ ଗୋଷ୍ଠୀଟି ବଞ୍ଚିତ ଓ ଅବହେଳିତ ବୋଲି ସେ ବୁଝୁଥିଲେ । ସେହିପରି,—ହରିଜନ ସମ୍ପ୍ରଦାୟ ପ୍ରତି ।

ସେ କହୁଥିଲେ, "ଅଗ ନିଜକୁ ସଂସ୍କାର କରିବା ଉଚିତ, ତାପରେ ପରକୁ କହିବ ।" ସେ ପଇଡା ଛଣ୍ଡାଇଥିଲେ, ନିଶ ରଖିଥିଲେ, ହାଡ଼ି ଘରେ ଖାଉଥିଲେ, ହଳ ଟେଲୁଥିଲେ ।

## ଶ୍ରୀମତୀ ରମା ଦେବୀ

ଶ୍ରୀମତୀ ରମା ଦେବୀ ଗୋପବନ୍ଧୁ ଚୌଧୁରୀଙ୍କ ପତ୍ନୀ । ତାଙ୍କର ଜନ୍ମ ୧୮୯୯ ଡିସେମ୍ବର ୩ ତାରିଖ ଦିନ, ଜନ୍ମସ୍ଥାନ କଟକ, ପିତା ୰ ଗୋପାଳବଲ୍ଲଭ ଦାସ ଓ ମାତା ୰ ବସନ୍ତମଞ୍ଜରୀ ଦେବୀ । ଗୋପାଳବଲ୍ଲଭ ଦାସ ଉଚ୍ଚଶିକ୍ଷିତ ଥିଲେ, ସୁସାହିତ୍ୟିକ ଥିଲେ ଓ ଜଣେ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଥିଲେ । ନବଉତ୍କଳ ନିର୍ମାତା ପ୍ରାତଃସ୍ମରଣୀୟ ୰ ମଧୁସୂଦନ ଦାସ ତାଙ୍କ ବଡ଼ ଭାଇ । ୰ ବସନ୍ତମଞ୍ଜରୀଙ୍କ ପିତା ୰ ନନ୍ଦ କିଶୋର ଦାସ ଇଂରେଜ ସରକାରଙ୍କ ଅଧୀନରେ ଜଣେ ଉଚ୍ଚ ପ୍ରଶାସନିକ କର୍ମଚାରୀ ଥିଲେ, ଗଡ଼ଜାତ ରାଜ୍ୟମାନଙ୍କ ଶାସନ ପରିଚାଳନାର ସମୀକ୍ଷକ (ସୁପରିନ୍-ଟେନ୍‌ଡେଣ୍ଟ ଅଫ୍ ଗଡ଼ଜାତ ମାହାଲସ୍) ହୋଇଥିଲେ, ତାଙ୍କ ବଡ଼ପୁଅ ରାଜ କିଶୋର ଦାସ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଥିଲେ ଓ କାଳକ୍ରମେ କଲେକ୍ଟର ଓ ପରେ ଶ୍ରୀ ଜଗନ୍ନାଥ ମନ୍ଦିରର ପରିଚାଳକ ହୋଇଥିଲେ । ଶ୍ରୀମତୀ ରମା ଦେବୀଙ୍କ ପିତୃକୂଳ ଓ ମାତୃକୂଳ ସମ୍ଭ୍ରାନ୍ତ ଧନୀ ଜମିଦାର ଥିଲେ ଓ ପିଲାଦିନୁ ସେ ଭୋଗ ପ୍ରାଚୁର୍ଯ୍ୟ ଭିତରେ ବଢ଼ି ଆସିଥିଲେ । ମଧୁବାବୁଙ୍କର ଓ ନିଜ ପିତାମାତାଙ୍କର, ଅଭିଭାବକଙ୍କର ଉନ୍ନତ ଚରିତ୍ର, ଉନ୍ନତ ବିଚାର, ହୃଦୟବତ୍ତା ଓ ଦରିଦ୍ରଙ୍କ ପ୍ରତି ସହାନୁଭୂତି ତାଙ୍କ ଚରିତ୍ର ଓ ମୂଲ୍ୟବୋଧ ଗଠନକୁ ପ୍ରଭାବିତ କରିଥିଲା ।

୧୯୧୪ ଅପ୍ରେଲ ମାସରେ ତାଙ୍କର ବିବାହ ହେଲା । ୧୯୦୫ରେ ତାଙ୍କ ପ୍ରଥମ ସନ୍ତାନ ମନମୋହନଙ୍କ ଜନ୍ମ, ୧୯୧୭ରେ ଦ୍ୱିତୀୟ ସନ୍ତାନ, ତାଙ୍କ କନ୍ୟା ଅନ୍ନପୂର୍ଣ୍ଣାଙ୍କର । ୧୯୨୧ରେ ତାଙ୍କ ସ୍ୱାମୀ ଗୋପବନ୍ଧୁ ଚୌଧୁରୀ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଚାକିରିରୁ ଇସ୍ତଫା ଦେଇ କଂଗ୍ରେସରେ ଯୋଗ ଦେଲେ, ତାଙ୍କ ବେଶଭୂଷା ଚଳଣି ସବୁ ବଦଳିଗଲା, ସେ ଗାନ୍ଧୀନୀତି ଅନୁସରଣ କଲେ । ଶ୍ରୀମତୀ ରମା ଦେବୀ ମଧ୍ୟ ତାହା ହିଁ କଲେ ସ୍ୱାମୀଙ୍କୁ ଅନୁସରଣ କରି । ସେ ସୁନାରେ ଗୁଡ଼ିଣୀ

ହୋଇଥିଲେ । ଅଳଙ୍କାରତକ ଓଡ଼ିଶାର ଦେଶକାମ ପାଇଁ ଦାନ କଲେ । ମୂଲ୍ୟବାନ ପାଟ ଓ ଅନ୍ୟାନ୍ୟ ବସ୍ତ୍ର ବହୁତ ଥିଲ, ସେସବୁ ଦରିଦ୍ରମାନଙ୍କୁ ବାଣ୍ଟି ଦେଲେ । ବିଲାତି ଲୁଗା ସବୁ ପୋଡ଼ି ଦେଲେ । ମୋଟା ଖଦଡ଼ ପିନ୍ଧି, ମୋଟାସୋଟା ସରଳତମ ଖାଦ୍ୟ ଖାଇଲେ । ଓହ୍ଲେଇ ଗଲେ ଦୀନ ଜନତାର ନିମ୍ନତମ ଶ୍ରେଣୀକୁ, ସେମାନଙ୍କ ଭିତରୁ ଜଣେ ହୋଇ ସେମାନଙ୍କ ସେବାରେ ଲଗି ରହିବାକୁ ।

୧୯୨୮ରୁ ସେ ସ୍ୱାମୀ ଓ ସନ୍ତାନ ଦୁହିଁଙ୍କ ସହିତ 'ଅଲକା ଆଶ୍ରମ'ରେ ରହିଲେ । ଆଶ୍ରମ କାର୍ଯ୍ୟ ଚାଲିଲା ସଙ୍ଗେ ସଙ୍ଗେ ସେ ମହିଳା କର୍ମୀମାନଙ୍କ ସହିତ ଗାଁ ଗାଁ ବୁଲି କଂଗ୍ରେସ ବାର୍ତ୍ତା ପ୍ରଚାର କଲେ, କର୍ମୀ ସଂଗ୍ରହ କଲେ, ଔଷଧ ବାଣ୍ଟିଲେ ଓ ରୋଗୀ ସେବା କଲେ । ସାଧାରଣ କ୍ଷେତ୍ରରେ ତାଙ୍କର ଆବିର୍ଭାବ ଓ କାର୍ଯ୍ୟ ଅନେକଙ୍କ ଉପରେ ଗଭୀର ପ୍ରଭାବ ପକାଇଲା, ରକ୍ଷଣଶୀଳ ପରିବାରମାନଙ୍କର ଅନେକ ସ୍ତ୍ରୀ ବୋହୂ ଭୟ ଛାଡ଼ିଲେ, ଘରୁ ବାହାରିଲେ, ପୁରୁଣା ସଂସ୍କାର କାଟିଲେ ଓ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ । ଅଲକାଶ୍ରମ ସେତେବେଳେ ଓଡ଼ିଶାରେ କଂଗ୍ରେସର ରାଜନୈତିକ ଓ ରଚନାତ୍ମକ କାର୍ଯ୍ୟର କେନ୍ଦ୍ର ସ୍ୱରୂପ ହୋଇଥିଲା, ନାନା ସ୍ଥାନରୁ କର୍ମୀ ଆସୁଥିଲେ । ଶ୍ରୀମତୀ ରମା ଦେବୀ ସେମାନଙ୍କର ଯତ୍ନ ନେଉଥିଲେ । ସେହିଦିନୁ ଶ୍ରୀମତୀ ରମା ଦେବୀ ହେଲେ କର୍ମୀପରିବାରର 'ମା', ତାଙ୍କ ଚରିତ୍ରର ମହନୀୟତା, ତାଙ୍କର ବିବିଧ ସଦ୍‌ଗୁଣାବଳୀ ସମସ୍ତଙ୍କର ପ୍ରଶଂସା ଓ ସମ୍ମାନ ଅର୍ଜନ କରି ଆସିଛି ।

୧୯୩୦ ଲବଣ ସତ୍ୟାଗ୍ରହରେ ୮ ଗୋପବାବୁ ଗିରଫ ହେଲେ । ତାପରେ ସେ ଶ୍ରୀମତୀ ମାଳତୀ ଦେବୀ ଓ ଆଉ କେତେକ କର୍ମୀ ମିଶି ନାନା ବିପଦ ମଝିରେ ବହୁ କଷ୍ଟ ସହି ବାଲେଶ୍ୱର ଓ ଇଞ୍ଚୁଡ଼ି ଗଲେ ଓ ସେଠୁ ଶ୍ରୀଜଙ୍ଗ ଯାଇ ଲୂଣମାଟି ସେଠୁ ଅଲକାଶ୍ରମ ନେଉଥିଲେ, ପୁଣି ବାହାରିପଡ଼ି କୁଜଙ୍ଗ ଓ ପାରାଦୀପ ଯାଇ ପୁଲିସ ଫୌଜଙ୍କ ଦେଖନ୍ତରେ କାଳିଆପାଟରେ ଲୁଣ ମାରି ଫେରିଲେ । ଶ୍ରୀଜଙ୍ଗରେ ପୁଲିସ ଅତ୍ୟାଚାର ବିଷୟରେ ଅନୁସନ୍ଧାନ କରିବାକୁ ସେମାନେ ପୁଣି ସେଠିକି ବାହାରିଲେ । ବର୍ଷାଦିନ, ସରକାରଙ୍କ ଡରରେ ବସିବାକୁ ବସ୍ତିରେ ସେମାନଙ୍କୁ ସ୍ଥାନ ଦିଅନ୍ତି ନାହିଁ, ଗାଁ ଲୋକେ ଘର ଭିତରେ ପଶିବାକୁ ପିଣ୍ଡାପଦାରେ ବି ଦିଅନ୍ତି ନାହିଁ, ଏହି ପରିସ୍ଥିତିରେ ବର୍ଷାରେ ଭିଜିଭିଜି ପାଣିକାଦୁଅ ବାଟରେ ଭୋକ ଉପାସରେ ସେମାନେ ଚାଲିଥାନ୍ତି । ଶ୍ରୀଜଙ୍ଗ ଅଞ୍ଚଳ ବୁଲି ଦେଖିଲେ । ଯାଜପୁର, କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡେଇ, ମାହାଙ୍ଗା, ଧର୍ମଶାଳା ଆଦି ଗାଁ ଗଣ୍ଡା ବୁଲି ଗାନ୍ଧୀନୀତି ବୁଝାଇଲେ, ଅସହଯୋଗ, ବିଲାତି ବର୍ଜନ, ନିଶା ବର୍ଜନ ଆଦି ପ୍ରଚାର କଲେ, ସଭା କଲେ, ସ୍ୱେଚ୍ଛାସେବକ ସଂଗ୍ରହ କଲେ ଓ କଂଗ୍ରେସ ପାଇଁ ଚାନ୍ଦା ସଂଗ୍ରହ କଲେ । କଟକରେ ମଦ ଦୋକାନ ଅଫିମ ଦୋକାନ ଆଗରେ ପିକେଟିଂ କଲେ, ସ୍କୁଲ କଲେଜ ଆଗରେ ପିକେଟିଂ କଲେ । 'ବାନରସେନା'ର ଯେଉଁମାନେ ଆହତ ହେଉଥାନ୍ତି ସେମାନଙ୍କୁ ଶୁଶ୍ରୂଷା କଲେ ।

ତା'ପରେ ୧୯୩୦ ନଭେମ୍ବର ୧୧ରେ ଗିରଫ ହୋଇ ଶ୍ରୀମତୀ ରମା ଦେବୀ ଜେଲ ଗଲେ । ସେ ୮ ମାସ ପରେ ଜେଲରୁ ଖଲାସ ହେଲେ, ପୂର୍ବପରି ପୁଣି କଂଗ୍ରେସ ଆନ୍ଦୋଳନ କାର୍ଯ୍ୟକ୍ରମରେ ଲାଗି ରହିଲେ । ୧୯୩୨ ଜାନୁଆରୀ '୬ରେ କଟକରେ ଜନସାଧାରଣଙ୍କ ଆଗରେ ସେ ସ୍ୱାଧୀନତା ସଂକଳ୍ପ ପାଠ କରି ପୁଣି ଗିରଫ ହୋଇ ଜେଲ୍ ଗଲେ । ସେତେବେଳେ ତାଙ୍କ ସମୁଦାୟ ପରିବାର ଜେଲ୍‌ରେ ରହିଲେ ।

୧୯୩୨ ସେପଟେମ୍ବରରେ ରମା ଦେବୀ ଜେଲ୍‌ରୁ ଖଲାସ ହୋଇ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟରେ ନାରୀକର୍ମୀଙ୍କ ନେତୃତ୍ୱ ନେଲେ । ସେମାନେ କଟକର ମେହେନ୍ତର ସାହିସବୁ ବୁଲନ୍ତି, ସେମାନଙ୍କ ଘର ଭିତର, ସାହି ସଫା କରନ୍ତି, ସେମାନଙ୍କ ଲୁଗାପଟା ସଫା କରନ୍ତି, ତାଙ୍କ ପିଲାଙ୍କୁ ସଫା ରଖନ୍ତି, ପାଠ ପଢ଼ାନ୍ତି, ହରିଜନମାନଙ୍କ ସଙ୍ଗେ ଟୋକେଇ ଗ୍ରାଞ୍ଚୁଣୀ ଧରି ଯାଇ ସହରର ସର୍ବସାଧାରଣ ପାଇଖାନାମାନଙ୍କରୁ ମଇଳା ଉଠାନ୍ତି, ଅଛୁଆଁ ଭେଦ ଦୂର କରି ସେମାନଙ୍କର ଆପଣାର ହୋଇ ସେମାନଙ୍କ ସଙ୍ଗେ ମିଶନ୍ତି, ସେମାନଙ୍କ ସମସ୍ୟା ବୁଝନ୍ତି ଓ ସେମାନଙ୍କ ବଦଭ୍ୟାସ ଛଡ଼ାଇ ସୁରୁଚି ଓ ଉନ୍ନତତର ଜୀବନଯାପନ ପ୍ରଣାଳୀ ଶିଖାନ୍ତି । ହରିଜନ କାମ ଗୋଟିଏ ବିଶିଷ୍ଟ ଗାନ୍ଧୀବାଦୀ କାମ, ତାହା ସଙ୍ଗେ ସେ ସେହିଦିନୁ ସମ୍ପୃକ୍ତ ।

୧୯୩୪ରେ ମହାତ୍ମା ଗାନ୍ଧୀଙ୍କର ଓଡ଼ିଶାରେ ହରିଜନ ପଦଯାତ୍ରା ବେଳେ ଶ୍ରୀମତୀ ରମା ଦେବୀ ତାଙ୍କ ସଙ୍ଗେ ଥିଲେ, କିନ୍ତୁ ସେମାନେ ପୁରୀ ପହଞ୍ଚିବା ପରେ ୧୯୩୦ ମେ' ମାସରେ ଶ୍ରୀମତୀ ରମା ଦେବୀଙ୍କ ମା ନିଜ ଗ୍ରାମ ସତ୍ୟଭାମାପୁର (କଟକ ଜିଲ୍ଲା)ରେ ଅସୁସ୍ଥ ହେବାର ଶୁଣି ତାଙ୍କ ପାଖକୁ ଚାଲିଗଲେ, ତାଙ୍କର ମାତୃବିୟୋଗ ହେଲା । ମହାତ୍ମାଜୀ ପଦଯାତ୍ରାରେ ଚାଲିଥିଲେ, ତାଙ୍କୁ ଡକାଇ ପଠାଇଲେ । ସେ ଶୋକାକୁଳ ଅବସ୍ଥାରେ ଆସି ପୁରୁଷୋତ୍ତମପୁରରେ ମହାତ୍ମାଜୀଙ୍କୁ ଦେଖା କଲେ । ମହାତ୍ମାଜୀ ବହୁତ ସ୍ନେହରେ ତାଙ୍କୁ ବୁଝାଇଲେ ଓ ଶେଷରେ କହିଲେ ଯେ ଯେ ଦେଶସେବିକା ହେବାକୁ ଜୀବନ ଉତ୍ସର୍ଗ କରିଛି ତାର ନିଜ ସମୟ ଉପରେ ବ୍ୟକ୍ତିଗତ ଅଧିକାର କାହିଁ ଯେ ସେ ତା ସମୟକୁ ଶୋକରେ ଖର୍ଚ୍ଚ କରିବ ?

ପୁରୁଷୋତ୍ତମପୁରରୁ ଭଦ୍ରକ ଯାଇ ମହାତ୍ମାଜୀ ରେଲ୍‌ରେ ଚଢ଼ିବାଯାକେ ଶ୍ରୀମତୀ ରମା ଦେବୀ ମହାତ୍ମାଜୀଙ୍କ ପାଖେ ପାଖେ ଚାଲିଥିଲେ । ମହାତ୍ମାଜୀ ତାଙ୍କୁ ଓ ତାଙ୍କ ସହକର୍ମିଣୀମାନଙ୍କୁ ସେମାନଙ୍କ ହରିଜନ କାର୍ଯ୍ୟ ଲାଗି ବହୁତ ପ୍ରଶଂସା କରିଥିଲେ ।

ଗାନ୍ଧୀଜୀ ଶ୍ରୀମତୀ ରମା ଦେବୀଙ୍କୁ କହିଥିଲେ, "ଓଡ଼ିଶାରେ ସ୍ତ୍ରୀଲୋକମାନଙ୍କୁ ତାଲିମ୍ ଦେବା ପାଇଁ ବା କାମରେ ଲଗାଇବା ପାଇଁ କୌଣସି ସଂସ୍ଥା ନାହିଁ କି ବ୍ୟବସ୍ଥା ନାହିଁ । ସେକାମ ତୁମେ ହାତକୁ ନିଅ ।"

୧୯୩୪ରେ ଗାନ୍ଧୀଜୀ ଓଡ଼ିଶାରୁ ଫିରିବା ପରେ ୬ ଗୋପବାବୁ ସପରିବାର ବାରିକୁ ଉଠିଗଲେ । ବାରିରେ 'ସେବାଘର' ହେଲା ଓ ନାନା ରଚନାତ୍ମକ କାର୍ଯ୍ୟ ବାରିରେ ଓ ବାରିକୁ କେନ୍ଦ୍ରକରି ଅନ୍ୟାନ୍ୟ ଗ୍ରାମରେ ଚାଲିଲା । ଶ୍ରୀମତୀ ରମା ଦେବୀ ତହିଁରେ ଅଂଶ ଗ୍ରହଣ କଲେ । ନାନା ସ୍ଥାନରୁ ନାରୀ କର୍ମୀ, ଦେଶକାମ କରିବାକୁ ଚାହିଁ ଆସିଥିବା ଶିକ୍ଷାର୍ଥିନୀ ଓ ଅଳ୍ପବୟସ୍କା ବାଳିକା 'ସେବାଘରେ' ରହି ତାଲିମ୍ ପାଉଥିଲେ । ଶ୍ରୀମତୀ ରମା ଦେବୀ ସେମାନଙ୍କୁ ତାଲିମ ଦେଉଥିଲେ ଓ ସେମାନଙ୍କ ଯତ୍ନ ନେଉଥିଲେ ।

ବାରି କେନ୍ଦ୍ର ନାନାପ୍ରକାର ଲୋକହିତକର ସେବାକାର୍ଯ୍ୟ ଓ ସଂସ୍ଥାର କାର୍ଯ୍ୟର କେନ୍ଦ୍ରସ୍ଥଳ ହୋଇଥିଲା । ତହିଁରେ ଶ୍ରୀମତୀ ରମା ଦେବୀ ସକ୍ରିୟ ଅଂଶ ଗ୍ରହଣ କରି ଅକ୍ଳାନ୍ତ ପରିଶ୍ରମ କରିଥିଲେ ।

୧୯୩୮ ମାର୍ଚ୍ଚରେ ଡେଲାଂରେ 'ଗାନ୍ଧୀ ସେବାସଂଘ'ର ବାର୍ଷିକ ସମ୍ମିଳନୀ ବେଳେ ହଜାର ହଜାର ଲୋକଙ୍କୁ ପ୍ରତ୍ୟହ ରାନ୍ଧି ବାଢ଼ି ଖୁଆଇବା ଦାୟିତ୍ୱ ଶ୍ରୀମତୀ ରମା ଦେବୀ ତୁଲାଇଥିଲେ । ସେ ଓ ତାଙ୍କ ନେତୃତ୍ୱରେ କାର୍ଯ୍ୟ କରୁଥିବା ନାରୀ କର୍ମୀମାନେ ସେକାର୍ଯ୍ୟ ଦକ୍ଷତା ସହିତ ସମ୍ପନ୍ନ କରି ମହାତ୍ମା ଗାନ୍ଧୀଙ୍କ ଠାରୁ ଓ ଅନ୍ୟାନ୍ୟ ଆଗନ୍ତୁକମାନଙ୍କ ଠାରୁ ବହୁତ ପ୍ରଶଂସା ପାଇଥିଲେ । ସେହିବର୍ଷ ନଭେମ୍ବରରେ ଗଡ଼ଜାତ ରାଜ୍ୟ ତାଳଚେରରୁ ରାଜାଙ୍କ ଭୟରେ ପ୍ରାୟ ପଚିଶି ହଜାର ଲୋକ ଅନୁଗୁଳ ସୀମା ଭିତରକୁ ପଳାଇ ଆସି ନିରାଶ୍ରୟ ଭାବେ ପଡ଼ି ରହିଲେ । ସେତେବେଳେ ଶ୍ରୀମତୀ ରମା ଦେବୀଙ୍କ ସମେତ ଅନେକ ନାରୀକର୍ମୀ ସେମାନଙ୍କ ସେବା ଯତ୍ନ କଲେ । ୧୯୪୨ ଅଗଷ୍ଟ ୯ ତାରିଖରେ ୬ ଗୋପବାବୁଙ୍କ ସହିତ ସେ ମଧ୍ୟ କଟକରେ ଗିରଫ ହୋଇ ଜେଲ୍ ଗଲେ । ସେ ୧୯୪୪ରେ ଖଲାସ ହେଲେ ।

୧୯୪୫ରେ ମହାତ୍ମା ଗାନ୍ଧୀ ଉତ୍କଳରେ 'କସ୍ତୁରବା ଗାନ୍ଧୀ ଟ୍ରଷ୍ଟ ଫଣ୍ଡ'ର ବିବିଧ କାର୍ଯ୍ୟର ପରିଚାଳନା ଦାୟିତ୍ୱ ଶ୍ରୀମତୀ ରମା ଦେବୀଙ୍କୁ ଦେଲେ । ସେ ତାହା ଦକ୍ଷତା ସହକାରେ ସମ୍ପାଦନ କଲେ । ଏହି ଟ୍ରଷ୍ଟ ଫଣ୍ଡର କାର୍ଯ୍ୟ ବିଷୟରେ ପୂର୍ବେ ବର୍ଣ୍ଣନା କରାଯାଇଛି । ୧୯୪୬ରେ 'ଉତ୍କଳ ନବଜୀବନ ମଣ୍ଡଳ' ଗଢ଼ା ହେଲା । ପ୍ରତିଷ୍ଠାତାମାନଙ୍କ ମଧ୍ୟରୁ ସେ ବି ଜଣେ । ସେହି ବର୍ଷ କଲିକତାରେ ହିନ୍ଦୁ ମୁସଲମାନ ହାଣ କାଟ ଲାଗିଲା । ଓଡ଼ିଶାରେ ଯେପରି ଗଣ୍ଡଗୋଳ ନ ହୁଏ ସେଥିପାଇଁ ଶ୍ରୀମତୀ ରମା ଦେବୀ ମଧ୍ୟ ପ୍ରଚାର କରି ବୁଲିଲେ । ୧୯୫୦ରେ ଅନୁଗୁଳରେ 'ଅଖିଳ ଭାରତ

ସର୍ବୋଦୟ ସମାଜ'ର ବାର୍ଷିକ ସମ୍ମିଳନୀ ବେଳେ ତେଲଙ୍ଗ ସମ୍ମିଳନୀରେ ଯେପରି କରିଥିଲେ ସେହିପରି ଶ୍ରୀମତୀ ରମା ଦେବୀ ହଜାର ହଜାର ଆଗନ୍ତୁକଙ୍କୁ ରାନ୍ଧିବାଢ଼ି ଖୁଆଇବା ଦାୟିତ୍ୱ ସେଠି ତୁଲାଇଥିଲେ ଏବଂ ସେ ଓ ତାଙ୍କ ନାରୀ କର୍ମୀମାନେ ବହୁତ ପ୍ରଶଂସା ଅର୍ଜିଥିଲେ । ୧୯୫୧ ଡିସେମ୍ବରରେ ରାୟଗଡ଼ା ସବ୍‌ଡିଭିଜନ୍‌ରେ ଦୁର୍ଭିକ୍ଷ ପଡ଼ି ଅନାହାର ମୃତ୍ୟୁ ହୋଇଥିବା ସମ୍ବାଦ ପାଇ ୰ ଗୋପବାବୁ ତାଙ୍କୁ, ମାଳତୀ ଦେବୀଙ୍କୁ ଓ ୰ ଈଶ୍ୱରଲାଲ୍ ବ୍ୟାସ୍‌ଙ୍କୁ ସେଠାକୁ ପଠାଇଥିଲେ । ଶ୍ରୀମତୀ ରମା ଦେବୀ ସେଠି କିଛିଦିନ ରହି ବୁଲି ବୁଲି ନାନା ସ୍ଥାନରେ ଅନ୍ନଛତ୍ର ଖୋଲିବା ବ୍ୟବସ୍ଥାରେ ସାହାଯ୍ୟ କରିଥିଲେ ।

୧୯୫୨ ଜାନୁଆରୀ ୭ରୁ ୰ ଗୋପବନ୍ଧୁ ଚୌଧୁରୀଙ୍କ ସଙ୍ଗେ ସେ ଦୀର୍ଘ ପଦଯାତ୍ରାରେ ବାହାରି ପଡ଼ିଲେ । ପଦଯାତ୍ରୀ ଦଳ ଓଡ଼ିଶାର ଆଠଟି ଜିଲ୍ଲା ଦେଇ ଗଲେ, ବାଟରେ ବହୁତ ବଣ ପାହାଡ଼ ପଡ଼ିଲା, ନାନା ବିପଦସଙ୍କୁଳ ମାଳ ଅଞ୍ଚଳ, ଚାରି ମାସ ବାଇଶି ଦିନ ପରେ ସେମାନେ କଟକ ଜିଲ୍ଲାର 'ଖଣ୍ଡସାହି' ଗ୍ରାମରେ ପହଞ୍ଚିଲେ । ଏହା ଓଡ଼ିଶାରେ ପ୍ରଥମ ଭୂଦାନ-ଯାତ୍ରା । ଶ୍ରୀମତୀ ରମା ଦେବୀ ଚାଲିଥାନ୍ତି, ଖଣ୍ଡସାହି ଅଳ୍ପବାଟ ଥାଏ ସେ ବସନ୍ତ ରୋଗରେ ଆକ୍ରାନ୍ତ ହେଲେ, ନିଜ ବାପଘର ସତ୍ୟଭାମାପୁରକୁ ଚାଲିଗଲେ ଓ ମାସେ ପରେ ଭଲ ହୋଇ ଫେରିଲେ । ସେ ବର୍ଷ ଅକ୍‌ଟୋବର ୨ ତାରିଖରୁ ପୁଣି ୰ ଗୋପବାବୁଙ୍କ ସଙ୍ଗେ ଭୂଦାନ-ପଦଯାତ୍ରାରେ ବାହାରିଲେ, ଭଦ୍ରକ ଓ ବାଲେଶ୍ୱର ସଦର ସବ୍‌ଡିଭିଜନ୍, ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାରେ ୪୨୭ ମାଇଲ୍ ବୁଲି ବୁଲି ଭୂଦାନ କାର୍ଯ୍ୟ କରି ଫେରିଲେ ।

ଶ୍ରୀମତୀ ରମା ଦେବୀ ୰ ଗୋପବନ୍ଧୁ ଚୌଧୁରୀଙ୍କ ସହିତ 'ଭୂଦାନ' କାର୍ଯ୍ୟରେ ଯୋଗ ଦେଲା ଦିନୁଁ ତାହାର ଅନ୍ତର୍ଗତ ବିବିଧ କାର୍ଯ୍ୟ କରି ଆସିଛନ୍ତି ଓ ସେଥିପାଇଁ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଗସ୍ତ କରିଛନ୍ତି । ଓଡ଼ିଶାରେ ୰ ବିନୋବାଜୀଙ୍କ ଭୂଦାନ ପଦଯାତ୍ରା ବେଳେ ଅନେକ ସ୍ଥାନରେ ସେ ତହିଁରେ ଯୋଗ ଦେଇ ପଦଯାତ୍ରା କରିଥିଲେ ।

୧୯୫୫ରେ ପୁରୀରେ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ ଓ ପ୍ରଦର୍ଶନୀ ହୋଇଥିଲା । ତେଲଙ୍ଗ ସମ୍ମିଳନୀ ଓ ଅନୁଗୁଳ ସମ୍ମିଳନୀ ପରି ସେତେବେଳେ ବି ଶ୍ରୀମତୀ ରମା ଦେବୀ ତାଙ୍କର ସହକର୍ମିଣୀମାନଙ୍କ ସହିତ ପ୍ରତିଦିନ ସହସ୍ର ସହସ୍ର ଆଗନ୍ତୁକଙ୍କୁ ରାନ୍ଧି ବାଢ଼ି ଖୁଆଇବା ଦାୟିତ୍ୱ ନେଇଥିଲେ ଓ ଅତି ଦକ୍ଷତା ସହିତ ତାହା ତୁଲାଇଥିଲେ । ଆଗନ୍ତୁକମାନେ ସମସ୍ତେ ସେମାନଙ୍କୁ ସେଥିପାଇଁ ଉଚ୍ଛ୍ୱସିତ ପ୍ରଶଂସା କରିଗଲେ ।

୧୯୫୬ରେ ସେ କେନ୍ଦୁଝର ଜିଲ୍ଲାରେ ଭୂଦାନ କାମ କଲେ ଓ ୧୯୫୭ରୁ ସେ ଜିଲ୍ଲାରେ ଭୂଦାନ କାମର ସମୁଦାୟ ଦାୟିତ୍ୱ ନେଇ ସେଠି କଣ୍ଟିଆପଡ଼ା ଗ୍ରାମରେ

କେନ୍ଦ୍ର କଲେ । ୧୯୫୮ ଅପ୍ରେଲରେ ଗୋଷ୍ଠୀ ସମ୍ମିଳନୀରେ ଯୋଗଦେବାକୁ ସେ (ଶଙ୍କରାଙ୍କ) ବ୍ରହ୍ମପୁର ଗଲେ, ସେଠି ତାଙ୍କ ଟାଇଫଏଡ୍ ଜ୍ୱର ହେଲା, ଚିକିତ୍ସା ପାଇଁ ତାଙ୍କୁ କଟକ ଯୋଗୀଆ ସାହି ଆଶ୍ରମକୁ ଅଣା ହେଲା । ୬ ଗୋପବାବୁ ମୟୂରଭଞ୍ଜ ଜିଲାରେ ଭୂଦାନ ପାଇଁ ଗସ୍ତ କରୁଥିଲେ, ସେଠୁ ଫେରି ବସ୍ତି ଯାଇ ତାଙ୍କ ଅସୁସ୍ଥତା ବିଷୟ ଶୁଣି କଟକ ଆସିଲେ ଓ ତାଙ୍କ ସେବା ଶୁଶ୍ରୂଷାରେ ଲାଗିଲେ । ସେ ଭଲ ହେଲେ କିନ୍ତୁ ଅତି ଦୁର୍ବଳ ହୋଇ ଶଯ୍ୟାଶାୟିନୀ ହୋଇଥାନ୍ତି । ଏହି ସମୟରେ ଅପ୍ରେଲ ୨୯ ତାରିଖ ଦିନ ୬ ଗୋପବନ୍ଧୁ ଚୌଧୁରୀ କଟକ ଯାଇ ଲେଉଟି ଆସି ହଠାତ୍ ରାତିରେ ଅସୁସ୍ଥ ହୋଇ ମରିଗଲେ ।

ସେହି ଦାରୁଣ ଆଘାତ ସହି ପୁଣି ଠିଆ ହେବାକୁ ଶ୍ରୀମତୀ ରମା ଦେବୀଙ୍କୁ ବହୁଦିନ ଲାଗିଗଲା । ସେ ପୁଣି ଦମ୍ଭ ଧରିଲେ ଓ ପୂର୍ବପରି ସ୍ୱାମୀଙ୍କ ଆଦର୍ଶ ଧରି ତାଙ୍କର କରୁଥିବା କାର୍ଯ୍ୟରେ ଲାଗିପଡ଼ିଲେ ।

ସ୍ୱାମୀଙ୍କ ମୃତ୍ୟୁ ପରେ ସେ ୧୯୫୮ରେ ମହାରାଷ୍ଟ୍ରର ପଣ୍ଢରପୁରରେ ହୋଇଥିବା ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀର ସଭାନେତ୍ରୀ ହୋଇ ଯୋଗ ଦେଇଥିଲେ । ସେହିବର୍ଷ ସେ ଭାରତରେ 'ଶାନ୍ତିସେନା' ସଂଗଠନ କାର୍ଯ୍ୟର ନେତୃତ୍ୱ ନେଇଥିଲେ ଓ ୧୯୫୯ରେ 'ଅଖିଳ ଭାରତ ଶାନ୍ତିସେନା ମଣ୍ଡଳ'ର ସଭାପତି ହେଲେ । ସେହିବର୍ଷ ତାଙ୍କଠୁ ପ୍ରେରଣା ପାଇ ଶ୍ରୀମତୀ ରମ୍ଭା ଦେବୀ ଦୁଗ୍ଧିଆ ହରିଦାସପୁର (କଟକ ଜିଲା)ରେ 'ସେବା ସମିତି' ଅନୁଷ୍ଠାନଟି ପ୍ରତିଷ୍ଠା କଲେ । ସେବର୍ଷ ନଈବଢ଼ି ବେଳେ ବନ୍ୟା ପ୍ରପୀଡ଼ିତ ଲୋକଙ୍କ ପାଇଁ ଶ୍ରୀମତୀ ରମା ଦେବୀ ସାହାଯ୍ୟ ସଂଗଠନ କଲେ । ଚୀନ୍ ଆକ୍ରମଣ ପରେ ୧୯୬୨ ଡିସେମ୍ବରରେ ସେ ଆସାମର ସୀମାନ୍ତ ଅଞ୍ଚଳ ବୁଲି ଦେଖିଥିଲେ । ୧୯୬୩ରେ ଓଡ଼ିଶାରେ ୬ ବିନୋବାଜୀଙ୍କ ପଦଯାତ୍ରା ବେଳେ ସେ ପଦଯାତ୍ରାର କାର୍ଯ୍ୟକ୍ରମକୁ ପରିଚାଳନା କରିଥିଲେ । ୧୯୬୪ରେ ସେ କୋରାପୁଟ ଜିଲାରେ ଭୂଦାନ ଗସ୍ତ କଲେ । ୧୯୬୪ ଅପ୍ରେଲରେ ରାଉରକେଲାରେ ସାଂପ୍ରଦାୟିକ ଗଣ୍ଡଗୋଳର ଅବ୍ୟବହିତ ପରେ ସେଠିକୁ ଯାଇ ଶାନ୍ତି-ସଦ୍‌ଭାବ ପ୍ରତିଷ୍ଠା ପାଇଁ କାର୍ଯ୍ୟ କଲେ । ପୁଣି ସେବର୍ଷ ସେପ୍ଟେମ୍ବରରେ ଯେତେବେଳେ କଟକରେ ଛାତ୍ର ଆନ୍ଦୋଳନ ଲାଗିଗଲା, ଶାନ୍ତି ପ୍ରତିଷ୍ଠା ପାଇଁ ଓ ସମାଧାନ ପାଇଁ ସେ ବହୁତ ପରିଶ୍ରମ କଲେ । ୧୯୬୫ରେ ସେ 'ଉତ୍କଳ ଗାନ୍ଧୀସ୍ମାରକ ନିଧି'ର ସଭାପତି ହେଲେ । ୧୯୬୬ରେ କଳାହାଣ୍ଡି ଜିଲାରେ ଦୁର୍ଭିକ୍ଷ ପଡ଼ିଲା, ସେ ସେହି ଜିଲା ସାରା ବୁଲିଲେ ଓ ଦୁର୍ଭିକ୍ଷ ପାଇଁ ସାହାଯ୍ୟ ସଂଗ୍ରହ କଲେ, "ଉତ୍କଳ ରିଲିଫ୍ କମିଟି" ଗଢ଼ା ହେଲା, ସେ ତାହାର ସଭାପତି ହେଲେ । ୧୯୬୭ରେ ବାଲେଶ୍ୱର ଜିଲା ଓ ମୟୂରଭଞ୍ଜ ଜିଲାରେ ବନ୍ୟା-ଦୁର୍ଗତି ହେଲା ଓ କଟକ, ପୁରୀ, ବାଲେଶ୍ୱର ଜିଲା ଉପକୂଳ ଅଞ୍ଚଳରେ ବାତ୍ୟା ଦୁର୍ଗତି ହେଲା । ସେଥିରେ ସେ ରିଲିଫ୍ କାର୍ଯ୍ୟ କଲେ । ୧୯୬୮ରେ ଓଡ଼ିଶାର ଆଠଟି ଜିଲାରେ

ଦୁର୍ଭିକ୍ଷ ପଡ଼ିଲା, ସେଠି ବି ସେ ରିଲିଫ୍ କାମ କଲେ । ୧୯୬୭ରୁ ୧୯୬୯ ଯାଏଁ ଗାନ୍ଧୀ-ଶତବାର୍ଷିକୀ ପାଳନ ସକାଶେ ସେ ନାନା ଉଦ୍ୟମ କରୁଥାନ୍ତି । ୧୯୬୯ରେ କଟକ ଜିଲାରେ ଜମ୍ବୁରେ ଭାଷା ବିଦ୍ୱେଷ, କଟକରେ ସାଂପ୍ରଦାୟିକ ବିଦ୍ୱେଷ ଓ ବ୍ରହ୍ମପୁରରେ ସାଂପ୍ରଦାୟିକ ଗଣ୍ଡଗୋଳ ଦେଖାଦେଲା, ସେଠି ଶାନ୍ତି ପ୍ରତିଷ୍ଠା କାର୍ଯ୍ୟରେ ଅନ୍ୟାନ୍ୟମାନଙ୍କ ସହିତ ମିଶି ସେ ବହୁତ କାର୍ଯ୍ୟ କଲେ । ୧୯୭୧-୭୨ରେ ଓଡ଼ିଶାରୁ ଅଣେଇଶିଜଣ କର୍ମୀଙ୍କୁ ଘେନି ସେ ପଶ୍ଚିମବଙ୍ଗର ଦିନାଜ୍‌ପୁର ଗଲେ, ସେଠି ପୂର୍ବବଙ୍ଗରୁ ପଳାତକ ଶରଣାର୍ଥୀମାନଙ୍କ ସେବାରେ ସେମାନଙ୍କ ସଙ୍ଗେ ପାଞ୍ଚମାସ ରହି କାର୍ଯ୍ୟ କଲେ । ୧୯୭୨ରେ ଓଡ଼ିଶା ସରକାର ତ୍ରାସ୍ତ ଘୂର୍ଣ୍ଣିଝଡ଼ ବନ୍ୟା ପ୍ରପୀଡ଼ିତ ଲୋକଙ୍କୁ ଥଇଥାନ କଲେ, ସେ କାର୍ଯ୍ୟରେ ସେ ସହଯୋଗ କରିଥିଲେ ।

୧୯୭୨ ମାର୍ଚ୍ଚ ୧୯ରେ ତାଙ୍କ ଉଦ୍ୟମରେ କଟକରେ 'ଶିଶୁବିହାର'ଟିଏ ଖୋଲା ହେଲା । ଉଦ୍ଦେଶ୍ୟ ଥିଲା ଯେ ତାହାର ମାଧ୍ୟମରେ ବିଭିନ୍ନ ଲୋକଙ୍କ ସହିତ ସମ୍ପର୍କ ଦୃଢ଼ୀଭୂତ ହେବ ଓ ତଦ୍ୱାରା ମଦନିଶା ନିବାରଣ, ସାହି ସାହି ଭିତରେ ଗଣ୍ଡଗୋଳ ବନ୍ଦ କରିବା ଆଦି କାର୍ଯ୍ୟ କରିଯାଇ ପାରିବ ।

ଜୀବନଯାକ ସେ ନାନା ପ୍ରକାର ସେବାକାର୍ଯ୍ୟ କରିଛନ୍ତି ଓ ନାନା ଜନହିତକର କାର୍ଯ୍ୟ ସହିତ ସମ୍ପୃକ୍ତ ହୋଇଛନ୍ତି । ଭିକାରୀଙ୍କ ଥଇଥାନ, କୁଷ୍ଠରୋଗୀଙ୍କ ସେବା ଓ ଥଇଥାନ ତାହାର ଅନ୍ତର୍ଭୁକ୍ତ ।

୧୯୭୫ରେ ସରକାର 'ଜରୁରୀକାଳୀନ ପରିସ୍ଥିତି' ଘୋଷଣା କରି ଆଇନ୍ ଜାରି କଲା ପରେ ସେ ତା ବିରୁଦ୍ଧରେ ପ୍ରତିବାଦ କଲେ, କଟକରେ ଗୋଟିଏ ମୌନ ଶୋଭାଯାତ୍ରାରେ ଚାଲିଲେ ଓ ତାଙ୍କ ସ୍ୱାକ୍ଷର ଥାଇ ପ୍ରତ୍ୟୁତ୍ତରପତ୍ର ଛପା ହୋଇ ବଣ୍ଟା ହେଲା । କିନ୍ତୁ ତାଙ୍କୁ ଗିରଫ କରି ହୋଇ ନ ଥିଲା ।

୧୯୭୭ରେ ୭ ଆଗଷ୍ଟ ହରେକୃଷ୍ଣ ଦାସଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷରେ କଟକରେ ସେ "ଆଗଷ୍ଟ ହରେକୃଷ୍ଣ ମେମୋରିଏଲ୍ ଟ୍ରଷ୍ଟ୍" ପ୍ରତିଷ୍ଠା କରାଇଲେ; ସେହି ଟ୍ରଷ୍ଟ୍ ପାଣ୍ଠିରେ ନାନା ପ୍ରକାର ସେବାକାର୍ଯ୍ୟ କରି ହୁଏ । ସେହିବର୍ଷ ସେଠି ସେ ଗୋଟିଏ "କର୍କଟ ରୋଗ ନିର୍ଣ୍ଣୟ କେନ୍ଦ୍ର" ପ୍ରତିଷ୍ଠା ପାଇଁ କାର୍ଯ୍ୟ ଆରମ୍ଭ କରାଇଲେ ।

ଚିରକାଳ ସେବାପରାୟଣା ଶ୍ରୀମତୀ ରମା ଦେବୀ କେଉଁଠି ଲୋକଙ୍କୁ ଦୁଃଖ-ଦୁର୍ଦ୍ଦଶା ପଡ଼ିଲେ ଦୁର୍ବଳ ଅବସ୍ଥାରେ ବୃଦ୍ଧ ବୟସରେ ସେମାନଙ୍କ ପାଇଁ କିଛି କରିବାକୁ ଦୂର ଦୂର ଜିଲାମାନଙ୍କୁ ଗସ୍ତ କରୁଥିଲେ, କିଛିକାଳ ହେବ ଅତି ଦୁର୍ବଳ ହେବାରୁ ସେପରି ଆଉ ଯାଇପାରୁ ନାହାନ୍ତି । ତଥାପି ସେ ଯାହା ପାରନ୍ତି କରିଥାନ୍ତି । ଅନେକେ ତାଙ୍କ ମତାମର୍ଶ ନେଉଛନ୍ତି, ସେ ପରାମର୍ଶ ଦିଅନ୍ତି, ସଦ୍‌ବିଚାର ଦିଅନ୍ତି, ଉତ୍ସାହ ଓ

ପ୍ରେରଣା ଦେଉଥିଲେ । ଏବେ ମଧ୍ୟ ଦୁଇଦଳ ଭିତରେ କଳହ ହେଲେ କେବେ କେବେ ଉଭୟ ଦଳ ତାଙ୍କ ପାଖକୁ ଯାଇ ତାଙ୍କଠୁଁ ମୀମାଂସା ନିଅନ୍ତି ।

ଛାତ୍ରଛାତ୍ରୀମାନଙ୍କ ସଙ୍ଗେ ମିଶିବାକୁ ତାଙ୍କର ଖୁବ ଆନନ୍ଦ । ସେ ଅନେକଥର ସେମାନଙ୍କ ଦ୍ୱାରା ଆମନ୍ତ୍ରିତ ହୋଇ ଯାଇ ଛାତ୍ର-ଅନୁଷ୍ଠାନମାନଙ୍କରେ ବକ୍ତୃତା ଦେଇଛନ୍ତି । ବିବିଧ ସଭାରେ ମଧ୍ୟ ସେ ବକ୍ତୃତା ଦେଇଛନ୍ତି । ତାଙ୍କ ବକ୍ତୃତା ଉପାଦେୟ ଓ ଜନପ୍ରିୟ ହୋଇଥାଏ । ନାରୀମାନଙ୍କ ସଭାରେ ସେ ଅନେକଥର ଭାଷଣ ଦେଇଛନ୍ତି । ନାରୀଶକ୍ତିର ବିକାଶ ପାଇଁ ସେ ଉଦ୍ୟମ କରି ଆସିଛନ୍ତି ।

ଦେଶବାସୀଙ୍କର ତାଙ୍କ ପ୍ରତି ଓ ତାଙ୍କ କାର୍ଯ୍ୟ ପ୍ରତି ଅବିସମ୍ବାଦୀ ଅକୁଣ୍ଠିତ ଓ ଅତି ଉଚ୍ଚ ଶ୍ରଦ୍ଧା ଓ ସମ୍ମାନ ରହିଛି । ତାହାର ନିଦର୍ଶନ ସ୍ୱରୂପ ଭୁବନେଶ୍ୱରସ୍ଥ ସରକାରୀ ମହିଳା କଲେଜର ନାମ ରଖାଯାଇଛି "ରମା ଦେବୀ ମହିଳା କଲେଜ" । ୧୯୮୩ରେ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡ.ଲିଟ୍. ଉପାଧି ଦେଲେ ।

ସେ ସୁଲେଖିକା । ୧୯୮୪ରେ ତାଙ୍କ ଆତ୍ମଜୀବନୀ "ଜୀବନ ପଥେ" ପ୍ରକାଶିତ ହୋଇଛି ।

୧୯୮୮ରେ ତାଙ୍କ ସ୍ୱାମୀ ବିୟୋଗ ପରେ ୧୯୮୩ରେ ଓ ୧୯୮୪ରେ ତାଙ୍କୁ ଦାରୁଣ ବିୟୋଗ ଦୁଃଖ ଭୋଗିବାକୁ ପଡ଼ିଛି । ୧୯୮୩ରେ ଗୋଟିଏ ମଟର ଦୁର୍ଘଟଣାରେ ତାଙ୍କ ଦେଅର ୬ ନବକୃଷ୍ଣ ଚୌଧୁରୀଙ୍କର ସାନ ଝିଅର ଶିକ୍ଷିତ ଯୁବା ପୁଅଟିର ମୃତ୍ୟୁ ହେଲା । ତା ପଛେ ପଛେ ଶ୍ରୀମତୀ ରମା ଦେବୀଙ୍କ ପୁଅ ମନମୋହନ ଚୌଧୁରୀଙ୍କର ଏକମାତ୍ର ପୁଅ ୬ କବୀର ଚୌଧୁରୀଙ୍କର ମଧ୍ୟ ଗୋଟିଏ ମଟର ଦୁର୍ଘଟଣାରେ ଆମେରିକାରେ ମୃତ୍ୟୁ ହେଲା । ସେ ବି ଯୁବକ, ବିବାହିତ, ସେତେବେଳେ ଗୋଟିଏ ସନ୍ତାନର ପିତା, ସେଠି ପି. ଏଚ୍‌ଡି. ପାଇ ସାରି ବୈଜ୍ଞାନିକ ଗବେଷଣା କାର୍ଯ୍ୟରେ ନିଯୁକ୍ତ ଥିଲେ ।

ତାପରେ ୧୯୮୪ରେ ଚାଲିଗଲେ ଶ୍ରୀମତୀ ରମା ଦେବୀଙ୍କର ଅତି ସ୍ନେହର ଦେଅର, ସୁନାମଧନ୍ୟ ୬ ନବକୃଷ୍ଣ ଚୌଧୁରୀ ।

୬ ଗୋପବନ୍ଧୁ ଚୌଧୁରୀଙ୍କର ପ୍ରତ୍ୟେକ ରଚନାତ୍ମକ କାର୍ଯ୍ୟରେ ଆଜୀବନ ଶ୍ରୀମତୀ ରମା ଦେବୀ ସହଯୋଗ କଲେ ଓ ଅଂଶ ଗ୍ରହଣ କଲେ । ସେ ୬ ଗୋପବାବୁଙ୍କ ଭଳି ସୂତାକଟାରେ ପାରଦର୍ଶିତା ଅର୍ଜନ କଲେ । ସେ ମଧ୍ୟ ଶରୀର-ଶ୍ରମ କଲେ । ବାରୀରେ ଥିଲାବେଳେ ଗୋଟିଏ ସମୟରେ ୬ ଗୋପବାବୁଙ୍କ ସହିତ ସେ ମଧ୍ୟ ଅପରର କ୍ଷେତରେ ମଜୁରି ଖଟିଲେ, ଝୋଟକେଇରେ ମାଟି ବୋହିଲେ, ଧାନ କାଟିଲେ, କଲେଇ ମୁଣ୍ଡେଇ ଗାଁ ଦାଣ୍ଡେ ଦାଣ୍ଡେ ଆଶ୍ରମକୁ ଚାଲିଲେ । ଆଶ୍ରମ ଜୀବନର ନିର୍ଘଣ୍ଟ ଓ ନିୟମ ଅନୁସାରେ ଯେ ଜୀବନଯାକ ଚଳିଛନ୍ତି, ସେ ଆଦର୍ଶ କର୍ମୀ ହେଲେ ।

ତାହାଛଡ଼ା ସେ ହେଲେ କର୍ମୀ ପରିବାରର 'ମା'। ଶହ ଶହ କର୍ମୀ, ତନ୍ମଧ୍ୟରୁ କିଏ କଣ ଖାଇବାକୁ ଭଲ ପାଏ, କାହାର କେଉଁଥିରେ ସୁବିଧା, କାହା ମନରେ କି ଦୁଃଖ, କି ଦୁଶ୍ଚିନ୍ତା ଓ କପରି ତାହା ଲାଘବ ହେବ, ସବୁ ବୁଝନ୍ତି 'ମା' ରମା ଦେବୀ ଓ ବ୍ୟବସ୍ଥା କରନ୍ତି। କର୍ମୀମାନଙ୍କ ବିପଦ ଆପଦ ବେଳେ ସେ ସେମାନଙ୍କୁ ସନ୍ତୋଳନ୍ତି ଓ ସେମାନଙ୍କ ପରିବାରକୁ ସାହାଯ୍ୟ କରନ୍ତି।

କେବଳ ହରିଜନ-ସେବା ନୁହେଁ, ସେ ଅନ୍ୟାନ୍ୟ ନାନା ବିଷୟରେ ସମାଜ-ସଂସ୍କାର କାର୍ଯ୍ୟ କରିଛନ୍ତି। ହିନ୍ଦୁ ଘରେ ବିବାହ, ଶୁଦ୍ଧିକ୍ରିୟା ଆଦିରେ ବ୍ରାହ୍ମଣ ଭୋଜନ, ବନ୍ଧୁ କୁଟୁମ୍ବଙ୍କ ଭୋଜି ଆଦି ଯେଉଁ ଲୋକାଚାର ଅଛି ଓ ଯହିଁରେ ଲୋକେ ଖର୍ଚ୍ଚାନ୍ତ ହୁଅନ୍ତି ସେସବୁ ୵ ଗୋପବନ୍ଧୁ ଚୌଧୁରୀ ଓ ସେ ମାନଲେ ନାହିଁ, ନ ମାନିବାକୁ ଅନ୍ୟମାନଙ୍କୁ ପ୍ରବର୍ତ୍ତାଇଲେ, ଅନେକେ ସେସବୁ ଛାଡ଼ିଲେ। ୵ ଗୋପବାବୁ ଓ ରମା ଦେବୀ ତାଙ୍କର ଏକମାତ୍ର କନ୍ୟା ଅନ୍ନପୂର୍ଣ୍ଣାଙ୍କର ନିଜଠୁଁ ଭିନ୍ନ ଜାତିରେ ବିବାହ ଦେଲେ, ଜାମାତା ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ଜାତିରେ ବୈଶ୍ୟ ବଣିଆଁ। ସେହିପରି ତାଙ୍କର ଏକମାତ୍ର ପୁତ୍ର ମନମୋହନଙ୍କର ବିବାହ ଜଣେ ବ୍ରାହ୍ମଣ ଜାତିର ବଙ୍ଗୀୟା ଯୁବତୀଙ୍କ ସଙ୍ଗେ କରାଇଲେ, ସେ କୁମାରୀ ସୁମିତ୍ରା ବନ୍ଦୋପାଧ୍ୟାୟ। ୵ ଗୋପବାବୁଙ୍କ ସାନ ଭାଇ ୵ ନବକୃଷ୍ଣ ଚୌଧୁରୀ ଯେତେବେଳେ ଜଣେ ବଙ୍ଗୀୟା ଯୁବତୀ କୁମାରୀ ମାଳତୀ ସେନ୍‌ଙ୍କୁ ବିବାହ କରିବାକୁ ଇଚ୍ଛା କଲେ ସେତେବେଳେ ୵ ଗୋପବାବୁ ଓ ଶ୍ରୀମତୀ ରମା ଦେବୀ ତାଙ୍କ ବନ୍ଧୁ ବାନ୍ଧବଙ୍କ ପ୍ରତିବାଦ ସତ୍ତ୍ୱେ ସେ ବିବାହ ପ୍ରସ୍ତାବକୁ ଦୃଢ଼ ସମର୍ଥନ ଜଣାଇଥିଲେ। ଶ୍ରୀମତୀ ରମା ଦେବୀ ଅନେକ ସ୍ଥଳରେ ଅସବର୍ଣ୍ଣ ବିବାହ କରାଇଥିଲେ।

ଶ୍ରୀମତୀ ରମା ଦେବୀ ନିଜର ମହତ୍ତ୍ୱ ଗୁଣାବଳୀ, ଆଦର୍ଶ ଚରିତ୍ର, ଓ ନିଃସ୍ୱାର୍ଥପର ଦେଶସେବା ଲାଗି ସର୍ବତ୍ର ପରିଚିତା ଓ ପୂଜିତା। ସେ ଆତ୍ମତ୍ୟାଗ, ପରୋପକାର ଓ ସଦାଚାରର ପ୍ରତିମୂର୍ତ୍ତି।

## ୵ ନବକୃଷ୍ଣ ଚୌଧୁରୀ

୵ ନବକୃଷ୍ଣ ଚୌଧୁରୀ ୵ ଗୋପବନ୍ଧୁ ଚୌଧୁରୀଙ୍କ ସାନ ଭାଇ, ତାଙ୍କଠାରୁ ସାଢ଼େ ଛଅବର୍ଷ ସାନ। ତାଙ୍କର ଜନ୍ମ ୧୯୦୧ ନଭେମ୍ବର ୧୧ରେ ନିଜ ପୈତୃକ ଗ୍ରାମ ଖେରସରେ ଓ ମୃତ୍ୟୁ ଅନୁଗୁଳରେ ୧୯୮୪ ଜୁନ୍ ୨୩ ତାରିଖରେ। ସେ କଟକରେ ପିଆରୀମୋହନ ଏକାଡେମିରେ ପଢ଼ି ମ୍ୟାଟ୍ରିକୁଲେସନ୍ ପାଶ୍ କଲେ ଓ ରେଭେନସା କଲେଜର ଛାତ୍ର ହେଲେ। ସେତେବେଳେ କଟକରେ ୵ ଗୋପବନ୍ଧୁ ଚୌଧୁରୀ ଆଦିଙ୍କ ଉଦ୍ୟମରେ କଟକରେ 'ଭାରତୀ ଭବନ' ବୋଲି ଗୋଟିଏ ପାଠାଗାର ଓ ଲାଇବ୍ରେରୀ ପ୍ରତିଷ୍ଠିତ ହୋଇଥିଲା। ସେଠାକୁ ୵ ନବକୃଷ୍ଣ ଚୌଧୁରୀ,

ଉତ୍କଳର ହରେକୃଷ୍ଣ ମହତାବ ଆଦି ସେତେବେଳର କଲେଜ ଛାତ୍ରମାନେ ଓ ଅନ୍ୟାନ୍ୟ ଅନେକେ ଯାଉଥିଲେ, ନାନା ଖବର କାଗଜ ଓ ଦେଶ ବିଦେଶ ବିଷୟରେ ବହି ପଢ଼ୁଥିଲେ ଓ ରାଜନୀତି ଚର୍ଚ୍ଚା କରୁଥିଲେ । ସେ ସମୟର ରାଜନୈତିକ ଆନ୍ଦୋଳନର ପ୍ରଭାବ ୰ ନବକୃଷ୍ଣ ଚୌଧୁରୀ, ଉତ୍କଳର ମହତାବ ଆଦିଙ୍କ ଉପରେ ପଡ଼ିଥିଲା ଓ ବି. ଏ. ଛାତ୍ର ଥିଲାବେଳେ ସେମାନେ ୧୯୨୧ରେ କଲେଜ ଛାଡ଼ିଥିଲେ ।

ଆରମ୍ଭ ହେଲା ୰ ନବକୃଷ୍ଣ ଚୌଧୁରୀଙ୍କ ରାଜନୈତିକ ଜୀବନ । ୧୯୨୧ରେ ସେ କଂଗ୍ରେସ ଆନ୍ଦୋଳନରେ ଯୋଗଦେଇ ଗିରଫ ହେଲେ, ଜେଲ୍ ଗଲେ । ଜେଲ୍‌ରୁ ବାହାରି ୧୯୨୩ରେ ପଢ଼ିବାକୁ ଶାନ୍ତି ନିକେତନ ଗଲେ ।

ଶାନ୍ତି ନିକେତନରେ ତାଙ୍କର ଜଣେ ବଙ୍ଗୀୟା ଛାତ୍ରୀ କୁମାରୀ ମାଳତୀ ସେନ୍‌ଙ୍କ ସହିତ ଚିହ୍ନା ହେଲା । ଉଭୟେ ଏକାବାଟର, ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ, ଦେଶର ବିବିଧ ସମସ୍ୟା ବିଷୟରେ ଓ ତାର ସମାଧାନ ବିଷୟରେ ଦୁହିଁଙ୍କ ମତ ଏକାପରି, ଉଭୟେ ପରାଧୀନତା, ବନ୍ଧନ, ଶୋଷଣ, ସମାଜରେ କୁସଂସ୍କାର, ଜଡ଼ତା, ଅନ୍ୟାୟ, ଅସମତା, ଅବିଚାର ପ୍ରତି ଅସନ୍ତୁଷ୍ଟ, ଉଭୟେ ସାହସୀ, ବିପ୍ଳବୀ, ଆଦର୍ଶବାଦୀ, ଉଭୟେ ନୂଆ ଦୁନିଆଁର ସ୍ୱପ୍ନ ଦେଖୁଥିଲେ ଓ ଉଭୟେ ନିଜ ବିଚାରରେ ମୁକ୍ତ, ସ୍ୱାଧୀନ ଓ ନିର୍ଭୀକ ଥିଲେ । ସେମାନଙ୍କର ବନ୍ଧୁତା ବଢ଼ିଲା ଓ ସେମାନେ ବିବାହ କରିବାକୁ ସଂକଳ୍ପ କଲେ । ସେ ସମୟରେ ବିଶେଷତଃ ଓଡ଼ିଶାରେ ସେପରି ବିବାହ ଗୋଟିଏ ସାଧାରଣ ବିଷୟ ନ ଥିଲା । ଜଣେ ଓଡ଼ିଆ କରଣ, ଜଣେ ବଙ୍ଗୀୟ 'ବୈଦ୍ୟ' ଜାତୀୟା । ୰ ନବବାବୁଙ୍କ ମା' ଓ ବନ୍ଧୁବାନ୍ଧବ ଘୋର ପ୍ରତିବାଦ କଲେ, କିନ୍ତୁ ଦୃଢ଼ ସମର୍ଥନ ଜଣାଇଲେ ତାଙ୍କ ବଡ଼ଭାଇ ୰ ଗୋପବାବୁ ଓ ଶ୍ରୀମତୀ ରମା ଦେବୀ । ସେମାନଙ୍କ ବିବାହ ହେଲା ୧୯୨୭ରେ । ଏକଦା କୁମାରୀ ମାଳତୀ ସେନ୍ ହେଲେ ଓଡ଼ିଶାର ପ୍ରସିଦ୍ଧ ନେତ୍ରୀ ଓ ସମାଜସେବୀ ଶ୍ରୀମତୀ ମାଳତୀ ଦେବୀ ଯେ ଆଜୀବନ ସମାଜର ଦରିଦ୍ର, ଅତ୍ୟାଚାରିତ, ଶୋଷିତ, ଅବହେଳିତ ଗୋଷ୍ଠୀଙ୍କ ପାଇଁ ଅଶେଷ ଦୁଃଖ କଷ୍ଟ ବରଣ କରି କାର୍ଯ୍ୟ କରି ଆସିଛନ୍ତି ଓ ନିର୍ଭୀକ ଅକୁଣ୍ଠିତ ଭାବେ ଅନ୍ୟାୟ, ଅତ୍ୟାଚାର, ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିଛନ୍ତି ।

୰ ନବକୃଷ୍ଣ ଚୌଧୁରୀ ଶାନ୍ତି ନିକେତନରୁ ଯାଇ ଗାନ୍ଧୀଜୀଙ୍କ ସାବରମତୀ ଆଶ୍ରମରେ ରହିଥିଲେ ଓ ସେଠି ଶିକ୍ଷାଲାଭ କରିଥିଲେ । ସେଠୁ ଫେରି କଂଗ୍ରେସ୍ କାର୍ଯ୍ୟରେ ବ୍ୟାପୃତ ରହିଲେ । ସେ ଜଣେ ବୁଦ୍ଧିଜୀବୀ ଥିଲେ, ବହୁତ ବହି ପଢ଼ୁଥିଲେ । ବହୁତ ବ୍ୟକ୍ତିଙ୍କ ସଙ୍ଗେ ମିଶୁଥିଲେ ଓ ଆଲୋଚନା କରୁଥିଲେ, ବହୁତ ସ୍ଥାନ ବୁଲୁଥିଲେ ଓ ଲୋକଙ୍କ ସମସ୍ୟା ଅନୁଧ୍ୟାନ କରୁଥିଲେ ଓ ମୌଳିକ ଚିନ୍ତା କରୁଥିଲେ, କେଉଁ ଉପାୟରେ ନାନା କ୍ଷେତ୍ରରେ ଦେଶର ସାଧାରଣ ଖଟିଖିଆ ଲୋକଙ୍କର ବନ୍ଧନ, ପରାଧୀନତା, ଶୋଷଣ, ଜଡ଼ତା ଓ ଦାରିଦ୍ର୍ୟ ଦୂର ହେବ । ସେ ଥିଲେ ସେ ସମୟର

ଚେତନଶୀଳ, ସମ୍ବେଦନଶୀଳ, ବିପ୍ଳବୀ, ଅଶାନ୍ତ ଯୁବଶକ୍ତିର ପ୍ରତୀକ । ୧୯୨୮ ଆଡ଼କୁ ସେ ଓ ଶ୍ରୀମତୀ ମାଳତୀ ଦେବୀ କଟକ ଜିଲାର ଜଗତ୍‌ସିଂହପୁର ଆଡ଼େ ଅଣଖିଆ ପାଖରେ ତକ୍ଲୁଦ୍ ଗ୍ରାମରେ ଗୋଟିଏ କୃଷି ଫାର୍ମ କରି ସେଠାରେ ରହିଲେ । କୃଷି କରି ନିଜେ ଧନୀ ହେବା ସେ ଫାର୍ମର ଉଦ୍ଦେଶ୍ୟ ନ ଥିଲା । ତାର ଉଦ୍ଦେଶ୍ୟ ଥିଲା କୃଷି କ୍ଷେତ୍ରରେ ନୂଆ ନୂଆ କୌଶଳ ପ୍ରୟୋଗ କରିବା ଓ ଲୋକଙ୍କୁ ଶିଖାଇବା, କୃଷି କାର୍ଯ୍ୟ ମାଧ୍ୟମରେ ଚାଷୀ ମୂଲିଆଙ୍କ ସଙ୍ଗେ ମିଶିବା, ସେମାନଙ୍କ ଭିତରେ ନୂତନ ଚେତନା ସୃଷ୍ଟି କରିବା, ନୂଆ ଭାବ ଖେଳାଇବା । କୃଷିର ନୂଆ ପ୍ରୟୋଗ ବାଟେ ସେଠି ଟମାଟୋ, କୋବି, ମଟର ଆଦି ଚାଷ ହେଲା, ସେ ଅଞ୍ଚଳରେ ପୂର୍ବେ ନ ଥିଲା, ସେଠୁ ଚାରିଆଡ଼େ ବ୍ୟାପିଲା । ସେମାନେ ହରିଜନଙ୍କ ସଙ୍ଗେ ମିଶିଲେ, ଅଛୁଆଁ ଭେଦ ଛଡ଼ାଇଲେ, କୁସଂସ୍କାର ବିରୁଦ୍ଧରେ ପ୍ରଚାର କଲେ ଓ ବୁଲି ବୁଲି କଂଗ୍ରେସ ପ୍ରଚାର କରିବା ସଙ୍ଗେ ସଙ୍ଗେ ଦରିଦ୍ର ଓ ନିମ୍ନ ଶ୍ରେଣୀର ଲୋକମାନଙ୍କ ମନରେ ସାହସ ଓ ଅଭୟ ସଞ୍ଚାର କଲେ । ଜମିଦାର, ମହାଜନ, ଗ୍ରାମମାନଙ୍କରେ ଉଚ୍ଚ ସମ୍ପ୍ରଦାୟର ଲୋକେ, ଯେଉଁମାନେ ଚାଷୀ ମୂଲିଆଙ୍କୁ ହେୟ ମଣୁଥିଲେ, ଜୁଲୁମ ଅତ୍ୟାଚାର କରୁଥିଲେ, ସେମାନଙ୍କର ଅତ୍ୟାଚାର, ଅପମାନ ବିରୁଦ୍ଧରେ ସାହସରେ ଠିଆ ହେବାକୁ ସେମାନଙ୍କୁ ସେ ସଙ୍ଗଠିତ କଲେ ଓ ସେମାନଙ୍କର ନ୍ୟାଯ୍ୟ ଅଧିକାର ବିଷୟରେ ସେମାନଙ୍କୁ ସେ ବୁଝାଇଲେ । ସେ ଗାନ୍ଧୀବାଦ ଗ୍ରହଣ କରିଥିଲେ, କଂଗ୍ରେସ ପାଇଁ କାର୍ଯ୍ୟ କରୁଥିଲେ କିନ୍ତୁ ସମାଜର ସ୍ଥିତାବସ୍ଥା, ଦଳିତବର୍ଗଙ୍କ ପ୍ରତି ଅନ୍ୟାୟ, ଅତ୍ୟାଚାର ପ୍ରତି ସେ ଘୋର ବିଦ୍ରୋହୀ ଥିଲେ । ଗାନ୍ଧୀବାଦରେ ଥାଇ ମାର୍କସ୍‌ବାଦ ଦ୍ୱାରା ସେ ପ୍ରଭାବିତ ହୋଇଥିଲେ । ଓଡ଼ିଶାରେ ସେ କଂଗ୍ରେସ-କମ୍ୟୁନିଷ୍ଟ ଶ୍ରମିକ ପାର୍ଟି ପ୍ରତିଷ୍ଠା କରିଥିଲେ ।

୧୯୩୦ରେ ବାଲେଶ୍ୱର ଜିଲାରେ ଚୌକିଦାରୀ ଟିକସ ବିରୁଦ୍ଧରେ ସେ ଆନ୍ଦୋଳନ କରି ଜେଲ୍ ଗଲେ ।

୧୯୩୪ରେ ଓଡ଼ିଶାରେ କଂଗ୍ରେସ-ସୋସିଆଲିଷ୍ଟ ପାର୍ଟି ପ୍ରତିଷ୍ଠିତ ହେଲା । ୭ ନବକୃଷ୍ଣ ଚୌଧୁରୀ ତାର ଜଣେ ପ୍ରତିଷ୍ଠାତା ।

୧୯୩୭ରେ ଯେତେବେଳେ ଭାରତ ସରକାରଙ୍କ ୧୯୩୫ର ଆକ୍ଟ ପାଶ୍ ହେବା ପରେ କଂଗ୍ରେସ ପାର୍ଟି ନିର୍ବାଚନ ଲଢ଼ି ବିଭିନ୍ନ ପ୍ରଦେଶରେ ମନ୍ତ୍ରିମଣ୍ଡଳ ଗଢ଼ିଲେ ସେତେବେଳେ କଟକ ଜିଲାର ତିର୍ତ୍ତୋଲ ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ରୂପେ ନିର୍ବାଚନ ଲଢ଼ି ସେ ଓଡ଼ିଶା ବିଧାନସଭାର ସଭ୍ୟ ହେଲେ । ସେତେବେଳେ ସେ ଜଣେ ମନ୍ତ୍ରୀ ହୋଇ ପାରିଥାନ୍ତେ କିନ୍ତୁ କଂଗ୍ରେସ-ସୋସିଆଲିଷ୍ଟ ପାର୍ଟିର ନିର୍ଦ୍ଦେଶ ଅନୁସାରେ ସେ କୌଣସି ପଦରେ ରହିବାକୁ ମନା କଲେ । ମନ୍ତ୍ରୀ ନ ହେଲେ ବି ବିଧାନସଭାରେ ତାଙ୍କର ସ୍ୱର କାଠ୍ କରୁଥିଲା । ତାଙ୍କ ପ୍ରଭାବ ଫଳରେ ଶ୍ରୀ ବିଶ୍ୱନାଥ

ଦାଶଙ୍କ ମନ୍ତ୍ରିମଣ୍ଡଳ ବେଳେ ଆଇନ୍ ପାଶ୍ ହୋଇ ଜମିଦାରମାନଙ୍କ ପ୍ରଜାମାନେ ନିଜ ନିଜ ଦଖଲରେ ଥିବା ଗଛ ଓ ପୋଖରୀ ଉପରେ ଅଧିକାର ପାଇଲେ । ତାହା ପୂର୍ବରୁ ଓଡ଼ିଶାରେ ପ୍ରଜାମାନଙ୍କର ସେ ଅଧିକାର ନ ଥିଲା ।

ଢେଙ୍କାନାଳ ଓ ତାଳଚେରରେ ରାଜାମାନଙ୍କ ଜୁଲୁମ ଓ ଅତ୍ୟାଚାରରେ ପ୍ରଜାମାନେ ଅତିଷ୍ଠ ହୋଇ ଉଠିଲେ, ପ୍ରତିରୋଧ ପାଇଁ ପ୍ରଜା-ମେଳି ଆରମ୍ଭ ହେଲା ଓ ଗଡ଼ଜାତ ପ୍ରଜାଙ୍କର "ପ୍ରଜା ମଣ୍ଡଳ" ଗଢ଼ା ହେଲା । ୰ ନବକୃଷ୍ଣ ଚୌଧୁରୀ ହେଲେ ପ୍ରଜା-ଆନ୍ଦୋଳନର ଜଣେ ନେତା ହୋଇଥିଲେ ।

୧୯୪୦ରେ ସେ 'ବ୍ୟକ୍ତିଗତ ସତ୍ୟାଗ୍ରହ' କରି ଜେଲ୍ ଗଲେ । ୮ ମାସ ପରେ ଖଲାସ ହେଲେ । ୧୯୪୨ରେ ଅଗଷ୍ଟ ଆନ୍ଦୋଳନରେ ଯୋଗ ଦେଇ ପୁଣି ଜେଲ୍ ଗଲେ ଓ ୧୯୪୫ରେ ଖଲାସ ହେଲେ । ୧୯୪୬ରେ ସେ ପୁଣି ଓଡ଼ିଶା ବିଧାନସଭାର ସଭ୍ୟ ହୋଇ ନିର୍ବାଚିତ ହେଲେ । ସେ ଡଃ ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳରେ ଓଡ଼ିଶାର ରାଜସ୍ୱମନ୍ତ୍ରୀ ହେଲେ । ସେତେବେଳେ ସେ ଓଡ଼ିଶାର ପଞ୍ଚାୟତ ବ୍ୟବସ୍ଥାକୁ ଜାତୀୟକରଣ କରାଇଥିଲେ । ସେ 'ଭୂ-ରାଜସ୍ୱ ଓ ଭୂ-ସ୍ୱତ୍ୱ କମିଟି'ର ଚେୟାରମ୍ୟାନ୍ ଭାବେ ଜମିଦାରୀ ଉଚ୍ଛେଦ କରାଯାଉ ବୋଲି ସୁପାରିସ କରିଥିଲେ । ସେ ଓଡ଼ିଶାରେ ଶାସନ-ବିକେନ୍ଦ୍ରୀକରଣ ଉଦ୍ଦେଶ୍ୟରେ "ଅଞ୍ଚଳ ଶାସନ" ବ୍ୟବସ୍ଥା ସ୍ଥାପନ କଲେ । ସେତେବେଳେ ଭାରତଯାକରେ ଏହା ଏକ ଅଗ୍ରଗାମୀ ବିଚାର ଓ ପନ୍ଥା ହୋଇଥିଲା । ୧୯୪୮ରେ ତାଙ୍କର ଏକମାତ୍ର ପୁତ୍ର କିଶୋର ୰ ବିନାୟକର ଅକାଳ ବିୟୋଗ ଘଟିଲା । ତା'ପରେ ସେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଲେ ।

୧୯୫୦ ମେ' ୧'ରେ ଡଃ ହରେକୃଷ୍ଣ ମହତାବ କଂଗ୍ରେସ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ସେତେବେଳେ ୰ ନବକୃଷ୍ଣ ଚୌଧୁରୀ ଅନୁଗୁଳରେ "ବାଜି ରାଉତ ଛାତ୍ରାବାସ"ରେ ଥାନ୍ତି । ୰ପଣ୍ଡିତ ଜଓ୍ୱାହରଲାଲ ନେହେରୁଙ୍କ ଅନୁରୋଧରେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରିତ୍ୱ ଦାୟିତ୍ୱ ନେଲେ । ସେ ୧୨-୫-୫୦ରୁ ୧୯-୧୦-୫୬ ଯାଏ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରହିଲେ । ତାଙ୍କର ଭେକ ଓ ଚଳଣି ପୂର୍ବପରି ଅତ୍ୟନ୍ତ ସରଳ, ନିରାଡ଼ମ୍ବର ରହିଲା । ସେ ନୀତିବାନ, ସଚ୍ଚୋଟ, ନିରଳସ ଓ ଅତ୍ୟନ୍ତ ପରିଶ୍ରମୀ ଥିଲେ ଓ ଆଦର୍ଶ ନିଷ୍ଠାପର ଜନସେବକ ହୋଇ ଜୀବନ ଅତିବାହିତ କରୁଥିଲେ । ତାଙ୍କର ଲକ୍ଷ୍ୟ ଥିଲା ଦରିଦ୍ର ଜନସାଧାରଣଙ୍କ ଅବସ୍ଥାର ଉନ୍ନତି, ଦେଶର ସର୍ବାଙ୍ଗୀନ ବିକାଶ ଓ ସମୃଦ୍ଧି ଓ ନିର୍ମଳ ସୁଶୃଙ୍ଖଳ ଶାସନ ପ୍ରତିଷ୍ଠା । ସେ ଓଡ଼ିଶାର ଦୂର ଦୂରାନ୍ତର ଅବହେଳିତ ଗାଁ ଗହଳିର ସାଧାରଣ ବ୍ୟକ୍ତିଙ୍କ ସଙ୍ଗେ ମଧ୍ୟେ ବ୍ୟକ୍ତିଗତ ସମ୍ପର୍କ ରଖିଥିଲେ, ରାସ୍ତାରେ ଗଲାବେଳେ ଗାଡ଼ି ଛାଡ଼ି ବଣ ପାହାଡ଼ ଭିତରେ ଦୂର ଦୂର ବାଟ ବୁଲି ବୁଲି ଯାଇ ସେମାନଙ୍କ ସଙ୍ଗେ ବସି ବୁଲି ସେମାନଙ୍କ ଅବସ୍ଥା ଦେଖି ଆସୁଥିଲେ ।

୧୯୫୦ରେ ଆଗ ସେ ଡ଼ଃ ମହତାବଙ୍କ ସ୍ଥାନରେ ମୁଖ୍ୟମନ୍ତ୍ରୀ ହେଲେ । ତାପରେ '୯୫୧ ଶେଷ ଅନ୍ତକୁ ସାଧାରଣ ନିର୍ବାଚନ ହେଲା, ତହିଁରେ ଜିତି ପୁଣି ମୁଖ୍ୟମନ୍ତ୍ରୀ ହୋଇଥିଲେ । ତାଙ୍କ ମନ୍ତ୍ରୀମଣ୍ଡଳ ବେଳେ ଓଡ଼ିଶାରେ ଯେଉଁ ଯେଉଁ ଉଲ୍ଲେଖନୀୟ କାର୍ଯ୍ୟ କରାଗଲା ତନ୍ମଧ୍ୟରେ ଥିଲା :—

(୧) ଜମିଦାରି ଉଚ୍ଛେଦ ଆଇନ୍ ପାଶ୍ କରିବା ଓ କାର୍ଯ୍ୟକାରୀ କରିବା । (୨) "ଓଡ଼ିଶା ପ୍ରଜା ସଂରକ୍ଷଣ ଆଇନ" (ଭାଗଚାଷ ଆଇନ୍ ପାଶ୍ କରିବା) ଓ କାର୍ଯ୍ୟକାରୀ କରିବା, ଏହି ଅନୁସାରେ ଭାଗ-ଚାଷୀ ଚାଷ ଜମିରୁ ଉତ୍ପନ୍ନ ଫସଲର ୫ ଭାଗରୁ ୩ ଭାଗ ପାଇବାକୁ ହକ୍‌ଦାର ହେଲା ଓ ତାର ସଂରକ୍ଷଣ ପାଇଁ ଆହୁରି ଅନେକ ବ୍ୟବସ୍ଥା ଏଥିରେ ରହିଲା, (୩) 'ଅଞ୍ଚଳ ଶାସନ ଆଇନ୍' ପାଶ୍ ହେଲା ଓ କାର୍ଯ୍ୟକାରୀ ହେଲା, (୪) ଭୂ-ସଂସ୍କାର ପାଇଁ ପ୍ରାଥମିକ ବ୍ୟବସ୍ଥା କରାଗଲା, (୫) ଓଡ଼ିଆ ଭାଷା 'ସରକାରୀ ଭାଷା' ହେଲା ବୋଲି ଆଇନ୍ ହେଲା, (୬) ଭାରତ ସରକାର ରାଉରକେଲାରେ ଇସ୍ପାତ୍ କାରଖାନା ବସାଇବାକୁ ଘୋଷଣା କଲେ, ଏଥିପାଇଁ ୬ ନବକୃଷ୍ଣ ଚୌଧୁରୀ ବହୁତ ଉଦ୍ୟମ କରିଥିଲେ ।

୧୯୫୧ରୁ '୯୫୬ ପର୍ଯ୍ୟନ୍ତ ସେ ସର୍ବଭାରତୀୟ 'କଂଗ୍ରେସ କାର୍ଯ୍ୟକାରୀ ସମିତି'ର ସଭ୍ୟ ଥିଲେ । ୯୫ ର ବହୁପୂର୍ବରୁ ମଧ୍ୟ ସେ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ଥିଲେ ।

କିନ୍ତୁ କ୍ଷମତା ପ୍ରତି ତାଙ୍କର ଆଦୌ ଆସକ୍ତି ନ ଥିଲା ଓ ସେ ନିଜ ସ୍ୱଭାବରେ ଥିଲେ ସ୍ୱାଧୀନ, ନିର୍ଭୀକ, ମୁକ୍ତ । ସେ ଆଶା କରିଥିଲେ ଯେ କଂଗ୍ରେସ ଶାସନରେ ଦେଶର ଦୁରବସ୍ଥା ସୁଧୁରିବ, ଉପସ୍ଥିତ ସମସ୍ୟାମାନଙ୍କ ସମାଧାନ ହେବ, କିନ୍ତୁ କ୍ରମେ ତହିଁରେ ତାଙ୍କର ଆଉ ଆସ୍ଥା ରହିଲା ନାହିଁ । ୧୯୫୬ରେ ସେ ଇସ୍ତଫା ଦେଲେ ଓ ଭୂଦାନ ଆନ୍ଦୋଳନରେ ଯୋଗ ଦେଲେ । ନାଗାଲ୍ୟାଣ୍ଡରେ ନାଗା ଆଦିବାସୀଙ୍କ ବିଦ୍ରୋହ ଓ ହିଂସାକାଣ୍ଡ ଯୋଗୁଁ ବିକ୍ଷୋଭ ଓ ଅଶାନ୍ତି ବ୍ୟାପିଥାଏ । ୬ ବିନୋବାଜୀଙ୍କ ପ୍ରତିନିଧି ହୋଇ ଶାନ୍ତି ସୌହାର୍ଦ୍ଦ ପ୍ରତିଷ୍ଠା ପାଇଁ ସେ ନାଗାଲ୍ୟାଣ୍ଡରେ ଗସ୍ତ କରି ବୁଲିଲେ ।

୧୯୫୭ରେ ସେ ଅଖିଳ ଭାରତ ସର୍ବ ସେବା ସଂଘର ସଭାପତି ହେଲେ । ୧୯୫୮ରେ ୬ ଗୋପବନ୍ଧୁ ଚୌଧୁରୀଙ୍କ ମୃତ୍ୟୁ ପରେ ସେ ଓଡ଼ିଶାରେ ଭୂଦାନ ଆନ୍ଦୋଳନରେ ନେତୃତ୍ୱ ନେଲେ । କ୍ରମେ ସେ ଅନୁଭବ କଲେ ଯେ କୌଣସି ଉପାୟରେ ଦରିଦ୍ର, ଅବହେଳିତ, ଭୂମିହୀନ, ଆଦିବାସୀ ଓ ହରିଜନମାନଙ୍କର ଦୁରବସ୍ଥା ଘୁଞ୍ଚୁ ନାହିଁ, ଭୂସଂସ୍କାର ଓ ଭୂମିହୀନଙ୍କୁ ଭୂମି ଯୋଗାଣ ବ୍ୟବସ୍ଥା ବିଫଳ ହେଉଛି, ସ୍ଥିତାବସ୍ଥା ବଦଳୁ ନାହିଁ, ସେତେବେଳେ, ପ୍ରାୟ ୧୯୬୦ରୁ ନିଜ ଜୀବନକୁ

ପାଣି ଛଡ଼ାଇ ଦେଇ ଦରିଦ୍ରମାନଙ୍କ ପାଇଁ ହିଂସା ମାର୍ଗରେ ଆନ୍ଦୋଳନ କରୁଥିବା ନକ୍ସଲ୍‌ପନ୍ଥୀମାନଙ୍କ ପ୍ରତି ସେ ସହାନୁଭୂତି ଦେଖାଇଲେ ଓ ପ୍ରକାଶ୍ୟରେ ସେମାନଙ୍କ ପକ୍ଷ ସମର୍ଥନ କଲେ ।

୧୯୬୭ରେ ନିର୍ବାଚନ ବେଳେ ସେ କଂଗ୍ରେସ ବିରୁଦ୍ଧରେ ପ୍ରଚାର ଚଲାଇଲେ । ଶ୍ରୀ ଜୟପ୍ରକାଶ ନାରାୟଣଙ୍କ ଅନୁରୋଧକ୍ରମେ ୧୯୭୪ରେ ସେ ଓଡ଼ିଶାରେ କଂଗ୍ରେସ ବିରୁଦ୍ଧରେ ବିରୋଧୀ ଦଳମାନଙ୍କ ମିଳିତ ଆନ୍ଦୋଳନର ନେତୃତ୍ୱ ନେଲେ । ୧୯୭୫ରେ ଜରୁରୀକାଳୀନ ପରିସ୍ଥିତି ଆଇନ୍ ଜାରି ହେବାରୁ ସେ ଗିରଫ ହୋଇ ୧୬ ମାସ ପର୍ଯ୍ୟନ୍ତ ଅଟକବନ୍ଦୀ ହୋଇ ଜେଲରେ ରହିଲେ । ତାଙ୍କ ମୁଣ୍ଡ ଭିତରେ ରକ୍ତସ୍ରାବ ହେବାରୁ ଜେଲରୁ ତାଙ୍କୁ ଛାଡ଼ି ଦିଆଗଲା । ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା, ବହୁକାଳ ପରେ ସେ କିଛିଟା ସୁସ୍ଥ ହେଲେ, କିନ୍ତୁ ବାରମ୍ବାର ଅସୁସ୍ଥ ହେଲେ ଓ କ୍ରମେ ଦୁର୍ବଳ ହୋଇଗଲେ ।

୧୯୮୪ ଜୁନ୍ ୨୨ ତାରିଖ ରାତି ୨ଟା ୪୫ରେ (ତାରିଖ ଅନୁସାରେ ୨୩ ତାରିଖ) ଅନୁଗୁଳରେ 'ବାଜି ରାଉତ ଛାତ୍ରାବାସରେ' ତାଙ୍କ ଆଶ୍ରମରେ ତାଙ୍କର ଦେହାନ୍ତ ହେଲା ।

ଅନୁଗୁଳର 'ବାଜି ରାଉତ ଛାତ୍ରାବାସ' ତାଙ୍କର ବାସସ୍ଥଳୀ ହୋଇଥିଲା, ସେ ସପରିବାର ସେଠି ରହୁଥିଲେ ଓ ଏବେ ସେଠି ଶ୍ରୀମତୀ ମାଳତୀ ଦେବୀ ରହନ୍ତି । ୧୯୩୬ରେ ସେଠି ଶ୍ରୀମତୀ ମାଳତୀ ଦେବୀ କିଛି ଜମି କିଣିଥିଲେ । ୧୯୩୮ରେ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଯେତେବେଳେ କେତେ ଲୋକ ଜେଲ୍ ଗଲେ, ସେମାନଙ୍କ ପରିବାରମାନଙ୍କୁ ସେଠ ରଖି ପିଲାମାନଙ୍କୁ ପଢ଼ାଇବା ପାଇଁ ବାଜି ରାଉତ ଛାତ୍ରାବାସ ଘର ତିଆରି ହୋଇଥିଲା । କ୍ରମେ ଶ୍ରୀ ନବବାବୁ ଓ ମାଳତୀ ଦେବୀଙ୍କ ଉଦ୍ୟମରେ ସେଠି ଓ ଆଖପାଖରେ ନାନା ଅନୁଷ୍ଠାନ କରାଗଲା । ମୌଳିକଶିକ୍ଷା ପ୍ରୟୋଗ ପାଇଁ ସ୍କୁଲ, ଆଦିବାସୀ, ହରିଜନ ଓ ଅନ୍ୟାନ୍ୟ ଅନୁନ୍ନତ ଶ୍ରେଣୀର ପୁଅ ଝିଅ ରହି ଶିକ୍ଷା ପାଇବା ପାଇଁ ଆଶ୍ରମ ନିୟମରେ ଚଳଣି ବ୍ୟବସ୍ଥା ଓ ବାସଗୃହ, ମାତୃମଙ୍ଗଳ କେନ୍ଦ୍ର, ଗ୍ରାମସେବା, ବିଶେଷତଃ ଆଦିବାସୀ ସେବା ପାଇଁ କର୍ମୀତାଲିମ୍ କେନ୍ଦ୍ର, ମାତୃମଙ୍ଗଳ କେନ୍ଦ୍ର ଓ ସେଠି କର୍ମୀ-ତାଲିମ୍ ବ୍ୟବସ୍ଥା, ଇତ୍ୟାଦି ।

ଅନୁନ୍ନତ ଶ୍ରେଣୀଙ୍କର, ବିଶେଷତଃ ଆଦିବାସୀ-ହରିଜନଙ୍କର ସେବା, ଉନ୍ନୟନ ଓ ସେମାନଙ୍କ ଶୋଷଣ, ସେମାନଙ୍କ ପ୍ରତି ଜୁଲୁମ୍, ଅତ୍ୟାଚାର ପ୍ରତିରୋଧ ଓ ଦୂରୀକରଣ ପାଇଁ ୧୯୪୬ରେ "ଉତ୍କଳ ନବଜୀବନ ମଣ୍ଡଳ" ଗଢ଼ା ହେଲା । ଯେଉଁମାନେ ତାର ପ୍ରତିଷ୍ଠାତା ସେମାନଙ୍କ ମଧ୍ୟରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଦେବୀ ଥିଲେ । ତାର ମୁଖ୍ୟ କାର୍ଯ୍ୟାଳୟ "ବାଜି ରାଉତ ଛାତ୍ରାବାସ" ପରିସର

ମଧ୍ୟରେ ରହି ଆସିଛି । 'ଉତ୍କଳ ନବଜୀବନ ମଣ୍ଡଳ'ର କାର୍ଯ୍ୟ ବିଷୟରେ ପୂର୍ବେ କୁହାଯାଇଛି । ୧୯୫୦ରୁ ୬ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଦେବୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତାହା ଚାଲି ଆସୁଥିଲା । ଏବେବି ତାହା ଚାଲିଛି । ଅନୁଗୁଳଠାରୁ ତିନି ମାଇଲ ଦୂରରେ ଘଞ୍ଚ ଅରଣ୍ୟ ଭିତରେ "ଚମ୍ପତିମୁଣ୍ଡା" ଗ୍ରାମ । ୬ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଦେବୀଙ୍କ ଉଦ୍ୟମରେ ସେଠି ଗୋଟିଏ "ମୌଳିକୋତ୍ତର ଶିକ୍ଷା ଅନୁଷ୍ଠାନ" ପ୍ରତିଷ୍ଠିତ ହେଲା । ଅନୁଗୁଳର "ବାଜି ରାଉତ ଛାତ୍ରାବାସ" ବିବିଧ କର୍ମୋଦ୍ୟୋଗର କେନ୍ଦ୍ର ହେଲା ଓ ୬ ନବକୃଷ୍ଣ ଚୌଧୁରୀ ସେଗୁଡ଼ିକର ପ୍ରେରଣାଦାତା ଓ ପୃଷ୍ଠପୋଷକ ଥିଲେ ଓ ତାହାର ପରିଚାଳନା ସହିତ ସଂପୃକ୍ତ ଥିଲେ ।

ସେ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ, ଦୂରଦର୍ଶୀ, ଚିନ୍ତାଶୀଳ ଓ ବିଦ୍ୱାନ୍ ଥିଲେ, ବହୁତ ପଢ଼ୁଥିଲେ, ଦେଶ ଓ ସମାଜର ସମସ୍ୟା ଓ ଗତି ଅଧ୍ୟୟନ କରୁଥିଲେ । ତାଙ୍କର ଚିନ୍ତାଧାରା ମୌଳିକ ଓ 'ଅଗ୍ରଗାମୀ' ଥିଲା । ପ୍ରତ୍ୟେକ ବିଷୟରେ ମୌଳିକ ଅନୁସନ୍ଧାନ ଓ ପ୍ରୟୋଗର ପ୍ରୟାସୀ ଥିଲେ । ସେ କୌଣସି ଗୋଟିଏ 'ବାଦ'ରେ ଆବଦ୍ଧ ନ ଥିଲେ, ତାଙ୍କ ବିଚାର ସ୍ୱାଧୀନ ଥିଲା । କାର୍ଯ୍ୟକ୍ଷେତ୍ରରେ ସେ ଦକ୍ଷ ଓ କର୍ମଠ ଥିଲେ, କୁଶଳୀ ସଂଗଠକ ଥିଲେ । ନିଜର ସୁଖ ସୁବିଧା କଥା କେବେହେଲେ ଭାବୁ ନ ଥିଲେ, ଗଭୀର ଆନ୍ତରିକତା ଓ ଅନୁରକ୍ତି ସହିତ ନିରଳସ ନିରବଚ୍ଛିନ୍ନ ଭାବେ କାର୍ଯ୍ୟରେ ଲାଗି ରହୁଥିଲେ । ସେ ଉଦାର ଓ ସମଦର୍ଶୀ ଥିଲେ, ମାନବପ୍ରେମୀ ଥିଲେ, ଜାତି, ଧର୍ମ, ଭାଷା, ଗୋଷ୍ଠୀ, ଆପଣା ପର ଏପରି କୌଣସି ସଙ୍କୀର୍ଣ୍ଣଭାବ ତାଙ୍କ ମନରେ ନ ଥିଲା । ଅନ୍ୟାୟ, ଅସତ୍ୟ, ଅବିଚାର ତାଙ୍କ ପକ୍ଷରେ ଅସହ୍ୟ ଥିଲା, ସେପରି ଦେଖିଲେ ସେ ପ୍ରଜ୍ୱଳିତ ହେଉଥିଲେ ଓ ତାର ତୀବ୍ର ବିରୋଧ କରୁଥିଲେ । ସେ ମହାନ୍ ସ୍ୱାଧୀନତା ସଂଗ୍ରାମୀ ଥିଲେ ଓ ମହାନ୍ ସର୍ବୋଦୟ ନେତା ଥିଲେ । ସେ ନାନା ସଦ୍‌ଗୁଣରେ ପରିପୂର୍ଣ୍ଣ ଥିଲେ, ତାଙ୍କ ଚରିତ୍ର ଶୁଦ୍ଧ, ସଚ୍ଚୋଟ ଓ ମହତ୍ତ୍ୱ ଥିଲା । ନିଜ ନୀତିରେ ସେ ଅଟଳ ଓ ନିର୍ଭୀକ ଥିଲେ ।

ବ୍ୟକ୍ତିଗତ ଜୀବନରେ ସେ ଅତ୍ୟନ୍ତ ସରଳ, ସହଜ, ନିଷ୍କପଟ, ଅମାୟିକ ଓ ସ୍ନେହୀ ଥିଲେ । ସେ ନିର୍ଲୋଭ, ନିଃସ୍ୱାର୍ଥପର ଥିଲେ ଓ ଦରିଦ୍ର ସାଧାରଣ ବ୍ୟକ୍ତି ପରି ତାଙ୍କର ଚଳଣି ଥିଲା ।

ଦେଶର ଦରିଦ୍ର ଜନସାଧାରଣ, ଅବହେଳିତ ଶୋଷିତ ଜନଗୋଷ୍ଠୀ, ଆଦିବାସୀ ଓ ହରିଜନ ତାଙ୍କର ପ୍ରଧାନ ଧ୍ୟେୟ ଥିଲେ । ୧୯୫୨ରେ କୋରାପୁଟ ଜିଲ୍ଲାର ଗୁଣୁପୁର ଅଞ୍ଚଳରେ "ଭୂ-ସତ୍ୟାଗ୍ରହ" ଆନ୍ଦୋଳନ ହେଲା, ତାକୁ ଦବାଇବାକୁ ସେ ଦମନନୀତି ପ୍ରୟୋଗ କରିବାକୁ ରାଜି ନ ହୋଇ ସେମାନଙ୍କ ଦୁରବସ୍ଥା ଓ ଅଭିଯୋଗମାନଙ୍କର ତଦନ୍ତ କରାଇଲେ ଓ ନାନା ନୂତନ ବ୍ୟବସ୍ଥା କରାଇ

ଆଦିବାସୀମାନଙ୍କର ଉପକାର କରାଇଲେ । ଅଶାନ୍ତି ଦୂର ହେଲା ଓ ସେମାନଙ୍କର ଉନ୍ନୟନ ଆରମ୍ଭ ହେଲା ।

## ଶ୍ରୀମତୀ ମାଳତୀ ଦେବୀ

ଶ୍ରୀମତୀ ମାଳତୀ ଦେବୀ ୧୯୦୪ରେ ଜନ୍ମ ହୋଇଥିଲେ । ତାଙ୍କ ପିତା ୰ କୁମୁଦ୍ ସେନ୍ କଲିକତା ହାଇକୋର୍ଟରେ ବାରିଷ୍ଟର ଥିଲେ ଓ ତାଙ୍କ ମାତା ୰ ସ୍ନେହଲତା ସେନ୍ ଦାର୍ଜିଲିଂରେ ବାଳିକା ବିଦ୍ୟାଳୟର ଅଧକ୍ଷା ଥିଲେ । ପ୍ରଥମ ଶ୍ରେଣୀରେ ମ୍ୟାଟ୍ରିକୁଲେସନ୍ ପାସ୍ କରି ସେ ଶାନ୍ତିନିକେତନରେ ଛାତ୍ରୀ ହେଲେ । ୰ ନବକୃଷ୍ଣ ଚୌଧୁରୀ ବି. ଏ. ଶ୍ରେଣୀରୁ ପଢ଼ା ଛାଡ଼ି କଂଗ୍ରେସ ଆନ୍ଦୋଳନରେ ଯୋଗ-ଦେଇ ପ୍ରଥମଥର ଜେଲ୍ ଯାଇ ଫେରି ଶାନ୍ତିନିକେତନରେ ଛାତ୍ର ହେଲେ । ସେଠି ଦୁହିଁଙ୍କର ପରିଚୟ ହେଲା ଓ ଦୁହେଁ ବିଭା ହେବାକୁ ମନ କଲେ ।

୧୯୨୭ ଜୁଲାଇରେ କଲିକତାରେ ଦୁହିଁଙ୍କର ବାହାଘର ହେଲା । ଶ୍ରୀମତୀ ମାଳତୀ ଦେବୀ ବଙ୍ଗୀୟା କନ୍ୟା ଥିଲେ, ଜାତିରେ ବଙ୍ଗଦେଶର 'ବୈଦ୍ୟ', ତେଣୁ ସେ ବିବାହରେ ୰ ନବବାବୁଙ୍କ ମା, ବନ୍ଧୁବାନ୍ଧବ ଓ ସମାଜଆଡ଼ୁ ପ୍ରତିବାଦ ହୋଇଥିଲା, କିନ୍ତୁ ୰ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀ ମୂଳରୁ ଦୃଢ଼ ସମର୍ଥନ ଜଣାଇଲେ ଓ ୰ ଗୋପବାବୁ ବିବାହ କରାଇବାକୁ ଗଲେ । ଶ୍ରୀମତୀ ମାଳତୀ ଦେବୀ ତାଙ୍କ ପରିବାରରେ ବୋହୂ ହୋଇ ଆସିଲେ ।

ସେ କଂଗ୍ରେସରେ ଯୋଗ ଦେଲେ ଓ ଆଜୀବନ ସ୍ୱାମୀଙ୍କର ସହକର୍ମିଣୀ ହୋଇ କାର୍ଯ୍ୟ କଲେ । ସେ କିଛିଦିନ କଟକରେ ଶାଶୂଘରେ ରହିଲେ, ତା'ପରେ ସେ ଓ ୰ନବବାବୁ ଜଗତ୍ସିଂପୁର ଅଞ୍ଚଳରେ ଅଣଖିଆ ପାଖ ବରିକୁଦରେ ଆଦର୍ଶ ଫାର୍ମ କରି ସେଠି ରହି ଉନ୍ନତ ପ୍ରଣାଳୀରେ କୃଷି ପ୍ରଚଳନ, ଗ୍ରାମ ଉନ୍ନୟନ, କଂଗ୍ରେସ ବାର୍ତ୍ତା ପ୍ରଚାର, କୃଷି ମୂଲିଆ ଓ ହରିଜନ ଆଦିଙ୍କ ସଙ୍ଗଠନ, ନାରୀ ଜାଗରଣ ଆଦି କାର୍ଯ୍ୟ କଲେ ।

ସେ ୧୯୩୦ରେ ଲବଣ ସତ୍ୟାଗ୍ରହରେ ଯୋଗ ଦେଲେ ଓ ୧୯୩୦, ୧୯୩୧, '୧୯୪'ରେ ସତ୍ୟାଗ୍ରହରେ ଜେଲ୍ ଗଲେ । ସେତେବେଳେ କଂଗ୍ରେସ ଆନ୍ଦୋଳନରେ ସେ ବହୁ କଷ୍ଟ ବରଣ କରି ନାନା ବିପଦ ମଧ୍ୟରେ ନିର୍ଭୀକ ଭାବରେ ଗାଁ ଗଣ୍ଡାରେ ବୁଲି ବୁଲି କାର୍ଯ୍ୟ କରିଛନ୍ତି ।

ସେ ଓଡ଼ିଶାରେ ଜମିଦାର, ମହାଜନଙ୍କ ଶୋଷଣ'ଅତ୍ୟାଚାରର ବିରୋଧ ପାଇଁ କୃଷି ମୂଲିଅଙ୍କୁ ସଙ୍ଗଠିତ କରିଥିଲେ, ଗଡ଼ଜାତ ପ୍ରଜା ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ ଓ ୧୯୩୮ରେ ଅନୁଗୁଳ ସୀମାନ୍ତରେ ଗଡ଼ଜାତରୁ ପଳାତକ

ଶରଣାର୍ଥୀଙ୍କ ଥଇଥାନ ଓ ସେବାକାର୍ଯ୍ୟ କରିଥିଲେ । ସେ ସୋସିଆଲିଷ୍ଟ ପାର୍ଟି କାର୍ଯ୍ୟରେ ମଧ୍ୟ ସକ୍ରିୟ ରହିଥିଲେ । ସେ ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟା ହୋଇଥିଲେ ।

ଅନୁଗୁଳରେ "ବାଜି ରାଉତ ଛାତ୍ରାବାସ"ର ସେ ମଧ୍ୟ ଜଣେ ପ୍ରତିଷ୍ଠାତ୍ରୀ । ଅନୁଗୁଳରେ ସେ "ମହିଳା କର୍ମୀ ତାଲିମ୍" କାର୍ଯ୍ୟ ପରିଚାଳନା କରୁଥିଲେ ଓ ନାନା ଅନୁଷ୍ଠାନ ଗଢ଼ିଥିଲେ ଓ ତାର ପରିଚାଳନା କରାଉଥିଲେ ।

ସେ ଭାରତ କନଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିର ସଭ୍ୟା ଥିଲେ । ୧୯୪୬ରେ ସେ ମହାତ୍ମା ଗାନ୍ଧୀଙ୍କ ସହିତ ନୋଆଖାଲିରେ ବୁଲି କାର୍ଯ୍ୟ କରିଥିଲେ ।

ତାଙ୍କ କର୍ମମୟ ଜୀବନରେ ସେ ଚିରକାଳ ଦରିଦ୍ର, ଶୋଷିତ, ଅତ୍ୟାଚାରିତ ଜନଗୋଷ୍ଠୀଙ୍କ ଦୁଃଖ ଦୁର୍ଦ୍ଦଶାକୁ ଆପଣାର କରି ତା ବିରୁଦ୍ଧରେ ଦୃପ୍ତ ପ୍ରତିବାଦ କରିଛନ୍ତି ଓ ତାର ପ୍ରତିକାର କରିବାକୁ ଧାଇଁ ଯାଇଛନ୍ତି । ଏହି କାର୍ଯ୍ୟରେ ସେ ଓଡ଼ିଶାର ଅଣ୍ଡ ସଣ୍ଡ ବୁଲିଛନ୍ତି ଓ ଦୁର୍ଭେଦ୍ୟ ପର୍ବତମାଳ ଅଞ୍ଚଳରେ ବି ବାରମ୍ବାର ବୁଲିଛନ୍ତି ଓ କାର୍ଯ୍ୟ କରିଛନ୍ତି । ଆଦିବାସୀ ହରିଜନ ଆଦିଙ୍କ ଶୋଷଣ ଦୂର କରିବାକୁ ଓ ସେମାନଙ୍କର ସେବା କରିବାକୁ ଯେଉଁ 'ଉତ୍କଳ ନବଜୀବନ ମଣ୍ଡଳ' ପ୍ରତିଷ୍ଠିତ ହୋଇଛି ତାର ସେ ଅନ୍ୟତମ ପ୍ରତିଷ୍ଠାତ୍ରୀ । ୧୯୫୦-୫୧ରୁ ତାଙ୍କର ଓ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତାହା କାର୍ଯ୍ୟ କରି ଆସିଛି । ଏବେବି ଓଡ଼ିଶାର ବିଭିନ୍ନ ଜିଲାରେ ସେ ତାଙ୍କର କର୍ମୀ କେନ୍ଦ୍ରମାନଙ୍କ କାର୍ଯ୍ୟର ତତ୍ତ୍ୱାବଧାନ କରନ୍ତି ।

ଗଞ୍ଜାମର ମୁଠାଦାରୀ ପ୍ରଥା ଓ କୋରାପୁଟର ଗୋତିପ୍ରଥା ବିରୁଦ୍ଧରେ ସେ ଆନ୍ଦୋଳନ କରିଥିଲେ ।

୧୯୫୩ରେ ଅନୁଗୁଳ ପାଖ 'ଚମ୍ପତିମୁଣ୍ଡା'ରେ ସେ ଓ ଶ୍ରୀ ନବବାବୁ 'ଜନବିଦ୍ୟାଳୟ' ପ୍ରତିଷ୍ଠା କରିଥିଲେ ।

୧୯୬୪ରେ ରାଉରକେଲାରେ ସାଂପ୍ରଦାୟିକ ହିଂସାକାଣ୍ଡ ହେବାରୁ ସେ ସେଠିକୁ ଯାଇ ଶାନ୍ତି ପ୍ରତିଷ୍ଠା କାର୍ଯ୍ୟ କରିଥିଲେ ।

ଜରୁରୀକାଳୀନ ପରିସ୍ଥିତି ଜାରି ହେଲାବେଳେ ସେ ତାର ବିରୋଧ କରି କାରାବରଣ କରିଥିଲେ ।

ଓଡ଼ିଶାରେ ସେ ଜଣେ ମନସ୍ୱୀ ସମାଜ ସେବିକା ଓ ନେତ୍ରୀ । ତାଙ୍କ ଜୀବନ ଦେଶସେବା ପାଇଁ ଉତ୍ସର୍ଗୀକୃତ ।

## ଶ୍ରୀ ମନମୋହନ ଚୌଧୁରୀ

ଶ୍ରୀ ମନମୋହନ ଚୌଧୁରୀ ଗୋପବାବୁଙ୍କ ପୁତ୍ର । ତାଙ୍କ ଜନ୍ମ ୧୧-୧୦-୧୯୧୫ରେ । ସେ ସରକାରୀ ଶିକ୍ଷା ଅନୁଷ୍ଠାନରେ ପଢ଼ିଲେ ନାହିଁ, ପିତା ମାତାଙ୍କ ପାଖେ ଶିକ୍ଷା ପାଇଲେ ଓ ନିଜ ଉଦ୍ୟମରେ ନାନା ପୁସ୍ତକ ପଢ଼ି ଜ୍ଞାନ ଅର୍ଜନ କଲେ । ସେ ନିଜ ମାତୃଭାଷା ଛଡ଼ା ହିନ୍ଦୀ, ବଙ୍ଗଳା, ଉର୍ଦ୍ଦୁ, ତେଲୁଗୁ, ଗୁଜରାଟି, ମରାଠୀ ଓ ଇଂରାଜୀ ଜାଣନ୍ତି, ଓଡ଼ିଆ ଭାଷାରେ ସେ ସୁଲେଖକ, ପତ୍ର ପତ୍ରିକାରେ ତାଙ୍କ ଲେଖା ପ୍ରକାଶ ପାଏ । ସେ କେତେଗୁଡ଼ିଏ ପୁସ୍ତକର ଲେଖକ । ତହିଁରୁ ଗୋଟିଏ 'ପରମାଣୁ', ଆଣବିକ ଶକ୍ତି ସମ୍ପର୍କରେ ତାହା ତଥ୍ୟପୂର୍ଣ୍ଣ ପୁସ୍ତକଟିଏ । ସେ 'ରଚନା', 'ଗ୍ରାମସେବକ', 'ସର୍ବୋଦୟ' ଓ Vigil ପତ୍ରିକାର ସମ୍ପାଦନା କରିଛନ୍ତି । ସେ ବିନୋବାଙ୍କଙ୍କ ହିନ୍ଦୀ ଭାଷଣର ଓଡ଼ିଆ ଅନୁବାଦ କରି ପ୍ରକାଶ କରାଇଥିଲେ । ମନକୁ-ମନ ଅଭ୍ୟାସ କରି ସେ ଜଣେ ଉଚ୍ଚକୋଟୀର ଚିତ୍ରଶିଳ୍ପୀ ହୋଇ ପାରିଲେ । ଖଦୀ ଓ ଗ୍ରାମୋଦ୍ୟୋଗର ବିବିଧ ହସ୍ତଶିଳ୍ପରେ ସେ ନିପୁଣତା ଓ ଅଭିଜ୍ଞତା ଅର୍ଜନ କଲେ । ୬ ସତୀଶ ଚନ୍ଦ୍ର ଦାସଗୁପ୍ତଙ୍କଠୁ ତାଲିମ୍ ପାଇ ଆସି ସେ ବାରିରେ 'କଟେଜ୍ ଟ୍ୟାନରି' ବସାଇଲେ ଓ ଚମଡ଼ା କଷ କରିବା ଓ ଜୋତା ତିଆରି କରିବା କାର୍ଯ୍ୟ କଲେ । ସେ ମଧ୍ୟ ସେଠି ବୈଜ୍ଞାନିକ ପ୍ରଣାଳୀରେ ବ୍ୟାପକ ମହୁ ଚାଷର ପ୍ରୟୋଗ କଲେ । ସେଠି ସେ ଖଦୀ ସରଞ୍ଜାମ ତିଆରି କାର୍ଯ୍ୟାଳୟ ଚଳାଇଲେ ଓ ତହିଁରେ ଜଣେ ଶ୍ରମିକ ହୋଇ କାର୍ଯ୍ୟ କଲେ ।

ବାଲ୍ୟରୁ ହିଁ ସେ ଦେଶ କାମରେ ଉତ୍ସର୍ଗୀକୃତ । ୧୫ ବର୍ଷ ବୟସରେ ୧୯୩୦ରେ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇ ସେ ଜେଲ ଗଲେ ଓ ତାପରେ ପୁଣି ୧୯୩୩ରେ, ୧୯୪୦ରେ ଓ ୧୯୪୨ରେ ଜେଲ୍‌ରେ ରହିଲେ । ସେ କଂଗ୍ରେସ କମିଟିର ସଙ୍ଗଠନ କାର୍ଯ୍ୟ କଲେ, ସମଗ୍ର ଗ୍ରାମସେବା ଯୋଜନା ଅନୁସାରେ ସ୍ୱାବଲମ୍ବୀ ଖଦୀର ପ୍ରସାର କାର୍ଯ୍ୟ କଲେ, ବେ-ସରକାରୀ ମୌଳିକ ଶିକ୍ଷା ପ୍ରୟୋଗରେ ସହାୟକ କାର୍ଯ୍ୟ କଲେ ଓ ଚରଖା ସଂଘର ଉତ୍କଳ ଶାଖାର ସମ୍ପାଦକ ଥିଲେ । ସେ ୧୯୩୪ରେ ଗାନ୍ଧୀଜୀଙ୍କ ହରିଜନ ପଦଯାତ୍ରାରେ ସାମ୍ବାଦିକ ଓ ଫଟୋଗ୍ରାଫର ହୋଇ ତାଙ୍କ ସଙ୍ଗେ ପଦଯାତ୍ରା କରିଥିଲେ ।

୧୯୫୨ରେ ସେ ଭୂଦାନ-ଗ୍ରାମଦାନ କାର୍ଯ୍ୟରେ ଯୋଗ ଦେଲେ । ସର୍ବୋଦୟ ବିଚାର ପ୍ରଚାର କାର୍ଯ୍ୟରେ ସେ କେତେମାସ ମୁଙ୍ଗେରରେ ଗସ୍ତ କରିଥିଲେ ।

ସେ ୬ ଗୋପବନ୍ଧୁ ଚୌଧୁରୀଙ୍କର ପ୍ରତ୍ୟେକ ରଚନାତ୍ମକ କାର୍ଯ୍ୟରେ ଅଂଶ ନେଇଥିଲେ । ତାଙ୍କ ପିତାଙ୍କର ମୃତ୍ୟୁପରେ ସେ ସର୍ବୋଦୟ ଓ ଭୂଦାନ କାର୍ଯ୍ୟ କରିବାକୁ ଲାଗିଲେ ଓ ସେହି ସମ୍ପର୍କୀୟ ବିଭିନ୍ନ ଆନୁଷ୍ଠାନିକ ଦାୟିତ୍ୱ ତୁଲାଇଲେ ।

୧୯୭୫ରେ ଭାରତରେ ଜରୁରୀକାଳୀନ ଅବସ୍ଥା ଜାରି ହେବାରୁ ତାର ବିରୋଧ କରି ସେ ୬୧ ମାସ କାରାଦଣ୍ଡ ଭୋଗ କରିଥିଲେ ।

## ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା (ଡାକ ନାମ 'ଚୁନି') ୬ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀଙ୍କର ଏକମାତ୍ର କନ୍ୟା । ତାଙ୍କର ଜନ୍ମ ୧୯୧୭ ନଭେମ୍ବର ୩ ତାରିଖରେ । ତାଙ୍କୁ ଦୁଇବର୍ଷ ବେଳୁ ତାଙ୍କ ପିତା ସପରିବାର ଗାନ୍ଧୀମତ ଗ୍ରହଣ କଲେ ଓ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ । ତେଣୁ ଶୈଶବରୁ ସେ ସ୍ୱଦେଶପ୍ରେମ, ଗାନ୍ଧୀ ବିଚାର ଓ ଗାନ୍ଧୀ ଆଦର୍ଶରେ ବଢ଼ିଛନ୍ତି ଓ ଆଜୀବନ ତାହା ଅନୁସରଣ କରିଛନ୍ତି ।

୬ ଗୋପବନ୍ଧୁ ଚୌଧୁରୀ ସରକାରୀ ଶିକ୍ଷାନୁଷ୍ଠାନରେ ନିଜ ପିଲାଙ୍କୁ ପଢ଼ାଇବା ଧାରଣା ପ୍ରତି ବିମୁଖ ଥିଲେ, ତେଣୁ ତାଙ୍କ ବଡ଼ ଭାଇଙ୍କ ପରି ତାଙ୍କ ଶିକ୍ଷା ମଧ୍ୟ ପିତାମାତାଙ୍କ ପାଖରେ ହେଲା, ସେଠିପରି ସେ ମଧ୍ୟ ନାନା ଭାଷା ଶିଖିଲେ, ନାନା ବିଷୟରେ ଜ୍ଞାନ ଅର୍ଜନ କଲେ, ବହୁତ ପଢ଼ିଲେ, ତାଙ୍କ ଚରିତ, ବିଚାର, ଆଚାର ଖୁବ୍ ଉନ୍ନତ ହେଲା ଓ କର୍ମକ୍ଷେତ୍ରରେ ସେ ଅତ୍ୟନ୍ତ ଦକ୍ଷ ଓ ନିପୁଣ ହେଲେ । ବସ୍ତୁତଃ ପିତାମାତାଙ୍କର ଶ୍ରେଷ୍ଠ ଗୁଣାବଳୀ ସେମାନଙ୍କର ଦୁଇଟି ସନ୍ତାନଙ୍କଠାରେ ପ୍ରକଟିତ ହେଲା । ଶ୍ରୀମତୀ ଅନ୍ନପୂର୍ଣ୍ଣା ଓଡ଼ିଆ ଭାଷାରେ ସୁଲେଖିକା, ଗାନ୍ଧୀବାଦ, ସର୍ବୋଦୟ ବିଚାର ଓ ବିନୋବା ବିଚାର ବିଷୟରେ ତାଙ୍କର ନାନା ଲେଖା ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଛି । ତାଙ୍କର ଗୋଟିଏ ପ୍ରକାଶିତ ପୁସ୍ତକ 'ଦସ୍ୟୁ ହୃଦୟର ଦେବତା' । ସେ ଇଂରାଜୀ, ହିନ୍ଦୀ, ବଙ୍ଗଳା, ଗୁଜରାଟି ଆଦି ଭାଷା ଜାଣନ୍ତି । ହିନ୍ଦୀ ଓ ବଙ୍ଗଳା ଭାଷାରୁ ଓଡ଼ିଆ ଭାଷାରେ ଅନୁବାଦ କାର୍ଯ୍ୟରେ ସେ ଦକ୍ଷ । ସେ ଉତ୍ତମ ବକ୍ତା । ବିଭିନ୍ନ ଗାନ୍ଧୀବାଦୀ ରଚନାତ୍ମକ କାର୍ଯ୍ୟରେ ସେ ଜଣେ ଦକ୍ଷ କର୍ମୀ ହୋଇ କାର୍ଯ୍ୟ କରିଛନ୍ତି । ନାରୀ କର୍ମୀମାନଙ୍କୁ ତାଲିମ୍ ଦେବା କାର୍ଯ୍ୟରେ ସେ ବିଶେଷ ପାରଦର୍ଶିତା ଦେଖାଇଛନ୍ତି । ସଙ୍ଗଠନ ଓ ପରିଚାଳନା କାର୍ଯ୍ୟରେ ତାଙ୍କର ଦକ୍ଷତା ଅଛି ।

୧୯୩୦ରେ ସେ କଂଗ୍ରେସର 'ବାନର-ସେନା'ରେ ଯୋଗ ଦେଇ ପିକେଟିଂ ଆଦି କାର୍ଯ୍ୟ କଲେ । ତହିଁ ଆରବର୍ଷ ପୁରୀରେ କଂଗ୍ରେସ ଅଧିବେଶନ ହେବାର ଥିଲା, ଯଦିଚ ହୋଇ ପାରିଲା ନାହିଁ, ତାର ବ୍ୟବସ୍ଥା କରିବା କାର୍ଯ୍ୟରେ ସେ କାର୍ଯ୍ୟ କରିଥିଲେ । ୧୯୩୨ରେ କଟକରେ ହରିଜନ-ସେବା କାର୍ଯ୍ୟ ହେଲା, ତହିଁରେ ସେ କାର୍ଯ୍ୟ କଲେ ଓ ସେଦିନୁଁ ହରିଜନ ସେବା କାର୍ଯ୍ୟ କରି ଆସିଛନ୍ତି । ୧୯୩୪ରେ ସେ ମହାତ୍ମା ଗାନ୍ଧୀଙ୍କ ହରିଜନ ପଦଯାତ୍ରାରେ ଯାଇଥିଲେ । ତାହାପରେ ସେ ପିତାମାତାଙ୍କ ସଙ୍ଗେ ବାରିରେ ରହିଲେ ଓ ସେମାନଙ୍କ ସଙ୍ଗେ, ଅନ୍ୟାନ୍ୟ ନାରୀ କର୍ମୀଙ୍କ ସଙ୍ଗେ

ବରୀ ଅଞ୍ଚଳରେ ସମଗ୍ର-ଗ୍ରାମସେବା କାର୍ଯ୍ୟ କଲେ ଓ ବିବିଧ ରଚନାତ୍ମକ କାର୍ଯ୍ୟ କଲେ । ୧୯୩୮ରେ ଡେଲଙ୍ଗରେ ଗାନ୍ଧୀ ସେବାସଂଘ ସମ୍ମିଳନୀ ହୋଇଥିବାବେଳେ ତହିଁରେ ସେ କାର୍ଯ୍ୟ କଲେ । ୧୯୪୦-୪୧ରେ ସେ ୰ ଆଚାର୍ଯ୍ୟ ହରିହରଙ୍କ ସଙ୍ଗେ ବାରନାରସିଂହପୁର ଶାସନରେ ତାଙ୍କ ତତ୍ତ୍ୱାବଧାନରେ ରହି ସେଠାରେ ଗ୍ରାମସେବା କର୍ମୀ ହୋଇ କାର୍ଯ୍ୟ କଲେ । ୧୯୪୧ରେ ସେ ବରୀ ଅଞ୍ଚଳରେ ବେସରକାରୀ ମୌଳିକ ଶିକ୍ଷା ପ୍ରୟୋଗ କାର୍ଯ୍ୟରେ କାର୍ଯ୍ୟ କଲେ । ୧୯୪୨ ମାର୍ଚ୍ଚ ୨୫ ତାରିଖରେ ବରୀରେ ତାଙ୍କର ଶ୍ରୀ ଶରତ୍ ଚନ୍ଦ୍ର ମହାରଣାଙ୍କ ସଙ୍ଗେ ବିବାହ ହେଲା । ବରୀରେ "(ଉତ୍କଳ) କସ୍ତୁରବା ଗାନ୍ଧୀ ନିଧି" ତରଫରୁ 'ଗ୍ରାମସେବିକା ତାଲିମ କେନ୍ଦ୍ର' ବସିଲା, ତାର ପରିଚାଳନା କାର୍ଯ୍ୟରେ ସେ ବହୁତ ସାହାଯ୍ୟ କଲେ । ୧୯୪୨ ଆନ୍ଦୋଳନ ବେଳେ ୨-୯-୧୯୪୨ରୁ ତାଙ୍କୁ ଅଢ଼େଇବର୍ଷ ଜେଲ୍ ହୋଇଥିଲା । ଜେଲ୍‌ରୁ ଫେରି ସେ ବରୀରେ ପିତାମାତାଙ୍କ ସଙ୍ଗେ ବିବିଧ ରଚନାତ୍ମକ କାର୍ଯ୍ୟରେ ବ୍ୟାପୃତ ରହିଲେ ।

୧୯୫୧ରେ ଭୂଦାନ ଯଜ୍ଞ ଆନ୍ଦୋଳନ ଆରମ୍ଭ ହେବାରୁ ତହିଁରେ ଓ ତାହାପରେ 'ଶାନ୍ତିସେନା' ଆନ୍ଦୋଳନ ବେଳେ ସେ ବହୁତ କାର୍ଯ୍ୟ କରିଥିଲେ । ବନ୍ୟା, ବାତ୍ୟା, ମରୁଡ଼ି ଅଞ୍ଚଳରେ ସାହାଯ୍ୟ, ଗ୍ରୁପ ଆନ୍ଦୋଳନ ବେଳେ ଓ ସାଂପ୍ରଦାୟିକ ଗଣ୍ଡଗୋଳ ବେଳେ ଶାନ୍ତି ପ୍ରତିଷ୍ଠା ଉଦ୍ୟମ, ପଶ୍ଚିମବଙ୍ଗରେ ପୂର୍ବ ପାକିସ୍ଥାନରୁ ପଳାତକ ଶରଣାର୍ଥୀଙ୍କ ସେବା କାର୍ଯ୍ୟ, ମଧ୍ୟପ୍ରଦେଶର ଚମ୍ବଲ ଉପତ୍ୟକାରେ ୰ ଜୟପ୍ରକାଶ ନାରାୟଣଙ୍କ ଅଧିନାୟକତ୍ୱରେ ଡକାଏତ୍‌ମାନଙ୍କର ହୃଦୟ ପରିବର୍ତ୍ତନ ଓ ଆତ୍ମସମର୍ପଣ କାର୍ଯ୍ୟ ଆଦିରେ ସେ ଅଂଶ ଗ୍ରହଣ କରିଥିଲେ ।

ସେ ବିବିଧ ରଚନାତ୍ମକ କାର୍ଯ୍ୟରେ ଶ୍ରୀମତୀ ରମା ଦେବୀଙ୍କୁ ସାହାଯ୍ୟ କରି ଆସିଛନ୍ତି ଓ ତାଙ୍କର ବୃଦ୍ଧ ବୟସରେ ତାଙ୍କ ପାଖେ ପାଖେ ରହି ତାଙ୍କର ସେବା କରି ଆସିଛନ୍ତି ।

ତାଙ୍କର ଦୁଇଟି କୃତବିଦ୍ୟ ପୁଅ, ଉଭୟେ ପଦାର୍ଥ ବିଜ୍ଞାନରେ ଡକ୍‌ଟରେଟ୍ ପାଇଛନ୍ତି, ବଡ଼ପୁଅ ଗବେଷଣା ନିରତ । ସାନପୁଅ ଅଧ୍ୟାପକ ।

## ଶ୍ରୀ ଶରତ୍ ଚନ୍ଦ୍ର ମହାରଣା

ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ୧୯୦୯ କାର୍ତ୍ତିକ ଅମାବାସ୍ୟା ଦିନ ଜନ୍ମ ହୋଇଥିଲେ । ତାଙ୍କର ପିତା ବିଖ୍ୟାତ ଶିକ୍ଷାବିତ୍ ଓ ସାହିତ୍ୟିକ ୰ ଚନ୍ଦ୍ରମୋହନ ମହାରଣା ଓ ଜନ୍ମସ୍ଥାନ ନିଜ ପୈତୃକ ଗ୍ରାମ ରେମୁଣା, ଜିଲା ବାଲେଶ୍ୱର । ସ୍କୁଲ୍ ଶିକ୍ଷା ଶେଷ କରି ସେ କଟକସ୍ଥ ରେଭେନ୍‌ସା କଲେଜରେ ପଢ଼ିଲେ । ୧୯୨୧ରୁ ସେ ଖଦଡ଼ ପିନ୍ଧୁଥିଲେ । କଲେଜ ରେକର୍ଡ଼ରେ ସେ ନିଜ ଜାତି 'ଭାରତୀୟ' ବୋଲି ଲେଖାଇଥିଲେ । ଛାତ୍ରାବସ୍ଥାରେ ସହପାଠୀମାନଙ୍କ ସଙ୍ଗେ ମିଶି ଓଡ଼ିଶାରେ ସେ ପ୍ରଥମ

ଜିଲ୍ଲାନ୍ତରୀୟ ଛାତ୍ର ସମ୍ମିଳନୀ କରାଇଥିଲେ । ୧୯୨୭ର ପ୍ରବଳ ବନ୍ୟାବେଳେ ସେ ରିଲିଫ୍ କାର୍ଯ୍ୟ କରିଥିଲେ । ଆଇ. ଏସ୍‌ସି. ପାଶ୍ କରି ପାଟନା ଯାଇ ସେଠି କିଛୁକାଳ ଇଞ୍ଜିନିଅରିଂ କଲେଜରେ ପଢ଼ିଲେ, ତାହାପରେ ବି. ଏ. ଓ ଏମ୍. ଏ. ପଢ଼ିଲେ ଓ ସେଠି (ଶିକ୍ଷକ) ଟ୍ରେନିଂ କଲେଜରେ ପଢ଼ି 'ଡିପ୍-ଇନ୍-ଏଡ୍' ପାଶ କଲେ । ୧୯୩୫ରେ ଭାରତରେ ପ୍ରଥମେ ପାଟନା ଟ୍ରେନିଂ କଲେଜରେ 'ଏମ୍. ଇଡ୍.' ଶିକ୍ଷା ଆରମ୍ଭ ହେଲା ଓ ତାର ପ୍ରଥମ ଥରର ପରୀକ୍ଷାର୍ଥୀମାନଙ୍କ ମଧ୍ୟରୁ ଜଣେ ହୋଇ ସେ ଏମ୍. ଇଡ୍. ପାଶ୍ କଲେ । ଛାତ୍ରାବସ୍ଥାରେ ସେ କୃତୀ ଛାତ୍ର ଥିଲେ । ସେ ସରକାରୀ ଶିକ୍ଷା ବିଭାଗରେ ପରିଦର୍ଶକ ପଦରେ ଚାକିରି ଆରମ୍ଭ କଲେ । ସରକାରୀ "ଓ୍ୱାର୍ଦ୍ଧା ଯୋଜନା" ("ମୌଳିକ ଶିକ୍ଷା ଯୋଜନା") ଆରମ୍ଭ ହେବାରୁ ତହିଁରେ ସେ ସଂଗଠକ ('ଅର୍ଗାନାଇଜର') ପଦରେ ଯୋଗ ଦେଲେ । ସରକାର ମୌଳିକ ଶିକ୍ଷା ଯୋଜନା ବନ୍ଦ କରିଦେବାରୁ ସେ ଚାକିରିରୁ ଇସ୍ତଫା ଦେଇଦେଲେ ଓ ଅନ୍ୟ କେତେଜଣଙ୍କ ସଙ୍ଗେ ମିଶି (ବରୀ) ରାମଚନ୍ଦ୍ରପୁରରେ ବେସରକାରୀ ମୌଳିକ ଶିକ୍ଷା ପ୍ରୟୋଗ ଆରମ୍ଭ କରିଦେଲେ । ୰ ଗୋପବନ୍ଧୁ ଚୌଧୁରୀ ମୌଳିକ ଶିକ୍ଷା ପ୍ରୟୋଗର ପ୍ରଧାନ ପ୍ରେରଣାଦାତା ଓ ପୃଷ୍ଠପୋଷକ ଥିଲେ । ସେହି କାର୍ଯ୍ୟରେ ସେ ଶ୍ରୀ ଶରତ୍ ଚନ୍ଦ୍ର ମହାରଣାଙ୍କ ଘନିଷ୍ଠ ସମ୍ପର୍କରେ ଆସିଲେ । ସେ ତାଙ୍କ ସଙ୍ଗେ ନିଜର ଏକମାତ୍ର କନ୍ୟା ଶ୍ରୀମତୀ ଅନ୍ନପୂର୍ଣ୍ଣାଙ୍କର ବିବାହ ଦେଲେ । ସେ ଦୁହିଁଙ୍କର ବିବାହ ବରୀ ଆଶ୍ରମରେ ୧୯୪୨ ମାର୍ଚ୍ଚ ୨୫ ତାରିଖରେ ସମ୍ପନ୍ନ ହୋଇଥିଲା । ଏହା ଥିଲା ଗୋଟିଏ ଅସବର୍ଣ୍ଣ ବିବାହ, ବର ଜାତିରେ ବୈଶ୍ୟ ବଣିଆଁ ଓ କନ୍ୟା କରଣ ।

୧୯୪୨ ଅଗଷ୍ଟ ଆନ୍ଦୋଳନରେ ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ଯୋଗ ଦେଲେ, ୩ ସପ୍ତାହ ପର୍ଯ୍ୟନ୍ତ ପ୍ରକାଶ୍ୟରେ ଆନ୍ଦୋଳନ ଚଳାଇବାରେ ସାହାଯ୍ୟ କଲେ ଓ ଗିରଫ ହୋଇ ଜେଲରେ ସିକ୍ୟୁରିଟି ପ୍ରିଜନର୍ ହୋଇ ୨ବର୍ଷ ରହିଲେ । ଖଲାସ ହେଲା ପରେ ୧୯୪୪-୪୫ରେ ସେ ଅନେକ ଥର ଶ୍ରୀମତୀ ରମା ଦେବୀଙ୍କ ସଙ୍ଗେ ଗାନ୍ଧୀଜୀଙ୍କ ପାଖକୁ ଯାଇଥିଲେ । ସେ ବେସରକାରୀ ମୌଳିକ ଶିକ୍ଷା ପ୍ରୟୋଗ କାର୍ଯ୍ୟରେ ଓ ପରେ ଓଡ଼ିଶାରେ 'କସ୍ତୁରବା ସ୍ମାରକନିଧି'ର ପ୍ରାରମ୍ଭିକ ସଂଗଠନରେ କିଛୁକାଳ ପର୍ଯ୍ୟନ୍ତ କାର୍ଯ୍ୟ କଲେ ।

ସେ ୰ ଗୋପବାବୁ ଓ ଶ୍ରୀମତୀ ରମା ଦେବୀଙ୍କର ସବୁ ରଚନାତ୍ମକ କାର୍ଯ୍ୟରେ ସେମାନଙ୍କର ଘନିଷ୍ଠ ସହଯୋଗୀ ହୋଇ କାର୍ଯ୍ୟ କରି ଆସିଛନ୍ତି ।

ମୌଳିକ ଶିକ୍ଷାର ପ୍ରୟୋଗସମୟରେ ସେ ଅନ୍ୟମାନଙ୍କ ବଳରେ ମୂଲିଆ ହୋଇ କାର୍ଯ୍ୟ କରିଥିଲେ ।

ବରୀ ଅଞ୍ଚଳରେ ସେ ଓ ଅନ୍ୟାନ୍ୟ କେତେକ କର୍ମୀ ପ୍ରାୟ ୨୦ଟି ଗ୍ରାମ ସହିତ ଘନିଷ୍ଠ ସମ୍ପର୍କ ରଖିଥିଲେ ଓ ସେମାନଙ୍କ ବିଶ୍ୱାସ ଅର୍ଜନ କରିଥିଲେ ।

୰ ଗୋପବାବୁଙ୍କ ନେତୃତ୍ୱରେ ଓଡ଼ିଶାରେ ଭୂଦାନ ଆନ୍ଦୋଳନ ଆରମ୍ଭ ହେଲା ଦିନୁ ସେ ତହିଁରେ ପୂର୍ଣ୍ଣପ୍ରାଣରେ ଲାଗି ରହିଲେ । ସେ ଓଡ଼ିଶାର ବେସରକାରୀ 'ଭୂଦାନ ଯଜ୍ଞ ସମିତି'ର ଓ ସରକାରୀ 'ଭୂଦାନ ଯଜ୍ଞ ସମିତି'ର ପ୍ରଥମ ସଂଯୋଜକ ଓ ୧୯୫୬ରୁ ୧୯୫୯ ପର୍ଯ୍ୟନ୍ତ ସେ ତାର ସମ୍ପାଦକ ହୋଇଥିଲେ ।

୰ ଗୋପବନ୍ଧୁ ଚୌଧୁରୀଙ୍କ ମୃତ୍ୟୁ ପରେ ଯେତେବେଳେ ଓଡ଼ିଶାରେ ୰ ଆଚାର୍ଯ୍ୟ ହରିହରଙ୍କର ଦୁଇବର୍ଷ ପର୍ଯ୍ୟନ୍ତ ଦୀର୍ଘ ଅଖଣ୍ଡ ପଦଯାତ୍ରା ଲାଗି ରହିଥିଲା ସେ ୰ ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗେ ସଙ୍ଗେ ପଦଯାତ୍ରା କରିଥିଲେ ।

ଓଡ଼ିଶାରେ ବନ୍ୟା, ବାତ୍ୟା, ମରୁଡ଼ିରେ ଦୁର୍ଗତମାନଙ୍କୁ ସାହାଯ୍ୟ ଦେବା କାର୍ଯ୍ୟ, ଗ୍ରାମ ଆନ୍ଦୋଳନ ବେଳେ ଓ ସାଂପ୍ରଦାୟିକ ଗଣ୍ଡଗୋଳ ବେଳେ ଶାନ୍ତି ପ୍ରତିଷ୍ଠା ଉଦ୍ୟମ, ପଶ୍ଚିମବଙ୍ଗରେ ପୂର୍ବ ପାକିସ୍ତାନରୁ ପଳାତକ ଶରଣାର୍ଥୀଙ୍କ ସେବା ଆଦି କାର୍ଯ୍ୟରେ ସେ ଓଡ଼ିଶାର ବେସରକାରୀ ସଂସ୍ଥାମାନଙ୍କ ସହିତ ଓ ମୁଖ୍ୟ କର୍ମୀମାନଙ୍କ ସହିତ କାର୍ଯ୍ୟ କରିଥିଲେ ।

ସେ ନାନା ସ୍ଥାନରେ ନାନା ସେବାକାର୍ଯ୍ୟ କରି ଆସିଛନ୍ତି ।

ଆଚାର ଓ ବିଚାରରେ ସେ ଗାନ୍ଧୀବାଦୀ, ନାନା ସଦଗୁଣମଣ୍ଡିତ ଆଦର୍ଶ ଚରିତ୍ର ବ୍ୟକ୍ତି । ସେ ବିନୟୀ ଓ ନିରଭିମାନ, ନିଜ ଚଳଣିରେ ଅତ୍ୟନ୍ତ ସରଳ ଓ ସାଧାରଣ । ସେ ନିଜ ଜୀବନରେ ଅଟଳ ରହି ନିରଳସ ନିଷ୍ଠାପର, ନିଃସ୍ୱାର୍ଥପର ଭାବେ ଜନସେବା କରି ଜୀବନ ବିତାନ୍ତି ।

### ୰ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ (ଗ୍ରାମ: ଜଗତସିଂପୁର, ଜି: କଟକ)

୰ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ ୧୯୨୧ରେ ସରକାରୀ ସ୍କୁଲର ଶିକ୍ଷକତା ଛାଡ଼ି ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ କଂଗ୍ରେସରେ ଯୋଗ ଦେଇଥିଲେ ଓ ସ୍ୱାଧୀନତା ଆନ୍ଦୋଳନରେ ବାରମ୍ବାର ଜେଲ୍ ଯାଇଥିଲେ । ୰ ଗୋପବନ୍ଧୁ ଚୌଧୁରୀ ଆଦିଙ୍କ ସହିତ ସେ ମଧ୍ୟ 'ଅଲକାଶ୍ରମ'ର ଅନ୍ୟତମ ପ୍ରତିଷ୍ଠାତା । ୰ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା ।

ସେ ଆଜୀବନ କଂଗ୍ରେସ କାର୍ଯ୍ୟ କରୁଥିଲେ ଓ ବିଶିଷ୍ଟ କଂଗ୍ରେସ ନେତା ଥିଲେ । ତାଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ତାଙ୍କର ଆକସ୍ମିକ ମୃତ୍ୟୁ ପରେ କଟକରେ 'ପଢ଼ିଆରୀ ପାଠାଗାର' ପ୍ରତିଷ୍ଠିତ ହୋଇଛି ।

### ୰ ବିଶ୍ୱନାଥ ପଟ୍ଟନାୟକ (ଗ୍ରାମ: ବାହାରଣା, ଜି: କଟକ)

ସେ ସ୍କୁଲ ଛାତ୍ର ଥିଲାବେଳେ ଗାନ୍ଧୀ ମାର୍ଗ ଅନୁସରଣ କରି ସ୍କୁଲ ଛାଡ଼ିଲେ । 'ଖଦୀ ସଂଘ' କାର୍ଯ୍ୟରେ ସେ ୰ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ସହଯୋଗ

କରିଥିଲେ । ସେ 'ଚରଖା ସଂଘ'ରେ କାର୍ଯ୍ୟ କଲେ ଓ ପରେ 'ଉତ୍କଳ ଖଦୀ ମଣ୍ଡଳ'ର ସମ୍ପାଦକ ହେଲେ ।

ସ୍ୱାଧୀନତା ଆନ୍ଦୋଳନରେ ବାରମ୍ବାର ସେ ଓ ତାଙ୍କ ସ୍ତ୍ରୀ ଜେଲ୍ ଯାଇଥିଲେ ।

## ୵ ଗୁଣନିଧି ମହାନ୍ତି

୵ ଗୁଣନିଧି ମହାନ୍ତିଙ୍କ ଜନ୍ମ କଟକ ଜିଲାର ଦେଉଳି ଗ୍ରାମରେ । ବୟସରେ ସେ ୵ ଗୋପବନ୍ଧୁ ଚୌଧୁରୀଙ୍କ ସମସାମୟିକ ଥିଲେ । ସେ ପି. ଡବ୍ଲ୍ୟୁ. ଡି. ଓଭରସିଅର ଥିଲେ, ବିପତ୍ନୀକ ଓ ନିଃସନ୍ତାନ ଥିଲେ ଓ ୧୯୨୧ ଆନ୍ଦୋଳନ ବେଳେ ଚାକିରିରୁ ଇସ୍ତଫା ଦେଇ କଂଗ୍ରେସରେ ଯୋଗ ଦେଇଥିଲେ । ଓଡ଼ିଶାର ଜଣେ ନେତା ୵ ଭୁବନାନନ୍ଦ ଦାସ ବିଲାତରୁ ଇଞ୍ଜିନିଅରିଂ ପାଶ୍ କରି କଂଗ୍ରେସରେ ଯୋଗ ଦେଇଥିଲେ ଓ ବମ୍ବେରେ ଇଞ୍ଜିନିଅରିଂ ପରାମର୍ଶଦାତା ରୂପେ ସ୍ୱାଧୀନ ଭାବେ କାର୍ଯ୍ୟ କରୁଥିଲେ । ୵ ଗୁଣନିଧି ମହାନ୍ତି ତାଙ୍କ ପାଖେ ରହି ତାଙ୍କ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ୧୯୨୭ରେ ବ୍ରାହ୍ମଣୀ-ବୈତରଣୀରେ ପ୍ରବଳ ବଢ଼ି ଫଳରେ ବହୁ କ୍ଷୟକ୍ଷତି ହୋଇଥିଲା, ସେତେବେଳେ ସେ ବନ୍ୟା-ଦୁର୍ଗତଙ୍କ ସାହାଯ୍ୟ କାର୍ଯ୍ୟ କରିଥିଲେ ଓ ପ୍ରସିଦ୍ଧ ଇଞ୍ଜିନିୟର ୵ ସାର୍ ବିଶ୍ୱେଶ୍ୱରାୟା ଯେତେବେଳେ ମହାତ୍ମା ଗାନ୍ଧୀଙ୍କ ଅନୁରୋଧରେ ଓଡ଼ିଶାର ବନ୍ୟା ତଦନ୍ତ କରିବାକୁ ଓ ବନ୍ୟା ନିରୋଧ କରିବାକୁ ଉପାୟ ନିର୍ଦ୍ଧାରଣ କରିବାକୁ ଓଡ଼ିଶାରେ ଗସ୍ତ କରିଥିଲେ ୵ ଗୁଣନିଧି ବାବୁ ତାଙ୍କ ଆଗରେ ସାକ୍ଷ ଦେଇଥିଲେ ।

୧୯୩୦ର ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ସେ ଜେଲ୍ ଯାଇଥିଲେ । ଜେଲ୍‌ରେ ଗୁରୁତର ଭାବେ ଅସୁସ୍ଥ ହେବାରୁ ୩ ମାସ ପରେ ତାଙ୍କୁ ଛାଡ଼ି ଦିଆଗଲା । ସେ ଗାନ୍ଧୀଜୀଙ୍କ ରଚନାତ୍ମକ କାର୍ଯ୍ୟମାନ କରିବାକୁ ଲାଗିଲେ । ୧୯୩୨ ଆନ୍ଦୋଳନରେ ସେ ପୁଣି ଜେଲ୍ ଗଲେ ।

ଡେଲାଙ୍ଗରେ 'ଗାନ୍ଧୀ ସେବାସଂଘ ସମ୍ମିଳନୀ' ବେଳେ ସେ ବହୁତ କାର୍ଯ୍ୟ କରିଥିଲେ । ୧୯୩୭ରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଆରମ୍ଭ ସମୟରେ ଗ୍ରାମୋଦ୍ୟୋଗ କାର୍ଯ୍ୟରେ ବିଶେଷ ସାହାଯ୍ୟ କରିଥିଲେ । ୵ ଜେ. ସି. କୁମାରପ୍ପାଙ୍କ ସହିତ ତାଙ୍କର ବାରମ୍ବାର ଆଲୋଚନା ହେଉଥିଲା । ସେ ବାରଙ୍ଗରେ ମୋଚିମାନଙ୍କୁ ସଂଗଠିତ କରିଥିଲେ ଓ ସେମାନଙ୍କ ଦ୍ୱାରା ଜୋତା ତିଆରି କାର୍ଯ୍ୟର ବହୁତ ବିକାଶ କରାଇଥିଲେ । ବର୍ଦ୍ଧାରେ ମୌଳିକ ଶିକ୍ଷା ପ୍ରବର୍ତ୍ତନ କରିବାକୁ କଂଗ୍ରେସ ସରକାର ନିଷ୍ପତ୍ତି ନେବାରୁ ଘର ତିଆରି ଲାଗି ସେ ଇଞ୍ଜିନିଅରିଂ ପରାମର୍ଶ ଦେଉଥିଲେ ଓ ତାଙ୍କ ତତ୍ତ୍ୱାବଧାନରେ ୩ ମାସରେ ସବୁ ଘର ତୋଳା ସରିଥିଲା ।

୧୯୪୨ ଆନ୍ଦୋଳନ ବେଳେ ସେ ୨ ବର୍ଷ ପର୍ଯ୍ୟନ୍ତ ଜେଲ୍‌ରେ ଅଟକବନ୍ଦୀ ରହିଲେ । ଖଳାସ ହୋଇ ପୁଣି ଖଦୀ ଓ ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟରେ ଲଗିଲେ । ସେ ୰ ଲକ୍ଷ୍ମୀନାରାୟଣ ସାହୁଙ୍କ ସଙ୍ଗେ ସହଯୋଗ କରି ୧୧ ବର୍ଷ ପର୍ଯ୍ୟନ୍ତ ଜଳକଲାରେ ଗୋଟିଏ କୃଷ୍ଣାଶ୍ରମ କଲେ । ତାହାପରେ କଟକରେ ରହି ରଚନାତ୍ମକ କାର୍ଯ୍ୟମାନ କଲେ । ୧୯୪୬ରେ କଂଗ୍ରେସ ସରକାର 'ଖଦୀ ବୋର୍ଡ଼' ଗଠନ କରିବାରୁ ସେ ଖଦୀ ବସ୍ତୀ କେନ୍ଦ୍ରଗୁଡ଼ିକ ଚଳାଇବାକୁ ଲଗିଲେ, ତାପରେ ବେସରକାରୀ ସଂସ୍ଥା 'ଉତ୍କଳ ଖଦୀ ମଣ୍ଡଳ', 'ସ୍ୱାବଲମ୍ବୀ ଖଦୀ' ଓ ଗ୍ରାମୋଦ୍‌ଯୋଗ କାର୍ଯ୍ୟରେ ଲଗିଲେ ଓ ସୂତାକଟା ଖଦୀ ଲୁଗାବୁଣା ପାଇଁ ଯନ୍ତ୍ରପାତି ତିଆରି କରାଇବା ପାଇଁ ଯୋଜନା ପ୍ରସ୍ତୁତ କଲେ ।

୧୯୫୩ରୁ ୧୯୫୯ ପର୍ଯ୍ୟନ୍ତ ସେ ଭୂଦାନ ଗ୍ରାମଦାନ କାର୍ଯ୍ୟରେ ଲଗି ରହିଲେ । ସେ କଟକ ଜିଲାରେ ଓ କୋରାପୁଟ ଜିଲାରେ ଗ୍ରାମଦାନ କାର୍ଯ୍ୟ ଓ ଭୂଦାନ ଜମି ବଣ୍ଟନ କାର୍ଯ୍ୟ କରୁଥିଲେ । ୧୯୫୭ରୁ ପ୍ରାୟ ଦେଢ଼ବର୍ଷ ପର୍ଯ୍ୟନ୍ତ ସେ ଶ୍ରୀମତୀ ରମା ଦେବୀଙ୍କ ସହିତ କେନ୍ଦୁଝର ଜିଲାରେ ଭୂଦାନର 'ନିଧିମୁକ୍ତ' ପର୍ଯ୍ୟାୟରେ କାର୍ଯ୍ୟ କରିଥିଲେ । ୧୯୫୮ ଅଗଷ୍ଟ ୧୫ରୁ ପ୍ରାୟ ୨ ବର୍ଷ ପର୍ଯ୍ୟନ୍ତ ୰ ଆଚାର୍ଯ୍ୟ ମହାଶୟଙ୍କର ଦୀର୍ଘ ପଦଯାତ୍ରା ଲଗି ରହିଲା । ୰ ଗୁଣନିଧି ମହାନ୍ତି ତାଙ୍କ ସହଯାତ୍ରୀ ହୋଇ ଓଡ଼ିଶାର ଅନେକ ଅଞ୍ଚଳରେ ଭୂଦାନ ଓ ସର୍ବୋଦୟ ବିଚାର ପ୍ରଚାର କରିଥିଲେ ।

୧୯୬୧ ଡିସେମ୍ବର ୧୬ରେ ତାଙ୍କର ଦେହାନ୍ତ ହେଲା । ସେ ଆଦ୍ୟରୁ ୰ ଗୋପବନ୍ଧୁ ଚୌଧୁରୀଙ୍କର ଜଣେ ଘନିଷ୍ଠ ସହଯୋଗୀ ଥିଲେ । ସେ ନିଜ ପାଇଁ କିଛି ଲୋଡ଼ି ନାହାନ୍ତି । କେବେ କ୍ଷମତା-ରାଜନୀତିରେ ପଶି ନାହାନ୍ତି କି ନେତା ହେବାକୁ ଚାହିଁ ନାହାନ୍ତି । ସେ ଆଜୀବନ ନିଷ୍ଠାପର ନିରଳସ ନିଃସ୍ୱାର୍ଥପର ଗାନ୍ଧୀବାଦୀ କର୍ମୀ ଥିଲେ । ସମସ୍ତିଙ୍କୁ ଆପଣାର ମଣି ପରୋପକାର ଓ ଜନସେବା କରି କରି ସରଳ ନିରାଡ଼ମ୍ବର ସଚ୍ଚୋଟ ନିରଳସ ଜୀବନ ବିତାଇ ଏ ସଂସାରରୁ ବିଦାୟ ନେଲେ । ସେ ମହାନ୍ ଦେଶସେବକ ଥିଲେ ।

ଯେଉଁ ଜମିଟି ଉପରେ ଝୋଡ଼ିଆ ସାହିର ଆଶ୍ରମଟି ଠିଆ ହୋଇଛି ସେଇଟି ତାଙ୍କର ପୈତୃକ ସଂପତ୍ତି ଥିଲା ଓ ତାକୁ ସେ ଦାନ କରି ଯାଇଥିଲେ । ତାଙ୍କର ସ୍ମୃତିକୁ ସମ୍ମାନ ଜଣାଇ ତାହାର ନାମ ରଖାଯାଇଛି "ଗୁଣନିଧି ଭବନ" ।

୰ ଗୌରାଙ୍ଗ ଚରଣ ଦାସ (ଜନ୍ମ ୨୬-୧-୧୮୯୯, ବାଗଲପୁର, କଟକ)

୰ ଗୌରାଙ୍ଗ ଚରଣ ଦାସଙ୍କ ଡାହାଣହାତଟି ଅକର୍ମଣ୍ୟ ଥିଲା, ତଥାପି ଗୋଟିଏ ହାତରେ ସେ ସବୁ କାମ କରି ପାରୁଥିଲେ, ସାଇକେଲ ଚଢ଼ୁଥିଲେ, କର୍ମଠ ଥିଲେ ଓ ଦକ୍ଷ କଂଗ୍ରେସ କର୍ମୀ ଓ ସଙ୍ଗଠକ ଥିଲେ ।

୬ ଗୋପବନ୍ଧୁ ଚୌଧୁରୀ ଅଲକାଶ୍ରମରେ ଥିଲାବେଳେ ୬ ଗୌରାଙ୍ଗବାବୁ ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ କଂଗ୍ରେସ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେ ନିଜ ଗ୍ରାମରେ ଓ ନିଜ ଅଞ୍ଚଳରେ କଂଗ୍ରେସ ବାର୍ତ୍ତା ପ୍ରଚାରରେ ଲାଗିଲେ ଓ ଗ୍ରାମ୍ୟ ସଙ୍ଗଠନ କାର୍ଯ୍ୟ କଲେ । ସେ ୬ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଦେବୀଙ୍କ ସହିତ ତଦେଲୁଦ ଗ୍ରାମରେ ସେମାନଙ୍କ କୃଷି ଫାର୍ମରେ ରହି କାର୍ଯ୍ୟ କରିଥିଲେ । ତା ପୂର୍ବରୁ ଓ ସେତେବେଳେ ସେ ନିଜ ଗ୍ରାମ ବାଗଲପୁରର ହରିଜନମାନଙ୍କର ନେତୃତ୍ୱ ନେଇ ଶୋଷଣ ଅତ୍ୟାଚାର ବିରୁଦ୍ଧରେ ସେମାନଙ୍କୁ ସଂଗଠିତ କରିଥିଲେ । ୧୯୩୦ରେ ଲବଣ ସତ୍ୟାଗ୍ରହୀ ହୋଇ ଓଡ଼ିଶାରେ ଯେଉଁ ପ୍ରଥମ ଯାତ୍ରୀ ଦଳ ୬ ଗୋପବାବୁଙ୍କ ନେତୃତ୍ୱରେ ବାହାରିଥିଲେ ତହିଁରେ ୬ ଗୌରାଙ୍ଗ ଚରଣ ଦାସ ଜଣେ । ୧୯୩୨-୩୩ରେ ୬ ଗୋପବାବୁଙ୍କ ପରାମର୍ଶରେ ସେ ନିଜ ଗ୍ରାମରେ ଗୋଟିଏ ଖଦୀ କେନ୍ଦ୍ର ପ୍ରତିଷ୍ଠା କଲେ, ସେହି କାର୍ଯ୍ୟ ପାଇଁ ୬ ଗୋପବାବୁ ତାଙ୍କୁ ସାଇକଲଟିଏ ଦେଲେ । ସେ କେନ୍ଦ୍ରର ଉଦ୍‌ଘାଟନ ୬ ଗୋପବାବୁ କରିଥିଲେ । ସେ ଅଞ୍ଚଳରେ ଖଦୀ ବ୍ୟବହାର ଘରେଘରେ ବ୍ୟାପିଲା । ୧୯୩୪ରେ ସେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରାରେ ଚାଲିଥିଲେ । ସେ ୧୯୪୨ ଆନ୍ଦୋଳନରେ ଯୋଗ ଦେଇଥିଲେ ।

ସେ ନିଜ ଗ୍ରାମରେ ରହି ଗାନ୍ଧିବାଦୀ ରଚନାତ୍ମକ କାର୍ଯ୍ୟ କରୁଥିଲେ । ୬ ଗୋପବାବୁଙ୍କ ନେତୃତ୍ୱରେ ଭୂଦାନ କାର୍ଯ୍ୟ ଚାଲିବାରୁ ତହିଁରେ ସେ ଯୋଗ ଦେଇଥିଲେ ।

**୬ ସହଦେବ ଦାସ (ଗ୍ରାମ: ଆଳି, ଜି: କଟକ)**

୬ ସହଦେବ ଦାସ ସ୍କୁଲ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଅଲକାଶ୍ରମରେ ରହି ତାଲିମ୍ ପାଇଥିଲେ, ସେହିଦିନୁଁ ୬ ଗୋପବାବୁଙ୍କ ସଙ୍ଗେ ତାଙ୍କର ସମ୍ପର୍କ । ସେ ନିରବଚ୍ଛିନ୍ନ ଭାବରେ କଂଗ୍ରେସ କାମ କରିଥିଲେ । ଆଳି ଅଞ୍ଚଳରେ ସେ ଖଦୀ ଓ ଗ୍ରାମସେବା କାମ କରୁଥିଲେ । ଆଳି ଗୋଟିଏ ବଡ଼ ଜମିଦାରୀ ଥିଲା, ଜମିଦାରଙ୍କ ଉପାଧି 'ରାଜା' । ୬ ସହଦେବ ଦାସ ନିର୍ଭୀକ ଭାବରେ ଆଳିର ପ୍ରଜାମାନଙ୍କର ନେତୃତ୍ୱ ନେଉଥିଲେ, ସେମାନଙ୍କ ଅଭିଯୋଗ ଓ ସମସ୍ୟାର ପ୍ରତିକାର ଦାବୀ କରୁଥିଲେ । ସେ ଜଣେ ନିଃସ୍ୱାର୍ଥପର, ନିଷ୍ଠାପର ଜନସେବକ କର୍ମୀ ଥିଲେ । କିଛୁକାଳ ସେ ୧୯୪୬ରେ କଂଗ୍ରେସ ମନ୍ତ୍ରିମଣ୍ଡଳ ବେଳେ ଓଡ଼ିଶା ବିଧାନସଭାର ଜଣେ ସଭ୍ୟ ଥିଲେ ।

**୬ ସର୍ଦ୍ଦାର ସୁରେନ୍ଦ୍ର ଦାସ (ଗ୍ରାମ: ଗୋବର୍ଦ୍ଧନପୁର, ଜି: ବାଲେଶ୍ୱର)**

୬ ସର୍ଦ୍ଦାର ସୁରେନ୍ଦ୍ର ଦାସ ୧୯୩୦ରେ ପୁଲିସ ସବ୍‌ଇନ୍‌ସ୍‌ପେକ୍ଟରର ଚାକିରିରୁ ଇସ୍ତଫା ଦେଇ ସ୍ୱାଧୀନତା ଆନ୍ଦୋଳନରେ ମିଶିଲେ ଓ ଲବଣ ସତ୍ୟାଗ୍ରହରେ ଯୋଗ-ଦେଇ ଜେଲ୍ ଗଲେ । ସେ ୧୯୪୨ ଆନ୍ଦୋଳନରେ ମଧ୍ୟ ଜେଲ୍ ଗଲେ ।

ସେ ରେମୁଣାରେ ଓ ଦୁର୍ଗାବଣ୍ଟାରେ ଖଦୀ କେନ୍ଦ୍ର ସ୍ଥାପନ କରି ଖଦୀ କାମ କରୁଥିଲେ ।

ସେ ୧୯୪୬ରେ ଓଡ଼ିଶା ବିଧାନସଭା ସଭ୍ୟ ଥିଲେ । ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ସେ କଂଗ୍ରେସ କାମ କରିଥିଲେ ।

## ଶ୍ରୀ ହରେକୃଷ୍ଣ ବିଶ୍ୱାଳ (ଜନ୍ମ—୧୯୦୧)

ଶ୍ରୀ ହରେକୃଷ୍ଣ ବିଶ୍ୱାଳ ଓଡ଼ିଶା ସେଟଲ୍‌ମେଣ୍ଟରେ ହେଡ୍ କ୍ଲର୍କ ଓ କାନନ୍‌ଗୋ ଥିଲେ ଓ ସ୍ପେସାଲ୍ ଟାଷ୍ଟ ସେକ୍‌ସନ୍‌ରେ କାର୍ଯ୍ୟ କରିଥିଲେ । ୧୯୨୭-୨୮ରେ ତାଙ୍କ କେନ୍ଦ୍ର କ୍ୟାମ୍ପ ଜଗତ୍‌ସିଂହପୁର ପାଖେ 'ଅଳକାଶ୍ରମ' କଟରେ ପଡ଼ିଥିଲା । ସେତିକିବେଳେ ସେଠି ଅଳକାଶ୍ରମରେ ରହୁଥିବା ୰ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀଙ୍କ ସଙ୍ଗେ ପରିଚିତ ହେଲେ ଓ ସେମାନଙ୍କ ପ୍ରଭାବରେ ତାଙ୍କ ଜୀବନର ପରିବର୍ତ୍ତନ ଘଟିଗଲା । ସେ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ହେଲେ, ଖଦୀ ପିନ୍ଧିଲେ ଓ ଦେଶସେବା କରିବାକୁ ଚିନ୍ତା କଲେ । ୧୯୩୦ରେ ଶ୍ରୀମତୀ ରମା ଦେବୀଙ୍କ ଆହ୍ୱାନରେ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ । ସେ ଚାରିଥର ଆନ୍ଦୋଳନରେ ଯୋଗ ଦେଇ ଜେଲ୍ ଗଲେ, ଶେଷ ଥର ୧୯୪୨ରେ ।

୧୯୩୦ରେ କଂଗ୍ରେସରେ ମିଶି ସେ ୰ ଗୋପବାବୁ ଓ ୰ ଆଚାର୍ଯ୍ୟ ହରିହରଙ୍କ ନିର୍ଦ୍ଦେଶରେ ନାନା କାର୍ଯ୍ୟ କରିବାକୁ ଲାଗିଲେ । ସେମାନଙ୍କ ସଙ୍ଗେ କଟକ ଜିଲ୍ଲାର ବାଲିକୁଦା ଓ ଏରସମା ଅଞ୍ଚଳରେ ବୁଲି ପୁରୀରେ ତା ଆରବର୍ଷ ହେବାକୁ ସ୍ଥିର ହୋଇଥିବା ଜାତୀୟ କଂଗ୍ରେସ ଅଧିବେଶନ ପାଇଁ ଅଭ୍ୟର୍ଥନା ସମିତି ସଭ୍ୟ ସଂଗ୍ରହ କଲେ, ସେଥିପାଇଁ ଚାନ୍ଦା ରଖା ହୋଇଥାଏ ଜଣକେ ୨୫ ଟଙ୍କା । ୧୯୩୪ରେ ବଢ଼ିରେ ଜଗତ୍‌ସିଂହପୁର ଅଞ୍ଚଳରେ ବେହିଆ ଓ ନଗ୍ରୁଲ ଘାଇ ଭାଙ୍ଗିଲା । ୰ଗୋପବାବୁ ଓ ଶ୍ରୀମତୀ ରମା ଦେବୀଙ୍କ ନିର୍ଦ୍ଦେଶରେ ସେ ଓଡ଼ିଶା ରିଲିଫ କମିଟି ତରଫରୁ ଶିଖରଘାଟ୍ ଓ ବୋରିକିନାରେ ତିନିବର୍ଷ ପର୍ଯ୍ୟନ୍ତ ଦୁଇଟି ରିଲିଫ୍ କେନ୍ଦ୍ର ପରିଚାଳନା କଲେ । ୧୯୩୭-୩୮ରେ ୰ ଗୋପବାବୁଙ୍କ ନିର୍ଦ୍ଦେଶରେ ସେ ଏରସମା ଥାନାର ଗଣେଶ୍ୱରପୁର ଗ୍ରାମରେ ଗୋଟିଏ ସୂତାକଟା କେନ୍ଦ୍ର ଖୋଲିଲେ, ୧୯୩୯ରେ ସେଠି ଉତ୍କଳ ଗାନ୍ଧୀ ସେବା ସଂଘର ପ୍ରାଦେଶିକ ସମ୍ମିଳନୀ ହେଲା । କେନ୍ଦ୍ରଟି ୧୯୬୨ ଯାଏ ଚାଲିଲା । ସ୍ୱାଧୀନତା ପରେ ସେ କଟକ ଜିଲ୍ଲା କଂଗ୍ରେସ କମିଟିର ରଚନାତ୍ମକ କାର୍ଯ୍ୟର ସଂଗଠକ ହୋଇ କାର୍ଯ୍ୟ କଲେ ।

୧୯୫୦ରେ ସେ କଂଗ୍ରେସରୁ ଇସ୍ତଫା ଦେଲେ ଓ ମୌଳିକ ଶିକ୍ଷା କେନ୍ଦ୍ରଟିଏ ଖୋଲିବାକୁ ଉଦ୍ୟମ କଲେ । କିନ୍ତୁ ୰ ଗୋପବାବୁଙ୍କ ଡକରା ପାଇ ସେ କାର୍ଯ୍ୟ ବନ୍ଦ କରି ଭୂଦାନ କାର୍ଯ୍ୟରେ ଯୋଗ ଦେଲେ । ସେହି ସମୟରୁ ସେ ଭୂଦାନ ଗ୍ରାମଦାନ

କାର୍ଯ୍ୟ କରି ଆସିଛନ୍ତି । ସେ ୩ ବର୍ଷ ପର୍ଯ୍ୟନ୍ତ ସର୍ବୋଦୟ ମଣ୍ଡଳର ପ୍ରାଦେଶିକ ସମ୍ପାଦକ ଥିଲେ, କଟକ ଜିଲ୍ଲା ସର୍ବୋଦୟ ମଣ୍ଡଳର ସଂଯୋଜକ ହୋଇ ୪ ବର୍ଷ କାର୍ଯ୍ୟ କରିଥିଲେ ଓ କଟକ ଜିଲ୍ଲା ଭୂଦାନ କମିଟିର 'ନିବେଦକ' ହୋଇ ସାଢ଼େ ତିନିବର୍ଷ କାର୍ଯ୍ୟ କରିଥିଲେ । ସେ ଅନେକଥର ୬ ଗୋପବାବୁଙ୍କର ସହଯାତ୍ରୀ ହୋଇ ବୁଲିଛନ୍ତି । ତାଙ୍କ ସହିତ ଶ୍ରୀ ବିଶ୍ୱନାଥଙ୍କର ମଧ୍ୟ ଘନିଷ୍ଠ ସମ୍ପର୍କ ଥିଲା ।

## ଶ୍ରୀ ବିନୋଦ କାନନ୍‌ଗୋ

ଶ୍ରୀ ବିନୋଦ କାନନ୍‌ଗୋଙ୍କ ଜନ୍ମ କଟକ ଜିଲ୍ଲା (କିଶୋରନଗର ଥାନା)ର ପଲ୍ଲମୁରି ଗ୍ରାମରେ ୧୯୧ ରେ । ସେ ୧୯୩୦ରେ ପଢ଼ା ଛାଡ଼ି ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ ଓ ୧୯୩୦, ୧୯୩୨ ଓ ୧୯୪୨ରେ ଜେଲ୍ ଯାଇଥିଲେ । ୧୯୩୪ରେ ଓଡ଼ିଶାରେ ଗାନ୍ଧୀଜୀଙ୍କ ହରିଜନ ପଦଯାତ୍ରା ବେଳେ 'ସମାଜ' ସମ୍ବାଦ-ପତ୍ରର ସମ୍ବାଦଦାତା ଭାବେ ତାଙ୍କ ସଙ୍ଗେ ସଙ୍ଗେ ଥିଲେ । ତାପରେ ସେ ୬ ଗୋପବନ୍ଧୁ ଚୌଧୁରୀଙ୍କ ସଙ୍ଗେ ବରି ଗଲେ । ସେ ସେଠାରେ ରହି ସେ ଅଞ୍ଚଳରେ ହରିଜନ-ସେବା, ପ୍ରୌଢ଼ଶିକ୍ଷା, ନିଶା-ନିବାରଣ ଆଦି ବିବିଧ ରଚନାତ୍ମକ କାର୍ଯ୍ୟ କରିବାକୁ ଲାଗିଲେ ।

ତାହାପରେ ସେ ନିଜ ଗ୍ରାମକୁ ଫେରିଲେ ଓ ସେଠାରେ ସମଗ୍ର ଗ୍ରାମସେବା ଯୋଜନା ଅନୁସାରେ କିଛିକାଳ କାର୍ଯ୍ୟ କଲେ ।

ସେ ଜଣେ ବିଶିଷ୍ଟ ଲେଖକ । ସେ ବିବିଧ ପୁସ୍ତକ ଲେଖିଛନ୍ତି, ଶିଶୁ ସାହିତ୍ୟ ଲେଖି ବିଶେଷ ଆଦୃତ ହୋଇଛନ୍ତି ଓ ତାହାପରେ ବହୁବର୍ଷ କଟକରେ ରହି ନିଜର ନିରନ୍ତର ଓ ଏକକ ଉଦ୍ୟମ ଅଧ୍ୟବସାୟ ବଳରେ ଓଡ଼ିଆରେ 'ଜ୍ଞାନ ମଣ୍ଡଳ' ବୋଲି ଜ୍ଞାନକୋଷ ଲେଖି ପ୍ରକାଶ କରି ଓଡ଼ିଶାରେ ଓ ଭାରତରେ ପ୍ରସିଦ୍ଧି ଅର୍ଜନ କରିଛନ୍ତି ।

## ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ (ଗ୍ରାମ: ନରସପୁର)

ଛାତ୍ରାବସ୍ଥାରେ ୧୯୩୦ରେ ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ ପଢ଼ା ଛାଡ଼ି ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେଲେ । ସେ ୧୯୩୦ରେ, ୧୯୩୨ରେ ଓ ୧୯୪୨ ରେ ଜେଲ୍ ଯାଇଥିଲେ । ୧୯୩୪ରେ ଓଡ଼ିଶାରେ ଗାନ୍ଧୀଜୀଙ୍କ ହରିଜନ ପଦଯାତ୍ରା ବେଳେ ସେ ଅଗ୍ରଗାମୀ ଦଳରେ ବୁଲୁଥିଲେ । ତାହାପରେ ସେବର୍ଷ ଯେତେବେଳେ ୬ ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ରମା ଦେବୀ ଆଦି କଟକରୁ ବରି ବୁଲିଗଲେ ସେ ମଧ୍ୟ ସେମାନଙ୍କ ସଙ୍ଗେ ବରି ଗଲେ । ସେ ବରିରେ ରହି ୬ ଗୋପ-ବାବୁଙ୍କ ନିର୍ଦ୍ଦେଶରେ କଂଗ୍ରେସ କାମ ସହିତ ବିବିଧ ଗାନ୍ଧୀବାଦୀ ରଚନାତ୍ମକ କାର୍ଯ୍ୟ କରିବାକୁ ଲାଗିଲେ । ଖଦୀ କାମ, ନିଶା ନିବାରଣ, ଗ୍ରାମ ସଫେଇ, ହରିଜନ-ସେବା,

ଗ୍ରାମ ସଂଗଠନ ଆଦି ତାହାର ଅନ୍ତର୍ଗତ । କର୍ମୀ ଶ୍ରୀ ବୈଦ୍ୟନାଥ ଦାସ କହନ୍ତି, "ବରି ଆଶ୍ରମରେ ସମସ୍ତଙ୍କ ଭିତରେ ସେ ସବୁଠୁଁ ଚଞ୍ଚଳ ସୂତା କାଟି ପାରୁଥିଲେ ଓ ମାଟି ହାଣି ପାରୁଥିଲେ ।" ସେଠି ସେ କିଛି ବର୍ଷ ଥିଲେ ।

ପରେ ସେ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ହେଲେ, ସକ୍ରିୟ ରାଜନୀତିରେ ଯୋଗ ଦେଲେ ଓ ଓଡ଼ିଶାର ଜଣେ ମନ୍ତ୍ରୀ ହୋଇଥିଲେ ।

## ୰ ଗୋବର୍ଦ୍ଧନ ପ୍ରଧାନ

୰ ଗୋବର୍ଦ୍ଧନ ପ୍ରଧାନଙ୍କ ନିବାସ (ବରି) ଅରଙ୍ଗାବାଦ୍ । ସେ ଜଣେ ଆଗ୍ରହନିଷ୍ଠ ଗାନ୍ଧିବାଦୀ ଥିଲେ, ତେଣୁ ସେ ଅଞ୍ଚଳର ଲୋକେ ତାଙ୍କୁ ସ୍ଥାନୀୟ 'ଗାନ୍ଧୀ' ବୋଲି କହୁଥିଲେ । ସେ ୰ ଗୋପବାବୁଙ୍କର ଘନିଷ୍ଠ ସହଯୋଗୀ ଥିଲେ । ଖଦୀ କାମ, ହରିଜନ ସେବା, ହୋମିଓପ୍ୟାଥିକ୍ ଔଷଧ ବିତରଣ, ସମାଜ ସଂସ୍କାର ଆଦି ବିଭିନ୍ନ କାର୍ଯ୍ୟ ସେ କରୁଥିଲେ । ୧୯୪୨ ଆନ୍ଦୋଳନ ବେଳେ ସେ ଜେଲ ଯାଇଥିଲେ । ସେଥର ୰ ଗୋପବାବୁ ଜେଲ୍‌ରୁ ବାହାରି (ବରି) ଅରଙ୍ଗାବାଦରେ ତାଙ୍କରି ଘରେ ରହୁଥିଲେ ।

## ଶ୍ରୀ ଭଗୀରଥ ଦାସ, ବରି (ଆନନ୍ଦପୁର)

ଶ୍ରୀ ଭଗୀରଥ ଦାସ କଂଗ୍ରେସରେ ଯୋଗ ଦେଇଥିଲେ । ସେ ଅଞ୍ଚଳରେ ନିଶାନିବାରଣ ଉଦ୍ଦେଶ୍ୟରେ ସେ ଖଜୁରି ଗଛ କାଟିବା ଆନ୍ଦୋଳନ ଚଳାଇ ୧୯୩୦ରେ ଜେଲ୍ ଗଲେ । ୧୯୩୨, ୧୯୪୦ ଓ ୧୯୪୨ରେ ସେ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ପ୍ରିୟମ୍ବଦା ଦେବୀ ଜେଲ୍ ଯାଇଥିଲେ । ସେ କଟକ ଜିଲ୍ଲାବୋର୍ଡ଼ ସଭ୍ୟପଦ ପାଇଁ କଂଗ୍ରେସ ପାର୍ଟି ତରଫରୁ ଠିଆ ହୋଇ ନିର୍ବାଚନ ଲଢ଼ିଥିଲେ ଓ ତହିଁରେ ଜିତି ଜିଲ୍ଲାବୋର୍ଡ ସଭ୍ୟ ହୋଇଥିଲେ ।

ବରିରେ ଖଦୀ କାମ ଓ ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟରେ ସେ ୰ ଗୋପବନ୍ଧୁ ଚୌଧୁରୀଙ୍କୁ ସାହାଯ୍ୟ କରୁଥିଲେ ।

## ଶ୍ରୀ ବ୍ରଜମୋହନ ସିଂହ ( ଗୁଟୁବାବୁ )

(ଜନ୍ମ ୧୯୧୬, ଗ୍ରାମ କିଶୋରନଗର, କଟକ ଜିଲ୍ଲା)

ଶ୍ରୀ ବ୍ରଜମୋହନ ସିଂହ କଟକ ରେଭେନ୍‌ସା କଲେଜର ଛାତ୍ର ଥିଲାବେଳେ ୧୯୩୦ରେ କଲେଜ ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଲେ । ସେହିଦିନଠାରୁ ସେ ଆଜୀବନ ଗାନ୍ଧିବାଦୀ ରଚନାତ୍ମକ କର୍ମୀ । ସେ ୧୯୩୦ରେ ଓ ୧୯୩୨ରେ ଜେଲ୍ ଗଲେ । ସେ ଜେଲରୁ ବାହାରିଲା ପରେ ୰ ଗୋପବନ୍ଧୁ ଚୌଧୁରୀ ତାଙ୍କୁ ବରିରେ କର୍ମୀ ତାଲିମ୍ କେନ୍ଦ୍ର ପରିଚାଳନା ଦାୟିତ୍ୱ ଦେଲେ । ସେ ଅତି ଦକ୍ଷ

ଓ ନିଷ୍ଠାପର ଭାବେ ସେହି କାର୍ଯ୍ୟ ପରିଚାଳନା କଲେ ଓ ସେଠି ବିବିଧ ରଚନାତ୍ମକ କାର୍ଯ୍ୟରେ ଅଂଶ ଗ୍ରହଣ କଲେ । ୧୯୪୨ ଆନ୍ଦୋଳନରେ ସେ ଜେଲ୍‌ରେ ଅନ୍ତରୀଣବନ୍ଦୀ ହୋଇ ରହିଲେ । ୵ ଗୋପବାବୁଙ୍କ ନେତୃତ୍ୱରେ ଭୂଦାନ କାର୍ଯ୍ୟ ଆରମ୍ଭ ହେବାରୁ ତହିଁରେ ସେ ଯୋଗଦେଲେ ।

ସେ ବର୍ତ୍ତମାନ ନିଜ ଗ୍ରାମରେ ଅଛନ୍ତି, ଗାନ୍ଧୀ ବିଚାର ଅନୁସରଣ କରି ଚଳନ୍ତି ।

୵ ଗୋକୁଳାନନ୍ଦ ମହାନ୍ତି, (ଗ୍ରାମ: କୁଆଁସ, ଭଦ୍ରକ, ଜି: ବାଲେଶ୍ୱର)

ଶ୍ରୀ ଗୋକୁଳାନନ୍ଦ ମହାନ୍ତି ବି.ଏ. ପଢୁଥିବାବେଳେ ପଢ଼ା ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେ ୵ ଗୋପବାବୁ ଆଦିଙ୍କ ସହିତ ଅଳକାଶ୍ରମରେ ରହି କଂଗ୍ରେସ କାର୍ଯ୍ୟ କରୁଥିଲେ । ୧୯୩୦ରେ ଜେଲ୍ ଗଲେ ଓ ୧୯୩୨ରେ ଜେଲ୍‌ରୁ ଖଲାସ ହେଲେ । 'ଗାନ୍ଧୀ ସେବା ସଂଘ' କାର୍ଯ୍ୟରେ ସେ ୵ ଗୋପବାବୁଙ୍କର ସହକର୍ମୀ ଥିଲେ । ତାଙ୍କ ସ୍ତ୍ରୀ ଶ୍ରୀମତୀ କନକ ଦେବୀ (ନୀଳଗିରି ଗଡ଼ଜାତର ପ୍ରଜାମଣ୍ଡଳ ନେତା ଓ ଓଡ଼ିଶାର ଜଣେ ପୂର୍ବତନ ମନ୍ତ୍ରୀ ୵ କୈଳାସ ଚନ୍ଦ୍ର ମହାନ୍ତିଙ୍କ କନ୍ୟା) ବରୀ 'ସେବାଘରେ' ତାଲିମ ପାଇଥିଲେ ଓ 'କୁମ୍ଭାଣିଆ'ରେ କେନ୍ଦ୍ର କରି ସ୍ୱାମୀ ସ୍ତ୍ରୀ ରଚନାତ୍ମକ କାର୍ଯ୍ୟ କରୁଥିଲେ । ସ୍ୱାଧୀନତା ପରେ ସେ ଏମ୍.ପି. ହୋଇଥିଲେ ।

ସେ ଆଜୀବନ ନିଶା ନିବାରଣ କାର୍ଯ୍ୟ କରୁଥିଲେ ।

୧୯୭୪ରେ ତାଙ୍କର ମୃତ୍ୟୁ ହେଲା ।

ଶ୍ରୀ ବୈକୁଣ୍ଠନାଥ ମହାପାତ୍ର, (ଗ୍ରାମ: କଣିଆ, ବାଲିକୁଦା, ଜି: କଟକ)

ଶ୍ରୀ ବୈକୁଣ୍ଠନାଥ ମହାପାତ୍ର ୧୯୩୦ରେ ସ୍କୁଲ ଛାଡ଼ି ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇଥିଲେ । ୧୯୩୦, ୧୯୩୨ ଓ ୧୯୪୨ର ଆନ୍ଦୋଳନରେ ସେ ଜେଲ୍ ଯାଇଥିଲେ । (ବଙ୍ଗ) ରାମଚନ୍ଦ୍ରପୁରରେ ପିଲାଙ୍କୁ ସେ ଗୁଜରାଟର "ଦାଣ୍ଡିଆ ନାଚ" ଶିଖାଇବେ ବୋଲି ସେ ନାଚ ଶିଖି ଆସିବାକୁ ୵ ଗୋପବନ୍ଧୁ ଚୌଧୁରୀ ତାଙ୍କୁ ଗୁଜୁରାଟ ପଠାଇଥିଲେ ଓ ଶିଖି ଆସି "ଦାଣ୍ଡିଆ ନାଚ"ର ପ୍ରଚାର କରିଥିଲେ । ସେ କବି ଓ ସୁଗାୟକ ।

ପରେ ସେ ସୋସିଆଲିଷ୍ଟ ଦଳରେ ଯୋଗଦେଲେ ଓ ସେହି ପାର୍ଟି ତରଫରୁ ଓଡ଼ିଶା ବିଧାନସଭାର ସଭ୍ୟ ହୋଇଥିଲେ ।

ଶ୍ରୀ ବୈଦ୍ୟନାଥ ଦାସ

(ଜନ୍ମ ୧୯୧୫ ନଭେମ୍ବର, ଗ୍ରାମ: ଚକଣା, ଯାଜପୁର, ଜି: କଟକ)

ଶ୍ରୀ ବୈଦ୍ୟନାଥ ଦାସ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ । ୧୯୩୦ରେ ସେ ପଢ଼ା ଛାଡ଼ି କଂଗ୍ରେସ ଆନ୍ଦୋଳନରେ ଯୋଗଦେଲେ, କଟକ ସ୍ୱରାଜ୍ୟାଶ୍ରମରେ ରହିଲେ,

‘ବାନର-ସେନା’ ଭୁକ୍ତ ହେଲେ ଓ ‘ସେବାଦଳ ସୈନିକ’ ତାଲିମ ନେଲେ । କଂଗ୍ରେସ କର୍ମୀମାନେ ସେଠି ତାଙ୍କୁ ବିଦ୍ୟା-ଶିକ୍ଷା ଦେଉଥିଲେ । ୧୯ ୦ରେ ସେ ଜେଲ୍ ଗଲେ, ଫେରି ସ୍ୱରାଜ୍ୟାଶ୍ରମରେ ରହିଲେ । ୧୯୩୧ରେ ସେଠି ସେ ୰ଗୋପବନ୍ଧୁ ଚୌଧୁରୀଙ୍କ ସମ୍ପର୍କରେ ଆସିଲେ, ତାଙ୍କଠୁଁ ସେ ‘ସ୍ୱରାଜ୍ୟ’ ସମ୍ବାଦପତ୍ର ନେଇ ବୁଲି ବିକ୍ରି କରୁଥାନ୍ତି । ସେ ପିକେଟିଂ ଆଦି କାର୍ଯ୍ୟ ମଧ୍ୟ କଲେ । ୰ଗୋପବାବୁ ସୁପାରିସ୍ କରିବାରୁ ଶିକ୍ଷା ପାଇଁ ତାଙ୍କୁ ନାଗପୁରର ‘ତିଲକ୍ ବିଦ୍ୟାଳୟ’ (ଜାତୀୟ ମାଧ୍ୟମିକ ବିଦ୍ୟାଳୟ)କୁ ତାହାପରେ ଓ୍ୱାର୍ଦ୍ଧାର ‘ବାଙ୍ଗ୍ଡ଼ିସୁରୁ ବ୍ରହ୍ମକୁଳ’କୁ ଶିକ୍ଷା ପାଇଁ ପଠାଗଲା । ସେଠୁ ପଢ଼ା ସରିବା ପରେ ତାଙ୍କୁ ସାବରମତୀ ଆଶ୍ରମକୁ ଶିକ୍ଷା ଓ ତାଲିମ୍ ପାଇଁ ପଠାଗଲା । ସେଠି ସେ ୧୨ ବର୍ଷ ରହିଲେ ଓ ମହାତ୍ମା ଗାନ୍ଧୀଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଥିଲେ ।

ତାହାପରେ ସେ ଘରକୁ ଆସି ସେଠୁ ଯାଇ ବରିରେ ୰ଗୋପବାବୁ, ଶ୍ରୀମତୀ ରମା ଦେବୀ ଆଦିଙ୍କ ପାଖେ ବରି ସେବାଘରେ ରହି ବିବିଧ ରଚନାତ୍ମକ କର୍ମ କରିବାକୁ କର୍ମୀ-ତାଲିମ୍ ପାଇଲେ । ୰ ଗୋପବାବୁଙ୍କଠାରୁ ସେ ଇଂରେଜୀ ଶିଖିଲେ । ବରି ଅଞ୍ଚଳରେ ସେ ପାଞ୍ଚବର୍ଷ ରହି ୰ ଗୋପବାବୁଙ୍କ ନିର୍ଦ୍ଦେଶରେ ସେଠି ବିବିଧ ରଚନାତ୍ମକ କାର୍ଯ୍ୟ କରିଥିଲେ ।

ସେ ଜାତିରେ ବ୍ରାହ୍ମଣ, କିନ୍ତୁ ଜାତି-ଅଭିମାନ ଛାଡ଼ି ସେ ବରିରେ ‘କଟେଜ୍ ଟ୍ୟାନରି’ରେ ଶ୍ରୀ ମନମୋହନ ଚୌଧୁରୀ ଓ ଶ୍ରୀ ବଂଶୀଧର ନାୟକଙ୍କ ସଙ୍ଗେ ମିଶି ଚମଡ଼ା କାର୍ଯ୍ୟ କରିଥିଲେ । ୰ ଗୋପବାବୁ ତାଙ୍କୁ ‘କଣ୍ଡେନ୍ସଡ଼ ମିଲ୍କ’ ତିଆରି କରିବା ଶିଖାଇଥିଲେ । ୧୯୩୮ରେ ଡେଲାଂ ସମ୍ମିଳନୀର ପ୍ରଦର୍ଶନୀ ପାଇଁ ସେ କାମ କରିଥିଲେ ଓ ସେହି ସମ୍ମିଳନୀ ବେଳେ ସେ ସ୍ୱେଚ୍ଛାସେବକ ଭାବେ ମହାତ୍ମାଜୀଙ୍କ ପାଖେ ପାଖେ ଥିଲେ । ତାହାପରେ ସେହିବର୍ଷ ସେ ନିଜ ଗାଁ ଚକଣାରେ ‘ଗାନ୍ଧୀ ସେବା ସଂଘ’ ଅଧୀନରେ ଗୋଟିଏ ଖଦୀ କେନ୍ଦ୍ର ବସାଇ ଚଳାଇଲେ ଓ ଅନ୍ୟାନ୍ୟ ଗାଁରେ ରଚନାତ୍ମକ କାର୍ଯ୍ୟ କଲେ । ତାଙ୍କ ଗାଁର ଖଦୀ କେନ୍ଦ୍ରଟି ୧୯୪୨ ଯାକେ ଚାଲିଲା, ତାହାପରେ ସେ ‘ଭାରତ ଛାଡ଼’ ଆନ୍ଦୋଳନରେ ଯୋଗଦେଲେ ଓ ବିଶାଳ ଜନତାଙ୍କ ପଟୁଆର ସହିତ ଯାଜପୁର କଚେରି ଘେରାଉ କରିବାକୁ ଯାଇଥିଲେ । ସେ ଗିରଫ ହୋଇ ଜେଲ୍ ଗଲେ । ବ୍ରହ୍ମପୁର ଜେଲରେ ଦୁଇବର୍ଷ ପର୍ଯ୍ୟନ୍ତ ଥିଲାବେଳେ ୰ ଗୋପବାବୁ, ୰ ଆଚାର୍ଯ୍ୟ ମହାଶୟ ଆଦିଙ୍କ ଠାରୁ ସେ ଓ ଅନ୍ୟାନ୍ୟ ଅନେକ ରାଜବନ୍ଦୀ ନାନା ବିଷୟରେ ଶିକ୍ଷା ପାଉଥିଲେ । ସେଠି ୰ ଗୋପବାବୁଙ୍କଠାରୁ ସେ ଲୁଗା ବୁଣିବା ଶିଖିଲେ । ୰ ଗୋପବାବୁଙ୍କ ପରାମର୍ଶରେ ବାଲେଶ୍ୱରର ରାଜବନ୍ଦୀ ଶ୍ରୀ ଜ୍ୱାଲା ପ୍ରସାଦ ଚଣ୍ଡି ଚଣ୍ଡି ତୁଳା ମଗାଇ ଜେଲରେ ସୂତା କଟାଳୀମାନଙ୍କୁ ଯୋଗାଉଥିଲେ ଓ ସେମାନଙ୍କଠାରୁ ସୂତା ନେଇ ତାକୁ ‘ଚରଖା ସଂଘ’କୁ ବିକ୍ରି

କରୁଥିଲେ । ଶ୍ରୀ ବୈଦ୍ୟନାଥ ଦାସ ଜେଲ୍‌ରୁ ଖଲାସ ହେଲାବେଳେ ନିଜେ ଜେଲରେ ସୂତା କାଟି ବୁଣିଥିବା ୭୨ ହାତ ଲମ୍ବ ଖଦଡ଼ ଥାନ ତାଙ୍କ ଘରକୁ ନେଇ ଯାଇଥିଲେ ।

୰ ଗୋପବାବୁଙ୍କ ଅଧିନାୟକତ୍ୱରେ ଭୂଦାନ କାର୍ଯ୍ୟ ଆରମ୍ଭ ହେଲାରୁ ସେ ଭୂଦାନ କାର୍ଯ୍ୟରେ ଲାଗିଗଲେ ଓ ଯାଜପୁର ସବଡିଭିଜନରେ ତାଙ୍କ ସହିତ ସେହି କାର୍ଯ୍ୟରେ ବୁଲିଥିଲେ । ୧୯୫୪ରେ ୰ ଗୋପବାବୁଙ୍କ ନିର୍ଦ୍ଦେଶରେ ସେ କୋରାପୁଟ ଜିଲା ରାୟଗଡ଼ା ସବଡ଼ିଭିଜନରେ ଭୂଦାନ କାର୍ଯ୍ୟ କରିଥିଲେ । ସେତେବେଳେ ସେ ବାଘୁଆ ବଣମାଳ ଭିତରେ କର୍ମୀମାନଙ୍କ ଦ୍ୱାରା ହେଉଥିବା ଆଦିବାସୀ ସେବା-କାର୍ଯ୍ୟରେ ମଧ୍ୟ ସହଯୋଗ କରୁଥିଲେ । ତାହାପରେ ସେତେବେଳେ ୰ ଆଣ୍ଣା ସାହେବ ସହସ୍ରବୁଦ୍ଧେଙ୍କ ପରିଚାଳନାରେ 'ଭୂଦାନ' 'ଗ୍ରାମଦାନ'ର 'ନିର୍ମାଣ କାର୍ଯ୍ୟ' ଚାଲିଲା ସେହି କାର୍ଯ୍ୟରେ ରାୟଗଡ଼ାର ଅମ୍ବାଦୋଳା ବିଷମକଟକ ଓ ଚନ୍ଦ୍ରପୁର ଥାନା ଅଞ୍ଚଳ ପାଇଁ 'ଅର୍ଗାନାଇଜର୍' ନିଯୁକ୍ତ ହୋଇ କାର୍ଯ୍ୟ କଲେ । ସେ ୧୯୫୦ରୁ ୧୯୬୨ ପର୍ଯ୍ୟନ୍ତ କୋରାପୁଟ ଜିଲାରେ କାର୍ଯ୍ୟ କଲେ । ୰ ଗୋପବାବୁ ଜୀବିତ ଥିବାବେଳେ କୋରାପୁଟ ଜିଲାରେ ଭୂଦାନ ଗସ୍ତ କଲାବେଳେ ଶ୍ରୀ ବୈଦ୍ୟନାଥ ଦାସ କେତେଥର ତାଙ୍କ ସଙ୍ଗେ ବୁଲିଥିଲେ ।

**ଶ୍ରୀ ବଂଶୀଧର ନାୟକ (ଗ୍ରାମ: ଆଳି, ଚନ୍ଦନପୁର ଶାସନ, ଜି: କଟକ)**

ଶ୍ରୀ ବଂଶୀଧର ନାୟକ ୧୯୩୦ରେ କଲେଜ୍ ଛାଡ଼ି କଂଗ୍ରେସ ଆନ୍ଦୋଳନରେ ଯୋଗଦେଲେ ଓ ୰ ଗୋପବାବୁଙ୍କ ଦ୍ୱାରା ଅନୁପ୍ରାଣିତ ହେଲେ । ସେ ୰ ସତୀଶ ଚନ୍ଦ୍ର ଦାସଗୁପ୍ତଙ୍କ ପାଖେ ଶ୍ରୀନିକେତନ (ବଙ୍ଗଦେଶ)ରେ ଅଢ଼େଇବର୍ଷ ରହି ଚମଡ଼ା କାମରେ ଟ୍ରେନିଂ ନେଲେ ଓ ତାପରେ ବରୀରେ ସେ ଓ ଶ୍ରୀ ମନମୋହନ ଚୌଧୁରୀ ମିଶି 'କଟେଜ୍ ଟ୍ୟାନରି' ବସାଇ ଚମଡ଼ା କଷ କରି ଚମଡ଼ାରେ ଜୋତା ଓ ଅନ୍ୟାନ୍ୟ ଜିନିଷ ତିଆରି କଲେ । ସେ ବରୀ ଅଞ୍ଚଳରେ ବେସରକାରୀ ମୌଳିକ ଶିକ୍ଷା ପ୍ରୟୋଗ କାର୍ଯ୍ୟରେ ଯୋଗଦେଲେ ଓ ତାହାପରେ ବାଲେଶ୍ୱର ଜିଲାରେ ସୋରୋ ଅଞ୍ଚଳରେ ଫୁଲଗାଡ଼ିଆରେ ମୌଳିକ ଶିକ୍ଷା କେନ୍ଦ୍ର ଖୋଲିଲେ ।

ସେ ୧୯୪୨ ଆନ୍ଦୋଳନରେ ଲୁଚିଛପି ରହି ଆନ୍ଦୋଳନ କାର୍ଯ୍ୟ କରିଥିଲେ । ୧୯୦୩ରେ ସେ ୰ ଠକ୍କର ବାପା ଓ ୰ ଈଶ୍ୱରଲାଲ ବ୍ୟାସଙ୍କ ସଙ୍ଗେ ବହୁ ମାସ ରହି ରିଲିଫ୍ କାର୍ଯ୍ୟ କରିଥିଲେ । ସେ ଦାତବ୍ୟ ହୋମିଓପ୍ୟାଥି ଚିକିତ୍ସା ମଧ୍ୟ କରିଥିଲେ ।

ତାଙ୍କ ସ୍ତ୍ରୀ ଶ୍ରୀମତୀ ହରିମା ଦେବୀ ବରୀ ସେବାଘରେ ରହି ତାଲିମ୍ ପାଇଥିଲେ, ସେ ସ୍ୱାମୀଙ୍କ ସଙ୍ଗେ ରଚନାତ୍ମକ କାର୍ଯ୍ୟ କଲେ ।

## ୬ ବାବାଜୀ ରାମଦାସ

୬ ବାବାଜୀ ରାମଦାସ ଜଣେ ପଶ୍ଚିମ ଭାରତୀୟ ଲୋକ । ସେ ବାବାଜୀ ହୋଇଥିଲେ ଓ ଅବଧୂତ ବାବାଜୀମାନଙ୍କ ସଙ୍ଗେ ତୀର୍ଥଯାତ୍ରାରେ ଓଡ଼ିଶାକୁ ଆସି ଆଠଗଡ଼ରେ ଆଶ୍ରମ କରି ରହି ଯାଇଥିଲେ ।

ସେ ୧୯୨୧ରେ ଅସହଯୋଗ ଅନ୍ଦୋଳନରେ ଯୋଗ ଦେଇଥିଲେ ଓ ସମଗ୍ର ଓଡ଼ିଶା ବୁଲି ବୁଲି କଂଗ୍ରେସ ବାର୍ତ୍ତା ପ୍ରଚାର କରିଥିଲେ । ୬ ଗୋପବନ୍ଧୁ ଚୌଧୁରୀଙ୍କ ସଙ୍ଗେ ତାଙ୍କର ସେହି ସୂତ୍ରରେ ସମ୍ପର୍କ ହୋଇଥିଲା ।

ଶେଷ ବୟସରେ ସେ ଋଷିକେଶରେ ଗୋଟିଏ ହନୁମାନ ପୀଠ ସ୍ଥାପନ କରି ସେଠାରେ ଆଧ୍ୟାତ୍ମ ସାଧନାରେ ଜୀବନ କଟାଇଥିଲେ ।

## ୬ ମଠାଧୀଶ ଚକ୍ରଧର ଦାସ ଅଧିକାରୀ

କଟକ ଜିଲ୍ଲାରେ ହରିଦାସପୁର ପାଖେ କଦଳା ମଠରେ ସେ 'ଅଧିକାରୀ' ଥିଲେ । ୬ ଗୋପବାବୁ ବରୀରେ ଥିଲାବେଳେ ତାଙ୍କ ସଙ୍ଗେ ତାଙ୍କର ସମ୍ପର୍କ ଥିଲା । ସରକାରଙ୍କୁ ନ ଡରି ସେ କଂଗ୍ରେସ କର୍ମୀମାନଙ୍କୁ ତାଙ୍କ ମଠରେ ଆଶ୍ରୟ ଦେଉଥିଲେ ଓ ମଠ ପାଖରେ ଖଦୀ କାମ କରାଉଥିଲେ । 'ସେବା ସମିତି'କୁ ସେ ୫ ଏକର ଜମି ଦାନ କରିଥିଲେ ।

## ଶ୍ରୀ ହରି ଭଜନ

ସେ ଜଣେ ଉତ୍ତର ପ୍ରଦେଶର ଲୋକ, ହରିଦାସପୁର ଷ୍ଟେସନ ପାଖେ ସ୍କୁଲଘରେ ହୋଟେଲଟିଏ କରିଥିଲେ । ସେ ସ୍ୱଦେଶପ୍ରେମୀ ଲୋକ ଥିଲେ । ସରକାରଙ୍କୁ ନ ଡରି ସେ କଂଗ୍ରେସକର୍ମୀଙ୍କୁ ନିଜ ହୋଟେଲରେ ଆଶ୍ରୟ ଦେଉଥିଲେ । ବରୀରୁ ଯେତେବେଳେ ୬ ଗୋପବାବୁ ବା ଅନ୍ୟ କର୍ମୀ ବୁଲି ଆସନ୍ତି ସେତେବେଳେ ତାଙ୍କର ହୋଟେଲରେ ରହି ଯାଆନ୍ତି । ବରୀରୁ ବୁଲି ବୁଲି ଆସିଲେ ହରିଦାସପୁରରେ ରେଲ୍ ଧରି ହୁଏ ।

## ଶ୍ରୀ ବୀରବର ରଥ (ଗ୍ରାମ: ବରୀ, ଧାରପୁର)

ସେ ଜଣେ ଜମିଦାରଙ୍କ ପୁତ୍ର । ବରୀରେ ସେ ୬ ଗୋପବନ୍ଧୁ ଚୌଧୁରୀଙ୍କ ସଂସ୍ପର୍ଶରେ ଆସି ନିଷ୍ଠାପର ଗାନ୍ଧୀବାଦୀ କର୍ମୀ ହୋଇଗଲେ । ସେ ଖଦୀକାମ, ଦାତବ୍ୟ ହୋମିଓପ୍ୟାଥିକ୍ ଚିକିତ୍ସା ଓ ଔଷଧ ବିତରଣ, ମୌଳିକ ଶିକ୍ଷା ପ୍ରସାର ଆଦି କାର୍ଯ୍ୟ କଲେ । ୧୯୩୦ ରେ ସେ ଜେଲ୍ ଗଲେ । ସେ ଭୂଦାନ ଆନ୍ଦୋଳନରେ ଯୋଗଦେଇ କେତେବର୍ଷ ଭୂଦାନ ଗ୍ରାମଦାନ ଆଦି କାର୍ଯ୍ୟ କଲେ ।

**ଶ୍ରୀ ଅର୍ଜୁନ ଜେନା (ଗ୍ରାମ: ବରୀ, ବାଗ୍‌ଦା)**

ସେ ଜାତରେ ହରିଜନ । ବରୀରେ ୬ ଗୋପବାବୁଙ୍କ କୃଷି ପ୍ରୟୋଗରେ ସହକାରୀ ଥିଲେ । ୧୯୪୨ରେ ଜେଲ୍ ଯାଇଥିଲେ ।

**ଶ୍ରୀ ଅକ୍ରୂର ଜେନା (ଗ୍ରାମ: ବରୀ, ଆନନ୍ଦପୁର)**

ସେ ଜାତରେ ହରିଜନ । ବରୀରେ ୬ ଗୋପବାବୁଙ୍କ ମଧୁଗୃହ କାର୍ଯ୍ୟରେ ସହକର୍ମୀ ଥିଲେ । ୧୯୪୨ରେ ଜେଲ୍ ଗଲେ ।

**ଶ୍ରୀ ମୁରଲୀ ଧର ଜେନା (ଗ୍ରାମ: ବରୀ, ବାଗ୍‌ଦା)**

ସେ ଜାତରେ ହରିଜନ । ୬ ଗୋପବାବୁ ବରୀରେ ଥିଲାବେଳେ ତାଙ୍କର କୃଷି-ପ୍ରୟୋଗ କାର୍ଯ୍ୟରେ ଓ ବଞ୍ଚାରପୁର ଥାନାର ଧୋବ୍ରା ଅଞ୍ଚଳରେ ହରିଆନା ଗୋରୁ ଓ ସ୍ଥାନୀୟ ଗୋରୁ ସମ୍ମିଶ୍ରଣରେ ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ଉନ୍ନତ ଧରଣର ଗୋରୁ ଉତ୍ପାଦନ କାର୍ଯ୍ୟରେ ସେ ୬ ଗୋପବାବୁଙ୍କର ସହାୟକ ଥିଲେ ।

**ଶ୍ରୀ ସୁରେନ୍ଦ୍ର ନାଥ ମହାନ୍ତି**

**(ଗ୍ରାମ: କଅଁରପୁର, ପୋ:ଅ: ଜହ୍ନଗର, ଜି: କଟକ)**

ଶ୍ରୀ ସୁରେନ୍ଦ୍ର ନାଥ ମହାନ୍ତି ଏମ୍.ଇ. ପାଶ୍ କରି ପାଠ ପଢ଼ା ଛାଡ଼ି ୧୯୩୧ରେ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେଲେ । ସେ ଅବକାରୀ ଦୋକାନ ଆଗରେ ପିକେଟିଂ କରି ବେତମାଡ଼ ଖାଇଲେ ଓ ଜେଲ ଗଲେ । ୧୯୩୨ରେ ସେ ବେଆଇନ୍-ଲୁଣ ବିକି କରି ଗିରଫ ହେଲେ ଓ ପୁଣି ଜେଲ୍ ଗଲେ ।

ସେଥରକ ଜେଲ୍‌ରୁ ଖଲାସ ହୋଇ ପୁଣି ସେ କଂଗ୍ରେସର ସଂଗଠନ କାର୍ଯ୍ୟ କଲେ ଓ "ଉତ୍କଳ କସ୍ତୁରବା ଗାନ୍ଧୀନିଧି"ର ଅଫିସ୍ କାମ କଲେ ।

ଭୂଦାନ ଆନ୍ଦୋଳନ ଆରମ୍ଭ ହେବାରୁ ସେ ତହିଁରେ ଯୋଗଦେଲେ ଓ ସେହି କାର୍ଯ୍ୟ କଲେ । ସେକାର୍ଯ୍ୟ ସେ ୬ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ମଧ୍ୟ କାର୍ଯ୍ୟ କରିଥିଲେ । ସେ ଭୂଦାନ ଓ ସର୍ବୋଦୟ କାର୍ଯ୍ୟ କରି ଆସିଛନ୍ତି ।

୧୯୭୫ରେ 'ଏମର୍ଜେନ୍‌ସି'ର ବିରୋଧ କରି ସେ ଜେଲ୍ ଯାଇଥିଲେ ।

**ଶ୍ରୀ ବିଶ୍ୱନାଥ ପଟ୍ଟନାୟକ**

ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ବିଷୟରେ ଏ ପୁସ୍ତକରେ ଅନ୍ୟତ୍ର ଉଲ୍ଲେଖ କରାଯାଇଛି । ତାଙ୍କର ଜନ୍ମ ୧୯୧୬ ନଭେମ୍ବର ୧୧ ତାରିଖରେ ଗଞ୍ଜାମ ବଡ଼-ଖେମୁଣ୍ଡିର କୁମରଡ଼ା ଗ୍ରାମରେ, ପିତା ୬ ଉପେନ୍ଦ୍ର ପଟ୍ଟନାୟକ । ସେ ଇଚ୍ଛାପୁର (ଆନ୍ଧ୍ର ପ୍ରଦେଶ) ହାଇସ୍କୁଲରୁ ଅଷ୍ଟମ ଶ୍ରେଣୀ ପାଶ୍ କଲେ । ଗଞ୍ଜାମର କଂଗ୍ରେସକର୍ମୀ

୰ କୃପାସିନ୍ଧୁ ପଣ୍ଡାଙ୍କ ସଙ୍ଗେ ଗ୍ରାମାବସ୍ଥାରେ ତାଙ୍କର ପରିଚୟ ହେଲା ଓ ସେ ଦେଶସେବା ପ୍ରତି ଆକୃଷ୍ଟ ହେଲେ । କ୍ରମେ ୰ ଆଚାର୍ଯ୍ୟ ହରିହରଙ୍କ ସହିତ ତାଙ୍କର ପରିଚୟ ହେଲା ।

ଡେଲାଂ ଗାନ୍ଧୀସେବା ସମ୍ମିଳନୀ ପାଇଁ ସ୍ଥାନ ସଂଗ୍ରହ ଲାଗି ୧୯୩୭ରେ ୰ ଗୋପବନ୍ଧୁ ଚୌଧୁରୀ, ୰ ଆଚାର୍ଯ୍ୟ ହରିହର ଓ ଶ୍ରୀମତୀ ରମା ଦେବୀ ଗଞ୍ଜାମ ଗସ୍ତରେ ବୁଲିଲେ । ସେତେବେଳେ ୰ କୃପାସିନ୍ଧୁ ପଣ୍ଡାଙ୍କ ନିର୍ଦ୍ଦେଶରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ସେମାନଙ୍କ ସଙ୍ଗେ ନୂଆପଡ଼ାରେ ଓ ବ୍ରହ୍ମପୁରରେ ରହିଥିଲେ । ୰ ଗୋପବନ୍ଧୁ ଚୌଧୁରୀଙ୍କ ନିର୍ଦ୍ଦେଶରେ ଡେଲାଂ ସମ୍ମିଳନୀରେ ସେ ଜଣେ ସ୍ୱେଚ୍ଛାସେବକ ହୋଇ କାର୍ଯ୍ୟ କରିଥିଲେ । ତାହାପରେ ୰ ଗୋପବନ୍ଧୁ ଚୌଧୁରୀଙ୍କ ପରାମର୍ଶରେ ସେ ବରୀ ଗଲେ ଓ ସେଠି ୬ ମାସ ପର୍ଯ୍ୟନ୍ତ ଖଦୀ ଟ୍ରେନିଂ ନେଲେ । ବରୀ ଖଦୀ ତାଲିମ୍ କେନ୍ଦ୍ରର ସଞ୍ଚାଳକ ଶ୍ରୀ ବ୍ରଜମୋହନ ମହାନ୍ତି (ଗୃହୀବାବୁ) ମଗନବାଡ଼ି ତାଲିମ୍ ନେବାକୁ ଚାଲିଗଲେ, ତେଣୁ ୰ ଗୋପବାବୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ କୁଜଙ୍ଗ ଅଞ୍ଚଳରେ କେତୋଟି ଖଦୀ ତାଲିମ୍ ଶିବିର ପରିଚାଳନା କରିବାକୁ ପଠାଇଲେ ।

ଗଡ଼ଜାତ ପ୍ରଜା ଆନ୍ଦୋଳନ ବେଳେ ତାଳଚେର ରାଜ୍ୟରୁ ରାଜାଙ୍କ ଅତ୍ୟାଚାର ଭୟରେ ହଜାର ହଜାର ଲୋକ ଘରଦ୍ୱାର ଛାଡ଼ି ଅନୁଗୁଳ ସୀମା ଭିତରକୁ ଚାଲିଆସିଲେ ଓ ଶରଣାର୍ଥୀ ଶିବିରମାନଙ୍କରେ ରହିଲେ । ସେଠି ଗାନ୍ଧୀ ସେବାସଂଘ ତରଫରୁ ସେମାନଙ୍କୁ ସୂତାକଟା, ଖଲିପତ୍ର ସିଆଁ, ଦଉଡ଼ି ବଳିବା ଆଦି ଧନ୍ଦା ଶିଖାଇ ତାଙ୍କ ଦ୍ୱାରା ସେହି କାର୍ଯ୍ୟ କରାଇ ଉତ୍ପନ୍ନ ଦ୍ରବ୍ୟଗୁଡ଼ିକୁ ବିକ୍ରି କରି ସେହି ବିକ୍ରିଲବ୍ଧ ଧନ ସେମାନଙ୍କୁ ଦେଇ ସେମାନଙ୍କୁ ସାହାଯ୍ୟ କରାଯାଉଥାଏ । ସେହି କାର୍ଯ୍ୟର ପରିଚାଳନା କରିବା ପାଇଁ ୰ ଗୋପବନ୍ଧୁ ଚୌଧୁରୀ ୰ ବିଶ୍ୱନାଥ ପଟ୍ଟନାୟକଙ୍କୁ ସେଠାକୁ ପଠାଇଲେ । ସେ କୁଶଳା ଗ୍ରାମ ପାଖ କ୍ୟାମ୍ପରେ ରହି କଂସଳ ଓ ବୁଢ଼ାପଙ୍କ କ୍ୟାମ୍ପ ସହିତ ସମ୍ପର୍କ ରଖି ଶରଣାର୍ଥୀମାନେ ନିଜ ନିଜ ଘରକୁ ଫେରିଯିବା ପର୍ଯ୍ୟନ୍ତ ସେହି କାର୍ଯ୍ୟ ପରିଚାଳନା କଲେ । ତାହାପରେ ୰ ଗୋପବନ୍ଧୁ ଚୌଧୁରୀ ତାଙ୍କୁ ବରୀରେ ଗାନ୍ଧୀ ସେବାସଂଘ ଅଫିସରେ ସହକାରୀ ହୋଇ ରହିବାକୁ କହିଲେ ଓ ସେଠି ସେ ୧୯୪୦ ଯାଏ ରହି କାର୍ଯ୍ୟ କଲେ ।

କୌଣସି ଗ୍ରାମାଞ୍ଚଳରେ ଗ୍ରାମବାସୀଙ୍କ ମଧ୍ୟରେ ରହି ସେମାନଙ୍କ ପାଇଁ କାମ କରିବାକୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଇଚ୍ଛା କଲେ । ତେଣୁ ୰ ଗୋପବନ୍ଧୁ ଚୌଧୁରୀ ତାଙ୍କୁ ପରାମର୍ଶ ଦେଲେ ଯେ ସେ ଆଦିବାସୀବହୁଳ କୋରାପୁଟ ଜିଲାକୁ ଯାଇ ଗୁଣୁପୁର ଗ୍ରାମାଞ୍ଚଳରେ ଗୋଟିଏ ଗାଁ ବାଛି ସେଠି ରହି ଖଦୀକାମ ଓ ଆଦିବାସୀ ସେବାକାମ କରନ୍ତୁ । ୧୯୪୧ ଆରମ୍ଭରେ ସେ ତାଙ୍କୁ ଗୁଣୁପୁର ପଠାଇଲେ । ସେ ଗୁଣୁପୁର

ଗଲେ, ସେତେବେଳେ ଅତି ଅନୁନ୍ନତ ଅବସ୍ଥାରେ ଥିବା ସଓରା ଆଦିବାସୀ ଗାଁ 'କୁଜେନ୍ଦ୍ରି'କୁ ବାଛିଲେ ଓ ସେଠି ଆଶ୍ରମ କରି ରହି କାର୍ଯ୍ୟ ଆରମ୍ଭ କଲେ । ସେ ୰ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ସମ୍ପର୍କ ରଖିଥିଲେ ଓ ତାଙ୍କଠାରୁ ପରାମର୍ଶ ନେଉଥିଲେ । ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ କୁଜେନ୍ଦ୍ରୀ ଆଶ୍ରମ ବିଷୟରେ, ତାଙ୍କ କାର୍ଯ୍ୟ ବିଷୟରେ ଓ ତାର ସୁଦୂରପ୍ରସାରୀ ପ୍ରଭାବ ବିଷୟରେ ଏ ପୁସ୍ତକରେ ପୂର୍ବେ ଲେଖା-ଯାଇଛି । ତାହା ଏଡ଼େ ଦୁଃସାଧ୍ୟ, ଅଦ୍ଭୁତ, ଅଭିନବ ଓ ଚମତ୍କାର ଯେ ସଂକ୍ଷେପରେ ତାହା ବର୍ଣ୍ଣନା କରି ହେବ ନାହିଁ । ତାହାଫଳରେ ପୂର୍ବେ କୁସଂସ୍କାରାଛନ୍ନ, ନିଶାଗ୍ରସ୍ତ, ଆଳସ୍ୟପରାୟଣ, ନିଜ ହିତ ପ୍ରତି ଉଦାସୀନ, ଅପରିଚ୍ଛନ୍ନ, ଅଶିକ୍ଷିତ, ନିରକ୍ଷର, ଧନୀ ସାହୁକାର ଧୋବଧାଉଳିଆ ଓ ସରକାରୀ କର୍ମଚାରୀଙ୍କ ପ୍ରତି ଭୟଭୀତ, ମୂକ, ଦରିଦ୍ର, ଶୋଷିତ ଗୁଣୁପୁର ଅଞ୍ଚଳର ଶୁଦ୍ଧ-ସଓରାମାନଙ୍କର ଅବସ୍ଥାର ଦ୍ରୁତ ଶୁଭ ପରିବର୍ତ୍ତନ ହେବାକୁ ଲାଗିଲା ଓ ତାହା ଅନ୍ୟାନ୍ୟ ଆଦିବାସୀ ଅଞ୍ଚଳକୁ ବ୍ୟାପିଲା । ଆଦିବାସୀ-ମାନଙ୍କର ସେ ହେଲେ ଅତ୍ୟନ୍ତ ପ୍ରିୟ ଓ ବିଶ୍ୱସ୍ତ । ସେମାନେ ଶ୍ରଦ୍ଧାରେ ତାଙ୍କୁ ଡାକନ୍ତି 'ଆଞ୍ଜା', ତାଙ୍କର ଅପର ନାମ ହେଲା 'ଆଞ୍ଜା' ବା 'ବିଶ୍ୱନାଥ ଆଞ୍ଜା' । କାଳକ୍ରମେ ସେ ବୁଲି ବୁଲି କୋରାପୁଟ ଜିଲ୍ଲାର ଓ ପ୍ରଦେଶର ଅନ୍ୟାନ୍ୟ ଆଦିବାସୀବହୁଳ ଜିଲାରେ ଆଦିବାସୀ ହରିଜନ ସେବା କାର୍ଯ୍ୟ କଲେ । କୁଜେନ୍ଦ୍ରି କେନ୍ଦ୍ରରେ ତିରିଶିବର୍ଷରୁ ଅଧିକ କାଳ ରହି କାର୍ଯ୍ୟ କରି ତାହାପରେ ସେ ଫୁଲବାଣୀ ଜିଲାର 'ବାଲିଗୁଡ଼ା'ରେ 'ବନବାସୀ ସେବା ସମିତି' ବୋଲି ଗୋଟିଏ ରେଜିଷ୍ଟାର୍ଡ଼ ଅନୁଷ୍ଠାନ ପ୍ରତିଷ୍ଠା କଲେ ଓ ସେଠି ରହି ସେ ଆଦିବାସୀ ହରିଜନ ସେବାକାର୍ଯ୍ୟ କରୁଛନ୍ତି । ସେଠି ସେ ସ୍କୁଲ, ଛାତ୍ରାବାସ, କୁଷ୍ଠାଶ୍ରମ ଆଦି ସେବା ଅନୁଷ୍ଠାନ ମଧ୍ୟ ଚଳାନ୍ତି ଓ ବାଲିଗୁଡ଼ାକୁ କେନ୍ଦ୍ର କରି ସେହି ନିବିଡ଼ ଅରଣ୍ୟ ଓ ପର୍ବତମୟ ମାଳ ଅଞ୍ଚଳରେ ବୁଲି ବୁଲି ବୁଲି ବୁଲି ବିଭିନ୍ନ ଗାଁରେ ଆଦିବାସୀ ହରିଜନ ସେବାକାର୍ଯ୍ୟ କରିଥାନ୍ତି । ବୟସ ଅଶୀ ପାଖ ହେଲଣି, କେତେଥର ରୋଗରେ ପଡ଼ିଲେଣି, ତଥାପି ସେ ଏବେବି ଦିନକୁ କୋଡ଼ିଏ ମାଇଲ ବାଟ ବୁଲି ଯାଆନ୍ତି । ଓଡ଼ିଶାଯାକ ମାଳ ଅଞ୍ଚଳରେ ବୁଲି ଆଦିବାସୀ ସେବାରେ ନିରବଚ୍ଛିନ୍ନ ଭାବରେ ଲାଗି ରହିବାର ତାଙ୍କର ଚୌବାଳିଶି ବର୍ଷ କାଳ ଶେଷ ହେବାକୁ ବସିଲା । ୧୯୪୬ରେ 'ଉତ୍କଳ ନବଜୀବନ ମଣ୍ଡଳ' ହେଲାଦିନୁ ସେ ତାର ସଦସ୍ୟ, ବହୁବର୍ଷ ପର୍ଯ୍ୟନ୍ତ ସେ ତାର ସଞ୍ଚାଳକ ଥିଲେ । ୧୯୫୧ରେ ଗୁଣୁପୁର ଅଞ୍ଚଳରେ ସଓରାମାନେ 'ଭୂ-ସତ୍ୟାଗ୍ରହ ଆନ୍ଦୋଳନ' କଲାବେଳେ ସେ ଆନ୍ଦୋଳନର ନେତା ଥିଲେ । ୧୯୫୨ରେ ଭୂଦାନ ଆନ୍ଦୋଳନ ବେଳେ ସେ ୰ ଗୋପବନ୍ଧୁ ଚୌଧୁରୀଙ୍କ ସଙ୍ଗେ ତହିଁରେ କାର୍ଯ୍ୟ କରିଥିଲେ ଓ କୋରାପୁଟ ଜିଲାରେ ଭୂଦାନ ଗ୍ରାମଦାନ କାର୍ଯ୍ୟର ଦାୟିତ୍ୱ ନେଇଥିଲେ । ପରେ ୰ ଆଣ୍ଣା ସାହେବ ସହସ୍ରବୁଦ୍ଧେ ସେଠି ଗ୍ରାମଦାନ ଗ୍ରାମମାନଙ୍କରେ 'ନିର୍ମାଣ' କାର୍ଯ୍ୟ କଲାବେଳେ ସେ ତହିଁରେ ସହଯୋଗ କରିଥିଲେ ଓ

କାର୍ଯ୍ୟ କରିଥିଲେ । ସେ ୰ ଗୋପବନ୍ଧୁ ଚୌଧୁରୀଙ୍କର ଜଣେ ଅତି ପ୍ରିୟ ସର୍ବୋଦୟ କର୍ମୀ ଥିଲେ । ସେ ଚିରକୁମାର, ଅତି ସରଳ, ନିଷ୍କଳଙ୍କ, ନିଃସ୍ୱାର୍ଥପର, ସେବାପରାୟଣ, ନିରଳସ ଜୀବନ ଯାପନ କରନ୍ତି, ବାହାର ଓ ଆନ୍ତରରେ ବିଶୁଦ୍ଧ ଗାନ୍ଧୀବାଦୀ ।

## ୰ ଈଶ୍ୱରଲାଲ ବ୍ୟାସ

୰ ଈଶ୍ୱରଲାଲ ବ୍ୟାସ ଜଣେ ଗୁଜରାଟୀ ବ୍ରାହ୍ମଣ । ଗୁଜରାଟର ଭେଜର୍ଓ୍ୱା ଗାଁରେ ୧୮୯୮ କାର୍ତ୍ତିକ ଶୁକ୍ଳ ତୃତୀୟା ଦିନ ସେ ଜନ୍ମ ହୋଇଥିଲେ । ଜୀବନର ଆଦ୍ୟ ୩୦ ବର୍ଷ ଗୁଜରାଟରେ ସେ କଟାଇଥିଲେ । ଯେକୌଣସି ସାଧାରଣ ବ୍ୟକ୍ତିପରି ତାଙ୍କ ଲକ୍ଷ୍ୟ ବି ଥିଲା ନିଜ ଜୀବିକା ଅର୍ଜନ । କିଛିକାଳ ରେଙ୍ଗୁନ୍ ଯାଇ ସେଠି ଜଣେ ବ୍ୟବସାୟୀଙ୍କ ହିସାବ ଲେଖା, ସେଠୁ ଫେରି ନିଜ ଗାଁ ପାଖେ ଗୋଟିଏ କ୍ଷୁଦ୍ର ମ୍ୟୁନିସିପାଲିଟିରେ ଟିକସ ଅସୁଲକାରୀ, ଏମ୍. ଇ. ପାଶ କରି ଯଥାକ୍ରମେ ଯୋଡ଼ିଏ ଉ. ପ୍ରା. ସ୍କୁଲରେ ଶିକ୍ଷକତା, କେତେବର୍ଷ ସ୍ୱାଧୀନ ଭାବେ ବ୍ୟବସାୟ, ତାକୁ ଛାଡ଼ି ଆଗ ଗୁଜରାଟରେ, ତାପରେ କଲିକତାରେ ବ୍ୟବସାୟୀଙ୍କ ପାଖେ ଚାକିରି, ଏହିପରି ଥିଲା ତାଙ୍କର ବତିଶି ବର୍ଷର ଜୀବନ । ସେ ଚଉଦ ବର୍ଷରେ ବାହା ହୋଇଥିଲେ କିନ୍ତୁ ଆଗ ତାଙ୍କ ନବଜାତ ଶିଶୁ, ତା ପରେ ସ୍ତ୍ରୀ ମରିଥିଲେ । କଲିକତାରେ ଥିଲାବେଳେ ଲବଣ ସତ୍ୟାଗ୍ରହର ଢେଉ ତାଙ୍କଠିଁ ବି ଲାଗିଥିଲା, ଦେଶକାମ କରିବା ପାଇଁ ତାଙ୍କୁ ଉଚ୍ଚାଟ କରିଥିଲା । ଜଣେ ଗାନ୍ଧୀଭକ୍ତ ଦେଶପ୍ରେମୀ, ସମାଜସେବୀ ଧନୀ ଗୁଜରାଟୀ ବ୍ୟବସାୟୀ ୰ ଜୀବରାମଜୀ କଲ୍ୟାଣୀ,—କଲିକତାରେ ତାଙ୍କର ଗଦି ଥିଲା, ସେତେବେଳେ ଭଦ୍ରକରେ ଘରଭଡ଼ା ନେଇ ରହୁଥାନ୍ତି ଓ ଓଡ଼ିଶାରେ ଖଦି କାମ ଓ ସମାଜସେବା କରୁଥାନ୍ତି । ତାଙ୍କ ମ୍ୟାନେଜରଙ୍କଠୁଁ ଚିଠି ନେଇ ଯୁବକ ୰ ଈଶ୍ୱରଲାଲ ବ୍ୟାସ ୧୯୩୧ ଜାନୁଆରୀ ୫ ତାରିଖରେ ଭଦ୍ରକ ଯିବାକୁ କଲିକତାରେ ଗାଡ଼ି ଚଢ଼ିଲେ । ଆରମ୍ଭ ହେଲା ତାଙ୍କ ଜୀବନର ନୂଆ ଅଧ୍ୟାୟ, ଅଦ୍ଭୁତ ପରିବର୍ତ୍ତନ । ଆଉ ଯେଉଁ ୩୧ ବର୍ଷ ସେ ବଞ୍ଚିଲେ, ତାହା ବିତିଗଲା ଓଡ଼ିଶା ମାଟିରେ । ତାଙ୍କର ପୂର୍ବେ ଅଚିହ୍ନା ଓଡ଼ିଶା ହେଲା ତାଙ୍କର ପ୍ରିୟ କର୍ମଭୂମି, ଓଡ଼ିଶାର ରଚନାତ୍ମକ କର୍ମୀକୁଳ, ଓଡ଼ିଶାର ଜନସାଧାରଣ ହେଲେ ତାଙ୍କର ପ୍ରିୟ ଆତ୍ମୀୟସ୍ୱଜନ । ଦୁଃଖୀ ଦରିଦ୍ର, ବନ୍ୟା ବାତ୍ୟା, ଦୁର୍ଭିକ୍ଷ ପ୍ରପୀଡ଼ିତଙ୍କ ସେବାରେ ନିୟତ, ନିଷ୍ଠାପର, ଅକ୍ଳାନ୍ତ କଠୋର ପରିଶ୍ରମ କରି କରି ୧୯୬୨ ଫେବୃଆରୀ ୧୧ ତାରିଖରେ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକେଲ୍ କଲେଜ ଡାକ୍ତରଖାନାରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ ।

୧୯୩୧ ଫେବୃଆରୀରେ ୰ ଜୀବରାମଜୀ କଲ୍ୟାଣୀ ତାଙ୍କୁ ନେଇ ଦିଲ୍ଲୀରେ ମହାତ୍ମା ଗାନ୍ଧୀଙ୍କ ସଙ୍ଗେ ଭେଟ କରାଇଥିଲେ । ମହାତ୍ମାଜୀ ୰ ଜୀବରାମଜୀଙ୍କୁ କହିଲେ, —"ଏହାକୁ ରଖ, ଏହେ କାମ କରିବ ।" ୧୯୩୧ ଜାନୁଆରୀରୁ ୧୯୪୧ ଜୁନ୍ ୨୦ରେ

୰ ଜୀବରାମଜୀ କଲ୍ୟାଣୀଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେ ହିଁ ଥିଲେ ଈଶ୍ୱରଲାଲ ବ୍ୟାସଙ୍କ ପୃଷ୍ଠପୋଷକ ଓ ବନ୍ଧୁ ।

ଗାନ୍ଧୀଜୀଙ୍କ ପାଖରୁ ଫେରିଆସି ୰ ଜୀବରାମଜୀ ତାଙ୍କୁ ସାବରମତୀ ଆଶ୍ରମରେ ରଖାଇ ଦେଇ ଆସିଲେ । ୰ ଈଶ୍ୱରଲାଲ୍ ସେଠାରେ ୧୯୪୧ ମେ' ମାସ ଶେଷଯାଏ ରହି ତାଲିମ ପାଇଲେ ଓ ଆଶ୍ରମର ବିବିଧ କାର୍ଯ୍ୟ କରୁଥିଲେ । ଜୁନ୍ ମାସରେ ୰ ଜୀବରାମଜୀ ତାଙ୍କୁ ଡକାଇ ନେଇ କହିଲେ ଯେ ସେ ନିଜେ ବୁଲି ଗୋଟିଏ ଗ୍ରାମ ବାଛନ୍ତୁ ଓ ସେଠି ରହି ଗ୍ରାମସେବା ଓ ଖଦୀ କାମ କରନ୍ତୁ । ୰ ବ୍ୟାସଜୀ ଭଦ୍ରକଠୁ ୯ ମାଇଲ ଦୂର ନୁଆପାଲି ଶାସନରେ ଗ୍ରାମବାସୀଙ୍କ ସାହାଯ୍ୟରେ ଗୋଟିଏ ଆମ୍ବ-ତୋଟା ଭିତରେ ଖାଲି ଘରେ ନିଜର ପ୍ରଥମ ଆଶ୍ରମ ଆରମ୍ଭ କଲେ, ଗ୍ରାମପାଖର ଗାଁ ଲୋକଙ୍କୁ ସୂତାକଟା ଶିଖାଇଲେ, ଗାଁର ପୁରୁଷ ସ୍ତ୍ରୀ ସମସ୍ତଙ୍କ ସଙ୍ଗେ ମିଶିଲେ ଓ ସ୍ତ୍ରୀ ଲୋକମାନଙ୍କୁ ତୁଳାଭଙ୍ଗା, ପେଲଣା ବଳିବା ଶିଖାଇଲେ । ବର୍ଷେ ଭିତରେ ୧୧୫ଟି ଅରଟ ଚାଲିଲା । ୰ ଜୀବରାମଜୀ ଭଦ୍ରକରେ ଖଣ୍ଡେ ଜମି କିଣିଥିଲେ । ୧୯୩୨ରେ ସେଠି ସେ ବ୍ୟାସଜୀଙ୍କ ଦ୍ୱାରା 'ଭଦ୍ରକ ଆଶ୍ରମ' (ବାଳାଶ୍ରମ) ଘର ତୋଳାଇଲେ । ସେ ଘରେ ଓଡ଼ିଶାର ସତ୍ୟାଗ୍ରହୀମାନଙ୍କୁ ଅନ୍ତତଃ ଛଅମାସ ଲେଖା ତାଲିମ୍ ଦେବାକୁ ବ୍ୟବସ୍ଥା କରାଗଲା । ସେହିବର୍ଷ ୰ ଜୀବରାମଜୀଙ୍କଠୁ ଓଡ଼ିଶାରେ ଖଦୀ କାମର ରିପୋର୍ଟ ନେଇ ସେ ଓ୍ୱାର୍ଦ୍ଧାରେ ଗାନ୍ଧୀଜୀଙ୍କୁ ଦେଲେ । ୧୯୩୩ରେ ଉତ୍ତର ଓଡ଼ିଶାରେ ପ୍ରବଳ ନଈବଢ଼ି ହେଲା । ଅଞ୍ଚଳରେ ରହି ବନ୍ୟା-ସାହାଯ୍ୟ ଚଳାଇବାକୁ ୰ ଜୀବରାମଜୀ ତାଙ୍କୁ ନଭେମ୍ବର ମାସରେ ଆଳି ପଠାଇଲେ । ପରେ ୰ ଜୀବରାମଜୀ ଅସୁସ୍ଥ ହୋଇ ପୁରୀରେ ରହିଲେ ଓ ୰ ବ୍ୟାସଜୀ ଆସି ଭଦ୍ରକ ଆଶ୍ରମରେ ରହି ବାଳାଶ୍ରମର କାର୍ଯ୍ୟ ବୁଝିଲେ । ୧୯୩୪ରେ ଓଡ଼ିଶାରେ ମହାତ୍ମା ଗାନ୍ଧୀଙ୍କ ହରିଜନ ପଦଯାତ୍ରା ହେଲା । ୰ ଜୀବରାମଜୀ ଓ ୰ ବ୍ୟାସଜୀ ଠକ୍କର ବାପାଙ୍କଠୁ ଟେଲିଗ୍ରାମ୍ ପାଇ ପୁରୀଠୁ ୫ ମାଇଲ୍ ଦୂର ରହଣି ସ୍ଥାନରେ ମହାତ୍ମାଜୀଙ୍କୁ ଭେଟିଲେ । ମହାତ୍ମାଜୀ ୰ ଈଶ୍ୱରଲାଲ୍ଙ୍କୁ ଭାର ଦେଲେ ଯେ ସେ ପ୍ରତ୍ୟହ ସନ୍ଧ୍ୟାଙ୍କର ଘଣ୍ଟି ବଜାଇବେ । ତାଙ୍କ ଉପରେ ଆହୁରି ଭାର ଦିଆଗଲା ଯେ ସେ ରୋଷେଇଘର ଦାୟିତ୍ୱ ନେବେ,—ପରେ ବଡ଼ ବଡ଼ ସମ୍ମିଳନୀ-ମାନଙ୍କରେ ରୋଷେଇ ବ୍ୟବସ୍ଥା ସମ୍ଭାଳିବାକୁ ତାଙ୍କୁ ଆହୁରି କେତେଥର ଓଡ଼ିଶାରୁ ଡକାଇ ନିଆ ହୋଇଥିଲା । ୧୯୩୪ରେ ୰ ଗୋପବନ୍ଧୁ ଚୌଧୁରୀଙ୍କ ନିର୍ଦ୍ଦେଶରେ ପୁଣି ସେ ଆଳି ଯାଇ ମହାତ୍ମାଜୀ ପଠାଇଥିବା ଟଙ୍କା ସେଠି ଠିକ୍ ଭାବେ ଖର୍ଚ୍ଚ ହେଉଛି କି ନାହିଁ ତଦାରଖ କରିଥିଲେ । ସେ ଆଳିରେ ହେଉଥିବା କାମ ଦେଖାଶୁଣା କରୁଥାନ୍ତି ଓ ୰ ଜୀବରାମଜୀ ଅସୁସ୍ଥ ହୋଇ ପୁରୀରେ ଥିବାରୁ ଭଦ୍ରକ ବାଳାଶ୍ରମର କାର୍ଯ୍ୟ ବି ବୁଝୁଥାନ୍ତି । ସେ ମଝିରେ ମଝିରେ ଆଳିରୁ ପାଦ ବାଟେ ଅଠର ମାଇଲ୍ ଦୂର ବରୀ ଯାଇ ୰ ଗୋପବାବୁଙ୍କଠୁ ପରାମର୍ଶ ନେଉଥାନ୍ତି । ନୂଆପାଲି ପରେ ଆଳି ହିଁ ତାଙ୍କ

କର୍ମକେନ୍ଦ୍ର ହୋଇଥାଏ । ସେଠି ସେ ଖଦୀ କାମ, ସୂତାକଟା କାମ ଓ ଗ୍ରାମସେବା କରୁଥାନ୍ତି । ସେହି କାମ କରିବା ପାଇଁ ଗୋପବାବୁଙ୍କ ନିର୍ଦ୍ଦେଶରେ ସେ ମହୁମାରେ କର୍ମକେନ୍ଦ୍ର କରି ସେଠି ୩୪ ବର୍ଷ ରହିଲେ । ୧୯୩୬ରେ ସେଠି ରଚନାତ୍ମକ କର୍ମୀମାନଙ୍କର ଗୋଟିଏ ସମ୍ମିଳନୀ ହୋଇଥିଲା ।

୧୯୩୪ରେ ଓ୍ୱାର୍ଦ୍ଧା ସମ୍ମିଳନୀରେ ସେ ସ୍ୱେଚ୍ଛାସେବକର ଦାୟିତ୍ୱ ତୁଲାଇଥିଲେ । ୧୯୩୮ରେ ସେ କଲିକତାରେ ଗାନ୍ଧୀଜୀଙ୍କୁ ଦେଖା କରିଥିଲେ । ସେ ଗାନ୍ଧୀ ସେବା ସଂଘର ସଭ୍ୟ ଥିଲେ । ୧୯୪୦ରେ ମାଲିକେନ୍ଦାରେ ତା'ର ବୈଠକରେ ଯୋଗ ଦେଇଥିଲେ । ସେତେବେଳେ ସେ ମହୁମା ପରେ ପୁଣି ଆଲିରେ ରହୁଥିଲେ । ସେ ଗାନ୍ଧୀଜୀଙ୍କୁ କହିଲେ ଯେ ସେ ଆଉ ଆଲିରେ ରହିବେ ନାହିଁ । ଗାନ୍ଧୀଜୀ ତାଙ୍କୁ କହିଲେ ଯେ ସେ ଆଲିରେ ନ ରହନ୍ତୁ ପଛେ ଓଡ଼ିଶା ଛାଡ଼ନ୍ତୁ ନାହିଁ ।

୧୯୪୦ରେ ବାଲେଶ୍ୱର ଜିଲାର ଧାମନଗର ଅଞ୍ଚଳରେ ପ୍ରବଳ ବନ୍ୟା ହୋଇଥିଲା । ୰ ବ୍ୟାସଜୀ ସେ ଅଞ୍ଚଳକୁ ଯାଇ ଖଡ଼ିପଦା ଗାଁରେ ଆଶ୍ରମ କରି ରହିଲେ ଓ ବନ୍ୟାରିଲିଫ୍ କାର୍ଯ୍ୟ କରି ସାରି ସେଠି ଖଦୀକାମ, ଗ୍ରାମସେବା ଆଦି କଲେ । ୰ ଜୀବରାମଜୀ କଲ୍ୟାଣୀ ଘୋର ଅସୁସ୍ଥ ହୋଇ ତାଙ୍କୁ ଭଦ୍ରକ ଡକାଇ ଆଣିଲେ ଓ ୧୯୪୫ରେ ୰ ଗୋପବନ୍ଧୁ ଚୌଧୁରୀ ଜେଲ୍‌ରେ ଥିଲାବେଳେ ତାଙ୍କର ଅତି ପ୍ରିୟ (ବରି) ରାମଚନ୍ଦ୍ରପୁରର ମୌଳିକ ଶିକ୍ଷା ଅନୁଷ୍ଠାନର ଘରଗୁଡ଼ିକ ଦିନେ ହଠାତ୍ ପୋଡ଼ିଗଲା । ୰ ବ୍ୟାସଜୀ ଘରତୋଳା ପାଇଁ ଅର୍ଥ ସଂଗ୍ରହ କରିବାକୁ ସମ୍ବଲପୁର ଗଲେ ସେଠୁ ଟ ୨୦୦.୦୦ ଚାନ୍ଦା ସଂଗ୍ରହ କରି ଫେରି ଆସିଲେ, ତହିଁରେ ନୂଆ ଘର ତିଆରି ହୋଇଗଲା । ୧୯୪୬ରେ ଗାନ୍ଧୀ ଜୟନ୍ତୀର ତିନିମାସ ପୂର୍ବରୁ ସେ ୰ ଗୋପବାବୁଙ୍କ ସଙ୍ଗେ 'ଉତ୍କଳ ଖଦୀ ମଣ୍ଡଳ' ଗଢ଼ିବା ସକାଶେ ଚାନ୍ଦା ସଂଗ୍ରହ କରିବାକୁ ପୁଣି ସମ୍ବଲପୁର ଆଡ଼େ ଗଲେ, ଟିଟିଲାଗଡ଼ରେ ତାଙ୍କୁ ଜ୍ୱର ହେଲା, ତଥାପି ସେ ଖଡ଼ିଆଳରୋଡ଼ ଯାଇ ଚାନ୍ଦା ସଂଗ୍ରହ କରି କଟକ ଫେରିଲେ । ୧୯୫୦ରେ ଅନୁଗୁଳ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ ହେବ ବୋଲି ୰ ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗରେ ସେ ରାଇରାଖୋଲ ଅଞ୍ଚଳକୁ ଗଲେ ଓ ପାନପୋଷରେ ଏକାଦିନକେ ୪ଜଣ ବ୍ୟବସାୟୀଙ୍କଠାରୁ ପ୍ରତ୍ୟେକଙ୍କଠାରୁ ସମ୍ମିଳନୀର ଗୋଟିଏ ଦିନର ଆନୁମାନିକ ଭୋଜନ ଖର୍ଚ୍ଚ ଟ ୨୦୦ଙ୍କା ଚାନ୍ଦା ସଂଗ୍ରହ କରିଥିଲେ । ୧୯୫୧ରେ କୋରାପୁଟର ରାୟଗଡ଼ା ସବ୍‌ଡିଭିଜନରେ ଦୁର୍ଭିକ୍ଷ-ରିଲିଫ୍ କାର୍ଯ୍ୟରେ ଯାଇ ସେହି ଦରିଦ୍ର ଅଞ୍ଚଳରେ ଧନୀମାନଙ୍କଠାରୁ ଟ ୧୦,୦୦୦ଙ୍କା ସାହାଯ୍ୟ ପାଇଁ ଚାନ୍ଦା ସଂଗ୍ରହ କରିଥିଲେ ।

୧୯୪୮ ଫେବୃଆରୀ ୩ ତାରିଖରେ ଓ୍ୱାର୍ଦ୍ଧାରେ 'ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ' ହେବାର ଥାଏ । ତାର ଦିନ ପୂର୍ବରୁ ୰ ବ୍ୟାସଜୀ ତକରା ପାଇ ସେଠି ପହଞ୍ଚିଥାନ୍ତି ଓ ସେଠି କାର୍ଯ୍ୟରେ ଲାଗିଥାନ୍ତି । ମହାତ୍ମାଜୀଙ୍କ ହତ୍ୟା ଯୋଗୁଁ ସମ୍ମିଳନୀଟି ହେଲା ନାହିଁ । ୧୯୪୮ରେ ଉତ୍କଳ ପ୍ରାଦେଶିକ ଖଦୀ ମଣ୍ଡଳର ସମ୍ମିଳନୀ ଭଦ୍ରକରେ

ହୋଇଥିଲା, ବ୍ୟାସଜୀ ତହିଁରେ ଯୋଗ ଦେଇଥିଲେ ଓ କାର୍ଯ୍ୟ କରିଥିଲେ । ତାପରେ ଭାରତୀୟ ଜାତୀୟ କଂଗ୍ରେସର ସମ୍ମିଳନୀ ରାଜସ୍ଥାନର ଜୟପୁରରେ ହେଲା । ସେଠି ପ୍ରଦର୍ଶନୀ କାର୍ଯ୍ୟରେ ଲାଗିଥିବା ଶହ ଶହ କର୍ମୀଙ୍କ ପାଇଁ ରୋଷେଇ ବ୍ୟବସ୍ଥାର ଦାୟିତ୍ୱ ନେବା ପାଇଁ ଡକରା ପାଇ ବ୍ୟାସଜୀ ସେଠିକି ଯାଇ ସେ ଦାୟିତ୍ୱ ତୁଲାଇଥିଲେ । ୧୯୫୦ରେ ମେ ଅନୁଗୁଳରେ ଅନୁଷ୍ଠିତ 'ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ'ରେ ଯୋଗ ଦେଲେ । ୧୯୫୧ ଡିସେମ୍ବରରେ ୰ ଗୋପବନ୍ଧୁ ଚୌଧୁରୀ ତାଙ୍କୁ ଦୁର୍ଭିକ୍ଷ-ରିଲିଫ୍ କାର୍ଯ୍ୟ କରିବାକୁ କୋରାପୁଟ ଜିଲାର ରାୟଗଡ଼ା ସବ୍‌ଡିଭିଜନକୁ ପଠାଇଲେ । ସେଥିପାଇଁ ତାଙ୍କ ହାତରେ ଟ ୧୦୦୦ଙ୍କା ମାତ୍ର ଦେଇଥିଲେ । ସେ ସେଠ ପହଞ୍ଚି ଚାନ୍ଦା ଉଠାଇ ଆଉ ଦଶହଜାର ଟଙ୍କା ସଂଗ୍ରହ କଲେ । ଆଗ ସେତକ ଟଙ୍କାରେ ବିଭିନ୍ନ ସ୍ଥାନରେ ରିଲିଫ୍ କେନ୍ଦ୍ରମାନ ଖୋଲାଗଲା ଓ ହଜାର ହଜାର ଲୋକେ ସେଠି ଖାଇ ବଞ୍ଚିଲେ । ସେହି କାର୍ଯ୍ୟ ବେଳେ ବାଘୁଆ ବଣ ବାଟରେ ପର୍ବତ ଚଢ଼ି ବୁଲିବାକୁ ବହୁତ ପରିଶ୍ରମ କରିବାକୁ ପଡ଼ୁଥାଏ । ପରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ୰ ନବକୃଷ୍ଣ ଚୌଧୁରୀ ଜୟପୁର ମହାରାଜାଙ୍କ ଠାରୁ ସେହି କାର୍ଯ୍ୟ ପାଇଁ ଯୋଡ଼ିଏ ହାତୀ ବନ୍ଦୋବସ୍ତ କରାଇଦେଲେ, ୰ ବ୍ୟାସଜୀ ହାତୀରେ ବସି ରିଲିଫ୍ କେନ୍ଦ୍ରମାନଙ୍କୁ ଗଲେ ଓ ହାତୀ ପିଠିରେ ସାହାଯ୍ୟ ଉପକରଣ ଲଦା ହୋଇ ସେସବୁ ଦୁର୍ଗମ ସ୍ଥାନମାନଙ୍କୁ ପଠାଗଲା । ସେହି ରିଲିଫ୍ କାର୍ଯ୍ୟରେ ୰ ବ୍ୟାସଜୀ ସେଠି ସାତ ଆଠମାସ ରହିଥିଲେ । ଇତ୍ୟବସରରେ ୧୯୫୨ ମାର୍ଚ୍ଚ ମାସରେ ୰ ଗୋପବାବୁ, ଶ୍ରୀମତୀ ରମା ଦେବୀ ଆଦି ପଦଯାତ୍ରାରେ ଆସି ଗୁଣୁପୁର ଅଞ୍ଚଳରେ ପହଞ୍ଚିଲା ବେଳେ ୰ ବ୍ୟାସଜୀ ସେମାନଙ୍କୁ ଭେଟିଥିଲେ । ପଦଯାତ୍ରୀ ଦଳ ମାର୍ଚ୍ଚ ୨୨ ତାରିଖରେ ରାୟଗଡ଼ା ସବ୍‌ଡିଭିଜନ ଡେଇଁ କଳାହାଣ୍ଡି ଜିଲାକୁ ଚାଲି ଯାଇଥିଲେ ।

ପହଞ୍ଚିବାର ୭ ଦିନ ପରେ ୨୪-୬-୧୯୪୧ରେ ଜୀବରାମଜୀ କଲ୍ୟାଣୀ ମରିଗଲେ । ୰ ବ୍ୟାସଜୀ ଭଦ୍ରକ ଆଶ୍ରମ ଓ ଖଡ଼ିପଦା ଆଶ୍ରମ ଯୋଡ଼ିକଯାକ ଚଳାଇବାକୁ ଲାଗିଲେ । ୧୯୦୨ ସେପ୍ଟେମ୍ବରରେ ଉତ୍ତର ଓଡ଼ିଶାରେ ଭୀଷଣ ବାତ୍ୟା ହୋଇ ବହୁତ କ୍ଷତି ହେଲା । ୰ ବ୍ୟାସଜୀ ଜଳେଶ୍ୱର, ଝାଡ଼ପିପ୍‌ପଲ ଓ ସରମଙ୍ଗା ଗଲେ, ଅବସ୍ଥା ବୁଝିଲେ, ଜ୍ୱର ଦେହରେ କଟକ ଯାଇ ସାହାଯ୍ୟ ପାଇଁ ଟ ୩୦୦ଙ୍କା ଚାନ୍ଦା ଉଠାଇ ପଠାଇ ଦେଲେ, ଖବର କାଗଜରେ ଲେଖା ଛପାଇଲେ ଓ ସାହାଯ୍ୟ ପାଇଁ ଠକ୍କରବାପାଙ୍କୁ ଚିଠି ଦେଲେ । ଠକ୍କରବାପା ଟ ୧୦୦୦ଙ୍କା ପଠାଇଲେ । ସାହାଯ୍ୟ ପାଇଁ ଚାନ୍ଦା ସଂଗ୍ରହ ଚାଲିଥାଏ । 'ଉତ୍ତର ବାଲେଶ୍ୱର ରିଲିଫ୍ କମିଟି' ଗଢ଼ା ହେଲା, ବ୍ୟାସଜୀ ତାର ସମ୍ପାଦକ ହେଲେ ଓ ସାହାଯ୍ୟ କାର୍ଯ୍ୟ କଲେ । ୧୯୪୨ ଆନ୍ଦୋଳନରେ ସେ ଜେଲ୍ ଗଲେ ନାହିଁ, ବାତ୍ୟା-ରିଲିଫ୍ କାର୍ଯ୍ୟ କଲେ, ଜେଲ୍ ଯାଇଥିବା କର୍ମୀମାନଙ୍କ ପରିବାରଙ୍କ ଭଲ ମନ୍ଦ ବୁଝିଲେ ଓ ସେମାନଙ୍କ ପାଇଁ ସାହାଯ୍ୟ

ବନ୍ଦୋବସ୍ତ କଲେ ଓ ୧୯୪୮ରେ ହେବାକୁ ଥିବା ଗାନ୍ଧୀ ଜୟନ୍ତୀ ଉପଲକ୍ଷରେ ହାତକଟା ସୂତାର ସୂତାଞ୍ଜଳି ସଂଗ୍ରହ କରିବାକୁ ଲାଗିଲେ । 'ଓଡ଼ିଶାରେ ବ୍ୟାସଜୀ' ପୁସ୍ତିକ ଲେଖକ ଶ୍ରୀ ଅନାଦି ଚରଣ ଲେଖିଛନ୍ତି ଯେ ସେ ବର୍ଷର ଗାନ୍ଧୀଜୟନ୍ତୀ ପାଇଁ କେବଳ ଉତ୍ତର ବାଲେଶ୍ୱରରୁ ବ୍ୟାସଜୀ ଏକକୋଟି ଗଜ ସୂତା ଜମା କରିଥିଲେ । ୧୯୪୪ରେ ସେ ଓ୍ୱାର୍ଦ୍ଧାରେ ହୋଇଥିବା 'ଚରଖା ସଂଘ'ର ସମ୍ମିଳନୀକୁ ଯାଇଥିଲେ ଓ ମହାତ୍ମା ଗାନ୍ଧୀଙ୍କୁ ଦେଖା କରିଥିଲେ ।

୰ ଗୋପବନ୍ଧୁ ଚୌଧୁରୀଙ୍କର ସେହି ପଦଯାତ୍ରା ବେଳୁ ସେ ଓଡ଼ିଶାରେ ଭୂଦାନ ଆନ୍ଦୋଳନ ଆରମ୍ଭ କରିଥିଲେ । ୰ ବ୍ୟାସଜୀ ତହିଁରେ ଯୋଗ ଦେଇଥିଲେ । ୧୯୫୨ ଅଗଷ୍ଟ ୭ରେ ଯାଜପୁରରେ 'ଓଡ଼ିଶା ଭୂଦାନ ଯଜ୍ଞ ସମିତି'ର ଜରୁରୀ ବୈଠକରେ ପ୍ରଥମେ ଯେଉଁ ୨୦ ଜଣ କର୍ମୀ ପ୍ରତିଶ୍ରୁତିବଦ୍ଧ ହେଲେ ଯେ ସେମାନେ ପୂର୍ଣ୍ଣ ସମୟ ଦେଇ ଭୂଦାନ କାର୍ଯ୍ୟରେ ଲାଗି ରହିବେ ୰ ବ୍ୟାସଜୀ ସେମାନଙ୍କ ମଧ୍ୟରେ ଅନ୍ୟତମ । ସେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଭୂଦାନ ସଂଗ୍ରହ କାର୍ଯ୍ୟ କଲେ । ସେଥିପାଇଁ ବିଶେଷଭାବେ ବାଲେଶ୍ୱର ଜିଲ୍ଲାରେ କାର୍ଯ୍ୟ କରିବା ଦାୟିତ୍ୱ ତାଙ୍କୁ ଦିଆଗଲା । ୧୯୫୫ରେ ଓଡ଼ିଶାରେ ବିନୋବାଜୀଙ୍କ ପଦଯାତ୍ରା ବେଳେ ତାଙ୍କ ସଙ୍ଗେ ରହି ତାଙ୍କ ଦିହଣି ପ୍ରାର୍ଥନାରେ ଘଣ୍ଟି ବଜାଇବା ଦାୟିତ୍ୱ ଓ ରାସ୍ତାରେ ପଦଯାତ୍ରା ବେଳେ ସମସ୍ତଙ୍କ ଆଗେ ଆଗେ ଲଣ୍ଠଣ ଧରି ଚାଲିବା ଦାୟିତ୍ୱ ତାଙ୍କ ଉପରେ ଥିଲା । ୧୯୫୮ରେ ଗୋପବନ୍ଧୁ ଚୌଧୁରୀଙ୍କ ଦେହାନ୍ତ ପରେ ୰ ଆଚାର୍ଯ୍ୟ ହରିହର ଦୀର୍ଘ ଭୂଦାନ-ପଦଯାତ୍ରାରେ ପାଞ୍ଚହଜାର ମାଇଲ ଚାଲିଲେ, ଈଶ୍ୱରଲାଲ ବ୍ୟାସ ତାଙ୍କ ସଙ୍ଗେ ଚାଲିଥିଲେ । ୧୯୬୧ରେ ତାଙ୍କର ଗୋଟିଏ ଦୁର୍ଘଟଣା ଘଟିଲା । ୰ ଆଚାର୍ଯ୍ୟ ମହାଶୟଙ୍କୁ ଉତ୍କଳ ସର୍ବୋଦୟ ମଣ୍ଡଳ କିଛି ଅର୍ଥ ଭେଟି ଦେବେ ବୋଲି ଚାନ୍ଦା ସଂଗ୍ରହ କରା ହେଉଥାଏ, ୰ ବ୍ୟାସଜୀ ଚାନ୍ଦା ପାଇଁ ରାଉରକେଲା ଯାଇଥାନ୍ତି । ସେଠି ଝୁଣ୍ଟି ପଡ଼ି ତାଙ୍କର ଗୋଟିଏ ଆଣ୍ଠୁର ହାଡ଼ ଭାଙ୍ଗିଗଲା । କଟକ ଅଣାଯାଇ ଡାକ୍ତରଖାନାରେ ୪ ମାସ ରହି ସେ ଭଲ ହେଲେ । ତାପରେ ସେ ବାରିଆଡ଼େ ବୁଲି ପୂର୍ବପରି ଭୂଦାନ କାମ, ସେବା କାମ ଓ ଯେତେବେଳେ ଦରକାର, ରିଲିଫ୍ କାମ ଆଦି କରୁଥିଲେ । ୧୯୬୭ରେ କଳାହାଣ୍ଡି ଜିଲ୍ଲାରେ ଦୁର୍ଭିକ୍ଷ ପଡ଼ିଲା । ସେ ସେଠିକି ଗଲେ, ରିଲିଫ୍ କାର୍ଯ୍ୟ ସଂଗଠନ କଲେ ଓ ଗୋଟିଏ ସାହାଯ୍ୟ କେନ୍ଦ୍ର ବସାଇଥିଲେ ।

୧୯୬୮ରେ ଅସୁସ୍ଥ ହୋଇ କଟକରେ ଥୋରିଆ ସାହି ଆଶ୍ରମରେ ରହି ବିଶ୍ରାମ କଲେ ଓ ଚିକିତ୍ସିତ ହେଉଥିଲେ । ଶ୍ରୀମତୀ ରମା ଦେବୀ ଓ ଆଶ୍ରମର କର୍ମୀ-ମାନେ ତାଙ୍କ ସେବାଯତ୍ନ କରୁଥିଲେ । ତାଙ୍କଠି ରକ୍ତଚାପ ରୋଗ ଓ ହୃଦ୍‌ରୋଗ ଥିଲା । ୧୯୬୯ରେ ସେ ଗୁରୁତର ଭାବେ ଅସୁସ୍ଥ ହୋଇ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକେଲ କଲେଜ ଡାକ୍ତରଖାନାକୁ ନିଆଗଲେ । ୧୯୬୯ ଫେବୃଆରୀ ୧୧ ତାରିଖରେ ସେଠି ତାଙ୍କର ମୃତ୍ୟୁ ହେଲା ।

୬ ଈଶ୍ୱରଚନ୍ଦ୍ର ବ୍ୟାସ୍ ଢେଙ୍ଗା, ହୃଷ୍ଟପୁଷ୍ଟ, ଗୋଲଗାଲ୍ ମଣିଷ ଥିଲେ । ତାଙ୍କ ମୁଣ୍ଡ ଚନ୍ଦା ଥିଲା । ସେ ଅଣ୍ଟ ଲୁଚୁ ନ ଥିବା ଖଦଡ଼ ଲୁଗା ଖଣ୍ଡିଏ ପିନ୍ଧି ଥିଲେ । ତାଙ୍କ ମୁଣିରେ ଅରଟଟିଏ ଥାଏ ଓ ଖଣ୍ଡିଏ ଖଦଡ଼ ଗାମୁଛା ଥାଏ, ଏତକ ଘେନି ସେ ବାଟ ଚାଲୁଥିଲେ । ସେ କହୁଥିଲେ, "ଯେ ସବୁ ବୋଝ ନୋହିବ ତା ନିଜ ବୋଝ ହାଲୁକା ହେବା ଉଚିତ ।" ଶ୍ରୀ ଫକୀର ମିଶ୍ର ଶ୍ରଦ୍ଧାରେ ମନେ ପକାନ୍ତି କେମିତି ଥରେ ସେ ତାଙ୍କର ଓ ୬ ଗୋପବାବୁଙ୍କର ବୋଝ ବୋହି ବାଟ ଚାଲୁଥିଲେ । ପରକୁ ସାହାଯ୍ୟ କରିବାକୁ ତାଙ୍କ ହାତ ଆପେ ଲମ୍ବି ଆସୁଥିଲା । ସେ ସଦା ପ୍ରଫୁଲ୍ଲ ଥିଲେ, ଅମାୟିକ ଥିଲେ, ଅତି ଚଞ୍ଚଳ ଅପରକୁ ଆପଣାର କରୁଥିଲେ, ଓଡ଼ଶାରେ କାହାର ସେ 'ଅଜା', କାହାର 'ବାପା', କାହାର 'ଭାଇ' । ପିଲାମାନଙ୍କୁ ସେ ଖୁବ୍ ସ୍ନେହ କରୁଥିଲେ, ସେମାନଙ୍କୁ ବାଣ୍ଟିବାକୁ ତାଙ୍କ ମୁଣିରେ କିଛି ଖାଦ୍ୟ ପଦାର୍ଥ ରଖିଥାନ୍ତି ।

ଗାନ୍ଧିଜୀ ତାଙ୍କୁ ଚିହ୍ନିଥିଲେ ଓ ଭଲ ପାଉଥିଲେ । ୧୯୩୧ରେ ସେ ଓଡ଼ଶା ଆସିଲା ଦିନୁ ୬ ଗୋପବାବୁ ତାଙ୍କୁ ଚିହ୍ନିଥିଲେ । କ୍ରମେ ଦୁହିଁଙ୍କର ସମ୍ପର୍କ ଘନିଷ୍ଠତର ହୋଇଥିଲା । ସେ ନିର୍ଲୋଭ ଓ ନିଃସ୍ୱାର୍ଥପର ଥିଲେ, ନିଷ୍ଠାପର ଗାନ୍ଧୀବାଦୀ ଥିଲେ, ଶାନ୍ତ ଭାବେ ଦୁଃଖକଷ୍ଟ ସହି, ଅତି ସରଳଭାବେ ଜୀବନ ବଞ୍ଚି ସେ ଜନସେବା କରି ଲାଗିଥିଲେ ।

**ଶ୍ରୀ ଭୋଳାନାଥ ମହାପାତ୍ର (ଗ୍ରାମ-ସରମଙ୍ଗା, ଜି-ବାଲେଶ୍ୱର)**

ସେ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ କ୍ଷେମମଣି ଦେବୀ ଉଭୟେ ୧୯୩୨ରେ କଂଗ୍ରେସ ଆନ୍ଦୋଳନରେ ଯୋଗଦେଲେ ଓ ଜେଲ୍ ଗଲେ । ତାପରେ ନିଜ ଗ୍ରାମ ସରମଙ୍ଗାରେ କର୍ମକେନ୍ଦ୍ର କରି ସେଠାରେ ଖଦୀ ଓ ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟ କଲେ ।

**୬ ମହୀଧର ଖୁଣ୍ଟିଆ (ଗ୍ରାମ-ଫୁଲଗାଡ଼ିଆ, ଜି-ବାଲେଶ୍ୱର)**

୬ ମହୀଧର ଖୁଣ୍ଟିଆ ୧୯୩୦ରେ ସରକାରୀ ଚାକିରି ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ତାପରେ ସେ 'ଗାନ୍ଧୀ ସେବାସଂଘ' ଦ୍ୱାରା ପରିଚାଳିତ ଫୁଲଗାଡ଼ିଆ ଖଦୀ କେନ୍ଦ୍ରରେ କର୍ମୀ ହୋଇ କାର୍ଯ୍ୟ କଲେ । ୧୯୪୨ ଆନ୍ଦୋଳନରେ ସେ ଯୋଗ ଦେଇଥିଲେ । ୧୯୫୩ରୁ ୧୯୬୮ ଯାଏ ସେ ଭୂଦାନ ଗ୍ରାମଦାନ କାର୍ଯ୍ୟ କରିଥିଲେ ।

**ଶ୍ରୀ ରାମଚନ୍ଦ୍ର ପୁରୀ (ଗ୍ରାମ-ସମଲେଇପଦର, ଥାନା-ବରଗଡ଼, ଜି-ସମ୍ବଲପୁର)**

ଶ୍ରୀ ରାମଚନ୍ଦ୍ର ପୁରୀ ବଡ଼ କର୍ମୀ-ତାଲିମ୍ କେନ୍ଦ୍ରରେ ତାଲିମ୍ ପାଇ ନିଜ ଗ୍ରାମ ସମଲେଇପଦରକୁ କର୍ମକେନ୍ଦ୍ର କରି ସେଠାରେ ସସ୍ତ୍ରୀକ ଖଦୀ ଓ ରଚନାତ୍ମକ କାର୍ଯ୍ୟ କରୁଥିଲେ । ସେ ୧୯୪୨ରେ ଜେଲ ଗଲେ । ୧୯୫୨ରେ ସମ୍ବଲପୁର ଜିଲାରେ ୬ ଗୋପବନ୍ଧୁ ଚୌଧୁରୀ ଭୂଦାନ ପଦଯାତ୍ରା କରୁଥିଲା ବେଳେ ସେହି କାର୍ଯ୍ୟରେ ସେ ତାଙ୍କର ମୁଖ୍ୟ ସହାୟକ ଥିଲେ । ତାଙ୍କ ସ୍ତ୍ରୀ ଶ୍ରୀମତୀ ଅମୃତା ଦେବୀ ବଡ଼ 'ସେବା-

ଘରେ' ତାଲିମ୍ ପାଇଥିଲେ । ୧୯୪୨ରେ ତାଙ୍କ ସ୍ୱାମୀ ଜେଲ୍‌ରେ ଥିଲାବେଳେ ତାଙ୍କ ଅଞ୍ଚଳରେ ଭୀଷଣ ମନ୍ୱନ୍ତର । ଲୋକଙ୍କ ଦ୍ୱାରା ସୂତା କଟାଇ ସମ୍ବଲପୁରରେ ସୂତାକୁ ବିକି ସେଥିରୁ ଅର୍ଥରେ ସେ ଲୋକଙ୍କୁ ସେତେବେଳେ ସାହାଯ୍ୟ କରିଥିଲେ । ଅନୁଗୁଳରେ ତାଳଚେରରୁ ପଳାତକ ଶରଣାର୍ଥୀ ଶିବିରରେ ସେ ସେବା କରିଥିଲେ ।

## ଶ୍ରୀ ଫକୀର ମିଶ୍ର

ଜନ୍ମ ୨୫-୮-୧୯୨୦, ଗ୍ରାମ ବଳଭଦ୍ରପୁର ଶାସନ, ପୁରୀ ଜିଲ୍ଲା । ସେ ଉ:ପ୍ରା: ସ୍କୁଲ ସ୍ତରରୁ କୃତୀ ଛାତ୍ର ହୋଇ ବି.ଏ. ପଢୁଥିବା ଅବସ୍ଥାରେ ୧୯୪୧ରେ ପଢ଼ା ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ ।

ସେ ୧୯୪୨ ଆନ୍ଦୋଳନରେ ଜେଲ୍ ଗଲେ । ଜେଲରେ ସେ ୰ ଗୋପବନ୍ଧୁ ଚୌଧୁରୀଙ୍କୁ ଭେଟିଲେ ଓ ତାଙ୍କ ପ୍ରଭାବରେ ଗାନ୍ଧିଜୀଙ୍କ ରଚନାତ୍ମକ କର୍ମ ପ୍ରତି ଆକୃଷ୍ଟ ହେଲେ । ୧୯୪୪ରେ ଜେଲରୁ ବାହାରି ସେ ରଚନାତ୍ମକ କର୍ମରେ ଯୋଗଦେଇ (ବରୀ) ରାମଚନ୍ଦ୍ରପୁରରେ ମୌଳିକ ଶିକ୍ଷାକାର୍ଯ୍ୟରେ ମୁଖ୍ୟ କର୍ମୀ ହେଲେ । ସେହି-ଦିନଠୁଁ ସେ ୰ ଗୋପବାବୁ ଓ ଶ୍ରୀମତୀ ରମା ଦେବୀଙ୍କ ପ୍ରେରଣାରେ କାର୍ଯ୍ୟ କରିବାକୁ ଲାଗିଲେ । ସେ ମୌଳିକ ଶିକ୍ଷା କାର୍ଯ୍ୟରେ ଆଠବର୍ଷ ପର୍ଯ୍ୟନ୍ତ ରହିଥିବା ବେଳେ ସେମାନଙ୍କର ଓ ୰ ଆଚାର୍ଯ୍ୟ ମହାଶୟଙ୍କର ଦିଗ୍‌ଦର୍ଶନ ଅନୁସାରେ ନାନା ରଚନାତ୍ମକ କାର୍ଯ୍ୟ କଲେ ।

୧୯୫୨ରେ ୰ ଗୋପବାବୁଙ୍କ ଅଧିନାୟକତ୍ୱରେ ସେ ଭୂଦାନ କାର୍ଯ୍ୟରେ ଯୋଗଦେଲେ ଓ ନାନା ଅଞ୍ଚଳ ବୁଲି ଭୂଦାନ ଗ୍ରାମଦାନ କାର୍ଯ୍ୟ କଲେ । ସେ 'ଗ୍ରାମ-ସେବକ ପ୍ରେସ୍'ର ଓ 'ଗ୍ରାମସେବକ ପତ୍ରିକା'ର ପରିଚାଳନା କଲେ ଓ ତହିଁରେ ସମ୍ପାଦକ ଥିଲେ । ସେ 'ଗ୍ରାମସେବକ ସମବାୟ ପ୍ରେସ୍'ର ସଭାପତି ହେଲେ, 'ଉତ୍କଳ ଗାନ୍ଧୀ ସ୍ମାରକନିଧି'ର ସଭାପତି ହେଲେ ଓ ସାକ୍ଷୀଗୋପାଳରେ ଥିବା 'ଦରିଦ୍ର ନାରାୟଣ ସଂଘ'ର ମୁଖ୍ୟ ସମ୍ପାଦକ ଥିଲେ । ସେ କିଛିବର୍ଷ 'ସମାଜ' ସମ୍ବାଦପତ୍ରର ସହକାରୀ ସମ୍ପାଦକ ଥିଲେ ।

ତାଙ୍କ ପତ୍ନୀ ଶ୍ରୀମତୀ ଇନ୍ଦିରା ଦେବୀ (ପୁରୀ ଜିଲ୍ଲା) ଭିଙ୍ଗାରପୁରର ଜଣେ ପୁରାତନ ଜମିଦାରଙ୍କ କନ୍ୟା । ସେ ମଧ୍ୟ ସ୍ୱାମୀଙ୍କ ସଙ୍ଗେ ଜଣେ ସର୍ବୋଦୟ କର୍ମୀ ହେଲେ । ଉଭୟେ ୰ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀଙ୍କ ସଙ୍ଗେ ଘନିଷ୍ଠ ଭାବେ ସମ୍ପର୍କିତ ।

## ଶ୍ରୀ ରାଧାରତନ ଦାସ ( ରତନବାବୁ )

ଶ୍ରୀ ରାଧାରତନ ଦାସଙ୍କ ଜନ୍ମ ବାଲେଶ୍ୱର ଜିଲ୍ଲାର ସୁନହଟରେ । ତାଙ୍କ ପିତା ୰ ରାଧାରଞ୍ଜନ ଦାସ ଜମିଦାର, ଉକିଲ ଓ M.L.C. ଥିଲେ ଓ ତାଙ୍କ ମାତା ୰ ବୃନ୍ଦାବତୀ ଦେବୀ ୰ ଗୋପବାବୁଙ୍କର ଜଣେ ମାମୁଁଝିଅ ଭଉଣୀ ।

ଶ୍ରୀ ରାଧାରଞ୍ଜନ ଦାସ ବି.ଏ. ପାଶ୍ କରି ଆଇନ୍ (ଲ') ପଢ଼ୁଥିଲେ, ଗାନ୍ଧୀ ବିପ୍ଳବ ଓ ଜନସେବା ଆଡ଼କୁ ତାଙ୍କ ମନ ଡାକିଲା । ସେ ଆଇନ୍ ପଢ଼ା ଛାଡ଼ିଦେଇ ସ୍ୱ ଗୋପବନ୍ଧୁ ଚୌଧୁରୀଙ୍କ ପାଖକୁ ଗଲେ, ସର୍ବୋଦୟ କର୍ମୀ ହେଲେ ଓ ସର୍ବୋଦୟ କାର୍ଯ୍ୟରେ ତାଙ୍କ ସହିତ ଭାରତର ବିଭିନ୍ନ ପ୍ରଦେଶରେ ବୁଲିଲେ । ତାଙ୍କର ନବ-ବିବାହିତା ସ୍ତ୍ରୀ ଶ୍ରୀମତୀ ଶାନ୍ତି ଦେବୀ ମଧ୍ୟ ସର୍ବୋଦୟ କାର୍ଯ୍ୟ କଲେ । ଉଭୟେ କର୍ମୀ ହୋଇ କୋରାପୁଟର ରାୟଗଡ଼ା ଗଲେ ଓ ସେଠି କନ୍ଧଗାଁ ସକଳପଦରରେ ଆଶ୍ରମ କରି ରହି ଆଦିବାସୀ ଗ୍ରାମମାନ ବୁଲି ସେଠି ନାନା ପ୍ରକାର ଆଦିବାସୀ ସେବାକାର୍ଯ୍ୟ କଲେ । ତନ୍ମଧ୍ୟରେ ଥିଲା ଆଦିବାସୀଙ୍କ ଶୋଷଣ ଦୂରୀକରଣ, ନିରକ୍ଷରତା ଦୂରୀକରଣ, ଔଷଧ ବିତରଣ, କୁଷ୍ଠରୋଗୀଙ୍କୁ ଇଞ୍ଜେକ୍ସନ୍ ଦେବା ଓ ତାଙ୍କ ସେବା କରିବା, ଦାରିଦ୍ର୍ୟ ଅନୁନ୍ନତ ଅବସ୍ଥା ଆଦିର ଦୂରୀକରଣ ପାଇଁ ବିବିଧ ଉଦ୍ୟମ, ଇତ୍ୟାଦି । ୧୯୫୦ରେ ରାୟଗଡ଼ା ଅଞ୍ଚଳରେ ଦୁର୍ଭିକ୍ଷ ବେଳେ ସେମାନେ ସାହାଯ୍ୟ କାର୍ଯ୍ୟ କରିଥିଲେ ଓ ୧୯୫୧-୫୨ରେ ଗୁଣୁପୁର ଅଞ୍ଚଳରେ ହୋଇଥିବା ଭୂ-ସତ୍ୟାଗ୍ରହ ଆନ୍ଦୋଳନ ବେଳେ ଶ୍ରୀ ରଞ୍ଜନ ଦାସ ମଧ୍ୟ ତହିଁରେ ଜଣେ ନେତା ଥିଲେ । ସେ କୋରାପୁଟରେ ଭୂଦାନ-ଗ୍ରାମଦାନ ଆନ୍ଦୋଳନରେ ଜଣେ ମୁଖ୍ୟ କର୍ମୀ ହୋଇଥିଲେ । ସେ 'ଉତ୍କଳ ସର୍ବୋଦୟ ମଣ୍ଡଳ'ର ଓ 'ଉତ୍କଳ ଗାନ୍ଧୀ ସ୍ମାରକନିଧି'ର ସମ୍ପାଦକ ଥିଲେ ।

ଶ୍ରୀ ରଞ୍ଜନ ଦାସ ଓ ଶ୍ରୀମତୀ ଶାନ୍ତି ଦେବୀ ରାୟଗଡ଼ା ସହରରେ ଗୋଟିଏ ଗୃହାଶ୍ରମ କରି ସେଠାରେ ବିଭିନ୍ନ ଗ୍ରାମର ପୁଞ୍ଜିଏ ଆଦିବାସୀ ହରିଜନ ବାଳକାଙ୍କୁ ରଖି ସେମାନଙ୍କର ଯତ୍ନ ନେଉଥିଲେ, ସେମାନଙ୍କୁ ସଙ୍ଗୀତ, ସିଲେଇ ଆଦି ଶିଖାଇବା ବନ୍ଦୋବସ୍ତ କରିଥିଲେ ଓ ସ୍କୁଲରେ ବିଭିନ୍ନ ଶ୍ରେଣୀରେ ସେମାନଙ୍କୁ ପଢ଼ାଇବା ସଙ୍ଗେ ସଙ୍ଗେ ଘରେ ପଢ଼ାଉଥିଲେ ।

କେତେବର୍ଷ ରାୟଗଡ଼ାରେ ରହିଲା ପରେ ସେମାନେ ଗୁଣୁପୁରରେ ରହି ଆଦିବାସୀ ସେବାକାର୍ଯ୍ୟ କରୁଛନ୍ତି ଓ ସେଥିଲାଗି ସେଠି 'ସେବା ସମାଜ' ବୋଲି ଗୋଟିଏ ସଂସ୍ଥା ଗଢ଼ିଛନ୍ତି ।

**ଶ୍ରୀ ମହମ୍ମଦ ବାକୀ (ଜନ୍ମ ୧୯୧୦, ନବରଙ୍ଗପୁର, ଜି-କୋରାପୁଟ)**

ଶ୍ରୀ ମହମ୍ମଦ ବାକୀ ୧୯୩୦ ଆନ୍ଦୋଳନ ବେଳେ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ହୋଇ ସ୍କୁଲ ଛାଡ଼ିଲେ । ୧୯ ୮ରେ ଜୟପୁର ପାଖ ନୂଆପୁଟ୍‌ରେ କଂଗ୍ରେସ କର୍ମୀ ତାଲିମ୍ ଶିବିର ହେଲା, ତହିଁରେ ସେ ଯୋଗ ଦେଇଥିଲେ । ୧୯୪୧ରେ ଗାନ୍ଧିଜୀଙ୍କୁ ଦେଖିବାକୁ ୱାର୍ଦ୍ଧା ଗଲେ । ସେ କହନ୍ତି, ଗାନ୍ଧିଜୀ ତାଙ୍କୁ କହିଲେ "ସତ୍ୟାଗ୍ରହରେ ଲାଠି ଖାଅ, ଜେଲ୍ ଯାଅ, ଦେଶ ପାଇଁ ବଳିଦାନ ଦିଅ, ମତେ କଣ ଦେଖିବାକୁ ଆସିଛ ?"

ସେଠୁ ନିଜ ଜିଲାକୁ ଫେରି ସେ ୨୦-୧-୧୯୪୧ରେ ସତ୍ୟାଗ୍ରହ ଆନ୍ଦୋଳନ କରି ଛଅମାସ ଜେଲ୍ ଗଲେ, ଆସି ପୁଣି ସତ୍ୟାଗ୍ରହ କଲେ ଓ ୪ ମାସ ଜେଲ୍ ଗଲେ। ୧୯୪୨ ଆନ୍ଦୋଳନରେ ଯୋଗଦେଲେ, ତାଙ୍କୁ ୭ ବର୍ଷ ଜେଲ୍ ଦଣ୍ଡ ହେଲା କିନ୍ତୁ ସେ ସାଢ଼େ ତିନିବର୍ଷ ଜେଲ୍‌ଦଣ୍ଡ ଭୋଗିଲେ ଓ ତାହାପରେ ସିକ୍ୟୁରିଟି ପ୍ରିଜନର ହୋଇ ଆଉ ଛ'ମାସ ଜେଲ୍‌ରେ ରହିଲେ।

ସେ ୧୯୫୪-୫୫ରେ କୋରାପୁଟ ଜିଲାରେ ଭୂଦାନ ଗ୍ରାମଦାନ କାର୍ଯ୍ୟରେ ଯୋଗଦେଲେ, ତହିଁରେ ସେ କୋରାପୁଟ ଜିଲାରେ ମୁଖ୍ୟ କର୍ମୀ ହୋଇ କାର୍ଯ୍ୟ କରି ଆସୁଛନ୍ତି ଓ ବିବିଧ ରଚନାତ୍ମକ କାର୍ଯ୍ୟ କରୁଛନ୍ତି। ଗ୍ରାମଦାନୀ ଗ୍ରାମର ସଗଠନ, ଶାନ୍ତିସେନା ସଗଠନ, ଗୋହତ୍ୟା ନିରୋଧ, ନିଶା ନିବାରଣ ଆଦି ତାର ଅନ୍ତର୍ଭୁକ୍ତ।

୰ ଗୋପବନ୍ଧୁ ଚୌଧୁରୀଙ୍କୁ ସେ ପ୍ରଥମେ ୧୯୩୮ରେ ନୂଆପୁଟ ତାଲିମ ଶିବିର ହେଲାବେଳେ ଦେଖିଥିଲେ, ସେ ସତ୍ୟାଗ୍ରହରେ ମିଶିଲା ପରେ ତାଙ୍କ ସଙ୍ଗେ ସମ୍ପର୍କ ରଖିଲେ, ୧୯୪୨ ଆନ୍ଦୋଳନରେ ଜେଲ୍ ଯାଇ ଜେଲ୍‌ରେ ତାଙ୍କ ସଙ୍ଗେ ଥିଲେ ଓ ଭୂଦାନ ଆନ୍ଦୋଳନରେ ଯୋଗଦେଲା ପରେ ତାଙ୍କ ସଙ୍ଗେ ଅଧିକତର ସମ୍ପର୍କିତ ହୋଇଥିଲେ।

**ଶ୍ରୀ ଋଷି ବେହେରା** (ଜନ୍ମ-୧୯୧୪, ଗ୍ରାମ-କବାଟବନ୍ଧ, ଢେଙ୍କାନାଳ ରାଜ୍ୟ, ଏବେ କଟକ ଜିଲାରେ)

ଶ୍ରୀ ଋଷି ବେହେରା ୧୯୩୨ରେ ମ୍ୟାଟ୍ରିକୁଲେସନ ପାଶ୍ କରି କଟକ ଇଞ୍ଜିନିଅରିଂ ସ୍କୁଲରେ ପଢ଼ିଲେ, ପାଞ୍ଚମାସ ପରେ ପଢ଼ା ଛାଡ଼ି ମୌଳିକ ଶିକ୍ଷା ସ୍କୁଲରେ ତାଲିମ୍ ପାଇବା ପାଇଁ ଦରଖାସ୍ତ ଦେଲେ, ଗୃହୀତ ହେଲେ ଓ ତାଲିମ ପାଇ (ବାରି) ଅନାସିପୁରରେ ୧୯୩୯ରୁ ୧୯୪୨ ଯାଏ ଶିକ୍ଷକ ହେଲେ। ସେହି ସମୟରୁ ସେ ୰ ଗୋପବାବୁଙ୍କ ପ୍ରଭାବରେ ପଡ଼ିଲେ ଓ ତାଙ୍କ ଆଦର୍ଶ ଅନୁସରଣ କଲେ। ୧୯୪୨ରେ ବାରି କାଇମାଟିଆରେ ଗୁଳିକାଣ୍ଡ ହେଲାପରେ ସେ ଲୋକମାନଙ୍କର ନେତୃତ୍ୱ ନେଇଥିଲେ, ଗିରଫ ହୋଇ ଜେଲ୍ ଗଲେ। ୧୯୪୪ରେ ସେ ଜେଲ୍‌ରୁ ବାହାରି ଫେରି ୰ ଗୋପବାବୁଙ୍କ ନିର୍ଦ୍ଦେଶରେ ପୁଣି ଅନାସିପୁର ମୌଳିକ ସ୍କୁଲ ଆରମ୍ଭ କରିଦେଲେ ଓ ୧୯୪୫ ଶେଷଯାଏ ସେଠି ସେ ଶିକ୍ଷକ ହୋଇ ରହିଲେ।

୧୯୪୬ରେ ସେ ଅନୁଗୁଳ ଗଲେ ଓ ଶ୍ରୀମତୀ ମାଳତୀ ଚୌଧୁରୀ ଓ ୰ସାରଙ୍ଗଧର ଦାସଙ୍କ ନିର୍ଦ୍ଦେଶରେ ଦୁଃସ୍ଥ ଗଡ଼ଜାତ ପ୍ରଜା ଆନ୍ଦୋଳନକାରୀ କର୍ମୀମାନଙ୍କର ୧୮ଟି ପିଲାଙ୍କୁ ନେଇ ଗୋଟିଏ ସ୍କୁଲ ଆରମ୍ଭ କଲେ। ୧୯୪୬ରୁ ଏ ପର୍ଯ୍ୟନ୍ତ ସେ ଅନୁଗୁଳରେ ସେହି "ବାଜି ରାଉତ ଛାତ୍ରାବାସ"ରେ ରହିଛନ୍ତି ଓ 'ଉତ୍କଳ ନବଜୀବନ ମଣ୍ଡଳ' ଓ 'ଉତ୍କଳ ଗାନ୍ଧୀ ସ୍ମାରକନିଧି' ତରଫରୁ ଯେଉଁ ମୌଳିକ ଶିକ୍ଷା, ସେବାକାମ,

ଅସ୍ପୃଶ୍ୟତା ନିବାରଣ ଓ ଆଦିବାସୀ ସେବା ଆଦି କାର୍ଯ୍ୟ ହୋଇ ଆସିଛି ତାହା ସହିତ ସଂପୃକ୍ତ ଅଛନ୍ତି ।

୧୯୬୮ରୁ ଏ ପର୍ଯ୍ୟନ୍ତ ସେ 'ଉତ୍କଳ ନବଜୀବନ ମଣ୍ଡଳ'ର ସାଧାରଣ ସମ୍ପାଦକ, 'ବାଜି ରାଉତ ଛାତ୍ରାବାସ'ର ସଭାପତି ଓ ଚମ୍ପତିମୁଣ୍ଡାରେ ଥିବା 'ଜୀବନ ବିଦ୍ୟାଳୟ'ର ସଭାପତି ଅଛନ୍ତି ।

## ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି (ଜନ୍ମ ୧୯୧୪, ଗରଡ଼ପୁର, କେନ୍ଦ୍ରାପଡ଼ା)

ହାଇସ୍କୁଲର ଏକାଦଶ ଶ୍ରେଣୀରୁ ପଢ଼ା ଛାଡ଼ି ସେ କଂଗ୍ରେସରେ ଯୋଗ ଦେଇଥିଲେ । ୰ ଗୋପବାବୁ ଓ ୰ ଆଚାର୍ଯ୍ୟ ମହାଶୟଙ୍କୁ ଦେଖି ସେ ବିଶେଷଭାବେ ପ୍ରଭାବିତ ହୋଇଥିଲେ । କଂଗ୍ରେସ କାର୍ଯ୍ୟ କଲାବେଳେ ସେ ଅନେକଥର ୰ ଗୋପବାବୁଙ୍କୁ ଦେଖିଥିଲେ । ୰ ଗୋପବାବୁ ବରୀରେ କର୍ମକେନ୍ଦ୍ର କରିଥିଲା ବେଳେ କେନ୍ଦ୍ରାପଡ଼ା ତାଙ୍କ ଗଲାବେଳେ କେତେଥର ତାଙ୍କ ଘରେ ରହିଥିଲେ । ୧୯୩୦ରୁ ୧୯୫୩ ମଧ୍ୟରେ ସେ କଟକ ଜିଲ୍ଲା କଂଗ୍ରେସ କମିଟିର ଓ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ଥିଲେ, କେନ୍ଦ୍ରାପଡ଼ା ଲୋକାଲ୍ ବୋର୍ଡ଼ର ଭାଇସ ଚେଆରମ୍ୟାନ୍ ଥିଲେ, ତାପରେ ତା'ର ଚେଆରମ୍ୟାନ ଥିଲାବେଳେ ଇସ୍ତଫା ଦେଇ ୧୯୫୩ରେ ଭୂଦାନ ଆନ୍ଦୋଳନରେ ଯୋଗ ଦେଇଥିଲେ ଓ ଉକ୍ତିରେ ଗୋପବାବୁ ଓ ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗେ କାର୍ଯ୍ୟ କରିଥିଲେ । ୰ ଗୋପବାବୁଙ୍କ ନିର୍ଦ୍ଦେଶରେ ସେ କିଛୁଦିନ 'ଗ୍ରାମସେବକ ସମବାୟ ପ୍ରେସ'ର ସମ୍ପାଦକ ଥିଲେ ।

୰ ଆଚାର୍ଯ୍ୟ ମହାଶୟଙ୍କ ଜୀବନର ଶେଷଭାଗରେ ତାଙ୍କର ଅସୁସ୍ଥତା ବେଳେ ସେ ଏକନିଷ୍ଠ ଭାବେ ତାଙ୍କର ସେବା ଶୁଶ୍ରୂଷା କରୁଥିଲେ ଓ କଟକ ଯୋଗୀଆ ସାହି ଆଶ୍ରମରେ ତାଙ୍କ ପାଖେ ଛାଇ ପରି ରହିଥିଲେ ।

## ଶ୍ରୀ ଶକ୍ତି ଶେଖର ଦାସ (ଜନ୍ମ ୧୯୧୦, କଲ୍ୟାଣପୁର, ଯାଜପୁର ସବ୍‌ଡିଭିଜନ)

କଲେଜ-ଛାତ୍ର ଥିଲାବେଳେ ୧୯୪୨ ଆନ୍ଦୋଳନରେ ଶ୍ରୀ ଶକ୍ତିଶେଖର ଦାସ ଆନ୍ଦୋଳନରେ ଯୋଗଦେଇ ଜେଲ୍ ଗଲେ ଓ ଜେଲ୍‌ରେ ୰ ଗୋପବନ୍ଧୁ ଚୌଧୁରୀଙ୍କୁ ଦେଖି ଗାନ୍ଧୀବାଦୀ ରଚନାତ୍ମକ କର୍ମ ପ୍ରତି ଆକୃଷ୍ଟ ହେଲେ । ଜେଲ୍‌ରୁ ଫେରି ସେ ସେବାଗ୍ରାମ ଗଲେ ଓ ସେଠି କର୍ମୀ ତାଲିମ୍ ନେଇ ବରୀ ଆସିଲେ । ସେ (ବରୀ) ରତଲାଙ୍ଗରେ ଗୋଟିଏ ଗ୍ରାମସେବା କେନ୍ଦ୍ର ସ୍ଥାପନ କରି ସେଠି କିଛୁକାଳ ସେହି କାର୍ଯ୍ୟ କଲେ । ତାହାପରେ ସେ (ବରୀ) ରାମଚନ୍ଦ୍ରପୁରରେ ଉଚ୍ଚତର-ମୌଳିକ ଶିକ୍ଷା ବିଭାଗରେ ଶିକ୍ଷକ ହେଲେ ।

ତାଙ୍କ ସ୍ତ୍ରୀ ଶ୍ରୀମତୀ ଶକୁନ୍ତଳା ଦେବୀ ପିଲାଦିନୁଁ ବରୀ ସେବାଘରେ ଶ୍ରୀମତୀ ରମା ଦେବୀଙ୍କ ପାଖେ ରହି ଶିକ୍ଷା ପାଇଥିଲେ ।

ଭୂଦାନ-ଗ୍ରାମଦାନ କାର୍ଯ୍ୟ ଆରମ୍ଭ ହେଲା ପରେ କଳାହାଣ୍ଡି ଜିଲ୍ଲାରେ ସେହି କାର୍ଯ୍ୟ କରିବା ଓ କରାଇବା ପାଇଁ ତାଙ୍କୁ ଦାୟିତ୍ୱ ଦିଆଗଲା । ତାହାପରେ ୰ ଆଣ୍ଣା ସାହେବ ସହସ୍ରବୁଦ୍ଧେ ରହିବାରୁ ସେ କୋରାପୁଟ ଜିଲ୍ଲାରେ ସେହି କାର୍ଯ୍ୟ କଲେ ।

ସେ କାର୍ଯ୍ୟ ପରେ ସେ ଖଦୀ-କମିସନ୍‌ର କାର୍ଯ୍ୟ କଲେ ।

**ଶ୍ରୀ ସୁଧାଂଶୁ ଶେଖର ଦାସ**

**(ଗ୍ରାମ-ନାମୋ, ଥାନା-ଜଳେଶ୍ୱର, ଜିଲା-ବାଲେଶ୍ୱର)**

ବି. ଏ. ପାଶ କରି ସାରି ଶ୍ରୀ ସୁଧାଂଶୁ ଶେଖର ଦାସ ଓ୍ୱାର୍ଦ୍ଧାରେ 'ହିନ୍ଦୁସ୍ତାନୀ ତାଲିମ୍ ସଂଘ'ରେ ତାଲିମ୍ ନେଲେ ଓ ୧୯୫୦ରେ ଗୋଟିଏ ମୌଳିକ ସ୍କୁଲର ପ୍ରଧାନ ଶିକ୍ଷକ ହେଲେ । ୧୯୫୧'ରେ ସେ ଭୂଦାନ ଅନ୍ଦୋଳନରେ ଯୋଗ ଦେଲେ ଓ ବାଲେଶ୍ୱର ଜିଲ୍ଲାରେ ଭୂଦାନ କାର୍ଯ୍ୟ କରିବାକୁ ଲାଗିଲେ ।

ସେ 'ଉତ୍କଳ ସର୍ବୋଦୟ ମଣ୍ଡଳ'ର ସମ୍ପାଦକ ଥିଲେ, ପରେ ସରକାରୀ ଭୂଦାନ ଯଜ୍ଞ ସମିତିର ସଭ୍ୟପତି ହୋଇଥିଲେ ।

**୰ ପଦ୍ମନାଭ ସାହୁ (ଗ୍ରାମ-ଛତ୍ରପଡ଼ା, ଯାଜପୁର, କଟକ)**

୰ ଗୋପବନ୍ଧୁ ଚୌଧୁରୀ ବସ୍ତିରେ ଥିଲାବେଳେ ୰ ପଦ୍ମନାଭ ସାହୁ ତାଙ୍କ ସଙ୍ଗେ ପରିଚିତ ହୋଇଥିଲେ ଓ ତାଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ସେ ତାଙ୍କ ଅଞ୍ଚଳରେ କଂଗ୍ରେସ ସଙ୍ଗଠନ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ୧୯୪୨ରେ ଯାଜପୁର କଚେରି ଘେରାଉ କାର୍ଯ୍ୟରେ ସେ ନେତୃତ୍ୱ ନେଇଥିଲେ, ତାହାପରେ ଲୁଚିଛପି ଆନ୍ଦୋଳନ ଚଳାଇଥିଲେ, ୯୪୪ରେ ଧରା ପଡ଼ିଲେ ଓ ଜେଲ ଗଲେ ।

ସେ ନିଜ ଗାଁରେ ମୌଳିକ ଶିକ୍ଷା, ଖଦୀ କାମ ଆଦି କାର୍ଯ୍ୟ କରୁଥିଲେ ଓ ସେହି କାର୍ଯ୍ୟରେ ତାଙ୍କ ସ୍ତ୍ରୀ ମଧ୍ୟ ଯୋଗ ଦେଇଥିଲେ ।

୧୯୪୬ରୁ ୧୯୫ ଯାଏ ସେ ଓଡ଼ିଶା ବିଧାନସଭାର ସଭ୍ୟ ଥିଲେ ।

**ଶ୍ରୀ ବୃନ୍ଦାବନ ଜେନା (ଗ୍ରାମ-ଗ୍ରେଡ଼ୀ, ମଙ୍ଗଳପୁର, କେନ୍ଦ୍ରାପଡ଼ା)**

ଶ୍ରୀ ବୃନ୍ଦାବନ ଜେନା ୧୯୪'ରେ ସ୍କୁଲ ପଢ଼ା ଛାଡ଼ି ଆଂଦୋଳନରେ ଯୋଗଦେଇ ଜେଲ ଗଲେ । ଜେଲରୁ ଖଲାସ ହୋଇ ସେ ସେବାଗ୍ରାମରେ ଖଦୀ ତାଲିମ ନେଲେ ଓ 'ଉତ୍କଳ ଖଦୀ ମଣ୍ଡଳ' କାର୍ଯ୍ୟ କଲେ ।

ପରେ ସେ ଭୂଦାନ-ଗ୍ରାମଦାନ ଆଂଦୋଳନରେ ଯୋଗଦେଇ କୋରାପୁଟରେ ୰ ଆଣ୍ଣା ସାହେବ ସହସ୍ରବୁଦ୍ଧେଙ୍କ 'ନିର୍ମାଣ' ସଂସ୍ଥାରେ ନିଯୁକ୍ତି ପାଇଲେ ଓ ନିର୍ମାଣ କାର୍ଯ୍ୟରେ ବଡ଼ ବଡ଼ ଦାୟିତ୍ୱ ତୁଲାଇଲେ ।

ସେ କୋରାପୁଟର ଜୟପୁରରେ 'ସର୍ବୋଦୟ ସମିତି' ଗଢ଼ି ତାର ପରିଚାଳନା କରୁଛନ୍ତି ।

**ଶ୍ରୀ ଅଲେଖ ପାତ୍ର**

ସେ ୧୯୪୨ ଆନ୍ଦୋଳନରେ ଜେଲ ଯାଇଥିଲେ । ଜେଲରୁ ଖଲାସ ହୋଇ ସେ ସେବାଗ୍ରାମ ଯାଇ ତାଲିମ ପାଇଲେ, ଫେରି ଆସି ୰ ଗୋପବାବୁ ଓ ୰ଆଚାର୍ଯ୍ୟ ମହାଶୟଙ୍କ ପ୍ରେରଣାରେ ବଲାଙ୍ଗିରର 'କନ୍‌ସର୍'ରେ 'ସ୍ୱାବଲମ୍ବୀ' କର୍ମୀ କେନ୍ଦ୍ର କରି ସେ ଅଞ୍ଚଳରେ ରଚନାତ୍ମକ କାର୍ଯ୍ୟ କଲେ । ସେ ଭୂଦାନ ଆନ୍ଦୋଳନରେ ଯୋଗ-ଦେଲେ ଓ ସେ ଅଞ୍ଚଳରେ ଭୂଦାନ ଗ୍ରାମଦାନ ଆଦି କାର୍ଯ୍ୟ କଲେ । ସେତେବେଳେ ୰ ଗୋପବାବୁ ସେ ଅଞ୍ଚଳକୁ ଯାଇଥିଲେ ।

'୧୯୬୪ ରୁ ୧୯୭୦ ପର୍ଯ୍ୟନ୍ତ ସେ ସମ୍ବଲପୁର ଜିଲ୍ଲାରେ ଗ୍ରାମଦାନ ପୁନର୍ନିର୍ମାଣ କାର୍ଯ୍ୟ କଲେ । ସେ ଆଦର୍ଶ ଗୋପାଳନ ଓ ଖଦୀ-ଗ୍ରାମୋଦ୍ୟୋଗ ଦ୍ୱାରା ସ୍ୱାବଲମ୍ବୀ ହେବା କାର୍ଯ୍ୟ କଲେ । ସେ ବରଗଡ଼ ସବ୍‌ଡିଭିଜନ୍ (ସମ୍ବଲପୁର)ର ପାଇକମାଳ ଅଞ୍ଚଳରେ ପର୍ବତ ଉପରେ ଥିବା 'ନରସିଂହନାଥ'ରେ ଗୋଟିଏ ରେଜିଷ୍ଟ୍ରିଭୁକ୍ତ ଅନୁଷ୍ଠାନ ତରଫରୁ 'ନିସର୍ଗ ନିବାସ' ଆଶ୍ରମ ପରିଚାଳନା କରୁଛନ୍ତି ।

**ଶ୍ରୀ ଜୟକୃଷ୍ଣ ମହାନ୍ତି**

ସେ ୧୯୪୨ରେ କଲେଜ ଛାଡ଼ି ଜେଲ ଗଲେ । ସେଦିନୁଁ ସେ ୰ ଗୋପବାବୁ, ଶ୍ରୀମତୀ ରମା ଦେବୀ ଆଦିଙ୍କ ସଙ୍ଗେ ସମ୍ପୃକ୍ତ । ତାଙ୍କ ସ୍ତ୍ରୀ (ବରୀ) ରଡଲାଂର ଶ୍ରୀମତୀ କିରଣଲେଖା ମହାନ୍ତି 'ବରୀ ସେବାଘରେ' ୪ ବର୍ଷ ଥିଲେ, ୧୯୪୨ ଆନ୍ଦୋଳନରେ ଜେଲ ଯାଇଥିଲେ ଓ ଅନୁକୂଳ 'ବାଜି ରାଉତ ଛାତ୍ରାବାସ'ର ପରିଚାଳନାରେ ସାହାଯ୍ୟ କରିଥିଲେ । ପରିବାରଟି ଗାନ୍ଧୀବାଦୀ । ଶ୍ରୀ ଜୟକୃଷ୍ଣ ମହାନ୍ତି ଓଡ଼ିଶା ବିଧାନସଭାର ସଭ୍ୟ ଥିଲେ, '୧୯୭୭ରେ ତାଙ୍କ ସ୍ତ୍ରୀ ମଧ୍ୟ ଓଡ଼ିଶା ବିଧାନସଭାର ସଭ୍ୟା ଥିଲେ । ଶ୍ରୀ ଜୟକୃଷ୍ଣ ମହାନ୍ତି 'ଉତ୍କଳ ଖଦୀ ମଣ୍ଡଳ'ର କର୍ମୀ ଥିଲେ ଓ 'ଖଦୀ ବୋର୍ଡ଼'ର ସଭାପତି ଥିଲେ । ଏବେ ଭୁବନେଶ୍ୱରରେ ରହନ୍ତି ଓ ରଚନାତ୍ମକ କର୍ମ କରନ୍ତି ।

**୰ ଗଙ୍ଗା ନାରାୟଣ ଦାସ (ଗ୍ରାମ-ଝାଡ଼ପିପ୍‌ପଳ, ଜି-ବାଲେଶ୍ୱର)**

ସେ କଂଗ୍ରେସରେ ଯୋଗ ଦେଇଥିଲେ ଓ ଗାନ୍ଧୀବାଦୀ କର୍ମୀ ଥିଲେ । ସେ 'ଗାନ୍ଧୀ ସେବା ସଂଘ' ଅଧୀନରେ ନିଜ ଗ୍ରାମ ଝାଡ଼ପିପ୍‌ପଳରେ ଆଶ୍ରମ କରି ସେଠି ଓ ସେ ଅଞ୍ଚଳରେ ବିବିଧ ରଚନାତ୍ମକ କାର୍ଯ୍ୟ କରୁଥିଲେ । ୧୯୪୨ ଆନ୍ଦୋଳନରେ ସେ ଜେଲ ଯାଇଥିଲେ । ଭୂଦାନ ଆନ୍ଦୋଳନ ଆରମ୍ଭ ହେବାରୁ ତହିଁରେ ସେ ଯୋଗ ଦେଇଥିଲେ ।

**ଶ୍ରୀ ପରମାନନ୍ଦ ପଟ୍ଟନାୟକ**

ସେ 'ରଇପୁର'ରେ କର୍ମକେନ୍ଦ୍ର କରି 'ଗାନ୍ଧୀ ସେବା ସଂଘ' କର୍ମୀ ଭାବରେ ସେହି କେନ୍ଦ୍ରରେ ଖଦୀ ଆଦି ରଚନାତ୍ମକ କାର୍ଯ୍ୟ କରୁଥିଲେ । ତାଙ୍କ ସ୍ତ୍ରୀ

ଶ୍ରୀମତୀ ଗଙ୍ଗା ଦେବୀ ବଣ୍ଟି 'ସେବାଘରେ' ତାଲିମ ପାଇ ତାଙ୍କ ସଙ୍ଗେ ସେବା କାର୍ଯ୍ୟ କଲେ । ପରେ ଶ୍ରୀ ପଟ୍ଟନାୟକ ଭୂଦାନ କାର୍ଯ୍ୟରେ ଯୋଗଦେଲେ ।

**ମୌଳିକ ଶିକ୍ଷା ସ୍କୁଲମାନଙ୍କ ଶିକ୍ଷକ କଣ୍ଠପନ୍ଥୀ**

*'ମୌଳିକ ଶିକ୍ଷା' ବିଷୟରେ ପୂର୍ବେ କୁହାଯାଇଛି । ଯେଉଁମାନେ ଏହାର ଆରମ୍ଭ ବେଳୁ ୧୯୩୯ରୁ ଏଥିରେ ଶିକ୍ଷକ ହେଲେ, ୧୯୪୧ରୁ 'ହିନ୍ଦୁସ୍ତାନୀ ମୌଳିକ ଶିକ୍ଷା ପରିଷଦ' ଅଧୀନରେ ମଧ୍ୟ ଶିକ୍ଷକ ହେଲେ, ୧୯୪୨ରେ ଜେଲ୍ ଗଲେ, ୧୯୪୪ରେ ଜେଲ୍‌ରୁ ଫେରି ପୁଣି ତହିଁରେ ଶିକ୍ଷକ ହୋଇଥିଲେ ଯେପରି କେତେ-ଜଣଙ୍କ ସାମାନ୍ୟ ପରିଚୟ ତଳେ ଦିଆଗଲା—

**ଶ୍ରୀ କୃଷ୍ଣଚନ୍ଦ୍ର ସାହୁ** (ଗ୍ରାମ-ଅଢ଼ାଳପଙ୍କ, ଜି-ବାଲେଶ୍ୱର)

**ଶ୍ରୀ ଗୋପୀନାଥ ଦାସ** (ଗ୍ରାମ-ମଲ୍ଲଗା, ଥାନା-ଗୋପ, ଜି-ପୁରୀ)

**୰ ମଧୁସୂଦନ ମିଶ୍ର** (ଗ୍ରାମ-ନାଲିବର, ଜି-କଟକ)

**ଶ୍ରୀ ରାମଚନ୍ଦ୍ର ମିଶ୍ର** (ଜନ୍ମ-୧୯୦୩, ମେ' ୩ ତାରିଖ, ଗ୍ରା-ରସୁଲପୁର, ଜି-କଟକ)

ଶ୍ରୀ ରାମଚନ୍ଦ୍ର ମିଶ୍ର ମୌଳିକ ସ୍କୁଲ ଶିକ୍ଷକ ହେବା ପୂର୍ବରୁ ଯାଜପୁର ଅଞ୍ଚଳରେ ଖଣ୍ଡିତର ଗ୍ରାମରେ ଉଃ ପ୍ରାଃ ସ୍କୁଲ ଶିକ୍ଷକ ଥିଲେ, ୧୯୩୦ରେ କଂଗ୍ରେସରେ ମିଶିଲେ, ସତ୍ୟାଗ୍ରହୀ ଭାବେ ପ୍ରତିଜ୍ଞା ପତ୍ର ଦସ୍ତଖତ କଲେ ଓ ତେଣୁ ସ୍କୁଲରୁ ସସ୍‌ପେଣ୍ଡ ହେଲେ । ସେ ୰ ଗୋପବାବୁଙ୍କୁ ଦେଖା କରିବାରୁ ସେ ତାଙ୍କୁ ଯାଜପୁରରେ କଂଗ୍ରେସ ସଂଯୋଜକ କାର୍ଯ୍ୟ କରିବାକୁ କହିଲେ ଓ ସେ କଂଗ୍ରେସ କାର୍ଯ୍ୟ କରୁଥିଲେ । ସେ ୧୯୩୮ରେ ଡେଲାଂ ସମ୍ମିଳନୀରେ କାର୍ଯ୍ୟ କରିଥିଲେ । ୰ ଗୋପବାବୁଙ୍କ ନିର୍ଦ୍ଦେଶରେ ସେ ବିବିଧ ରଚନାତ୍ମକ କାର୍ଯ୍ୟ କରୁଥିଲେ । ସେ କହନ୍ତି ଯେ ସେ ଅଭାବଗ୍ରସ୍ତ ଥିବାରୁ ୰ ଗୋପବାବୁ ଓ ଶ୍ରୀମତୀ ରମା ଦେବୀ କେତେଥର ତାଙ୍କ ପାଇଁ ଚାଉଳ ଆଦି ନେଇ ତାଙ୍କ ପାଖକୁ ଯାଇଛନ୍ତି ଓ ତାଙ୍କୁ ସାହାଯ୍ୟ କରିଛନ୍ତି ।

**ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତି** (ଜନ୍ମ-୧୯୦୫, ନଭେମ୍ବର ୨୭, ଗ୍ରାମ-ବଣ୍ଟି, ଜି-କଟକ)

ମୌଳିକ ସ୍କୁଲ ଶିକ୍ଷକ ହେବା ପୂର୍ବରୁ ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତି ଏମ୍.ଇ. ପାଶ କରି ୧୯୨୫ ପର୍ଯ୍ୟନ୍ତ ଟ୍ରାଇନେଣ୍ଟ ସ୍କୁଲ ଶିକ୍ଷକ ହୋଇଥିଲେ । ସେ କଂଗ୍ରେସର ସମର୍ଥକ ଥିଲେ ଓ ତାଙ୍କ ଗ୍ରାମର ୰ ଗୋବିନ୍ଦ ପ୍ରଧାନ ଆଦିଙ୍କ ସହିତ ୧୯୩୦ ଜାନୁଆରୀ ୨୬ରେ ତାଙ୍କ ଗ୍ରାମରେ ଭାରତର ସ୍ୱାଧୀନତା ଘୋଷଣା କରି କଂଗ୍ରେସ ପତାକା ଟେକି ଥିଲେ । ସେ ଇଂରେଜଙ୍କରେ ତାଡ଼ି ଟେକ ବସାଇବା, ମଦ ପିଇବା ନିଶା ସେବନ କରିବା ଆଦି ବନ୍ଦ କରାଇବା ପାଇଁ ପ୍ରଚାର କରୁଥିଲେ । ୧୯୩୮ରେ ମହାତ୍ମାଙ୍କ ପଦଯାତ୍ରାରେ ଆସିବେ ବୋଲି ତାଙ୍କ ରହଣି ବ୍ୟବସ୍ଥା ପାଇଁ ୰ ଗୋବିନ୍ଦ ପ୍ରଧାନ ଓ ସେ ଖୁବ୍ ଅଧିକ କରୁଥିଲେ ।

ତାହାପରେ ୰ ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ରମା ଦେବୀ ଅସି ବରୀରେ ରହୁଥିବାରୁ ସେମାନଙ୍କ ସଙ୍ଗେ ତାଙ୍କର ସମ୍ପର୍କ ବଢ଼ିଲା । ସେମାନେ ସେ ଅଞ୍ଚଳରେ ହରିଜନ ସେବା କରିବାରୁ ସେ ମଧ୍ୟ ତହିଁରେ ଯୋଗଦେଲେ । ଫଳରେ ତାଙ୍କ ବନ୍ଧୁବାନ୍ଧବ ତାଙ୍କୁ ଓ ତାଙ୍କ ପରିବାରଙ୍କୁ ଜାତିରୁ ଅଟକ କଲେ; ତାଙ୍କୁ ପୁରୋହିତ, ଭଣ୍ଡାରୀ, ଧୋବା ବନ୍ଦ କଲେ । ସେ ଅବସ୍ଥାରେ ୰ ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ରମା ଦେବୀ ଓ ବରୀ ଆଶ୍ରମର କର୍ମୀମାନେ ତାଙ୍କୁ ସାହାଯ୍ୟ କଲେ, ତାଙ୍କର ଅସୁବିଧା ରହିଲା ନାହିଁ । ସେ ରୋଗରେ ପଡ଼ିଲେ । ୰ ଗୋପବନ୍ଧୁ ଚୌଧୁରୀ ତାଙ୍କୁ କଟକ ନେଇ ବଡ଼ ଡାକ୍ତରଖାନାରେ ରଖାଇ ସେଠି ତାଙ୍କ ଚିକିତ୍ସା ବ୍ୟବସ୍ଥା କରାଇଲେ । ସେତେବେଳେ ତାଙ୍କ ଘରେ ଘୋର ଅଭାବ ଥାଏ । ଶ୍ରୀମତୀ ରମା ଦେବୀ ତାଙ୍କ ଘରକୁ ଆସି ତାଙ୍କ ପରିବାରକୁ ସାହାଯ୍ୟ କରୁଥାନ୍ତି । ତାଙ୍କ ଝିଅ କୁମାରୀ ପ୍ରେମଲତା (ଶ୍ରୀମତୀ ପ୍ରେମଲତା ଜେନା) ପିଲାଦିନୁଁ ଶ୍ରୀମତୀ ରମା ଦେବୀ ଓ ଗୋପବନ୍ଧୁ ଚୌଧୁରୀଙ୍କ ପାଖେ ବରୀ ସେବାଘରେ ରହି ଲାଳିତାପାଳିତା ହେଲେ, ସେଠି ରହି ପାଠ ପଢ଼ିଲେ, ନାନା ଶିକ୍ଷା ଓ ତାଲିମ ପାଇଲେ, କାଳକ୍ରମେ କର୍ମୀ ଶ୍ରୀ ବୃନ୍ଦାବନ ଜେନାଙ୍କ ସହିତ ତାଙ୍କର ବିବାହ ହେଲା । ୧୯୩୦ରେ ଜନ୍ମ ହୋଇଥିବା ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତିଙ୍କ ପୁଅ ଶ୍ରୀ ଅକ୍ଷୟ କୁମାର ମହାନ୍ତି ପିଲାଦିନୁ ୰ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀଙ୍କ ସହିତ ସମ୍ପୃକ୍ତ ହେଲେ, ସେମାନଙ୍କଠୁ ବିବିଧ ରଚନାତ୍ମକ କାର୍ଯ୍ୟ କରି ଶିଖିଲେ, ମୌଳିକ ସ୍କୁଲରେ ପଢ଼ି ସେଠି ମଧ୍ୟ ଶିକ୍ଷକ ହୋଇ ୧୯୬୪ ଯାଏ କାର୍ଯ୍ୟ କଲେ ଓ ୧୯୬୪ରୁ ଏ ପର୍ଯ୍ୟନ୍ତ କୋରାପୁଟରେ ବିବିଧ ଆଦିବାସୀ ଉନ୍ନୟନ କାର୍ଯ୍ୟ କରୁଛନ୍ତି ।

ବରୀ ଅଞ୍ଚଳରେ ୧୯୪୧ରେ ବେସରକାରୀ ମୌଳିକ ଶିକ୍ଷାକାର୍ଯ୍ୟ ଚାଲିବାରୁ ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତି ସେହି ଅଞ୍ଚଳରେ ମୌଳିକ ଶିକ୍ଷା ସ୍କୁଲରେ ଶିକ୍ଷକ ହେଲେ, ୧୯୪୨ ଆନ୍ଦୋଳନରେ ଜେଲ୍ ଗଲେ, ଜେଲ୍‌ରୁ ଫେରି ପୁଣି ମୌଳିକ ସ୍କୁଲରେ ଶିକ୍ଷକ ହୋଇ ରହିଲେ ଓ ୧୯୭୦ରେ ଅବସର ନେଲେ ।

ସେ ବରୀରେ ୰ ଗୋପବନ୍ଧୁ ଚୌଧୁରୀଙ୍କର ବିବିଧ ରଚନାତ୍ମକ କାର୍ଯ୍ୟରେ ଜଣେ କର୍ମୀ ହୋଇ କାର୍ଯ୍ୟ କରୁଥିଲେ ।

**ଶ୍ରୀ ଗୋଲକ ଚନ୍ଦ୍ର ନାୟକ (ଗ୍ରାମ-ସୁନାଖଣ୍ଡି, ସାଲେପୁର, ଜି-କଟକ) ଓ**
**ଶ୍ରୀ ରାଧାକୃଷ୍ଣ ସାମଲ (ଗ୍ରାମ-ବାଲିବିଲ, ବରୀ, ଜି-କଟକ)**

ଏ ଦୁହେଁ ମୂଳରୁ ମୌଳିକ ସ୍କୁଲ ଶିକ୍ଷକ ଥିଲେ, ୧୯୪୨ ଆନ୍ଦୋଳନରେ ଜେଲ୍ ଗଲେ, ଜେଲ୍‌ରୁ ଫେରି ଆଉ ସେଠି ଶିକ୍ଷକ ହେଲେ ନାହିଁ । ଶ୍ରୀ ଗୋଲକ ଚନ୍ଦ୍ର ନାୟକ ଜେଲ୍‌ରୁ ଫେରି ଖଦୀ-କର୍ମୀ ହେଲେ ।

**ଶ୍ରୀ କଣ୍ଠେଶ୍ୱର ଚରଣ ନାୟକ (ଜନ୍ମ ୧୩-୪-୧୯୧୯, ଗ୍ରାମ-ବ୍ରାହ୍ମଣ ବେଢ଼ଭୋଗ ତେଲଙ୍ଗ, ଜି-ପୁରୀ)**

ସେ ୧୯୪୪ରେ (ବରୀ) ରାମଚନ୍ଦ୍ରପୁରରେ ମୌଳିକ ଶିକ୍ଷା ପାଇ ମୌଳିକ ସ୍କୁଲ ଶିକ୍ଷକ ହେଲେ, ତାହା ପୂର୍ବରୁ ନୁହେଁ । ସେତେବେଳେ ସେ ୰ ଗୋପବନ୍ଧୁ ଚୌଧୁରୀଙ୍କ ସମ୍ପର୍କରେ ଆସିଥିଲେ, ତାଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ଓ ସେ ୧୯୫୨ରେ ଭୂଦାନ କାର୍ଯ୍ୟ ଆରମ୍ଭ କରିବାରୁ ଉହିଁରେ ଯୋଗ ଦେଇଥିଲେ ।

ସେ ହାଇସ୍କୁଲରେ ନବମ ଶ୍ରେଣୀ ପାଶ୍ କରି ପ୍ରାଇମେରୀ ସ୍କୁଲ ଶିକ୍ଷକ ହୋଇଥିଲେ ଓ ଘରୋଇଭାବେ ମ୍ୟାଟ୍ରିକୁଲେସନ୍ ପାଶ୍ କରିଥିଲେ । ତାଙ୍କ ଗ୍ରାମ ପାଖେ ୰ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ଆଶ୍ରମ, ମୂଳରୁ ସେ ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ପ୍ରାଇମେରୀ ସ୍କୁଲ ଶିକ୍ଷକ ହେବା ବେଳୁଁ ସୂତାକଟା, ହିନ୍ଦୀ ଶିକ୍ଷା, ନିରକ୍ଷରତା ଦୂରୀକରଣ ଆଦି ବିବିଧ ଗାନ୍ଧୀବାଦୀ ରଚନାତ୍ମକ କାର୍ଯ୍ୟ କରୁଥିଲେ । ୧୯୪୨ ଆନ୍ଦୋଳନରେ ଯୋଗଦେଇ ସେ ଅଠରମାସ ଜେଲ୍ ଯାଇଥିଲେ, ହେତୁ ଫେରି ନରୀ ଗଲେ ।

**ଶ୍ରୀ ଜୟକୃଷ୍ଣ ବିଶ୍ୱାଳ (ଜନ୍ମ-୧୯୧୨, ଗ୍ରାମ-କୃମ୍ଭୀ, ସୋରୋ, ଜି-ବାଲେଶ୍ୱର)**

ଶ୍ରୀ ଜୟକୃଷ୍ଣ ବିଶ୍ୱାଳ ମ୍ୟାଟ୍ରିକୁଲେସନ୍ ପାଶ୍ କରି ବାଲେଶ୍ୱର ଜିଲାରେ ରେମୁଣା ଏମ.ଇ. ସ୍କୁଲରେ ୩ ବର୍ଷ ଶିକ୍ଷକ ହେଲେ, ତାହାପରେ ଚନ୍ଦ୍ରଧରପୁର (ବିହାର)ରେ ଗୋଟିଏ ଚାକିରିରେ ୧୯୪୨ ଯାଏ ରହିଲେ, ତାହାପରେ ଶିକ୍ଷକ ଟ୍ରେନିଂରେ ଯୋଗଦେଇ ତାହା ପାଶ କଲେ ଓ ତାହାପରେ ଦେଶସେବା କାର୍ଯ୍ୟ ପ୍ରତି ଆକୃଷ୍ଟ ହୋଇ ସେ ୧୯୪୯ ଜାନୁଆରୀରେ ବରୀ ଯାଇ ୰ ଗୋପବନ୍ଧୁ ଚୌଧୁରୀଙ୍କ ପାଖେ ପହଞ୍ଚିଲେ । ସେହିଦିନୁଁ ସେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହେଲେ । ସେ ମୌଳିକ ଶିକ୍ଷା ପ୍ରୟୋଗ କାର୍ଯ୍ୟରେ ଯୋଗଦେଲେ ଓ ସର୍ବୋଦୟବାଦୀ ରଚନାତ୍ମକ କର୍ମୀ ହେଲେ ।

ସେ ଆଗ (ବରୀ) ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟରେ ଶିକ୍ଷକ ହେଲେ ଓ ତାହାପରେ (ବରୀ) ଗମ୍ଭୁରେ ଉତ୍ତର ମୌଳିକ ବିଦ୍ୟାଳୟରେ ଶିକ୍ଷକ ହେଲେ । ସେତେବେଳେ ସେ ବିବିଧ ରଚନାତ୍ମକ କାର୍ଯ୍ୟରେ ସେ ଅଞ୍ଚଳରେ ୰ ଗୋପବନ୍ଧୁ ଚୌଧୁରୀଙ୍କ ସଙ୍ଗେ ବୁଲୁଥିଲେ । ପରେ ଭୂଦାନ-ଗ୍ରାମଦାନ କାର୍ଯ୍ୟ ଆରମ୍ଭ ହେବାରୁ ସେ ୰ ଗୋପବନ୍ଧୁ ଚୌଧୁରୀଙ୍କ ନିର୍ଦ୍ଦେଶରେ ବାଲେଶ୍ୱର ଜିଲାର କେତେକ ଅଞ୍ଚଳରେ ବୁଲି ଭୂଦାନ ପ୍ରଚାର କାର୍ଯ୍ୟ କରିଥିଲେ ।

୧୯୫୪ରୁ ୧୯୬୩ ପର୍ଯ୍ୟନ୍ତ ସେ 'ଗ୍ରାମସେବକ ପ୍ରେସ'ର ସମ୍ପାଦକ ଥିଲେ ଓ ଭୂଦାନ ସାହିତ୍ୟ ପ୍ରଚାର କାର୍ଯ୍ୟ କରିଥିଲେ । ଏବେ ସେ ନିଜ ଗ୍ରାମରେ ଅଛନ୍ତି ଓ ସେଠି ରଚନାତ୍ମକ କାର୍ଯ୍ୟ କରୁଛନ୍ତି ।

**ଶ୍ରୀ ମଦନ ମୋହନ ସାହୁ** (ଗ୍ରାମ-ଶାସନ, ସମ୍ବଲପୁର)

ଶ୍ରୀ ମଦନ ମୋହନ ସାହୁ ଆଇ.ଏ. ପାଶ୍ ପରେ ଶିକ୍ଷକ ଟ୍ରେନିଂ ପାଶ୍ କରି ବହୁବର୍ଷ ପର୍ଯ୍ୟନ୍ତ ନାନା ସରକାରୀ ସ୍କୁଲରେ ଶିକ୍ଷକତା କଲାପରେ ଦେଶସେବା କରିବାକୁ ଚାକିରିରୁ ଇସ୍ତଫା ଦେଲେ । ୧୯୫୦ରେ ସେ ୰ ଗୋପବନ୍ଧୁ ଚୌଧୁରୀଙ୍କ ପ୍ରେରଣାରେ ଗାନ୍ଧୀବାଦୀ ରଚନାତ୍ମକ କର୍ମ ପ୍ରତି ଆକୃଷ୍ଟ ହେଲେ, ଯାଇ ସେବାଗ୍ରାମରେ 'ହିନ୍ଦୁସ୍ଥାନୀ ତାଲିମ୍ ସଙ୍ଘ'ରେ ତାଲିମ୍ ନେଲେ ଓ ଫେରି ଆସି ମୌଳିକ ଶିକ୍ଷା ପ୍ରୟୋଗ ସେ କଳାରେ କାର୍ଯ୍ୟ କଲେ । ୧୯୫୨ରୁ ଭୂଦାନ କାର୍ଯ୍ୟ ଆରମ୍ଭ ହେଲା, ସେ ଭୂଦାନ ଗ୍ରାମଦାନ ଆନ୍ଦୋଳନରେ ଯୋଗ ଦେଲେ । ସେ ଭୂଦାନ ପ୍ରଚାର କରିବାକୁ ଲାଗିଲେ ଓ ଭୂଦାନ ଗ୍ରାମଦାନ କାର୍ଯ୍ୟରେ ନେତୃତ୍ୱ ନେଲେ । ସେହି ପ୍ରଚାର ସମ୍ବନ୍ଧରେ ତାଙ୍କର ନାନା ଲେଖା ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥାଏ ।

**୰ ଶ୍ୟାମ ସୁନ୍ଦର ପଣ୍ଡା** (ଗ୍ରାମ-ନହରଙ୍ଗ, କେନ୍ଦ୍ରାପଡ଼ା, ଜି-କଟକ)

୰ ଶ୍ୟାମ ସୁନ୍ଦର ପଣ୍ଡା ୧୯୫୨ରେ ଭୂଦାନ ଆନ୍ଦୋଳନରେ ଯୋଗ ଦେଇଥିଲେ । ୰ ଗୋପବାବୁଙ୍କ ସଙ୍ଗେ ତାଙ୍କର ସମ୍ପର୍କ ଥିଲା । ସେ ପଣ୍ଡିତ, କବି ଓ ପାଲା ଲେଖକ ଥିଲେ । ସେ ଭୂଦାନ-ପାଲା ରଚନା କରିଥିଲେ ଓ ତାହାଦ୍ୱାରା ଭୂଦାନ ପ୍ରଚାର ଉତ୍ତମ ରୂପେ ପ୍ରଚାର କରୁଥିଲେ ।

**ଶ୍ରୀ କପିଳ ଚରଣ ଦାସ**

ସେ ସ୍କୁଲ ଛାଡ଼ି ୧୯୪୨ରେ ଆନ୍ଦୋଳନରେ ଯୋଗଦେଇ ଜେଲ୍ ଯାଇଥିଲେ । ଜେଲରୁ ଫେରି ସେବାଗ୍ରାମରେ ଖଦୀ ତାଲିମ୍ ନେଲେ ଓ ପରେ ଭଦ୍ରକରେ "ଗାନ୍ଧୀ ଔଦ୍ଧାଶା ବାଳାଶ୍ରମ"ରେ ଖଦୀ କାମ କଲେ । ଏବେ ସେ ସେହି ଅନୁଷ୍ଠାନର ସଞ୍ଚାଳକ ।

**୰ ଗୋପୀନାଥ ସାହୁ** (ଗ୍ରାମ: ରଙ୍କଣା, ଯାଜପୁର, ଜି: କଟକ)

ସେ ଜଣେ ଗାନ୍ଧୀବାଦୀ ରଚନାତ୍ମକ କର୍ମୀ ଥିଲେ । ସେ ଓ୍ୱାର୍ଦ୍ଧାରେ ମଗନବାଡ଼ି ତାଲିମ୍ ନେଇ ନିଜ ଗାଁରେ ତେଲଘଣା ଚଳାଉଥିଲେ ଓ ରଚନାତ୍ମକ କାର୍ଯ୍ୟ କରୁଥିଲେ ।

**ଶ୍ରୀ ବସନ୍ତଦେବ ସାମଲ** (ବରି, ବାଲିବଲ, ଜି: କଟକ)

୰ ଗୋପବାବୁ ବରିରେ ଆଶ୍ରମ କରିବାରୁ ସେ ସେଠି କର୍ମୀ ତାଲିମ କେନ୍ଦ୍ରରେ ଯୋଗଦେଇ 'ମଗନ୍-ଚରଖା' ତାଲିମ୍ ନେଲେ । ୧୯୪୨ରେ ସେ ଜେଲ୍ ଯାଇ-ଥିଲେ । ସେ ବରି ଅଞ୍ଚଳରେ ବିବିଧ ଗଠନମୂଳକ କାର୍ଯ୍ୟରେ ସାହାଯ୍ୟ କରୁଥିଲେ ।

**ଶ୍ରୀ ନଶାକର ଦାସ (ଗ୍ରାମ: କଲ୍ୟାଣପୁର, ଯାଜପୁର, ଜନ୍ମ ୧୯୨୯)**

ସେ ମୂଲିଆ କାମ କରି ବଞ୍ଚୁଥିଲେ । କଲ୍ୟାଣପୁରରେ କଂଗ୍ରେସ ଆଶ୍ରମରେ ରହି ସେଠି ସୂତାକଟା ଓ ଲୁଗାବୁଣା ଶିଖିଲେ, ସେହି କାର୍ଯ୍ୟ କଲେ ।

୧୯୫୩ରେ ସେ ଭୂଦାନ ଆନ୍ଦୋଳନରେ ଯୋଗ ଦେଲେ ଓ ଭୂଦାନ ପଦଯାତ୍ରାରେ ଯୋଗ ଦେଲେ । ତାହା ଉତ୍ତାରୁ କୋରାପୁଟ ଜିଲାରେ ସର୍ବୋଦୟ ପ୍ରଚାର କାର୍ଯ୍ୟ ଓ ଆଦିବାସୀଙ୍କ ଶୋଷଣ ଅତ୍ୟାଚାର ନିରୋଧ କରି ଆସୁଛନ୍ତି ଓ ପାଢ଼ୁଆ ଅଞ୍ଚଳରେ କୁଲବିରାଂ ଗ୍ରାମରେ ଥିବା ସର୍ବୋଦୟ ଆଶ୍ରମରେ କର୍ମୀ ହୋଇଛନ୍ତି ।

**ଶ୍ରୀ ବୃନ୍ଦାବନ ତ୍ରିପାଠୀ (ଗ୍ରାମ: ବରଦା, ଜି: କଟକ)**

ସେ ଓ ତାଙ୍କ ଭାଇ ଶ୍ରୀ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ବହୁଦିନୁ ଖଦୀକାମ କରୁଥିଲେ ଓ ବହୁବର୍ଷ ଅସବର୍ଣ୍ଣ ବିବାହ କଲେ । ସେ ଭୂଦାନ-ଗ୍ରାମଦାନ ଆନ୍ଦୋଳନରେ ଯୋଗଦେଇ ସେହି କାର୍ଯ୍ୟ କରୁଥିଲେ ।

**୬ ବୃନ୍ଦାବନ ଷଡ଼ଙ୍ଗୀ (ଗ୍ରାମ: ଚରମ୍ପା, ଜି: କଟକ)**

ସେ 'ଚରଖା ସଂଘ' ଅଧୀନରେ ଖଦୀ-କାମ କରୁଥିଲେ । ପରେ ଭୂଦାନ-ଗ୍ରାମଦାନ କାର୍ଯ୍ୟରେ ଲଗି ରହିଲେ । ସେହି କାର୍ଯ୍ୟ କରି କରୁ ତାଙ୍କର ମୃତ୍ୟୁ ହେଲା ।

**ଅନ୍ୟାନ୍ୟ କେତେକ ନାରୀକର୍ମୀ**

**୬ ସୁନାମଣି ଦେବୀ**

୬ ପଣ୍ଡିତ କୃପାସିନ୍ଧୁ ହୋତାଙ୍କର ସେ ଭାଇବୋହୂ । ସେ ବିଧବା ହେଲେ । ୬ ପଣ୍ଡିତ କୃପାସିନ୍ଧୁ ହୋତା ତାଙ୍କୁ ପୁରୀରେ 'ବିଧବାଶ୍ରମ'ରେ ରଖାଇଦେଲେ, ସେଠୁ ସାବରମତୀ ଆଶ୍ରମକୁ ପଠାଇଦେଲେ । ସେଠି ସେ ରହି ତାଲିମ୍ ପାଇଲେ ଓ ମହାତ୍ମାଜୀଙ୍କ ସଂସ୍ପର୍ଶରେ ଆସିଲେ । ସେଠୁ ଫେରି ସେ ରଚନାତ୍ମକ କର୍ମ କରିବାକୁ ଲଗିଲେ । ୧୯୩୨ ଓ ୧୯୪୨ରେ ଆନ୍ଦୋଳନରେ ଯୋଗଦେଇ ସେ ଜେଲ୍ ଯାଇଥିଲେ । ୬ ପଣ୍ଡିତ ହୋତା ଢେଙ୍କାନାଳ ଷ୍ଟେସନ ପାଖ ବେରବୋଇରେ 'ସେବା କୁଟୀର' ବୋଲି ଆଶ୍ରମଟିଏ କରି ସେଠି ରହି କଂଗ୍ରେସ କାମ ଓ ବିବିଧ ରଚନାତ୍ମକ କାମ କରୁଥାନ୍ତି । ୬ ସୁନାମଣି ଦେବୀ ପ୍ରଥମଥର ଜେଲ୍ରୁ ଫେରି ସେଠି ରହିଲେ ଓ ସେଠି ଖଦୀ-କାମ, ହରିଜନ ସେବା, ନାରୀ ଜାଗରଣ ଆଦି ବିବିଧ ରଚନାତ୍ମକ କାର୍ଯ୍ୟ କରୁଥିଲେ । ଭୂଦାନ ଆନ୍ଦୋଳନ ଆରମ୍ଭ ହେବାରୁ ସେ ତହିଁରେ ଯୋଗଦେଇ ଗ୍ରାମେ ଗ୍ରାମେ ବୁଲି ଭୂଦାନ ପ୍ରଚାର କାର୍ଯ୍ୟ କଲେ ଓ ଭୂଦାନ ସଂଗ୍ରହ କଲେ ।

**ଶ୍ରୀମତୀ ଶୋଭାରାଣୀ ପଣ୍ଡା**

ସେ ଖଦୀ କର୍ମୀ ଶ୍ରୀ ଅନ୍ତର୍ଯ୍ୟାମୀ ପଣ୍ଡାଙ୍କ ପତ୍ନୀ । ସେ ୧୯୩୦ରେ ନିଜ କନ୍ୟା ଗାୟତ୍ରୀ ସହିତ ଆସି ଅଲକାଶ୍ରମରେ ରହିଲେ । ସେ ସ୍ୱାଧୀନତା ଆନ୍ଦୋଳନରେ

ଯୋଗଦେଲେ ଓ ୧୯୩୨ରେ ଜେଲ୍‌ରେ ରହିଲେ । ଜେଲ୍‌ରୁ ବାହାରି ସେ କଟକରେ ହରିଜନ ସେବାକାର୍ଯ୍ୟ କଲେ, ୧୯୩୪ରେ ଓଡ଼ିଶାରେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରାରେ ଯୋଗଦେଲେ ଓ ତାହାପରେ ଶ୍ରୀମତୀ ରମା ଦେବୀଙ୍କ ସଙ୍ଗେ ବାରି ଗଲେ । ସେ ବାରି ଅଞ୍ଚଳରେ ଏରେଡ଼ା, କୁମ୍ଭାରିଆ, ସୁବର୍ଣ୍ଣପୁର ଆଦି ଗ୍ରାମରେ ଗ୍ରାମ ସଗଠନ କଲେ । ସେ ୧୯୪୨ ଆନ୍ଦୋଳନରେ ପୁଣି ଜେଲ ଗଲେ ।

**ଶ୍ରୀମତୀ ମଙ୍ଗଳା ସେନ୍‌ଗୁପ୍ତ (ଜନ୍ମ ୧୯୧୭, କଟକ)**

ତାଙ୍କ ପିତା ୰ ଦୁର୍ଗା ଚରଣ ସେନ୍‌ଗୁପ୍ତ । ଶ୍ରୀମତୀ ମଙ୍ଗଳା ସେନ୍‌ଗୁପ୍ତ ୧୯୩୦ରେ କଂଗ୍ରେସ ଆନ୍ଦୋଳନରେ ଯୋଗ ଦେଇଥିଲେ । ୧୯୩୨ରେ ଓ ୧୯୪୨ରେ ସେ ଜେଲ୍ ଯାଇଥିଲେ । ସେ ଶ୍ରୀମତୀ ରମା ଦେବୀ ଆଦିଙ୍କ ସଙ୍ଗେ କଟକରେ ହରିଜନ ସେବା କାମ କରିଥିଲେ, ତାହାପରେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରାରେ ଯୋଗ ଦେଇଥିଲେ ଓ ସେଠୁ ଫେରିଲାପରେ ୰ ଗୋପବାବୁ, ଶ୍ରୀମତୀ ରମା ଦେବୀ ଆଦିଙ୍କ ସଙ୍ଗେ ବାରି ଯାଇ ସେମାନଙ୍କ ସଙ୍ଗେ 'ସେବାଘରେ' ରହିଥିଲେ । ସେହିଦିନୁ ସେ ସେମାନଙ୍କ ପରିବାରର ଜଣେ ହୋଇ ସେମାନଙ୍କ ସଙ୍ଗେ ସଙ୍ଗେ ରହି ଆସିଛନ୍ତି ଓ ରଚନାତ୍ମକ କର୍ମୀ ଭାବରେ କାର୍ଯ୍ୟ କରୁଛନ୍ତି । ୰ ଗୋପବନ୍ଧୁ ଚୌଧୁରୀ ଭୂଦାନ କାର୍ଯ୍ୟ ଆରମ୍ଭ କରିବାରୁ ସେ ଭୂଦାନ ଗ୍ରାମଦାନ କର୍ମୀ ହେଲେ । ୧୯୫୫ରେ ଓ ୧୯୬୩ରେ ଓଡ଼ିଶାରେ ବିନୋବାଜୀଙ୍କ ପଦଯାତ୍ରା ବେଳେ ସେ ମଧ୍ୟ ତାଙ୍କ ସଙ୍ଗେ ପଦଯାତ୍ରୀ ହୋଇଥିଲେ । ଶ୍ରୀମତୀ ରମା ଦେବୀଙ୍କ ସହିତ ସେ ପଶ୍ଚିମବଙ୍ଗର ଦିନାଜପୁରରେ ପୂର୍ବ ପାକିସ୍ତାନର ଶରଣାର୍ଥୀଙ୍କ ଶିବିରକୁ ଯାଇ ସେଠାରେ ସେବା-କାର୍ଯ୍ୟ କରିଥିଲେ ଓ ଶ୍ରୀମତୀ ରମା ଦେବୀ ବନ୍ୟା, ବାତ୍ୟା ଆଦି ଦୁର୍ଗତି ବେଳେ ସାହାଯ୍ୟ କରିବାକୁ ବିଭିନ୍ନ ସ୍ଥାନକୁ ଗଲାବେଳେ ତାଙ୍କ ସଙ୍ଗେ ଯାଇ ସେହି କାର୍ଯ୍ୟ କରିଥିଲେ । ୧୯୫୨ରୁ ତାଙ୍କ ସଙ୍ଗେ କଟକ ଥୋରିଆ ସାହି ଆଶ୍ରମରେ ରହିଛନ୍ତି ।

**ଶ୍ରୀମତୀ ସୁଶୀଳା ଦେବୀ** (ଗ୍ରାମ: ରାମଚନ୍ଦ୍ରପୁର, ବାରି)

ସେ ଅଳ୍ପ ବୟସରେ ବିଧବା ହୋଇଥିଲେ । ତାଙ୍କ ପିତା ୰ କୃଷ୍ଣଚନ୍ଦ୍ର ସିଂହ ସ୍କୁଲ ସବ୍‌ଇନ୍‌ସ୍‌ପେକ୍ଟର ଥିଲେ । ଶ୍ରୀମତୀ ସୁଶୀଳା ଦେବୀ ସ୍ୱାଧୀନତା ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ଦିନେ ଶାଶୁଘରୁ ପଳାଇ ଆସିଲେ, ଆନ୍ଦୋଳନରେ ଯୋଗଦେଲେ ଓ ୧୯୩୨ରେ ଜେଲ୍ ଗଲେ । ସେ ଜେଲ୍‌ରୁ ଫେରିଲା ପରେ କଟକରେ ଶ୍ରୀମତୀ ରମା ଦେବୀ ଆଦି ହରିଜନ କାମ କରୁଥାନ୍ତି, ସେ ତହିଁରେ ଯୋଗଦେଇ କଟକ ଝାଞ୍ଜିରିମଙ୍ଗଳା ମେହେନ୍ତରସାହିରେ ପିଲାଙ୍କୁ ପାଠ ପଢ଼ାଇଲେ, ବିବିଧ ହସ୍ତକର୍ମ କରାଇଲେ ଓ ସେଠି ରୋଗୀ ସେବା କଲେ । ସେ ୧୯୩୪ରେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରାରେ ଯୋଗଦେଲେ, ତାହାପରେ ନିଜ ଗ୍ରାମ ରାମପୁରରେ ଓ ମାଳାପଦା, ନବାବଗଞ୍ଜ ଆଦି ଗ୍ରାମରେ ଚର୍ଖା କାମ ଓ ପ୍ରୌଢ଼ଶିକ୍ଷା, ଗ୍ରାମ ଉନ୍ନୟନ

କାମ ଆରମ୍ଭ କଲେ । ୧୯୪୨ରେ ସେ ପୁଣି ଜେଲ୍ ଗଲେ । ଜେଲ୍‌ରୁ ବାହାରିଲେ ପରେ ସେ ପୂର୍ବପରି କାର୍ଯ୍ୟ କରିବାକୁ ଲାଗିଲେ । (ବରି) ରାମଚନ୍ଦ୍ରପୁର ମୌଳିକ ସ୍କୁଲ ପାଇଁ ସେ ନିଜ ଜମି ଦାନ କରିଥିଲେ ।

## ଶ୍ରୀମତୀ ମାଣିକ୍ୟ ଦେବୀ ଓ ଶ୍ରୀମତୀ ତୁଳସୀ ଦେବୀ

ଏ ଦୁହେଁ ୧୯୩୨ରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ଜେଲ୍ ଗଲେ, ଜେଲରୁ ବାହାରି ଶ୍ରୀମତୀ ରମା ଦେବୀ ଆଦିଙ୍କ ସଙ୍ଗେ କଟକରେ ହରିଜନ ସେବା କାମ କଲେ, ଓଡ଼ିଶାରେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରାରେ ଯୋଗଦେଲେ ଓ ତାହାପରେ ୰ ଗୋପବାବୁ ଓ ଶ୍ରୀମତୀ ରମା ଦେବୀଙ୍କ ସଙ୍ଗେ ବରି ଯାଇ ସେବାଘରେ ରହି ଗ୍ରାମ ସଂଗଠନ କାର୍ଯ୍ୟ କଲେ ।

## ଶ୍ରୀମତୀ ଶକୁନ୍ତଳା ଦେବୀ (ବାପଘର ଅଟିରା, ବରି, ଜି: କଟକ)

ପିଲାଦିନେ ସେ ଶ୍ରୀମତୀ ରମା ଦେବୀଙ୍କ ପାଖେ ବରିରେ ସେବାଘରେ ରହି ଶିକ୍ଷା ପାଇଥିଲେ । ୧୯୪୨ ଆନ୍ଦୋଳନରେ ସେ ମଧ୍ୟ ଜେଲ୍ ଯାଇଥିଲେ । ଜେଲ୍‌ରୁ ବାହାରି ସେ ଉତ୍ତର ବାଲେଶ୍ୱରରେ ଶ୍ରୀମତୀ ପୂରବାଈଙ୍କ ଆଶ୍ରମରେ ରହି ଦୁର୍ଭିକ୍ଷ-ପ୍ରପୀଡ଼ିତ ଶିଶୁଙ୍କ ସେବା କଲେ । ସେ ୧୯୪୬ରେ ବରିରେ 'କସ୍ତୁରବା ମହିଳା ତାଲିମ ଶିବିର' ପରିଚାଳନା କଲେ । ସେ କର୍ମୀ ଶ୍ରୀ ଶଶିଶେଖର ଦାସଙ୍କ ପତ୍ନୀ । ଉଭୟେ ସମଗ୍ର ଗ୍ରାମସେବା ଯୋଜନାରେ କାର୍ଯ୍ୟ କଲେ ଓ ପରେ କଳାହାଣ୍ଡି ଜିଲାରେ ଭୂଦାନ କାର୍ଯ୍ୟ କଲେ ।

## ଶ୍ରୀମତୀ ହୀରାମଣି ଦେବୀ (ଗ୍ରାମ: ରମ୍ଭା, ବରି)

ସେ ସ୍ୱାଧୀନତା ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ଘରୁ ଲୁଚି ପଳାଇଯାଇ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇଥିଲେ ଓ ୧୯୩୨ରେ ଜେଲ୍ ଯାଇଥିଲେ । ୧୯୩୪ରେ ବରିର 'ସେବାଘର'ର ମହିଳା କର୍ମୀମାନେ ଗୋଟିଏ "ମହିଳା କ୍ଲବ୍" ଗଢ଼ିଥିଲେ ଓ ସୂତାକଟା ଆରମ୍ଭ କରୁଥିଲେ । ସେ ମଧ୍ୟ ସେହି କ୍ଲବ୍‌ର ସଦସ୍ୟା ହେଲେ ଓ ସେହି କାମ କଲେ । ସେ ତୁଲାଭଣା ଶିଖିଲେ ଓ ଧାରପୁରରେ ଖଦୀକାମ କଲେ । ୧୯୪୨ ଆନ୍ଦୋଳନରେ ସେ ଆଉଥରେ ଜେଲ୍ ଯାଇଥିଲେ ।

## ଶ୍ରୀମତୀ ଉଷା ଦେବୀ (ଗ୍ରାମ: ରମ୍ଭା, ବରି)

ସେ ମଧ୍ୟ ବରି 'ସେବାଘର'ର 'ମହିଳା କ୍ଲବ୍'ର ସଦସ୍ୟା ଥିଲେ । ସେ ସୂତା କାଟୁଥିଲେ । ୧୯୪୨ ଆନ୍ଦୋଳନରେ ଜେଲ୍ ଯାଇଥିଲେ ।

## ଶ୍ରୀମତୀ କ୍ଷେତ୍ରମଣି ଦେବୀ (ଗ୍ରାମ: ତେଲୁଗୁପଦା, ଜି: କଟକ)

ସେ ବାଲବିଧବା । ସେ ବରିରେ 'ସେବାଘରେ' ରହି ତାଲିମ୍ ପାଇଲେ ଓ କଟକ ଜିଲାର ବାଗଲପୁର ଗ୍ରାମରେ ରହି ଖଦୀ କାମ କଲେ । ୧୯୪୨ ଆନ୍ଦୋଳନରେ ସେ ଜେଲ୍ ଗଲେ । ସେ ଗ୍ରାମସେବା କାର୍ଯ୍ୟ କରି ଆସୁଛନ୍ତି ।

**ଶ୍ରୀମତୀ ବେଲ ଦେଈ (ଗ୍ରାମ: କଥାଦା, ଏରସମା, କଟକ)**

ସେ ୧୯୩୮ରେ ବଣ୍ଣ 'ସେବାଘରେ' ତାଲିମ୍ ପାଇଲେ ଓ ଗଣେଶ୍ୱରପୁର ଗ୍ରାମସେବା କେନ୍ଦ୍ରରେ କର୍ମୀ ହରେକୃଷ୍ଣ ବଣ୍ଣାଳଙ୍କ ସହିତ କାର୍ଯ୍ୟ କଲେ।

**ଶ୍ରୀମତୀ ହରପ୍ରିୟା ଦେବୀ (ଗ୍ରାମ: ଆନନ୍ଦପୁର, ବଣ୍ଣ)**

ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ୧୯୩୨ ଓ ୧୯୪୨ରେ ଜେଲ୍ ଯାଇଥିଲେ। ସେ ଖଦୀ କାମ କରୁଥିଲେ।

**ଶ୍ରୀମତୀ ପ୍ରଭାବତୀ ଦେବୀ (ଜନ୍ମ ୧୯୧୩, ଅଶ୍ୱିନ ପୂର୍ଣ୍ଣିମା, ଗ୍ରାମ: ବରଗଡ଼ ନିକଟରେ, ଜି: ସମ୍ବଲପୁର)**

ଶ୍ରୀମତୀ ପ୍ରଭାବତୀ ଦେବୀ ଦଶବର୍ଷ ବୟସରେ ୧୯୨୩ରେ ବିଧବା ହେଲେ। ସେ ଷଷ୍ଠଶ୍ରେଣୀ ଯାଏ ପାଠ ପଢ଼ିଥିଲେ। ସେ ଅଧିକାଂଶ ସମୟ ବରଗଡ଼ ପାଖେ ତାଙ୍କ ମାମୁଁଘରେ ରହୁଥିଲେ। ସେହିପରି ୧୯୩୮ରେ ଥରେ, ବରଗଡ଼ରେ ଜୀରାନଦୀ କୂଳରେ ଗୋଟିଏ କଂଗ୍ରେସ ସଭା ହୋଇଥାଏ, ବହୁତ ଲୋକ ଦେଖିବାକୁ ଆସିଥାନ୍ତି, ସେ ବି ଯାଇଥିଲେ। ଶ୍ରୀମତୀ ମାଳତୀ ଦେବୀ ଡେଲାଂ ଗାନ୍ଧୀ ସେବା ସମ୍ମିଳନୀ ପାଇଁ ଚାନ୍ଦା ସଂଗ୍ରହ କରିବାକୁ ଯାଇଥିଲେ। ଶ୍ରୀମତୀ ମାଳତୀ ଦେବୀଙ୍କ ନଜରରେ ସେ ପଡ଼ିଲେ, ସେ ତାଙ୍କ ସଙ୍ଗେ କଥାବାର୍ତ୍ତା କରି ତାଙ୍କ ଅବସ୍ଥା ବୁଝି ତାଙ୍କୁ ପରାମର୍ଶ ଦେଲେ ଯେ ସେ ବଣ୍ଣ ସେବାଘରକୁ ଚାଲି ଯାଆନ୍ତୁ, ସେ ଶ୍ରୀମତୀ ରମା ଦେବୀଙ୍କ ପାଖକୁ ଚିଠି ଦେବେ। ତାଙ୍କ ପରାମର୍ଶ ମାନି ଶ୍ରୀମତୀ ପ୍ରଭାବତୀ ଦେବୀ ଓ ଶ୍ରୀମତୀ ପାର୍ବତୀ ଗିରି ଦୁହେଁ ଶ୍ରୀ ଫକୀର ବେହେରା ଏମ୍.ଏଲ୍.ଏ.ଙ୍କ ସଙ୍ଗେ ବଣ୍ଣ ଗଲେ ଓ 'ସେବାଘରେ' ରହିଲେ।

ସେହି ସମୟରୁ ତାଙ୍କ ଜୀବନରେ ପରିବର୍ତ୍ତନ ଆସିଗଲା। ସେ ସର୍ବୋଦୟ ପରିବାରର ଅନ୍ତର୍ଭୁକ୍ତ ହେଲେ ଓ ୰ ଗୋପବାବୁଙ୍କ ନିର୍ଦ୍ଦେଶରେ ସମ୍ବଲପୁରରେ ବିବିଧ ରଚନାତ୍ମକ କାର୍ଯ୍ୟ କରିବାକୁ ଲାଗିଲେ। ସେ ୧୯୪୨ ଆନ୍ଦୋଳନରେ ଯୋଗଦେଲେ ଓ ଦୁଇଥରରେ ଦୁଇବର୍ଷ କାରାଦଣ୍ଡ ଭୋଗିଲେ। ଭୂଦାନ ଗ୍ରାମଦାନ ଆନ୍ଦୋଳନ ଆରମ୍ଭ ହେବାରୁ ସେ ତହିଁରେ ଯୋଗଦେଲେ। ସମ୍ବଲପୁର ଜିଲାରେ ୰ ଗୋପବାବୁଙ୍କର ଭୂଦାନ ପଦଯାତ୍ରା ବେଳେ ସେ କେତେଦିନ ତାଙ୍କ ସଙ୍ଗରେ ପଦଯାତ୍ରା କରିଥିଲେ। ତାଙ୍କ ନିର୍ଦ୍ଦେଶରେ ସେ ବଲାଙ୍ଗୀର ଜିଲାରେ 'ନିଧିମୁକ୍ତ ଭୂଦାନ କର୍ମୀ' ହୋଇ ଭୂଦାନ କାର୍ଯ୍ୟ କରିଥିଲେ। ସେ ଓ ଶ୍ରୀମତୀ ମେନକା ମହାପାତ୍ର ଦୁଇବର୍ଷ ପର୍ଯ୍ୟନ୍ତ ପଦଯାତ୍ରା କରିଥିଲେ। ନିଜ ଉଦ୍ୟମରେ ସେ ସମ୍ବଲପୁର ଜିଲାରେ ବରଗାରେ ଗୋଟିଏ ଗ୍ରାମସେବା କେନ୍ଦ୍ର ପ୍ରତିଷ୍ଠା କଲେ ଓ ସେଠି କାର୍ଯ୍ୟ କରୁଛନ୍ତି। ସେ ବଡ଼ ବଡ଼ ସମ୍ମିଳନୀମାନଙ୍କରେ ଦକ୍ଷତା ସହକାରେ କାର୍ଯ୍ୟ କରିଛନ୍ତି

ଓ ୰ ଗୋପବାବୁଙ୍କ ପ୍ରଶଂସା ଅର୍ଜନ କରିଛନ୍ତି । ତହିଁରୁ ଅନୁକୂଳ ଓ ପୁରୀରେ ହୋଇଥିବା ସର୍ବୋଦୟ ସମ୍ମିଳନୀମାନଙ୍କରେ ତାଙ୍କର କାର୍ଯ୍ୟ ଉଲ୍ଲେଖନୀୟ ହୋଇଥିଲା । ସେ ଲେଖିଛନ୍ତି—

"...ଗୋପବନ୍ଧୁ ଚୌଧୁରୀଙ୍କ ସମ୍ପର୍କରେ ଆସିବା ଫଳରେ ମୁଁ ମଣିଷଭଳିଆ ମଣିଷଟିଏ ହୋଇ ଗଢ଼ି ହୋଇ ଉଠିଲି । ତାଙ୍କଠାରୁ ନିଭୀକତା, ସାହସିକତା, କାର୍ଯ୍ୟଦକ୍ଷତା ଶିଖି ପାରିବାରୁ ଆଜି ସମାଜରେ ମୋର ମୂଲ୍ୟ ରହି ଯାଇଛି ।"

## ଶ୍ରୀମତୀ ବୈଦେହୀ ପଣ୍ଡା (ଜନ୍ମ ୧୯୩୨ ଜନ୍, ଗ୍ରାମ: ଲୁଣିଆ, (ଏବେ ନାମ ଶଙ୍ଖଦପୁର), ଭଦ୍ରକ, ଜି: ବାଲେଶ୍ୱର)

ଶ୍ରୀମତୀ ବୈଦେହୀ ପଣ୍ଡାଙ୍କ ପିତା ୰ ପ୍ରାଣବନ୍ଧୁ ପଣ୍ଡା ଓ ବଡ଼ଭାଇ ଶ୍ରୀ ମୁରଲୀଧର ପଣ୍ଡା ଉଭୟେ ସ୍ୱାଧୀନତା ସଂଗ୍ରାମୀ । ଶ୍ରୀମତୀ ବୈଦେହୀ ପଣ୍ଡା ବାଲ୍ୟବିଧବା । ୧୯୪୬ରେ ତାଙ୍କ ବଡ଼ଭାଇ ତାଙ୍କୁ ନେଇ ବରୀରେ ଶ୍ରୀମତୀ ରମା ଦେବୀ ଓ ୰ ଗୋପବନ୍ଧୁ ଚୌଧୁରୀଙ୍କ ପାଖେ ଛାଡ଼ି ଦେଇ ଆସିଲେ । ସେ କିଛି ପଢ଼ି ନ ଥିଲେ କି କିଛି କାମ ଜାଣି ନ ଥିଲେ, ତାଙ୍କ ସ୍ୱାସ୍ଥ୍ୟ ଦୁର୍ବଳ ଥିଲା, ଆଖି ଖରାପ ଥିଲା ଓ ସେ ବ୍ରାହ୍ମଣୀ ବିଧବା ହୋଇଥିବା ଘରେ ଥିଲାବେଳେ ନାନାଦି ବ୍ରତ, ଉପାସ କରୁଥିଲେ । ତାଙ୍କ ବିଷୟରେ ଉଲ୍ଲେଖଯୋଗ୍ୟ ଘଟଣା ଏଉକି ଥିଲା ଯେ ୧୯୪୨ ଆନ୍ଦୋଳନ ବେଳେ ସଂଗ୍ରାମୀ କରି ସେ କୁଆଡ଼େ ଜଣେ ବ୍ରିଟିଶ କର୍ମଚାରୀଙ୍କ ଦାଢ଼ୀ ଓଟାରିଥିଲେ, ସେ ତାଙ୍କୁ ବୁଟ୍‌ପିନ୍ଧା ପାଦରେ ଗୋଇଠା ମାରିଲେ, ତାଙ୍କ ମେରୁଦଣ୍ଡ ହାଡ଼ ଜଖମ ହେଲା ଓ ଡାକ୍ତରଖାନାରେ ଅପରେସନ୍ ହୋଇ ସେ ଭଲ ହୋଇଥିଲେ ।

୰ ଗୋପବାବୁ ଓ ଶ୍ରୀମତୀ ରମା ଦେବୀ ତାଙ୍କୁ ଖୁବ୍ ସ୍ନେହ, ଆଦର ଓ ଯତ୍ନରେ ପାଳିଲେ, ତାଲିମ୍ ଦେଲେ ଓ ଶିକ୍ଷା ଦେଲେ । ୰ ଗୋପବନ୍ଧୁ ଚୌଧୁରୀ ତାଙ୍କୁ କଟକ ନେଇ ଚକ୍ଷୁରୋଗ ବିଶେଷଜ୍ଞ ୰ ଅଧ୍ୟାପକ ଡ: ମହେନ୍ଦ୍ର ଚନ୍ଦ୍ର ମିଶ୍ରଙ୍କ ଦ୍ୱାରା ତାଙ୍କ ଆଖି ପାଇଁ ଚିକିତ୍ସା କରାଇଲେ, ତାଙ୍କୁ ପ୍ରତ୍ୟହ କଞ୍ଚା ଫଳ ଓ କଞ୍ଚା ପରିବା ଖାଇବାକୁ ଦେଲେ, ଦୁଧ, ଛେନା, ଚିନାବାଦାମ, ନଡ଼ିଆ କୋରା ଆଦି ଖାଇବାକୁ ଦେଲେ ଓ ତାଙ୍କ ଶିକ୍ଷାଯୋଗୁଁ ଶ୍ରୀମତୀ ବୈଦେହୀ ପଣ୍ଡା ସ୍ୱାସ୍ଥ୍ୟହାନିକର ବିବିଧ ଉପାସ କାର୍ଯ୍ୟକ୍ରମ କମାଇଦେଲେ । ସେ ତାଙ୍କ ଅନ୍ଧାର ଭୟ ମଧ୍ୟ ଦୂର କଲେ । ସେ ତାଙ୍କୁ ପାଠ ପଢ଼ାଇଲେ, ଶ୍ରୀମତୀ ପଣ୍ଡା ପଢ଼ି ଲେଖି ଶିଖିଲେ, ହିନ୍ଦୀ ତୁଳସୀ ରାମାୟଣ ପଢ଼ି ବୋଲି ପାରିଲେ । ସେଠି ସେ ପିଠାପଣା କରିବା ସମେତ ସବୁ ଘରକରଣା କାମ ମଧ୍ୟ ଶିଖିଲେ । ତାଙ୍କୁ 'କସ୍ତୁରବା ଗାନ୍ଧୀ ସ୍ମାରକନିଧି' ଦ୍ୱାରା ପରିଚାଳିତ ନାନା ଟ୍ରେନିଂ ଦିଆଗଲା । ସେ ରଚନାତ୍ମକ କର୍ମୀ ହୋଇ ଉଠିଲେ ।

ସେ ଗଠନାତ୍ମକ କାର୍ଯ୍ୟ କରିବାକୁ ଲାଗିଲେ । ଓଡ଼ିଶାରେ ବିନୋବାଜୀଙ୍କ ପଦଯାତ୍ରା ବେଳେ ସେ କେତେକ ରହଣି ସ୍ଥଳରେ ବ୍ୟବସ୍ଥା ତୁଲାଇଥିଲେ । ଶ୍ରୀମତୀ ରମା ଦେବୀଙ୍କ ନିର୍ଦ୍ଦେଶରେ ସେ ପଶ୍ଚିମବଙ୍ଗରେ ଶରଣାର୍ଥୀ ଶିବିରରେ କର୍ମୀ ହୋଇ ସାହାଯ୍ୟ କାର୍ଯ୍ୟ କରିଥିଲେ ଓ ମଧ୍ୟପ୍ରଦେଶରେ ଚମ୍ବଲ ଘାଟିରେ ଡକାୟତମାନଙ୍କ ଆତ୍ମସମର୍ପଣ ଓ ସେମାନଙ୍କ ପୁନର୍ବାସ କାର୍ଯ୍ୟ ବେଳେ ସର୍ବୋଦୟ କର୍ମୀ ହୋଇ ସେଠାରେ କାର୍ଯ୍ୟ କରିଥିଲେ ।

## ଶ୍ରୀମତୀ ମେନକା ମହାପାତ୍ର (ଜନ୍ମ ୧୯୧୫)

ସେ ୧୯୪୬ରେ ବରୀରେ 'କସ୍ତୁରବା ଗାନ୍ଧୀ ସ୍ମାରକନିଧି' ତରଫରୁ କର୍ମୀ ତାଲିମ୍ ପାଇଲେ, ତାହାପରେ ଓ୍ୱାର୍ଦ୍ଧାରେ ଏକବର୍ଷ ପର୍ଯ୍ୟନ୍ତ ତାଲିମ୍ ପାଇଲେ ଓ ଫେରି ଆସି ଗଠନାତ୍ମକ କର୍ମୀ ହେଲେ । ସେ ଓଡ଼ିଶାରେ ବିଭିନ୍ନ ଗ୍ରାମରେ ପ୍ରସୂତି ସେବା, ଶିଶୁମଙ୍ଗଳ କାର୍ଯ୍ୟ ଓ ନାରୀ ଜାଗରଣ କାର୍ଯ୍ୟ କରିଥିଲେ ।

ସେ ବର୍ତ୍ତମାନ କଟକରେ 'ସର୍ଟ ଷ୍ଟେ ହୋମ୍' ଅନୁଷ୍ଠାନ ପରିଚାଳନା କରୁଛନ୍ତି ।

## ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି (ଜନ୍ମ ଫାଲ୍‌ଗୁନ ୧୯୧୪, ଗ୍ରାମ-ଶଙ୍କରପଡ଼ା, ଜି-କଟକ)

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି ୧୯୪୭ରେ (ବରୀ) ରାମଚନ୍ଦ୍ରପୁରରେ 'ସେବା ପ୍ରବେଶ ଟ୍ରେନିଂ'ରେ ଯୋଗଦେଲେ । ସେ ସେହିଦିନଠାରୁ ୰ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀଙ୍କ ସଙ୍ଗେ ସମ୍ପର୍କିତା ହେଲେ ଓ ସେମାନଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରିବାକୁ ଲାଗିଲେ । ସେ ବରୀରେ ସୂତାକଟା, ରୋଗୀ ସେବା, ଗ୍ରାମସେବା ଆଦି କାର୍ଯ୍ୟ କଲେ । ସେ ଇନ୍ଦୋର ଯାଇ ସେଠି ଏ ଏନ୍ ଏମ' ଟ୍ରେନିଂ ନେଇ ଫେରିଲେ ଓ ୧୯୫୨ରେ ଖଣ୍ଡସାହି (କଟକ ଜିଲା)ରେ ରହି କାର୍ଯ୍ୟ କରୁଥିଲେ । ୧୯୫୫ରେ ୰ ଗୋପବାବୁ, ଶ୍ରୀମତୀ ରମା ଦେବୀ ଆଦି ପଦଯାତ୍ରାରେ ଗଲାବେଳେ ସେ ମଧ୍ୟ ସେମାନଙ୍କ ସଙ୍ଗେ ଗଲେ । ସେ ୧୯୫୬ରେ ସତ୍ୟଭାମାପୁର (କଟକ ଜିଲା)ରେ ରୋଗୀସେବା ଆରମ୍ଭ କରିଥିଲେ । ସେ ସେହିଠାରେ ମାତୃମଙ୍ଗଳ କେନ୍ଦ୍ରରେ ଅଛନ୍ତି । ସେ ୧୯୬୩ରେ ୰ ବିନୋବାଜୀଙ୍କ ପଦଯାତ୍ରାରେ ଯାଇଥିଲେ ଓ ୧୯୭୧ରେ ପଶ୍ଚିମବଙ୍ଗରେ ପୂର୍ବ ପାକିସ୍ତାନରୁ ପଳାତକ ଶରଣାର୍ଥୀଙ୍କ ଶିବିରରେ ସାହାଯ୍ୟ କାର୍ଯ୍ୟ କରିଥିଲେ ।

## ଶ୍ରୀମତୀ ରମ୍ଭା ଦେବୀ ଦୁତୀଆ (ଜନ୍ମ ୧୯୧୮)

ସେ ଜଣେ ବ୍ରହ୍ମଚାରିଣୀ ମହିଳା । ତାଙ୍କ ସ୍ୱାମୀ ୰ ଗୋବର୍ଦ୍ଧନ ଦାସ ଦୁତୀଆ ଜଣେ ମିଲ୍ ମାଲିକ ଥିଲେ । ସେ ସର୍ବୋଦୟ ଆଡ଼କୁ ଆକୃଷ୍ଟ ହେଲେ ଓ ତାଙ୍କ ସ୍ତ୍ରୀ

ସର୍ବୋଦୟ କାର୍ଯ୍ୟ କରିବେ ବୋଲି ତାଙ୍କୁ ଆଣି ୧୯୪୫ରେ ଶ୍ରୀମତୀ ରମା ଦେବୀଙ୍କ ପାଖେ (ବରୀ) ରାମଚନ୍ଦ୍ରପୁରରେ ଛାଡ଼ି ଦେଇଗଲେ । ସେହିଦିନୁଁ ସେ ସେମାନଙ୍କ କର୍ମୀ ପରିବାରରେ ଅନ୍ତର୍ଭୁକ୍ତ ହେଲେ । ସେ (ବରୀ) ରାମଚନ୍ଦ୍ରପୁରରେ ପ୍ରାକ୍-ମୌଳିକ-ଶିକ୍ଷା କାର୍ଯ୍ୟରେ ମନ ଦେଇଥିଲେ । ସେ କିଛିକାଳ 'ଓଡ଼ିଶା ଝିଅବୋର୍ଡ'ର ଚେଆରମ୍ୟାନ୍ ହୋଇଥିଲେ ।

କଟକ ଜିଲାରେ ହରିଦାସପୁରରେ ସେ 'ସେବା ସମିତି' ବୋଲି ଅନୁଷ୍ଠାନଟିଏ ସ୍ଥାପନ କରିଛନ୍ତି, ସେଠି ଗୋଟିଏ ଡାକ୍ତରଖାନା ମଧ୍ୟ କରିଛନ୍ତି ଓ ଅନୁଷ୍ଠାନ ଯୋଗ୍ଭିକ ପରିଚାଳନା କରୁଛନ୍ତି ।

**ଶ୍ରୀମତୀ ମାଳତୀ ବଣ୍ଠିଆଳ (ଜନ୍ମ ୧୯୨୫ (ଅନୁମାନିକ), ଜି: ବାଲେଶ୍ୱର)**

କର୍ମୀ ଶ୍ରୀମତୀ ମାଳତୀ ବଣ୍ଠିଆଳଙ୍କ ବିଷୟରେ ପୂର୍ବେ ଲେଖାଯାଇଛି । ସେ ପିଲାଦିନେ ବିଭା ହୋଇଥିଲେ, ଅଳ୍ପଦିନେ ବିଧବା ହେଲେ ଓ ଘରେ ଥିଲେ । ସେ ସମାଜ ସେବାରେ ଜୀବନ ନିୟୋଜିତ କରିବାକୁ ବିଚାରି ୧୯୪୮ରେ ବରୀ 'ସେବା-ଘର'କୁ ଆସିଲେ ଓ "କସ୍ତୁରବା ଗାନ୍ଧୀ ସ୍ମାରକନିଧି" ତରଫରୁ ବରୀରେ କର୍ମୀ ତାଲିମ୍ ନେଲେ । ୧୯୫୦ରେ ୺ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀଙ୍କ ପରାମର୍ଶରେ ସେ 'କସ୍ତୁରବା ଗାନ୍ଧୀ ସ୍ମାରକନିଧି'ର କର୍ମୀ ହୋଇ କୋରାପୁଟ ଜିଲାର ରାୟଗଡ଼ା ସବ୍‌ଡିଭିଜନରେ ଆଦିବାସୀ ସେବାକାର୍ଯ୍ୟ କରିବାକୁ ଚାଲିଗଲେ । ଥେରୁବେଲି ରେଳ ଷ୍ଟେସନରୁ ପ୍ରାୟ ୪।୫ ମାଇଲ ଦୂରରେ କନ୍ଧ ଗାଁ 'ଡୁମୁରିଗୁଡ଼ା'ରେ ସେ 'କସ୍ତୁରବା ଗାନ୍ଧୀ ସ୍ମାରକନିଧି' ତରଫରୁ ଆଶ୍ରମଟିଏ କରି ରହିଲେ ଓ ତାକୁ ତାଙ୍କ ସେବାକାର୍ଯ୍ୟର କେନ୍ଦ୍ର କରି ବାଘୁଆମାଳ ଭିତରେ ବିଭିନ୍ନ ଗାଁ ବୁଲି ସେଠି ମଧ୍ୟ କାର୍ଯ୍ୟ କଲେ । ୧୯୫୧ରେ ରାୟଗଡ଼ା ସବ୍‌ଡିଭିଜନରେ ଆଦିବାସୀ ଗାମାନଙ୍କରେ ଦୁର୍ଭିକ୍ଷ ଯୋଗୁଁ ଯେଉଁ ଅନ୍ନଛତ୍ର କେନ୍ଦ୍ରମାନ ଖୋଲା ହୋଇଥିଲା ସେଠି ସେ ବହୁତ ସାହାଯ୍ୟ କରିଥିଲେ ।

ସେ ରାୟଗଡ଼ାର ଚନ୍ଦ୍ରପୁର କୋଟିଆ-କନ୍ଧ ମାଳ ଭିତରେ କନ୍ଧ ଗାଁ 'ବୃନ୍ଦୁବେଲୀ'ରେ ମଧ୍ୟ କିଛିକାଳ ଆଶ୍ରମ କରି ବାଘ ହାତୀ ଭୟ ସଙ୍କୁଳିତ ଅଗନାଗ୍ନି ବଣ ଭିତରେ ବିଭିନ୍ନ ଗ୍ରାମ ବୁଲି ଆଦିବାସୀ ସେବାକାର୍ଯ୍ୟ କରିଥିଲେ । ଡୁମ୍ରିଗୁଡ଼ାରେ ସେ ପ୍ରାୟ ଦଶବର୍ଷ ରହି କାର୍ଯ୍ୟ କରିଥିଲେ । ସେ ଭୂଦାନ-ଗ୍ରାମଦାନ ଆନ୍ଦୋଳନରେ ମଧ୍ୟ ସହଯୋଗ କରିଥିଲେ । ୧୯୬୩ରେ ସେ ନିୟମଗିରି ପର୍ବତ ଉପରେ ୩,୫୦୦ ଫୁଟ ଉଚ୍ଚ ଡଂଗ୍ରିଆ କନ୍ଧ ଗାଁ 'ଖମ୍ବେସି'ରେ ଆଶ୍ରମ କଲେ ଓ ସେହିଦିନୁ ଏ ପର୍ଯ୍ୟନ୍ତ ସେଠି ଓ ଅନ୍ୟାନ୍ୟ ଡଂଗ୍ରିଆ କନ୍ଧ ଗାଁରେ ଆଦିବାସୀ-ହରିଜନ ସେବା ଓ ଉନ୍ନୟନ କାର୍ଯ୍ୟ କରୁଛନ୍ତି । ଏହି ଦୀର୍ଘ ଚଉତିରିଶି ବର୍ଷ କାଳ ସେ ଅନୁନ୍ନତ କନ୍ଧ ଆଦିବାସୀଙ୍କୁ ଓ ହରିଜନଙ୍କୁ ନିଜ ଆତ୍ମୀୟସ୍ୱଜନ ମଣି ନାନା କ୍ଳେଶ ବରଣ କରି ନାନା

ବିପଦ ଓ ଅସୁବିଧା ମଧ୍ୟରେ ନିଃସ୍ୱାର୍ଥପର, ଅକୁଣ୍ଠିତ, ଅକ୍ଳାନ୍ତ ଭାବରେ ସେମାନଙ୍କର ନାନାବିଧ ହିତସାଧନ ପାଇଁ ଲାଗି ରହିଛନ୍ତି । ୧୯୮୩ରେ ଶ୍ରୀମତୀ ମାଳତୀ ସର୍ବ ଭାରତର 'କସ୍ତୁରବା ଗାନ୍ଧୀନିଧି'ର କର୍ମୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ବିବେଚିତା ହୋଇ 'ପୁରସ୍କାର' ପାଇଲେ ।

## ଶ୍ରୀମତୀ ଅନ୍ନପୂର୍ଣ୍ଣା ସାମନ୍ତରାୟ

ସେ ୧୯୪୮ରେ ବର୍ଦ୍ଧାରେ 'ମାତୃମଙ୍ଗଳ କେନ୍ଦ୍ର'ରେ ତାଲିମ୍ ନେଲେ ଓ ସେହି କାର୍ଯ୍ୟ କଲେ । ତାହାପରେ ସେ କୋରାପୁଟ ଜିଲାରେ ବିଭିନ୍ନ ଆଦିବାସୀ ଗାଁରେ କର୍ମୀ ହୋଇ ଆଦିବାସୀ ସେବାକାର୍ଯ୍ୟ କଲେ । କନ୍ଧ ଗାଁ 'ଝୁଲୁଣ୍ଡିବାଇ'ରେ ତାଙ୍କ ଦ୍ୱାରା ନିଶା ନିବାରଣ କାର୍ଯ୍ୟ ବିଶେଷଭାବେ ଉଲ୍ଲେଖଯୋଗ୍ୟ ।

## କୁମାରୀ ଅନ୍ନପୂର୍ଣ୍ଣା ଦାସ (ଭଦ୍ରକ, ବାଲେଶ୍ୱର)

ସେ ବି.ଏ. ପାଶ୍ କରିଥିଲେ । ସେ ମୌଳିକ ଶିକ୍ଷା ପ୍ରୟୋଗ କାର୍ଯ୍ୟରେ ଯୋଗ ଦେଇଥିଲେ ଓ କାଳକ୍ରମେ (ଉତ୍କଳ ଶାଖା) "କସ୍ତୁରବା ଗାନ୍ଧୀ ସ୍ମାରକ ଟ୍ରଷ୍ଟ"ର 'ପ୍ରତିନିଧି' ହୋଇଥିଲେ ।

## ଶ୍ରୀମତୀ ବାସନ୍ତୀ ମିଶ୍ର (ଜନ୍ମ ୧୪-୪-୧୯୩୧, ଗ୍ରାମ: ପୁରୁନ୍ଦାଳ, ଜି: କଟକ)

ସେ ୧୯୫୦ରେ (ବର୍ଦ୍ଧା) ରାମଚନ୍ଦ୍ରପୁରରେ ସେବା-ପ୍ରବେଶ ତାଲିମ୍ ନେଲେ । ସେ ୰ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ବନ୍ୟା ଅଞ୍ଚଳରେ କେତେଥର ରିଲିଫ୍ କାମ, ବିଭିନ୍ନ ରଚନାତ୍ମକ କାମ କରିଥିଲେ । ସେ ଏବେ (କଟକ ଜିଲା) ସତ୍ୟଭାମାପୁରରେ ରଚନାତ୍ମକ କର୍ମୀ ହୋଇ ଅଛନ୍ତି ଓ ସେ "କସ୍ତୁରବା ଗାନ୍ଧୀ ସ୍ମାରକନିଧି"ର ସଞ୍ଚାଳିକା ହୋଇଛନ୍ତି ।

